**କବିସୂର୍ଯ୍ୟ ବଳଦେବ ରଥ** ଆମ ସାହିତ୍ୟ-ଇତିହାସରେ ଏକ ଅବିସ୍ମରଣୀୟ ଉଜ୍ଜ୍ୱଳ ପ୍ରତିଭା । ମଧ୍ୟଯୁଗୀୟ ସାହିତ୍ୟର ଗତାନୁଗତିକତା ମଧ୍ୟରେ ତାଙ୍କର ସାରସ୍ୱତ ସୃଷ୍ଟି ଆତ୍ମିକ ତଥା ଆଙ୍ଗିକରେ ଅଭିନବ— ମୌଳିକତାରେ ମର୍ଯ୍ୟାଦାବନ୍ତ । ସାହିତ୍ୟ ସହ ସଙ୍ଗୀତର ମୈତ୍ରୀବନ୍ଧନ ସ୍ଥାପନରେ ତାଙ୍କର ଅସାଧାରଣ କୃତିତ୍ୱର ପ୍ରାୟ ପଟାନ୍ତର ନାହିଁ । ଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ କବିସୂର୍ଯ୍ୟଙ୍କ ରଚନା ଖଣ୍ଡ ଖଣ୍ଡ କରି ମୁଦ୍ରିତାକାରରେ ପ୍ରକାଶ ପାଇଥିଲେ ହେଁ ତାଙ୍କର 'ଗ୍ରନ୍ଥାବଳୀ'ଟିଏ ପାଇବା ପାଇଁ ଆମକୁ ୧୯୨୮ ମସିହା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଥିଲା । ସେହି ଗ୍ରନ୍ଥାବଳୀ ସେତେବେଳେ ପୂର୍ଣ୍ଣାଙ୍ଗ ହୋଇପାରି ନ ଥିଲା; ବର୍ତ୍ତମାନ ତାହାର ବିଭିନ୍ନ ସଂସ୍କରଣ ମଧ୍ୟ ଦୁଷ୍ପ୍ରାପ୍ୟ ହୋଇ ପଡ଼ିଛି । ଏବେ ତାହାର ଯଥାସମ୍ଭବ ଏକ ପୂର୍ଣ୍ଣାଙ୍ଗ ରୂପ କବିସୂର୍ଯ୍ୟଙ୍କ ସଂକ୍ଷିପ୍ତ ଜୀବନୀ ସହ ସାହିତ୍ୟ-ସଙ୍ଗୀତ-ପ୍ରେମୀ ଗ୍ରାହକ-ସମାଜ ନିକଟରେ ନିବେଦନ କରାଯାଉଛି ।

ଗ୍ରନ୍ଥାବଳୀର ସଂପାଦକ ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା (୧୯୩୨) ଆମର ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ଏକ ସୁପରିଚିତ ନାମ । ସାହିତ୍ୟଗ୍ରନ୍ଥ ସଂକଳନ ଓ ସଂପାଦନାରେ ତାଙ୍କର ଅପ୍ରତିହତ ଅଭିମୁଖ୍ୟ ଓ ନୂତନ ଦୃଷ୍ଟିଭଙ୍ଗୀ ନିମ୍ନୋକ୍ତ ପ୍ରକାଶିତ ଗ୍ରନ୍ଥରେ ସୁସ୍ପଷ୍ଟ—ମୋଗଲ ତାମସା (୧୯୬୬), କିଶୋରଚନ୍ଦ୍ରାନନ୍ଦ ଚମ୍ପୂ (୧୯୭୭), ଏ ଯୁଗର ବିଦ୍ୟାଚ୍ଚୟନ (୧୯୭୮), ପ୍ରୀତିସୁଧାକର (୧୯୭୯), ବିଦେହୀଶବିଳାସ (୧୯୮୦), କଳାବତୀ (୧୯୮୧), ଫୁଲମଣି ଓ କରୁଣାର ବିବରଣ (୧୯୮୨) ପ୍ରଭୃତି ।

**ପ୍ରକାଶକ**



ସେଣ୍ଟ୍ରସ୍ ପବ୍ଲିଶର୍ସ

ISBN 81-7401-251-6

# କବିସୂର୍ଯ୍ୟ-ଗ୍ରନ୍ଥାବଳୀ

ରଚୟିତା :

କବିସୂର୍ଯ୍ୟ ବଳଦେବ ରଥ ରାୟଗୁରୁ ମହାପାତ୍ର

ସଂକଳନ ଓ ସଂପାଦନା :

ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା



କବିସୂର୍ଯ୍ୟ-ଗ୍ରନ୍ଥାବଳୀ—ସଂକଳନ ଓ ସଂପାଦନା : ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ - ୭୫୩ ୦୦୨, ଡି.ଟି.ପି. : ଫିୟୁଚର ଭିଜନ୍, କଟକ, ମୁଦ୍ରଣ : ଇନ୍ଦ୍ରାଣୀ ଅଫସେଟ୍, କଟକ ।



**KAVISURYA-GRANTHAVALI** — Compiled and Edited by: Dr. Krushna Charan Behera, Publisher: Sahadev Pradhan, Friends' Publishers, Binodbehari, Cuttack - 2, Orissa (India), Cover Design: Asit Mukherjee, D.T.P. by: Future Vision, Cuttack, Printer: Indrani Offset, Cuttack.

**First Edition : 1998**

**Price : Rs. 250**

ISBN 81-7401-251-6

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|
| | ପ୍ରକାଶକଙ୍କ ନିବେଦନ | |
| | ଗ୍ରନ୍ଥାବଳୀର ଭୂମିକା | |
| ୧. | କିଶୋରଚନ୍ଦ୍ରାନନ୍ଦ ଚଂପୂ | [୧-୫୪] |
| ୨. | ରତ୍ନାକର ଚଂପୂ (ଚୌପଦୀ ରତ୍ନାକର) | [୫୫-୮୦] |
| ୩. | ପ୍ରେମୋଦୟ ଚଂପୂ (ଚୌପଦୀ ଚନ୍ଦ୍ରୋଦୟ) | [୮୧-୧୦୬] |
| ୪. | ଚନ୍ଦ୍ରକଳା (କାବ୍ୟ) | [୧୦୭-୨୨୪] |
| | ପ୍ରଥମ ଛାନ୍ଦ- ପୁରୀ ଶ୍ରୀମନ୍ଦିର ବେଢ଼ାର ଦେବଦେବୀଙ୍କ ସ୍ତୁତି | ୧୦୯ |
| | ଦ୍ୱିତୀୟ ଛାନ୍ଦ- ଶାପାନୁକଂପ | ୧୧୪ |
| | ତୃତୀୟ ଛାନ୍ଦ- ମହଗଜଘୋଷ ସ୍ତବ | ୧୧୯ |
| | ଚତୁର୍ଥ ଛାନ୍ଦ- କୁମାରୋତ୍ସବ | ୧୨୫ |
| | ପଞ୍ଚମ ଛାନ୍ଦ- ବାଳାବତାର | ୧୩୧ |
| | ଷଷ୍ଠ ଛାନ୍ଦ- କୁମାରୀ ବିନୋଦରଞ୍ଜନ | ୧୩୮ |
| | ସପ୍ତମ ଛାନ୍ଦ- କୁମାରୀ କଉତୁକ | ୧୪୨ |
| | ଅଷ୍ଟମ ଛାନ୍ଦ- କୁସୁମୋଦ୍‌ଗମ | ୧୪୭ |
| | ନବମ ଛାନ୍ଦ- ନେପଥ୍ୟ ପଥ୍ୟ | ୧୫୫ |
| | ଦଶମ ଛାନ୍ଦ- ବନବିହାର | ୧୬୪ |
| | ଏକାଦଶ ଛାନ୍ଦ- ଜଳବିହାର | ୧୭୧ |
| | ଦ୍ୱାଦଶ ଛାନ୍ଦ- ପରିଣୟ ମନ୍ତାନନ୍ଦନ | ୧୭୯ |
| | ତ୍ରୟୋଦଶ ଛାନ୍ଦ- କୁମାର ମୋହନ | ୧୮୩ |
| | ଚତୁର୍ଦ୍ଦଶ ଛାନ୍ଦ- ସ୍ୱପନ ସମ୍ଭୋଗ | ୧୯୨ |
| | ପଞ୍ଚଦଶ ଛାନ୍ଦ- ଯୁବସନ୍ଦେଶାମୃତ | ୧୯୭ |
| | ଷୋଡ଼ଶ ଛାନ୍ଦ- ମହିଳାସ୍ତବରାଜ | ୨୦୩ |
| | ସପ୍ତଦଶ ଛାନ୍ଦ- ଚନ୍ଦ୍ରକଳାକୁ ଅନଙ୍ଗସୁନ୍ଦରର ଚିଟାଉ | ୨୧୦ |
| | ଅଷ୍ଟାଦଶ ଛାନ୍ଦ- ବସନ୍ତ ବର୍ଣ୍ଣନା | ୨୧୮ |

| ବିଷୟ | ପୃଷ୍ଠା |
| --- | --- |
| ୫. ଛାନ୍ଦ, ଚଉତିଶା, ଜଣାଣ - ଭଜନାଦି | [୧୨୫-୩୪୪] |
| ଜଗତେ କେବଳ ଜନେ ହସିବେ ଏହି ତହୁଁ ଫଳ | ୧୨୭ |
| କାହାକୁ ଅଡ଼ିବା, କପାଳରେ ସିନା କର ତାଡ଼ିବା | ୧୨୯ |
| ଶିଖଣ୍ଡ ମୁକୁଟ, ଶିଖିଛ ଭଲା ଆଜନମୁ କୂଟ | ୧୩୧ |
| ଚାହିଁଲା ତ ନାହିଁ, ଚକ୍ଷୁ କୋଣେ ଚାରୁ ଚନ୍ଦ୍ରମାମୁହାଁ | ୧୩୩ |
| ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ | ୧୩୫ |
| ଛୋଟ ଝୁଂପା—ତୋ ଚାରୁ ଚାହାଣି ଚାହିଁ ମରି ତୁ ଆବୁର ସାରିପକା ପଛେ | ୧୩୬ |
| ଜାଇଫୁଲ ଝୁଂପା ଚଉତିଶା—କରୀଗତି ଚାନ୍ଦମୁହାଁ | ୧୩୭ |
| କାମଦୁହା ଚଉତିଶା- କିଶୋରୀଙ୍କ ବର ଯଦୁପତି | ୧୩୯ |
| ସର୍ପଜଣାଣ-ବାଧିଲା ଜାଣି କ୍ଷମା କର ନୋହିଲେ ରମାରମଣ | ୧୪୪ |
| ଜଗନ୍ନାଥ ଜଣାଣ- କ୍ଷୀରମୟସିନ୍ଧୁ-ଜେମା ଦୀନବନ୍ଧୁ | ୧୪୬ |
| ମହାବାହୁ ଜଣାଣ ଚଉତିଶା- କମଳବାସିନୀ ପ୍ରାଣବାନ୍ଧବ ହେ | ୧୪୭ |
| ବିରହୀ ଚଉତିଶା- କିଶୋରଚନ୍ଦ୍ର କଂସକଟକେ ରହି | ୧୫୩ |
| ମଞ୍ଜୁଳା ଚଉତିଶା- କିଶୋରୀବରଙ୍କ ବଦନ ନିରଙ୍କ ଚନ୍ଦ୍ରରେ | ୧୫୮ |
| ମୋହନା ଚଉତିଶା- କଂସ ନଗରୀରେ ବିହରି ଶ୍ରୀହରି | ୧୬୩ |
| ସଖୀ ଚଉତିଶା : ଶ୍ରୀ ରାଧାଙ୍କ ଉକ୍ତି- କଞ୍ଜନୟନ ସେ କେ ଗୋ କହ | ୧୬୯ |
| ରସିକ ଚଉତିଶା- କୋଉ ରସିକ ସେ ରୋଷେ କରି ଧାତା ନିନ୍ଦା | ୧୭୨ |
| ବସନ୍ତ ବର୍ଣ୍ଣନା-ପ୍ରବେଶ ହୋଇଲା ଋତୁ ରାଜନ | ୧୭୭ |
| ବର୍ଷା ବର୍ଣ୍ଣନା- ଆବିର୍ଭୂତ ହେଲା ଆସି ବରଷା | ୧୭୯ |
| ନାୟକ ଅନୁଚିନ୍ତା- ଧନି, ଅନା ଥରେ ଚାହିଁଲା ପରି | ୧୮୩ |
| କୁଞ୍ଜ ମିଳନ- ଦିନେ ଦିନେଶସୁତାତଟ ମାଧବୀଲତା | ୧୮୫ |
| ବିରହୀ ଚିଟାଉ- କେଉଁ ବିରହୀ ନାଗରବର ପ୍ରିୟାଠାକୁ ଲେଖଇ ଉତ୍ତର | ୧୮୭ |
| ଖଣ୍ଡିତା ନାୟିକା- ମୁଁ ନ ପାରେ ଯାଇ ମିଛୁରା ମଉଳିକି ସମଝାଇ | ୧୮୯ |
| ନାୟକ ଚାଟୁ- ଧନ୍ୟ ରେ ଧରଣୀବଧୂ-ମୂର୍ଦ୍ଧାମଣି | ୧୯୧ |
| କିଶୋରୀ ପ୍ରତି ସଖୀ—କିଶୋରୀ ଏ କିସ ରେ | ୧୯୩ |
| ମାଳଶ୍ରୀ—ମା ଗୋ, ଜୟ ଜୟ ଜଗଜ୍ଜନନୀ ବାଳା | ୧୯୫ |

**ବିଷୟ** **ପୃଷ୍ଠା**

ଢୁଂପା ଚଉତିଶା- କେତେ ଜନ୍ମ ତପ ବିହି କଳାକଳେବର ଚାହିଁ ୨୯୭
ଫଳମନାସ ଓ ଫଳମନାସର ଉତ୍ତର ୩୦୧
ଫୁଲମନାସ ଓ ଫୁଲମନାସର ଉତ୍ତର ୩୦୪
ଅଳଙ୍କାର ମନାସ ଓ ଅଳଙ୍କାର ମନାସର ଉତ୍ତର ୩୦୮
ବଡ଼ଗଡ଼ ରାଜଦରବାରରେ କବିଙ୍କ ଉକ୍ତି ୩୧୬
ମନସିଜୋଲ୍ଲାସ ୩୧୮
ନାୟକର ବିଦେଶରୁ ପତ୍ରଲିଖନ ୩୨୪
ସଂଭୋଗ ଚାଟୁ ୩୨୯
ନାୟକର ଚିଟାଉ-ହରି କମଳ ପାଦ ମନରେ ଗୁଣି ୩୩୧
ନାୟକର ଚିଟାଉ-ସଜଳ ଜଳଦର ଦୁରିତହାରୀ ୩୩୨
ନାୟକର ଚିଟାଉ- କାଗଜ ଦଳ ଅପସରରେ ରଖି ୩୩୪
ନାୟିକାର ଚିଟାଉ- ଦଇବ ଯୋଗୁ କେଉଁ ରସିକାବର ୩୩୬
ଚଉବନ ପଦିଆ-ନାୟକର ଚାଟୁ ଉକ୍ତି- ଆସ ରେ
ଆସ ମୋ ଅଙ୍କକୁ ୩୩୮
ପଞ୍ଚତିରିଶ ପଦିଆ : ନାୟିକାର ବିରହାନୁଚିନ୍ତା -
କେଉଁ ରସିକାବର ଦଇବ ବଶୁ ୩୪୨

୬. **ଚଉପଦୀ (ଲୌକିକ ଓ ସାମାଜିକ)** [୩୪୫-୪୭୪]

ଅନା ଅନା ସୁନୟନା କିଞ୍ଚିତ କୃପାରେ ୩୪୭
ଅନୁସରିଛି ରେ, ମନୁ ପାସୋରିବୁ ନାହିଁ ୩୪୭
ଅବନୀଭୂଷା, ଅତନୁବାଣେ ନ ଭୂଷା ରେ ୩୪୮
ଅରୁଣାମ୍ବୁଜ ଚରଣା ତୁ ରସାରେ ଭରସା ରେ ୩୪୯
ଆଜ କେ ଶିଖାଇଲା ରୁଷାକୁ ରେ ୩୪୯
ଆଜ ମୁଁ ଦେଖିଲି ଲାଜବତୀକି ଗୋ ୩୫୧
ଆରେ କୁରଙ୍ଗୀଦୃଶା, ଆଜ ନିଶି କି ହେବ ତୋ ଦଶା ରେ ୩୫୧
ଆରେ ଦୁଃଖୀଧନ, ସୁଖୀ ଏକା ଏ ସଂସାରେ ସେହି ଜନ ୩୫୨
ଆରେ ପ୍ରାଣସଙ୍ଗୀ, ମନମୋହନ ମନ୍ତର ତୋର ଭଙ୍ଗୀ ୩୫୩
ଆରେ ବିଧୁବଦନା, ଘେନିଲୁ ତ ନାହିଁ ମୋ ନିବେଦନା ୩୫୪
ଆରେ ମୋ ବନ୍ଧୁ, ମହୀକି ଚାହୁଁ କାହିଁକି ୩୫୪
ଆରେ ମୃଦୁଅଙ୍ଗୀ ରେ, ଲାବଣ୍ୟତରଙ୍ଗୀ ରତିରସରଙ୍ଗୀ ୩୫୫
ଆରେ ମୋ ହୃଦହାରା କିଂପା ବହେ ନେତ୍ରୁ ନୀରଧାରା ୩୫୬
ଆରେ ରସସିନ୍ଧୁ ନାହିଁ ନାହିଁ କିଂପା କରୁ ପ୍ରାଣବନ୍ଧୁ ରେ ୩୫୭

**ବିଷୟ** **ପୃଷ୍ଠା**


ଆରେ ସହଚରି, ଥିବି ତୁମ୍ଭଙ୍କୁ ଏକା ଭରସା କରି ୩୫୮
ଆହା ମୋ ଖଞ୍ଜନାକ୍ଷି ଅନଙ୍ଗେ ମୋ ବିନା ଦୁଃଖୀ ରେ ୩୫୮
ଉଣା ତ ନାହିଁ ଚାକିରୀରେ ବନ୍ଧୁ ୩୫୯
ଏ କି ଦୀନେ ଗୋ, କୁନ୍ଦହାସ୍ୟ ଗୁମାନ ଘେନ ନା ମନେ ୩୫୯
ଏହି ସ୍ନେହରେ ମୁଁ କିଣା ୩୬୦
କଂପି କଂପାଇଲା ରେ ଘସା ଚୁନିବସା ଦଣ୍ଡି ୩୬୧
କରୁ କାହିଁକି ରେ ସରୁକଟୀ ମୋତେ ଲାଜ ୩୬୨
କାନ୍ଦ ନା ମୁଁ ନୋହିବି ବିଦେଶୀ ରେ, ମନ୍ଦହାସୀ ୩୬୨
କଳାକେଶୀ କଳାକରହାସୀ ରଷିମୋହିନୀ ନ ବସ ରୁଷି ୩୬୩
କଳାବତୀ ରେ, ଚଳା ମୋରେ କୃପା ଅପାଙ୍ଗଟିକି ରେ ୩୬୪
କଳାବଳାହକ ତୁଳା ଦଳିତ ନୀଳ କୁନ୍ତଳା ଚଳା ଚଳା
ଚାରୁ ନେତ୍ରାଞ୍ଚଳା ୩୬୫
କହିବାକୁ ଲାଜ ସଖି ଯାହା ହେଲା ଆଜ ୩୬୫
କହିବି କେତେ ଥର ଥରକୁ ରେ ମହୀମଉଳିଭୂଷାବରକୁ ରେ ୩୬୬
କାଞ୍ଚନବରନା ଚଞ୍ଚଳେ ଅନା ରେ ବଞ୍ଚନା କରନା ୩୬୭
କାହିଁକି ଆଜ ଦ୍ୱିଜରାଜ ବଦନେ ଲାଜ ୩୬୭
କାହିଁ ଲୁଚାଇ ସେ ସ୍ନେହ, ଚାହିଁଲୁ ଧରାରେ ୩୬୮
କାହିଁ ବରକେଳି ମଣ୍ଡଳେ ନୋହିବ ସୁଧାରେ ତାର ସମାନ ୩୬୯
କି କଲି ମଲ୍ଲୀହାସୀକି କି ଦୁଃଖ ଦେଲି ଗୁଣରାଶିକି ୩୬୯
କିଂପା କରୁଛୁ ନିରାଶ ମୁଁ ପରା ତୋ ନିଜ ଦାସ ୩୭୦
କି ବର୍ଣ୍ଣିବି ରେ ତୋ କୁଚକୁ ୩୭୧
କି ଭାବର ବାଣୀ ସବୁ ଜାଣି ଜାଣି ରେ ଆଜ ଏ କି ଠାଣିରେ ୩୭୨
କି ରସିକ ସେ, ବିରସ ଯାହାର ମୁଖୁ ବିକଶେ ୩୭୩
କେଉଁ କାରଣୁ ମୁଁ ତୋ ସେବାକୁ ଗୋ ୩୭୩
କେଳିପ୍ରବୀଣା କେବଳ ତୋତେ ସିନା ଜଣା ରେ ୩୭୪
କେହି ବଞ୍ଚିବି ରେ ସହି ଜୀବନଦ ରବ ୩୭୪
କୁନ୍ଦରଦନା ରସବତୀ, ରସବତୀ ରାମା ରସବତୀ ୩୭୬
କୁନ୍ଦସୁନ୍ଦରହାସୀ ଇନ୍ଦୁବଦନା ୩୭୭
ଖଚ ବଚନକୁ ସତ ମଣିକି ରେ ୩୭୮
ଖଞ୍ଜରୀଟନୟନା ଅଳପ ଚାହାଁ ରେ ୩୭୮
ଖୁଣ ନ ଥିବା ଗୁଣ ଗଉରୀକି ମୋ ରଣ ୩୭୯
ଗାନପଣ୍ଡିତା ତୋତେ ଆନ ନାରୀଙ୍କ ପରି ୩୭୯

| ବିଷୟ | ପୃଷ୍ଠା |
|---|---|
| ଗୁଣନିଧି ଲାବଣ୍ୟଲହରୀ ରେ, ମୋ ରାଣଟି କହ କହ | ୩୮୦ |
| ଘନ ଜଘନା, ମନ ଅଛି ନ କର ମନା ରେ | ୩୮୧ |
| ଘନ ଜଘନା ମୋତେ ମନା କରି ଦେ ନା | ୩୮୧ |
| ଘନ ନିଶାରେ ରମଣୀମଣି ଦେଲା ବାସବ-ଭୂତି ମୋରେ | ୩୮୨ |
| ଘେନ ମୋର ଭାରତୀ ମନ୍ଥରଗତି ରେ | ୩୮୩ |
| ଚନ୍ଦ୍ର ନିଶାରେ, ଦେଲା ସୁନ୍ଦରୀମଣି ମହେନ୍ଦ୍ର ଭୂତି ମୋରେ | ୩୮୩ |
| ଚନ୍ଦ୍ରବଦନା ରେ ଲେଉଟି ପଛକୁ ଅନା | ୩୮୪ |
| ଚନ୍ଦ୍ରମୁଖୀ ରେ ଏକା ଭାଗ୍ୟବନ୍ତ ପଣେ ତାକୁ ଲେଖି ରେ | ୩୮୫ |
| ଚାନ୍ଦସୁନ୍ଦରମୁଖୀ ରେ, ବୃନ୍ଦ ବୃନ୍ଦ କନ୍ଦର୍ପଶରମୟ ସର୍ପ | ୩୮୬ |
| ଚାହାଁ ରେ ନିଧୁବନ କେଳି କୁଶଳାକୁ | ୩୮୭ |
| ଚାହିଁ ଯା ନୟନାନ୍ତେ ଅଳପରେ | ୩୮୭ |
| ଛାଡିଲାଣି ଶିଶୁଭାବ ମୋ ଧନ ଛୁଇଁଲାଣି ଯଉବନ ଗୁମାନ | ୩୮୮ |
| ଛି ଛି ପରପୀରତି କିଛି ନ ରଖଇ ମତି ମା | ୩୮୮ |
| ଜଣା ତ ଅଛି ମାତ୍ର ଏତିକି ରେ | ୩୮୯ |
| ଜବାଧରା, ଜାମ୍ବୁନଦ ଧରାଧର ପୟୋଧରାରେ | ୩୯୦ |
| ଜାଣିଲି ପଛିଆଣି ଚାହାଣିରୁ ଧନକୁ | ୩୯୧ |
| ଜାନପୁର ବିତାନରୁ ଅଭିମାନ ଛେଦ ରେ | ୩୯୧ |
| ଜୀବବାନ୍ଧବୀରେ, ପ୍ରାଣବାନ୍ଧବୀରେ ତୋ ବିନା ମୋତେ | ୩୯୨ |
| ଝଳିବରନା ରେ କଳିବୁଟି ମନେ ମନେ (କ) | ୩୯୩ |
| ଝଳିବରନା ରେ, କଳିବୁଟି ମନେ ମନେ(ଖ) | ୩୯୪ |
| ଟମକ ବଜାଇ ଜଗତ ଯାକେ ତୁ ନ ଜାଣୁ ବୋଲି କପଟ | ୩୯୪ |
| ତୁ ମୋ ପରାଣ ପୂର୍ଣ୍ଣଚନ୍ଦ୍ରମୁଖୀରେ | ୩୯୫ |
| ତୁହି ପରା ମୋ ହୃଦୟ ମଣିମୟହାରା ରେ | ୩୯୫ |
| ତୋ ଉପମା ତୁହି ରାମାମଣି ଏ ସଂସାରେ | ୩୯୬ |
| ତୋ ସରସପଣେ ଜଣେ ନାହିଁ ନାହିଁ ଆଉ ରେ | ୩୯୭ |
| ଦମ୍ଭେ ବା ସତେ ସହି କହିଲୁ ରେ | ୩୯୮ |
| ଦୟାବତୀକି କର ଧରି ମୁଁ ମାଗୁଛି ଏତିକି | ୩୯୯ |
| ଦୂତୀ ଚ଼ଳ ରେ, ଭୂତିଦାୟିନୀ ବିନା କେ ବଳରେ | ୪୦୦ |
| ଦୋଷ ବିନା ମୋ ନବୀନା ରୋଷ କିଂପାଇ ବହିଲା ରେ | ୪୦୧ |
| ଧନ, କେମନ୍ତେ ମୂର୍ଚ୍ଛିବିରେ ମନରୁ ନ ଗଲୁ କ୍ଷଣେ | ୪୦୨ |
| ଧନକୁ କେ ମାନେ ବଳାଇଲା ରେ | ୪୦୨ |
| ଧନ ଘନରସ ବରଷିଲା ରେ | ୪୦୩ |

| ବିଷୟ | ପୃଷ୍ଠା |
| --- | --- |
| ଧନ ମନ ମୋ ରସେ ରସିଲା ରେ | ୪୦୩ |
| ଧନ ରେ, ଅବଶ୍ୟଟି ମୁଁ ବନରେ କରିବି ସ୍ଥାନ | ୪୦୪ |
| ନ କରିବୁ ଊଣା ପ୍ରୀତି ଚାଲି ରେ | ୪୦୫ |
| ନବଛଇଳୀ, ଯାଉଛି ବିଦେଶ ମୁଁ କାଲି | ୪୦୫ |
| ନବୀନା ସେ ଯାହା ନ ବିନାଶେ | ୪୦୬ |
| ନାଗେନ୍ଦ୍ରଗତି ଆହା ଘନଜଘନା | ୪୦୭ |
| 'ନାହିଁ' କରୁ କାହିଁକି ? ରେ ଗଳାମଣି ମାଳି | ୪୦୮ |
| 'ନାହିଁ' କରୁ କାହିଁକି ମୋ ଗଳାମୋତି ମାଳି ରେ | ୪୦୮ |
| ନାହିଁ ରୁଷିଲା ରେ କଂପାଇ ଶ୍ରୀମୁଖଶଶୀ | ୪୦୯ |
| ନାହିଁ ତୋହର ସମାନ ମୋହ ରସ ସ୍ଥାନ | ୪୧୦ |
| ନିମଜ୍ଜା ମନକୁ ରସେ, ପରିଜନ-ମଜ୍ଜା ସମଜ୍ଜା | ୪୧୦ |
| ନୂଆ ଛଇଳା, ଥରେ ରସେ ରସାଇବି ରେ | ୪୧୧ |
| ନୂଆ ରସିକା ରେ ଗୁଆଁର ମୋ ସମ କାହିଁ | ୪୧୨ |
| ପଙ୍କଜ ଲୋଚନା, ମୁଁ ତୋ ଦାସ ରେ | ୪୧୨ |
| ପରପୀରତିରୁ ଲାଭ ଏତିକି ଗୋ | ୪୧୩ |
| ପରପ୍ରେମ ପୋଡୁ ଗୋ, କାହିଁକି ତା' ଲୋଡୁ ଗୋ | ୪୧୪ |
| ପରବଚ୍‌ନ୍ଦ୍ରମା-ମୁହାଁ, ପର ବତ ମତେ ନ କର ତୁହି ରେ | ୪୧୪ |
| ପରାଣ ଛାର କି ଲୋଡ଼ା ରେ ସଙ୍ଗାତ | ୪୧୬ |
| ପାରିବୁ କି, ରସେ ହାରିବୁ ରେ | ୪୧୬ |
| ପାରିବୁ ରେ, ରସେ ଘାରିବୁ ରେ | ୪୧୭ |
| ପ୍ରାଣନାଥ ବିଜେ ବେଳ ବଳିଲା ରେ | ୪୧୮ |
| ପ୍ରାଣବନ୍ଧୁଆ, ଆଜ ତୋ ଅନାଉଣି ନୂଆ ରେ | ୪୧୮ |
| ପ୍ରାଣବନ୍ଧୁଆ ରେ, ତୋ ଶୋଭାକୁ ଚାହିଁ | ୪୧୯ |
| ପ୍ରାଣବନ୍ଧୁ, କର ଗରବ କାହିଁକି ରେ | ୪୨୦ |
| ପ୍ରିୟ ସହି, ଏତେ ବେଳୁ ଥାଅ ମୋତେ କହି ରେ | ୪୨୧ |
| ପୁଚ୍ଛ ତ ସେ ରସଭୋଗୀକି ଗୋ, କାହୁଁ ହେଲା | ୪୨୨ |
| ବଦନର ଚାହିଁ ଛବିଛଟା ରଦନରେ ଧରୁ ନାହିଁ କୁଟା | ୪୨୨ |
| ବନ୍ଧୁ ଅଛି କି ଲୋଡ଼ା, ନୂଆ ନିଆଳୀ ନିର୍ମିତ ଚୂଡ଼ାରେ | ୪୨୩ |
| ବନ୍ଧୁଆ, ତୁ ମୋ ମଣିହାର ରେ | ୪୨୪ |
| ବନ୍ଧୁଆ ତୁ ମୋ ଭରସା ନ କର ବରପଣନିଭ ରସା | ୪୨୪ |
| ବନ୍ଧୁଆ ରେ ବାରେ ଅନା ରେ | ୪୨୫ |
| ବନ୍ଧୁ ରୁଷିଲା ଅନ୍ଧୂଦର ପରି ପୁରି ଦିଶିଲା | ୪୨୫ |

| ବିଷୟ | ପୃଷ୍ଠା |
|---|---|
| ବନ୍ଧୁ କଲି କି ଦୁର୍ବିଚାରକୁ ରେ ବର୍ଜିଲି ଖଣ୍ଡ ଅର୍ଜି ଖାରକୁ ରେ | ୪୨୬ |
| ବାଣୀ ବୀଣାବାଣୀ ଠାଣି ଜାଣିଲା ରେ | ୪୨୬ |
| ବାରିଜାକ୍ଷି ମନରୁ ମାନ ବାରି ଦେ ରେ | ୪୨୭ |
| ବାମ ନେତ୍ର କୋଣେ ମାତ୍ର ଥରେ ମୋତେ ଚାହାଁ ରେ | ୪୨୭ |
| ବାଳା ଯେ କି ତୋ ଭଙ୍ଗୀ ହେଲା ନି ପରା ବୀର ଅନଙ୍ଗ ସଙ୍ଗୀ | ୪୨୮ |
| ବାଳା ରେ ତୁ ମୋ ଗଳାମାଳା | ୪୨୮ |
| ବିପରୀତ ରତେ ଗୋ କିପରି ତରୁଣୀ ଜନେ ପ୍ରବଳନ୍ତି ସତେ | ୪୨୯ |
| ବୀଣାବାଣୀ ଏ କି ରେ ଜଣାଇଲା କେ କି ରେ | ୪୩୦ |
| ଭାସିଲିଟି ଆସି ଦରହାସୀ ଥରେ ରଖ ରେ | ୪୩୦ |
| ମଦନ ଅମଳେ ବାଇପରି କେ ଯୁବତୀ | ୪୩୧ |
| ମଦନ, ଗୁମାନ କେତେ ଦେଖାଉ | ୪୩୨ |
| ମଦନ ମୁକୁରନିଭ ବଦନ ଭଲା ରେ | ୪୩୨ |
| ମଧୁର ସମୟ ହେଲା ବନେ ବନେ ବରଷିଲା ମଧୁରସ | ୪୩୩ |
| ମନମୋହନ ମନ୍ତର ତୋର ଭଙ୍ଗୀ ଆରେ ପ୍ରାଣସଙ୍ଗୀ | ୪୩୪ |
| ମନମୋହନ ମନ୍ତର ତୋର ଭଙ୍ଗୀ ରେ ଜୀବସଙ୍ଗୀ | ୪୩୪ |
| ମନ ମୋହୁଚି ରେ, ରସବତୀ ନବବାଳା | ୪୩୫ |
| ମରୁଆ ଗୋ ଏ ବୟସେ ସହିବ କେ ସେ ସଧ ଲେଶେ ଗୋ | ୪୩୬ |
| ମଲି ମଲି ମୋ ଘର ବୁଡ଼ିଲା ରେ | ୪୩୭ |
| ମସାରକେଶା ସୁବେଣା ମଶାର କେଶା ରେ | ୪୩୭ |
| ମହୀଚଂପା ଗଭା ଧନ୍ୟ ଧନ୍ୟ ଶୋଭାନିଧିରେ- | ୪୩୮ |
| ମହୀମଣ୍ଡନା ତୁ ନ ମାର ମାର ରେ | ୪୩୯ |
| ମହୀମଣ୍ଡଳେ ମୋ ବନ୍ଧୁ ଜଣେ ରେ | ୪୩୯ |
| ମାନିନୀବର ମାନ ମନୁଁ ହର ରେ | ୪୪୦ |
| ମାନସରୁ ଗୁମାନ ବରଜ ରେ ବନ୍ଧୁଆ | ୪୪୦ |
| ମାନ ସୁମନା, କରି ଦେ ମାନସୁ ମନା ରେ | ୪୪୧ |
| ମୋ ଧନ ତ ରୁଷିଲା ପରି ଦିଶିଲା ରେ | ୪୪୨ |
| ମୋ ବନ୍ଧୁକୁ ନ ଦେଖି କୋଳରେ ଦେବ ଗିରୀଶାରି ସାରି | ୪୪୩ |
| ମୋ ବନ୍ଧୁ ଚିର ପ୍ରବାସରୁ ଗୋ କାଲି କଲେ ଅବଧାନ | ୪୪୩ |
| ମୋର କି ବୁଦ୍ଧି ଆଜ ନୂଆ ସଙ୍ଗମେ କେହି ଛାଡ଼ିବି ଲାଜ | ୪୪୪ |
| ମୋହନା, ଥରେ ଚାହିଁ ଯା ରେ | ୪୪୪ |
| ମୋହନା, ମୋ ଅଙ୍କକୁ ଆସ ରେ | ୪୪୫ |
| ମୃଦୁହାସୀ ଦାସୀ ସିନା ହେ | ୪୪୬ |

| ବିଷୟ | ପୃଷ୍ଠା |
|---|---|
| ଯା ନ ଘେନିଲା ସେ ଗାନରସିକା ଆଜ | ୪୪୬ |
| ଯାର ମନ ଯହିଁକି ରସେ | ୪୪୭ |
| ଯୋଷା, କରିଛୁ ଆଜ ଓଷା କି ରେ | ୪୪୮ |
| ଯୋଷାକୁ ରୁଷା କେ ଶିଖାଇଲା ରେ | ୪୪୮ |
| ରଞ୍ଜ ନୟନ ଅଞ୍ଜନ ଘନ ନୀଳ ଦେହରେ | ୪୪୯ |
| ରସନିଧି ଭଲା ଆଚରିଲା ମୋହପରି ବିଧିରେ | ୪୫୦ |
| ରସାତଳ ଭୂଷା, ନବ ରସେ ରସା ରେ | ୪୫୦ |
| ରାମା, ଚାହିଁ ଯା ନୟନାନ୍ତେ ଅଳପରେ | ୪୫୧ |
| ରାମାବର, ଜଳଜନେତ୍ରା ହସି ଦେ'ରେ | ୪୫୧ |
| ରାମା ରାଜିଲା, ବିଶ୍ୱଶୋଭାପୁଞ୍ଜ ଗର୍ବ ଗଞ୍ଜିଲା | ୪୫୨ |
| ରାମାରାଜ, ଆଜ ଏ କି ରେ | ୪୫୨ |
| ଋଣୀ ହୋଇଲି ରେ ଗୁଣି ତୋର ଗୁଣଶ୍ରେଣୀ | ୪୫୩ |
| ରୁଷାକୁ ସାର ସାରସଦୃଶା ତ ଶିଖିଲା ରେ | ୪୫୪ |
| ରୁଷା ବରଜ ମୃଦୁ କୃଶାଙ୍ଗୀ ଶିଶୁମୃଗଦୃଶାଟି | ୪୫୪ |
| ରେ କିଶୋରୀ, ଭରସା କରିଚି ତତେ | ୪୫୫ |
| ରେ ଜୀବନ, ନବମାଳି କଳି କଳ | ୪୫୬ |
| ରେ ନୀରଦ, ଗରଜି ମରୁଛୁ କେତେ | ୪୫୬ |
| ରେ ମଞ୍ଜୁଳା, ଧରୁଛି କର-ସାରସ | ୪୫୭ |
| ରେ ମଦନ, ଗୁମାନ କେତେ ଦେଖାଉ | ୪୫୮ |
| ରେ ମିତଣି, ମଜାକୁ ଭେଦଇ ବ୍ୟଥା | ୪୫୮ |
| ରେ ମୋ ଧନ, ତେଜ ମନୁ ଲାଜ | ୪୫୯ |
| ରେ ମୋ ଜୀବନ, ମୁଁ କି ମୀନ ମୀନନେତ୍ରା ତୁ ମୋ ଜୀବନ ରେ | ୪୬୦ |
| ରେ ସଙ୍ଗାତ, ନିଧୁବନେ ମୋହ ପରି | ୪୬୦ |
| ରେ ସଙ୍ଗିନୀ, ମନ ଥିଲେ ମଜିଯାଉ | ୪୬୧ |
| ଲାଜ ବରଜି ଦ୍ୱିଜରାଜ ସୁନ୍ଦରମୁଖୀ | ୪୬୨ |
| ଲାବଣ୍ୟସିନ୍ଧୁ ରେ ବନ୍ଧୁ, ଅଛି ଏ ଦେହଟି | ୪୬୨ |
| ଲୀଳାବତୀ ରସେ ରସିଲା, କୋଳେ ବସାଇଲି | ୪୬୩ |
| ଶିରୀଷକୋମଳା ରେ ପ୍ରୀତିବସ୍ଥଳା ବାଳା | ୪୬୪ |
| ଶୁଝି ନୋହିବ ଯେ ସୁଝୀନ ବସନା ପ୍ରୀତି | ୪୬୫ |
| ସଂଯୋଗୁ ପଡ଼େ ପ୍ରମାଦ ରେ ସଙ୍ଗାତ | ୪୬୫ |

| ବିଷୟ | ପୃଷ୍ଠା |
| --- | --- |


ସଙ୍ଗିନୀ, ବରଜ ଗୁମାନ ସରଜ କେଳି ବିଧାନ ରେ ୪୬୬
ସରସ ଯେତିକି ରେ ବନ୍ଧୁ ବିରସ ତେତିକି ରେ ୪୬୭
ସେ କି ପୁରୁଷରେ ଜମା ରସରୀତି ଶ୍ରବଣରେ ଯାର ନାହିଁ ପ୍ରେମା ୪୬୮
ସେ କି ସାରାସାର ଜାଣେ ପ୍ରୀତିରୀତି ନ ପାଳେ ଯେ ୪୬୯
ସେ ଗଜେନ୍ଦ୍ରଗତି ମୋତେ ପ୍ରତି ଦିଶେ ଦିଶିଲା ୪୬୯
ସ୍ନେହ ଥିବା ଦେହର ନୁହେଁ ପ୍ରାଣ ପ୍ରାଣ ୪୭୦
ସୁନାଗୋରି ରେ ନାଗରୀ ଏ କି ଆଜି ୪୭୦
ସୁରସବତୀଟି ରେ, ମୋହ ସପତଟି ରେ ୪୭୧
ହସି ଦେଇଛି ଯେ ରସିକା ରଖିଛି ମନେ ୪୭୨
ହୀରକ ଦଶନା ମୋ ପଦକ ହୀରା ରେ ୪୭୨
ହେ ସରସେ, ମଉଳି ଗଲେ ହେଁ ଜୀବ ୪୭୩
ହେ ସୁନ୍ଦର, ଏହା ପୁଣି ଦେଖା ଗଲା ୪୭୪

୭. ଚଉପଦୀ (ଧର୍ମୀୟ ଓ ରାଗାନୁଗା ଭକ୍ତିମୂଳକ) [୪୭୫-୬୭୮]

ଅଛି ଏତେ ମନୋରଥ କରି ରେ, ସହଚରୀ ୪୭୫
ଅତସିଗୋରା, ଆଉ ନ ଚାହାଁ ରେ ୪୭୫
ଅନା ଅନା ଥରେ ଥରେ ରସି ରସିକାରେ ୪୭୮
ଅନା ଅନା ରେ ମୋତେ, ବସୁଧାକୁ ଅନାଅ ନା ରେ ୪୭୯
ଅନା ନା ଗୋ, ଶ୍ୟାମ ଗୋରାକୁ ରାଧେ ୪୭୯
ଅନାରତ ସରସମନା ମୋ ଧନ କିସ ମନାସି ୪୮୧
ଅନୁପମ ହାସି, ତୁ ମୋ ମନୁଁ ଯିବୁ କେହି ରେ ୪୮୧
ଅରଜିବି ପଛେ ଜନ ଅପଖ୍ୟାତିକି ଗୋ ୪୮୨
ଅରଜି ଥିବାର ପ୍ରୀତି ବରଜି ଦିଅନ୍ତି ମନୁ ୪୮୩
ଅଲଂଘ୍ୟ ହେବାରୁ ମୋ ରାଣ ପରାଣବନ୍ଧୁ ଯାହା ଦିନେ ଦିନେ ୪୮୩
ଆଉ ଏ ଚାଟୁ ବାଣୀ କାହିଁକି ? ୪୮୪
ଆଉ କି ସହୀ ସହି କରିବ ଗୋ ୪୮୫
ଆଉ ଗମାର ମାରକୁ କେ ମାନେ ରେ ୪୮୫
ଆଉ ଟିକାକୁ ଗୋ, ଆଉ ଦଣ୍ଡକୁ ଗୋ ୪୮୬
ଆଉ ଟିକାକୁ ଗୋ, କାହିଁକି ଦୁଃଖ-ଭୂଷଣା ୪୮୭
ଆଗୋ ସଖି, ଭଜିବି ମୁଁ ସେ ନୂଆ ନଟକୁ ୪୮୮
ଆଗୋ ପ୍ରିୟ ସଖି, ପ୍ରାଣପ୍ରିୟଙ୍କୁ ପାରିଲୁ ଟିକି ଦେଖି ୪୮୯
ଆଜ ଏ ରୁଷା ରେ, ପାଳିଲି ନାହିଁ କି ତୋର ହୁକୁମ ସୁସାରେ ୪୮୯

**ବିଷୟ** **ପୃଷ୍ଠା**


| | |
|---|---|
| ଆଜ ଏ କି ଗୁମାନ ରେ ଚନ୍ଦ୍ରାନନା | ୪୯୦ |
| ଆଜ ରସବତୀଙ୍କର ରାଜା, କୋଳୁ ନ ଯା'ରେ | ୪୯୧ |
| ଆଜି ମଦନ ସାଜିକି ନାଗର କର ରାଜି ରେ | ୪୯୧ |
| ଆରେ ସଖି, କହିଲୁ କି ଶ୍ୟାମ ଆଗେ ବୁଡ଼ି ସୁଆଗେ | ୪୯୨ |
| ଆରେ ହେମଦେହା, ତୁ ତ କୁହାଉ ରସିକା | ୪୯୩ |
| ଆହା କି ଭାଲେ ଲିହିଥିଲା ଦାରୁଣ ବିହି | ୪୯୩ |
| ଆହା କି ଶୋଭା ତୋ ଠାଣିରେ | ୪୯୪ |
| ଆହା ବଞ୍ଚିବି କେହି ଶରଦରବିନ୍ଦ ନେତ୍ରା ଚାନ୍ଦମୁହିଁ | ୪୯୫ |
| ଆହା ମୃଦୁଦେହା, ବରସ୍ନେହକୁ ତୁ ହୁଡ଼ିଲୁ | ୪୯୬ |
| ଆହେ ବଂଶୀଧର, ତନୁ ଅଙ୍ଗୀର ହେଲାଣି ଅଙ୍ଗୀକାର ହେ | ୪୯୭ |
| ଏ କି ରୁଷା ରେ ଖଞ୍ଜନଦୃଶା | ୪୯୭ |
| ଏ ରଜନୀ ବ୍ରଜବନ୍ଧୁଙ୍କୁ, ଗୋପୀନାଥଙ୍କୁ | ୪୯୮ |
| ଏ ବସନ୍ତ ଦିନେ ଯେ ବସନ୍ତି ମାନେ | ୪୯୯ |
| ଏହି ଦୋଷ ସହି, ମୁଁ ତହିଁରେ ଗୋ | ୪୯୯ |
| ଏହି ସେହି କି ମୋ ସହି, ସତ କହଟି | ୫୦୦ |
| କଙ୍କେଳିମୂଳ ସଙ୍କେତ ଅତି ପ୍ରତିକୂଳ | ୫୦୧ |
| କଦମ୍ବ କାନନରେ କିସ ଦିଶିଲା ରେ | ୫୦୧ |
| କର କ୍ଷମା ରେ, ରତିପ୍ରତିମା ତୁ କର କ୍ଷମା ରେ | ୫୦୨ |
| କରିବ କି ରାଜି ଚନ୍ଦ୍ରାନନୀ ଆଜି | ୫୦୩ |
| କରିବା କି [illegible] ଶ୍ୟାମ ଛାଣିଲାଣି ପୂଣି ଲୋ | ୫୦୪ |
| କଳାକୁଶଳା [illegible] ଏତେ କହିଲା କି ସଖି | ୫୦୫ |
| କଳା ଭଲା ଅଭିସାର, ଲାଘବ ଏକା ସାର ରେ | ୫୦୬ |
| କହ ରେ ଜୀବସଙ୍ଗିନୀ, ତୋ ମନ ଘନଶ୍ୟାମ ରସେ | ୫୦୭ |
| କହ କି ହେଲା, ସହି କି ହେଲା, କପଟ ରୁଷାରେ | ୫୦୭ |
| କହି ନାହିଁ କି ପହିଲୁ ତତେ ରେ | ୫୦୮ |
| କହି ନାହିଁ କି ରେ ପହିଲୁ ତୋତେ ମୋ ଚାଲି | ୫୦୯ |
| କହିବାକୁ ସଙ୍ଗିନୀ ତୋ ଆଗେ ଲୋ | ୫୦୯ |
| କହି ମହତ୍ତ୍ୱ ସିନା ସରିବ ଗୋ | ୫୧୦ |
| କା ମନେ ଥିଲା ଏ କଥା ଗୋ, ଶ୍ୟାମ ଅଙ୍ଗସଙ୍ଗ | ୫୧୧ |
| କା ମନେ ଥିଲା ବନ୍ଧୁ ଏ କଥା ଗୋ, କଳା ଅଙ୍ଗସଙ୍ଗ | ୫୧୨ |
| କାଳିନ୍ଦୀକୂଳକୁ ମୋର ସଙ୍ଗାଳି ନ ଯା'ରେ | ୫୧୩ |
| କାହା ପ୍ରୀତିରେ ମଜ୍ଜି ରହିଲେ ସଜନି | ୫୧୩ |

| ବିଷୟ | ପୃଷ୍ଠା |
| --- | --- |
| କାହିଁକି ଆଜ ସୁନ୍ଦର କାନ୍ଦ, ମଲି ମୁଁ ଆହା | ୫୧୪ |
| କାହିଁକି ନଇଲେ ଶ୍ୟାମ ଏ ଯାମିନୀ ସଖି ରେ | ୫୧୪ |
| କାହିଁକି ମା କାହିଁକି ଗୋ, କାହିଁକି ସେ ଚାହିଁ ରହିଲେ | ୫୧୫ |
| କାହିଁକି ଲପନ-ଇନ୍ଦୁ ଶୁଖାଇଛୁ ରସସିନ୍ଧୁ | ୫୧୬ |
| କାହିଁରେ ମନ ନାହିଁଟି ହେ ମୋହନ | ୫୧୬ |
| କାହିଁରେ ମନ ସହି ପ୍ରସନ୍ନ ହେଉ ନାହିଁ | ୫୧୭ |
| କି ଘେନି ମନେ ରୁଷୁଥାଇ ମତେ ଦିନେ ଦିନେ | ୫୧୭ |
| କାହୁଁ କି ହେଲା ? କେ କି କହିଲା ରେ | ୫୧୮ |
| କିଣା ପରା ନିକୁଞ୍ଜବିଳାସୀ, ରେ ବୀଣାଭାଷୀ | ୫୧୯ |
| କି ନ କରେ ପ୍ରେମରୀତି ରେ ସଜନୀ | ୫୧୯ |
| କି ଭଙ୍ଗୀରେ ଆଇଲା ରେ ନୂଆ ଛଇଳା | ୫୨୦ |
| କି ରେ ବିପଞ୍ଚିବାଣୀ, ବଞ୍ଚାଇଲୁ | ୫୨୧ |
| କିଶୋରୀମଣିଙ୍କ ମନ ମାନରୁ ହେବାରୁ ମ୍ଳାନ | ୫୨୨ |
| କିଶୋରୀ, ଲାଜେ କିପାଁ ପୋତୁ ମଥା | ୫୨୪ |
| କି ସମୟେ ଜରତୀ ଆସି କି ସୁଖେ ଦେଲା କରତି ରେ | ୫୨୫ |
| କେଡ଼େ ସୁନ୍ଦର ତୋ ଠାଣିରେ | ୫୨୫ |
| କେଡ଼େ କଉତୁକୀ କଳା ଚାନ୍ଦ ଲୋ | ୫୨୬ |
| କେତେ କହିବି ଜଞ୍ଜାଳି ରେ ମୁଁ ଅଳି | ୫୨୭ |
| କେ ସରି କି ପ୍ରଭୁପଣେ ନୀଳାଦ୍ରି-କେଶରୀକି | ୫୨୮ |
| କେହି ସରି କି ପ୍ରଭୁପଣେ ନୀଳାଦ୍ରିକେଶରୀକି | ୫୨୮ |
| କୁଞ୍ଜନିଳୟଭୂଷା, ଅଞ୍ଜନପୁଞ୍ଜ ମସାର ଘନକେଶା | ୫୨୯ |
| କୁନ୍ଦକଳି ଦଶନା, ନନ୍ଦନନ୍ଦନ ଶୋଭାକୁ ଅନା ଗୋ | ୫୨୯ |
| କୃପାନିଧି, କଟାକ୍ଷ କର ମୋ ଠାରେ | ୫୩୦ |
| କୃଷ୍ଣଚନ୍ଦ୍ର ବନକୁ ନ ଯିବୁ ରେ ଧନକୁ ମାଗୁଛି ଏତେ | ୫୩୧ |
| ଗଜଗତେ ଏ ଜଗତେ ତୁ କାହାର ଚଂପାଝରା ରେ | ୫୩୧ |
| ଗଲା ତ ଅନୁରାଗ ଜଣା ଯା ଯା ମୋହନ ଯା | ୫୩୨ |
| ଗଲା ସବୁ ସରି ରେ ନବ କିଶୋରି | ୫୩୨ |
| ଗାନ-ପଣ୍ଡିତା ମୋ ସୁଖରାଶି ରେ | ୫୩୩ |
| ଗୁମାନ ବହ ନା ରେ, ମୋହନା ରେ | ୫୩୪ |
| ଗୁମାନ ମାନସୁ ତେଜ ନିଜ ଦାସରେ | ୫୩୫ |
| ଗୋ, ତା ତୁଲେ ହେବ କେ' ସମ | ୫୩୬ |
| ଗୋ ରସନାଟି, କୃଷ୍ଣ ନାମ ଛାଡ଼ି ଆନେ ରସ ନା ଟି | ୫୩୬ |

| ବିଷୟ | ପୃଷ୍ଠା |
|---|---|
| ଗୋ, ସେ କି ଧରି ଦୂତୀ ପାଣି ସହିବ ସେ | ୫୩୭ |
| ଘେନ ଘେନ ମନ ଘନସମ ଶ୍ୟାମଳିଆକୁ | ୫୩୮ |
| ଚ଼ନ୍ଦନ ଗନ୍ଧବହ ବହିଲା ରେ | ୫୩୮ |
| ଚ଼ନ୍ଦ୍ରବଦନା ସ୍ନେହେ କହ ରେ କାହାର ହାରମଣି ତୁ | ୫୩୯ |
| ଚ଼ନ୍ଦନବାସି କୁନ୍ଦବରହାସୀ ରେ | ୫୪୦ |
| ଚ଼ରଣାୟୁଧବୃନ୍ଦ ରଟିଲା ରେ | ୫୪୦ |
| ଚ଼ଳି ହେଲା କି ବଳି-ଶୋଭିନୀ ରେ | ୫୪୧ |
| ଚାହାଁ ନିକୁଞ୍ଜବିଳାସୀକି ରେ | ୫୪୨ |
| ଚାହିଁ କି ନାହିଁ କେହି ମୋହନ ହାସ ଗୋ | ୫୪୩ |
| ଚାହିଁଛି ମାତ୍ର ଶିଖଣ୍ଡ ଲୋ ସଖି ମୁଁ | ୫୪୩ |
| ଚାହିଁ ଜାଣଇ ଗୋ, ନାହିଁ ନାହିଁ ଶ୍ୟାମ ସରି | ୫୪୪ |
| ଚାହିଁଲା ରେ, ମନ ମୋହିଲା ରେ | ୫୪୪ |
| ଚାହିଁବୁ ଯେବେ ଶ୍ୟାମ ଦ୍ୟୁତିକି ରେ | ୫୪୫ |
| ଚ଼ିତ୍ତକୁ ଯେବେ ପାଇଲା କର, ହିତକୁ ସିନା କହୁଛି ଚାକର | ୫୪୬ |
| ଜଗତ କରତା ନାଥ ମିଛେ ହରି ବୋଲାଇଛ | ୫୪୬ |
| ଜଣାଗଲା ତୋ ମରଜି ବୀଣାଜିଣା ବାଣୀ ରେ | ୫୪୭ |
| ଜଣା ଥିଲା କି ମୋତେ ଏ ରୀତି ଗୋ | ୫୪୭ |
| ଜବାଧରା, ରାଜଭଟ-ହାତେ ପଛେ ଯିବା ଧରା ରେ | ୫୪୮ |
| ଜବାଧ[illegible] ଆସ ତାଙ୍କୁ ଅନୁସରି | ୫୪୯ |
| ଜାଣି ନାହିଁ [illegible] ଶ୍ୟାମ [illegible] ସ୍ନେହ ଗୋ | ୫୫୦ |
| ଜାଣିଲି ଠି[illegible] ଏତେ କି [illegible] ରେ, ତୋ ବିବେକ ଠାଣି | ୫୫୦ |
| ଜୀବସଙ୍ଗିନୀ ରେ ଯହିଁ ରିପୁ ଫୁଲଚାପ | ୫୫୧ |
| ଠକଙ୍କ ରୀତିକି ଛାଡ଼ ହେ ଶଠ | ୫୫୨ |
| ତଣ୍ଟାରେ ଜାଣି ଜାଣି ପଡ଼ିଲି ରେ | ୫୫୨ |
| ତମାଳ ନୀଳକେଶା ଗୁମାନେ ରହନା ରେ | ୫୫୪ |
| ତାକୁ ହୁଏ କି ରୁଷି, ତମସ୍ତମାଳ ସ୍ତୋମ ସୁକେଶୀ ରେ | ୫୫୪ |
| ତା ମରଜି ଭରଜି ତୁ ତ ହେଉ ବଣା ରେ | ୫୫୫ |
| ତାର ଗିରେ କି ବିଶ୍ୱାସ, ତାର ସ୍ନେହେ କି ବିଶ୍ୱାସ | ୫୫୬ |
| ତାର ସୁଆଗ ଗୋ, ନୂଆ ଗରଳରୁ ବଳେ | ୫୫୭ |
| ତେଣ୍ଟାରେ ଜାଣି ଜାଣି ପଡ଼ିଲି ରେ | ୫୫୮ |
| ତୁଚ୍ଛା କଥାକୁ ଆନ କାହିଁକି ଏତେ ରେ ବନ୍ଧୁ | ୫୫୯ |

**ବିଷୟ** **ପୃଷ୍ଠା**


ତୁମ୍ଭେ ସିନା ପାର ଗୋ ରଜନୀ-ବିହାର ୫୬୦
ଥରେ ଅନା ରେ ମୋହନା ତେଜି ମାନ ୫୬୦
ଦିଅ ପଛେ ଗାଳି ରେ, ଦୁଃଖୀସଙ୍ଗାଳି ୫୬୧
ଦିନେ ଦିନେ କାହିଁକି ରୁଷେ ଧନ ୫୬୨
ଦେଖ ଦେଖ ସଙ୍ଗାତ, ନନ୍ଦନନ୍ଦନ ଚ଼ନ୍ଦନଯାତ ଲୋ ୫୬୩
ଦେବି ମୁଁ ପରାଣକୁ ବରଜି ଗୋ ୫୬୩
ଦୂର୍ବାଦଳ ଶ୍ୟାମ ହେ, ଦୂର୍ବାଦ ଲଭିବାକୁ କି ୫୬୪
ଧନ ଜାଣନ୍ତି ଗୋ ମନର ଭିତର ଚାଲି ୫୬୫
ଧନ ହେ, ଘନଶ୍ୟାମ ଗୋରା ୫୬୫
ଧରାଶିର ଚ଼ଂପାଝରା ରେ, ଧନ ମୁଁ ତୋ କିଣାଜନ ୫୬୬
ଧନ୍ୟ ହେ ନବକିଶୋର, ସତୀଧୃତି-ଧନ ଚୋର ୫୬୭
ନଚାଇଲା ଯାହା ସେ ଭୂରୁଚାପ ଚ଼ପଳ ଚ଼ମରୀଦୃଶା ୫୬୮
ନବ ନୀରଦ ନୀଳ ଦେହ ମୁଖେ ଚୁମ୍ବନ ଦିଅ ମାଧୋଇ ୫୬୮
ନବୀନା, ତୁ ମୋର ପରିତ୍ରାଣ ରେ ୫୬୯
ନାରୀବରମଣି ନିବାର ସୁନୟନ ବାରିରୁହରୁ ତ ବାରି ରେ ୫୭୦
ନାହିଁ କରି ନାହିଁ ତ ମୁଁ କାହିଁକି ଗୋ ରାଣ ୫୭୧
ନାହିଁ ସୁଷମା ପରି ତୋ ଶୋଭାର ରେ ୫୭୧
ନିକୁଞ୍ଜବିଳାସୀ ହେ, ନିରୂପମହାସୀ ନିଶ୍ଚେ ଗଲା ଭାସି ହେ ୫୭୨
ନିଖିଳ ବିମୋହର ନିଦାନ ତୁ ମୋହର ୫୭୩
ନିନ୍ଦା ନ ଲଭ ସଖି ରେ, ମନ୍ଦାର ଅଧରା ୫୭୩
ନିରତ ମୁଁ ମନେ ମଣୁଛି ରେ ପ୍ରମୋଦ ଗଜେନ୍ଦ୍ରଗତି ୫୭୪
ନିରନ୍ତର ମୁଁ ମନେ ମଣୁଛି ରେ ପ୍ରମୋଦ ଗଜଗତି ୫୭୬
ନିରତେ ମୁଁ ଅଟକୁ ଅଟକୁ ଗୋ, ଗିର ନ ଦେଇ ୫୭୬
ନିଶୀଥରେ ମିଶି ଥରେ ଧନ, ଖେଳିବାଟି ଆଜ ରେ ୫୭୭
ନିହାରହାସୀ ତୁ ଟି ମୋର ସଙ୍ଗାଳି ରେ ୫୭୮
ନିତି ନିତି ନୂତନା ସେ ନାଗରୀମଣି ୫୭୮
ପଚାର କେ ଆଣିଛି ଗଜଗତିକି ସେ ମୋ ଏ ଜଗତୀକି ୫୭୯
ପରମଣି ତ ରମଣୀ ଦେଲୁ କରମଣି ଛାଡ଼ି ରେ ୫୭୯
ପୀରତି ଲଗାଇ ଶ୍ୟାମ, ଦୂର ଦେଶ ତୁ ନ ଯା' ରେ ୫୮୦
ପୋଡୁ ପର ଅନୁରାଗ, ତହୁଁ ଭଲ ତନୁ ତ୍ୟାଗ ଗୋ ୫୮୧
ପ୍ରମଦକୁଞ୍ଜର-ରାଜଗତି ରେ, ତୁ ମୋ ଓଜଗଣ ଏ ଜଗତୀରେ ୫୮୧

| ବିଷୟ | ପୃଷ୍ଠା |
|---|---|
| ପ୍ରାଣ ସଜନୀ, ଘେନି ରାଣକୁ ଗୋ | ୫୮୨ |
| ପ୍ରିୟ ସଖି କରିବି କି ବୁଦ୍ଧି ଗୋ, ଗଲିନି ମୁଁ ଲାଜେ ସଢ଼ି | ୫୮୩ |
| ପ୍ରିୟ ସଜନି ରେ, ମରାଯିବା ପରା ଶ୍ୟାମଗୋରା ପ୍ରୀତି ଘେନି | ୫୮୪ |
| ଫୁଲ ମଲ୍ଲୀହାସୀ ରେ, ସତେ ତୁ କି ସାହସୀ | ୫୮୫ |
| ବନ୍ଧୁ ଅଦୋଷେ ରସନା ରୋଷେ ଧରୁଛି ପଙ୍କଜପାଣି | ୫୮୬ |
| ବନ୍ଧୁଜୀବାଧରା ଭୃଶିର ଝରା ଆରେ | ୫୮୬ |
| ବନ୍ଧୁ ମୋ ଲାବଣ୍ୟସିନ୍ଧୁ କେବଳ ଧନ୍ୟ | ୫୮୭ |
| ବନ୍ଧୁ, ବାରିଲେକ ମୋତେ ଗୋ | ୫୮୭ |
| ବନ୍ଧୁ, ମୋ ମନେ ସ୍ନେହ ନାହିଁ କି ରେ | ୫୮୮ |
| ବନଜାନନୀ ମନ ଜାଣି ତ ଲୀଳା ବିହିଲା ରେ | ୫୮୯ |
| ବରନାଗରୀ, ଆଜ ଥରେ ହେବୁ ମୋ ପରି ରେ | ୫୮୯ |
| ବରନାରି, ଗୁମାନ ମନେ ଧର ନା ରେ | ୫୯୦ |
| ବରଜି ନ ପାରେଁ ଘନଶ୍ୟାମ ପ୍ରୀତି ଗୋ | ୫୯୦ |
| ବଳା ନା ସ୍ନେହ କଳା ନାଗରେ | ୫୯୧ |
| ବଂଶୀଧାରୀ, ସରି ଯିବନି ଜୀବନେ କିଶୋରୀ ହେ | ୫୯୨ |
| ବାଜିବାଭୂଷା ପଦରାଜୀବ ଯୁଗଳରେ | ୫୯୨ |
| ବାରବାର ତୁ ପରିଚାର-ଜନକୁ ଗୋରୀ ନ ମାର | ୫୯୩ |
| ବାଳାବର ରେ, ଶଙ୍ଖକଣ୍ଠି ତୁ ସଙ୍ଖାଳି ମୋର ରେ | ୫୯୪ |
| ବିଧ[illegible] ଧ୍ୟାନ ଗୋ | ୫୯୪ |
| ବିଧାତା[illegible] ଏତେ [illegible] କି ଦଣ୍ଡ ଦେଲୁ ଆଣି | ୫୯୫ |
| ବିଦ୍ୟାଧ[illegible] ଅଭି[illegible]ରା ଦେବୀ ଚଂପାଝରା ରେ | ୫୯୬ |
| ବିଳାସିନୀ ଶିରଗଭା, ବେଶ ବିନା ହେଲେ ବସୁଧାମଣ୍ଡଳେ | ୫୯୬ |
| ବୁଡ଼ି ପ୍ରୀତିରେ, ହୁଡ଼ି ପଡ଼ିଗଲି ପରମାଦେ ଅତି | ୫୯୭ |
| ଭଜ ଭଜ ମନ, ବ୍ରଜମହିଳା ମୋହନକୁ | ୫୯୮ |
| ମଜ ମନ, ମଧୁହାରୀରେ ମଞ୍ଜୁଳ କୁଞ୍ଜବିହାରୀରେ | ୫୯୯ |
| ମନ୍ଦ ବାରଣଗତି କିଶୋରୀବର, ପଦବାରିଜେ ମଣ୍ଡ | ୫୯୯ |
| ମନ୍ଦରାଦ୍ରି ଉରଜା କୁନ୍ଦକଳି କରଜା | ୬୦୦ |
| ମନ୍ଦ ମଳୟାନିଳ ବହିଲା, ଚନ୍ଦ୍ରବଦନା ଦୂରେ ରହିଲା | ୬୦୧ |
| ମନ୍ଦହାସେ ସନ୍ଦେହକୁ ରଖା ଏ ମାନସେ ରେ | ୬୦୧ |
| ମନ ଜମି ଯା ସିନ୍ଧୁଜେମା ପ୍ରାଣଧନେ | ୬୦୨ |
| ମନ ବିନା ତ ନବୀନା ଆନ ସ୍ଥଳେ ନ ଖେଳିଲା ରେ | ୬୦୨ |

**ବିଷୟ** **ପୃଷ୍ଠା**


| | |
|---|---|
| ମନ ବିନା ତ ନବୀନା ନ ଖେଳିଲା ଆନେ | ୬୦୩ |
| ମନ ମଜ୍ଜିଯା' ରେ ବ୍ରଜମହିଳାନାଥରେ | ୬୦୪ |
| ମନୋହାରୀ ହାରି ନ ଯିବା ପରି ଆଚର | ୬୦୫ |
| ମନୋହାରୀ ରେ ନିୟମରେ ତ ମୁଁ ନାହିଁ ହାରି ରେ | ୬୦୬ |
| ମନା ମୁଁ କରୁଥିଲି ଏହାକୁ ଗୋ | ୬୦୭ |
| ମସାରକେଶା ସୁଦୃଶା ଗଲି, କଳାକୁଶଳା କୋମଳା | ୬୦୮ |
| ମାନ ଅବା ଲାଜ ନ ଜାଣିଲି ଆଜ | ୬୦୮ |
| ମାନସ, ତୁ ଭଜ ରେ ଆନ ସବୁ ତେଜ ରେ | ୬୦୯ |
| ମାନସ, ପ୍ରପଞ୍ଚରୁ ବଞ୍ଚି ପଳା | ୬୧୦ |
| ମିତ ଆମ୍ଭ ଶ୍ୟାମବନ୍ଧୁ ଚାଲି କି ରସେ ଗୋ | ୬୧୦ |
| ମିତ, ଏ କିଏ ସେ ଲୋ ମୋ ମନ ରହିଲା ଲାଖି | ୬୧୧ |
| ମିତ, ଚିତ୍ତ ଭିତରେ ମୋହର ଗୋ ଭୀତିରେ ହୋଇଛି ପୂରା | ୬୧୧ |
| ମିତ, ତୁନୀ ହୋ ଲୋ ତୁ ତ ଅନୁଭବୀ ନୋହୁ | ୬୧୨ |
| ମିତ, ହିତ ଯେତେ ତୁ କହିଲୁ ଗୋ | ୬୧୩ |
| ମିଶିଲୁ ଯେ ଆଜ ନିଶିରେ ଶଶୀମୁଖି | ୬୧୪ |
| ମୁନିମୋହନା, ତୁନି ହୁଅ ନା | ୬୧୪ |
| ମୁଁ ହାରିଲି ହେଉ ଏତିକି ଗୋ | ୬୧୫ |
| ମୋତେ ଯେ ମହିଳା ମୋହିଲା ସତେ କି ମୋ ଭାଗ୍ୟ | ୬୧୬ |
| ମୋ ଧନଟି, ଭସାଇ ଦିଅଇ ସୁଖେ | |
| ମୋ ବନ୍ଧୁଟି ବାଇ ହୋଇଯାଏ ସିନା | ୬୧୭ |
| ମୋ ଭାଲେ ଥିଲା କି ଲିହି | ୬୧୮ |
| ମୋହିଲା ରେ, ବରଂ ମହିଳା ରେ | ୬୧୯ |
| ଯାଉଛି ମା, ଆଉ ନ ପାରେ ତାକୁ ଟାକି | ୬୧୯ |
| ଯା ଯା ମୋ ପାଶରୁ ସେ ଶ୍ୟାମନାଗର ନଟ ନାମ ନ ଧର | ୬୨୦ |
| ଯେବେ ନବଘନ ଶ୍ୟାମ ବଂଶୀସ୍ୱନ ନିଶୀଥରେ ଥରେ | ୬୨୦ |
| ରତାନ୍ତରେ ନତାନ୍ତରେ ହେଲେ କେଡ଼େ ଅଳି ଲୋଲ ଗୋ | ୬୨୧ |
| ରତି ମୂରତି ଶ୍ୟାମପ୍ରୀତିରେ ନ ଜାଣୁ ପରା | ୬୨୧ |
| ରସଦାର ସଦା ନଉକରିକି ମୁଁ କରିଅଛି ମୂଳ ଫନ୍ଦା | ୬୨୨ |
| ରସନିଧି ହେ, ଭଲ ପ୍ରୀତି କଲ ଭୁଲାଇ | ୬୨୩ |
| ରସିକାମଣ୍ଡଳୀ ମଥାଝରା ରେ | ୬୨୪ |
| ରସିଲା, ମୋ କୋଳେ ଧନ ବସିଲା ରେ | ୬୨୪ |

| ବିଷୟ | ପୃଷ୍ଠା |
|---|---|


| | |
|---|---|
| ରହି ବିଦେଶରେ ଦଇବ ବଶରେ ବଲ୍ଲଭ ନୃପକୁମର | ୬୨୫ |
| ରାଜି ନ କଲା ଆଜି ପ୍ରବୀଣା ହେ | ୬୨୬ |
| ରାଣ ଅଛିଟି ରେ, କିଶୋରୀ ପ୍ରମଦାବର | ୬୨୭ |
| ରାତି ପାହିଗଲା ହେ ହାତୀ, ହୁଅ ଅପହୃତ | ୬୨୮ |
| ରାଧେ, ଅନଙ୍ଗ ରଙ୍ଗ ରଣକୁ ଆଜ ସାଜ ରେ | ୬୨୯ |
| ରାଧେ ରସିକାରାଜ, ତୋ ପ୍ରବୀଣାପଣ ଜଣାଯିବ ଆଜ | ୬୩୦ |
| ରାମାରାଜ ରେ ସତେ ରୁଷି ନାହୁଁ ତୁ ଯେ ଆଜ ରେ | ୬୩୦ |
| ରାମା ରଥାଙ୍ଗ ଦଂପତି ରତେ ରସିଲା ରେ | ୬୩୧ |
| ରେ କିଶୋରୀ, ତୁ ଲୋଡୁଅଛୁ ମାଡ଼କୁ | ୬୩୨ |
| ରେ କିଶୋରୀ, ନ ସହିବୁ କେ ସହିବ | ୬୩୩ |
| ରେ କିଶୋରୀ, ପଛେ ଛୁଇଁବୁ ମୋ ତନୁ | ୬୩୩ |
| ରେ କିଶୋରୀ, ରୁଷିବାର ସିନା ଜାଣୁ | ୬୩୪ |
| ରେ କିଶୋରୀ, ଲାଜେ ପୋତୁ କେତେ ମଥା | ୬୩୫ |
| ରେ ବନ୍ଧୁଆ, ଅଛି ପରା ଅବଧାନେ | ୬୩୫ |
| ରେ ବନ୍ଧୁ, ଜଣା ତ ନାହିଁ ଚାକିରି | ୬୩୬ |
| ରେ ମୋ ବନ୍ଧୁ, ଶିଶୁବଣାମୃଗଦୃଶା | ୬୩୭ |
| ରେ ରମଣୀ, ଗୁରୁଜନେ ଯେବେ ଭୀତି | ୬୩୮ |
| ରେ ସଙ୍ଗାତ, କାହା ମନେ ଥିଲା ଯେହା | ୬୩୮ |
| [illegible] ମୋ ସଙ୍କଳପ | ୬୩୯ |
| ରେ [illegible] ଏତେ [illegible]ଶିଥିଲା ଏ କଥା | ୬୪୦ |
| ରେ [illegible] ବୋଲେ ବସନ୍ତି ମାନେ | ୬୪୦ |
| ରେ ସଙ୍ଗାତ, ତୁ ତ ଅନୁଭବୀ ନୋହୁ | ୬୪୧ |
| ରେ ସଙ୍ଗାତ, ଦରିଦ୍ରନିଧିଙ୍କ ଦ୍ୟୁତି | ୬୪୨ |
| ରେ ସଙ୍ଗାତ, ନିନ୍ଦିଲେ ନିନ୍ଦିବେ ଲୋକେ | ୬୪୨ |
| ରେ ସଙ୍ଗାତ, ପ୍ରୀତିରୁ ନାହିଁ ମାଦକ | ୬୪୩ |
| ରେ ସଙ୍ଗାତ, ମକରଧ୍ୱଜ ବଦନେ | ୬୪୪ |
| ରେ ସଙ୍ଗାତ, ରୁଷି ମୁଁ ବସିଲି ଗେଲେ | ୬୪୫ |
| ରେ ସଙ୍ଗାତ, ସମ୍ଭାଳି ନ ପାରେ ଆଉ | ୬୪୫ |
| ରେ ସଙ୍ଗାତ, ସରିଗଲି ଲାଜେ ଆଜ | ୬୪୬ |
| ରେ ସଙ୍ଗାତ, ସେ ସିନା ବସିବ ରୁଷି | ୬୪୭ |
| ରେ ସଙ୍ଗିନୀ, କାହାର ନୁହଁଇ କେହି | ୬୪୭ |

| ବିଷୟ | ପୃଷ୍ଠା |
|---|---|
| ରେ ସଜନୀ, ଆଜ ତୋର ଏ କି ରୀତି | ୬୪୮ |
| ରେ ସୁମୁଖୀ, ପଚାରୁଚୁ କେଉଁ ଭଲ | ୬୪୮ |
| ଲାଗିବାର ବାର ମୁଁ ଗହଣେ ଚନ୍ଦ୍ରମୁଖ ହେ | ୬୪୯ |
| ଶିଖଣ୍ଡମଣ୍ଡନ କି ବିହିଲେ ଗୋ | ୬୫୧ |
| ଶ୍ୟାମ-ଅପବାଦ ଯେବେ ହେଲା ହେଉ ମା | ୬୫୧ |
| ଶ୍ୟାମ କେଡ଼େ ଅବୁଝାଣ ତା ଲାଗି ଯିବ ଏ ପ୍ରାଣ ଗୋ | ୬୫୨ |
| ଶ୍ୟାମ ତୁ ଏଣିକି ଛାଉଲି ଛାଡ଼ | ୬୫୩ |
| ଶ୍ୟାମ ସମ କମନୀୟ ନାହିଁ ଆଉ | ୬୫୪ |
| ଶ୍ୟାମ ସୁଆଗ ଲୋଡ଼ୁ କାହିଁକି | ୬୫୪ |
| ଶ୍ୟାମସୁନ୍ଦର ତୁ ଶୁଖିଲା ସୁଆଗ ଲଗା ନା | ୬୫୫ |
| ଶ୍ୟାମ ହେ, ସଙ୍ଗେ କାହିଁକି ଲାଗ | ୬୫୫ |
| ଶ୍ରୀନୀଳ ଶିଖରୀ-କନ୍ଦର-ସଞ୍ଚାରୀ କଳା କେଶରୀ ହେ | ୬୫୬ |
| ସଖି, କେ ସେ ନୀପମୂଳେ ଗୋ | ୬୫୭ |
| ସଖି, ତୁ ତୁନି ହୁଅ ରେ ତୁ ତ ଅନୁଭବୀ ନୋହୁ | ୬୫୭ |
| ସଖି, ଦେଖିଯିବା ଚାଲ ଗୋ ପ୍ରସୂନ ପୁଞ୍ଜେ ନୀପ ନିକୁଞ୍ଜେ | ୬୫୮ |
| ସଖି, ସେ କି ପିନ୍ଧିଥିଲା ନୀଳ ପାଟକୁ | ୬୫୮ |
| ସଙ୍ଗାତ, ଭୂଷି ବସୁଥିଲ ପରା | ୬୫୯ |
| ସଙ୍ଗାତ ରେ, ସରି ତ ଗଲାନି ସବୁ ସୁଖ | ୬୬୦ |
| ସଞ୍ଚାରିଣୀ ପାଞ୍ଚାଳିକା କାଞ୍ଚନମୟୀ ରେ ପ୍ରଲମ୍ବ କୁଞ୍ଚିତକେଶା | ୬୬୧ |
| ସଜନୀ, ଆଜ ରଜନୀରେ ନଇଲେ ବ୍ରଜମୋହନ | [illegible] |
| ସଜ ହୋଇ ଥା' ରେ, ଗଜରାଜଗତି ଆଜ | ୬୬୩ |
| ସତେ କି ବିଧି ଏହା କରିବ ଗୋ | ୬୬୩ |
| ସରିଗଲା ଯେ ଲାଜେ ରହି ନ ପାଁରେ ସହୀ-ସମାଜେ | ୬୬୪ |
| ସହଚରୀ, ଅଛି ଏତେ ମନୋରଥ କରି ରେ | ୬୬୫ |
| ସାଜ ରାଜହଂସଗତି ରାତିକି ରେ | ୬୬୬ |
| ସେ ମୋହନ ସ୍ନେହ ରେ, ସହଚରି, କି ପଦାର୍ଥ କହ ରେ | ୬୬୬ |
| ସ୍ନେହେ କହ ରେ ଚନ୍ଦ୍ରବଦନା କାର ହାରମଣି ମଣି ତୁ | ୬୬୭ |
| ସୁଖସଦନା, ମୋ ଏ ଦୋଷ ପରା | ୬୬୮ |
| ସୁନୟନା ତୁ ଅନା କୁଞ୍ଜପୁଞ୍ଜ ନିକଟକୁ ରେ | ୬୬୮ |
| ସୁନାଗୋରି ତୁ ଏକା ସିନା ସୁନାଗରୀ ଶିର ଫୁଲବାସନା | ୬୬୯ |
| ସ୍ୱପ୍ନେ ଦେଖିଛି ପରା ସଖି ତୋତେ ଏ କି ପରଂପରା | ୬୬୯ |

**ବିଷୟ** **ପୃଷ୍ଠା**


ହଇରାଣ କାହିଁକି ଏତେ ଆଉ ହଇରାଣ ନ କର ମୋତେ ୬୭୦
ହରିତୁଲେ କରିବୁ ଯେ ପ୍ରୀତି ମୋ ଅଭିନ୍ନା ରେ ୬୭୧
ହସି ମୋତେ ଅନା ରେ ଅସୀମ ଲାବଣ୍ୟନିଧି ୬୭୧
ହା ନିତମ୍ବିନୀ ମୋ ବାରବାନି-ସୁନା ରେ ୬୭୨
ହେ ଧରଧର ଏବେ କରୁଣା କରୁଣାକର କର ୬୭୩
ହେ ନବ ଯୁବତୀ-ହୃଦୟବିହାରୀ ମନମୋହନ ୬୭୪
ହେ ବଂଶୀପାଣି, ଏବେ ହେଉ ଶ୍ରୀଛାମୁରୁ ମେଲାଣି ହେ ୬୭୪
ହେ ରସିକେ, କି ବର୍ଣ୍ଣିବ ତାହା କବି ୬୭୫
ହେଲେ କି ହେବ ଗୋ ନୂଆ ପରା ସେ କିଶୋର ୬୭୬
ହେଲା ତୋ ଅନୁରାଗ ଏଥର ଯା' ମୋହନ ଯା' ୬୭୭
କ୍ଷମାନିଧି ନିରୂପମା, ଏପରି ଗୁରୁ ଗୁମାନ ସରଜି ୬୭୮

୮. ହାସ୍ୟକଲ୍ଲୋଳ (ଗଦ୍ୟ କଥା) [୬୮୧-୬୯୬]

୯. **ପରିଶିଷ୍ଟ : ଚଢ଼ଉପଦୀ**
କଳି ନୁହଁଇ ଯେ ନଳୀନବାସୀ ନିବାସ
କାହିଁକି ରେ, ମନେ ନାହିଁକି ରେ
ନିଦ ନାହିଁଟି ନଟବରକୁ ଗୋ

# ପ୍ରକାଶକଙ୍କ ନିବେଦନ

ଏହା ପୂର୍ବରୁ କବିସୂର୍ଯ୍ୟ ବଳଦେବ ରଥଙ୍କର କାବ୍ୟକୃତିଗୁଡ଼ିକୁ ଏକତ୍ର ସଙ୍କଳନ କରି କବିସୂର୍ଯ୍ୟ-ଗ୍ରନ୍ଥାବଳୀ ପ୍ରକାଶିତ ହୋଇଛି ଏବଂ ଏବେ ତାହା ପାଠକ-ପାଠିକାମାନଙ୍କର ବିଶେଷ ଉପଲବ୍ଧ ହେଉ ନାହିଁ । ଉଲ୍ଲେଖଯୋଗ୍ୟ ଯେ ଏହା କବିସୂର୍ଯ୍ୟଙ୍କ ବିଭିନ୍ନ କାବ୍ୟକୃତିର ପୂର୍ଣ୍ଣାଙ୍ଗ ସଙ୍କଳନ ନୁହେଁ । କବିସୂର୍ଯ୍ୟଙ୍କ ମୂଳ ପାଣ୍ଡୁଲିପି ସମୟକ୍ରମେ ଭିନ୍ନ ଭିନ୍ନ ଲେଖନକାରଙ୍କ ଲେଖନୀର ଅସାବଧାନତା ଯୋଗୁ ପ୍ରମାଦଶୂନ୍ୟ ହୋଇ ରହି ନ ଥିବାରୁ ତାକୁ ଆଧାର କରି ମୁଦ୍ରିତ କାବ୍ୟଗୁଡ଼ିକରେ ତ୍ରୁଟି ରହିଯାଇଛି । ଫଳତଃ ଏହି ସବୁ କାବ୍ୟର ସମାହାରରେ ପ୍ରକାଶିତ ଗ୍ରନ୍ଥାବଳୀରେ ମଧ କିଛି ତ୍ରୁଟି ରହିବା ସ୍ୱାଭାବିକ ।

ସାହିତ୍ୟାନୁରାଗୀ, ରସପିପାସୁ ପାଠକ-ପାଠିକା, ସାହିତ୍ୟର ନିଷ୍ଠାବାନ ଛାତ୍ର-ଛାତ୍ରୀ, ଗବେଷକ-ଅଧ୍ୟାପକମାନଙ୍କର ଅଧ୍ୟୟନ-ଗବେଷଣାକୁ ସରଳ ତ୍ରୁଟିଶୂନ୍ୟ କରିବାକୁ କବିସୂର୍ଯ୍ୟଙ୍କ ସମସ୍ତ କାବ୍ୟକୃତିର ସମ୍ପାଦନା ଯେ ଏକାନ୍ତ ଆବଶ୍ୟକ, ତାହା ହୃଦୟଙ୍ଗମ କରି ଏ ଦିଗରେ ଆମେ ଅଗ୍ରସର ହେବାକୁ ନିଷ୍ପତ୍ତି ନେଲୁଁ ।

କବିସୂର୍ଯ୍ୟଙ୍କ କାବ୍ୟକୃତିର ସଂପାଦନା କାର୍ଯ୍ୟ କରିନାକେ [illegible] ବେହେରା ଜଣେ ଯୋଗ୍ୟ ବ୍ୟକ୍ତି ହେବେ ବୋଲି ମନେକରି [illegible] ଲାଗି ଅନୁରୋଧ କଲୁଁ । ସେ ନିଜର କାର୍ଯ୍ୟବ୍ୟସ୍ତତା ଓ ଅସୁସ୍ଥ [illegible] ସହକାରେ ଆମ ଅନୁରୋଧ ରକ୍ଷାକରି ଏ ଦାୟିତ୍ୱ ଗ୍ରହଣ କଲେ । ତା'ର ଫଳଶ୍ରୁତି ରୂପେ ଆମେ ପ୍ରକାଶ କରୁଛୁଁ କବିସୂର୍ଯ୍ୟ ଗ୍ରନ୍ଥାବଳୀର ଯଥାସମ୍ଭବ ଶୁଦ୍ଧ ଓ ପୂର୍ଣ୍ଣାଙ୍ଗ ସଂସ୍କରଣ । ଏହି ଅବକାଶରେ ଡକ୍ଟର ବେହେରାଙ୍କର ଆନ୍ତରିକ ନିଷ୍ଠା ଓ ଅକ୍ଳାନ୍ତ ପରିଶ୍ରମ ନିମନ୍ତେ କୃତଜ୍ଞତା ଜଣାଉଛୁ ।

# ଗ୍ରନ୍ଥାବଳୀର ଭୂମିକା

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟମ-ନବମ ଦଶକ ମଧ୍ୟରେ କବିସୂର୍ଯ୍ୟ ବଳଦେବ ରଥ ଜନ୍ମଗ୍ରହଣ କରିଥିଲେ ଏବଂ ଊନବିଂଶ ଶତାବ୍ଦୀର ପଞ୍ଚମ ଦଶକ ମଧ୍ୟରେ ଗତାସୁ ହୋଇଥିଲେ । ତାଙ୍କର ନିର୍ଦ୍ଦିଷ୍ଟ ଜନ୍ମ-ମସିହା ଓ ମୃତ୍ୟୁ-ମସିହା ସମ୍ପର୍କରେ ପଣ୍ଡିତମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଏ । ପଣ୍ଡିତ କୃଷ୍ଣମଣି ଦାସ ବଳଦେବଙ୍କ କାଳ ୧୭୮୯-୧୮୪୫ ମସିହା ବୋଲି ନିରୂପଣ କରିଥିବା ବେଳେ ଗବେଷକ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ତାହାକୁ ୧୭୭୯-୧୮୪୦ ମସିହା ବୋଲି ଗ୍ରହଣ କରିଛନ୍ତି ।

କବିସୂର୍ଯ୍ୟ ଆଧୁନିକ ଯୁଗରେ ବା ଇଂରେଜ ରାଜତ୍ୱରେ ଜୀବନ ନିର୍ବାହ କରିଥିଲେ । ଏହି ଇଂରେଜ ରାଜତ୍ୱରେ ତାଙ୍କର ସାହିତ୍ୟ ସାଧନା ପରିଚାଳିତ ହୋଇଥିଲା । ତଥାପି ତାଙ୍କୁ ପୂରାପୂରି ଆଧୁନିକ ଯୁଗର କବି ବୋଲି ଅଭିହିତ କରିହେବ ନାହିଁ । କବିବର ରାଧାନାଥଙ୍କୁ ଯେଉଁ ଅର୍ଥରେ ଆମେ ଆଧୁନିକ କବି ଭାବରେ ଚିହ୍ନିତ କରିଥାଉଁ, ଠିକ୍ ସେହି ଅର୍ଥରେ କବିସୂର୍ଯ୍ୟ ଆଧୁନିକ ହୋଇପାରିବେ ନାହିଁ । ତଥାପି କବିସୂର୍ଯ୍ୟଙ୍କର ସାହିତ୍ୟ ସୃଷ୍ଟିରେ ଆଧୁନିକତାର କେତେକ ଲକ୍ଷଣ ପ୍ରକଟିତ ହୋଇଥିବାର ଦେଖାଯାଏ । ରାଧାନାଥଙ୍କ ସାହିତ୍ୟ-ସୃଷ୍ଟି ପାଶ୍ଚାତ୍ୟାନୁଗ କେତେକ ଆଧୁନିକ ଦୃଷ୍ଟିକୋଣ ଘେନି ଭଞ୍ଜ-ସାହିତ୍ୟ-ଧାରାର ନବୀକରଣ ବା ସରଳୀକରଣ ବୋଲି ସମୀକ୍ଷକମାନଙ୍କ ମଧ୍ୟରେ ଏକ ମତ ପ୍ରଚଳିତ ଅଛି । ପୁଣି ରାଧାନାଥ, ଫକୀରମୋହନ, ମଧୁସୂଦନ, ଗଙ୍ଗାଧର ପ୍ରମୁଖ ଆଧୁନିକ ଯୁଗର କବିମାନଙ୍କ ସାହିତ୍ୟରେ ଭକ୍ତିଭାବ ଓ ଧର୍ମୀୟ ଚେତନା ପ୍ରାଚୀନ କବିମାନଙ୍କର ଧର୍ମୀୟ ଚେତନାଠାରୁ ବିଶେଷ ଦୂରବର୍ତ୍ତୀ ନୁହେଁ । ତେଣୁ କବିସୂର୍ଯ୍ୟ ବଳଦେବଙ୍କ ସାହିତ୍ୟ - ସୃଷ୍ଟିରେ ଆଧୁନିକ ଯୁଗ ସାହିତ୍ୟର ଅଙ୍କୁରୋଦ୍‌ଗମ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କବିସୂର୍ଯ୍ୟ ଏକ ଯୁଗସନ୍ଧି କାଳରେ ଲେଖନୀ ଧାରଣ କ[illegible] ଯାହାକୁ [illegible] ଅର୍ଥରେ [illegible] ସେ ଯୁଗୀୟ ପରମ୍ପରା ଅନୁସରଣ କରିଛନ୍ତି ସତ୍ୟ; କିନ୍ତୁ [illegible] ଶର [illegible] ରଖିବା [illegible] କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ସେ ଆମର [illegible] ଆଧୁନିକ ସାହିତ୍ୟ ମଧ୍ୟରେ ଏକ ସଫଳ ଭାବ-ସମ୍ବାହିକା ସଂଯୋଗସେତୁ ରୂପେ କାର୍ଯ୍ୟ କରିଛନ୍ତି । ତାଙ୍କର ସାରସ୍ୱତ ସମ୍ପଦ ଆଧୁନିକ ସାହିତ୍ୟର ଉଦୟାଚଳରେ ପ୍ରଥମ ଅରୁଣାଲୋକ ।

ଗଞ୍ଜାମର ବଡ଼ଖେମୁଣ୍ଡିଠାରେ ପଣ୍ଡିତ ଉଜ୍ଜ୍ୱଳ ରଥଙ୍କ ଔରସରୁ କବିସୂର୍ଯ୍ୟଙ୍କ ଜନ୍ମ । ତାଙ୍କର ମାତା ଥିଲେ ଗଞ୍ଜାମ ଆଠଗଡ଼ର ତାନ୍ତ୍ରିକ ପଣ୍ଡିତ ତ୍ରିପୁରାରି ଓତାଙ୍କର କନ୍ୟା । ପିତା ଉଜ୍ଜ୍ୱଳ ରଥ ଥିଲେ ଜଣେ ବହୁଶାସ୍ତ୍ରଦର୍ଶୀ ସଂସ୍କୃତ ପଣ୍ଡିତ । ସେ ସଂସ୍କୃତରେ 'ସଜ୍ଜନାନନ୍ଦ ଚମ୍ପୂ', 'ରାମଚମ୍ପୂ' ପ୍ରଭୃତି ରଚନା କରି ବଡ଼ଖେମୁଣ୍ଡି ରାଜସଭାରେ ସଭାପଣ୍ଡିତ ରୂପେ ସ୍ଥାନ ପାଇଥିଲେ ଏବଂ ରାଜାଙ୍କ ପ୍ରଦତ୍ତ 'କବିରାଜ ବ୍ରହ୍ମା' ଉପାଧି ଗ୍ରହଣ କରିଥିଲେ । ପିତାଙ୍କର କବିତ୍ୱ ଓ ପାଣ୍ଡିତ୍ୟରେ ବଳଦେବ ବାଲ୍ୟକାଳରୁ ଅନୁପ୍ରାଣିତ ହୋଇଥିଲେ । କିଶୋର ବୟସରେ ମାତାଙ୍କୁ ହରାଇ ସେ ଆଠଗଡ଼ରେ ଅଜାଙ୍କ ଘରେ ଯାଇ ରହିଲେ ଏବଂ ଅଜା ପଣ୍ଡିତ ତ୍ରିପୁରାରି ଓତାଙ୍କଠାରୁ ଶିକ୍ଷାଦୀକ୍ଷା ପ୍ରାପ୍ତ ହେଲେ । ପଣ୍ଡିତ ଓତାଙ୍କର ତନ୍ତ୍ର-ସାଧନାର ପ୍ରଭାବ ବଳଦେବଙ୍କ ଉପରେ ପଡ଼ିଥିବାର ଜଣାପଡ଼େ । ନିଜର ବାପା ଓ ଅଜାଙ୍କ

ଯତ୍ନରୁ ବଳଦେବ ସଂସ୍କୃତ, ଓଡ଼ିଆ, ତେଲୁଗୁ ଆଦି ଭାଷା ଶିକ୍ଷା କରି ସେହି ଭାଷାରେ ଲିଖିତ ବିଭିନ୍ନ ଗ୍ରନ୍ଥ ଅଧ୍ୟୟନପୂର୍ବକ ଅଳ୍ପ ସମୟ ମଧ୍ୟରେ ବହୁଶାସ୍ତ୍ରଦର୍ଶୀ ହୋଇ ପାରିଥିଲେ । ଏହି ବହୁଶାସ୍ତ୍ରଦର୍ଶିତା ପରବର୍ତ୍ତୀ କାଳରେ ତାଙ୍କ ସାହିତ୍ୟ-ସାଧନାର ସହାୟକ ହୋଇଥିଲା ।

ବଳଦେବ ପ୍ରାୟ ୧୫ ବର୍ଷ ବୟସରେ ପୁରୀ-ନିବାସୀ ରାମକୃଷ୍ଣ ମିଶ୍ରଙ୍କ କନ୍ୟା ରତ୍ନମଣି ଦେବୀଙ୍କୁ ବିବାହ କରିଥିଲେ । ବିବାହର ଅଳ୍ପଦିନ ପରେ ପିତା ଉଜ୍ଜ୍ୱଳ ରଥଙ୍କର ପରଲୋକ ହୋଇଯିବାରୁ ସେ ଜୀବିକାର୍ଜ୍ଜନ ଉଦ୍ଦେଶ୍ୟରେ ସପରିବାର ବଡ଼ଖେମୁଣ୍ଡିରୁ ଯାଇ ଜଳନ୍ତରରେ ବସବାସ କରିବାକୁ ଲାଗିଲେ (ଜଳନ୍ତର ଆମ ରାଜ୍ୟର ବିଚ୍ଛିନ୍ନାଞ୍ଚଳ—ଏବେ ଆନ୍ଧ୍ର ପ୍ରଦେଶରେ) । ସେଠାକାର ତତ୍କାଳୀନ ରାଜା ରାମଚନ୍ଦ୍ର ଛୋଟରାୟ ଜଣେ ଗୁଣଗ୍ରାହୀ ବ୍ୟକ୍ତି ଥିଲେ ଏବଂ ବଳଦେବଙ୍କ ସର୍ଜ୍ଜନା ଶକ୍ତିର ସନ୍ଧାନ ପାଇ ତାଙ୍କୁ କାବ୍ୟକବିତା ରଚନା ପାଇଁ ଉତ୍ସାହିତ କଲେ ।

ବଳଦେବ ପ୍ରଥମେ କ୍ଷୁଦ୍ର କବିତା ଲେଖି ରାଜା ରାମଚନ୍ଦ୍ର ଛୋଟରାୟଙ୍କ ପୃଷ୍ଠପୋଷକତାରେ ସାହିତ୍ୟ ସାଧନାର ସୂତ୍ରପାତ କଲେ । ସାଙ୍ଗୀତିକ ଛନ୍ଦରେ ବହୁ କବିତା ରଚନା କରି ସେ ଜଳନ୍ତର ରାଜାଙ୍କ ନାମରେ ଭଣିତା କରିଛନ୍ତି । ଏହି ସମୟରେ ରାଜା ଛୋଟରାୟଙ୍କ ପରାମର୍ଶକ୍ରମେ ସେ ଭଞ୍ଜୀୟ ରୀତିରେ 'ଚନ୍ଦ୍ରକଳା' କାବ୍ୟ ରଚନା କରିଥିଲେ । ରାଜା ରାମଚନ୍ଦ୍ର ଛୋଟରାୟଙ୍କ ନାମରେ ଭଣିତା କରାଯାଇଥିବା ଏହି କାବ୍ୟଟି ପୂର୍ଣ୍ଣାଙ୍ଗ ହୋଇପାରି ନାହିଁ ।

ଜଳନ୍ତରର ରାଜା ଛୋଟରାୟ ବଳଦେବଙ୍କୁ 'କବିସୂର୍ଯ୍ୟ' ଉପାଧିରେ ଭୂଷିତ କରିଥିଲେ ଏବଂ ପରେ ତାଙ୍କୁ ରାଜ୍ୟର ଦେବାନ୍ ରୂପେ ନିଯୁକ୍ତ କରିଥିଲେ । ଦେବାନ୍ ଭାବରେ ବଳଦେବ ପ୍ରଶାସନିକ ଦକ୍ଷତା ଦେଖାଇ ଜଳନ୍ତରରେ ସୁଶାସନ ପ୍ରତିଷ୍ଠା କରିଥିଲେ ଏବଂ ପ୍ରଜାହିତକର କାର୍ଯ୍ୟମାନ କରିଥିଲେ । ରାଜ୍ୟରେ କୃଷିର ଉନ୍ନତି, ରାଜା ଛୋଟରାୟଙ୍କ ସଭାପତିତ୍ୱରେ 'ଉତ୍କଳାଚାର' ସଭା ସ୍ଥାପନ ଏବଂ ମଞ୍ଜୁଷା- ଜଳନ୍ତର ମଧ୍ୟରେ ଥିବା ବିବାଦ ଭଞ୍ଜନ କରି ଦୁଇ ରାଜାଙ୍କ ମୈତ୍ରୀ ପ୍ରତିଷ୍ଠା ପ୍ରଭୃତି ତାହାର ପ୍ରମାଣ । ତାହା ସଂଗେ ସଂଗେ "କବିସୂର୍ଯ୍ୟ" [illegible]ପାଧି ଲାଗି ନିଜକୁ ଯୋଗ୍ୟ କରିବା ଉଦ୍ଦେଶ୍ୟରେ ବଳଦେବ ନିଷ୍ଠାପର [illegible] ଲାଇଥିଲେ ।

[illegible] ଏତେ [illegible] ବିତାଇଲା ପରେ କବିସୂର୍ଯ୍ୟ ବଳଦେବ ଗଞ୍ଜାମର ଆଠଗଡ଼ [illegible] ସେଠାରେ ରାଜା ବାଲୁଙ୍କେଶ୍ୱର ହରିଚନ୍ଦନ ଜଗଦ୍ଦେବଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ରାଜା ହରିଚନ୍ଦନ ଜଗଦ୍ଦେବ ବୈଷ୍ଣବ ଥିଲେ । ତେଣୁ କବିସୂର୍ଯ୍ୟ ରାଧାକୃଷ୍ଣ ଲୀଳାକୁ ଭିତ୍ତି କରି ବହୁ ଚଉପଦୀ ଏବଂ ସୁପରିଚିତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଏଠାରେ ରଚନା କରି ରାଜାଙ୍କ ନାମରେ ଭଣିତା କରିଥିଲେ । କେତେକ ବ୍ୟଙ୍ଗ କବିତା, ଢ଼ୁମ୍ପା, ଚଉତିଶା, ମନାସ ଗୀତ, ହାସ୍ୟକଲ୍ଲୋଳ ମଧ୍ୟ ସେ ଏହିଠାରେ ରଚନା କରିଥିବାର ଜଣାପଡ଼େ । ଆଠଗଡ଼ରେ ପ୍ରାୟ ଦଶବର୍ଷ ରହଣି ମଧ୍ୟରେ କବିସୂର୍ଯ୍ୟ ବଳଦେବ ପୁରୀ ଯାଇ ତତ୍କାଳୀନ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ (ରାଜତ୍ୱ କାଳ ୧୭୯୫-୧୮୧୭) ରାଜସଭାରେ ସମ୍ମାନ ଓ ସ୍ୱୀକୃତି ଲାଭ କରିଥିଲେ । ମୁକୁନ୍ଦଦେବ ବଳଦେବଙ୍କ କବିପ୍ରତିଭା ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ୧୮୧୫ ମସିହାରେ ତାଙ୍କୁ 'କବିସୂର୍ଯ୍ୟ ରାୟଗୁରୁ ମହାପାତ୍ର' ଉପାଧିରେ ଭୂଷିତ କରି ସନନ୍ଦ ଦେଇଥିଲେ । ସନନ୍ଦଟିର ନକଲ ଏଠାରେ ଉଦ୍ଧାର କରାଗଲା—

''ଶ୍ରୀ ଶ୍ରୀ ମୁକୁନ୍ଦଦେବଙ୍କ ୨୩ ଅଙ୍କ ବିଛା ମାସ ୧୫ ଦିନ ଶ୍ରୀ ପୁରୁଷୋତ୍ତମ ବଡ଼ ଦେଉଳ ସମସ୍ତ ପରିଛାଙ୍କୁ, ସମସ୍ତ କାର୍ଯ୍ୟମାନଙ୍କୁ, ସମସ୍ତ ସେବକମାନଙ୍କୁ, ୧୮ ଗଡ଼ଜାତର ମହାନାୟକମାନଙ୍କୁ, ଷୋଳ ଶାସନ ମହାଜନମାନଙ୍କୁ, ସାତ ସାଇ ନାୟକମାନଙ୍କୁ ମଧ୍ୟ ଚିଟାଉ, ଆଠଗଡ଼ ନିବାସୀ ବଳଦେବ ରଥଙ୍କୁ କବିସୂର୍ଯ୍ୟ ରାୟଗୁରୁ ମହାପାତ୍ର ପଦ, ସୁନାବେଣ୍ଟ ଚାମର, ଢୋଡ଼ା ମଶାଲ, ଘୋଷରା ପାବଚ୍ଛ, ଯାଉଁଳି କବାଟ, ମଗରମୁହାଁ ପାଲିକୀ ଓ ଚାଦର, ଆଡ଼େଣୀ, ତ୍ରାସ, ପୃଥକ୍ ନମସ୍କାର, ଖିଜମତ ଘର ବୈଠକ ଘର ଛାଡ। ଏପରି ସମସ୍ତ ପ୍ରତିଷ୍ଠା କାର୍ଯ୍ୟମାନଙ୍କୁ ଶ୍ରୀ ଶ୍ରୀ ଶ୍ରୀଛାମୁରୁ ଆଜ୍ଞା ହୋଇଥିବାରୁ ଆଜି ତାରିଖ ଆଜ୍ଞାନୁସାରେ ଲେଖିବାକୁ ହୋଇଲା। ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭଣ୍ଡାରରୁ ସୁନାବେଣ୍ଟ ଚାମର ଦେଇ ଚନ୍ଦନ ଅର୍ଗଳିଠାରେ, ରଥ ଉପରେ, ଚାପ ଉପରେ, ଯାନିଯାତ୍ରାମାନଙ୍କରେ ଚାମରସେବା ଖଟାଇବ। ଚାଙ୍ଗଡ଼ାଘରୁ ଗୀତଗୋବିନ୍ଦ ଖଣ୍ଡୁଆ ମୋଡ଼ିଏ ଲେଖାଏଁ ଦେଉଥିବ। ଏହାଙ୍କୁ ଉତ୍ତମ ରୂପେ ଦର୍ଶନ କରାଇ ଦେଉଥିବ। ବାକି ବିଷୟ ଛାମୁଙ୍କ ଚିଟାଉ ଲିଖିତ ମତେ ପୁରୁଷାନୁକ୍ରମେ କରୁଥିବ। ଆକଟ ନ କରିବ''। ମହାରାଜାଙ୍କର ସନ୍ତକ ଓ ମୋହର।

ପୁରୀରେ କବିସୂର୍ଯ୍ୟ କେତେକ ଜଣାଣ, ସ୍ତୁତି ଏବଂ ରାଜା ମୁକୁନ୍ଦଦେବଙ୍କ ଭଣିତାରେ ଚଉପଦୀ ଓ ଦୀର୍ଘ କବିତାମାନ ରଚନା କରିଥିଲେ। ଆଠଗଡ଼ ତଥା ପୁରୀରେ ତାଙ୍କୁ ବିଭିନ୍ନ ପଣ୍ଡିତମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା ଓ ତହିଁରେ ସେ ଜୟଯୁକ୍ତ ହୋଇ ପାରିଥିଲେ।

ତତ୍ପରେ ମାଡ୍ରାସ ପ୍ରେସିଡେନ୍‌ସି ଅଧୀନରେ ଥିବା ତତ୍କାଳୀନ ଗଞ୍ଜାମ ଜିଲ୍ଲାର ଗୋରା କଲେକ୍ଟରଙ୍କ ଦ୍ୱାରା କବିସୂର୍ଯ୍ୟ ବଳଦେବ ମହୁରୀ ରାଜ୍ୟର ମେନେଜର ରୂପେ କିଛି କାଳ ପାଇଁ ନିଯୁକ୍ତ ହୋଇଥିଲେ ଏବଂ ପାରଳାଖେମୁଣ୍ଡିର ରାଜପୁତ୍ର ଜଗନ୍ନାଥ ନାରାୟଣ ଦେବଙ୍କର ଶିକ୍ଷକ-ଅଭିଭାବକ ରୂପେ ମଧ୍ୟ କେତେକ ବର୍ଷ କାର୍ଯ୍ୟ କରିଥିଲେ। ଆଠଗଡ଼, ଜଳନ୍ତର ଆଦି ରାଜାମାନଙ୍କର ଦାନ ଭୂସମ୍ପତ୍ତି ତଥା ଅର୍ଥବୃତ୍ତି ଭୋଗ କରି ଶେଷ ଜୀବନ ସେ ବ୍ରହ୍ମପୁରରେ କଟାଇଥିବାର ଜଣାପଡ଼େ। ସେହି ବ୍ରହ୍ମପୁରରେ [illegible] ବସନ୍ତ ରୋଗରେ ପରଲୋକ ହୋଇଥିବା ବିଷୟ ପଣ୍ଡିତ୍ମନ୍ତେ ଦ୍ରୋ[illegible] ବୃତ୍ତାନ୍ତ'ରେ ଉଲ୍ଲେଖ କରିଛନ୍ତି।

କବିସୂର୍ଯ୍ୟ ବଳଦେବ ସୁଦର୍ଶନ ପୁରୁଷ ଥିଲେ। ଅଧ୍ୟବସାୟୀ ଓ କର୍ତ୍ତବ୍ୟନିଷ୍ଠ ଥିବାରୁ ସେ ସବୁ କାର୍ଯ୍ୟରେ ସାଫଲ୍ୟ ଅର୍ଜନ କରିଥିଲେ। ସଙ୍ଗୀତ ଗାନ ଏବଂ ରସିକତାପୂର୍ଣ୍ଣ ଆଳାପ-ଆଲୋଚନାରେ ସେ କୃତିତ୍ୱ ପ୍ରଦର୍ଶନ କରିଥିଲେ। ତାଙ୍କର ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱ ଥିଲା, ଯାହା ବଳରେ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ। ସୁଖ୍ୟାତି, ସମାଦର ଓ ଆର୍ଥିକ ସ୍ୱଚ୍ଛଳତା ମଧ୍ୟରେ ସେ ସୁନ୍ଦର ଭଦ୍ର ଜୀବନ ଯାପନ କରୁଥିବାର କଥିତ ହୁଏ। ପଣ୍ଡିତ କୁଳମଣି ଦାସଙ୍କ ମତରେ ''କବିସୂର୍ଯ୍ୟଙ୍କ ଚରିତ୍ର ଅତି ମଧୁର ଓ କମନୀୟ ଥିଲା। ଏହି ଚରିତ୍ର ମାଧୁରୀରେ ଆକୃଷ୍ଟ ହୋଇ ବାଳକଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ସହବାସ କାମନା କରୁଥିଲେ। ସ୍ୱୀୟ ପ୍ରତ୍ୟୁତ୍ପନ୍ନମତି-ପ୍ରସୂତ ବଚନଭଙ୍ଗୀରେ ସେ ସମସ୍ତଙ୍କୁ ମୁଗ୍ଧ କରିପାରୁଥିଲେ। ନିଜ ପାଣ୍ଡିତ୍ୟ ବିଷୟରେ ସେ କେବେହେଁ ଅହଂକାର କରୁ ନ ଥିଲେ, ତେଣୁ ତତ୍କାଳୀନ ସମାଜର ବହୁ ପଣ୍ଡିତ ଓ ଲେଖକ ତାଙ୍କ ସାହାଯ୍ୟରେ ନାନା ଭାବରେ ଉପକୃତ ହୋଇଅଛନ୍ତି।'' (ଜୀବନ ବୃତ୍ତାନ୍ତ)

## ରଚନାବଳୀର ପରିଚୟ

ପଣ୍ଡିତ କୁଳମଣି ଦାସଙ୍କ ଦ୍ୱାରା ସଂକଳିତ ଓ ସମ୍ପାଦିତ ହୋଇ 'କବିସୂର୍ଯ୍ୟ-ଗ୍ରନ୍ଥାବଳୀ' ୧୯୨୮ ମସିହାରେ ପ୍ରକାଶିତ ହେବା ପୂର୍ବରୁ କବିସୂର୍ଯ୍ୟଙ୍କର 'ହାସ୍ୟକଲ୍ଲୋଳ' (୧୮୭୨), 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' (୧୮୭୬), 'ଚନ୍ଦ୍ରକଳା' (୧୮୯୮) ପ୍ରଭୃତି ଅଲଗା ଅଲଗା ହୋଇ ପ୍ରକାଶ ପାଇଥିଲା। ଗ୍ରନ୍ଥାବଳୀ ପ୍ରକାଶ ପରେ ମଧ୍ୟ କବିସୂର୍ଯ୍ୟଙ୍କର ଅନ୍ୟ କେତେକ ରଚନା ଦକ୍ଷିଣ ଓଡ଼ିଶାରେ ଅତ୍ରତତ୍ର ବିକ୍ଷିପ୍ତ ହୋଇ ପଡ଼ି ରହିଥିଲା। ସେଥିମଧ୍ୟରୁ କେତେକ ସଂଗ୍ରହ କରି ଧରାକୋଟର କବିବଲ୍ଲଭ ଭୁବନେଶ୍ୱର ମିଶ୍ର ୧୯୬୧ ମସିହାରେ 'କବିରବି-ଗୀତି-ଗଙ୍ଗାମ୍ବୁ' ନାମରେ ପ୍ରକାଶ କରିଥିଲେ। ବ୍ରହ୍ମପୁରସ୍ଥ ପ୍ରତିଭା ପ୍ରକାଶ ଭବନ ୧୯୬୪ ମଧ୍ୟରେ 'କବିସୂର୍ଯ୍ୟ-କବିତା-ସୀତା' ପ୍ରକାଶ କଲେ। ତତ୍ପରେ ୧୯୬୮ ରେ କବିଚନ୍ଦ୍ର କାଳୀଚରଣ 'କବିସୂର୍ଯ୍ୟ-ଗୀତାବଳୀ' ନାମରେ ଆଉ କିଛି ଅପ୍ରକାଶିତ ରଚନା ଆଲୋକକୁ ଆଣିଲେ। କଟକର 'ସରସ ସାହିତ୍ୟ ସମିତି' କବିସୂର୍ଯ୍ୟଙ୍କର ଦୁଷ୍ପ୍ରାପ୍ୟ 'ହାସ୍ୟକଲ୍ଲୋଳ'କୁ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ କରାଇ ୧୯୭୫ରେ ପ୍ରକାଶ କଲେ। କବିସୂର୍ଯ୍ୟ କେତେକ ସଂସ୍କୃତ, ତେଲୁଗୁ, ହିନ୍ଦୀ ଚଉପଦୀ ମଧ୍ୟ ଲେଖିଥିଲେ।

କବିସୂର୍ଯ୍ୟଙ୍କ ରଚନାବଳୀର ବୈଚିତ୍ର୍ୟ ଓ ବିବିଧତା ନିମ୍ନ ତାଲିକାରୁ ସ୍ପଷ୍ଟ ହୁଏ।

୧) ଚଂପୂ—କିଶୋରଚନ୍ଦ୍ରାନନ୍ଦ ଚଂପୂ, ରତ୍ନାକର ଚଂପୂ ଓ ପ୍ରେମୋଦୟ ଚଂପୂ ନାମରେ କବିସୂର୍ଯ୍ୟ ତିନୋଟି ଚଂପୂ ଲେଖିଥିବାର ଜଣାପଡ଼ିଛି। ପ୍ରଥମ ଚଂପୂ କାବ୍ୟରେ ସଂସ୍କୃତ ଗଦ୍ୟର ସନ୍ନିବେଶ ଏବଂ ଶେଷୋକ୍ତ ଚଂପୂ ଯୋଡ଼ିକର ଗଦ୍ୟହୀନତା ଦର୍ଶାଇ ଏଗୁଡ଼ିକ ଚଂପୂ-ପଦବାଚ୍ୟ ନୁହେଁ ବୋଲି କେତେକ ସମୀକ୍ଷକ ମତ ପ୍ରଦାନ କରିଛନ୍ତି (ସଂସ୍କୃତ ସାହିତ୍ୟବିଦ୍ୟା ଅନୁଯାୟୀ—ଗଦ୍ୟ-ପଦ୍ୟର ମିଶ୍ର ରଚନା ହିଁ ଚଂପୂ)। କିନ୍ତୁ ଆମ ରାଜ୍ୟରେ ଚଉପଦୀ-ଚଂପୂ ନାଟ୍ୟାଭିନୟ ପାଇଁ ଉଦ୍ଦିଷ୍ଟ ଥିଲା ଏବଂ ସେହି ପ୍ରାଚୀନ କାଳର ନାଟ୍ୟାଭିନୟରେ ସାଧାରଣତଃ ଗଦ୍ୟସଂଳାପ ଲିପିବଦ୍ଧ ହେଉ ନ ଥିଲା। ଅଭିନୟକାରୀମାନେ ଗୀତ ଗାଇବା ମଝିରେ ମଝିରେ ଆବଶ୍ୟକ ସ୍ଥଳେ ବିନା ପ୍ରସ୍ତୁତିରେ (Extempore) ଗଦ୍ୟ ସଂଳାପ କହୁଥିଲେ। ସେଥିପାଇଁ ପ୍ରାଥମିକ ଓଡ଼ିଆ ଚଂପୂଗୁଡ଼ିକରେ ଗଦ୍ୟ ସନ୍ନିବେଶ ଉପରେ [illegible] ନ ଥିବାର ମନେ ହୁଏ। ଚଉପଦୀ ଚଂପୂ ବା ଗୀତି-ନାଟକ [illegible] ଶ୍ରୀ ଗୋପାଳ ବଲ୍ଲଭ ଦାସଙ୍କ ଦ୍ୱାରା ସଂକଳିତ [illegible] ଏତେ [illegible] ଦ୍ରଷ୍ଟବ୍ୟ (ମୋ ଦ୍ୱାରା ପୁନଃ ସଂପାଦିତ ହୋଇ ୧୯୭୯ରେ [illegible] ସଂସ୍କରଣ ପ୍ରକାଶିତ)।

୨) ଚନ୍ଦ୍ରକଳା—କବିସୂର୍ଯ୍ୟଙ୍କ ରଚିତ ଏକମାତ୍ର କାଳ୍ପନିକ କଥାକାବ୍ୟ, କିନ୍ତୁ ଅସଂପୂର୍ଣ୍ଣ।

୩) ଛାନ୍ଦ—ପ୍ରାୟ ପନ୍ଦରଟି ଛାନ୍ଦଗୀତ କବିସୂର୍ଯ୍ୟ ରଚନା କରିଛନ୍ତି।

୪) ଚଉତିଶା—ସଂଖ୍ୟାରେ ପ୍ରାୟ ନଅଟି ଚଉତିଶା କବିସୂର୍ଯ୍ୟ ଲେଖିଛନ୍ତି।

୫) ଚଉପଦୀ—ସାଢ଼େ ଚାରି ଶହରୁ ଅଧିକ ଚଉପଦୀ କବି ରଚନା କରିଥିବାର ଜଣାପଡ଼େ। ଏଥି ମଧ୍ୟରୁ ଧର୍ମୀୟ ଓ ରାଗାନୁଗା ଭକ୍ତିମୂଳକ ଚଉପଦୀର ସଂଖ୍ୟା ଅଧିକ। ଲୌକିକ ଓ ସାମାଜିକ ଚଉପଦୀର ସଂଖ୍ୟା (ଯାହାକୁ 'ଗ୍ରାମ୍ୟ ରସର ଗୀତ' ନାମରେ ଚିହ୍ନିତ କରାଯାଏ) ଟିକିଏ ଊଣା ।

୬) ଜଣାଣ-ଭଜନ—କବିଙ୍କର ପ୍ରାୟ ପାଞ୍ଚଟି ଏ ଧରଣର ସ୍ୱତନ୍ତ୍ର ରଚନା ରହିଛି। ଏହା ବ୍ୟତୀତ କେତେକ ଚଉପଦୀରେ ମଧ୍ୟ କବିସୂର୍ଯ୍ୟ ଆରାଧ୍ୟ ଦେବତାଙ୍କର ଭଜନ -ସ୍ତୁତି ଗାଇଛନ୍ତି।

୭) ଚିଟାଉ—ଛଅଟି ପଦ୍ୟ-ଚିଟାଉ କବିସୂର୍ଯ୍ୟ ରଚନା କରିଛନ୍ତି ।

୮) ଢୁଆ ଓ ମନାସ—କବିସୂର୍ଯ୍ୟଙ୍କ ଏଧରଣର ରଚନା ପ୍ରାୟ ଛଅ ଗୋଟି । ଲୋକଗୀତ ଶୈଳୀରେ ଏ ଦୁଇ ପ୍ରକାର ରଚନା କରାଯାଇଛି ।

୯) ହାସ୍ୟକଲ୍ଲୋଳ—କବିଙ୍କର ଏକମାତ୍ର ମୌଳିକ ଗଦ୍ୟକଥା । ଆମର ପାରଂପରିକ 'ଗଳ୍ପସାଗର' ରୀତିରେ କବିସୂର୍ଯ୍ୟ ଏହା କହିଥିବାର ମନେହୁଏ ।

କବିସୂର୍ଯ୍ୟ ଆପଣାର ସମସ୍ତ ରଚନା ନିଜ ନାମରେ ଭଣିତା କରି ନାହାନ୍ତି । ଢଳନ୍ତର ରାଜା ରାମଚନ୍ଦ୍ର ଛୋଟରାୟ, ଆଠଗଡ଼ ରାଜା ବାଲୁକେଶ୍ୱର ଜଗଦ୍ଦେବ ହରିଚନ୍ଦନ, ପୁରୀ ରାଜା ମୁକୁନ୍ଦଦେବ ପ୍ରଭୃତିଙ୍କ ନାମରେ ମଧ୍ୟ ନିଜର ବହୁ ଲେଖା ଭଣିତା କରିଛନ୍ତି । ପାରଂପରିକ ଦତ୍ତକାବ୍ୟ ଓ କୃତି ସମର୍ପଣ ପଦ୍ଧତି ସେ ଅନୁସରଣ କରିଥିବାର ଜଣାପଡ଼େ ।

କବିସୂର୍ଯ୍ୟ ବଳଦେବ 'ନବନବୋନ୍ମେଷଶାଳିନୀ ପ୍ରଜ୍ଞା' ବା ପ୍ରତିଭା ଘେନି ଆମ ସାହିତ୍ୟର ଏକ ଅବକ୍ଷୟୀ କାଳରେ ଆବିର୍ଭୂତ ହୋଇଥିଲେ । କଳା ଓ ସାହିତ୍ୟ କ୍ଷେତ୍ରରେ ଅହେତୁକ ସ୍ଫୀତି, ବାହୁଲ୍ୟ, ପ୍ରମତ୍ତତା ଏବଂ ଉଚ୍ଛ୍ୱସିତ ଭାବ ହିଁ ଅବକ୍ଷୟ ତଥା ଅଧୋଗତିର ପ୍ରତୀକ । କିନ୍ତୁ ମିତାଚାର, ସଂଯମ, ଅପ୍ରମତ୍ତତା ଏବଂ ପରିମିତ ଭାବ ପ୍ରଗତିର ପରିଚାୟକ । ସାଂସ୍କୃତିକ ଇତିହାସରେ ଏହା ସଚରାଚର ପରିଲକ୍ଷିତ ହୋଇଥାଏ । ସଂସ୍କୃତ ସାହିତ୍ୟରେ କାଳିଦାସ-ଯୁଗ ପରେ ଭାରବି, ମାଘ, ଭର୍ତ୍ତୃହରି(ଭଟ୍ଟି), ବାଣଭଟ୍ଟ, ଶ୍ରୀହର୍ଷ ପ୍ରମୁଖ କବିଗଣ ଯେଉଁ କାବ୍ୟ ସୃଷ୍ଟି କରିଥିଲେ, ତହିଁରେ ସାଧାରଣତଃ ଉକ୍ତ ଅବକ୍ଷୟୀ ଲକ୍ଷଣ ପ୍ରକଟିତ ହୋଇଥିଲା । ଦୁର୍ଭାଗ୍ୟର ବିଷୟ, ମୁଖ୍ୟତଃ ଏହି ସଂସ୍କୃତ କବିମାନଙ୍କ ଆଦର୍ଶରେ ସାହିତ୍ୟ ସୃଷ୍ଟି କରିଥିବାରୁ କବି ଉପେନ୍ଦ୍ର ଭଞ୍ଜ ଏବଂ ତାଙ୍କର ଅନୁକାରୀମାନଙ୍କ ରଚନାରେ ଉକ୍ତ ଅବକ୍ଷୟୀ ଲକ୍ଷଣମାନ ପ୍ରକାଶିତ ହୋଇପଡ଼ିଲା । କବିସୂର୍ଯ୍ୟଙ୍କ ସାରସ୍ୱତ ସୃଷ୍ଟି ଏହାରି ବିପକ୍ଷରେ ଏକ ବଳିଷ୍ଠ ପ୍ରତିବାଦ କହିଲେ ଚଳେ । କାବ୍ୟକବିତାର ଆତ୍ମିକ ତଥା ଆଙ୍ଗିକ କ୍ଷେତ୍ରରେ କବିସୂର୍ଯ୍ୟ, ଭଞ୍ଜଙ୍କ ଦ୍ୱାରା ପ୍ରଭାବିତ ହୋଇ ମଧ୍ୟ ବାହୁଲ୍ୟ ଓ ପ୍ରମତ୍ତତା ଯଥାସମ୍ଭବ ପରିହାର କରିଛନ୍ତି । ଜଣେ ପ୍ରକୃତ ଶିଳ୍ପୀ ଭାବରେ ସେ ସକଳ ପ୍ରକାର ସୀମା-ଲଙ୍ଘନ ଓ ଆତ୍ୟନ୍ତିକତାର ବିରୋଧୀ ଥିବାର ମନେହୁଏ । ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗରେ ଓଡ଼ିଆ ସାହିତ୍ୟର ସେହି ଅବକ୍ଷୟୀ କାଳରେ ତାଙ୍କର 'ନବୀନା ପ୍ରତିଭା' [illegible] ଯାହାଙ୍କୁ [illegible] ଅର୍ଥରେ; ହାତରେ ଧରି ଆବିର୍ଭୂତ ହୋଇଥିଲା ଏବଂ ଆମ୍ଭେ ଦ୍ରୋ[illegible] ସାଧମତେ କାବ୍ୟ ସାହିତ୍ୟର ଆବିଳତା ଦୂରୀକ[illegible] [illegible]ରେ ରଖିବା [illegible] ଏବଂ ଦେଶକାଳପାତ୍ରାନୁଗ ସ୍ୱାଭାବିକତାର ସୀମାମଧ୍ୟରେ ସେ ପୁରୋଦ୍ଦୃଷ୍ଟର ଧର୍ହିତ ଲେଖନୀ ଚାଳନା କରିଥିଲେ । ସେଥିପାଇଁ ପରବର୍ତ୍ତୀ ଯୁଗ-ସାହିତ୍ୟ ତାଙ୍କଦ୍ୱାରା ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇଥିଲା । ଭଞ୍ଜ ଓ ରାଧାନାଥଙ୍କ ମଧ୍ୟରେ କବିସୂର୍ଯ୍ୟ ପ୍ରକୃତରେ ଏକ ଦୀପ୍ତିମାନ ସୂର୍ଯ୍ୟ, ଯେ ଆମ ସାହତ୍ୟ-ସୌର ଜଗତ୍‌ର ଉକ୍ତ ପ୍ରଜ୍ୱଳିତ ଗ୍ରହଯୁଗଳ ସହିତ ଆଦାନପ୍ରଦାନମୂଳକ ବଳିଷ୍ଠ ସମ୍ପର୍କ ରକ୍ଷା କରିପାରିଛନ୍ତି ।

## ସ୍ୱୀକୃତି ଓ ସାଧୁବାଦ

୧୯୭୫ ମସିହା ଶେଷ ଭାଗରେ ଗଞ୍ଜାମ ବ୍ରହ୍ମପୁରର ବିଶିଷ୍ଟ ପ୍ରକାଶନ-ସଂସ୍ଥା 'ପୁସ୍ତକ ଭଣ୍ଡାର'ର ସଞ୍ଚାଳକ ଶ୍ରୀ ନିତ୍ୟାନନ୍ଦ ଦାସଙ୍କଠାରୁ ଖଲ୍ଲିକୋଟ କଲେଜର ତତ୍କାଳୀନ ଅଧ୍ୟାପକ କ୍ଷେତ୍ରବାସୀ ନାୟକଙ୍କ ଜରିଆରେ 'କବିସୂର୍ଯ୍ୟ ଗ୍ରନ୍ଥାବଳୀ' ସଂକଳନ ଓ ସଂପାଦନା କରିବା ପାଇଁ ପ୍ରସ୍ତାବ ପାଇଲି । ଧୀରେ ଧୀରେ ସେ ଦିଗରେ କାର୍ଯ୍ୟ ଚଳାଇଲି ମଧ୍ୟ । କିନ୍ତୁ ମୋର କାର୍ଯ୍ୟ ସଂପୂର୍ଣ୍ଣ କରିବା ବିଳମ୍ବ ହେବାରୁ ପ୍ରକାଶକ ନିତ୍ୟାନନ୍ଦ ବାବୁ ଗ୍ରନ୍ଥାବଳୀ ପ୍ରକାଶ ବିଷୟରେ ନିଜର ମତ ପରିବର୍ତ୍ତନ କଲେ । ପ୍ରାୟ କୋଡ଼ିଏ ବର୍ଷ ପରେ

ଏବେ ଏହି ଗ୍ରନ୍ଥାବଳୀ ପ୍ରକାଶ ପାଉଥିବା ବେଳେ ମୁଁ ସ୍ୱର୍ଗତ କ୍ଷେତ୍ରବାସୀଙ୍କ ପ୍ରେରଣା ତଥା ନିତ୍ୟାନନ୍ଦ ବାବୁଙ୍କ ପ୍ରାଥମିକ ସାହାଯ୍ୟ ସହଯୋଗ ଶ୍ରଦ୍ଧାର ସହ ସ୍ମରଣ କରୁଛି ।

ଗ୍ରନ୍ଥାବଳୀ ସଂକଳନ ଓ ସଂପାଦନା କାର୍ଯ୍ୟରେ ମୁଁ ନିମ୍ନଲିଖିତ ଗ୍ରନ୍ଥଗୁଡ଼ିକରୁ ବିଶେଷ ସାହାଯ୍ୟ ଗ୍ରହଣ କରିଥିବାରୁ ଗ୍ରନ୍ଥ-ରଚୟିତା, ସଂପାଦକ ଓ ପ୍ରକାଶକଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ।

୧) କବିସୂର୍ଯ୍ୟ ଗ୍ରନ୍ଥାବଳୀ—ସଂ : ପଣ୍ଡିତ କୁଳମଣି ଦାସ, କଟକ ପବ୍ଲିଶିଂ ହାଉସ୍, ନୟାସଡ଼କ, କଟକ, ଷଷ୍ଠ ମୁଦ୍ରଣ -୧୯୫୬ ।
୨) କବିରବି-ଗୀତି-ଗଙ୍ଗାମ୍ବୁ— ସଂ: ପଣ୍ଡିତ ଭୁବନେଶ୍ୱର ମିଶ୍ର କବିବଲ୍ଲଭ, ଧରାକୋଟ, ଗଞ୍ଜାମ (୧୯୬୧) ।
୩) କବିସୂର୍ଯ୍ୟ-କବିତା-ସୀତା— ପ୍ର: ପ୍ରତିଭା ପ୍ରକାଶ ଭବନ, ବ୍ରହ୍ମପୁର, ଗଞ୍ଜାମ (୧୯୬୪-୬୫) ।
୪) କବିସୂର୍ଯ୍ୟ ଗୀତାବଳୀ— ସଂ: କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ପ୍ର: ଜଗନ୍ନାଥ ରଥ, ବିନୋଦବିହାରୀ, କଟକ (୧୯୬୮) ।
୫) ହାସ୍ୟକଲ୍ଲୋଳ— ସଂ: ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ସରସ ସାହିତ୍ୟ ସମିତି, ପୀଠାପୁର, କଟକ-୧ (୧୯୭୫) ।
୬) ଓଡ଼ିଆ ଗୀତିକାବ୍ୟ ସଂକଳନ— ସଂ: ଡକ୍ଟର ଜାନକୀବଲ୍ଲଭ ମହାନ୍ତି, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର (୧୯୭୭) ।
୭) ବଳଦେବ ରଥ ଅଧ୍ୟୟନ—ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ଗ୍ରନ୍ଥମନ୍ଦିର, କଟକ-୨ ଓ ବ୍ରହ୍ମପୁର-୧ (୧୯୮୧) ।
୮) କବିସୂର୍ଯ୍ୟ କାବ୍ୟବିଭା— ଶ୍ରୀ ଦାଶରଥି ଦାସ, ଅଗ୍ରଦୂତ, ବାଙ୍କାବଜାର, କଟକ-୨, ଦ୍ୱିତୀୟ ସଂସ୍କରଣ- ୧୯୮୯ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଅଧ୍ୟାପକ ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର କବିସୂର୍ଯ୍ୟଙ୍କର କେତେକ ଅପ୍ରକାଶିତ ଚଉପଦୀ ଯୋଗାଇଛନ୍ତି । ସେଥିପାଇଁ [illegible] ଗୌରୀକୁମାର ବ୍ରହ୍ମା, ପ୍ରଫେସର୍ ସୁଦର୍ଶନ [illegible] ଏତେ [illegible] ପ୍ରାଚୀନ ସାହିତ୍ୟର ଗବେଷକ ପଣ୍ଡିତମାନଙ୍କଠାରୁ ଏ ଗ୍ରନ୍ଥାବଳୀ [illegible] ବହୁ ପରାମର୍ଶ ଲାଭ କରିଛି । ଏମାନଙ୍କ ପ୍ରତି ଆନ୍ତରିକ ସାଧୁବାଦ ଜ୍ଞାପନ କରୁଛି ।

ଗ୍ରନ୍ଥାବଳୀର ସଂକଳନ, ପାଣ୍ଡୁଲିପି ପ୍ରସ୍ତୁତି ଆଦି କାର୍ଯ୍ୟରେ ମୋର ଶ୍ରଦ୍ଧେୟା ଛାତ୍ରୀ ଶ୍ରୀମତୀ ଶାନ୍ତିଲତା ବେହେରା, ଏମ୍.ଏ., ସୁଜାତା ସାହୁ, ଏମ୍.ଏ. ଓ ଅଧ୍ୟାପିକା ବନପ୍ରଭା ପରିଡା ମୋତେ ବିଶେଷ ସାହାଯ୍ୟ-ସହଯୋଗ ପ୍ରଦାନ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛି । ଯୁବକବି ଶ୍ରୀ ଚିତ୍ତରଞ୍ଜନ ବେହେରା ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ସାହାଯ୍ୟ କରିଥିବାରୁ ତାଙ୍କ ପ୍ରତି ଆନ୍ତରିକ ସାଧୁବାଦ । କଟକର ବିଶିଷ୍ଟ ପ୍ରକାଶନ-ସଂସ୍ଥା ଫ୍ରେଣ୍ଡସ୍ ପବ୍ଲିଶର୍ସ୍‌ର କର୍ତ୍ତୃପକ୍ଷ ଗ୍ରନ୍ଥାବଳୀଟିକୁ ସ୍ୱଳ୍ପ ସମୟ ମଧ୍ୟରେ ଯତ୍ନ ପୂର୍ବକ ପ୍ରକାଶ କରି ବିପଣୀସ୍ଥ କରିପାରି ଥିବାରୁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଇତି

ଉତ୍କଳ ଏପାର୍ଟମେଣ୍ଟସ୍
କଲ୍ୟାଣୀ ନଗର, କଟକ-୭୫୩ ୦୧୩
ଟେଲିଫୋନ୍ : ୬୪୧୯୩୨

କୃଷ୍ଣଚରଣ ବେହେରା
ଶ୍ରୀଗୁଣ୍ଡିଚା, ୨୬।୬।୧୯୯୮

# କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

ଏନ୍ତେ ଦ୍ରୋ ଯାହାକୁ ... ଅଦ୍ରିରେ
... ରଚି ... ଶର ... ରଖିବା ...

## ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ

### ମଙ୍ଗଳାଚରଣ

ତେନେ ଯେନେହ  କୃଷ୍ଣାବସନବିତରଣୋଦ୍‌ବେଗନୈପୁଣ୍ୟପୁଣ୍ୟଂ,
ପାର୍ଥାନର୍ଥାନ୍ କୁରୂଣାମଧିପତିବିହିତାନ୍ ଯୋ ଜୁହାବାହବାଗ୍ନୌ ।
ସତ୍ୟାମତ୍ୟାନୟଦ୍ ଯୋ ଭୁବମମରତରୁଂ ସ୍ୱର୍ଗତୋଽନର୍ଗଳୌଜାଃ,
ହନ୍ତା ଦନ୍ତାବଳାର୍ତ୍ତେଃ ସ ପରମପୁରୁଷଃ ସନ୍ତତଂ ଶଂ ତନୋତୁ ॥

କ୍ୱ ବସ୍ତ୍ୱହିଫଟାନଟାଚରଣଲମ୍ପଟାଙ୍ଘ୍ରିଂଦ୍ୱୟଂ,
ମହଃ କ୍ୱ ଚ ଲସନ୍ମହାରଜତଜାତିଜୈତ୍ରଂ ପୁନଃ;
ତୟୋଃ କ୍ୱ ଘଟନାବିଧୌ କବନକଞ୍ଚନଂ ସ୍ୱଞ୍ଚଧୀ—
ରହଂ କ୍ୱ ଚ କଥଂ ହଠାଦୁଦିତମୀଦୃଶଂ ସାହସଂ ॥

(ଗଦ୍ୟ) କଥମହମିହ ମହିତମହିମମହୋଦଧେର୍ମହେନ୍ଦ୍ରମଣିମୟୂଖସନ୍ଦୋହସହୋ - ଦରାଙ୍ଗ-ମହସୋ ବିହାର-ଶାଳିନୋ ମଧୁରେ ମଧୌ ବଧୂଦିତନ୍ୟାୟାନ୍ୱୟସିଦ୍ଧାନ୍ତିତସ୍ୟ ସର୍ବେଶ୍ୱରସ୍ୟ ଶ୍ରୀନନ୍ଦନନ୍ଦନସ୍ୟାଖଣ୍ଡ-ତପୋମଣ୍ଡଳପିଚିଣ୍ଡିଳୀକୃତାନେକାନେହସୋ ଭଗବତୋ ମାର୍ତ୍ତଣ୍ଡସ୍ୟ ସୁକୃତକୃତାବତାରୟା ରାଧୟା ସହ ଲୀଳାଂ ଲୋକୋତ୍ତରାମଞ୍ଚଧୀର୍ଜଞ୍ଜାମୀତି କବିଶ୍ଚିନ୍ତୟାମାସ ।

---

**ଶ୍ରୀ ରାଧାକୃଷ୍ଣଙ୍କୁ ନମସ୍କାର**

ଅନୁବାଦ— କୁରୁସଭାରେ ଦୁଃଶାସନ ବସ୍ତ୍ର ଆକର୍ଷଣ କରନ୍ତେ ଦ୍ରୌ[illegible] ଯାହାଙ୍କୁ [illegible] ଅର୍ଥୁରେ; [illegible] ରଖିବା [illegible] ଏହି ସଂସାରରେ ପୁଣ୍ୟ କୀର୍ତ୍ତି ବିସ୍ତାର କରିଥିଲେ, ଦୁର୍ଯୋ[illegible] ଯେଉଁ ସବୁ ଅନିଷ୍ଟ କରିଥିଲା, ସେ ସବୁକୁ ଯେ କୁରୁକ୍ଷେତ୍ର ଯୁଦ୍ଧାଗ୍ନିରେ ଆହୁତି ରୂପେ ପ୍ରଦାନ କରିଥିଲେ, ସ୍ୱପତ୍ନୀ ସତ୍ୟଭାମାଙ୍କ ଅନୁରୋଧରେ ଯେ ପାରିଜାତ ବୃକ୍ଷକୁ ସ୍ୱର୍ଗରୁ ଭୂଲୋକକୁ ଆଣିଥିଲେ, କୁମ୍ଭୀର ଦ୍ୱାରା ଆକ୍ରାନ୍ତ ହୋଇଥିବା ଗଜରାଜଙ୍କୁ ଯେ ଉଦ୍ଧାର କରିଥିଲେ, ସେହି ପରମପୁରୁଷ ଶ୍ରୀକୃଷ୍ଣ ସର୍ବଦା ମଙ୍ଗଳ ବିସ୍ତାର କରନ୍ତୁ ! ଯାହାଙ୍କର ଚରଣଦ୍ୱୟ କାଳୀୟ ସର୍ପର ଫଣାରେ ନୃତ୍ୟ କରିବାରେ ନିପୁଣ, ସେହି ପରଂବ୍ରହ୍ମରୂପୀ ଶ୍ରୀକୃଷ୍ଣ କେଉଁଠାରେ, ସୁବର୍ଣ୍ଣ ତେଜକୁ ଜୟ କରୁଥିବା ପ୍ରକୃତିରୂପିଣୀ ରାଧିକାଙ୍କର ସମୁଜ୍ଜ୍ୱଳ ଜ୍ୟୋତି ବା ପୁଣି କେଉଁଠାରେ, ସେ ଦୁହିଁଙ୍କର ମିଳନାତ୍ମକ ଚମ୍ପୂକାବ୍ୟ ନିର୍ମାଣରେ କବିତ୍ୱକଳ୍ପନା ବା କେଉଁଠାରେ ? କ୍ଷୀଣବୁଦ୍ଧି ମୁଁ ବା କେଉଁଠାରେ ? ହଠାତ୍ କାହିଁକି ମୋର ଏପରି କାର୍ଯ୍ୟରେ ପ୍ରବୃତ୍ତ ହେବାର ସାହସ ହେଲା !

# କ

## ରାଗ—ସାବେରୀ

କି ହେଲା ରେ, କହି ତ ନୁହଇ ଭାରତୀରେ
କାଳି ଯା ଦୂରରୁ ଦେଖି* କଳନା କଲା ମୋ ଆଖି
କଳାଇନ୍ଦୀବର ଆରତିରେ । ପଦ ।
କେଳି କଦମ୍ବ ଲତାର କୋଳେ କି ଶ୍ୟାମଳତାର,
ତେଜ ସେ ରବିସୁତାର ତୀରେ,
କମ୍ପି ମୋର କଳେବର, ହୋଇଗଲା ଆରପାର,
ଯାହାକୁ ଡରଇ ତାର ତୀରେ । ୧ ।
କୁସୁମ କୋଦଣ୍ଡ କାଣ୍ଡ କେତେ କରିଥିଲା ଗୁଣ୍ଡ
କର୍କଶ ନୋହିବା ଭାରତିରେ,
କହୁଛି ବରଜି ଲଜ୍ଜା, କେବଳ ହେଲା ମୋ ମଜ୍ଜା,
ମଜ୍ଜିଯିବି କି ଉଭା-ରତିରେ । ୨ ।
କି ମୋହନ ଲୀଳା ଧରି କୋଟି କଳାକର ଶିରୀ,
ପୂରିଛି ସେ ଶ୍ୟାମ ମୂରତିରେ,
[illegible] କାହିଁକି ସରଜି ତାକୁ
[illegible] ଏତେ [illegible] ଚିରାୟୁ ରଖିଲା ଜରତୀରେ । ୩ ।

---

ପୂର୍ବ କାଳରେ ସୂର୍ଯ୍ୟ ପ୍ରକୃତିଙ୍କୁ କନ୍ୟା ରୂପରେ ପାଇବା ପାଇଁ ଦୀର୍ଘକାଳ ତପସ୍ୟା କରିଥିଲେ; ଶ୍ରୀକୃଷ୍ଣ ଯେତେବେଳେ ଭୂଲୋକରେ ଅବତାର ଧାରଣ କଲେ, ତତ୍‌ପୂର୍ବରୁ ସୂର୍ଯ୍ୟ ବୃଷଭାନୁ ରୂପରେ ଜାତ ହୋଇଥିଲେ, ପ୍ରକୃତି ରାଧାରୂପରେ ତାହାଙ୍କର କନ୍ୟା; ଯେ ମହାମହିମାଶାଳୀ, ଯାହାଙ୍କ ଦେହକାନ୍ତି ଇନ୍ଦ୍ରନୀଳମଣି ତେଜ ପରି, ମନୋହର ବସନ୍ତ ଋତୁରେ ଭ୍ରମଣ କଲାବେଳେ ସହଚରୀ ଗୋପବଧୂମାନେ ଯାହାଙ୍କୁ ସର୍ବେଶ୍ୱର ବୋଲି ଜାଣିପାରି ଆତ୍ମସମର୍ପଣ କରିଥିଲେ, ସେହି ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କର ରାଧାଙ୍କ ସଙ୍ଗେ ଯେଉଁ ଅଲୌକିକ ଲୀଳା ହୋଇଥିଲା, ମୁଁ ସାମାନ୍ୟ ବୁଦ୍ଧିରେ ତାହା କିପରି ବର୍ଣ୍ଣନା କରିବି ? କବି ଏହିପରି ଚିନ୍ତା କରିଥିଲେ ।

* ପାଠାନ୍ତର—କା[illegible] ଦୂରରୁ ସଖି

କି ନୀତି କି ଜାତିଶୀଳ, କି କୂଳ ବରତ ଫଳ,
ଠଉରି ପାରିଲା ମୋ ମତିରେ ?
କୋମଳତର ମୋହନ କୁଞ୍ଜକୁକ୍ଷିରୁ ନିଃସ୍ୱନ
ଆସି ଚୁମ୍ବିଦେଲା ମୋ ଶ୍ରୁତିରେ । ୪ ।
କଳବଳ ଛଟପଟ ହୋଇଯାଉଛି ନିପଟ
ସଂବେଶ-ଅଶନ-ବିରତିରେ,
କହଇ ଶ୍ରୀ ବାଲୁକେଶ, ଶରଣ ଧରଣୀ ଈଶ,
ଏ କି ଦଣ୍ଡ ବିନା ପୀରତିରେ । ୫ ।

(କ) ନାଦଃ କୋଽପି ନିତମ୍ବିନୀଜନମନଃ କ୍ଷୋଭକ୍ଷମଃ ଶୁଶ୍ରୁବେ,
କାନ୍ତିଃ କାପି ଚଳତ୍ କଳାପମୁକୁଟାଳମ୍ବା ଚୁଚୁମ୍ବାମ୍ବକେ,
ଧୈର୍ଯ୍ୟଂ ତତ୍ ପ୍ରଭୃତି ସ୍ଖଳତ୍ୟପି ବଳତ୍ୟନ୍ତର୍ବିଳାପୋ ବଳା-
ଦଶ୍ରାନ୍ତଂ ସଖି ଦୃଶ୍ୟତେ କିମଭିତୋ ମାହେନ୍ଦ୍ରନୀଳଂ ମହଃ ॥

(ଗଦ୍ୟ) ସଖି ! ଶିଖଣ୍ଡାପୀଡ଼ମନୋହରଃ ପ୍ରତ୍ୟଗ୍ରମୁଦିରମେଦୁରଃ ସମୁତ୍କଟନଟନାଟୋପ-ପଟୁଃ କୋଽପି ସମୂହୋ ମହସାମମଳଃ ସମାଲୋକି ମୟେତ୍ୟୁକ୍ତବତ୍ୟାଂ ଶ୍ରୀମତ୍ୟାଂ ତାଂ ପ୍ରତି ଲଳିତା ।

---

(କ) ଭାରତୀରେ—କଥାରେ; କଳନା କଲା—ଠଉରାଇଲା; ଇନ୍ଦୀବର—ପଦ୍ମ; ଆରତିରେ—ନିବୃତ୍ତି ଅବସ୍ଥାରେ; ଶ୍ୟାମଳତା—ଶ୍ୟାମଳତ୍ୱ ବା କାଳିମା; ରବିସୁତା—ଯମୁନା; ଆରପାର—ଅସ୍ତବ୍ୟସ୍ତ, ଯାହାକୁ—ଦର୍ପ ଅର୍ଥରେ; ତୀରେ—ବାଣରେ; କର୍କଶ ନୋହିବା—କୋମଳ; ଭାରଡ଼ି—ଶର ରଖିବା ତୂଣୀ, ତୂଣୀର; ମଜ୍ଜା—ଅନ୍ତରିକ ଇଚ୍ଛା, କଳାକର—ଚନ୍ଦ୍ର; କୁସା—ନିନ୍ଦା; ଚିରାୟୁ—ଦୀର୍ଘଜୀବିନୀ; ଜରତୀ—ବୃଦ୍ଧା (ରାଧାଙ୍କ ଶାଶୁ ବୁଢ଼ୀ ଜଟିଳା); କୁକ୍ଷି—ପେଟ, ଗର୍ଭ; ଶ୍ରୁତି—କାନ, ନିପଟ—ଏକାନ୍ତ; ସଂବେଶ—ନିଦ୍ରା; ଅଶନ—ଭୋଜନ, ବିରତି—ଅଭାବ; ଶରଣଧରଣୀ ଈଶ—ଆଠଗଡ଼ ରାଜ୍ୟର ରାଜା (ଗଞ୍ଜାମ ଜିଲ୍ଲାର ଆଠଗଡ଼ରେ ପୁରୀର ରାଜା ଜଗନ୍ନାଥଙ୍କ ସହ ବିପଦବେଳେ ଶରଣ ନେଇଥିବାରୁ ଆଠଗଡ଼ 'ଶରଣରାଜ୍ୟ' ନାମରେ ଅଭିହିତ ହୁଏ ।)

ଅନୁବାଦ— (କ) ହେ ସଖି, ଯୁବତୀମାନଙ୍କର ଚିତ୍ତବିକ୍ଷେପକାରୀ ସେହି ଅନିର୍ବଚନୀୟ ବଂଶୀଧ୍ୱନି ଶୁଣିଲା ବେଳୁଁ ଏବଂ ତାଙ୍କର ଚଞ୍ଚଳ ମୟୂରପୁଚ୍ଛ ମୁକୁଟରୁ ବାହାରୁଥିବା ମନୋହର ତେଜ ମୋ ଚକ୍ଷୁକୁ ସ୍ପର୍ଶ କଲାବେଳୁ ମୁଁ ଏକାନ୍ତ ଅଧୀର ହୋଇ ପଡ଼ିଅଛି ଏବଂ ମୋ ଅନ୍ତରରେ ଘୋର ଦୁଃଖ ବଢ଼ୁଅଛି । ସର୍ବଦା ଚାରିଆଡ଼େ ଇନ୍ଦ୍ରନୀଳମଣିର ଗୋଟିଏ ବିଚିତ୍ର ତେଜ ମୋତେ ଦେଖା ଯାଉଅଛି ।

# ଖ

## ରାଗ—କେଦାର

ଖରାପ ତୁ ହେଲୁ ରେ,
ଖେଳଲୋଳଖଞ୍ଜନାକ୍ଷି କି ସାହସ କଲୁ ରେ । ପଦ ।
ଖର୍ବ ହୋଇ ସୁରତରୁକୁସୁମ ବାଞ୍ଛିଲୁ ରେ,
ଖେଦ-ବୀଜ ନିଜ ହୃଦ-କେଦାରେ ବିଞ୍ଚିଲୁ ରେ । ୧ ।
ଖିଆଲ ପରି କି ଧନ ମନରେ ଭାଳିଲୁ ରେ,
ଖଳିକାର ନୋହି କଳା ନାଗକୁ ଚାଳିଲୁ ରେ । ୨ ।
ଖରା ସ୍ମରି ଝାଉଁଳିବା ଶ୍ରୀଅଙ୍ଗ ପାଇଲୁ ରେ,
ଖମଣିମଣ୍ଡଳକୁ ତୁ କର ବଢ଼ାଇଲୁ ରେ । ୩ ।
ଖାଇ ଦେଇ କି ଅମଳ ଅଚେତା ହୋଇଲୁ ରେ,
ଖାରା ଖଣ୍ଡାଧାରା ଖଟ ବିଚାରି ଶୋଇଲୁ ରେ । ୪ ।
ଖଟେ ଅଷ୍ଟଦୁର୍ଗନାଥ ତୋ ପଦେ ପହିଲୁ ରେ,
ଖଣ୍ଡ କରେ ଧନ ଦେଇ ପଦେ ନ କହିଲୁ ରେ । ୫ ।

(ଖ) ସୃଷ୍ଟ୍ୱା ଚଞ୍ଚଳଚନ୍ଦ୍ରକାଞ୍ଚଳଚମତ୍କାରକ୍ରମଂ ଚକ୍ଷୁଷା,
କାବାସ୍ମିନ୍ ପୃଟଭେଦନେ ନବବଧୂରେକାପ୍ୟଶୋକା ଭବେତ୍ ।
ବାଳେ ନୂତନସୂତିକାଳୟରତୌ କାଳେଽପି ତାଦୃଗ୍ ବକୀ—
ହିଂସାମପ୍ୟନୁଭୂୟ ଲୋକବଚସଃ କିଂ ସାହସଂ ସ୍ୱୀକୃତଂ ।।

(ଗଦ୍ୟ) ହନ୍ତହନ୍ତାତିକ୍ରାନ୍ତାତ୍ୟନ୍ତବିହିତବଚନୟା ଲୋକାତିଗଲୀଳାଲୋଳଲୋଚନୟା ଭବତ୍ୟା ଯୁବତୀଜାତିପାତିବ୍ରତ୍ୟାତିଶୟଘାତିନି ଶିଖଣ୍ଡଶେଖରେ ନଟପଟୁନି ତମାଳମାଳମେଚକେ ମହସି ବ୍ୟରଚି ସାପେକ୍ଷକଟାକ୍ଷନିକ୍ଷେପବିଳାସଃ ।

---

ହେ ସଖି, ମୟୂରପୁଚ୍ଛ ମୁକୁଟ ସଂସର୍ଗରେ ସୁନ୍ଦର ଦିଶୁଥିବା ଏବଂ ନବ ମେଘ ପରି ସ୍ନିଗ୍ଧ କି ବିଚିତ୍ର ତେଜ ଦେଖିଲି ! ଆହା ! ଉଦ୍ଦଣ୍ଡ ନୃତ୍ୟାଡ଼ମ୍ବରରେ ତାହା ପୁଣି କେଡ଼େ ନିପୁଣ ଦିଶୁଥିଲା । ଶ୍ରୀମତୀ ଏହା କହନ୍ତେ ଲଳିତା ତାଙ୍କୁ ପ୍ରତ୍ୟୁତ୍ତରରେ କହୁଅଛନ୍ତି—''ଖରାପ ତୁ ହେଲୁ ରେ'' ଇତ୍ୟାଦି ।

(ଖ) ଖେଳଲୋଳ ଖଞ୍ଜନାକ୍ଷି—କ୍ରୀଡ଼ାରେ ଚଞ୍ଚଳ ହୋଇଥିବା ଖଞ୍ଜନ ନାମକ ଚଢ଼େଇର ଆଖି ପରି [illegible]ହାର; ଖର୍ବ—ବାଙ୍ଗର, ସାନ; ସୁରତରୁକୁସୁମ—କଳ୍ପବୃକ୍ଷଫୁଲ;

# ଗ

## ରାଗ—ତୋଡ଼ି ପରଜ

### ଗଲାଣି ତ ଗଲା କଥା ରେ ସଙ୍ଗାତ

ଗୁପତେ ସିନା ମୁଁ ତୋତେ ପଚାରିଲି ବଳି ପଡ଼ିବାରୁ ବ୍ୟଥା । ପଦ ।
ଗଙ୍ଗାରୁ ବିଶଦ ଗଭୀର ତୋ ହୃଦ, ଗୁଣ୍ଡିଧନ ତୋର ସ୍ନେହ,
ଗୋଡ଼ ଖସି ଖେଦ ହେବାର ଦରଦ ଯିବାର ଉପାୟ କହ । ୧ ।
ଗଞ୍ଜାଇକି ଜିଣି ଲାଗି ତାର* ପୁଣି ରଞ୍ଜାଇଲା ମନେ ଝଳି,
ଗୋଳା କରଳରୁ କଟୂ ପୀୟୂଷରୁ ସ୍ୱାଦୁଗୁଣ ଗଲା ବଳି । ୨ ।
ଗୋଳି ଦେଲା ମୋର ବାହାର ଭିତର ସ୍ୱର ସେ ଅବା ଶର ସେ,
ଗାତ୍ର ଗୋଟିଯାକ ପୂରିଲା ପୁଲକ ଶ୍ରବଣ ସୀମା ସ୍ପରଶେ । ୩ ।

---

ଖେଦବୀଜ—ଦୁଃଖର ବୀଜ (ମଞ୍ଜି); କେଦାର—କିଆରୀ; ଖିଆଲ—ଥଟ୍ଟା, ପରିହାସ; ଖଳିକାର—ସାପୁଆ; ଖମଣି—ସୂର୍ଯ୍ୟ; ଅମଲ—ନିଶା; ଖାରା ଖଣ୍ଡାଧାରା—ସୁତୀକ୍ଷ୍ଣ ଖଡ଼ଗର ଦାଢ଼; ଅଷ୍ଟଦୁର୍ଗନାଥ—ଆଠଗଡ଼ ରାଜା, ଖଣ୍ଡ—ତକାୟତ ।

ଅନୁବାଦ—(ଖ) ଗୋପପୁରରେ କେଉଁ ନବବଧୂ ତାଙ୍କର ମୁକୁଟସ୍ଥିତ ଚଞ୍ଚଳ ମୟୂରପୁଚ୍ଛ ଚନ୍ଦ୍ରକର ମନୋହର ଗତିକୁ ଆଖିରେ ଦେଖି ଶୋକାକୁଳ ନ ହୋଇ ରହିବଟି ? ହେ ବାଳେ, ଏକୁଡ଼ିଶାଳରେ ଖେଳିବା ସମୟରେ ସେହି କୃଷ୍ଣ ପରା ପୂତନାର ପ୍ରାଣ ହରଣ କରିଥିଲେ, ଏକଥା ଲୋକଙ୍କ ମୁହଁରୁ ଶୁଣି ସୁଦ୍ଧା ତୁ କିପରି ସାହସ କଲୁ ? (ଯେ ଅତି ପିଲାବେଳେ ଗୋଟିଏ ପ୍ରୌଢ଼ା ସ୍ତ୍ରୀକୁ ହତ୍ୟା କରିଥିଲେ, ଏ ବୟସରେ ଯେ ସେ ତୋପରି ବାଳିକାକୁ ଅକ୍ଳେଶରେ ହତ୍ୟା କରିପାରିବେ ଏହା ନିଃସନ୍ଦେହ, ଏହା ଜାଣି ସୁଦ୍ଧା ତୁ କିପରି ତାଙ୍କ ଆଡ଼କୁ ଚାହିଁଲୁ ?)

ଆହା, କି ଦୁଃଖର କଥା ! ତୁ ପ୍ରିୟଜନଙ୍କର କଥା ନ ମାନି, ଯେଉଁ ଲୋକ ଯୁବତୀମାନଙ୍କ ସତୀତ୍ୱ ନଷ୍ଟ କରିବାରେ ସୁଦକ୍ଷ, ସେହି ସ୍ନିଗ୍ଧନୀଳକାନ୍ତି ମୟୂରପୁଚ୍ଛଧାରୀ ନୃତ୍ୟନିପୁଣ ଶ୍ରୀକୃଷ୍ଣଙ୍କ ଆଡ଼କୁ ମନୋହର ଭ୍ରୂଭଙ୍ଗୀ ସହ ସାଭିଳାଷ ଦୃଷ୍ଟିପାତ କଲୁ !

ଏହା ଶୁଣି ରାଧା ଦୂତୀକୁ କହୁଛନ୍ତି—"ଗଲାଣି ତ ଗଲା କଥାରେ" ଇତ୍ୟାଦି ।

* ପାଠାନ୍ତର—'ତାର' ସ୍ଥାନରେ 'ଝାଙ୍କେ'

ଗିଳିଦେଲା ପୁରନ୍ଦର-ନୀଳକର-କଳିକାମୟ ତିମିର;
ଗହନ କି ଗୃହ ହୋଇଲା ସନ୍ଦେହ ନିଶ୍ଚୟ ହୋଇ ବିଦୂର । ୪ ।
ଗତାଳସନାଟପଟୁ ଖଞ୍ଜରୀଟ ପରି କି ଆସିଲା ଉଡ଼ି,
ଗଣ୍ଡି ଗର୍ଭେ ଗୁଳି ଗଲା ପରି ଗଲି ବିବେକ ଦେଲା ଘଉଡ଼ି । ୫ ।
ଗଗନ-କୁସୁମ ପରି ଏଥି ଶ୍ରମ ଫଳ ହୋଇବ କି କାଳେ,
ଗୋଳିଆ ନ ରଖି କହ ଚନ୍ଦ୍ରମୁଖି ଗହଳି ନ ଥିବା ବେଳେ । ୬ ।
ଗରିଷ୍ଠ ଅରୁଚି କାହିଁକି କରୁଚି ଅଶନେ ବସନେ ଦେହେ,
ଗୁରୁଜନତତି ଜାଣିଲେ କି ଗତି ଅଷ୍ଟଦୁର୍ଗପତି କହେ । ୭ ।

(ଗ) ସ୍ୱାଭିନ୍ନେ ସଖି ମୁଞ୍ଚ ମାଦୃଶି ଜନେ ତ୍ୱଂ ବଞ୍ଚନାନାଂ ଚୟମ୍
ନାତୀତାନବଧାନତାଗ୍ରହିଳତା ନିର୍ମାତି ଶର୍ମାତ୍ମନଃ ।
ଜ୍ଞାନାଦ୍ ବା ତଦଭାବତଃ ପଥି ରସେନାର୍ଦ୍ରାନ୍ତରେ ବନ୍ଧୁରେ,
ସଂପାତୋଭବହୃଦ୍‌ବ୍ୟଥାଂ ହର ପରାମୋଦଂ ଚ ନୋଦଞ୍ଚୟ ।।

(ଗଦ୍ୟ) ଜ୍ଞାନେନ ବାଜ୍ଞାନେନ ପ୍ରଣିତସ୍ୟାତୀତସ୍ୟାପରାଧସ୍ୟ ସ୍ମାରଣଶରବିସରାସାର-ପ୍ରୟୋଗଶୀର୍ଣ୍ଣସାରାଂ ମାରାଶୁଗା-ଶୁଗବିଶେଷନିଃଶେଷସାମର୍ଥ୍ୟାଂ କିମାଳି ମାଂ କଦର୍ଥୟସି ବ୍ୟର୍ଥମିତିଗଦିତବତ୍ୟାଂ ସାମିଗଳିତଧୈର୍ଯ୍ୟାୟାଂ କିଶୋର୍ଯ୍ୟାଂ ପୁନସ୍ତାଂ ପ୍ରତି ସଖୀ ସାକୂତଂ ।

---

(ଗ) ବିଶଦ—ନିର୍ମଳ; ଗଣ୍ଠିଧନ—ଅତି ଯତ୍ନରେ ରଖିଥିବା ସମ୍ପତ୍ତି; ଖେଦ—ଦୁଃଖ; ଦରଦ—ଦରଜ, ପ୍ରାସ; ଲାଗି—ନିଶା, ମାଦକତା; ରଞ୍ଜାଇଲା—ମୋହିତ କଲା; ଝଳି—ପ୍ରବେଶ କରି; ଗୋଳା ଗରଳ—ତରଳ ବିଷ; ପୀୟୂଷ—ଅମୃତ; ଗୋଳିଦେଲା—ତରଳାଇ ଦେଲା ଅର୍ଥାତ୍ ଅଭିଭୂତ କରିଦେଲା; ଗାତ୍ର—ଦେହ; ଶ୍ରବଣସୀମା ସରଣେ—କାନପାଖରେ ପହଞ୍ଚିଲାକ୍ଷଣି; ପୁରନ୍ଦର ନୀଳକର—ଇନ୍ଦ୍ରନୀଳମଣିର କିରଣ; କଳିକା—କଢ଼ (କବିମାନେ କିରଣକୁ କଳିକା ସଙ୍ଗେ ତୁଳନା କରନ୍ତି); ତିମିର—ଅନ୍ଧକାର; ଗହନ—ବନ; ନିଶ୍ଚୟ—ସନ୍ଦେହଶୂନ୍ୟ ଜ୍ଞାନ; ବିଦୂର—ବିଶେଷ ପରିମାଣରେ ଦୂରବର୍ତ୍ତୀ; ଗତାଳସ—ନିରଳସ; ନାଟପଟୁ—ନୃତ୍ୟନିପୁଣ; ଖଞ୍ଜରୀଟ—କଜଳପାତି ଜାତୀୟ ଏକ ପ୍ରକାର ପକ୍ଷୀ; ଗଣ୍ଡି—ଶରୀର; ଗଗନକୁସୁମ—ଆକାଶ ଫୁଲ ଅର୍ଥାତ୍ ଅସମ୍ଭବ ବସ୍ତୁ; ଗୋଳିଆ—କପଟ; ଗହଳି—ଜନତା ବା ଲୋକଗହଳ; ଗରିଷ୍ଠ—ଅତ୍ୟନ୍ତ, ଅଧିକ; ଅଶନ—ଭୋଜନ; ବସନ—ବସ୍ତ୍ର; ଗୁରୁଜନତତି—ଗୁରୁଜନସମୂହ ।

ଅନୁବାଦ—(ଗ) ହେ ସଖି, ମୋପରି ଅଭିନ୍ନହୃଦୟ ବନ୍ଧୁକୁ ତୁ ପ୍ରତାରଣା କରନା ଓ ମୋର ଅସାବଧାନତା କଥା ମୋତେ ଆଉ ବାରମ୍ବାର କହନା । ତାହା ସୁଖକର ବୋଧ ହେଉ ନାହିଁ । ଜାଣି [illegible] ହେଉ ବା ଅଜଣାରେ ହେଉ, ଖାଲ ଢିପ ଖସଡ଼ା ବାଟରେ



## ରାଗ—କାମୋଦୀ

ଘେନାଇ ଆମ୍ଭେ ଯେତେ କହିଲୁ ରେ, ଘେନିଲୁ ନାହିଁ ବାଳା ପହିଲୁ ରେ,
ଘୃତଘଟକୁ ଶିଖି-ଶିଖା ପାଖରେ ରଖି ଶିରୀଷଦେହା ଏହା ସହିଲୁ ରେ । ପଦ ।
ଘସ୍ରନାଥନନ୍ଦନା ଅନାଉଣିକି ମନା କରୁଁ ଯେ ଥାଉଁ ହଟି ଚାହିଁଲୁ ରେ,
ଘଟୀସରିକି କରେ ତାହିଁ କି ବିବେକରେ ମହାର୍ଣ୍ଣବରେ ଅବଗାହିଲୁ ରେ । ୧ ।
ଘୋଟି କିତବମୂଳ ଘୋରି ଘୋର ଢାଙ୍ଗଳ ଗରଳତୁଲେ ତାହା ପିଇଲୁ ରେ,
ଘୁମାଇବାର ସମ୍ଭବିଲା ନାହିଁ କି ଆମ୍ଭ ସୁଯୋଗୁଁ ସିନା ବଞ୍ଚି ଅଇଲୁ ରେ । ୨ ।
ଘେନି ଘେନାଇ ଯାଇ କହିବା ସମଜାଇ ଘଟିଲେ ଆମ୍ଭେ ଏକା ଜୀଇଲୁ ରେ,
ଘଟନା ବିରହରେ ଅବଶ୍ୟ ତ ଜହରେ ତୋ ଘେନି ଆତ୍ମଘାତୀ ହୋଇଲୁ ରେ । ୩ ।
ଘୋଳାରେ ପଛେ ମରୁ ଆଜ୍ଞୁ ତୋ ହୁକୁମରୁ ନିକୁଞ୍ଜ ଦଉଡ଼କୁ ରହିଲୁ ରେ,
ଘାଣ୍ଟି ହେଉଛୁ ମାତ୍ର ଆନୀଳଶତପତ୍ରନେତ୍ରା ଯା ଆମ୍ଭ ବଶ ନୋହିଲୁ ରେ । ୪ ।
ଘନେ ଚପଳା ଲୀଳା ଚାହିଁ ଘନକୁନ୍ତଳା ତୁ କି ଏ ଅଭିଳାଷ ବହିଲୁ ରେ,
ଘାରି ଦେଲୁ କି ରସେ ଅଷ୍ଟଦୁର୍ଗେଶ ଭାଷେ ଅବଶ୍ୟ ମୋହନକୁ ମୋହିଲୁ ରେ । ୫ ।

(ଘ) ବନ୍ୟାମାର୍ତ୍ତଣ୍ଡକନ୍ୟାତଟନିକଟଭୁବଃ ପ୍ରେକ୍ଷଣଂ ନେତି ପଥ୍ୟଂ,
ଭୂୟୋଽସ୍ମାଭିଃ ପ୍ରଯୁକ୍ତା ଶ୍ରବସି ନ ଲଗିତା ତୁଚ୍ଛକୁଷ୍ଟାଚିକିତ୍ସା ।
ବୈଦ୍ୟେ ସଦ୍ୟଃ ସମୁଦ୍ୟଦଗଦହୃତି ଚତୁରେ ଯଦ୍ୟପେକ୍ଷାନବଦ୍ୟେ,
ଯାମଃ କାମସ୍ୟ ପୂର୍ତ୍ତୌ ଗତିରିହ ଜଗତଃ କେବଳଂ ତେଽବଲମ୍ୱଃ ।।

---

ଚାଲିବାରୁ ଗୋଡ଼ ଖସି ହୃଦୟରେ ବଡ଼ ବ୍ୟଥା ହୋଇଅଛି; ସେ ବ୍ୟଥାକୁ ଦୂର କର ଏବଂ ଶତ୍ରୁମାନଙ୍କର ଆନନ୍ଦ ବଢ଼ାନା ।

ଜ୍ଞାନରେ ବା ଅଜ୍ଞାନରେ ଯେଉଁ ଅପରାଧ କରିଅଛି, ପୁନଃ ପୁନଃ ସ୍ମରଣ କରାଇବାରୁ ତାହା ବାଣ ପରି ମୋ ଶରୀରରେ ପ୍ରବେଶ କରି ତାହାକୁ ଶୀର୍ଣ୍ଣ କରିଦେଲାଣି, ତା ଉପରେ ପୁଣି କନ୍ଦର୍ପ ତୀକ୍ଷ୍ଣ ଶର ମାରି ମୋର ସବୁ ଶକ୍ତିକୁ ଅପହରଣ କରିସାରିଛି । ଏପରି ଅବସ୍ଥାରେ ତୁ ଆଉ କାହିଁକି ମୋତେ ଏପରି କଦର୍ଥନା କରୁଛୁ ? ରାଧାଙ୍କର ଧୈର୍ଯ୍ୟ ପ୍ରାୟଶଃ ନଷ୍ଟ ହୋଇଯାଇଥିଲା । ସେ ଏହିପ୍ରଳି କହି ନିବୃତ୍ତ ହୁଅନ୍ତେ, ଦୂତୀ ହୃଦୟରେ ଅଭିପ୍ରାୟ ରଖି ତାଙ୍କୁ କହୁଅଛନ୍ତି—''ଘେନାଇ ଆମ୍ଭେ ଯେତେ'' ଇତ୍ୟାଦି ।

(ଗଦ୍ୟ) ସ୍ୱାମିନ୍ୟନୁଜ୍ଞାନୁଲ୍ଲଙ୍ଘନଜଙ୍ଘାଳତୈବ ମାଦୃକ୍‌ପ୍ରିୟଜନପ୍ରଣୀତପ୍ରଯତ୍ନାନାମ-ନୁପଧିକା-ପରିଣତିଃ ପରମେଶ୍ୱରାଧୀନଂ ତର୍କୟୋଦର୍କମିତ୍ୟୁକ୍ତ୍ୱା ଶ୍ରୀକୃଷ୍ଣାନ୍ତିକଂ ପ୍ରବିଶ୍ୟ ବିଜ୍ଞାପୟାମାସ ଲଳିତା ।

---

(ଘ) ଘେନାଇ—ବୁଝାଇ, ଘେନିଲୁ ନାହିଁ—ଗ୍ରହଣ କଲୁ ନାହିଁ, ପହିଲୁ—ପ୍ରଥମରୁ, ଘୃତଘଟ—ଘିଅମାଠିଆ, ଶିଖିଶିଖା—ଅଗ୍ନିଶିଖା, ଶିରୀଷଦେହା—ଶିରୀଷ ଫୁଲ ପରି ଦେହ ଯାହାର, କୋମଳାଙ୍ଗୀ; ଘସ୍ରନାଥ ଅର୍ଥାତ୍ ଦିନନାଥ ସୂର୍ଯ୍ୟଙ୍କର ଝିଅ ଯମୁନା, ଅନାଉଣି—ଅନାଇବା, ଚାହିଁବା; ହଟି—ହଟ କରି, ଜିଦି ଧରି; ଘଟୀସରିକି—ମାଠିଆଟିଏ ମଧ୍ୟ, କରେ—ହାତରେ, ବିବେକ—ବିଚାର ବୁଦ୍ଧି, ମହାର୍ଣ୍ଣବ—ମହାସମୁଦ୍ର, ଅବଗାହିଲୁ—ବୁଡ଼ ଦେଲୁ, କିତବ—ଧୁତୁରା, ଘୋର—ଭୟଙ୍କର, ଲାଙ୍ଗଳ—ଏକପ୍ରକାର ତୀବ୍ର ବିଷଯୁକ୍ତ ଜଙ୍ଗଲି ଗଛ (ଲାଙ୍ଗଳିଆ), ଗରଳ ତୁଲେ—ବିଷ ସାଙ୍ଗରେ, ସମଚାଇ—ବୁଝାଇ, ଘୋଳା—ଗୋଡ଼ବିନ୍ଧା, ନିକୁଞ୍ଜ—କୁଞ୍ଜବନ, ଘାଣ୍ଟି ହେଉଛୁଁ—କଷ୍ଟ ପାଉଅଛୁଁ, ଆନୀଳଶତପତ୍ରନେତ୍ରା—(ଆନୀଳ, ସମ୍ପୂର୍ଣ୍ଣରୂପେ ନୀଳ), ଶତପତ୍ର—ପଦ୍ମ ଅର୍ଥାତ୍ ନୀଳପଦ୍ମ ପରି ନେତ୍ର ଯାହାର, ଘନେ—ମେଘରେ, ଚପଳାଲୀଳା—ବିଜୁଳି ଖେଳିବା, ଘାରିଦେଲୁ—ଅଭିଭୂତ କରିଦେଲୁ, ଘନକୁନ୍ତଳା—ଘନ ଅର୍ଥାତ୍ ମେଘ ପରି ଗାଢ଼ କୃଷ୍ଣବର୍ଣ୍ଣ କେଶ ଯାହାର, ମୋହନ—ଶ୍ରୀକୃଷ୍ଣ ।

ଅନୁବାଦ—(ଘ) ଯମୁନାକୂଳବର୍ତ୍ତୀ ବନକୁ ଚାହିଁବା ତୁମ୍ଭ ପକ୍ଷରେ ହିତକର ନୁହେଁ, ଏହା ଆମ୍ଭେମାନେ ତୁମ୍ଭକୁ ପୁନଃପୁନଃ କହିଲେହେଁ ତୁମ୍ଭେ ସେହି ହିତୋପଦେଶକୁ କାନରେ ଶୁଣିଲ ନାହିଁ । ଯେଉଁ ବୈଦ୍ୟ ରୋଗର ଆଶୁ ପ୍ରତିକାର ବିଧାନ କରିପାରନ୍ତି, ସେଭଳି ବୈଦ୍ୟଠାରେ ତୁମ୍ଭର ଯେବେ ଅପେକ୍ଷା ଥାଏ, ତେବେ ଆମ୍ଭେମାନେ ବର୍ତ୍ତମାନ ତୁମ୍ଭ କାମନା ପୂରଣ କରିବା ପାଇଁ ଯାଉଅଛୁଁ । ଜଗତ୍‌କର୍ତ୍ତା ପରମେଶ୍ୱର ହିଁ ଏ ବିଷୟରେ ଏକା ତୁମ୍ଭର ପ୍ରଧାନ ଅବଲମ୍ବନ ।

ହେ କର୍ତ୍ତ୍ରି । ମୁଁ ତୁମ୍ଭର ପ୍ରିୟଜନ, ଏପରି ଅବସ୍ଥାରେ ତୁମ୍ଭର ଆଦେଶ ପାଳନ କରି ଶ୍ରୀକୃଷ୍ଣଙ୍କ ନିକଟକୁ ପୁନଃପୁନଃ ଯିବାଆସିବା କରିବା ହିଁ ମୁଁ ମୋ କର୍ତ୍ତବ୍ୟର ନିଷ୍କପଟ ପରିଣାମ ବୋଲି ମନେ କରୁଅଛି । କିନ୍ତୁ ଏହାର ଉତ୍ତରଫଳ ଈଶ୍ୱରାଧୀନ । ଲଳିତା ଏହା କହି ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ କଲେ ଏବଂ ତାଙ୍କୁ କହିବାକୁ ଆରମ୍ଭ କଲେ, "ନୂଆ [illegible] ମୁକୁଟ" ଇତ୍ୟାଦି ।



## ରାଗ—ସିନ୍ଧୁକାମୋଦୀ ବା କୁମ୍ଭକାମୋଦୀ

ନୂଆ ନଟପଟଳୀମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ,
ନିପଟ ନିସ୍ତେଜ ଦିଶୁଛି ତ ଆଜ ନିରଳସ ଚନ୍ଦ୍ରମୁଖ । ପଦ ।
ନୀଳୋତ୍ପଳ ବାସି ହେଲା ପରି ଦିଶିଯାଉଛି ଦୂରୁ ଶ୍ରୀଅଙ୍ଗ,
ନାସା ନୀଳ ତିଳଫୁଲରୁ ଅନିଳ ପ୍ରସରୁଚି ବେଗ ବେଗ । ୧ ।
ନୀପ-ଉପବନ ନିକଟ ପବନ ସ୍ୱରଶରୁ ଯେବେ ଡର,
ନଦୀକୂଳ ସ୍ଥଳ ଏ ବଡ଼ ଶୀତଳ ନୁହନ୍ତାଟିକି ବିହାର । ୨ ।
ନିଦ ନାହିଁ କି ନୟନେ ନିଶି ଦିନ ଆହା ମରଇ ମୋ ଧନ,
ନବନୀତ ତହୁଁ ମୃଦୁ ଦେହେ କାହୁଁ ସମ୍ଭବିଲା ଏ କଦନ । ୩ ।
ନବ ହେମଦ୍ୟୁତି ଅମରୀଏ ନିତି ନିଅନ୍ତି ଫୁଲ ଏ ବନୁ,
ନେତ୍ରପଥେ ପଡ଼ିଗଲେ କି ସେ ଛାଡ଼ି ଯାଉ ନାହିଁ ଜ୍ୱର ମନୁ । ୪ ।
ନ ବିହର ଗୋପସଙ୍ଖାଳି ଏ ପାପ ଗହନରେ କିଛି ଦିନ,
ନରେଶମଣ୍ଡନ ଶ୍ରୀହରିଚନ୍ଦନ ଜଗଦ୍ଦେବ ସ୍ତବ ଘେନ । ୫ ।

(ଙ) ହା ହା ହନ୍ତ ହତାସ୍ମି କେନ ବିଳସନ୍ନୀଲାଶ୍ମତେଜୋଘଟା
ଧୂର୍ଯ୍ୟଂ ପର୍ଯ୍ୟୁଷିତୋତ୍ପଳାବଳିରୁଚା ମାସୀନ୍ନିଧ୍ୱସ୍ତେ ବପୁଃ ।
ନାତ୍ର କ୍ରୀଡ଼ୟ ପଞ୍ଚଶାଣ୍ୟପି ଦିନାନ୍ୟମ୍ଭୋରୁହାକ୍ଷାର୍ଭକାନ୍,
ବାର୍ଗଂ ନେଦମଖଣ୍ଡଶୈତ୍ୟବିଭବଂ ମାର୍ତ୍ତଣ୍ଡପୁତ୍ର୍ୟାସ୍ତଟଂ ॥

(ଗଦ୍ୟ) ଚନ୍ଦ୍ରକାପୀଡ଼ସୁନ୍ଦରେନ୍ଦ୍ର କିଶୋରଚକ୍ରଚୂଡ଼ାମଣେତାଦୃଙ୍ନିରଳସକେଳି-କଳାକଳାପଲାଞ୍ଛନଲିତାୟ ବପୁଷେ ଭବତୋ ଭବତି ନ କିଂ ହିତମଶ୍ରାନ୍ତଂ ବାହିନୀତଟପର୍ଯ୍ୟଟନଂ ।

---

(ଙ) ନୂଆ ନଟପଟଳୀମୁକୁଟ—ନୂତନ ନର୍ତ୍ତକମାନଙ୍କ ବା ଦୁଷ୍ଟ ଟୋକାଙ୍କ ମଧ୍ୟରେ ଶ୍ରେଷ୍ଠ; ନିପଟ—ଅତ୍ୟନ୍ତ; ନିରଳସ—ଆଳସ୍ୟହୀନ ଅର୍ଥାତ୍ ମନୋହର; ନୀଳୋତ୍ପଳ—ନୀଳପଦ୍ମ; ବାସି—ମଉଳି ପଡ଼ିଥିବା (ସଜର ବିପରୀତ); ନୀଳ ତିଳଫୁଲ—ନେଳିଆ ରାଶିଫୁଲ; ଅନିଳ—ପବନ, ନିଶ୍ୱାସ; ପ୍ରସରୁଛି—ବାହାରୁଛି, ବେଗ ବେଗ—ଅତି ଚଞ୍ଚଳ, ନୀପ ଉପବନ—କଦମ୍ବ ବଗିଚା; ନବନୀତ—ଲହୁଣୀ; ତହୁଁ—ଠାରୁ; ମୃଦୁ—କୋମଳ; କଦନ—କଷ୍ଟ, ଯନ୍ତ୍ରଣା; ନବହେମଦ୍ୟୁତି—ଯେଉଁମାନଙ୍କ ଦେହଶୋଭା ନୂତନ ସୁନାପରି ଉଜ୍ଜ୍ୱଳ; ଅମରୀଏ—ଅପ୍‌ସରାମାନେ; ଜ୍ୱର—ସନ୍ତାପ; [illegible] ସଙ୍ଖାଳି—ଗୋପନଗରର ସର୍ବସ୍ୱ; ଗହନରେ—ବନରେ; ନରେଶମଣ୍ଡ[illegible] ।



## ରାଗ—ପଞ୍ଚମ ବରାଡ଼ି

ଚାହିଁ ଚାହିଁ ତୋ ସରଣୀ କକୁଭକୁ ରେ ତରୁଣୀ ଚିତ୍ରାର୍ପିତ ପରି ଥିଲି ବସି । ଚିତ୍ର ମଣିଲି ମୁଁ ତତେ, ଚାହିଁ ଯା ଅତରକିତେ ଚାରିଚକ୍ଷୁ ମିଶାଇଲୁ ଆସି ରେ, ଚଳାପାଙ୍ଗି, ଚନ୍ଦ୍ରରୁ ଚିପୁଡ଼ି ସୁଧା ଝରି, ଚିରତୃଷିତର ମୁଖେ ଭରି, ଚାତୁର୍ଯ୍ୟ କୃପାଳୁ ଗୁଣ-ନିଧି ରଖିଲୁ କି ପ୍ରାଣ ଘେନିଲି ମୁଁ ଏତେ ସରି କରି ରେ । ୧ ।

ଚେତା ଥିଲା ପରି କିଛି ପ୍ରତୀତ ହେଉଅଛି, ଚିକ୍‌କଣ ତ ଦିଶୁଛି ମୋ ଦେହ । ଚିହ୍ନିକି ଲାଞ୍ଛନ ସତେ ଚାମରଚିକୁରା ମୋତେ ଚହକାଇ ଚପଚାରିଲୁ କହ ରେ, ଚଳାପାଙ୍ଗି, ତୁମ୍ଭି ରବିନନ୍ଦନାର ନୀର, ଚନ୍ଦ୍ରିକାଚ୍ଛୟ ତୁଷାର ସାର; ଚାରୁ ମାରୁତରୁ ତରୁ-ତଳ ଶୀତଳ ହେତୁରୁ ଚିନାଏ ତ ଖେଦ ନାହିଁ ମୋର ରେ । ୨ ।

ଚାରି ହରିତରେ ଘେରି ଚରାଉଥାନ୍ତି ବାଛୁରୀ ଚୂଳମୁକୁଟିଆ ସଖାମାନେ । ଚିରାମରା ଶୃଙ୍ଗ ବେଣୁ, ବାଦ୍ୟନାଦ ଶୁଣୁ ଶୁଣୁ, ଶେଷ ହୁଏ ଦିନ ଦିନେ ଦିନେ ରେ, ଚଳାପାଙ୍ଗି, ତୁମ୍ଭି ବାରୁଣୀକି ଦିନଦ୍ୟୁତି, ଚପଳେ ଅମ୍ବର ବରଜନ୍ତି, ଚରମ ଭାଗ ମୋ ଭାରି, ଲାଗି ନାହିଁ ଭ୍ରମେ ଡରି, ଚମକି ତ ନାହିଁ ମୋର ଛାତିରେ । ୩ ।

ଚାମୀକରଚ୍ଛବିରୁ ଶିରୀ-ମତୀ ସେ କେଉଁ ଅମରୀ, ଚାଖି ନାହିଁ ଦିନେ ମୋ ନୟନ । ଚମତ୍କାର କଥା ଦେଖି ପେଟରେ କପଟ ରଖି, ତୋତେ ନିକି ନ କହନ୍ତି ଘେନ ରେ, ଚଳାପାଙ୍ଗି, ଚରାଚର ଚାଲି ଭୟମୟ, ଚକଟି ହେଲୁ ମୋ ହୃଦାଶୟ, ଚରଣ ଯୁଗକୁ ତୋର ବନ୍ଦେ ଅଷ୍ଟଦୁର୍ଗେଶ୍ୱର, ଚୋରି ନାହିଁ ଥିଲେହେଁ ବଞ୍ଚାଅ ରେ । ୪ ।

---

ଅନୁବାଦ— (ଚ) ଆହା, ତୁମ୍ଭର ଯେଉଁ ଶରୀର ଇନ୍ଦ୍ରନୀଳମଣିର ତେଜ ଧାରଣ କରି ମନୋହରଣ କରୁଥିଲା, ଆଜି ତାହା କାହିଁକି ବାସି ନୀଳପଦ୍ମ ପରି ଏଭଳି ମଳିନ ଦିଶୁଛି, ଏହା ଦେଖି ମୋ ମନରେ ବଡ଼ କଷ୍ଟ ହେଉଅଛି; ହେ ପଦ୍ମଲୋଚନ, ଏଠାରେ ପାଞ୍ଚ ଛଅ ଦିନ ଆଉ ଗୋପ ବାଳକମାନଙ୍କୁ ଖେଳାଅ ନାହିଁ, କାରଣ ଏ ଯମୁନା ନଈକୂଳରେ ଭାରି ଶୀତ, ଏହା ତୁମ୍ଭ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ନୁହେଁ ।

ହେ ଚନ୍ଦ୍ରକଚୂଳ, ହେ ସୁନ୍ଦର ଯୁବକଶ୍ରେଷ୍ଠ, ତୁମ୍ଭ ଶରୀର ମନୋହର ବିଳାସରେ ସର୍ବଦା ଅତୀବ ସୁକୁମାର, ଯମୁନାକୂଳରେ ନିରନ୍ତର ଭ୍ରମଣ କରିବାଟା ତୁମ୍ଭର ସେହି ସୁକୁମାର ଶରୀର ପକ୍ଷରେ ହିତକର ହେଉ ନାହିଁ ପରା ! ଲଳିତାଙ୍କଠାରୁ ଏହି କଥା ଶୁଣି ଶ୍ରୀ[illegible] ଛନ୍ତି—"ଚାହିଁ ଚାହିଁ ତୋ ସରଣୀ" ଇତ୍ୟାଦି ।

(ଚ) କଲ୍ୟାଣଂ ବଲ୍ଲବାନାଂ ବିଗଳିତବୟସାଂ କିଂ ସ୍ୱଦାରୈରୁଦାରୈଃ
କଚ୍ଚିଦ୍‌ବାଳାବଳୀନାଂ ଶ୍ରିୟମନୁଭବସି ପ୍ରତ୍ୟହଂ ସତ୍ୟସନ୍ଧେ ।
ଦୀନଶ୍ଚିନ୍ତାମଣୀନାଂ ତତିମିବ ନିତରାଂ ତ୍ୱାଂ ପ୍ରପଦ୍ୟାସ୍ମି ତୁଷ୍ଟ-
ଶ୍ଚିତ୍ରଂ ସନ୍ଧ୍ୟାତମାତ୍ରା ବିଧୁମୁଖି ମମ ଯତ୍ ଯାସି ନେତ୍ରାତିଥିତ୍ୱଂ ॥

(ଗଦ୍ୟ) କିମଦ୍ୟ ଲଳିତେ ଧରିତ୍ରୀପୁତ୍ରଚରମସଞ୍ଚାରଚିରାବଗ୍ରହଗ୍ରହିଳ ରବିଗ୍ରହକରନିକର-ବ୍ୟତିକରତପ୍ତାଙ୍କୁରକେଦାରଂ ପ୍ରତି ଦୃଷ୍ଟ୍ୟେବ ଦିଷ୍ଟ୍ୟାତ୍ର ପ୍ରବିଷ୍ଟଂ ସ୍ମୃତମାତ୍ରୟା ତ୍ୱୟା ।

---

(ଚ) ସରଣୀ—ମାର୍ଗ, ବାଟ, କକୁଭ—ଦିଗ; ଚିତ୍ରାର୍ପିତ—ଚିତ୍ରରେ ଅଙ୍କିତ ପିତୁଳା; ଚିତ୍ର—ଆଶ୍ଚର୍ଯ୍ୟ; ଅତର୍କିତେ—ଅଜ୍ଞାତ ଭାବରେ, ଚଳାପାଙ୍ଗୀ—ଚଞ୍ଚଳନେତ୍ରା, ସୁଧାଝରି—ଅମୃତର ସୁରେଇ (ପାତ୍ରବିଶେଷ), ଚାତୁର୍ଯ୍ୟ କୃପାଳୁ ଗୁଣନିଧି—ଚତୁରତା ଓ ଦୟାଗୁଣରେ ପୂର୍ଣ୍ଣ, ପ୍ରତୀତ—ଜଣା, ଲାଞ୍ଛନ—ଲକ୍ଷଣ, ଚାମରଚିକୁରା—(ଚାମର ପରି ଚିକୁର ଯାହାର) ଦୀର୍ଘ ଘନକେଶଧାରିଣୀ, ଚହକାଇ—ଡରାଇ, ତୃମ୍ପି—ପାନ କରି, ରବିନନ୍ଦନାର ନୀର—ଯମୁନା ପାଣି; ଚନ୍ଦ୍ରିକାଚୟ—ଚନ୍ଦ୍ରକିରଣ ସମୂହ, ତୁଷାରସାର—ଶୀତଳତା, ଚାରୁ ମାରୁତ—ମନୋହର ପବନ, ଚିନାଏ—ଟିକିଏ, ହରିତ—ଦିଗ, ଚୂଳମୁକୁଟିଆ—ମୟୂର ଚୂଳମୁକୁଟଧାରୀ, ଚିରାମରା—ପାଟିତୁଣ୍ଡ, ଶୃଙ୍ଗ—ଶିଙ୍ଗା, ବେଣୁ—ବଂଶୀ, ବାରୁଣୀ—ପଶ୍ଚିମଦିଗ, ଦିନଦ୍ୟୁତି—ସୂର୍ଯ୍ୟ, ଚପଳେ—ଅତି ଚଞ୍ଚଳ, ଅମ୍ବର—ଆକାଶ, ବରଜନ୍ତି—ତ୍ୟାଗ କରନ୍ତି, ଦିନଃଦ୍ୟୁତି—ସୂର୍ଯ୍ୟ, ଚରମ ଭାଗ—ପୃଷ୍ଠଭାଗ, ଚାମୀକର—ସୁନା, ଅମରୀ—ଅପ୍‌ସରା (ସୁନା ପରି ସୁନ୍ଦର ଶ୍ରୀଯୁକ୍ତା ଅପ୍‌ସରୀ), ନିକି—କଅଣ (ପ୍ରଶ୍ନସୂଚକ ଅବ୍ୟୟ), ଚରାଚର ଚାଲି—ଚତୁର୍ଦ୍ଦିଗର ରୀତି, ସଂସାରରୀତି; ହୃଦାଶୟ—ଅନ୍ତଃକରଣ, ଚୋରି ନାହିଁ—ଚୋରାଇ ନାହିଁ ।

ଅନୁବାଦ—(ଚ) ଅୟି ଲଳିତେ ! ବୃଦ୍ଧ ଗୋପାଳମାନେ ନିଜ ନିଜ ଉଦାରସ୍ୱଭାବା ସ୍ତ୍ରୀମାନଙ୍କ ସଙ୍ଗରେ କୁଶଳରେ ଅଛନ୍ତି ତ ? ହେ ସତ୍ୟବାଦିନି, ଗୋପ ଯୁବତୀଗଣ ପରମ ସୁଖରେ ଅଛନ୍ତି ତ ? ହେ ବିଧୁମୁଖି, ସ୍ମରଣ ମାତ୍ରକେ ତୁମ୍ଭେ ଯାହା ମୋ ପାଖରେ ଉପସ୍ଥିତ ହୋଇଗଲ, ଏ ବଡ଼ ବିଚିତ୍ର କଥା । ଦରିଦ୍ର ଲୋକ ଏକାବେଳେକେ ଅନେକଗୁଡ଼ିଏ ଚିନ୍ତାମଣି ପାଇଲେ ଯେପରି ଆନନ୍ଦିତ ହୁଏ, ତୁମ୍ଭକୁ ଏଠାରେ ପାଇ ମୁଁ ସେହିପରି ଆନନ୍ଦିତ ହେଉଅଛି, ଅର୍ଥାତ୍ ତୁମ୍ଭକୁ ପାଇବାରୁ ମୁଁ ମନେ କରୁଅଛି, ମୋର ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହେବ ।

ଅୟି ଲଳିତେ ! ମଙ୍ଗଳଗ୍ରହ ଏକ ରାଶିରୁ ଅନ୍ୟ ରାଶିକୁ ଚଳିବା ବେଳେ ପ୍ରଖର ସୂର୍ଯ୍ୟରଶ୍ମି ଦ୍ୱାରା ଶସ୍ୟକ୍ଷେତ୍ରମାନଙ୍କରେ ମ୍ରିୟମାଣ [illegible] ପଡ଼ିଥିବା ଅଙ୍କୁର ସମୂହ ପକ୍ଷରେ ପ୍ରବଳ ବୃଷ୍ଟିଧାରା ଯେପରି, ତୁ[illegible]ଏ ଦେ[illegible]ରୁଥିବାବେଳେ ତୁମ୍ଭେ



## ରାଗ—ମୁଖାବରୀ ବା ତୋଡ଼ିପରଜ

ଝଗଡ଼ି ମାତ୍ର ହେଲ ହେ ଶ୍ୟାମ, ଝିମୁଟ ହେବାକୁ ସହସ୍ର ଯାମ । ପଦ ।
ଝାଉଁଳିବା ନବ ତମାଳ ରମା, ଝିଙ୍କି ଆଣି ଅଙ୍ଗେ କଲଣି ଜମା । ୧ ।
ଝଡ଼ିବ ବଳ କୋମଳ ଛାତିରୁ, ଝଷଧ୍ୱଜପୀଡ଼ା ଝାଞ୍ଜି ତାତିରୁ । ୨ ।
ଝୁମି ଝୁମି ଲୁଠି ପୃଷ୍ଠେ ରସାର, ଝୁରିବାର ଏକା ହୋଇବ ସାର । ୩ ।
ଝଳି ପାଞ୍ଚାଳୀ ଝଟକେ ନାହିଁ କି ? ଝୋଲା ମାଇଲା ତୁମ୍ଭଙ୍କୁ କାହିଁକି । ୪ ।
ଝଲକି ଗଲ କୃଷ୍ଣ ଅକାରଣେ, ଝାଡ଼ଖଣ୍ଡ ରସା ବାଦସା ଭଣେ । ୫ ।

(ଝ) ଖର୍ବଃ ପାର୍ବଣଶର୍ବରୀରତିଗୁରୋରାପୀଡ଼୍ୟ ବିମ୍ବଂ କ୍ଷୁଧା,
ମର୍ତ୍ତ୍ୟଃ କ୍ୱାପି ସୁଧାମମୁତ୍ର ବସୁଧାଲୋକେ ପିବତ୍ୟାତୁରଃ;

---

ଜାତିକୁରୁବିନ୍ଦ—ଉତ୍କୃଷ୍ଟ ପଦ୍ମରାଗମଣି, ବାତାୟନବୃନ୍ଦ—ଝରକା ସବୁ, ମନ୍ଦ ମନ୍ଦ—ଧୀରେ ଧୀରେ, ଜଙ୍ଗମ ହେବା—ଚଳନ୍ତା ବା ଚଳୁଥିବା, ଜମ୍ବୁନଦ—ନଦୀ ବିଶେଷ, ଏଥିରୁ ଉତ୍ପନ୍ନ ହୁଏ ବୋଲି ସୁବର୍ଣ୍ଣକୁ ଜମ୍ବୁନଦସାର ବା ଜାମ୍ବୁନଦ ବୋଲାଯାଏ, ଶ୍ରୀ—ଶୋଭା, ସ୍ଫୁରିଲା—ପ୍ରକାଶ ପାଇଲା, ଜୀବନଦ—ବର୍ଷୁକ ମେଘ, ନୀଳଜଳଜଯୁଗଳ—ଦୁଇଟି ନୀଳକଇଁ, ବିଧୁବିମ୍ବ—ଚନ୍ଦ୍ରବିମ୍ବ, ନିଳାସବିଲୋଳ—କ୍ରୀଡ଼ାରେ ଚଞ୍ଚଳ (ରାଧାଙ୍କ ମୁଖ ରୂପକ ଚନ୍ଦ୍ରରେ ଚକ୍ଷୁ ରୂପକ ଦୁଇଟି ନୀଳ କଇଁର କ୍ରୀଡ଼ା), ଗର—ବିଷ, ଜର୍ଜର—କ୍ଳିଷ୍ଟ, ଶରନିକର—ବାଣସମୂହ, ଜୀବନାଶା—ପ୍ରାଣର ଆଶା, ଜହର—ବିଷ, ହୃଦନ୍ତର—ହୃଦୟ ଭିତର, ନେତ୍ରପାତ୍ରେ—ଚକ୍ଷୁ ରୂପକ ପାତ୍ରରେ ।

ଅନୁବାଦ— (ଜ) ଅୟି ଲଳିତେ, ତୋ ସ୍ନେହ ଏକା ମୋ ମନର ସମସ୍ତ ଆନନ୍ଦର କାରଣ । ଏପରି ଅବସ୍ଥାରେ ତୋ ପାଖରେ ମୁଁ ଆଦୌ କପଟାଚରଣ ନ କରି ସତ୍ୟ କହୁଅଛି—ଇନ୍ଦ୍ରନୀଳମଣି ପ୍ରାସାଦରେ କ୍ରୀଡ଼ା କରୁଥିବା କୌଣସି ବସ୍ତୁକୁ ଦେଖିବା ଦିନଠାରୁ ମୋର ଏହି ରୋଗ ଜାତ ହୋଇଅଛି । ସଖି ଲଳିତେ, ବିଶୁଦ୍ଧ ଇନ୍ଦ୍ରମଣି ପଥରରେ ନିର୍ମିତ କୋଠାଉପରେ ପବନରେ ଖେଳୁଥିବା ପତାକାକୁ ଚାହିଁ ଚାହିଁ ମୁଁ ଯାଉଥିଲି, ଏହି ସମୟରେ ଦେଖିଲି—ଆଲୋକସାମାନ୍ୟ ସୌନ୍ଦର୍ଯ୍ୟଯୁକ୍ତା ଗୋଟିଏ ସୁବର୍ଣ୍ଣମୟୀ ପିତୁଳା ତାହାର ତଳ ପାଖରେ ଥିବା ଝରକା ବାଟେ ଚାଲି ଯାଉଅଛି । ସେହି ସମୟରୁ ମୋର ଅବସ୍ଥା ଏପରି ହୋଇଅଛି—ମୁଁ ଏତିକି ମାତ୍ର ଜାଣେ ।

ଏହା ଶୁଣି ... ଛନ୍ତି, "ଝଗଡ଼ି ମାତ୍ର ହେଲ ହେ" ଇତ୍ୟାଦି ।

ବ୍ୟର୍ଥଂ ପ୍ରାର୍ଥନୟା କଦର୍ଥୟସି ମାଂ ଗତ୍ୱାଂ ଦୁରାଶାଂ କଥମ୍,
ସା କିଂ ମଦ୍ ବଶମେତି ହନ୍ତ ବିୟତସ୍ତାରାଧିକା ରାଧିକା ॥

(ଗଦ୍ୟ) କେଶବ ଲୂତାତନ୍ତୁବଳୟବାଗୁରାଭିଃ କଣ୍ଠୀରବରାଜୀବ ରାଜୀବଲୋଚନା ସାସ୍ମାଦୃଶୀଭିର୍ବଶୀର୍ତ୍ତୁମଶକ୍ୟା ।



ରାଗ—ତୋଡ଼ି ଜଙ୍ଗଲା ବା ମୋହନା

ନ ଭାଙ୍ଗରେ ଶୁଭାଙ୍ଗି, ଭାରତୀ ହୁଅ ସାହା । ପଦ ।

ନୋହିଲେ ତୁ ପରିତ୍ରାଣ, ନିର୍ଦ୍ଦୟ ନତନୁ ବାଣ
ନିଃଶେଷ କଲାଟି ଦେହ-ଲାହା । ୧ ।

ନୀପକୁଞ୍ଜ ଉପକଣ୍ଠେ ନ୍ୟସ୍ତ କରାଅ ମୋ କଣ୍ଠେ
ନାଗରୀନ୍ଦ୍ର ନିରୁପମ ବାହା । ୨ ।

ନେତ୍ରାନ୍ତବିଳାସ ତାର ନିଦାନ ଏ ଅବସ୍ଥାର
ନିରେଖି ଉଚ୍ଚାରୁ ଥରେ ଆହା । ୩ ।

---

(୯) ଝଗଡ଼ି ହେବା—ବୃଥା ଧନ୍ଦି ହେବା, ଝିମୁଟ—ମୁହୂର୍ତ୍ତ, ଯାମ—ପ୍ରହର, ନବତମାଳ—ନୂଆ ତମାଳଗଛ, ରମା—ଶୋଭା, ଝିକିଆଣି—ଓଟାରି ଆଣି, ଝଡ଼ିବ—ନଷ୍ଟ ହେବ, ଝଷଧ୍ୱଜ—ମୀନଧ୍ୱଜ, କନ୍ଦର୍ପ; ଝାଞ୍ଜି—ଉତ୍ତାପ, ଝୁମି ଝିମି—ଘୁମାଇ ଘୁମାଇ, ଲୁଠି—ଲୋଟି, ରସାର—ମାଟିର, ପୃଥିବୀର; ଝଳି—ଚକ୍ ଚକ୍, ଦୀପ୍ତିଶୀଳ, ପାଞ୍ଚାଳୀ—ପିତୁଳା, ଝଟକିବା—ଶୋଭା ପାଇବା, ଝୋଲା ମାଇଲା—ଭ୍ରମ ବା ଅଜ୍ଞାନ ଜାତ ହେଲା, ଝଲକି ଗଲ—ଚମକି ପଡ଼ିଲ, ଝାଡ଼ଖଣ୍ଡ—ଅରଣ୍ୟ ଅଞ୍ଚଳ, ରସା—ପୃଥିବୀ, ବାଦସା—ରାଜା ।

ଅନୁବାଦ—(୯) ଏ ସଂସାରରେ ରହି କୌଣସି ବାମନାକୃତି କ୍ଷୁଧାତୁର ଲୋକ ପୂର୍ଣ୍ଣଚନ୍ଦ୍ରରୁ ଅମୃତ ଚିପୁଡ଼ି ତାହାକୁ ପିଇ କ୍ଷୁଧା ନିବୃତ୍ତ କରେ କି ? ହେ କୃଷ୍ଣ, ତୁମ୍ଭେ ଦୁରାଶାରେ ପଡ଼ି ମୋତେ ଅକାରଣରେ ଏତେ ପ୍ରାର୍ଥନା କରୁଅଛ । ମନୁଷ୍ୟ ପକ୍ଷରେ ଆକାଶର ତାରା ପାଇବା ବରଂ ସମ୍ଭବପର, କିନ୍ତୁ ସେହି ରାଧିକାକୁ ପାଇବା ସମ୍ଭବପର ନୁହେଁ, ଏପରି ଅବସ୍ଥାରେ ସେ କଅଣ ମୋର ବଶବର୍ତ୍ତିନୀ ହେବ ?

ହେ କେଶବ, ବୁଢ଼ିଆଣୀ ଜାଲରେ ସିଂହମାନଙ୍କୁ ଧରିବା ଯେପରି ଅସମ୍ଭବ, ପଦ୍ମନେତ୍ରା ରାଧା ଆମ୍ଭମାନଙ୍କ ଭଳି ଲୋକମାନଙ୍କର ବଶୀଭୂତ ହେବା ସେହିପରି ଅସମ୍ଭବ କଥା ।

ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, "ନ ଭାଙ୍ଗରେ ଶୁଭାଙ୍ଗି" ଇତ୍ୟାଦି ।



## ରାଗ—ମୁଖାବରୀ

ଛଳବାହିନୀଶ ହେ, ଛାଡ଼ ଏ ସାହସ ହେ । ପଦ ।
ଛବି ତ ଆବିଳ ଦିଶେ, ଛପିବାରେ ଅଛି କି ସେ । ୧ ।
ଛଟା କାହା କଟାକ୍ଷର, ଛୁରୀ ହେଲା କି ବକ୍ଷର । ୨ ।
ଛେଲରୁ ତ ଚିନ୍ତା ବଳି, ଛାତିରେ ଗଲାନି ଗଳି । ୩ ।
ଛୁଟିଯାଇ ବିଚେ୍ତନା, ଛଟପଟ ହେବ ସିନା । ୪ ।
ଛଣା ସୁଧା ପରି ଦିଶେ, ଛୁଇଁଦେଲେ ବିଷଟି ସେ । ୫ ।
ଛନ୍ଦି ମନ ତୁମ୍ଭ ଗୁଣେ, ଛ-ଦୁଇ ଦୁର୍ଗେଶ ଭଣେ । ୬ ।

(ଛ) ଅଜ୍ଞାନାଭିନୟଂ ବିହାୟ ରଭୁତାମାଲିଙ୍ଗୟିତ୍ୱା ମନ-
ଶ୍ଚାଞ୍ଚଲ୍ୟାଦ୍‌ବିରମେତ୍ୟୁଦୀରୟ ଭବନ୍ନେତ୍ରାଞ୍ଚଲୋଦଞ୍ଚନଂ ।
ନୋଚେଦାଧିବଶାଦସାରଦଦଶାମେତ୍ୟେଦୃଶ୍ୟଂ ସୁନ୍ଦରଂ,
କାନ୍ତାସଞ୍ଚୟପଞ୍ଚସାୟକ ବପୁସ୍ତେ କ୍ଷାମତାମେଷ୍ୟତି ।

(ଗଦ୍ୟ) ମୋହନ ନଟପଟଲୋଦଭଟମୁକୁଟମଣେ ନାନ୍ତଃସନ୍ତାପମନ୍ତରେଣ ଫଳମିତି ପ୍ରତୀୟତେ ତବ କୈତବକୁଶଳତାଲତାୟାଃ ।

---

ସୌଭାଗ୍ୟକ୍ରମେ ଏଠାରେ ଆସି ଉପସ୍ଥିତ ହୋଇଯିବାରୁ ମୁଁ ସେହିପରି ପୂର୍ଣ୍ଣମନୋରଥ ହେଲି ବୋଲି ମନେ କରୁଅଛି । ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଲଳିତା ତାହାଙ୍କୁ ପୁନର୍ବାର କହିଲେ—“ଛଳବାହିନୀଶ ହେ !”

(ଛ) ଛଳବାହିନୀଶ—କପଟରୂପ ନଦୀର ଈଶ ଅର୍ଥାତ୍ ହେ କପଟସାଗର; ଛବି—ରୂପ, ଆବିଳ—ମଳିନ ଛପିବା—ଲୁଚିବା, ଛଟା—ଭଙ୍ଗୀ, କଟାକ୍ଷ—ଆଡ଼ଚାହାଣି, ଛେଲ—ଶଲ୍ୟ, ବାଣ; ଗଳିଗଲାଣି—ପଶିଗଲାଣି, ଛୁଟିଯାଇ—ଦୂରହୋଇ, ବିଚେତନା—ଜ୍ଞାନ, ଛଣାସୁଧା—ବିମଳ ଅମୃତ (ରାଧା ଅର୍ଥରେ), ଛନ୍ଦି—ଆଚ୍ଛନ୍ନ କରି, ଛ ଦୁଇ—ଆଠ ।

ଅନୁବାଦ—(ଛ) ହେ କୃଷ୍ଣ, ଅଜ୍ଞତା ଛଳନା ତ୍ୟାଗ କରି ସରଳ ହୁଅ ଏବଂ ମନଶ୍ଚଞ୍ଚଳତା ଦୂର କର ଏବଂ ମୋ କଥା ଗ୍ରହଣ କର, ଏହା ତୁମ୍ଭର ନେତ୍ର ସଂକେତଦ୍ୱାରା ପ୍ରକାଶ କର; ନଚେତ [illegible] ଏହି, ଯେଉଁ ସୁନ୍ଦର ଶରୀରକୁ ଦେଖି ଯୁବତୀମାନେ କାମପରବଶ ହୁଅନ୍ତି; [illegible] ମନସ୍ତାପ ହେତୁ ବଳହୀନ ହୋଇ ଏକାନ୍ତ କ୍ଷୀଣ ହୋଇଯିବ ।

## ଜ

### ରାଗ—କେଦାର ବା ପୁନଙ୍ଗ

ଜାଣିଛି ମୁଁ ଏତେ ମାତ୍ର ଗୋ ଲଳିତେ ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳି ସେହି ଦିନୁ କେଳି କରେ ବିଭାବରୀ-ନାହା-କର । ପଦ ।
ଜଣ କେତେ ବ୍ରଜଶିଶୁ ଥିଲେ ନିଜ, ପୁରୁଁ ଆସୁଥିଲି ଖେଳାଇ ସମଜ,
ଜମ୍ଭାରାତିମଣି ଗିରୀନ୍ଦ୍ରକୁ ଜିଣିବାର ପୁରେ ହେଲା ମୋ ନଜର । ୧ ।
ଜାତିକୁରୁବିନ୍ଦ ବାତାୟନବୃନ୍ଦ, ଅନାଇ ମୁଁ ଚାଲୁଥିଲି ମନ୍ଦ ମନ୍ଦ,
ଜଙ୍ଗମ ହେବାର ଜମ୍ବୁନଦସାର ଶିରୀ ସ୍ଫୁରିଲା ସେ କି ପ୍ରକାର । ୨ ।
ଜୀବନଦ ନୀଳଜଳଜଯୁଗଳ, ବିଧୁବିମ୍ବେ ହୋଇ ବିଳାସବିଲୋଳ,
ଜାତ କଲା ଗର ଜରଜର ଶର-ନିକର ବରଷା ଖରତର । ୩ ।
ଜହରକୁ ଗୋଳି ଦେଲାପରି ଗିଳି, ମୋହର ଦେହର ପୀଡ଼ା ଗଲା ବଳି,
ଜୀବନାଶା ଟଳି ଯାଉଅଛି କଳି ପାରୁ ନାହିଁ ମୁଁ ମୋ ହୃଦନ୍ତର । ୪ ।
ଜନମନୋହାରୀ ସେ ବିଚିତ୍ର ଶିରୀ, କାହା ନେତ୍ରପାତ୍ରେ ଯାଇ ନାହିଁ ପୂରି,
ଜଗଦ୍ଦେବ ହରିଚନ୍ଦନ ମୋହରି ନାମ କହୁଅଛି ନିରନ୍ତର । ୫ ।

(ଜ) ତ୍ୱତ୍ସ୍ନେହଜାଭ୍ୟୁଦୟିନା ତ୍ୱୟି ନାପଦେଶଃ,
ସଂସ୍ପୃଶ୍ୟତେ ମମ ହୃଦା କଥୟାମି ତଥ୍ୟଂ ।
ବସ୍ତ୍ୱେକମସ୍ତ୍ୟସିତସୌଧଲସଦ୍‌ବିଳାସମ୍
ତଦ୍‌ବୀକ୍ଷଣାଦି ଗଦ ଇଦୃଶ ଉଲ୍ଲାସ ॥

(ଗଦ୍ୟ) ସହଚରି ଲଳିତେ, ବିମଳବଳଦଳନୋପଳପ୍ରାସାଦଚୂଳଚେଳବଲ୍ଲରୀ-ଖେଳାଲୋଳଲୋଚନେନ ମୟା ପିଷ୍ଟପୋକ୍ତୃଷ୍ଟ-ଚେଷ୍ଟାବିଶିଷ୍ଟା କାଚନ କାଞ୍ଚନମୟୀ ସଞ୍ଚାରିଣୀ ପାଞ୍ଚାଳିକା ତଦଧଃ ସମୀରାୟନୋପକଣ୍ଠେ ଯତପ୍ରଭୃତ୍ୟବଲୋକି ତତପ୍ରଭୃତ୍ୟେତାଦୃଗବସ୍ଥେନ ମୟା ସ୍ଥୀୟତ ଇତି କେବଳଂ ଜାନାମି ।

---

ହେ ନର୍ତ୍ତକକୁଳଚୂଡ଼ାମଣି ମୋହନ, ତୁମ୍ଭେ ଯେଉଁ କପଟାଚରଣ କରୁଅଛ, ଅନ୍ତର୍ଦାହ ବିନା ସେହି କପଟତାରୂପ ଲତାରେ ଅନ୍ୟ ଫଳ ଫଳିବ ନାହିଁ। ଏହା ଶୁଣି ଶ୍ରୀକୃଷ୍ଣ ଲଳିତାକୁ କହୁଛନ୍ତି, ''ଜାଣିଛି ମୁଁ ଏତେ'' ଇତ୍ୟାଦି ।

(ଜ) ଜ୍ୱଳନ—ଅଗ୍ନି, ବିଭାବରୀ-ନାହାକର—ଚନ୍ଦ୍ରକିରଣ, ସମଜ—ପଶୁସମୂହ, ଜମ୍ଭାରାତିମଣି—ଇନ୍ଦ୍ରମଣି, ଗିରୀନ୍ଦ୍ର—ବଡ଼ [illegible] ଗୃହ, ନଜର—ଦୃଷ୍ଟି,

ନିଶ୍ଚୟ ଏ ଘେନ ଚିତ୍ତେ, ନ ଜୀଇବି କଦାଚିତେ
ନ ବତାଇଲେ ତୁ ସୁଖ ରାହା । ୪ ।
ନାଥ ଅଷ୍ଟଦୁର୍ଗର ଯେ, ନିତି ସେ ମୋ ପାଦେ ଭଜେ
ନିନ୍ଦିବଟି ନ କଲେ ତୁ ତାହା । ୫ ।

(ଛ) ଦୃଢ଼ାଂ ନବ୍ୟାଂ ଭବ୍ୟାଂ ତରୁଣି ତରଣିଂ ତେ ମୃଦୁ ଗିରଂ
କରିଷ୍ୟେ କନ୍ଦର୍ପାମ୍ବୁନିଧିଚରଣୟେତ୍ୟହରହଃ ।
ସ୍ଥିତା ଯାଶା ନାସାନିଳଲବବିଳାସାୟ ନନୁ ତାଂ,
ରୁଷା ସାଙ୍ଗଂ ଭଙ୍ଗଂ ନ ନୟ ବହିରଙ୍ଗଂ ନ କୁରୁ ମାଂ ।।

(ଗଦ୍ୟ) ନୋଚିତଂ ସଖି, ସାଧାରଣେତରସୁଖସୌଧୋର୍ଦ୍ଧ୍ୱସଞ୍ଚାରଲୀଳୋଦ୍ୟତ୍-ସାହସିକସ୍ୟ ମମାଶାଧିରୋହିଣୀହରଣଂ ।

## ଟ

### ରାଗ—ବଙ୍ଗଳାଶ୍ରୀ ବା ବସନ୍ତ

*ଟଙ୍କାରି କି ଶ୍ରବସରିକି ବାସବକୋଦଣ୍ଡରୁ ଚଣ୍ଡ ଧନୁ
ଟାଣେ ବିନ୍ଧେ ଶମ୍ବସଦୃଶ କଳମ୍ବ ତୁମ୍ଭଙ୍କୁ ଏକା ଅତନୁ ହେ । ୧ ।

---

(ଛ) ଶୁଭାଙ୍ଗୀ—ସୁନ୍ଦରୀ, ଭାରତୀ—କଥା, ଅନୁରୋଧ; ସାହା—ସହାୟ, ପରିତ୍ରାଣ—ରକ୍ଷାକାରିଣୀ, ନତନୁ—ଅତନୁ, କନ୍ଦର୍ପ; ଲାହା—ସାରାଂଶ, ସତ୍ତ୍ୱ; ଉପକଣ୍ଠେ—ସମୀପରେ, ନାଗରୀନ୍ଦ୍ର—ଶ୍ରେଷ୍ଠା ସୁନ୍ଦରୀ, ନିରୁପମ—ଅତୁଳନୀୟ, ବାହା—ବାହୁ, ନେତ୍ରାନ୍ତବିଳାସ—ଆଖିକୋଣର ଭଙ୍ଗୀ, ନିଦାନ—କାରଣ, ନିରେଖି—ଦେଖି, ସୁଖରାହା—ସୁଖର ପଥ ।

ଅନୁବାଦ— (ଛ) ହେ ତରୁଣୀ, କନ୍ଦର୍ପ-ସମୁଦ୍ର ପାରହେବା ପାଇଁ ତୁମ୍ଭର ମୃଦୁ କଥାକୁ ମୁଁ ନିଶ୍ଚେ ମଙ୍ଗଳମୟୀ ନୂତନ ଦୃଢ଼ ନୌକା କରିବି ଅର୍ଥାତ୍ ତୁମ କଥା ଅନୁସାରେ ଚଳି ଏ କାମଦୁଃଖରୁ ରକ୍ଷା ପାଇବି । ହେ ସଖି, ପ୍ରାଣ ଧାରଣ ପାଇଁ ଯେଉଁ ଆଶା ଟିକକ ଧରିଅଛି, କ୍ରୋଧରେ ସେ ଆଶାକୁ ସର୍ବଥା ନଷ୍ଟ କର ନାହିଁ ଏବଂ ମୋତେ ପର ବୋଲି ଭାବ ନାହିଁ ।

ସଖି, ମୁଁ ଅସାଧାରଣ ସୁଖସୌଧର ଉର୍ଦ୍ଧ୍ୱରେ କ୍ରୀଡ଼ା କରିବାକୁ ସାହସ କରିଅଛି; ତହିଁର ଆଶାରୂପ ନିଶୁଣିକୁ ହରଣ କରିନେବା ଉଚିତ ନୁହେଁ । ଏହା ଶୁଣି ଲଳିତା କହୁଅଛନ୍ତି, ''ଟଙ୍କାରି କି ଶ୍ରବସରିକି'' ଇତ୍ୟାଦି ।

* ପ୍ରଥମ ପଦ ପୂର୍ବରୁ ଘୋଷା ପଦ—
ଟାଣପଣ କରୁଅଛ ହେ ମୋହନ, ଟାଣପଣ କର ସାର ।
ଟିକାଏ [illegible] ବ୍ୱାରି ସଦନକୁ ବିଜେ କର । ପଦ ।

ଟେକି ଏ ସୁନ୍ଦର ଶ୍ରୀମୁଖଟି ପରଘରବୁଡ଼ା ପରମାସ,
ଟିକାଏ ହେଲେ ଯେ ହୃଦୟ-ସରୋଜେ ନୋହିଲା ତ୍ରାସବିଳାସ ହେ । ୨ ।
ଟେକାଟେକି ମୋତେ କରି ନାନାମତେ ତୁମ୍ଭ କାମନା ପୂରିବ,
ଟାଣ ଖୁଣ୍ଟା ଗୁରୁଜନ ଗଞ୍ଜନାରୁ ମୋ ପ୍ରାଣସଖୀ ସରିବ ହେ । ୩ ।
ଟପା ଥିବା ତାର ବଚନୁ ଗୋଚର ଯେତେ ସମାଚାର ଗୋପେ,
ଟିପିଦେଲେ କଂସ ଆଗେ କେ ନୃଶଂସ ନନ୍ଦ ବନ୍ଦୀ ହେବେ ଟୋପେ ହେ । ୪ ।
ଟାକିଛ ସୁଧାଂଶୁକଳାକୁ ଆକାଶୁଁ କରିବାକୁ ପାଣିଗତ,
ଟିକାୟିତ ଅଷ୍ଟଦୁର୍ଗର କହଇ ଶ୍ୟାମ ଏ କି ଆଚରିତ ହେ । ୫ ।

(ଟ) ଯାବନ୍ତୋ ବିଳସନ୍ତି ଯୌବତମନଶ୍ଚୌରାଃ କିଶୋରାଃ ପୁରେ
ପକ୍ଷସ୍ତେଷୁ ସମୁତ୍ସୃଜନ୍ ରତିପତିଃ ପ୍ରକ୍ଷ୍ୱେଡ଼ନାନ୍ କୌସୁମାନ୍
ବାହାବାହବିପୂର୍ବକଂ ତ୍ୟଜତି କିଂ ତ୍ୱୟ୍ୟେବ ଋଜ୍ୱାଶୟେ,
ହାହା ଶମ୍ବକଦମ୍ବଡମ୍ବରଭରାଲମ୍ବାନ୍ କଳମ୍ବାନ୍ ମୁହୁଃ ॥

(ଗଦ୍ୟ) କେନ ବାତ୍ର କିଶୋରେଣ ବଲ୍ଲବନଗର୍ଯ୍ୟାମଟ୍ଟକୁଟ୍ଟିମବିନ୍ୟସ୍ତକାର୍ତ୍ତସ୍ୱରକୃତ୍ରିମ-ପୁତ୍ତ୍ରିକାଃ କୃତିନା କତି ନାବଲୋକ୍ୟଂତେ ।

---

(ଟ) ଟଙ୍କାରି—ଓଟାରି, ଶ୍ରବ—କାନ, ବାସବକୋଦଣ୍ଡ—ଇନ୍ଦ୍ରଧନୁ, ଚଣ୍ଡ—ଭୟଙ୍କର, ଟାଣେ—ଜୋର୍‌ରେ, ଶମ୍ବ—ବଜ୍ର, କଳମ୍ବ—ଶର, ଅତନୁ—କନ୍ଦର୍ପ, ପରଘରବୁଡ଼ା—ଅନ୍ୟ ଘରକୁ ନଷ୍ଟ କରିବା, ପରମାସ—ବରାଦ, ଟିକାଏ—ଟିକିଏ, ସାମାନ୍ୟ; ହୃଦୟସରୋଜେ—ହୃଦୟପଦ୍ମରେ, ତ୍ରାସବିଳାସ—ଭୟ-ସଂସ୍ରବ, ଟେକାଟେକି କରି—ଖୁସାମତ କରି, ଟାଣଖୁଣ୍ଟା—ପୀଡ଼ାଦାୟକ, ଗଞ୍ଜନା—ଗଞ୍ଜଣା, ଟପା ଥିବା—ସମ୍ବାଦବାହକରୂପେ ଥିବା, ଚାର—ଦୂତ, ଟିପିଦେବା—ଗୋପନରେ କହିଦେବା, ଟୋପେ—କାରାଗୃହରେ, ଟାକିଛ—ଅପେକ୍ଷା କରିଛ, ସୁଧାଂଶୁକଳା—ଚନ୍ଦ୍ରକଳା; ପାଣିଗତ—କରଗତ, ଟିକାୟିତ—ଯୁବକ ରାଜା ।

ଅନୁବାଦ—(ଟ) ଅହୋ ! ଏହି ଗୋପପୁରରେ ଯୁବତିମତିଚୋର ଯେତେ ରସିକ ଯୁବକ ବିହାର କରନ୍ତି, କନ୍ଦର୍ପ ସେମାନଙ୍କ ପକ୍ଷ ହୋଇ ସେମାନଙ୍କୁ କଅଣ କେବଳ କୁସୁମଶର ମାରି, ତୁମ୍ଭଙ୍କୁ ସରଳମତି ଦେଖି ବାହୁଯୁଦ୍ଧ କରି ତୁମ୍ଭ ପ୍ରତି ଖାଲି ବଜ୍ରସଦୃଶ ଶର ପୁନଃ ପୁନଃ ମାରୁଛି ?

କେଉଁ ଚତୁର କିଶୋର ଅବା ଗୋପପୁର କୋଠାମାନଙ୍କ ଉପରେ ରଖାଯାଇଥିବା କେତେ ସୁବର୍ଣ୍ଣନିର୍ମିତ ପିତୁଳା ଦେଖୁ ନାହାନ୍ତି ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି—"ଠିକ ଠ ବ... ଏ ହେ...





## ରାଗ—ତୋଡ଼ି ବା ଦେଶାକ୍ଷ

ଠିକ ୦ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଚିତ୍ତ ରେ । ପଦ ।
ଠକ ରୀତି ନ ଆଚରି ମୋ କଦନକୁ ବିଚାରି
ଅକପଟ ତ୍ରାଣବିଧି ଉଚିତ ରେ । ୧ ।
ଠଣା ଠୁଙ୍କି ତାପ ତ୍ରାସ— ମୁଣ୍ଡେ ମନମଥ ପାଶ—
ବନ୍ଧନ କର ତୁ ପରା ମୋଚିତ ରେ । ୨ ।
ଠଉରାଇ ଅବସର, କଲେ ତୁ ପ୍ରସଙ୍ଗ ମୋର
ଯିବ ରାଜୀବନେତ୍ରାକୁ ରୁଚିତ ରେ । ୩ ।
ଠୋ କରି ଛିଣ୍ଡାଇ ଦେ ନା ପ୍ରିୟସଖି ! ମୋ ବେଦନା
ନ ଲାଗଇ ନିକି ତତେ କିଞ୍ଚିତରେ । ୪ ।
ଠାରିଦେଲେ ନେତ୍ରାଞ୍ଚଳେ ବିଜନ ସ୍ଥଳେ ସେ ବଳେ
ବିରାଜିବ କ୍ଷଣରୁଚି ଉଚିତ ରେ । ୫ ।
ଠାକୁର ଠାକୁରାଣୀଙ୍କ ପଦାମ୍ବୁଜଧ୍ୟାନରଙ୍କ,
ନୃପ ଜଗଦ୍ଦେବ କରେ ରଚିତ ରେ । ୬ ।

(୦) ଏଣୀଦୃଶଃ ପ୍ରିୟସଖୀ ପ୍ରିୟବାଦିନୀ ଚେ—
ତ୍ୟାପଦ୍ଧନେନ ସଦୃଶୀତି ବିଶାରଦେତି;
ବିଶ୍ୱାସନିଃସ୍ୱହୃଦୟତ୍ୱମପାସ୍ୟ ତୁଭ୍ୟମ୍,
ଯଦ୍ରୋଚତେ କୁରୁ ସୁରୂପବତୀତି ବଚ୍ମି ॥

(ଗଦ୍ୟ) ଦୁର୍ଗତଜନବର୍ଗୋପକାରଜନ୍ୟପୁଣ୍ୟଯଶୋଽପବର୍ଗନିର୍ଗତାଳସନିସର୍ଗା ହି ଦୟାଳବୋ ହୃଦୟାଳବଃ ।

---

(୦) ଠିକ ୦ ବର୍ତ୍ତୁଳ—ସମ୍ପୂର୍ଣ୍ଣ ରୂପେ ୦ ଅକ୍ଷର ପରି ଗୋଲ, ଚନ୍ଦ୍ରାନନା—ଚାନ୍ଦମୁହାଁ, ତୋ ଚିତ୍ତରେ—ତୋ ମନରେ, କଦନ—କଷ୍ଟ, ତ୍ରାଣବିଧି—ଉଦ୍ଧାର କାର୍ଯ୍ୟ, ଠଣା—ମୁଷ୍ଟିବଦ୍ଧ ଅଙ୍ଗୁଳିମାନଙ୍କ ଦ୍ୱାରା ଗ୍ରନ୍ଥିରେ ଆଘାତ, ମୋଚିତ—ଉଦ୍ଧାର, ଠୁଙ୍କି—ମାରି, ଠଉରାଇ—ଖୋଜି, ରାଜୀବନେତ୍ରୀ—ପଦ୍ମନୟନା, ରୁଚିତ—ପ୍ରୀତିପଦ, ଠୋ କରି—ଏକାବେଳକେ (ଶବ୍ଦ ସହିତ), ନିକି—କଅଣ, ନେତ୍ରାଞ୍ଚଳ—ଆଖିକୋଣ, ଅପାଙ୍ଗ; କ୍ଷଣରୁଚି—ବିଦ୍ୟୁତ୍, ପଦାମ୍ବୁଜଧ୍ୟାନରଙ୍କ—ପାଦ[illegible] ଧ୍ୟାଗ୍ରହୀ ।



## ରାଗ—ତୋଡ଼ି ପରଜ

ଡର ନାହିଁ କି ହେ, ପରତରୁଣୀ ହରଣୁ;
ତୋର ଲାଗି ଘେର ପଡ଼ିବ ଯେ ହେବ ଚୋର ପରି ଆଚରଣୁ । ପଦ ।
ଡୋଳା ପ୍ରତିମାକୁ ପରାୟେ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳି,
ଡୁବିବଟି ଧନ କେଳିକି ମୋହନ ଲୋଡୁଛ ଯେ କୁଳପାଳି । ୧ ।
ଡକା ଦେବା ଦିନେ ଅରିଷ୍ଟେ ଉଭାନେ ଦେଖିଛୁଁ ଶକଟ ଦଶା
ଡାକିମଧମାକୁ ଡାକି ଆଣିବାକୁ ଏଠାକୁ କାହା ଭରସା । ୨ ।
ଡବ ଡବ ବାରି ନିଃସରିବ ଚାରି ପହରେ ନୟନଯୁଗୁ,
ଡହ ଡହ ହେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗଟି ଭୋଗୁ । ୩ ।
ଡାକି ତ ଜାଣ ମୋହନ ବଂଶୀରବେ ବିହାର ସୁଖେ ଏ ବନେ,
ଡୁଇଁ ହେବୁଁ ସିନା ଆମ୍ଭେ ଫଳ ବିନା ନ ପଡୁ ତା ଆମ୍ଭ କାନେ । ୪ ।
ଡାଳିମ୍ବମଞ୍ଜି ମଞ୍ଜୁଳଦଶନା ସେ ଖେଳୁଥାଉ ତୁମ୍ଭ ତୁଲେ,
ଡେଉଁଥାଅ ବନଯାକ ତୁମ୍ଭ ମନ ଶ୍ରୀହରିଚନ୍ଦନ ବୋଲେ । ୫ ।

(ଡ) କଂସଃ ପୁଂସାଂ ନୃଶଂସାନାଂ ବତଂସଃ ଶାସ୍ତି କାଶ୍ୟପୀମ
ଦୁଷ୍ଟଥେ ଧନିନଃ ସୂନୋ କଥଂ ଯାସ୍ୟଧ୍ୱନୀନତାମ୍ ।।

---

ଅନୁବାଦ— (ଠ) ତୁମ୍ଭେ ମୃଗନୟନା ରାଧାଙ୍କର ପ୍ରିୟସଖୀ; ଏହି ହେତୁରୁ ନିଶ୍ଚୟ ପ୍ରିୟବାଦିନୀ ଓ ବିପତ୍‌କାଳ ନିମିତ୍ତ ସଂଚିତ ଧନସ୍ୱରୂପ ହିତକାରିଣୀ, ଆଉ ମଧ୍ୟ ଉପାୟ ନିରୂପଣରେ ଚତୁରା ଅଟ, ତୁମ୍ଭର ମନୋହର ଆକୃତିରୁ ଏହା ଜଣାଯାଏ, ଏଣୁ ଅବିଶ୍ୱାସୀ ଭାବ ପରିତ୍ୟାଗ କରି ମୁଁ ନିଜର ଅନ୍ତର୍ବେଦନା ତୁମ୍ଭ ଆଗରେ କହିଲି, ବର୍ତ୍ତମାନ ତୁମ୍ଭଙ୍କୁ ଯାହା ଭଲ ଲାଗେ, ତାହା କର ।

ଯେଉଁମାନେ ପ୍ରକୃତରେ ଦୟାଳୁ ଓ ହୃଦୟବାନ୍, ସେମାନଙ୍କ ସ୍ୱଭାବ ଦୁଃଖୀ ଲୋକମାନଙ୍କର ଉପକାର କରିବାରୁ ଜାତ ହେବା ପବିତ୍ର ଯଶର ଫଳ ସାଧନ ବିଷୟରେ ସାଧାରଣତଃ ନିରଳସ ହୋଇଥାଏ, ଅର୍ଥାତ୍ ଉଦାରଚେତା ଲୋକମାନେ ସ୍ୱଭାବତଃ ପରୋପକାରୀ ହୁଅନ୍ତି ।

ଏହା ପରେ ଲଳିତା କହିଲେ—"ଡର ନାହିଁ କି ହେ



(ଗଦ୍ୟ) ଅବର୍ଣ୍ଣାର୍ଣ୍ଣବୋଦ୍‌ଗୀର୍ଣ୍ଣକଲ୍ଲୋଳମାଳାନ୍ଦୋଳିତସ୍ତ୍ୱମସି କିଂ ପୁନସ୍ତରୁଣି ତରଣିତ୍ୱମୁରୀକରଣୀୟ-ମିତ୍ୟୁପଦିଶ୍ୟ ମାମପି କୂଳକୂଳଦବିଷ୍ଟାଂ ବିଧାୟ ମଜ୍ଜୟିତୁଂ ବିଚାରମାରଭସେ ।



## ରାଗ—ଦେଶାକ୍ଷ

ଡାଳେ ତ ଡାଳିଲୁ ନାହିଁ କୃପାସୁଧା ଝରିକି ରେ । ପଦ ।
ଡକ୍‌କା ବାଜୁଥାଇ ବ୍ରଜେ, ଲଳିତାର ହୃଦମୂଳେ,
କରୁଣା ଅଛି ବୋଲି ଯା ନେଲା କେ ତା ହରିକି ରେ । ୧ ।
ଢୋଳାଇଲା ପରି ଢଳି, ତଳେ ପଡ଼ିଯିବା ଭଳି,
ହେଲିନି ଯେ କୁନ୍ଦକଳିଦଶନା ଏ ସରିକି ରେ । ୨ ।

---

(ଡ) ଡୋର—ବାନ୍ଧିବା ଦଉଡ଼ି, ଘେର ପଡ଼ିବ—ବନ୍ଧା ହେବ, ଡୋଳା ପ୍ରତିମା—ଚକ୍ଷୁର ପୁତ୍ତଳିକା, କନୀନିକା; ଡୁବିବଟି ଧନ—ସମସ୍ତ ନଷ୍ଟ ହେବ, କୁଳପାଳି—ସାଧ୍ୱୀ ସ୍ତ୍ରୀ, ଅରିଷ୍ଟେ—ସୂତିକାଗୃହରେ, ଶକଟ—କଂସପ୍ରେରିତ ଅସୁରବିଶେଷ, ଉତ୍ତାନେ—ଚିତ୍ ହୋଇ, ଡାକିମଧମା—ଡମରୁମଧ୍ୟା ଅର୍ଥାତ୍ କ୍ଷୀଣକଟି; ଡବ ଡବ—ଅବିରଳ ଭାବରେ, ମୃଦୁ ଅବୟବ—କୋମଳ ଶରୀର, ବାରି—ଅଶ୍ରୁ, ନିଃସରିବ—ବାହିରିଯିବ, ଡହ ଡହ—ପ୍ରଜ୍ୱଳିତ, ଭୋଗୁ—ଭୋଗ କାମନାରୁ, ଡୁଇଁ ହେବୁ—କଷ୍ଟ ପାଇବୁ, ବ୍ୟାକୁଳ ହେବୁଁ, ଡାଳିମ୍ବ ମଞ୍ଜି ମଞ୍ଜୁଳଦାନା—ଡାଳିମ୍ବ ମଞ୍ଜି ପରି ସୁନ୍ଦର ଦାନ୍ତ ଯାହାର ।

ଅନୁବାଦ— (ଡ) ହେ କୃଷ୍ଣ, କଂସ ନୃଶଂସମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ବର୍ତ୍ତମାନ ପୃଥିବୀ ଶାସନ କରୁଅଛ । ଏପରି ଅବସ୍ଥାରେ ତୁମ୍ଭେ ଜଣେ ଧନୀ ଲୋକର ପୁଅ ହୋଇ କାହିଁକି ଅପଥରେ ପଥିକ ହେଉଅଛ ?

ତୁମ୍ଭେ ବର୍ତ୍ତମାନ ଅପବାଦସମୁଦ୍ରରୁ ଉଠୁଥିବା ଲହରୀରେ ଆନ୍ଦୋଳିତ ହେଉଅଛ, ସେହି ସମୁଦ୍ର ପାରି ହେବାପାଇଁ "ହେ ଯୁବତି ! ତୁମ୍ଭେ ମୋର ନୌକା ହୁଅ" ବୋଲି ଉପଦେଶ ଦେଇ ମୋତେ ପୁଣି କାହିଁକି କୂଳରୁ ଦୂରକୁ ଠେଲିଦେଇ ସେହି ଅପବାଦସମୁଦ୍ରରେ ବୁଡ଼ାଇବାକୁ ବିଚାର କରୁଅଛ ?

ଏ[illegible] କହୁଅଛନ୍ତି, "ଡାଳେ ତ ଡାଳିଲୁ ନାହିଁ" ଇତ୍ୟାଦି ।

ତୁକାଇ ଦେଲେ ତୃଷିତ, ଚକୋର ଚଞ୍ଚୁରେ ଶୀତ-
ଭାନୁଚନ୍ଦ୍ରିକାକୁ ବିତ୍ତ ଯାଏ କିଛି ସରିକି ରେ । ୩ ।
ଢୋକୁଟିକୁ ସିନା ହଟି, ମୋ ସାର ଯାଉଛି ତୁଟି,
ପିଇ ଦିଅନ୍ତି କି ଗୋଟିଯାକ ସେ କିଶୋରୀକି ରେ । ୪ ।
ଡବା-ତନାବିରୁ ଗୋପ-ନଗରୀର ବନ୍ଦେ ଭୂପ
ବାଲୁକେଶ ଦେବ ନୀପ କୁଞ୍ଜପୁଞ୍ଜ ସରିକି ରେ । ୫ ।

(ଢ) ଚାୟଂ ଚାୟଂ ମୟୋଚ୍ଚୈ କଥିତମକପଟଂ ଚାଟୁମାକର୍ଣ୍ଣ୍ୟ ଭୂୟଃ,
ପାୟଂ ପାୟଂ ତ ଦୃଷ୍ଟ୍ୟା ମମତନୁମତନୁ କ୍ରୂରନାରାଚଭିନ୍ନାଂ;
ସାନୁକ୍ରୋଶେନ ସାନୁଗ୍ରହମହହ ମମ ପ୍ରାଣବିଶ୍ରାଣନୋତ୍କା-
ମିଚ୍ଛାଂ ତୁଚ୍ଛାଂ ବିଧାୟ କ୍ଷିପସି ସୁମୁଖି କିଂ ରୋଷରୁକ୍ଷଂ କଟାକ୍ଷମ୍ ।

(ଗଦ୍ୟ) ମୀନାଙ୍କ କଙ୍କପତ୍ରଦୂନାମୂନଃ କଥମାର୍ତ୍ତସ୍ୟ ବିଷୟେ କାର୍ତ୍ତସ୍ୱରଗୌରାଙ୍ଗୀଭିର-କାରୁଣିକହୃଦୟବୃତ୍ତିତ୍ୱମୁରୀକ୍ରିୟତ ଇତି ବ୍ରୁବତି କିଶୋରଶିରୋମଣୌ ସସ୍ମିତତ୍ୱରଂ ଲଳିତା ।

---

(ଢ) ଢାଳେ—ଥରେ, ଝରି—ସୁରେଇ ଆକୃତିର ଜଳପାତ୍ରବିଶେଷ, ଢକ୍କା—ବାଦ୍ୟବିଶେଷ, ବଡ଼ ଢୋଲ; ହୃଦମ୍ବୁଜେ—ହୃଦୟରୂପ ପଦ୍ମରେ, ହରିକି—ହରଣ କରି, ଢୋଳାଇଲା—ଘୁମାଇଲା; କୁନ୍ଦକଳିଦଶନା—କୁନ୍ଦଫୁଲର କଢ଼ି ପରି ଦାନ୍ତ ଯାହାର, ତୁକାଇ ଦେଲେ—ପିଆଇଦେଲେ, ଚଞ୍ଚୁ—ଥଣ୍ଟ, ଶୀତଭାନୁ—ଚନ୍ଦ୍ର, ବିତ୍ତ—ଧନ; ଢୋକୁଟିକୁ—ଥରେ ମାତ୍ର ପିଇବାକୁ, ସାର—ବଳ, ଡବା—କୋଠାଘର, ତନାବି—ଝରକା, ନୀପକୁଞ୍ଜ ସରିକି—କଦମ୍ବକୁଞ୍ଜ ପର୍ଯ୍ୟନ୍ତ ।

ଅନୁବାଦ—(ଢ) ସଖି, ମୁଁ ଦୀନ ହୋଇଥିବାରୁ ମନ ଖୋଲି ସ୍ପଷ୍ଟ ରୂପେ ଯାହା ପ୍ରକାଶ କଲି, ସେ ସବୁ କଥାକୁ ଗ୍ରହଣ କରି, ପୁଣି ମୋ ଚାଟୁ ଉକ୍ତିକୁ ବାରମ୍ବାର ଶୁଣି କନ୍ଦର୍ପର ନିର୍ଦ୍ଦୟ ବାଣଦ୍ୱାରା ବିଦୀର୍ଣ୍ଣ ହୋଇଯାଇଥିବା ମୋର ଏହି ଶରୀରକୁ ଅନୁଗ୍ରହ କରି ନିଜ ଚକ୍ଷୁରେ ଦେଖି ମଧ୍ୟ ତୁ ପୁଣି ମୋ ଜୀବନ ରଖିବାରେ ଜାତ ହେଉଥିବା ଉତ୍କଣ୍ଠାକୁ ବୃଥା କରି ଅର୍ଥାତ୍ ମୋ ଜୀବନରକ୍ଷାରେ ମୋଟେ ଇଚ୍ଛା ନ କରି କାହିଁକି କୋପକର୍କଶ ଦୃଷ୍ଟିକୁ ମୋ ଉପରେ ପକାଉଅଛୁ ?

ଯେଉଁ ଲୋକ କନ୍ଦର୍ପବାଣରେ ଏକାନ୍ତ ସନ୍ତପ୍ତ ହୋଇଅଛି, ସେହି ଆର୍ତ୍ତମାନଙ୍କୁ ରକ୍ଷା କରିବାରେ ତୁମ୍ଭ ପରି ତପ୍ତକାଞ୍ଚନବର୍ଣ୍ଣାଭା ସୁନ୍ଦରୀମାନଙ୍କ ହୃଦୟ ଏଡ଼େ ନିର୍ଦ୍ଦୟ କାହିଁକି ? କିଶୋରତିଳକ ଶ୍ରୀକୃଷ୍ଣ ଏହା କହି ନିବୃତ୍ [illegible] ତା ହସି ହସି ଚଞ୍ଚଳ ତାଙ୍କୁ କହୁଅଛନ୍ତି—''ଅତସୀକୁସୁମ ସମ'' ଲ [illegible]

# ଣ

## ରାଗ—ସୋମ

ଅତସୀ କୁସୁମସମ ଶ୍ୟାମ ହେ ମୁଁ ଗଲିଟି । ପଦ ।
ଅଳି ତୁମ୍ଭର ନିବିଡ଼, ଅସହିଷ୍ଣୁ ସେ ଯେ ବଡ଼
ଅବଶ୍ୟ ତା ଛାମୁରେ ମୁଁ ନିବେଦନ କଲିଟି । ୧ ।
ଅଧ ଅଧରରେ ସ୍ମିତ ଉଲ୍ଲାସି ହେଲେ ଲଜ୍ଜିତ
ଊହିବି ଏହିଟି ବୋଲି କୃପାକଳ୍ପବଲ୍ଲୀଟି । ୨ ।
ଆରକତ କଲେ ମୁଖ, ଅଖଣ୍ଡ ସୁଧାମୟୂଖ,
ଆବୁର ସରିବ ମୋର ଜୀଇଲେ ହେଁ ମଲିଟି । ୩ ।
ଅଦୃଷ୍ଟବଳୁଁ କିଶୋରୀ, ଅଙ୍ଗୀକାର କଲେ ସରି
ଅଭାବେ ଉଚ୍ଛନ୍ନ ହେବ ଏ ବଲ୍ଲବ-ପଲ୍ଲୀଟି । ୪ ।
ଉଗ୍ର ନିର୍ଦ୍ଦେଶ ନୃପର ଉପବନ ଗୋପପୁର
ଆଶ୍ରୟ ନୋହିବ ଗୋବର୍ଦ୍ଧନ ଗିରିଦରୀଟି । ୫ ।
ଅଷ୍ଟଦୁର୍ଗନାଥ ଭାଷେ, ଆହା ଧ୍ୟାନେ କି ଶୋଭା ସେ
ଅଖିଳ ଜନନୀ ନାସାମୃଗମଦକଲିଟି । ୬ ।

(ଣ) ଯାମି ପ୍ରତୀପମନୁକୂଳୟିତୁଂ ପ୍ରଯତ୍ନେ-
ଶ୍ୱେତଃ ସରୋରୁହସହୋଦରଲୋଚନାୟାଃ,
ସାମିପ୍ରସନ୍ନମପିଚେଦ୍ଦେଭବଂ କୃତାର୍ଥା,
ନୋ ଚେତ୍ତ୍ୱଦାସ୍ୟବିଧୁବୀକ୍ଷଣମେତଦେବ ।

(ଗଦ୍ୟ) ନନ୍ଦନନ୍ଦନ କର୍ହିଚିଲ୍ଲାଘବଲବସ୍ୟାପ୍ୟୁଷିତୌ ତମନୁଭୂୟ ଭୂୟସ୍ତନ୍ମୁଖସୁନ୍ଦରେନ୍ଦୁସନ୍ଦର୍ଶନକନ୍ଦଳିତା-ନନ୍ଦସନ୍ଦୋହାନୁଭବମନ୍ଦାଦରୟା ବାମୟା ଭାବ୍ୟମିତି ନିବେଦ୍ୟ ନିଷ୍କ୍ରମ୍ୟ ସବିଧଂ ଶ୍ରୀ ରାଧାୟାଃ ପ୍ରବିଶ୍ୟ ତାଂ ପ୍ରତି ।

(ଣ) ଅତସୀକୁସୁମ—ପେଶୀଫୁଲ, ଅଳି—ସନିର୍ବନ୍ଧ ଅନୁରୋଧ, ନିବିଡ଼—ଦୃଢ଼, ସେ—ରାଧାଙ୍କ ଅର୍ଥରେ, ଅଧ ଅଧରରେ—ତଳ ଓଠରେ, ଊହିବି—ତର୍କିବି, ଅନୁମାନ କରିବି; କଳ୍ପବଲ୍ଲୀ—କଳ୍ପଲତା, ଅଖଣ୍ଡସୁଧାମୟୂଖ—ପୂର୍ଣ୍ଣଚନ୍ଦ୍ର, ଆବୁର—ମହତ୍ତ୍ୱ; ସରି—ଭଲ ହେଲା (ଗଞ୍ଜାମ ଅଞ୍ଚଳର ପ୍ରୟୋଗ), ବଲ୍ଲବପଲ୍ଲୀ—ଗୋପାଳଗାଆଁ, ଗୋପପୁର; ଉଗ୍ରନିର୍ଦ୍ଦେଶ—ନିଷ୍ଠୁରାଦେଶ, ନୃପ—କଂସ ଅର୍ଥରେ, ଗିରିଦରୀ—ପର୍ବତ ଖୋଲ ବା ଗହ୍ୱର, ଅଖିଳ ଜ[illegible] ମାତୃ-ସମାଜ, ମୃଗମଦକଳି—କସ୍ତୁରୀଚିତା (ଶ୍ରେଷ୍ଠସ୍ଥାନୀୟା—

## ତ

### ରାଗ—କାନଡ଼ଗୌଡ଼ା ବା କନଡ଼ା

(ସଖି ରେ) ତୋ ଘେନି ତମାଳଶ୍ୟାମ ମୋ ମରଜି କଷିଲା ରେ,
ତଥାପି ତ ତିଳେ ହେଲେ ତୋ ସ୍ନେହେ ନ ରସିଲା ରେ । ପଦ ।
ତଳେ ବସନ ପ୍ରସାରି, ତୃଣ ଦଶନାନ୍ତେ ଧରି,
କହିଲେ ହେଁ ଅନୁସରି, ରାଜି ତ ନ ଦିଶିଲା ରେ । ୧ ।
ତହୁଁ କି ବିଷମ ଭାବ, ତର୍କିଲା ମୋ ଚାଟୁ ଶ୍ରବ-
ତଟକୁ ଘଟନ୍ତେ ଅବଦାନ ବିନା ହସିଲା ରେ । ୨ ।
ତପନଜାତଟକୁ ତୁ, ତରୁଣୀଟା କେଉଁ କୁତୂ-
ହଳରୁ ଆସିଲୁ ହେତୁ, କହ ବୋଲି ଘୋଷିଲା ରେ । ୩ ।
ତାର ତୋର ସୁଲୋଚନା, ତାରତମ୍ୟ ବିବେଚନା—
ଲବ ହୋଇ ନାହିଁ ତହିଁ, ତୋ ଚିତ୍ତ କେ ପେଷିଲା* ରେ । ୪ ।
ତିରସ୍କାର ପୂର୍ବଭାଷା, ତରଳାଇ ସୁଖ ଆଶା,
ତୋଟିକି ଚୁମ୍ବିଲା ତୃଷା ତିମିର ବିଳସିଲା ରେ । ୫ ।
ତୁଚ୍ଛ ସ୍ନେହମନ ଜନ, ତୋ ସଙ୍ଗକୁ କି ଭାଜନ,
ସୁପନ୍ନ ହରିଚନ୍ଦନ ଜଗଦ୍ଦେବ ଭାଷିଲା ରେ । ୬ ।

---

ଅନୁବାଦ— (୧) ହେ କୃଷ୍ଣ, ପଦ୍ମନେତ୍ରା ରାଧାଙ୍କର ବିପରୀତଭାବାପନ୍ନ ମନକୁ ନାନା ଚେଷ୍ଟାରେ ତୁମ୍ଭ ପ୍ରତି ଅନୁରକ୍ତ କରିବାକୁ ମୁଁ ଯାଉଅଛି । ଯେବେ ତାଙ୍କ ମନ ଅର୍ଦ୍ଧମାତ୍ରାରେ ପ୍ରସନ୍ନ ହୁଏ, ତେବେ ମୁଁ କୃତାର୍ଥ ହେଲି ବୋଲି ମନେ କରିବି; ଅନ୍ୟଥା ତୁମ୍ଭ ଚନ୍ଦ୍ରମୁଖ ଦର୍ଶନ ଏହିଠାରେ ମୋର ଶେଷ ହେଲା ।

ହେ ନନ୍ଦନନ୍ଦନ, ଉଦ୍ଦେଶ୍ୟ ସିଦ୍ଧିରେ ନୀଚତା ମଧ୍ୟ ଅଙ୍ଗୀକାର କରିବି । କିନ୍ତୁ ତୁମ୍ଭ ମୁଖଚନ୍ଦ୍ର ଦର୍ଶନରେ ଯେଉଁ ଆନନ୍ଦ ଅନୁଭବ କରୁଥିଲି, ତହିଁରେ ଆଉ ମୋର ଉତ୍ସାହ ରହିବ ନାହିଁ, ମୁଁ ସେ ବିଷୟରେ ବିମୁଖ ହୋଇ ରହିବି ସିନା ! ଲଳିତା ଶ୍ରୀକୃଷ୍ଣଙ୍କୁ ଏହିପରି କହିବା ପରେ ରାଧାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ କହିଲେ, ''ତୋ ଘେନି ତମାଳଶ୍ୟାମ'' ଇତ୍ୟାଦି ।

* ପାଠାନ୍ତର—'ପେଷିଲା' ସ୍ଥାନରେ 'ରସିଲା' ।

(ତ) ଛାୟାଂ ତ୍ୱଦ୍‌ଭୁଜଦମ୍ଭହେମଲତୟୋରାଶ୍ରିତ୍ୟ ନିତ୍ୟ ସ୍ଥିତାମ୍,
ପାୟାନ୍ନାମଧୁନାପି ତନ୍ୱି ଭବତୀ ଭଲ୍ଲାଧିକାଲ୍ଲାଘବାତ୍,
ଆୟାସଃ ସଖି କେବଳଂ ଫଳମଭୂତ୍ ବାଧାପ୍ୟସାଧାରଣୀ,
ଚେତସ୍ୟାବିରଭୂଦ୍‌ଵଭୂବ ନ ପୁନସ୍ତ୍ୱାଲ୍ଲାଳସୋଲ୍ଲାସନମ୍ ॥

(ଗଦ୍ୟ) ଦିଷ୍ଟ୍ୟା କଦାଚିଦ୍‌ଭବଦୀୟାଭୀଷ୍ଟସିଦ୍ଧୌ ସମୃଦ୍ଧାୟାମପି ବନ୍ଧ୍ୟାତ୍ୱମୁତ୍‌ପତସ୍ୟତେ କଲ୍ୟାଣବଲ୍ଲ୍ୟାଃ ।

## ଥ

### ରାଗ—ଝିଂଝୋଟି ବା ତୋଡ଼ୀ ଜଙ୍ଗଲା

ଥାପିରେ କହ ତଥାପି ରେ ପ୍ରିୟସଖି ଥିବି କି ଛାଡ଼ିବି ପ୍ରାଣ । ପଦ ।
ଥିଲା ପରି ସ୍ନେହ ଲାଗିଲା କି କହ, ଅଛିଟି ତୋତେ ମୋ ରାଣ । ୧ ।
ଥକାଇ ତୁ କହୁ, କହୁ ଧୃତି ରହୁ, ନାହିଁଟି ମୋହର ଜାଣ । ୨ ।
ଥୋକାଏ ତୋ ପ୍ରୀତି-ବିଧିକି ସମ୍ମତି କଲେ କି ମୋ ପରିତ୍ରାଣ* । ୩ ।

---

(ତ) ତମାଳଶ୍ୟାମ—ତମାଳ ଗଛର ପତ୍ରପରି ବର୍ଣ୍ଣ ଯାହାର, କୃଷ୍ଣ; ମରଜି—ଇଚ୍ଛା, ହୃଦ୍‌ଭାବ; କଷିଲା—ପରୀକ୍ଷା କରିନେଲା, ବସନ—ବସ୍ତ୍ର, ତୃଣ—କୁଟା, ଦଶନାନ୍ତେ—ଦାନ୍ତରେ, ରାଜି ଦିଶିଲା ନାହିଁ—ସମ୍ମତ ହେବା ଭଳି ଜଣାଗଲା ନାହିଁ, ଶ୍ରବତଟକୁ—କାନ ପାଖରେ, ଅବଧାନ ବିନା—ମନୋଯୋଗ ବିନା; ତପନଜାତଟ—ଯମୁନାକୂଳ, କୁତୂହଳରୁ—କୌତୁକ ହେତୁରୁ, ତାରତମ୍ୟ ବିବେଚନା—ନ୍ୟୂନତା ଓ ଆଧିକ୍ୟ ଜ୍ଞାନ, ଲବ—ତିଳେମାତ୍ର, ତିରସ୍କାର ପୂର୍ବଭାଷା—ଗାଳିଦେଇ କହିବା, ତରଛାଇ—ନାଶକରି ବା ଦୂରକରି, ତୋଟି—କଣ୍ଠ, ତିମିର—ଅନ୍ଧାର, ତୁଚ୍ଛସ୍ନେହମନ ଜନ—ଯାହା ମନରେ ଆଦୌ ସ୍ନେହ ନାହିଁ, ସ୍ନେହଶୂନ୍ୟ ଲୋକ; ପ୍ରପନ୍ନ—ଆଶ୍ରିତ ।

ଅନୁବାଦ—(ତ) ହେ ସୁନ୍ଦରି, ମୁଁ ତୁମ୍ଭର ନିତ୍ୟ ଅନୁଗତ, ଗୌରବହାନି ହେବାରୁ ମୋତେ ପ୍ରାଣାନ୍ତକ କଷ୍ଟ ହେଉଛି, ତହିଁରୁ ତୁମ୍ଭେ ମୋତେ ରକ୍ଷା କର; ମୋର ପରିଶ୍ରମ ମାତ୍ର ସାର ହେଲା ଏବଂ ହୃଦୟରେ ଅସାଧାରଣ କଷ୍ଟ ଜାତ ହେଲା; କିନ୍ତୁ ତୁମ୍ଭ ଆଶା ପୂରଣ ହେଲା ନାହିଁ ।

ଭାଗ୍ୟବଶରୁ ଯେବେ କେତେବେଳେ ତୁମ୍ଭ ଅଭିଳାଷ ପୂର୍ଣ୍ଣ ହୁଏ, ତେବେ ଶେଷଫଳ ଭଲ [illegible] ତତ୍ପରେ ରାଧା କହିଲେ—"ଥାପିରେ କହ ତଥାପି ରେ ।"

* ପାଠା[illegible] ପ୍ରୀତିବିଧିକି ସମ୍ମତି ନ କଲେ କି ପରିତ୍ରାଣ ।

ଥରେ ହେଲେ ବିକି ହେବି ମୋତେ ନିକି ବଞ୍ଚାଇବ ପଞ୍ଚବାଣ । ୪ ।
ଥୋଇ ହୃଦେ ଛଳ, ନ କର ବିକଳ, କହେ ଅଷ୍ଟଦୁର୍ଗରାଣ । ୫ ।

(ଥ) ସ୍ମିତସୁଭଗମୁଖଃ ଶିଖଣ୍ଡମୌଳିର୍ବିଦ କିମୁରୀକୃତବାନ୍ ମଦଙ୍ଗସଙ୍ଗମ,
କଥୟ ସଖି ଯଦା ତୃଣାୟ ମେନେ ବପୁରଥକିଂ ବସୃଜାମି ଧାରୟାମି ।।

(ଗଦ୍ୟ) ସହଚରି ଲଳିତେ ! ଦମ୍ଭସମ୍ଭୃତିସମୁଜ୍ଜୃମ୍ଭଣମନ୍ତରେଣ ବିଲମ୍ବମନବଲମ୍ବ୍ୟ ବ୍ରୁହି ସବିଶ୍ରମ୍ଭଂ ଜୀବାମି ବା କତିଦିନାନ୍ୟଥବା ତାପିଞ୍ଛଶାଖିଶାଖାୟାମୁଦ୍‌ବନ୍ଧନମଙ୍ଗୀକରିଷ୍ୟାମି ।

## ଦ

### ରାଗ—ଭଟିଆରି

ରେ ଦୁଃଖୀଧନ, ଦମ୍ଭ ଦେଖିବାକୁ ସିନା କଲି ଛନ,
ଦୁଃଖମୟ ନ କର ସରସ ମନ । ପଦ ।
ଦୂରୁ ମୁଁ ଯିବାର ଜାଣି ହରି, ଦରିଦ୍ର ନିଧି ଲଭିଲା ପରି,
ଦ୍ୱିଗୁଣ ଆଦରେ ପ୍ରମୋଦନଦରେ ମଜ୍ଜି ଘେନିଗଲେ କର ଧରି । ୧ ।
ଦୟାଜରଜର କରି ଚିତ୍ତ, ଦନ୍ତବାସେ ରଖି ଦରସ୍ମିତ,
ଦଶବାର ଅନାମୟ ମୋତେ ଘେନାଘେନି କରି ପଚାରିଲେ ମିତ । ୨ ।
ଦେଖିଲି ଯାହା ଶ୍ରୀଅଙ୍ଗଦ୍ୟୁତି, ଜଳି ହୋଇଗଲା ମୋର ଛାତି*
ଦ୍ୱିତୀୟାର ଶଶି-ଲେଖା ପରି ଦିଶିଗଲେନି ସେ ଇନ୍ଦ୍ରନୀଳହାତୀ । ୩ ।

(ଥ) ଥାପି—ସ୍ଥିର କରି; ଲାଗିଲା—ଜଣାଗଲା, ଥକାଇ—ରହି ରହି, ଧୃତି—ଧୈର୍ଯ୍ୟ, ଥୋକାଏ—ଟିକିଏ, ପ୍ରୀତିବିଧିକି—ପ୍ରଣୟ ପ୍ରସ୍ତାବକୁ, ପରିତ୍ରାଣ—ରକ୍ଷାକାରୀ, ନିକି—ସତେ କି ?, ପଞ୍ଚବାଣ—କନ୍ଦର୍ପ, ଛଳ—କପଟତା ।

ଅନୁବାଦ—(ଥ) ଅୟି ସଖି ଲଳିତେ, ସତ କହ, ମୟୂରଚୂଳିଆ ସ୍ମିତସୁନ୍ଦରବଦନ ଶ୍ରୀକୃଷ୍ଣ ତୋ ପ୍ରସ୍ତାବକୁ ଅଙ୍ଗୀକାର କଲେଟି ? କିମ୍ବା ମୋ ଅଙ୍ଗସଙ୍ଗକୁ ଅତି ସାମାନ୍ୟ ବୋଲି ମନେ କଲେ, ଏ ଦେହକୁ ରଖିବି କି ଛାଡ଼ିବି କହ ।

ସହଚରି, ହୃଦୟରେ କପଟ ନ ରଖି ଆଉ ବିଳମ୍ବ ନ କରି ସତ କରି କହ, ତମାଳଗଛ ଡାଳରେ ଦଉଡ଼ି ଦେଇ ପ୍ରାଣ ହରାଇବି, କି ଆଉ କିଛି ଦିନ ବଞ୍ଚିବି ?
ଏହା ଶୁଣି ଲଳିତା କହିଲେ—"ରେ ଦୁଃଖୀଧନ" ...

* ପାଠାନ୍ତର—'ଛାତି' ସ୍ଥାନରେ 'ମତି'

ଦୁର୍ବାର ତୋ ନେତ୍ରାଞ୍ଚଳଶର ଦେବାରୁ ଦୁଃଖ ଦୁଃସହତର
ଦିବାଲା ହେବାର ଦେହମଜ୍ଜାସାର ଜାଣି ଯା ହେଲା ମାନସ ମୋର । ୪ ।
ଦୁର୍ବଳ ସାଳସ ଦେଖି ଚାଲି, ଦୁରୂହରେ କିଛି ପଚାରିଲି,
ଦୀର୍ଘ ତପତ ନାସାନିଳ ତେଜିଲେ ଆହା ମରଇ ତ ବିଚାରିଲି । ୫ ।
ଦେବ ଦଇବ ତୋ ଅଭିମତ, ଦୂର କର ଦ୍ୱାପରକୁ ଚେତ*
ଦବିଷ୍ଠ ଏ କଷ୍ଟଯାକ ହେବ ଅଷ୍ଟଦୁର୍ଗନାଥର ଏ ବିରଚିତ । ୬ ।

(ଦ) ସମାଶ୍ୱସିହି ମାନିନି ତ୍ୱଦତିଧୈର୍ଯ୍ୟଜିଜ୍ଞାସୟା,
ନଟତ୍‌କପଟପାଟବଂ ତବ ପୁରଃ ପ୍ରଣୀତଂ ବଚଂ;
ଅମନ୍ଦମଧୁମନ୍ଦିରଂ କିମରବିନ୍ଦତୁନ୍ଦଂ ବିନା-
ନୁବିନ୍ଦତି ମୁଦଂ ହୃଦନ୍ତଗତାଂ ମିଲିନ୍ଦୋ ଯୁବା ।

(ଗଦ୍ୟ) ପୁଷ୍ପିତାଂ ମାକନ୍ଦମଞ୍ଜରୀଂ ବନପ୍ରିୟଇବ, ସରୋଜିନୀଂ ଯୁବରୋଳମ୍ବ ଇବ, ଚନ୍ଦ୍ରିକାଂ ଚକୋର ଇବ, ପ୍ରତ୍ୟଗ୍ରମୁଦିରମଣ୍ଡଳୀଂ ଚାତକ ଇବ, ଚିନ୍ତାମଣିମକିଞ୍ଚନ ଇବ, ତ୍ୱାମନବରତଂ ବଲ୍ଲବମହୀମହେନ୍ଦ୍ରନୟନାନନ୍ଦଃ ସ୍ମରନ୍ କିଶୋରଃ ସୀଦତି, ତ୍ୱଂ କଥଂ ରୋଦନେନ ରୋଦୟସି ରୋଦସୀ ।

---

(ଦ) ଦମ୍ଭ—ଧୈର୍ଯ୍ୟ, ଛନ କଲି—ଡରାଇଲି, ନିଧି—ସଂପତ୍ତି, ପ୍ରମୋଦନଦରେ—ଆନନ୍ଦସାଗରରେ, ଦୟା—ସ୍ନେହ, ଦନ୍ତବାସେ—ଓଠରେ, ଦରସ୍ମିତ—ଅଳ୍ପହାସ, ଅନାମୟ—କୁଶଳ ପ୍ରଶ୍ନ, ଘେନାଘେନି କରି—ଟେକାଟେକି କରି, ଦ୍ୟୁତି—ଶୋଭା, ଦ୍ୱିତୀୟାର ଶଶିଲେଖା—ଦ୍ୱିତୀୟା ତିଥିର ଚନ୍ଦ୍ରକଳା, ଇନ୍ଦ୍ରନୀଳହାତୀ—ଇନ୍ଦ୍ରନୀଳମଣି ଶୋଭାଧାରୀ ହସ୍ତୀ ପରି ଆକୃତିବିଶିଷ୍ଟ ସେହି ଶ୍ରୀକୃଷ୍ଣ, ଦୁର୍ବାର—ଅନିବାର୍ଯ୍ୟ, ଯନ୍ତ୍ରଣାପ୍ରଦ; ଦିବାଲା—ଦୁର୍ବଳ, ମଜ୍ଜା—ହୃଦୟସାର ବଳ, ସାଳସ—ଆଳସ୍ୟଯୁକ୍ତ, ଦୁରୂହରେ— ଦୁଃଖରେ, ନାସାନିଳ—ନିଶ୍ୱାସ ପବନ, ଅଭିମତ—ଅଭୀଷ୍ଟ ଫଳ, ଦ୍ୱାପର—ସନ୍ଦେହ (ଦ୍ୱାପରୌ ଯୁଗ ସଂଶୟୌ), ଚେତ—ମନେ ରଖ, ଦବିଷ୍ଠ—ଦୂରତମ ।

ଅନୁବାଦ—(ଦ) ଅୟି ମାନିନି ରାଧେ, ଆଶ୍ୱସ୍ତ ହୁଅ; ତୋର ଧୈର୍ଯ୍ୟ ଜାଣିବା ଇଚ୍ଛାରେ ମୁଁ ତୋ ଆଗରେ ସେପରି କପଟତାପୂର୍ଣ୍ଣ କଥା କହିଲି ସିନା ! ଭ୍ରମରଯୁବକ ମଧୁପରିପୂର୍ଣ୍ଣ ପଦ୍ମ[illegible]ତର ଛଡ଼ା ଅନ୍ୟତ୍ର ହୃଦୟବିମୋହନ ଆନନ୍ଦ ପାଏ କି ?

* ପା[illegible]ନ୍ତରରେ 'ମିତ'

# ଧ

## ରାଗ—କନଡ଼ାକାଫି ବା ତୋଡ଼ିବଙ୍ଗଳା

ଧୀରା ରେ କି ଧନ ତୁ ନ ଦେଲୁ ଆଜ
ଧଇଲେ କି ସତେ କର ଯୁବରାଜ । ପଦ ।
ଧରମ ବଳୁ କି ମୋର, ଧୂପି ଦେଇ ନିଜ କର,
କୋଳକୁ ଆଣିଲୁ କଳାଦ୍ୱିଜରାଜ । ୧ ।
ଧୁରନ୍ଧର ସେ ଇଙ୍ଗିତେ, ଧରଷିଲୁ କେହି ସତେ,
ଧମକାଇଲା ନାହିଁ କି କିଛି ଲାଜ । ୨ ।
ଧରାରେ ଯେତେ ପୁରୁଷେ, ଧୂର୍ତ୍ତ ତାହାଙ୍କ ଗୁରୁ ସେ
ଧନରୁ ଯେ ବଳେ ତାହାଙ୍କର ବ୍ୟାଜ । ୩ ।
ଧୃତି ହୋଇ ବଳହୀନ, ଧୂସର ହୋଇବା ମନ,
ଧୋଇ ଚିନ୍ତା କଳଙ୍କସମାଜ ମାଜ । ୪ ।
ଧରଣୀନ୍ଦ୍ର ଜଗଦ୍ବନ୍ଦ୍ୟ ଧାନେ ବଲ୍ଲବୀବଲ୍ଲବ
ଧରାଧୂଳି କରେ ମସ୍ତକରେ ତାଜ । ୫ ।

(ଧ) ଭୂତିରଦ୍ୟ ସଖି କିଂ ନ ବିତୀର୍ଣ୍ଣା, ଯନ୍ନମ ଶ୍ରବଣସୀମ୍ନି ବିକୀର୍ଣ୍ଣା,
ବୀଜରାଜିରିବ ଶର୍ମଲତାୟାଃ, ସସ୍ମିତେନ୍ଦୁମୁଖି ଦାଗନୁକୂଳା ।।

(ଗଦ୍ୟ) ଘର୍ମୋର୍ମିତପ୍ତାଙ୍କୁରଶ୍ରେଣ୍ୟାଃ ପ୍ରତ୍ୟଗ୍ରବୃଷ୍ଟିରିବ, ରଜନ୍ୟାଃ କୌମୁଦୀବ, ତମଃସମୂହକବଳିତଶ୍ରିୟୋ ଗୃହଲେଖାୟା ଦୀପଶିଖେବ, ଯତିଚିତ୍ତବୃତ୍ତେର୍ବ୍ରହ୍ମାନନ୍ଦଧାରେବ ସାମ୍ପତଂ ମମ ତ୍ୱମସି ।

---

କୋକିଳ ଯେପରି ପୁଷ୍ପିତ ଚୂତମଞ୍ଜରୀକୁ, ଭ୍ରମର ଯୁବକ ଯେପରି ପଦ୍ମିନୀକୁ, ଚକୋର ଯେପରି ଚନ୍ଦ୍ରିକାକୁ, ଚାତକ ଯେପରି ନବ ମେଘମାଳକୁ, ଦରିଦ୍ର ଯେପରି ଚିନ୍ତାମଣିକୁ ସର୍ବଦା ସ୍ମରଣ କରି ଦୁଃଖରେ କାଳ କାଟନ୍ତି, ସେହିପରି ନନ୍ଦନନ୍ଦନ କିଶୋର ଶ୍ରୀକୃଷ୍ଣ ସବୁବେଳେ ତୋତେ ସ୍ମରଣ କରି କରି ଦୁଃଖିତ ହୋଇ ରହିଅଛନ୍ତି । ଏହିପରି ଅବସ୍ଥାରେ ତୁ କାହିଁକି କାନ୍ଦି କାନ୍ଦି ଆକାଶ ପୃଥିବୀକୁ କନ୍ଦାଉଅଛୁ ?

ଏହା ଶୁଣି ରାଧା କହିଲେ—"ଧୀରା ରେ" ଇତ୍ୟାଦି ।

(ଧ) ଧୀରା—ପଣ୍ଡିତା, ଯୁବରାଜ—ଯୁବକଶ୍ରେଷ୍ଠ, [illegible]—ବଢ଼ାଇ ଦେଇ, କଳାଦ୍ୱିଜରାଜ—କୃଷ୍ଣଚନ୍ଦ୍ର, ଧୁରନ୍ଧର—ନିପୁଣ [illegible] କରିବାରେ,

# ନ

## ରାଗ—କାମୋଦୀ

ନବବିଳାସିନି ରେ, ନକ୍ଷତ୍ରେଶ-ହାସିନି । ପଦ ।

ନାହିଁ ବୋଲିବା ବାଣୀ ନିପଟ ନାହିଁ ଶୁଣି,
ନଳିନାକ୍ଷି ରେ ହୋଇ କିସ ହେବ,
ନନ୍ଦନନ୍ଦନ ପ୍ରେମା, ପ୍ରେମାରେ ନୁହେଁ ଜମା,
ନିତମ୍ବିନୀଙ୍କି ଯେବେ ଗତି ଥିବ* । ୧ ।

ନିଷ୍ଠୁର ଗୁଣ କୁଳି- ଶରୁ ପଡ଼ିଛି ବଳି,
'ନିଶ୍ଚୟ' ତିନି ବର୍ଣ୍ଣ ନାହିଁ ଲେଖି,
ନାଗରୀବିମୋହନ, ମନ୍ତ୍ର ମାତ୍ରକ ମନ
କପଟ ସମ୍ପୁଟରେ ଅଛି ରଖି । ୨ ।

ନିରନ୍ତରାୟ ରସ- ପ୍ରସାରଣେ ପୀୟୂଷ-
ଧାରାଧିକ୍କାରକାରୀ ପରି ଲାଗେ,
ନିମିଷକରେ ଜ୍ୱାଳା ଜନ୍ମାଏ ଜିଣି ହାଳା-
ହଳକୁ ଯେ ସଙ୍ଗାଳି ମହାନାଗେ । ୩ ।

---

ଧରଷିଲୁ—ସାହସ କଲୁ, କେହି—କିପରି, ଧମକାଇଲା—ଡରାଇଲା, ବ୍ୟାଜ—ସୁଧ ବା କଳନ୍ତର (ଉର୍ଦ୍ଦୁ—ବେଆଜ), ଧୃତି—ଧୈର୍ଯ୍ୟ, ଧୂସର—ମଳିନ, କଳଙ୍କସମାଜ— ଦୁଃଖସମୂହ, ମାଜ—ପରିଷ୍କାର କରିଦିଅ, ବଲ୍ଲବୀ—ଗୋପୀ, ରାଧା; ବଲ୍ଲବ—ଗୋପାଳ ଶ୍ରୀକୃଷ୍ଣ; ଧରାଧୂଳି—ବାସସ୍ଥାନର ଧୂଳି, ତାଜ—ମୁକୁଟ, ଭୂଷଣ ।

ଅନୁବାଦ—(ଧ) ହେ ସଖି, ତୁ ଏହି କଥାଗୁଡ଼ିକ କହି ମୋତେ ଆଜି କି ସମ୍ପତ୍ତି ନ ଦେଲୁ ? ହେ ହର୍ଷମୁଖୀ ଚନ୍ଦ୍ରାନନେ, ତୋର ଏହି ଅନୁକୂଳ ବାକ୍ୟଗୁଡ଼ିକ ମୋ ସୁଖରୂପ ଲତାର ବୀଜସମୂହ ବା ମୂଳ କାରଣ ପରି ହୋଇଅଛି ।

ପ୍ରଚଣ୍ଡ ଗ୍ରୀଷ୍ମରେ ମଲା ପରି ହୋଇଥିବା ବୃକ୍ଷର ଅଙ୍କୁର ପକ୍ଷରେ ନବବୃଷ୍ଟି ଧାରା ପରି, ରାତ୍ରି ପକ୍ଷରେ ଚନ୍ଦ୍ରକିରଣ ପରି, ଅନ୍ଧକାରାଚ୍ଛନ୍ନ ଗୃହସମୂହ ପକ୍ଷରେ ଦୀପଶିଖା ପରି ଏବଂ ସଂଯତଚିତ୍ତ ମୁନିଙ୍କ ପକ୍ଷରେ ବ୍ରହ୍ମାନନ୍ଦଧାରା ପରି ତୁ ବର୍ତ୍ତମାନ ମୋ ପକ୍ଷରେ ଅତ୍ୟନ୍ତ ଆନନ୍ଦଦାୟିନୀ ହେଲୁ ।

ଏହା [illegible] କହିଲେ, ''ନବବିଳାସିନି ରେ'' ଇତ୍ୟାଦି ।

* ପାଠ [illegible] ପ୍ରେମ ବଶେ ନୋହିବ ଭ୍ରମ, ନିତମ୍ବିନୀକି ଯେବେ ଗତି ଥିବ ।

ନିଶି ଦିନ ଶୟନ ନ ଜାଣଇ, ନବୀନ
ବିସିନୀଦଳ ଶେଯ ଯାଏ ଜଳି,
ନୀପବନ ପବନ ନିର୍ଦ୍ଧୂମଶିଖ ଧନ-
ଞ୍ଜୟ ଝାସରୁ କରେ କଟୁକେଳି । ୪ ।
ନିନ୍ଦାର ନିକେତନ ହୋଇବୁ ରେ ନୂତନ
ମନ୍ଦାର-ବିମ୍ବ-କୁରୁବିନ୍ଦାଧରା,
ନିଶା-ରମଣ-କର— କଳିକା-କଣ ତୋର,
ହୋଇଯିବ କଳ୍ପାନ୍ତକାଳ ଖରା । ୫ ।
ନ ବରଷରୁ ଊଣା କାଲୁ ତ ଅଛି ଜଣା
ନଖାଗ୍ରେ ଉଦ୍ଧରିଲା ଗୋବର୍ଦ୍ଧନ,
ନବନୀରଜ କୋଷ- ନିଭ ତୋ କୁଚ କିସ
ଅଣ୍ଟିବ କଣ୍ଠୀରବମଧ୍ୟା ଘେନ । ୬ ।
ନିବେଦନ କରୁଛି କରକଞ୍ଜ ଧରୁଛି
ହେଲେ ହେଉ ଅରୁଚି ନିଦ୍ରାହାରେ,
ନରନାଥ ଶ୍ରୀହରି- ଚନ୍ଦନ ବନ୍ଦେ ଗୋରି
ନ ରସ ନୀଳବାହା ମୁଦ୍ରାହାରେ । ୭ ।

(ନ) ମଦ୍ ବିଜ୍ଞାପନମାଦରେଣ ମହତା ସ୍ମିତ୍ୱାନୟତ୍ କେଶବଃ,
କର୍ଣ୍ଣାଭ୍ୟର୍ଣ୍ଣମପଶ୍ୟମୀଶ୍ୱରି ତଥା ଭଙ୍ଗୀସ୍ତଦଙ୍ଗୀକୃତେଃ;
ସତ୍ୟଂ ତାବଦିଦଂ ତଥାପି ସୁଦୃଶାଂ ଗତ୍ୟନ୍ତରଂ ଚେଦ୍‌ଭୁବି,
ପ୍ରେମା ତତ୍ର ବିଟେ ଶିଖଣ୍ଡମୁକୁଟେ ଧେୟୋ ନ ହେୟଃ ପରଂ ॥

(ଗଦ୍ୟ) କୃଷ୍ଣଂ କୃଷ୍ଣବର୍ମ୍ମାନମିବ ଶଲଭରାଜିରାଶ୍ରିତ୍ୟ ତ୍ୱାଦୃଶଂ ବାମଭ୍ରୁବାଂ ଚେତୋବୃତ୍ତିଃ ଶର୍ମେତରୋର୍ମିମନୁଭବତି ।

---

(ନ) ନବବିଳାସିନି—ହେ ନବରସିକେ; ନକ୍ଷତ୍ରେଶହାସିନ—ହେ ଚନ୍ଦ୍ରାହାସିନୀ; ନିପଟ—ଆଦୌ, କେବେହେଁ; ନଳିନାକ୍ଷି—ହେ ପଦ୍ମନେତ୍ରି; ପ୍ରେମା—ପ୍ରେମ, ପ୍ରେମାରେ ନୁହେଁ ଜମା—ଆଦୌ ପ୍ରେମ ପଦବାଚ୍ୟ ନୁହେଁ, ନିତମ୍ବିନୀ—ନିତମ୍ବବତୀ ଯୁବତୀ ସ୍ତ୍ରୀ; କୁଳିଶ—ବଜ୍ର, ମନକପଟସମ୍ପୁଟରେ—ମନରୂପ କପଟ ଫରୁଆରେ, ନିରନ୍ତରାୟ—ଅନ୍ତରାୟ ରହିତ ଅର୍ଥାତ୍ ବାଧାଶୂନ୍ୟ, ରସ ପ୍ରସାରଣେ—ଭାବ ବିସ୍ତାର କରିବାରେ, ହାଳାହଳ—ବିଷ, ସଙ୍ଗାଳି—ପ୍ରିୟ ବସ୍ତୁ, ବିସିନୀଦଳ—ପଦ୍ମପତ୍ର, ନୀପବନପବନ—କ[illegible]ସଞ୍ଚାରୀ ବାୟୁ, ନିର୍ଦ୍ଧୂମଶିଖ—ଧୂଆଁ ନ ଥିବା ଶିଖା [illegible] ଞ୍ଜୟ—ଅଗ୍ନି;

# ପ

## ରାଗ—ଭୈରବ

ପ୍ରିୟ ସହି, ପରମାଦ ବଡ଼ ତୁହି ଗୋ
ପାରୁ କେତେ ଛନ୍ଦେ ମୋହି ଗୋ । ପଦ ।
ପରମପଦରେ ଦେଇ ଜାଣୁ ତୁ ବସାଇ, ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ
ପାସୋରାଇ ମନୁ ନାନା କଦନ ଲସାଇ, ପୀଡୁ ଅଶ୍ରୁ ବରଷାଇ ଗୋ । ୧ ।
ପ୍ରପଞ୍ଚଯାକରେ ଜଣା ନ ଥାଇ ସଂଶୟ, ପସନ୍ଦ ନୁହଇ ପରପୁରୁଷରେ ସ୍ନେହ,
ପରବଶ ହେବ ଯେବେ ପ୍ରାଣତୁଲେ ଦେହ, ପ୍ରାଣୀ କି କରିବ କହ ଗୋ । ୨ ।

---

ମନ୍ଦାରବିମ୍ବକୁରୁବିନ୍ଦାଧରା—ମନ୍ଦାର (ମନ୍ଦାରଫୁଲ), ବିମ୍ବ (କଇଁଣକାକୁଡ଼ି) ଓ କୁରୁବିନ୍ଦ (ପଦ୍ମରାଗ ମଣି) ଏମାନଙ୍କର ବର୍ଣ୍ଣ ପରି ଅଧର ଅର୍ଥାତ୍ ଓଠ ଯାହାର, ନିଶାରମଣକର କଳିକାଗଣ—ଚନ୍ଦ୍ରକିରଣବିନ୍ଦୁ; କଳ୍ପାନ୍ତକାଳ—ପ୍ରଳୟ କାଳ; ନ ବରଷରୁ ଊଣା କାଳୁ—୯ ବର୍ଷରୁ ଅଳ୍ପ ବୟସ ହୋଇଥିବା ସମୟରୁ, ଉଦ୍ଧରିଲା—ଟେକି ଧରିଥିଲା; ନବ ନୀରଜକୋଷନିଭ—ନୂତନ ପଦ୍ମକଢ଼ ସଦୃଶ; କଣ୍ଠୀରବମଧା—ସିଂହକଟି ଅର୍ଥାତ୍ କ୍ଷୀଣକଟୀ, କୃଶାଙ୍ଗୀ; କରକଞ୍ଜ—କରପଦ୍ମ, ନିଦ୍ରାହାରେ—ଶୋଇବାରେ ଓ ଖାଇବାରେ; ନୀଳବାହା—ନୀଳବର୍ଣ୍ଣ ବାହୁର (ଶ୍ରୀକୃଷ୍ଣଙ୍କର); ମୁଦ୍ରାହାରେ—ଆଲିଙ୍ଗନ ରୂପକ ହାରରେ ।

ଅନୁବାଦ—(ନ) ହେ ଈଶ୍ୱରୀ, କେଶବ ମୋ ପ୍ରାର୍ଥନାକୁ ହସି ହସି ଅତି ଆଦରରେ ଶୁଣିଲା ଏବଂ ତାହାର ଅଙ୍ଗୀକାରଭଙ୍ଗୀ ମଧ୍ୟ ପ୍ରତ୍ୟକ୍ଷ କଲି ଏହା ସତ୍ୟ, ତଥାପି ଏ ସଂସାରରେ ସୁନ୍ଦରୀ ନାରୀମାନଙ୍କର ଯେବେ ଅନ୍ୟ ଗତି ଥିବ, ତେବେ ସେମାନେ ସେହି ମୟୂରଚୂଳିଆ ଧୂର୍ତ୍ତଠାରେ ପ୍ରେମକଥା କେବେ ହେଲେ ମନେ କରିବେ ନାହିଁ, ବରଂ ତାକୁ ହେୟ ଜ୍ଞାନ କରିବେ ।

ଯେପରି ପତଙ୍ଗକୁଳ ଅଗ୍ନିକୁ ଆଶ୍ରୟ କରି ଘୋର ଦୁଃଖ ଅନୁଭବ କରନ୍ତି, ସେହିପରି ତୋ ଭଳି ସୁନ୍ଦରୀ ନାରୀମାନଙ୍କର ଚିତ୍ତବୃତ୍ତି କୃଷ୍ଣଙ୍କୁ ଆଶ୍ରୟ କରି ଘୋର ଦୁଃଖ ଅନୁଭବ କରୁଅଛି ।

ଏହା ଶୁଣି ଘୋର ସଂଶୟାକୁଳ ହୋଇ ରାଧା ଦୂତୀଙ୍କୁ କହୁଛନ୍ତି—

"[illegible] ବଡ଼ ତୁହି ଗୋ" ଇତ୍ୟାଦି ।

ପରବଚନ୍ଦ୍ର ଚିପୁଡ଼ି ପିଇବା ପୀୟୂଷ, ପରିଣତି ସମୟେ ସେ ହେବ ଯେବେ ବିଷ,
ପ୍ରପନ୍ନ ହେବା ଗଙ୍ଗାରେ ଜନ୍ମିଲେ କିଲ୍ବିଷ, ପ୍ରୟୋଗ କରିବା କିସ ଗୋ । ୩ ।
ପିଆଇ ଦୁହିଁଙ୍କି ଥରେ ଦୁହିଁଙ୍କ ଅଧର, ପଛେ କହ ଆଚରଣ ପୂତନାବଧର,
'ପୀତପଟନଟ' ନାଁ ମୋ ଆଗରେ ନ ଧର, ପାଳିଏ ମାତ୍ର ଉଦ୍ଧର ଗୋ । ୪ ।
ପୁରନ୍ଦରମଣି ଶ୍ୟାମେ ଅଛି ମୋ ତରସ, ପରପରିବାଦ ମୁଣ୍ଡେ ଟାକର ବରଷ,
ପୃଥ୍ୱୀଚକ୍ରବାଳ ପରିବୃଢ଼ ବାଲୁକେଶ ପ୍ରସରାଇଲେ ଏ ରସ ଗୋ । ୫ ।

(ପ) ମାମଭ୍ରଂଲିହନବ୍ୟଦିବ୍ୟବଡ଼ଭୀନିର୍ଯ୍ୟୁହପର୍ଯ୍ୟଙ୍କିକା—
ସଂବିଷ୍ଟାଂ ପ୍ରବିଧାୟ ବିକ୍ଷିପସି କିଂ ତସ୍ମାଦଧୋଽଧଃ ପୁନଃ
ଆର୍ତ୍ତସ୍ୟାତିପିପାସୟାମୃତଝରୀବାର୍ତ୍ତାଂ ନିବେଦ୍ୟଶ୍ରୁତୌ,
ଭୂୟଃ ଶମ୍ବକଦମ୍ବକେଳିକଠିନଂ କି ଭାରତୀଂ ଭାଷସେ ॥

(ଗଦ୍ୟ) ଜନ୍ତୋଃ ସନ୍ତତଚିନ୍ତାରୁନ୍ତୁଦକୁନ୍ତମୁଖାଗ୍ରଦଳିତହୃଦୟସ୍ୟ ପିପାସାର୍ତ୍ତସ୍ୟ ବଦନାନ୍ତିକେ ସୁଧାସୁଧାରାଂ ବିନ୍ୟସ୍ୟ ମନ୍ତୁମନ୍ତରେଣ ପୁନରାଚ୍ଛିଦ୍ୟ କୋ ବା ନିନୀଷତି ।

---

(ପ) ପରମାଦ—ପ୍ରମାଦ, ଏଠାରେ ଦୁଃଖଦାୟିନୀ, ପରମପଦ—ସର୍ବୋତ୍କୃଷ୍ଟ ସ୍ଥାନ, ସ୍ୱର୍ଗ; ତଳାତଳ—ପାତାଳ; କଦନ—ଦୁଃଖ, କଷ୍ଟ, ଲସାଇ—ତରଳାଇ, ଏଠାରେ ଦୂର କରି; ପୀଡୁ—ପୀଡ଼ା ଦେଉ; ପ୍ରପଞ୍ଚ—ସଂସାର; ସଂଶୟ—ସନ୍ଦେହ; ତୁଲେ—ସହିତ; ପରବଚନ୍ଦ୍ର—ପୂର୍ଣ୍ଣିମାଚନ୍ଦ୍ର; ପରିଣତି ସମୟେ—ପରିପାକ ବେଳେ; ପ୍ରପନ୍ନ—ଆଶ୍ରିତ, ଯାହାକୁ ଆଶ୍ରୟ କରନ୍ତି (କର୍ମବାଚ୍ୟରେ ତ); କିଲ୍ବିଷ—ପାପ; ପୀତପଟ—ପୀତବସ୍ତ୍ର ପରିଧାନକାରୀ; ନଟ—ଦୁଷ୍ଟ; ନାଁ—ନାମ; ପାଳିଏ—ଥରେ, ପୁରନ୍ଦରମଣି—ଇନ୍ଦ୍ରନୀଳମଣି (ଶ୍ରୀକୃଷ୍ଣଙ୍କର ବିଶେଷଣ), ତରସ—ପୂର୍ଣ୍ଣ ଇଚ୍ଛା; ପରପରିବାଦ—ପରନିନ୍ଦା; ଟାକର—ମୁଷ୍ଟିବଦ୍ଧ ଅଙ୍ଗୁଳିଗ୍ରନ୍ଥି ଦ୍ୱାରା ଆଘାତ କରିବା, ପୃଥ୍ୱୀଚକ୍ରବାଳ—ଚକ୍ରବାଳବ୍ୟାପୀ ସମଗ୍ର ଭୂଖଣ୍ଡ; ପରିବୃଢ଼—ପ୍ରଭୁ; ପ୍ରସରାଇଲେ— ପ୍ରସାରିତ କଲେ ।

ଅନୁବାଦ—(ପ) ହେ ସଖି; ମୋତେ ଆକାଶସ୍ପର୍ଶୀ ନୂତନ ସମୁଚ୍ଚ ସୁନ୍ଦର ଚନ୍ଦ୍ରଶାଳା ଉପରିସ୍ଥ ବାଡ଼ ଥିବା ପଲଙ୍କରେ ଶୁଆଇ ଦେଇ କାହିଁକି ପୁଣି ତହିଁରୁ ତଳକୁ ଖସାଇ ପକାଇ ଦେଉଅଛୁ ? ଯେଉଁ ଲୋକ ଶୋଷରେ ଅତି ବିକଳ ହେଉଅଛି; ତା କାନ ପାଖରେ ଅମୃତଧାରା ମିଳିବାର ସମ୍ବାଦ ଦେଇ ପୁଣି କିପରି ବଜ୍ର ପରି କର୍କଶ କଥାଗୁଡ଼ାଏ କହୁଅଛୁ ?

ନିତ୍ୟଚିନ୍ତା ରୂପ କୁନ୍ତାସ୍ତ୍ରର ମୁଖଦ୍ୱାରା ବିଦ୍ଧ ହୋଇ ଯାହାର ହୃଦୟ କଷ୍ଟ ପାଉଅଛି, ସେଭଳି ଜୀବର ମୁଖ ପାଖରେ ଅମୃତଧାରା ଢାଳି ବିନା ଦୋଷରେ ପୁଣି ତାକୁ ତା ଆଗରୁ କାଢ଼ି ନେବାକୁ କେଉଁ ଲୋକ ଇଚ୍ଛା କରେ ?

ଏହା ଶୁଣି ଲଳିତା କହିଲେ—''ଫାଟି ପଡ଼ିବାର [illegible]'' ଇତ୍ୟାଦି ।

# ଫ

## ରାଗ—ପୂରବୀ ବା ତୋଡ଼ିପରଜ

ଫାଟି ପଡ଼ିବାର ନିକୁଞ୍ଜସଞ୍ଚାର-ଶ୍ରମୁଁ ମୋ ଚରଣତଳ,
ଫତୁରିଖୋର ଆଖରକୁ ହେବାର ଏହି ଏକା ଏଥୁ ଫଳ,
ରେ କିଶୋରି, ଫିଟିଗଲା ଯେ ସନ୍ଦେହ,
ଫୁଲିଗଲୁ ଫୁଲଲଲାମରସିକା ଜାଣି ପରା ଶ୍ୟାମସ୍ନେହ ରେ । ୧ ।
ଫନ୍ଦାଇ ନାନା ବିନୟେ କହି ଦନ୍ତେ ତୃଣ ଧରିବାର ଗଲା,
ଫଟା କପାଳରେ କୁଟିଳହୃଦୟା ବୋଲାଇବା ଲେଖା ଥିଲା,
ରେ କିଶୋରି, ଫନ୍ଦାଧନ ତୁ ତ ମୋର,
ଫରିଆଦ କାହିଁ ତୋ ନାମେ କରିବି ନିନ୍ଦା କଲେ ପଛେ କର ରେ । ୨ ।
ଫରୁଆରେ ପରି ଉରଜରେ ଭରି ରଖ ସେ ନୀଳମଣିକି,
ଫଉଜତୁଲେ କୁଞ୍ଜଦ୍ୱାରେ ରଖାଅ ବେତ୍ରବଲ୍ଲୀଧାରିଣୀକି,
ରେ କିଶୋରି, ଫରମାସ ମନେ ମନେ,
ଫେଇଦିଅ ତୁ ମୋ ଆବୁର ମୁଁ ଯେବେ ଯିବି ସେ ଦିଗକୁ ଦିନେ ରେ । ୩ ।
ଫଜିତ ହୋଇ ଦୂରରେ ଥିଲେ ତୋତେ ଭଜିତ ଥିବାର ସତ,
ଫେଡ଼ନ୍ତୁ ତୋ କଷ୍ଟ ସୁଖ ଦେଇ ଅଷ୍ଟଶ୍ରୁତି ଏ ଆମ୍ଭ ବାଞ୍ଛିତ,
ରେ କିଶୋରି, ଫୁରୁଣା ହୋଇ ତୁ ରସ,
ଫେରିଆସି ମାତ୍ର ଆମ୍ଭ ଆଗେ ନେତ୍ରକଞ୍ଜୁ ନୀର ନ ବରଷ ରେ । ୪ ।
ଫୋଟକା ହେଉଛି ସିଞ୍ଚିବା କର୍ପୂରଚନ୍ଦନମିଶ୍ରିତ ବାରି,*
ଫୁଙ୍କିଦେଲେ ଉଡ଼ିଯିବା ପରି ସଡ଼ି ଅଛଟି ତନୁ-ବଲ୍ଲରୀ,
ରେ କିଶୋରି, ଫୁକାରା ନୋହୁ ଜଗତେ,
ଫତୁଆ ନୁହଟି ବୋଲେ ଜଗଦ୍ଦେବ ହରିଚନ୍ଦନ ଏ ଗୀତେ । ୫ ।

(ଫ) ଆକୁଞ୍ଜଂ ଭବନାଦ୍‌ବନାଦପି ତବାପ୍ରୋତ୍ତୁଙ୍ଗ ସୌଧୋଦରଂ,
ଯାତାୟାତ ପଦାନ୍ତପାତଜଫଳଂ ଲବ୍ଧଂ ମୟେତଃ ପରଂ ।
ଅନ୍ୟାପେକ୍ଷିତଶୂନ୍ୟମୀଶ୍ୱରି ଯୁବାମନ୍ୟୋନ୍ୟଦୌତ୍ୟେନ ତତ୍,
ସୌଭାଗ୍ୟଂ ବିତତଂ ମୁଦାନୁଭବତଂ ନାୟାମି ମାୟାବିନୀ ॥

(ଗଦ୍ୟ) ହା ହା ଚନ୍ଦ୍ରକଚୂଡ଼ାନନ୍ଦନ ଚରିତେ, ମାମପ୍ରତ୍ୟୟଦୂତ୍ୟବିଶିଷ୍ଟାଂ ନ ନିରାକୃତ୍ୟ ପ୍ରତ୍ୟହଂ ପ୍ରତ୍ୟୂହପ୍ରତିହନ୍ୟମାନମନୋରଥରମଞ୍ଜରୀଫଳଲାଭାସି ।

---

* ପ[illegible] ଝୁଲ୍ଲା ହେଉଛି ଶ୍ରୀଅଙ୍ଗେ ସିଞ୍ଚିଲେ କର୍ପୂରଚନ୍ଦନ-ବାରି ।

# ବ

## ରାଗ—ସାବେରୀ

ବିଚକ୍ଷଣା ରେ, ବିନା ତୋ ପ୍ରୀତି କେ ଗତି ଅଛି ଜଗତୀରେ । ପଦ ।
ବୋଲି ଦେଲି ସିନା ଗେଲେ ହସି, ବିଶ୍ୱେ ତୋ ସମ କାହିଁ ବିଶ୍ୱାସୀ,
ବାନ୍ଧିବାକୁ ମୋ ମନ ତୁ ପାଶି,
ବିଶେଷରେ ମୋ ହୃଦନ୍ତର ତୋତେ ଜଣାରେ । ୧ ।
ବିଶ୍ୱମ୍ଭରାରଙ୍ଗଖେଳ କାଳୁ ବହିଃ-ପ୍ରାଣ ପରି ପରିପାଳୁ
ବିଧିବଶୁ ନିସର୍ଗକୃପାଳୁ,
ବ୍ରଜେ ହେଉଛି ଏହି ଡିଣ୍ଡିମ ବାଜଣାରେ । ୨ ।
ବିକେ କିଣେ ଯେ ଯାହାକୁ ସ୍ନେହେ, ବଡ଼ ତାଠାରୁ ଜୀବନ ନୋହେ,
ବଳ ତାହାଠାରେ ସିନା ସହେ,
ବହିରଙ୍ଗେ ବୁଲୁଛନ୍ତି ଦେଖ ଅଗଣା ରେ । ୩ ।

---

(ଫ) ନିକୁଞ୍ଜସଞ୍ଚାରଶ୍ରମୁ—କୁଞ୍ଜବନକୁ ଯିବା-ଆସିବା ପରିଶ୍ରମରୁ, ଚରଣତଳ—ତଳିପା, ଫତୁରିଖୋର—ମିଥ୍ୟାଭାଷିଣୀ; ଆଖରକୁ—ଶେଷକୁ; ଫୁଲଲଲାମରସିକା—ପୁଷ୍ପଭୂଷଣପ୍ରିୟା; ଫନ୍ଦାଇ—ଭୁଲାଇ; ତୃଣ—କୁଟା; ଫନ୍ଦାଧନ—ଉପାର୍ଜନର ଆଶ୍ରୟ; ଫରିଆଦ—ଅଭିଯୋଗ; ନାଲିଶ୍; ଉରଜ—କୁଚ; ଫଉଜ—ସୈନ୍ୟ; ନୀଳମଣି—ଶ୍ରୀକୃଷ୍ଣ ଅର୍ଥରେ, ବେତ୍ରବଲ୍ଲୀଧାରିଣୀ—ବେତ ଧରିଥିବା ପ୍ରତିହାରୀ ବା ଦ୍ୱାରପାଳିକା, ଫରମାସ—ବରାଦ କର, ଆଦେଶ କର; ଫେଇଦିଅ—ସାରିଦିଅ ବା ଖୋଲିଦିଅ, ଆବୁର—ଆବ୍ରୁ—ମାନମହତ; ଫଜିତ—ଅପମାନିତ, ଭଜିତ—ଆଶ୍ରା, ଅଷ୍ଟଶ୍ରୁତି—ବ୍ରହ୍ମା, ପ୍ରଜାପତି (ସ୍ତ୍ରୀ ପୁରୁଷଙ୍କର ମିଳନ-ବିଧାୟକ ଦେବତା), ଫୁରୁଣା—ପୂର୍ଣ୍ଣ ମନୋରଥ, ନେତ୍ରକଞ୍ଜୁ—ଚକ୍ଷୁ ରୂପ ପଦ୍ମରୁ, ବାରି—ଜଳ; ସଡ଼ିଅଛି—ଦୁଃଖରେ ଶୀର୍ଣ୍ଣ ହୋଇଅଛି, ତନୁବଲ୍ଲରୀ—ଶରୀର ରୂପ ଲତା, ଫୁକାରା—ପ୍ରଚାରିତ, ଫତୁଆ—ଅକୃତକାର୍ଯ୍ୟ ।

ଅନୁବାଦ—(ଫ) ହେ ଈଶ୍ୱରି, ମୁଁ ତୁମ ଘରୁ କୁଞ୍ଜ ପର୍ଯ୍ୟନ୍ତ ଏବଂ କୁଞ୍ଜବନରୁ ତୁମ ଘର ପର୍ଯ୍ୟନ୍ତ ଯିବା-ଆସିବା କରିବାରେ ଯେଉଁ ପାଦଶ୍ରମ କରିଥିଲି, ତାହାର ଫଳ ପାଇଲିଣି, ଏହାପରେ ତୁମ୍ଭେ ଦୁହେଁ ଅନ୍ୟକୁ ଅପେକ୍ଷା ନ କରି ନିଜେ ନିଜର ଦୂତ ହୋଇ ସ୍ୱ ସ୍ୱ ସୌଭାଗ୍ୟସୁଖ ଅନୁଭବ କର, ମୁଁ ମାୟାବିନୀ ଆଉ ଆସିବି ନାହିଁ ।

କି ଦୁଃଖର କଥା ! ହେ ଶ୍ରୀକୃଷ୍ଣପ୍ରମୋଦିନୀ, ଅବିଶ୍ୱାସିନୀ ମୋତେ ଦୂତୀ କରିବାରୁ ତୁମ୍ଭେ ପ୍ରତିଦିନ ବିଫଳମନୋରଥ ହେଉଅଛ ସିନା !

ଏହା ଶୁଣି ରାଧା ଭୟରେ କହୁଅଛନ୍ତି—"ବିଚକ୍ଷଣେ ... [illegible] ।

ବୋଲେ ଅଷ୍ଟଦୁର୍ଗର ମଘବା, ବଲ୍ଲୀ ନିକଟକୁ ଚାଲ ଯିବା,
ବଂଶୀଗୀତ ପୀୟୂଷ ପିଇବା,
ବିଭାବରୀ ନ ପାହୁଁ ଆସିବା ଅଙ୍ଗଣାରେ । ୪ ।

(ବ) କୌତୁକାଲ୍ପିତମୀଷଦତଥ୍ୟଂ କୌତୁକା ହୃଦି ଦଧାତିବୟସ୍ୟା,
ପିଷ୍ଟପେ ମମ ଯଥା ତ୍ୱମହେୟା, ପିଷ୍ଟପେଷଣଭୟାନ୍ନ ବଦାମି ॥

(ଗଦ୍ୟ) ରସିକାଂ ପ୍ରାଣାଧିକାଂ ତ୍ୱାଂ ବିନାତ୍ର ନଗର୍ଯ୍ୟାଂ ମଦୁକ୍ତିନୈଷ୍ଠୁର୍ଯନିଦାନପର୍ଯ୍ୟାଲୋଚନଚାତୁର୍ଯଧୂର୍ଯ୍ୟା କା ବାନ୍ୟାଭୀରକନ୍ୟାସ୍ତୀତି ଧୈର୍ଯ୍ୟମବଲମ୍ବ୍ୟ ଯଦୁକ୍ତମନୁଚିତଂ ତଦ୍‌ବିସ୍ମୃତ୍ୟାଗଚ୍ଛାବାଂ ଗତ୍ୱା କୁତ୍ରଚିନ୍ନିଲୀୟ ଯୌବତଜୀବନାନ୍ତର୍ଯାତନାଯତମାନକଟାକ୍ଷଲୀଳସ୍ୟାପି ତସ୍ୟାଖଣ୍ଡଶିଖଣ୍ଡମଣ୍ଡିତଶେଖରସ୍ୟ ଭ୍ରମଣରମଣୀଯାୟା ଭୁବଃ ସୁଷମାମବଲୋକୟିଷ୍ୟାବ ଇତି ବିଡ଼ମ୍ବିତସୂନକଳମ୍ବବିଜୟଡ଼ିଣ୍ଡିମାଡ଼ମ୍ବରାବଲମ୍ବିଚରଣମଣ୍ଡନଂ ନିଃସୃତ୍ୟ କଦମ୍ବକୁଞ୍ଜକାନନାନ୍ତର୍ବିବିଶତୁଃ ।

---

(ବ) ବିଚକ୍ଷଣା—ହେ ବୁଦ୍ଧିମତି, ଜଗତୀରେ—ସଂସାରରେ, ପାଶି—ପାଶ, ବିଶ୍ୱମ୍ଭରାରଜଖେଳ କାଳୁ—ପୃଥିବୀରେ ଧୂଳି ଖେଳିବା ସମୟରୁ ଅର୍ଥାତ୍ ପିଲାଦିନୁ, ବହିଃପ୍ରାଣ—ତୋ ନିଜ ଜୀବନ ଯାହା କି ତୋ ବାହାରେ ଅଛି, ନିସର୍ଗ କୃପାଳୁ—ଅପୂର୍ବ ଦୟାଶୀଳା, ବ୍ରଜେ—ଗୋପପୁରରେ; ବହିରଙ୍ଗେ—ଯେଉଁମାନେ ଅନ୍ତରଙ୍ଗ ବା ଆତ୍ମୀୟ ନୁହନ୍ତି ସେମାନେ, ଅଗଣା—ଅସଂଖ୍ୟ, ମଘବା—ଇନ୍ଦ୍ର, ରାଜା, ବଲ୍ଲୀ—ଲତା, ବିଭାବରୀ ନ ପାହୁ—ରାତି ନ ପାହୁଣୁ ।

ଅନୁବାଦ—(ବ) ଅୟି ସଖି, ପରିହାସରେ କହିବା ସାମାନ୍ୟ ଅତଥ୍ୟ କଥାକୁ ଏ ପୃଥିବୀରେ କେଉଁ ସଖୀ ହୃଦୟରେ ଧରି ରଖେ ? ସଂସାରରେ ତୁ ମୋର କିପରି ଦୁଚ୍ଛେଦ୍ୟ ବନ୍ଧୁ, ସମସ୍ତ ଜାଣନ୍ତି; କଥାରେ କହିଲେ ପିଷ୍ଟପେଷଣ ବା ପୁନରୁକ୍ତି ହେବ ସିନା !

ତୋ ପରି ରସିକା ପ୍ରାଣବନ୍ଧୁ ଛଡ଼ା ଏ ଗୋପପୁରରେ ଏପରି କୌଣସି ନିପୁଣା ଗୋପକନ୍ୟା ଅଛି ଯେ କି ମୋ କଥାରେ ନିଷ୍ଠୁରତା ଆଲୋଚନା କରିପାରିବ ? ସଖି, ଟିକିଏ ଧୈର୍ଯ୍ୟ ଧର, ଯେବେ କିଛି ଅନୁଚିତ କଥା କହିଅଛି, ତେବେ ତାହା ଭୁଲିଯାଇ ଆ ଯିବା; ଲତା ଆଢୁଆଳରେ ଲୁଚିରହି ଯେଉଁ ସ୍ଥାନରେ ସେ ଯୁବତୀଜନଙ୍କର ଜୀବନ ବିନାଶ କରିବାପାଇଁ କଟାକ୍ଷଲୀଳା ବିସ୍ତାର କରୁଅଛନ୍ତି ଏବଂ ତାଙ୍କର ଭ୍ରମଣ ବିଳାସରେ ଯେଉଁ ସ୍ଥାନ ରମଣୀୟ, ସେହି ଅରଣ୍ୟଖଣ୍ଡର ଶୋଭା ପରସ୍ପରକୁ ଦେଖାଇବା । ଏହା ନିଶ୍ଚୟ କରିବା ପରେ ରାଧା କନ୍ଦର୍ପର ବିଜୟଡ଼ିଣ୍ଡିମ ଶବ୍ଦକୁ ଅନୁକରଣ କରୁଥିବା ନୂପୁର ଯୁଗଳକୁ ଚରଣରୁ ବାହାର କରି କଦମ୍ବକୁଞ୍ଜକାନନ ମଧ୍ୟକୁ ଲଳିତାଙ୍କ ସଙ୍ଗେ ପ୍ରବେଶ କଲେ ।

ଲ[illegible]ତା ଆଢୁଆଳରେ ରହି ଶ୍ରୀକୃଷ୍ଣଙ୍କର ଶୋଭା ରାଧିକାଙ୍କୁ ଦେଖାଇ [illegible] ବାହାଁ" ଇତ୍ୟାଦି ।



## ରାଗ—କେଦାରଗୌଡ଼ା

ଭଙ୍ଗୀ ଚାହାଁ, ଭ୍ରୂନୀଳଭୁଜଙ୍ଗୀ-ଭ୍ରମର, ଜୀବସଙ୍ଗୀ । ପଦ ।
ଭାଗ୍ୟ ଏ ଜନଆଖି, ଜନନରଚି ସଖି, ଜାଣ ରେ,
ଭରମି ନ ଯା ତୁ ମନ୍ମଥ-ବାଣରେ,
ଭୁଜପାଶିକୁ ଛନ୍ଦି ମୋ ଗଳେ, ଭିଡ଼େ ପଦକଞ୍ଜ ଖଞ୍ଜ ଧରଣୀ ତଳେ,
ଭୂମଣ୍ଡନା ରେ,
ଭଲା ମାନୁଛି ଦେଖ ମୁଖସୁଧାମୟୂଖ,
ଅଳକତଳ ଅଖ- ଣ୍ଡିତ ରୋଚନାରେଖ,
ତିଳକେ ଦୃଷ୍ଟି ରଖ, ସଖି ରେ, କି ଦିଶେ ଚଳାଚଳ, ଚାରୁଚନ୍ଦ୍ରକଚୂଳ । ୧ ।
ଭର୍ତ୍ସିତ ନବରବି, କୁଣ୍ଡଳଯୁଗ ଛବି, ଗଣ୍ଡରେ,
ଭିଦୁର ଏହିଟି ବିବେକମୁଣ୍ଡରେ,
ଭବ୍ୟଦାୟକ ମାଣିକ୍ୟବର ଭ୍ରମ ଜାତ କରୁଛି ମଧୁରାଧର,
ଭୂମଣ୍ଡନା ରେ,
ଭୁଷୁଡ଼ିବଟି ସତୀ- ବ୍ରତ ନିୟମ ଧୃତି,
ଶ୍ରୀଅଙ୍ଗସଙ୍ଗ ମତି ବିନା ଅନାଥ ଦ୍ୟୁତି
ମଦଦ୍ୱିରଦଗତି, ସଖି ରେ, ଶୋଭାନିଧି ତୋ ଗାତ୍ର, ନ ଚୁମ୍ବୁ ଶ୍ୟାମନେତ୍ର । ୨ ।
ଭଙ୍ଗୀତ୍ରୟରେ ଉଭା ହେବାର କେଡ଼େ ଶୋଭା ପ୍ରକାଶେ
ଭରାଜି କି ହାର ସେ ବକ୍ଷ ଆକାଶେ,
ଭର୍ଗସମାଧି ଭଙ୍ଗ କରିବ ଭଲେ ଏହା କରକମଳ ବଂଶୀରବ
ଭୂମଣ୍ଡନା ରେ
ଭୂତିଭୂଷ-ବିପକ୍ଷ- ପ୍ରକ୍ଷେଡ଼ନରୁ ତିକ୍ଷ,
ଏ କିଶୋର କଟାକ୍ଷ କନକାଚଳ ବକ୍ଷ
କେବଳ ଏହା ଲକ୍ଷ୍ୟ, ସଖି ରେ, କହ ବିଚାରି ସତେ, ଯୁବତିଧୃତି କେତେ । ୩ ।
ଭାଷିଲେ ଅଷ୍ଟ ଦୁର୍ଗ-କ୍ଷିତି କପଟସ୍ୱର୍ଗ ମଘବା,
ଏ ଶୃଙ୍ଗାର ସୁଧାବରଷୀ ମେଘ ବା,
ଭୃତ୍ୟପଣରେ ହେଲେ ଏହାର ଭୁଜଭୁଜଗେନ୍ଦ୍ର କରନ୍ତା କଣ୍ଠେ ହାର
ଭୂମଣ୍ଡନା ରେ
ଭଜିଥାନ୍ତା ରଜନୀ, ଦିବସେ ପିକଦାନୀ,
ଖଟି ଏ କୃପା ଘେନି ସାର୍ଥ ହୁଅନ୍ତା [illegible]
ସତେ ଜଳଜଯୋନି ସଖି ରେ, କରିବେ ଅନୁଗ୍ରହ ଏ [illegible] ହ । ୪ ।

(ଭ) କୁଳାଭୀରୀଧୈର୍ଯ୍ୟବ୍ୟୟକରଣଧୂର୍ଯ୍ୟସ୍ମି ତଲବୋ
ଦଧନ୍ନୀପାଭ୍ୟାସେ ଭୁବନନୟନାସେଚନକତାଂ ।
ହରିଃ ସୋଽୟଂ କାଳାମ୍ବୁଦନିଭୃତମାଳାଗମରୁଚିଃ,
କୃତସ୍ଥୈର୍ଯ୍ୟନ୍ୟାସଂ ଗତନିମିଷୟା ସଂପିବ ଦୃଶା ॥

(ଗଦ୍ୟ) ଇତି ବିଜ୍ଞାପ୍ୟ ରାଧାଙ୍ଗସୌରଭଲବ୍ଧାରବ୍ଧାନଙ୍ଗମଙ୍ଗଳ ସଙ୍ଗୀତ ମଧୁକରନିକରବିଜାତୀୟ-ବିଳାସପୂର୍ଣ୍ଣନିକୁଞ୍ଜପୁଞ୍ଜ ଆତ୍ମାନଂ ହରେର୍ଲୋଚନଗୋଚରୀ-କୃତ୍ୟ କୁସୁମନିଚୟାବଚୟସମୁଦ୍ୟମାଭିନୟେନ ତତୋ ଲତିକାନ୍ତରଂ ପ୍ରତି ଚଳିତାୟାଂ ଲଳିତାୟାଂ—

---

(ଭ) ଭୁରୂନୀଳଭୁଜଙ୍ଗୀ—ଭ୍ରୂଲତାରୂପ ନୀଳସର୍ପୀ; ଭ୍ରମର—ଭ୍ରମଣର ବା ଚଳନର; ଜୀବସଙ୍ଗି—ହେ ପ୍ରାଣବନ୍ଧୁ, ମନ୍ମଥ—କନ୍ଦର୍ପ, ଜନନ—ଜନ୍ମ; ଭୁଜପାଶି—ବାହୁରୂପ ପାଶ; ଭିଡ଼େ—ଦୃଢ଼ ରୂପେ; ପଦକଞ୍ଜ—ପାଦରୂପ ପଦ୍ମ; ଖଞ୍ଜ—ସ୍ଥାପନ କର; ସୁଧାମୟୂଖ—ଚନ୍ଦ୍ର; ଅଳକତଳ—ଚୂର୍ଣ୍ଣକୁନ୍ତଳର ନିମ୍ନଦେଶ; ଅଖଣ୍ଡିତ ରୋଚନାରେଖ—ଆଦୌ ଖଣ୍ଡିଆ ହୋଇ ନ ଥିବା ଗୋରଚନାର ରେଖା ବା ଗାର; ଚଳାଚଳ—ଗତିଶୀଳ; ଚନ୍ଦ୍ରକଚୂଳ—ମୟୂରପୁଚ୍ଛନିର୍ମିତ ମୁକୁଟ; ଭର୍ସିତନବରବି—ତିରସ୍କୃତ ବା ପରାଜିତ ହୋଇଅଛି ନବୋଦିତ ସୂର୍ଯ୍ୟ ଯାହାଦ୍ୱାରା (କୁଣ୍ଡଳଯୁଗର ବିଶେଷଣ), ଭିଦୁର—ବଜ୍ର; ଭବ୍ୟଦାୟକ—ସୁଖପ୍ରଦ; ଧୃତି—ଧୈର୍ଯ୍ୟ; ଦ୍ୟୁତି—ଶୋଭା; ମଦଦ୍ୱିରଦଗତି—ମତ୍ତଗଜଗମନା; ଶୋଭାନିଧି—ସୌନ୍ଦର୍ଯ୍ୟର ସଂପଦ; ଭଙ୍ଗୀତ୍ରୟରେ—ତ୍ରିଭଙ୍ଗିରେ, ଭରାଜି—ନକ୍ଷତ୍ରସମୂହ; ଭର୍ଗସମାଧି—ଶିବଙ୍କର ଯୋଗଜନିତ ସ୍ଥିରତା; ଭଲେ—ଅକ୍ଳେଶରେ, ଭୂତିଭୂଷବିପକ୍ଷ—ମହାଦେବଙ୍କ ଶତ୍ରୁ, କନ୍ଦର୍ପ; ପ୍ରକ୍ଷେଡ଼ନ—ଶର; ତିକ୍ଷ—ତୀକ୍ଷଣ; କନକାଚଳ ବକ୍ଷ—ସ୍ୱର୍ଣ୍ଣପର୍ବତ ପରି ହୋଇଥିବା କୁଚଯୁକ୍ତ ବକ୍ଷଦେଶ, କ୍ଷିତି—ରାଜ୍ୟ, କପଟସ୍ୱର୍ଗ—ସ୍ୱର୍ଗସଦୃଶ, ମଘବା—ଇନ୍ଦ୍ର (ରାଜା ଅର୍ଥରେ); ଶୃଙ୍ଗାର ସୁଧା—ପ୍ରୀତି ରୂପକ ଅମୃତ; ଭୁଜଭୁଜଗେନ୍ଦ୍ର—ବାହୁରୂପ ଶ୍ରେଷ୍ଠ ନାଗ, ଘେନି—ପାଇଁ; ଜନି—ଜନ୍ମ; ଜଳଜଯୋନି—ବ୍ରହ୍ମା, ବିଧାତା ।

ଅନୁବାଦ—(ଭ) ଯେ ମନ୍ଦହାସରେ ଗୋପକୁଳ ବାଳାମାନଙ୍କର ଧୈର୍ଯ୍ୟ ଲୋପ କରିପାରନ୍ତି; ସେହି ଘନ ନୀଳକାନ୍ତି ତମାଳଶ୍ୟାମ ଶ୍ରୀହରି କେଳିକଦମ୍ବ ମୂଳରେ ବିଶ୍ୱଜନ-ନୟନମୋହନ ରୂପ ଧାରଣ କରି ଅବସ୍ଥାନ କରୁଅଛନ୍ତି । ହେ ସଖି, ଦୃଢ଼ ରୂପେ ଧୈର୍ଯ୍ୟ ଧାରଣ କରି ନିମେଷଶୂନ୍ୟ ଦୃଷ୍ଟିରେ ସେହି ରୂପକୁ ପାନ କର ।

ଇ[illegible]ା କହି ପୁଷ୍ପଚୟନ ବ୍ୟାଜରେ ଶ୍ରୀକୃଷ୍ଣଙ୍କୁ ଦେଖାଦେଇ ଅନ୍ୟ ଲତା ଆଡ଼କୁ [illegible] । ରାଧା ଯେଉଁ କୁଞ୍ଜରେ ଥିଲେ, ସେହି କୁଞ୍ଜରେ ତାଙ୍କର ଅଙ୍ଗ

# ମ

## ରାଗ—କାମୋଦୀ ବା ମରୁଆ

ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା କଦମ୍ବ ନିକୁଞ୍ଜସୀମାରେ,
ମରନ୍ଦ ସେକେ ଚମକି ଲୋକେ ଭାଷିଲେ ଇଷି ମାରେ,
ମିଳିନ୍ଦ ଲତାଦମ୍ଭବନିତା ବଦନେ ମିଶି ମାରେ,
ମଣ୍ଡିତ ହେଲା ସେ ବନସ୍ଥଳ, ମହାରଜତ ମହେନ୍ଦ୍ର ନୀଳ-
ମୟୂଖ ଶିରୀମୟ ମଞ୍ଜରୀ ବିସର ସୁଷମାରେ । ପଦ ।
ମିଶିଲା ଚାରି ଲୋଚନ ବାରି- ରୁହ ମଦନୁ ଲଭି ଲାଚାରି
ମିଳିଲା ଶ୍ୟାମ ଗଉର ଦୁଇ ମହ,
ମଧୁପ ଯୁବା ଲଭିଲା ଅବା ନବ ସରସୀରୁହ;
ମାନସ ଅଙ୍ଗଭେଦ ପ୍ରସଙ୍ଗ ଭଙ୍ଗ ରଚିଲା ସ୍ନେହ,
ମଉଳିଗଲା ଶେଷ ସାତ୍ତ୍ୱିକ ମୃଡ଼ନୟନ ସଂଖ୍ୟକଯାକ
ମଜ୍ଜାଇ ଦେଲା ଦୁହିଙ୍କ ମନ ମହାମୋଦପ୍ରବାହ । ୧ ।
ମଦଦ୍ୱିରଦ-ମଥିତହ୍ରଦ, ମୂର୍ଚ୍ଛିତ ମହୋତ୍ପଳ ଆମୋଦ,
ଫୁଲ୍ଲପରାଗ ଶ୍ରୀଅଙ୍ଗରାଗ ବାସ,
ମୃଗଲାଞ୍ଛନ ମରୀଚି ଚୂର୍ଣ୍ଣ ଧାବଲ୍ୟ ପରକାଶ,
ମଧୁମାଦକ ଗୁଣସୂଚକ କୋକିଳ କଳଘୋଷ,
ମଣିମଣ୍ଡିତ କିଙ୍କିଣୀଯୁତ ମଞ୍ଜୁ ମଞ୍ଜୀର ଭୂଷାଶିଞ୍ଜିତ
ରସନା ରଣତ୍କାର ଶ୍ରବଣ କଲା ବିବେକ ମୋଷ । ୨ ।
ମଧୁ ମଧୁର ବଧୂ ଅଧର କିଶୋରବର ରଦନାମ୍ବର,
ବିମ୍ବ ଚୁମ୍ବନ ଚୁଁ-କୃତି ସ୍ୱନମେଳା,
ମୃଦୁ ମନ୍ମନ ଧ୍ୱନି ଜନନ କଲାଟି କ୍ରୋଡ଼ଖେଳା,
ମହେନ୍ଦ୍ର ମଣି, ବଳୟ ଶ୍ରେଣୀ ରଚିଲା ହୋଇ ଲୋଳା,
ମନୋଜ୍ଞ ଚାଟୁପୀୟୂଷମୟ ମିଶ୍ରିତ ହେଉ ହେଉ ସମୟ
ମାର ମହତ୍ତ୍ୱ ଗଲା କି ନାହିଁ ହେଲା ସଂଶୟଦୋଳା । ୩ ।

---

ସୌରଭରେ ଆକୃଷ୍ଟ ହୋଇ ଭ୍ରମରମାନେ ବିବିଧ ବିଳାସପୂର୍ଣ୍ଣ କାମୋଦ୍ଦୀପକ ମଙ୍ଗଳ ସଙ୍ଗୀତ ଆରମ୍ଭ କରିଦେଲେ । ଏହି ସମୟରେ "ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା" ବୋଲି କବି ବର୍ଣ୍ଣନା କରୁଛନ୍ତି ।

ମନ୍ଦାର ବନ ସେ ବନ ରସାଚକ୍ରେ ରଚିଲା ସୁନ ବରଷା,
ରସିଲେ ସର୍ବ ଗନ୍ଧର୍ବମାନେ ଗାନେ;
ମାତି ତାଣ୍ଡବ ରଚିଲେ ଦେବଦାସୀଏ ସାବଧାନେ,
ମର୍ଦ୍ଦଳ ଘୋଷ ହେଲା ତ୍ରିଦଶ ମଣ୍ଡଳେ ସବୁସ୍ଥାନେ,
ମୂକତ ପ୍ରାୟ ହେଲା ତ୍ରିଲୋକ—ମାନସୁ ମ୍ଳାନ କଲେ ପାତକ
ଶ୍ରୀ ଜଗଦ୍ଦେବ ହରିଚନ୍ଦନ ସେ ମହୋତ୍ସବ ଧ୍ୟାନେ । ୪ ।

(ମ) ପ୍ରାପଞ୍ଚିକାନ୍ଧତମସାନ୍ଧୁପିଚିଣ୍ଡପାତାତ୍
ପ୍ରାୟଃ ସମାକୁଳବିବେକଦୃଶାଂ ଜନାନାଂ ।
ଚାମୀକରପ୍ରକରପୀତମୟୂଖଲେଖା,
ନୀଳୋପଳାଂଶୁମୟମସ୍ତ୍ୱବନାୟ ତେଜଃ ।।

(ଗଦ୍ୟ) ଶିଶୁପଭୁକ୍ତକ୍ଷିପ୍ତାଂ ମାଳାମିବ ଶାଣୋଲ୍ଲୀଢ଼ାଂ ମଣିମବ, ତମସାଗ୍ରସ୍ତ ଗଳିତାଂ ଚନ୍ଦ୍ରିକାମିବ, ଗଜେନ୍ଦ୍ର ଦଳିତୋଜ୍‌ଝିତାଂ ସରୋଜୀନୀମିବ, ମୃଗେନ୍ଦ୍ର ଗୃହୀତମୁକ୍ତାଂ ମୃଗୀମିବାନଙ୍ଗସଙ୍ଗରରଙ୍ଗମଙ୍ଗଳ-ମହୋତ୍ସବାତିଶୟାୟସ୍ତାଂ ଭୂୟସ୍ତାମଙ୍କମାରୋପ୍ୟ କୃଷ୍ଣଃ ।

---

(ମ) ମଧୁରେ—ବସନ୍ତରେ, ମନ୍ଦ ମନ୍ଦ ହୋଇ—ଧୀରେ ଧୀରେ, ଗନ୍ଧବହ—ମଳୟ ପବନ, ମରନ୍ଦସେକେ—ମକରନ୍ଦ ବା ପୁଷ୍ପମଧୁ ପଡ଼ିବାରୁ, ଇଷି—କାମୋଦ୍ଦୀପକ ଇଷ୍ ଇଷ୍ ଶବ୍ଦ; ମାରେ—ମାର ଅର୍ଥାତ୍ କାମର ଉଦ୍ଦୀପନାରୁ, ମିଳିନ୍ଦ—ଭ୍ରମର, ଲତାଦମ୍ଭବନିତା— ଲତାମାନେ ବ୍ୟାଜ ବନିତା ସ୍ଥାନୀୟ, ଲତାରୂପିଣୀ ସ୍ତ୍ରୀମାନେ; ବଦନେ—ମୁଖରେ, ମହାରଜତ—ସୁବର୍ଣ୍ଣ, ମହେନ୍ଦ୍ରନୀଳ—ଇନ୍ଦ୍ରନୀଳମଣି, ମୟୂଖଶ୍ରୀମୟ—କିରଣଶୋଭାପୂର୍ଣ୍ଣ, ମଞ୍ଜରୀ—କଢ଼ି, ବିସର—ବିସ୍ତାର, ସଞ୍ଚାର; ସୁଷମା—ପରମ ଶୋଭା, ଲୋଚନବାରିରୁହ—ଚକ୍ଷୁ ରୂପ ପଦ୍ମ, ମଦନୁ—କାମୋଦ୍ଦୀପନା ହେତୁରୁ; ଲାଚାରି—(ଗ୍ରାମ୍ୟ ଶବ୍ଦ) ପରସ୍ପର ମିଶ୍ରଣ ବା ଏକୀଭାବ, ମହ—ତେଜ, ମଧୁପଯୁବା—ତରୁଣ ଭ୍ରମର, ସରସୀରୁହ—ପଦ୍ମ, ମାନସ ଅଙ୍ଗଭେଦ—ମନ ଓ ଦେହର ପ୍ରଭେଦ, ସାତ୍ତ୍ୱିକ—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ ସ୍ୱରଭଙ୍ଗ, କମ୍ପନ, ବିବର୍ଣ୍ଣତା, ଅଶ୍ରୁ ଓ ମୂର୍ଚ୍ଛା ଏହି ଆଠପ୍ରକାର ବିକାର, ମୃଡ଼—ମହାଦେବ, ମୃଡ଼ନୟନ ସଂଖ୍ୟକଯାକ—ତିନିଗୋଟି, ମହାମୋଦ—ବିଶେଷ ଆନନ୍ଦ, ମଦଦ୍ୱିରଦମଥିତ—ମତ୍ତହାତୀଦ୍ୱାରା ଘଣ୍ଟା ହୋଇଥିବା, ମୂର୍ଚ୍ଛିତ—ବର୍ଦ୍ଧିତ, ବିସ୍ତାରିତ; ଫୁଲ୍ଲ—ଫୁଟନ୍ତା, ଶ୍ରୀଅଙ୍ଗରାଗବାସ—ଶ୍ରୀଅଙ୍ଗସୌରଭ, ମୃଗଲାଞ୍ଛନମରୀଚି—ଚନ୍ଦ୍ରଙ୍କର କିରଣ, ଚୂର୍ଣ୍ଣଧାବଲ୍ୟ—ଚୂନପରି ଧବଳତା, କ[illegible]ଷ—କୁହୁଧ୍ୱନି, ମଞ୍ଜୀର—ନୂପୁର, ଶିଞ୍ଜିତ—ରୁଣୁ ରୁଣୁ ଧ୍ୱନି (ଅଳଙ୍କାର [illegible]ରସନା—ଅଣ୍ଟାସୂତା ବା ଚନ୍ଦ୍ରହାର, ରଣତ୍କାର—ରଣରଣ ଧ୍ୱନି,

# ଯ

## ରାଗ—ମୁଖାବରୀ

ଯୋଷାବର ରେ, ଯଥାର୍ଥରେ ଜାଣ ମୁଁ ତୋହର ରେ,
ଯାମଳଭୂଧରନିଭପୟୋଧର ମରଦନିଆ ଚାକର ରେ । ପଦ ।
ଯାବକ ତୋ ପଦକଞ୍ଜର ସମଦଗଜଗତି ମୋ ଶେଖର ରେ,
ଯତୀନ୍ଦ୍ରସମାଧିଖଣ୍ଡନା ତୁ ନିଧି ମୁଁ ରଙ୍କମାନଙ୍କ ବର ରେ । ୧ ।
ଯମକ କି ତୁହି ପୂର୍ଣ୍ଣଚନ୍ଦ୍ରମୁହାଁ ମୋ ମହାଶୁଭଦଶାର ରେ,
ଯତ୍ନେ ସମ୍ପାଦିବା ଚିନ୍ତାମଣି ଅବା ମୋ କରେ ହେଲୁ ସୁସାରରେ । ୨ ।
ଯୁବତୀକଦମ୍ବରାଜ୍ଞା ଅବଲମ୍ବ ହୋଇଲୁ ଯେବେ ନିକର ରେ,
ଯୁଦ୍ଧକୁ ସନ୍ନଦ୍ଧ ହେଉ ଅତି କ୍ରୁଦ୍ଧ ହୋଇ ପଛେ ପଞ୍ଚଶର ରେ । ୩ ।

---

ମୋଷ—ଚୋରି, ଲୋପ; ମଧୁ—ମହୁ, ରଦନାମ୍ବର—ଓଷ୍ଠ, ଚୁଁକୃତି—ଚୁଁ ଚୁଁ ଶବ୍ଦ, ମନ୍ମନଧ୍ୱନି—ମନୋହର ଅସ୍ପଷ୍ଟ ଗଦ୍‌ଗଦ ଶବ୍ଦ ବା ଅବ୍ୟକ୍ତ ମଧୁରଧ୍ୱନି, ମହେନ୍ଦ୍ରମଣି—ଇନ୍ଦ୍ରନୀଳମଣି; ବଳୟ—ବଳା, ଲୋଳା—ଚଞ୍ଚଳ; ମନ୍ଦାରବନ—ନନ୍ଦନ କାନନ; ମହେନ୍ଦ୍ରମଣି—ଇନ୍ଦ୍ରନୀଳମଣି; ବଳୟ—ବଳା, ଲୋଳା—ଚଞ୍ଚଳ; ମନ୍ଦାରବନ—ନନ୍ଦନ କାନନ; ରସାଚକ୍ରେ—ଭୂମଣ୍ଡଳରେ, ସୂନବର୍ଷା—ପୁଷ୍ପବୃଷ୍ଟି; ମାତି—ପ୍ରେମୋନ୍ମତ୍ତ ହୋଇ, ଦେବଦାସୀଏ—ଅପ୍ସରାମାନେ, ମର୍ଦ୍ଦଳଘୋଷ—ମୃଦଙ୍ଗ ଶବ୍ଦ, ତ୍ରିଦଶମଣ୍ଡଳେ—ସ୍ୱର୍ଗରାଜ୍ୟରେ, ପାତକ—ପାପତାପ ।

ଅନୁବାଦ—(ମ) ଶ୍ରୀରାଧାଙ୍କ ସ୍ୱର୍ଣ୍ଣାଭ କିରଣମାଳା ଓ ଶ୍ରୀକୃଷ୍ଣଙ୍କ ଶରୀରର ନୀଳୋତ୍ପଳମୟ ତେଜଃ ପୁଞ୍ଜ, ସଂସାରର ଘୋର ମୋହାନ୍ଧକାର ଦ୍ୱାରା ଯେଉଁମାନଙ୍କର ବିବେକଦୃଷ୍ଟି ସମାବୃତ ହୋଇଅଛି, ସେହି ସଂସାରୀମାନଙ୍କୁ ମୋହରୂପ କୂପ ଗର୍ତ୍ତରେ ପଡ଼ିବା ରୂପ ଦୁର୍ଦ୍ଦଶାରୁ ରକ୍ଷା କରୁ; ଅର୍ଥାତ୍ ରାଧା ଓ କୃଷ୍ଣଙ୍କ ତେଜୋଦ୍ୱୟ ମୋହାନ୍ଧ ସଂସାରୀମାନଙ୍କୁ ମୋହକୂପରୁ ରକ୍ଷା କରୁ ।

ପିଲା ପିନ୍ଧିସାରି ଫୋପାଡ଼ି ଦେଇଥିବା ଫୁଲମାଳ ପରି, ଶାଣରେ ଘଷା ଯାଇଥିବା ମଣି ପରି, ରାହୁଗ୍ରାସରୁ ମୁକ୍ତ ଚନ୍ଦ୍ରିକା ପରି, ମତ୍ତହସ୍ତୀ ଦଳିକରି ଛାଡ଼ିଯାଇଥିବା ପଦ୍ମନାଡ଼ ପରି, ସିଂହ ଧରି ଛାଡ଼ି ଦେଇଥିବା ହରିଣୀ ପରି, କାମକ୍ରୀଡ଼ାରଙ୍ଗରେ ଆୟାସପ୍ରାପ୍ତା ରାଧାଙ୍କୁ ଶ୍ରୀକୃଷ୍ଣ କୋଳରେ ବସାଇ କହୁଅଛନ୍ତି—"ଯୋଷାବର ରେ" ଇତ୍ୟାଦି ।

ଯମୁନାବାହିନୀ ତଟରୁହବନୀ ଅବନୀ ବନାଇବାର ରେ,
ଯଶ ରଖି ନିନ୍ଦାପଟଳୀରୁ ବୃନ୍ଦା କରାଇଲା ତ ନିବାର ରେ । ୪ ।
ଯଶୋଦାକୁମର ଗିରେ ରାଧା ଶିର ନୁଆଁଇଲେ ଲଜ୍ଜାଭର ରେ,
ଯୁଗଳ ବିଗ୍ରହ କର ଅନୁଗ୍ରହ ଅଷ୍ଟଦୁର୍ଗ-ପୁରନ୍ଦର ରେ । ୫ ।

(ଯ) ଅଦ୍ୟପ୍ରଭୃତ୍ୟନଳସେନ୍ଦୁ ସହୋଦରାସ୍ୟେ,
ଦାସ୍ୟେ ତବାସ୍ମ୍ୟହମହର୍ନିଶମେବ ଯୁକ୍ତଃ ।
ଆଗୋ ଲତା ନ ଗଣୟତ୍ୟକୃଶଂ ଯଥାଳେ-
ର୍ବାଳେ ମମ ତ୍ୱମପି ତତ୍ ସତତଂ କ୍ଷମସ୍ୱ ।।

(ଗଦ୍ୟ) ଇତ୍ଥଂ ପ୍ରତ୍ୟଙ୍ଗଚୁମ୍ବୋଚ୍ଚୟଚର୍ଚ୍ଚୋଚ୍ଚରିତଚୁମୁତ୍କାରଚମତ୍କରଣୈଃ ସଚଟୁଳଚାଟୂକ୍ତିପଟିମା-ଟୋପପୁଟିତୈର୍ମୃଦୁଭିର୍ବଚନୈଶ୍ଚୈଳାଞ୍ଚଳବ୍ୟଜନବୀଜ-ନୈଶ୍ୱାସନାବସାନାୟାଂ କ୍ଷଣଦାୟାଂ ମଞ୍ଜୁଳକେଳି-ମଞ୍ଜରୀନିଳୟଦ୍ୱାରି ନିଲୀୟ କାଚିତ୍ ବ୍ରଜଦେବୀ ।

---

(ଯ) ଯୋଷାବର—ନାରୀରତ୍ନ, ଯଥାର୍ଥ—ପ୍ରକୃତ, ଯାମଳଭୂଧରନିଭପୟୋଧର—ଯାଆଁଳା ବା ଯୋଡ଼ି ପର୍ବତ ପରି ସ୍ତନ, ମରଦନିଆ—ମର୍ଦ୍ଦନକାରୀ, ଯାବକ—ଅଳତା, ପଦକଞ୍ଜର—ପାଦପଦ୍ମର, ସମଦଗଜଗତି—ମତ୍ତଗଜଗମନା, ଶେଖର—ଶିରୋଭୂଷଣ, ଯତୀନ୍ଦ୍ରସମାଧିଖଣ୍ଡନା—ହେ ମହାଯୋଗୀଙ୍କର ଯୋଗଭଙ୍ଗକାରିଣୀ, ନିଧି—ସଂପଦ, ରଙ୍କମାନଙ୍କ ବର—ଅତି ଦରିଦ୍ର, ଯମକ—ପୁନରାବୃତ୍ତି, ସୁସାରରେ—ଅତି ଆଦରରେ, ଯୁବତୀକଦମ୍ବରାଜା—ଯୁବତୀସମୂହଶ୍ରେଷ୍ଠ, ଅବଳମ୍ବ—ଆଶ୍ରୟ; ନିକର—ନିଶ୍ଚୟ, ସନ୍ନଦ୍ଧ ହେଉ—ସାଜୁ ପିନ୍ଧୁ; ପଞ୍ଚଶର—କନ୍ଦର୍ପ; ବାହିନୀ—ନଦୀ, ତଟରୁହବନୀ—ତଟରେ ଥିବା ବଣ; ଅବନୀ—ଲୀଳାସ୍ଥଳୀ; ପଟଳୀ—ସମୂହ; ନିବାର—ନିବାରଣ, ଗିରେ—କଥାରେ, ପୁରନ୍ଦର—ରାଜା ।

ଅନୁବାଦ—(ଯ) ହେ ପୂର୍ଣ୍ଣଚନ୍ଦ୍ରମୁଖି, ଆଜିଠାରୁ ଦିନରାତି ସର୍ବଦା ତୋ ଚାକର ବୋଲି ମୋତେ ଜାଣିବୁ । ଲତା ଯେପରି ଭ୍ରମରର ଚୁମ୍ବନାଦିଜନିତ ମହାଅପରାଧକୁ ଧରେ ନାହିଁ, ହେ ସୁନ୍ଦରି, ତୁ ସେପରି ମୋର ସମସ୍ତ ଅପରାଧକୁ ସର୍ବଦା କ୍ଷମା କରିବୁ ।

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ପ୍ରତ୍ୟଙ୍ଗକୁ ଚୁମ୍ବନ କଲାବେଳେ ଉଠିବା ଚୁଁକାର ଶବ୍ଦରେ ଅନିର୍ବଚନୀୟ ଆନନ୍ଦ ଜାତ ହେଲା, ଏହିପରି ମନୋହର ଚାଟୁକଥାପୂର୍ଣ୍ଣ ସୁମଧୁର ବାକ୍ୟ କହୁଁ କହୁଁ ଏବଂ କାନି ପଣନ୍ତରେ ବିଞ୍ଚି ହେଉ ହେଉ ରାତି ପାହିଗଲା । ଏହି ସମୟରେ ଜଣେ ବ୍ରଜାଙ୍ଗନା ସେହି ମନୋହର କେଳିମଞ୍ଜରୀକୁଞ୍ଜର ଦ୍ୱାରଦେଶରେ ଆତ୍ମଗୋପନ ହୋଇ ରହି ଶ୍ରୀରାଧାଙ୍କୁ ସମ୍ବୋଧନ କରି କହିଲେ—''ରସାଳସା ରେ''

# ର

## ରାଗ—କେଦାର

ରସାଳସା ରେ, ରସି ପୁଣି ଏ କି ଲୋକହସା ରେ । ପଦ ।
ରକ୍ତିମା ଚୁମ୍ବିଲା ଇନ୍ଦ୍ରଆଶାରେ, ରାଜୀବେ ପ୍ରଫୁଲ୍ଲ ହେଲେ କାସାରେ । ୧ ।
ରତିନାଥ ସମର ପ୍ରଶଂସାରେ, ରମଣୀ କେ ନ ରସନ୍ତି ସଂସାରେ । ୨ ।
ରସନ୍ତି ରସିକେ ସିନା ନିଶାରେ, ରଜନୀ ଶେଷରେ ଏ କି ଦଶାରେ । ୩ ।
ରମଣୀୟ ହେମକୁ ସୁଦୃଶାରେ, ରଖିଲୁ କେଡ଼େ ନିବିଡ଼େ ମସାରେ । ୪ ।
ରହୁ ନା ଅଯଶ ଆଉ ରସାରେ, ରସାରୁହରୁ ଲତାକୁ ଖସା ରେ । ୫ ।
ରାଜା ଅଷ୍ଟଦୁର୍ଗର ଏ ଭାଷାରେ, ରଚେ଼ ଏବେ ବିଜେ ହେଉ ସୁସାରେ । ୬ ।

(ର) ଅନାଦୃତ୍ୟାଳୀନାଂ ପ୍ରିୟବଚନମାଳାମକଠିନାଂ,
ହଠାତ୍ ପ୍ରେୟଃଶ୍ରଦ୍ଧାର୍ଗଳନିବିଡ଼ରୁଦ୍ଧାସି ସଖି ଚେତ୍ ।
ଇଦାନୀମପ୍ୟାତ୍ମାବନମବନିଭୂଷାଙ୍ଗ୍ରି ସୁଷମେ,
ଯଥା ଭୂୟାଦ୍ ଯତ୍ନାନ୍ କୁରୁ କୃଶସପତ୍ନାସ୍ୟହସିତଂ ।।

**(ଗଦ୍ୟ)** ତତସ୍ତଦାକର୍ଣ୍ୟ କର୍ଣ୍ଣାଭ୍ୟର୍ଣ୍ଣଚୁମ୍ବି ତୂର୍ଣ୍ଣକ୍ରୀଡ଼ଲ୍ଲୋଲଲୋଚନାଂ ଦାହୋତ୍ତୀର୍ଣ୍ଣସ୍ୱର୍ଣ୍ଣସାବର୍ଣ୍ଣ୍ୟପୂର୍ଣ୍ଣବର୍ଣ୍ଣା ଶୀର୍ଣ୍ଣନିଧୁବନୋତ୍ସାହାତିରେକା ସା ପ୍ରକୀର୍ଣ୍ଣମାଲ୍ୟମୁତ୍‌ଥାୟ ସତ୍ରାସତ୍ରପଂ କିଶୋରେଶ୍ୱରଂ ପ୍ରତି ।

---

(ର) ହେ ରସାଳସା—ରସାଧିକ୍ୟ ଯୋଗୁଁ ଆଳସ୍ୟପ୍ରାପ୍ତା; ଇନ୍ଦ୍ରଆଶା—ପୂର୍ବ ଦିଗ, ରାଜୀବେ—ପଦ୍ମମାନେ; କାସାରେ—ପୋଖରୀରେ; ରତିନାଥସମର—କନ୍ଦର୍ପ ସମର ବା କାମକ୍ରୀଡ଼ା; ନିଶାରେ—ରାତିରେ, ହେମକୁ—ସୁନାଭଳି ଦେହକୁ; ସୁଦୃଶା—ସୁନେତ୍ରା, ମସାରେ—ନୀଳମଣି ମଧ୍ୟରେ; ରସାରେ—ପୃଥିବୀରେ, ରସାରୁହରୁ—ବୃକ୍ଷରୁ, ସୁସାରେ—ବିନା ଆପତ୍ତିରେ ।

ଅନୁବାଦ—(ର) ହେ ସଖି, ସଖୀମାନଙ୍କର ହିତ କଥାକୁ ଆଦର ନ କରି ଯେବେ ଶୀଘ୍ର ପ୍ରିୟତମଙ୍କର ସ୍ନେହପାଶରେ ଆବଦ୍ଧ ହୋଇପଡ଼ିଅଛୁ, ତେବେ ହେ ସୁନ୍ଦରି, ଯେପରି ଶତ୍ରୁମାନେ ନ ହସନ୍ତି, ସେପରି ଆତ୍ମରକ୍ଷା କରିବାକୁ ଯତ୍ନ କର ।

ଅନନ୍ତର ଏହି କଥା ଶୁଣି ସେହି ଆକର୍ଣ୍ଣବିସ୍ତୃତଚଞ୍ଚଳନେତ୍ରା, ତପ୍ତକାଞ୍ଚନବର୍ଣ୍ଣା ରତିକ୍ରୀଡ଼ାକ୍ଳାନ୍ତା ରାଧା ଫୁଲମାନଙ୍କୁ ଏଣେ ତେଣେ ଫିଙ୍ଗିଦେଇ ଲଜ୍ଜା ଓ ଭୟ ସହିତ ଉଠି ଶ୍ରୀକୃଷ୍ଣଙ୍କୁ କହିଲେ—''ଲୀଳାନିଧି ହେ'' ଇତ୍ୟାଦି ।



## ରାଗ—ଖଣ୍ଡକାମୋଦୀ—ଅବକାଶ

ଲୀଳାନିଧି ହେ ଲାଜେ ମୁଁ ଗଲିଟି ସଢ଼ି ।
ଲୁଚାଇଛ କାହ୍ନ ଶ୍ୟାମ ହେ ଦିଅ ମୋ ଲାଗି-ଶାଢ଼ୀ । ପଦ ।
ଲଭି ତୁମ୍ଭଙ୍କୁ ପ୍ରାଣବନ୍ଧୁ କରି, ଲୋକହସାରେ ଯେବେ ଯିବି ସରି,
ଲସିବି ଯେବେ ପାଇ ନିନ୍ଦା ଦାଉ, ଲାଗିଲି ଆପଣଙ୍କୁ କେହି ଆଉ* । ୧ ।
ଲକ୍ଷ ଲକ୍ଷ ରାଣ ଅଛିଟି ମୋର, ଲଲାମ ଆଦି ଭୂଷା ସଜ କର,
ଲିଭିଥିବ ଭୂରୁ ମଧ ତିଳକ, ଲେଖିଦିଅ ବେଗେ ନ ଦେଖୁ ଲୋକ । ୨ ।
ଲୋଭୀ, ଶ୍ରୀଭୁଜବନ୍ଧ ଶିଥିଳାଅ, ଲତା ଗହଳେ ଗହନେ ପଳାଅ,
ଲାଗିଛି ଲାକ୍ଷା ମୁକୁଟ ଶିଖଣ୍ଡେ, ଲାଜ କଥା ଲୋକେ ଦେଖିଲେ ଦାଣ୍ଡେ । ୩ ।
ଲଗ୍ାଇଛ ହଟ ଯେଉଁ ରସରେ, ଲୁଟିବ ସିନା କାଲି ପ୍ରଦୋଷରେ,
ଲଘି ଆଶ୍ରିତେ ଥିବା କୃପାସିନ୍ଧୁ, ଲାଞ୍ଛୁଆଟି କେଡ଼େ ହେଲ ହେ ବନ୍ଧୁ । ୪ ।
ଲଳିତା ନୋହେଟି ଯେ ଡାକୁଅଛି, ଲକ୍ଷେ ଦୁଷ୍ଟେ ରଖିଅଛି ମୁଁ ବାଛି,
ଲଘୁ କରିଦେବ ଦେଖିବା କ୍ଷଣେ, ଲେଖାଧିପ ଅଷ୍ଟଦୁର୍ଗର ଭଣେ । ୫ ।

(ଲ) ଲମ୍ପମନ୍ଥରମାରବ୍ଧଂ ପ୍ରାଚୀ ପ୍ରାଚୀକଟତ୍ କଟୌ,
ବାଲାହୃଦୟପଞ୍ଝେଷୋ ମୁଞ୍ଚ ମତ୍କଞ୍ଚୁକାଞ୍ଚଳଂ ॥

(ଗଦ୍ୟ) ଅମନ୍ଦାନନ୍ଦପୀୟୂଷନିସ୍ୟନ୍ଦସନ୍ଦୋହତୁନ୍ଦିଳସ୍ୟନ୍ଦନପଦ୍‌ଦମ୍ପତିନିନଦୈର୍ନିଶାଚ-ରମଦଶାସ୍ମାରକବନେଚରଚରଣାୟୁଧଧ୍ୱନିଭିର୍ଯମୁନାବାଃପୂରବିକଚାରବିନ୍ଦବୃନ୍ଦତୁନ୍ଦମରନ୍ଦପନପ୍ରମୁଦିତାଳିପାଳିପ୍ରଣୀତଝଙ୍କାରୈର୍ନନ୍ଦମନ୍ଦିରଗୋପୁରାବଲମ୍ବନ୍ଦିନିକୁରମ୍ବସ୍ତବପାଠପାଟବୈର୍ବାହିନ୍ୟବଗାହାଗତଗୋପୀଜନାଭରଣରଣତ କରଣୈଃ ପରିରଭ୍ୟମାଣପ୍ରାଭାତିକଡ଼ିଣ୍ଡିମରବାଡ଼ମ୍ବରୈଃ ସଂବୃତେଽପ୍ୟମ୍ବରତଲେ ଶନୈର୍ନିକୁଞ୍ଜାନ୍ନିଷ୍କ୍ରାନ୍ତାଂ କାନ୍ତଂ ପ୍ରତି ସଖ୍ୟଃ ।

---

* ପାଠାନ୍ତର—'କେହି ଆଉ' ସ୍ଥାନରେ 'କାହିଁ ଆଉ' ।

(ଲ) ଲୀଳାନିଧି—ଲୀଳାପ୍ରିୟ; ସଢ଼ିଗଲି—ଅବସନ୍ନ ହୋଇଗଲି; ଲାଗିଶାଢ଼ୀ—ପିନ୍ଧାଶାଢ଼ୀ; ଲସିବି—ଅବନତ ହେବି; ନିନ୍ଦାଦାଉ—ଅପବାଦର ଯନ୍ତ୍ରଣା, କେହି—କିପରି; ଲଲାମ—ଲଲାଟଭୂଷଣ; ଭୂଷା—ଅଳଙ୍କାର. ସଜ କର—ସଜାଡ଼ି ଦିଅ; ଶ୍ରୀଭୁଜବନ୍ଧ—ବାହୁପାଶ; ଗହନ—ବନ; ମୁକୁଟଶିଖଣ୍ଡେ ମୟୂରଚୂଳମୁକୁଟରେ;



## ରାଗ—ସାବେରୀ

ବିଚିତ୍ର ବେଶ ମଞ୍ଜୁଳା ରେ ବାଳା, ବିବିଧ ଚାତୁରୀଶୀଳା,
ବିଭାବରୀ ଅର୍ଦ୍ଧେ ଏକାକୀ ଏକାକୀ ହୋଇ ରଚୁ ଫୁଲତୋଳା ରେ
ବିଳାସକୁଶଳା ରେ, ବଲ୍ଲୀନିଳୟବିହାରଲୋଳା । ୧ ।
ବାଳକାଳୁ ବାସ ପରି ରେ ବାଳା, ବଞ୍ଚୁଥିଲୁ ଅନୁସରି,
ବିଲକ୍ଷଣ ବନବିହାରଉତ୍ସବ ବେଳେ ଯା ଦେଲୁ ପାସୋରି ରେ,
ବିଚାର ତ ଗୋରୀ ରେ, ବିଶ୍ୱେ କାହିଁକି ପ୍ରୀତି ଆଚରି । ୨ ।
ବ୍ୟସ୍ତ ହୋଇ ଚିତ୍ରମାଛି ରେ ବାଳା, ବ୍ରଣଗଣ ତ ଦିଶୁଛି,
ବିମ୍ବାଧରୁ ନବପଲ୍ଲବମାନଙ୍କୁ ବାଣ୍ଟିଲୁ କି କିଛି କିଛି ରେ
ବିଶ୍ଳଥ ହୋଇଛି ରେ, ବାସ ପିନ୍ଧିଥାଉ ପରା କାଛି । ୩ ।

---

ଲାକ୍ଷା—ଅଳତା; ଲୁଟିବ—ଲୁଟିକରିବ; ପ୍ରଦୋଷରେ—ସନ୍ଧ୍ୟାବେଳେ; ଲଘି—ହଇରାଣ କରି; ଲଘୁ କରିଦେବ—ଅପମାନିତ କରିଦେବ; ଲେଖାଧିପ—ଇନ୍ଦ୍ର, ରାଜା ।

ଅନୁବାଦ—(ଲ) ପୂର୍ବଦିଗରୂପ ନାୟିକା କଟି ଦେଶରେ ଦୀର୍ଘ ରକ୍ତବର୍ଣ୍ଣ ବସ୍ତ୍ର ଦେଖାଇ ହେଲାଣି, ଅର୍ଥାତ୍ ପୂର୍ବଦିଗର ଆକାଶରେ ଅରୁଣ ଉଦୟ ଦେଖାଗଲାଣି; ହେ ଯୁବତୀମାନସମୋହନ, ମୋ କଞ୍ଚୁକର ପଣତ ଛାଡ଼ିଦିଅ !

ରାତ୍ରିବିରହ ପରେ ମିଳନ ଆଶାରେ ଚକ୍ରବାକଦମ୍ପତି ଅତି ଆନନ୍ଦିତ ହୋଇ ରାବ କଲେଣି, ବନ୍ୟ କୁକ୍କୁଟମାନେ ପ୍ରଭାତସୂଚକ ଶବ୍ଦ ଆରମ୍ଭ କରିଦେଲେଣି, ଯମୁନାଜଳ ପ୍ରବାହରେ ପ୍ରସ୍ଫୁଟିତ ପଦ୍ମ ମଧ୍ୟରେ ଭ୍ରମରବୃନ୍ଦ ମଧୁପାନ କରୁ କରୁ ଝଙ୍କାର କଲେଣି । ନନ୍ଦଙ୍କ ନବର ଦ୍ୱାରଦେଶରେ ଥିବା ଭାଟମାନେ ସ୍ତବପାଠ ଆରମ୍ଭ କଲେଣି । ଏହିସବୁ ଶବ୍ଦ ସହିତ ଯମୁନାକୁ ସକାଳୁ ଗାଧୋଇ ଆସୁଥିବା ଗୋପୀମାନଙ୍କର ଅଳଙ୍କାର ଧ୍ୱନି ସଙ୍ଗେ ପ୍ରଭାତ ସୂଚକ ଡିଣ୍ଡିମ ଶବ୍ଦ ମଧ ଶୁଣାଗଲାଣି । ଏହିସବୁ ଶବ୍ଦଦ୍ୱାରା ଆକାଶ ପୂର୍ଣ୍ଣ ହେବାରୁ ରାଧା ଯେତେବେଳେ ଧୀରେ ଧୀରେ କୁଞ୍ଜ ମଧ୍ୟରୁ ବାହାରିଲେ, ସେତେବେଳେ ସଖୀମାନେ ତାଙ୍କୁ ପରିହାସରେ କହୁଅଛନ୍ତି—"ବିଚିତ୍ର ବେଶ ମଞ୍ଜୁଳା ରେ" ଇତ୍ୟାଦି ।

ବଲ୍ଲୀକି ଅନାଇ ଦୂରୁ ରେ ବାଳା ବାସରେ ତ ଭୟ କରୁ
ବ୍ରଜେ ଆଜ ଶୁଣି ଆସିଲୁ ତୁ ପୁଣି ପ୍ରତିରାତି ଆସି ଘରୁ ରେ,
ବିଜନେ ସଞ୍ଚରୁ ରେ, ବଡ଼ ବିଷମ ଏ ଯା ନ ଡରୁ । ୪ ।
ବିନୟନୟବସତି ରେ ବାଳା; ବିମୋହନ କଳାବତି,
ବିରୂପାକ୍ଷଦେବ-ବିପକ୍ଷକୁ ଜିଣି ଯଶେ ମଣ୍ଡିଲୁ କି କ୍ଷିତି ରେ,
ବଲ୍ଲବଯୁବତି ରେ, ବନ୍ଦେ ଅଷ୍ଟଦୁର୍ଗଧରାପତି । ୫ ।

(ବ) ଯା ତ୍ୱଂ ଶିରୀଷାଙ୍ଗଲତେ ସହେଥା ନାଳୀଜନାଲିଙ୍ଗନମପ୍ୟଗାଢ଼ଂ,
ଆନୀଳରତ୍ନାର୍ଗଳଯୁଗରୁଦ୍ଧା ସୈବତ୍ୱମାସୀଃ କଥମଦ୍ୟ କଷ୍ଟଂ ।।

(ଗଦ୍ୟ) ସାନ୍ତଃପ୍ରଣୟହାସପରିହାସୈର୍ବଚୋଭିରିତ୍ୟେବମାଳୀନାମାଲୀନାୟାମଙ୍ଗେଷୁ ଲଜ୍ଜାୟା ଲୀଳାବିମର୍ଦ୍ଦଦ୍ୟୂନାଙ୍ଗ୍ୟାମଙ୍ଗୀକୃତ୍ୟାଙ୍ଗରାଗାଦିସଂସ୍କାରଂ ସାଳସଲସତ୍ ସମୀରେଣ ପଥା କଦମ୍ବକଦମ୍ବସମ୍ବାଧେନ ତାଭିଃ ସହଚରୀଭିରବଗାହାୟ ଯମୁନାବାଃପ୍ରବିଷ୍ଟାୟାଂ ରାଧାୟାମକସ୍ମାଦାଗତଃ ସାନ୍ଦୀପନିମୁନିନନ୍ଦନଃ ସାନନ୍ଦଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତଂ ।

---

(ବ) ମଞ୍ଜୁଳା—ସୁନ୍ଦରୀ; ଚାତୁରୀଶୀଳା—ଚାତୁର୍ଯ୍ୟନିପୁଣା; ବିଭାବରୀ ଅର୍ଦ୍ଧେ—ଅଧ ରାତିରେ; ବଲ୍ଲୀନିଳୟ—ଲତାକୁଞ୍ଜଗୃହ, ବିହାରଲୋଳା—କ୍ରୀଡ଼ାପାଇଁ ଉତ୍ସୁକା; ବାସ—ଲୁଗା, ବିଲକ୍ଷଣ—ବିଶିଷ୍ଟ, ଅସାଧାରଣ; ବ୍ୟସ୍ତ—ଇତସ୍ତତଃ ଲିପ୍ତ, ଚିତ୍ରମାଛି—କସ୍ତୁରୀ ପ୍ରଭୃତିଦ୍ୱାରା ଗଣ୍ଡସ୍ଥଳରେ ଅଙ୍କିତ ହୋଇଥିବା ମାଛିର ଚିତ୍ର, ବ୍ରଣଗଣ—ଖଣ୍ଡିଆ ଚିହ୍ନ, ନବ ପଲ୍ଲବ—ନୂଆ ପତ୍ର (ରକ୍ତିମା ଅର୍ଥରେ), ବିଶ୍ଳଥ—ଢିଲା, ହୁଗୁଳା, କାଛି—ଭିଡ଼ି କରି; ବଲ୍ଲୀକି—ଲତାକୁ, ବାସରେ—ଦିନ ବେଳେ, ବିଜନେ—ନିର୍ଜନ ସ୍ଥାନରେ, ସଞ୍ଚରୁ—ବୁଲୁଛୁ; ବିନୟନୟବସତି—ବିନୟ ଓ ନୀତିରେ ନିପୁଣା, କଳାବତୀ—ସୂକ୍ଷ୍ମଶିଳ୍ପନିପୁଣା, ବିରୂପାକ୍ଷଦେବବିପକ୍ଷ—ଶିବଙ୍କ ଶତ୍ରୁ, କାମ; ବଲ୍ଲବଯୁବତି—ଗୋପାଳୁଣୀ ।

ଅନୁବାଦ—(ବ) ହେ ଶିରୀଷପୁଷ୍ପାଙ୍ଗି, ତୁ ତ ସଖୀଜନମାନଙ୍କର କୋମଳ ଆଲିଙ୍ଗନ ସହିପାରୁ ନାହିଁ, ସେହି କୋମଳାଙ୍ଗୀ ତୁ ଆଜି କିପରି ନୀଳରତ୍ନସ୍ୱରୂପ ବାହୁ ଅର୍ଗଳରେ (କିଳିଣିରେ) ଅବରୁଦ୍ଧା (ବନ୍ଧା) ହେଲୁ ? ଓଃ, ଏ ବଡ଼ କଷ୍ଟର କଥା !

ଆଳୀମାନଙ୍କର ଏହି ପରିହାସ କଥାରେ ରାଧା ଲଜ୍ଜାରେ ସଂକୁଚିତ ହୋଇଗଲେ । ତାଙ୍କ ଶରୀର ରତିରଙ୍ଗରେ ବଡ଼ କ୍ଳାନ୍ତ ହୋଇପଡ଼ିଥିଲା, ଧୀର ସମୀରଣ ପ୍ରବାହରେ ଆନ୍ଦୋଳିତ କଦମ୍ବବୃକ୍ଷସମାକୁଳ ସଂକୀର୍ଣ୍ଣ ପଥରେ ତନୁ ମାର୍ଜନ ପାଇଁ ସୁଗନ୍ଧି ଦ୍ରବ୍ୟମାନ ଧାରଣ କରିଥିବା ସେହି ସହଚରୀମାନଙ୍କର ସଙ୍ଗରେ ସେ ଯମୁନାଜଳରେ ପ୍ରବେଶ କଲେ ।

ଏହି ସମୟରେ ସାନ୍ଦୀପନି ମୁନିଙ୍କ ପୁତ୍ର ମଧୁମଙ୍ଗଳ ହଠାତ୍ ଉପସ୍ଥିତ ହୋଇ ହସି ହସି ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—''ଶ୍ୟାମ ଶିଖଣ୍ଡଚୂଳ'' ଇତ୍ୟାଦି ।

# ଶ

## ରାଗ—ନଳିନୀଗୌଡ଼ା

ଶ୍ୟାମ ଶିଖଣ୍ଡଚୂଳ, ଶ୍ରମ କି ଆଜଯାକେ ହେଲା ସଫଳ । ପଦ ।
ଶର୍ବରୀ ନିଦ୍ରା ବିନା ଗଲା କି ସରି, ଶମ୍ବରପରପୁର କଲ କି ଲୁରି । ୧ ।
ଶ୍ରୀଅଙ୍ଗ ବେଶ କିପାଁ ଏପରି ଆଜ, ଶରଦଚନ୍ଦ୍ର ଚୁମ୍ବୁ ନାହିଁ କି ଲାଜ । ୨ ।
ଶିଶୁ ହେଲେହେଁ ତୁମ୍ଭେ କଲଭ ସରି, ଶଶକିଶୋରୀଟିକି ଦେଲ ଯେ ସାରି । ୩ ।
ଶିରୀଷମାଳା ଦଳିଦେଇ କୁଠାରେ, ଶଙ୍କା ନ କଲ ସଖାମାନଙ୍କଠାରେ । ୪ ।
ଶରମପ୍ରଦ ଆଜସରିକି ହେଲା, ଶମନସ୍ୱସା-ତଟ-ଅଟବୀବୁଲା । ୫ ।
ଶିର ସୁନ୍ଦର ଦିଶେ ଯାବକ ବୋଳେ, ଶରଣ ବୋଲି କି ପଡ଼ିଲ ପା' ତଳେ । ୬ ।
ଶପଥ ଶତ ଅଛି କହଟି ସତେ, ଶ୍ରୀ ବାଲୁକେଶ ନୃପ ରଚିଲେ ଗୀତେ । ୭ ।

(ଶ) ନବଶୈଶବସୌକୁମାର୍ଯ୍ୟଧୁର୍ଯ୍ୟାଙ୍ଗୁଳିଲୀଳୋଦ୍ଧୃତଦୁର୍ଦ୍ଧରାଚଳସ୍ୟ,
ତବ ତସ୍ୟ ବାଳାଢ୍ୟ ବାଳିକାୟାଃସ୍ତନତାଳଦ୍ୱୟଦାରଣଂ ନ ଚିତ୍ରଂ ॥

(ଗଦ୍ୟ) ଚିରେଣ ଲବ୍ଧାକ୍ଷୁବ୍ଧମନୋରଥ ଫଳତୟା ଗର୍ବିତୋଽସି ଖର୍ବିତପର୍ବଶର୍ବରୀରମଣାସ୍ୟାଦ୍ୟବୋଦ୍ଧବ୍ୟଂ ନନ୍ଦଯଶୋଦୟୋଃ ପୁରତସ୍ତବାଚରିତମିତ୍ୟୁକ୍ତବତି ମଧୁମଙ୍ଗଳେ ସପ୍ରଣୟମୀଷତ୍ରାସସ୍ମିତଂ ତଂ ପ୍ରତି କୃଷ୍ଣଃ, ଧୂର୍ତ୍ତାର୍ତ୍ତସ୍ୟ ବାର୍ତ୍ତତା ବାର୍ତ୍ତାମପି କିଂ ନାଭିପ୍ରୈଷି ଭିନ୍ନମବଲମ୍ବସେ ଦାରୁଣାଂ ସରଣୀମ୍ ।

---

(ଶ) ଶିଖଣ୍ଡଚୂଳ—ମୟୂରପୁଚ୍ଛମୁକୁଟଧାରୀ, ଶର୍ବରୀ—ରାତି, ଶମ୍ବରପରପୁର—କାମଦେବଙ୍କ ରାଜଧାନୀ, ଲୁରି—ଲୁଟି, ଶରଦଚନ୍ଦ୍ର—ଶ୍ରୀକୃଷ୍ଣଙ୍କ ଅର୍ଥରେ, କଳଭ—ଶିଶୁହାତୀ, ଶଶକିଶୋରୀ—କୋମଳପ୍ରାଣ ଠେକୁଆ ପରି କୋମଳାଙ୍ଗୀ ରାଧା, କୁଠାର—କୁରାଢ଼ି, ଶରମପ୍ରଦ—ଶର୍ମଦାୟୀ, ସୁଖପ୍ରଦ; ଶମନସ୍ୱସା—ଯମ ଭଉଣୀ, ଯମୁନା; ଅଟବୀବୁଲା—ବଣରେ ବୁଲିବା, ଶିର—ମସ୍ତକ, ଯାବକ—ଅଳତା, ବୋଳ—ଲେପ; ପା' ତଳେ—ଗୋଡ଼ତଳରେ, ଶପଥ ଶତ—ଶହେ ଥର ରାଣ ।

ଅନୁବାଦ—(ଶ) ହେ ବଳଶାଳୀ, ଯେଉଁ ଲୋକ ଶୈଶବ କାଳରେ ସୁକୋମଳ ଅଙ୍ଗୁଳି ସାହାଯ୍ୟରେ ଦୁର୍ଦ୍ଧର ଗୋବର୍ଦ୍ଧନ ପର୍ବତକୁ ଟେକିଥିଲେ, ତାଙ୍କ ପକ୍ଷରେ ବାଳିକାର ତାଳଫଳ ସଦୃଶ ସ୍ତନଦ୍ୱୟର ବିଦାରଣ ବିଚିତ୍ର ନୁହେଁ ।

ତୁମ୍ଭର ମୁଖ ପୂର୍ଣ୍ଣିମାଚନ୍ଦ୍ରର ଗର୍ବକୁ ଖର୍ବ କରେ, ହେ କୃଷ୍ଣ, ବହୁଦିନର ଅଭିଳାଷ ପୂର୍ଣ୍ଣ ହୋଇଯିବାରୁ ତୁମ୍ଭେ ଗର୍ବିତ ହୋଇଅଛ । ହେଉ, ଆଜି ତୁମ୍ଭ ବାପାମା'ଙ୍କ ଆଗରେ ଏ କଥା ବୁଝାଯିବ । ମଧୁମଙ୍ଗଳ ଏହିପରି କହନ୍ତେ ଶ୍ରୀକୃଷ୍ଣ କିଞ୍ଚିତ୍ ଭୟ ଓ ହାସ୍ୟ ସହିତ

# ସ

## ରାଗ—ମୁଖାବରୀ

ସପତଟି ମୋର ରେ, ସହ ଏହି ଥର ରେ,
ସାର ହାରମସାରମଣିବର ପରି ଧରି ବକ୍ଷଃସ୍ଥଳେ ନିରନ୍ତର
ନ ପିଙ୍ଗି ପୁଣି ହଟି ସୁନ୍ଦର ନୁହଇଟି ବିଚାରି ଭରସା ବଢ଼ାଅ ଅପରିମିତ । ପଦ ।
ଶୁଣିଲେ ଆଉ କେ ବ୍ରଜେ, ସରିଯିବି ସିନା ଲାଜେ,
ସାହା ତୁ ନୋହିଲେ କିଛି, ସଂସାରେ ନିକି ମୁଁ ଅଛି । ୧ ।
ସାଧୁଜନ କୁକ୍ଷିକୂପେ ଭଲ ମନ୍ଦ ସିନା ଛପେ,
ସଂହର କ୍ରୋଧ ଉଦୟ, ସହଜେ ତୁ ସହୃଦୟ । ୨ ।
ସବୁ ଅନ୍ୟାୟ ଚରିତ, ଶିକ୍ଷାକୁ ଗୁରୁ ତୁହି ତ,
ସମୟେ କାଟୁ ତୋଟିକି, ସଖା ଲକ୍ଷଣ ଏଟି କି । ୩ ।
ସମାଂସମୀନା ଅୟୁତେ ସମର୍ପି ଦେବିଟି ତୋତେ
ସମ୍ଭାଳ ମୋର ଆବୁର, ସର୍ବସ୍ୱ ପରା ତୁ ମୋର । ୪ ।
ସାକ୍ଷାତ ଦେଖିଲା ପରି, ସାକ୍ଷୀ ହେବାକୁ ବାହାରି
ସାଧିବାର ଅବିଚାର, ସପତ୍ନ ନୁହେଁ ମୁଁ ତୋର । ୫ ।
ସାନ୍ଦୀପନିସୁତ ଯତି, ସେ କି ଜାଣେ ବୋଲି ପ୍ରୀତି,
ସରସେ ପିଟିବେ ଢକ୍‌କା, ସମ୍ପାଦିବୁ ଏତେ ଏକା । ୬ ।
ଶୁଣି କିଶୋର ବଚନ, ସଖା କଲେ ଆଲିଙ୍ଗନ,
ସୁତ୍ରାମା ଅଷ୍ଟଦୁର୍ଗର, ସନ୍ତୋଷେ ଯୋଡ଼ିଲେ କର । ୭ ।

(ସ) ଅନ୍ୟୋଽନ୍ୟାଶ୍ଳେଷଶର୍ମବ୍ୟତିକରବିମଳସ୍ୱାନ୍ତସନ୍ତୋଷବନ୍ତା—
ବନ୍ୟୋନ୍ୟାକ୍ଷୀଣଲକ୍ଷ୍ମୀକ୍ଷଣଗଳିତସମସ୍ତାନ୍ତରାୟୌ ସଖାୟୌ ।
ସଶ୍ରଦ୍ଧାବର୍ଦ୍ଧପଦ୍ଧତ୍ୟୁପନତସଖିଭିଃ ସାର୍ଦ୍ଧମାନଦ୍ଧ ବଂଶୀ—
ଶୃଙ୍ଗଧ୍ୱାନାଢ଼୍ୟତୀରଂ ତଦପଘନଭୂବୋ ଜଗ୍ମତୁସ୍ତିଗ୍ମରଶ୍ମେଃ ।।

---

ପ୍ରୀତି ପ୍ରକାଶପୂର୍ବକ କହିଲେ, ହେ ଧୂର୍ତ୍ତ, ମୁଁ ବର୍ତ୍ତମାନ ଅତ୍ୟନ୍ତ ଆର୍ତ୍ତ ହୋଇଅଛି, ମୋର କୁଶଳ ପ୍ରଶ୍ନ ନ ପଚାରି ଏପରି ବିପରୀତ ନିଦାରୁଣ ମାର୍ଗ କାହିଁକି ଅବଲମ୍ବନ କରଅଛୁ ?

...ର ଶ୍ରୀକୃଷ୍ଣ ମଧୁମଙ୍ଗଳକୁ କହୁଅଛନ୍ତି—"ସପତଟି ମୋର ରେ" ଇତ୍ୟାଦି ।

(ଗଦ୍ୟ) ତତସ୍ତସ୍ୟାସ୍ତୀରେଽପ୍ୟନ୍ୟତ୍ରାନୀଳଶତପତ୍ରପତ୍ରସଗୋତ୍ରନେତ୍ରାଭିର୍ବଲ୍ଲବପଲ୍ଲବାଧରାଭିଷ୍ଣରାଦ୍‌ବଲୋକ୍ୟ ସବ୍ରଜବାଳକବ୍ରଜଂ ସମୁଦ୍ଦଣ୍ଡତାଣ୍ଡବପାଣ୍ଡିତ୍ୟଶୋଭାପିଚିଣ୍ଡିଳଚରଣାମ୍ଭୋଜଂ କିଞ୍ଚିଦବଶିଷ୍ଟଶୈଶବଂ କେଶବଂ ମିଥଃ କଥାସ୍ତେନିରେ ।

## ଷ

### ରାଗ—ଶଙ୍କରାଭରଣ ବା ମୋହନ

ଷଟପଦନୀଳକେଶା ଆଗୋ ଚାହଁ ଚାହଁ,
ସର୍ବଂସହାରେ ଖେଳୁଛି ନବ ବାରିବାହ;
ସମୀପରେ ତାର ରହି,
ସରଚ୍ଛନ୍ତି ନର୍ତ୍ତନ ଅନେକ ବରହୀ । ୧ ।

---

(ସ) ସପତ—ଶପଥ, ରାଣ; ସାର—ଉତ୍କୃଷ୍ଟ; ହାରମସାରମଣିବର—ହାର ମଧ୍ୟରେ ଥିବା ଶ୍ରେଷ୍ଠ ଇନ୍ଦ୍ରନୀଳମଣି, ହଟି—ହଟକରି, କୌତୁକରେ, ଭରସା—ଆଶା; ଅପରିମିତ—ଅନନ୍ତ, ସାହା—ସହାୟ, ନିକି—କଥଣ, କୁକ୍ଷିକୂପେ—ପେଟରୂପ କୂଅରେ; ଛପେ—ଲୁଚେ; ସଂହର—କମାଅ, ସହୃଦୟ—ବନ୍ଧୁ, ଚରିତ—ଆଚରଣ, ସମାଂସମୀନା—ଯେଉଁ ଗାଈ ପ୍ରତିବର୍ଷ ପ୍ରସବ କରେ (ଅର୍ଥାତ୍ ଦୁଧିଆଳି ଗାଈ), ସମ୍ଭାଳ—ରକ୍ଷା କର; ଆବୁର—ମହତ୍ୱ; ସପତ୍ନ—ଶତ୍ରୁ, ସାନ୍ଦୀପନିସୁତ ଯତି—ମଧୁମଙ୍ଗଳ ଜଣେ ତପସ୍ୱୀ, ସରସେ—ଆନନ୍ଦରେ, ଡଙ୍କା ପିଟିବେ—ଡେଙ୍ଗୁରା ଦେବେ, ପ୍ରଚାର କରିବେ; ସୁତ୍ରାମା—ଇନ୍ଦ୍ର ।

ଅନୁବାଦ—(ସ) ଶ୍ରୀକୃଷ୍ଣ ଓ ମଧୁମଙ୍ଗଳ ଦୁହେଁ ପରସ୍ପରକୁ ଆଲିଙ୍ଗନ କରି ଅନ୍ତଃକରଣରେ ବିମଳ ଆନନ୍ଦ ଅନୁଭବ କଲେ, ପରସ୍ପର ଶୋଭା ସନ୍ଦର୍ଶନରେ ଉଭୟଙ୍କ ମନରୁ ସମସ୍ତ ବାଧା ଅନ୍ତର୍ହିତ ହୋଇଗଲା; ସସ୍ନେହରେ ଦୁହେଁ ଯାଉ ଯାଉ ଅନ୍ୟ ସଖାମାନଙ୍କ ସଙ୍ଗେ ଅର୍ଦ୍ଧ ପଥରେ ମିଶି ମୃଦଙ୍ଗ-ବଂଶୀ-ଶିଙ୍ଗାନାଦପୂର୍ଣ୍ଣ ସେହି ଯମୁନାତୀରକୁ ଗମନ କଲେ । ଅନନ୍ତର ସେହି ଯମୁନାର ଅନ୍ୟ ଘାଟରେ ସମବେତ ହୋଇଥିବା ପଦ୍ମପଲାଶଲୋଚନା ପଲ୍ଲବାରୁଣାଧରା ଗୋପାଙ୍ଗନାମାନେ ନବୀନ ଯୁବକ ନୃତ୍ୟପଟୁ ଶ୍ରୀକୃଷ୍ଣଙ୍କୁ ବ୍ରଜବାଳକମାନଙ୍କ ସଙ୍ଗେ ଅବଲୋକନ କରି ପରସ୍ପର ଆଳାପ କରିବାକୁ ଲାଗିଲେ—"ଷଟପଦନୀଳକେଶା" ଇତ୍ୟାଦି ।

ସଜ ହୋଇ ସ୍ମରସରଦାର ଅବା ଆସେ,
ସ୍ୱକୀୟ ଫଉଜ ଘେରିଅଛି ଚଉପାଶେ,
ସାରିଦେବ ପରା ଆଜ,
ସରୋଜସୁନ୍ଦରନେତ୍ରା ଜନ-ମନ ଲାଜ । ୨ ।
ସୁରେଶ୍ୱରରତନ କି ହେବାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳିଲା ସେହି କ୍ରମ
ସ୍ୱର୍ଣ୍ଣବର୍ଣ୍ଣାଏ ଏଣିକି,
ସମ୍ପାଦିବେ ମୂର୍ତ୍ତିମନ୍ତ ରତନଶ୍ରେଣୀକି । ୩ ।
ସଞ୍ଚରଣଶୀଳ ନବ ତମାଳ ଭୂରୁହ,
ସଙ୍ଗେ ଘେନି ଆସୁଅଛି ସଖା-ଶାଖିବ୍ୟୂହ,
ଶୁକ ଶାରୀ ପରଭୃତ,
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।
ସୁରଧୂନୀ ତୀରେ କରିଥିବା ଯେବେ ତପ,
ସଙ୍ଖାଳି କରି ଏ ତାପିଞ୍ଛର ଅନାତପ
ସୁଖେ ବଞ୍ଚିବା ବସନ୍ତେ,
ସାମନ୍ତ ସୁଧାଂଶୁ ଜଗଦ୍ଦେବ ବୋଲେ ଗୀତେ । ୫ ।

(ଷ) ପୁରତଃପରିତୋଽପି ତର୍ଣ୍ଣକା ଦଧତି କ୍ରୀଡ଼ନମାଳି ଯସ୍ୟ ସଃ,
ଅତସୀସୁମନଶ୍ଛବି ଶିଶୁର୍ବଦ କୋଽୟଂ ଜନନେତ୍ରରଞ୍ଜନଃ ॥

(ଗଦ୍ୟ) ଇତି କୌତୂହଳଲୋଳଲୋଚନାନାମାଭିରାମ୍ଭୋରୁହାକ୍ଷୀଣାମନ୍ୟୋଽନ୍ୟ-ସମ୍ଭାଷଣସମାପ୍ତାବେବ ନେଦିଷ୍ଠ ସୈକତାଙ୍ଗଣାଲିଙ୍ଗିତଚରଣସରସିଜେ ନଟବ୍ରଜେ ବିଧ୍ୱସ୍ତଚତୁଷ୍କୋଟିକ ଜ୍ଞାନମୟଂ ମଦନମୋହନ ଇତି ପ୍ରେମମହିମାଡ଼ମ୍ବରଃ ସମାବିରାସୀତ୍ ।

---

(ଷ) ଷଟପଦନୀଳକେଶା—ଭ୍ରମର ପରି ନୀଳବର୍ଣ୍ଣ କେଶ-ଥିବା ଗୋପୀମାନେ, ସର୍ବଂସହା—ପୃଥିବୀ, ନବବାରିବାହ—ନୂତନ ମେଘ, ବରହୀ—ବର୍ହୀ—ମୟୂର (ଶ୍ରୀକୃଷ୍ଣଙ୍କ ସଖାମାନଙ୍କ ଅର୍ଥରେ), ସ୍ମର ସରଦାର—କାମରୂପକ ସେନାପତି, ଫଉଜ—ସୈନ୍ୟ, ସରୋଜସୁନ୍ଦର ନେତ୍ରା—ପଦ୍ମ ପରି ସୁନ୍ଦର ନେତ୍ର ଯାହାଙ୍କର (ଗୋପାଙ୍ଗନା ଅର୍ଥରେ); ସୁରେଶ୍ୱରରତ୍ନ—ଇନ୍ଦ୍ରନୀଳମଣି, ଜଙ୍ଗମ—ଗତିଶୀଳ, କ୍ରମ—ଗତି, ସ୍ୱର୍ଣ୍ଣବର୍ଣ୍ଣାଏ—ସ୍ୱର୍ଣ୍ଣ ପରି ବର୍ଣ୍ଣଧାରିଣୀ ସ୍ତ୍ରୀମାନେ, ସଂପାଦିବେ—ସାଇତି ରଖିବେ, ଭୂରୁହ—ବୃକ୍ଷ, ସଞ୍ଚରଣଶୀଳ—ଗତିଶୀଳ, ଶାଖିବ୍ୟୂହ—ବୃକ୍ଷସମୂହ; ପରଭୃତ—କୋକିଳ, ସୁରଧୂନୀ—ସ୍ୱର୍ଣ୍ଣଦୀ, ମନ୍ଦାକିନୀ,



## ରାଗ—ଗୌଡ଼ା

ହରି ଆମ୍ଭର ହେ ଏ ତ ପ୍ରାଣଧନ ଗୋ । ପଦ ।*

ହରିହୟ ମଣିକି ଜିଣିଛି ଅପଘନ, ନିନ୍ଦୁଅଛି ଇନ୍ଦୁକୁ ବଦନ ଗୋ । ୧ ।

ହଜାର ସଂଖ୍ୟକ ହେଲେ ହେଲେହେଁ ମଦନ, ନୋହିବ ଏ ମୋହନ ସମାନ ଗୋ । ୨ ।

ହଜି ନ ଯିବ ଜୀମୂତକେଶୀର କି ଜ୍ଞାନ, ଶୁଣୁ ଶୁଣୁ ମୃଦୁ ବେଣୁଗାନ ଗୋ । ୩ ।

ହଟି ଥରେ କରିବା କି ରଦାମ୍ବର ପାନ, ହେଉ ଫଳବନ୍ତ ଯଉବନ ଗୋ । ୪ ।

ହାର ମଧରେ ଆମ୍ଭର ତରଳରତନ ଗୋ, ହେବେ କି ଏ ଯୁବତୀ ଜୀବନ ଗୋ । ୫ ।

ହୃଷ୍ଟ ହୋଇ ଅଷ୍ଟଦୁର୍ଗନମ୍ରଚିସୂଦନ ଗୋ, କରେ ଏ ରସରେ ବିରଚନ ଗୋ । ୬ ।

(ହ) ଏତସ୍ୟେକ୍ଷଣକୋଣବୀକ୍ଷଣବଳନ୍ନୀଳାରବିନ୍ଦାଶୁଗା-
ସାରୈଃ ସାରସସାରସୁନ୍ଦରଦୃଶାଂ କନ୍ଦର୍ପଦର୍ପୋଦୟଃ ।
ଦାସ୍ୟଂ କିଂ ନ ବିବେଶବିଶ୍ୱମିୟତୈଃ ତତ୍ କିଂ ମଣୀନାଂ ଗଣୈଃ
ସମ୍ପାଧାଂ ମୁରଲୀଂ ଦୁରନ୍ତଖୁରଲୀଂ ବିମ୍ବାଧରଶ୍ଚୁମ୍ବତି ।।

(ଗଦ୍ୟ) ଚରାଚରଧୈର୍ଯ୍ୟବିଧ୍ୱଂସିନି ବର୍ହାବତଂସବଂଶୀନିନଦେ ପ୍ରସରତ୍ୟର୍କଜାୟାଃ କାର୍କଶ୍ୟସ୍ୟ ଶିଳାବଳୀନାଂ ଜଳତାୟାଃ ଶାଖିନାମପ୍ୟାଶିଖଂ ସପୁଲକତ୍ୱସ୍ୟ ମୃଗାଣାମୁତ୍କର୍ଣ୍ଣତାୟାଃ ଫଣିନାଂ ଚକିତବିଲୋଚନସ୍ୟାନୁଭବୋ ବଭୂବ ।

---

ତାପିଞ୍ଛ—ତମାଳବୃକ୍ଷ; ଅନାତପ—ଛାୟା, ସାମନ୍ତସୁଧାଂଶୁ—ସାମନ୍ତ ରାଜାମାନଙ୍କ ମଧ୍ୟରେ ଚନ୍ଦ୍ରମା ସ୍ୱରୂପ ।

ଅନୁବାଦ—(କ୍ଷ) ହେ ସଖି, ଯାହାଙ୍କ ଆଗରେ ଓ ଚାରିପାଖରେ କଅଁଳା ବାଛୁରୀମାନେ ଖେଳୁଅଛନ୍ତି; ସେହି ଅତସୀପୁଷ୍ପ ସଦୃଶ ଶରୀରଧାରୀ ଲୋକଚକ୍ଷୁର ଆନନ୍ଦବର୍ଦ୍ଧକ ଏହି ବାଳକଟି କିଏ ?

ଅପୂର୍ବ ଶ୍ରୀକୃଷ୍ଣମୂର୍ତ୍ତିଦର୍ଶନଜନିତ କୌତୁକରେ ଚଞ୍ଚଳନେତ୍ରା ପଦ୍ମଲୋଚନା ଗୋପାଙ୍ଗନାମାନେ ଏହିପରି ପରସ୍ପର ଆଳାପ କଲେ । ଏହା ଶେଷ ହେବା ସମୟରେ ସେହି ନର୍ତ୍ତକମାନେ ନିକଟବର୍ତ୍ତୀ ଯମୁନାସୈକତରେ ପଦାର୍ପଣ କରନ୍ତେ, 'ଏ ମଦନମୋହନ ଅଟନ୍ତି' ଗୋପୀମାନେ ନିଜର ସକଳ ଜ୍ଞାନ ଭୁଲିଯାଇ ଏହା ହିଁ କହିବାରେ ଲାଗିଲେ ।

* ପାଠାନ୍ତର—'ହରି ହାମାର ଏ ତ ପ୍ରାନେର୍ଦ୍ଧନ ଗୋ' (ବଙ୍ଗଳା ଭାଷ୍ଟ \ ଘୋଷା ପଦ)



## ରାଗ—କେଦାର

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗରସମ୍ଭବା - କୁଚକୁମ୍ଭଯୁଗଳପରିରମ୍ଭ-ଚତୁର ହେ । ପଦ ।
କ୍ଷିତିଚକ୍ରବାଳ ମହାଭୀତି ନିବାରଣ ହେ,
ଶ୍ରୁତିଶିର ଅବତଂସାକୃତି ଶ୍ରୀଚରଣ ହେ,
ମରାଳବିହରଣ, କରାର୍ଚ୍ଚିତ ଚରଣ, ଧରାଭାର ହରଣ, ଚରାଚର ଶରଣ,
ତରାବର କିରଣ, ବରାବର ଚରଣ ନଖାଂଶୁ ସୁରଗଣଶିଖାଭରଣ ହେ । ୧ ।
କ୍ଷଣେ ହେଲେ ନାମକୁ ନ ଭଣେ ମୁଁ ତୁମ୍ଭର ହେ,
ଜଣେ ତ ହେବାରୁ ପାପିଗଣେ ବିଶ୍ୱମ୍ଭର ହେ,
ମନା ନ କର ହିତ, ଅନାଦର ରହିତ ଅନାଉଣି ନିରତ, ଚୂନା କରୁ ଦୁରିତ
ଅନାରତ ମୋ ଚିତ୍ତ ମନାସୁଛି ଅହିତ, ଜନାର୍ଦ୍ଦନ ପତିତଜନାବହିତ ହେ । ୨ ।

---

(ହ) ହରିହୟମଣି—ଇନ୍ଦ୍ରନୀଳମଣି, ଅପଘନ—ଦେହ, ଇନ୍ଦୁ—ଚନ୍ଦ୍ର; ଜୀମୂତକେଶା—ମେଘ ପରି କୃଷ୍ଣବର୍ଣ୍ଣର କେଶ ଯାହାର, ହଟି—କୌତୁକରେ ହଟ କରି, ରଦାମ୍ବର—ଅଧର, ଫଳବନ୍ତ—ସଫଳ; ତରଳରତ୍ନ—ଦୀପ୍ତିବିଶିଷ୍ଟ ଉଜ୍ଜ୍ୱଳ ରତ୍ନ, ନମୁଚିସୂଦନ—ଇନ୍ଦ୍ର ।

ଅନୁବାଦ—(ହ) ହେ ସଖି, ଏହି ଶ୍ରୀକୃଷ୍ଣଙ୍କର-ଅପାଙ୍ଗଦୃଷ୍ଟିପାତ, ନୀଳୋତ୍ପଳ-ନିର୍ମିତ ଚଳନ୍ତା ଶର ପରି, ପଦ୍ମନୟନା ସୁନ୍ଦରୀମାନଙ୍କ ମନରେ କନ୍ଦର୍ପର ଉନ୍ମାଦ ଜାତ କରୁଅଛି । ବିଶ୍ୱବାସୀମାନେ ଏହି ଅପାଙ୍ଗ ଦୃଷ୍ଟିପାତ ଦ୍ୱାରା ତ ବଶୀଭୂତ ହୋଇଗଲେ, ଆଉ କାହିଁକି ବିମ୍ବାଧର ମୁରଲୀ ବଜାଇବାକୁ ଆୟାସ କରୁଅଛି ? ଆହା, କୋମଳ ବିମ୍ବାଧରରେ ରତ୍ନକଠିନ ମୁରଲୀସ୍ପର୍ଶ ବାଧା ଦେଉଅଛି ପରା !

ଅହୋ କି ବିଚିତ୍ର କଥା ! ଏହି ମୟୂରଚୂଳିଆଙ୍କର ଚରାଚର ଧୈର୍ଯ୍ୟବିଧ୍ୱଂସକାରୀ ବଂଶୀନିଦାନ ଶୁଣନ୍ତେ ଯମୁନାର ତରଳ ଜଳ ଘନୀଭୂତ ହୋଇଗଲା, କଠିନ ପାଷାଣସମୂହ ତରଳିତ ହୋଇଗଲା, ବୃକ୍ଷମାନଙ୍କର ମୂଳରୁ ଅଗ୍ରପର୍ଯ୍ୟନ୍ତ ରୋମାଞ୍ଚ ଜାତ ହେଲା, ମୃଗମାନେ କାନ ଡେରି ସ୍ଥିର ହୋଇ ରହିଗଲେ ଏବଂ ସର୍ପମାନେ ବିସ୍ମୟବିସ୍ତାରିତ ନୟନରେ ଅନାଇ ରହିଲେ ।

[illegible]ରେ କବି ପ୍ରାର୍ଥନା କରୁଛନ୍ତି—"କ୍ଷମାନୁକମ୍ପାଧର ହେ !" ଇତ୍ୟାଦି ।

କ୍ଷମ ତ ମୁଁ ନୁହେଁ ଅନୁପମ-ଅନୁଭାବ ହେ,
ଯମଦଣ୍ଡରୁ ମୋ ରକ୍ଷା କେମନ୍ତଟି ହେବ ହେ,
ଜଳାକରଭବନ - ବଳାମୁଖ ଭୁବନ-ବଳାହିତ ରତନ, ବଳାବରଜ, ଜନ-
କଳାପର ବୃଜିନ ଦଳା ସୁକୃତଧନ-ବଳାଢ୍ୟମୁନି-ମନ-କଳାପି ଘନ ହେ । ୩ ।
କ୍ଷମାଧିପ ଜଗଦ୍ଦେବ ସମାପନ କରେ ହେ,
ଶ୍ରମାର୍ତ୍ତ ହେବାରୁ ଭବ ଭ୍ରମାତିଶୟରେ ହେ
ବ୍ୟଥା ନିବହ ହର, ପ୍ରଥା ଚଳୁ ମିହିର, ପଥାନ୍ତରକୁ ହର-ରଥାଦିରୁ ଅମର
ମଥାମଣି ନିକର, ରଥାଙ୍ଗଯୁତ କର, କଥା ବିନୟ ମୋର ବୃଥା ନ କର ହେ । ୪ ।

(କ୍ଷ) ଦଳିତାଞ୍ଜନପୁଞ୍ଜମଞ୍ଜୁଳାଙ୍ଗୋ, ଲଳିତାଦ୍ୟମ୍ବୁଜଲୋଚନାର୍ଚ୍ଚିତାଂଘ୍ରିଃ,
ଫଳିତାମରଭୂରୁହଃ ଶ୍ରିତାନାଂ କଳିତାପଂ ଦଳୟତ୍ୱଳଂ କବୀନାଂ ।
ଲୀଳାବନୀଭରସୁରାହିତବୀରବାରୋ-
ଡଡ୍ଡୀନାଣ୍ଡଜେନ୍ଦ୍ର ଚରମାଭରଣଂ ମହୋ ନଃ,
ଚୀନାନିଳାଞ୍ଚଚଳଦଞ୍ଚଳଚେଳମାଳଂ,
ହୀନାଂହସାମସୁମତାଂ ଶରଣଂ ଶରଣ୍ୟଂ ।
ପୀନାନୁକମ୍ପନରସାମୃତପୂରପୂର୍ଣ୍ଣୋ
ଦୀନାସ୍ୟନିଃସୃତତରସ୍ତବସଜ୍ଜକର୍ଣ୍ଣଃ,
ମୀନାଦ୍ୟନେକବିଧରୂପଧରଃ ପରାତ୍ମା
କୀନାଶକିଙ୍କରଭୟାନି ଜରୀହରୀତୁ ।।

(ଗଦ୍ୟ) ଶ୍ରୀମଦ୍‌ଭ୍ୟାମନ୍ୟୋଽନ୍ୟଲାବଣ୍ୟଲୋଳଲୋଚନାଭ୍ୟାମମ୍ବରାଡ଼ମ୍ବରବିଡ଼ମ୍ବିତାମ୍ବୁଧରରୋଚନାଭ୍ୟାଂ କାର୍ତ୍ତସ୍ୱରମସାରସାରସାଦୃଶ୍ୟପୂର୍ଣ୍ଣବର୍ଣ୍ଣାଭ୍ୟାମାର୍ତ୍ତସ୍ୱରାକର୍ଣ୍ଣନସଜ୍ଜକର୍ଣ୍ଣାଭ୍ୟାଂ ରକ୍ତାରବିନ୍ଦସୌନ୍ଦର୍ଯ୍ୟ-ତୁନ୍ଦିଳଚରଣାଭ୍ୟାମମାନୁଷାନୁଭାବବିଭବାଭ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋନମଃ ।

ଇତି କିଶୋରଚନ୍ଦ୍ରାନନ୍ଦାଖ୍ୟଂ ଚମ୍ପୂକାବ୍ୟଂ ।

ଓଁ ତତ୍ ସତ୍ ।

---

(କ୍ଷ) କ୍ଷମାନୁକମ୍ପାଧର—ହେ କ୍ଷମାଶୀଳ, ହେ ଦୟାସାଗର; କ୍ଷୀରସାଗରସମ୍ଭବା—ଲକ୍ଷ୍ମୀ; ପରିରମ୍ଭ—ଆଲିଙ୍ଗନ; କ୍ଷିତିଚକ୍ରବାଳ—ପୃଥିବୀମଣ୍ଡଳ; ଶ୍ରୁତିଶିର ଅବତଂସାକୃତି—ବେଦମସ୍ତକର ଭୂଷଣସ୍ୱରୂପ; ମରାଳବିହରଣ—ବ୍ରହ୍ମା; କରାର୍ଚ୍ଚିତ ଚରଣ—ବ୍ରହ୍ମା ଶ୍ରୀକୃଷ୍ଣଙ୍କର ଚରଣ ସେବକ ଅର୍ଥରେ; ଚରାଚର ଶରଣ—ସମଗ୍ର ସଂସାରର ଆଶ୍ରୟ, ତରାବର—ଚନ୍ଦ୍ର, ବରାବର—ସଦୃଶ, ନଖାଂଶୁ—ନଖ ଜ୍ୟୋତି,

ଶିଖାଭରଣ—ମସ୍ତକର ଆଭରଣ, ନ ଭଣେଁ—ଉଚ୍ଚାରଣ କରେ ନାହିଁ, ଅନାଦରରହିତ—ଆଦର ସହିତ, ଅନାଉଣି—ଚାହିଁବା, ଅନାରତ—ସର୍ବଦା, ଅହିତ—ପାପ, ପତିତଜନାବହିତ—ପାପିଜନ ଉଦ୍ଧାରକାରୀ, କ୍ଷମ—ସମର୍ଥ, ଅଧିକାରୀ ବା ହକ୍‌ଦାର; ଅନୁପମ ଅନୁଭାବ—ଯାହାର ମହିମା ଅତୁଳନୀୟ, ଜଳାକର ଭବନ—ସମୁଦ୍ର ଯାହାର ଜନ୍ମସ୍ଥାନ ଅର୍ଥାତ୍ ଚନ୍ଦ୍ର, ବଳାମୁଖ—ଚନ୍ଦ୍ରକୁ ବଳି ଯାଇଥିବା ମୁଖ (ଶ୍ରୀକୃଷ୍ଣଙ୍କର); ବଳାହିତ—ବଳାରି, ଇନ୍ଦ୍ର; ବଳାବରଜ—ବଳରାମଙ୍କ ସାନ ଭାଇ, ବୃଜିନଦଳା—ପାପ ବିନାଶକାରୀ, ଘନ—ମେଘ; କ୍ଷମାଧିପ—ପୃଥିବୀର ରାଜା; ନିବହ—ସମୂହ, ହରରଥ—ପୃଥିବୀ, ରଥାଙ୍ଗଯୁତ କର—ଚକ୍ରଧର ।

ଅନୁବାଦ—(କ୍ଷ) ଯାହାଙ୍କର ଅଙ୍ଗ ଦଳ କଜ୍ଜଳପରି ମନୋହର, ଲଳିତାଦି ସହଚରୀମାନେ ଯାହାଙ୍କର ଚରଣାର୍ଚ୍ଚନା କରନ୍ତି, ଆଶ୍ରିତ ଲୋକମାନଙ୍କ ପକ୍ଷରେ ଯେ ଫଳବାନ୍ କଳ୍ପପାଦପ ସଦୃଶ, ସେହି ଭଗବାନ ଶ୍ରୀକୃଷ୍ଣ ସାଧୁମାନଙ୍କର କଳିତାପକୁ ବିନାଶ କରନ୍ତୁ !

ଯେ ଅବନୀର ଭାରଭୂତ ଅସୁରମାନଙ୍କୁ ବିନାଶ କରିଅଛନ୍ତି, ଯେ ପକ୍ଷୀରାଜ ଗରୁଡ଼ର ପୃଷ୍ଠଦେଶର ଆଭରଣସ୍ୱରୂପ, ଯାହାଙ୍କର ବସ୍ତ୍ରାଞ୍ଚଳ ଓ ମାଳା ମୃଦୁ ବାୟୁରେ ଆନ୍ଦୋଳିତ, ନିଷ୍ପାପ ପ୍ରାଣୀମାନଙ୍କର ଆଶ୍ରୟ ସେହି ସମୁଜ୍ଜ୍ୱଳ ତେଜ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ !

ଅନନ୍ତ ଦୟାରୂପ ଅମୃତରସରେ ଯେ ପରିପୂର୍ଣ୍ଣ, ଦୁଃଖୀର ମୁଖରୁ ବାହାରୁଥିବା ସ୍ତବକୁ ଶୁଣିବା ପାଇଁ ଯେ କାନ ଡେରି ଥାଆନ୍ତି, ମୀନାଦି ଅବତାର ଧାରଣକାରୀ ସେ ହରି ଯମକିଙ୍କରମାନଙ୍କ ଭୟ ଦୂର କରନ୍ତୁ !

ପରସ୍ପର ଲାବଣ୍ୟଦର୍ଶନରେ ଯାହାଙ୍କର ଲୋଚନ ସର୍ବଦା ଚଞ୍ଚଳ, ଯାହାଙ୍କର ପରିହିତ ବସ୍ତ୍ର ମେଘ ଓ ଗୋରଚନାର ବର୍ଣ୍ଣ ପରି ମନୋହର, ଯାହାଙ୍କ ଶରୀର ଶୋଭା ସୁବର୍ଣ୍ଣ ଓ ଇନ୍ଦ୍ରନୀଳମଣି ପରି, ଦୁଃଖୀମାନଙ୍କର ଦୁଃଖ ଶୁଣିବାକୁ ଯେ ସବୁବେଳେ କାନ ଡେରି ଥାଆନ୍ତି, ଯାହାଙ୍କ ଶ୍ରୀଚରଣଶୋଭା ରକ୍ତ ପଦ୍ମପରି ମନୋଜ୍ଞ, ଅମାନୁଷ ତେଜଃସମ୍ପନ୍ନ ସେହି ରାଧାମାଧବଙ୍କୁ ମୁଁ ନମସ୍କାର କରୁଅଛି ।

'କିଶୋରଚନ୍ଦ୍ରାନନ୍ଦ' ନାମକ ଚଂପୂକାବ୍ୟ ସମାପ୍ତ ।

ଓଁ ସେହି ପରମ ବ୍ରହ୍ମ ହିଁ ଚିରନ୍ତନ ।



## କ

### ରାଗ—ପୂରବୀ

କୃଷ୍ଣକୁଞ୍ଚିତ ଚାମରକେଶା, କ୍ରୀଡ଼ାଚପଳକୁରଙ୍ଗାଦୃଶା,
କନକକଳିତ, କେତକୀଦଳିତ, ଗଉରାଙ୍ଗୀ ଏକା ମୋ ଭରସା,
ଆରେ କୁନ୍ଦହାସି, କଳାକଲ୍ଲୋଳିନୀକେଳି-କଳହଂସୀ । ୧ ।
କିଶୋରୀକୁଳକିରୀଟମଣି, କୃଶୋଦରୀ କଳକଣ୍ଠବାଣୀ,
କୋମଳ ବୟସେ, କାହୁଁ ଶିଖିଲା ସେ, କେଳତିକି ଜିଣିବାର ଠାଣି,
ସେ ମୋ କୁତୁକିନୀ, କାମରଣ ସମୟେ ମୋ ଅନୀକିନୀ । ୨ ।
କହିଲେ କଳ୍ପାନ୍ତ ଯାଏ କବି, କୁହାଯିବ ନାହିଁ ତାହା ଛବି,
କେ ଅବା ବୋଲିବ, ବଢ଼ାଇ ତ୍ରିଦିବ, ବାମାକୁ, ବଳିବ ମୋ ବାନ୍ଧବୀ
ସେ ମୋ କମଳାକ୍ଷୀ, କୋଟିକଳାକରକମନୀୟମୁଖୀ । ୩ ।
କୁସୁମବାସିନୀ ବାମା ପାଶେ, କରନ୍ତେ ସଞ୍ଚାର ମୁଁ ନିମିଷେ,
କଞ୍ଜବନଚାରୀ, ମିଳିନ୍ଦର ପରି, କଳେବର ଗୋଟିଯାକ ବାସେ,
ସେ ମୋ କାନ୍ତିସିନ୍ଧୁ, କୁଞ୍ଜନିଳୟଭୂଷା ମୋ ପ୍ରାଣବନ୍ଧୁ । ୪ ।
କାଳିନ୍ଦୀକୂଳ ସଙ୍କେତ ସ୍ଥାନେ, କିଶୋରଚନ୍ଦ୍ର ଶ୍ରୀମତୀ ଧ୍ୟାନେ,
କରନ୍ତେ ଶରଧା, ମିଳିଗଲେ ରାଧା ପ୍ରିୟ ସହଚରୀ ସେ ବିପିନେ,
ସେ ମୋ କରଭୋରୁ, କହେ ରସେ କବିରବି ରାୟଗୁରୁ । ୫ ।

---

(କ) ଟୀକା—ଶ୍ରୀକୃଷ୍ଣଙ୍କ ଭାବନା : କନକକଳିତକେତକୀଦଳିତଗୌରାଙ୍ଗୀ—ଯାହାର ଦେହର ବର୍ଣ୍ଣ ସୁବର୍ଣ୍ଣ ଓ ପ୍ରସ୍ଫୁଟିତ କେତକୀ ଫୁଲର ବର୍ଣ୍ଣଠାରୁ ଅଧିକ ମନୋହର; କିରୀଟ—ମୁକୁଟ; କଳକଣ୍ଠ—କୋଇଲି; କେଳତି—ରତି; କୁତୁକିନୀ—କୌତୁକପରାୟଣା; ଅନୀକିନୀ—ସୈନ୍ୟବଳ ପରି ସହାୟ; କଳାକର—ଚନ୍ଦ୍ର; କଞ୍ଜବନଚାରୀ—ପଦ୍ମବନରେ ଭ୍ରମଣକାରୀ; ମିଳିନ୍ଦ—ଭ୍ରମର; କାନ୍ତିସିନ୍ଧୁ—ଶୋଭାସମୁଦ୍ର; ନିଳୟ—ଗୃହ; କାଳିନ୍ଦୀ—ଯମୁନା; କରଭୋରୁ—ମଣିବନ୍ଧଠାରୁ କାଣୀ ଆଙ୍ଗୁଠି ପର୍ଯ୍ୟନ୍ତ ହାତର ବହିର୍ଭାଗକୁ କରଭ କହନ୍ତି, ଯାହାର ଉରୁ (ଆଣ୍ଠୁ ଉପର) ସେହିପରି ହୋଇଥାଏ ।

# ଖ

## ରାଗ—ତୋଡ଼ିପରଜ

ଖେଳାଖଞ୍ଜରୀଟଦୃଶା, ମୋ ବନ୍ଧୁ, ଖଟାଅ ମୋତେ ତା ବେହରଣଫୁଲ ଖଟତଳେ ଦିବାନିଶା । ପଦ ।

ଖିଲାଇ ମାତ୍ରକ ବିନ୍ଦୁମିତ ମଧୁ ବନ୍ଧୁକବନ୍ଧୁଅଧରୁ, ଖିଆଲରସପ୍ରସଙ୍ଗ ସଙ୍ଗିନୀଙ୍କ ଗଣେ ମୋତେ ଜଣେ କରୁ । ୧ । ଖମଣିମଣ୍ଡଳ ଅସ୍ତ ହେବା କାଳ ଜଗି କୋକ ଜାଗରୂକ, ଖଞ୍ଜୁଥିବି ସୂନସଜଡ଼ା ମଣ୍ଡନ ମଣ୍ଡୁ ମୋ ଅଙ୍କପଲଙ୍କ । ୨ । ଖିଲ ଖିଲ କରି ଖୁଆଇବି ଶିରୀମୁଖେ କର୍ପୂର ବିଡ଼ିଆ, ଖଲି ମୃଗମଦ ଚିତ୍ରିବି ପ୍ରମୋଦଭରେ ଉରଜ ନଡ଼ିଆ । ୩ । ଖଣ୍ଡ ସହୋଦର ମଧୁର ତା ଗିର ବରତନ ବୋଲି ଭାବି, ଖୁଣ ନ ଥିବାର ଅଳକତରସେ ଚିତ୍ର ପଦେ ଲେଖୁଥିବି । ୪ । ଖଟା ଲେଶ ଚିତ୍ତେ ନ ରଖି ଲଳିତେ ଘେନାଅ ବାଳାପୂରତେ, ଖରାପ ନୁହେଁଟି ପରଉପକୃତି କବିରବି ବୋଲେ ଗୀତେ । ୫ ।

# ଗ

## ରାଗ—କେଦାର

ଗୁଣରତ୍ନାକର ହେ,

ଗଲାନି କି ସରି ସେ କିଶୋରୀ କୁଳାଚାର ହେ । ପଦ ।

ଗୋପାଳଙ୍କ କୁଳଶୀଳ ଗଙ୍ଗାରୁ ଗଭୀର ହେ, ଗୋଷ୍ପଦରୁ ଊଣା ମଣିଲ କି ବଂଶୀଧର ହେ । ୧ । ଗଣ୍ଠିଧନୁ ଗୁପତ ମୋ ସଖୀର ଆବୁର ହେ, ଗହନ କୁସୁମ ପରି

(ଖ) ଟୀକା—ଶ୍ରୀକୃଷ୍ଣ ଦୂତୀ ଲଳିତାଙ୍କୁ କହୁଅଛନ୍ତି : ଖେଳାଖଞ୍ଜରୀଟଦୃଶା—କ୍ରୀଡ଼ାରତ କଜ୍ଜଳପାତୀ ଚଢ଼େଇ ଆଖି ପରି ଯାହାର ଆଖି ଚଞ୍ଚଳ; ବେହରଣ—ବିହାର ମଣ୍ଡପ; ଖିଲାଇ—ସସ୍ନେହରେ ଖୁଆଇ; ବିନ୍ଦୁମିତ—ଏକ ବିନ୍ଦୁ ପରିମାଣବିଶିଷ୍ଟ; ବନ୍ଧୁକ—ରକ୍ତବର୍ଣ୍ଣ ଫୁଲ ବିଶେଷ (ବନ୍ଧୁ ଅଧରର ଉପମାନ); ଖମଣି—ସୂର୍ଯ୍ୟ; କୋକ—ଚକ୍ରବାକ, ଏହି ପକ୍ଷୀର ରାତିରେ ବିଚ୍ଛେଦ ହୁଏ; ଜାଗରୂକ—ସତର୍କ, ସୂନ—ଫୁଲ, ବିଡ଼ିଆ—ପାନ, ମୃଗମଦ—କସ୍ତୁରୀ, ଖଣ୍ଡସହୋଦର—ଖଣ୍ଡ ନାମକ ମିଷ୍ଟାନ୍ନ ତୁଲ୍ୟ, ବରତନ—ବେତନ, ଅଳକତ—ଅଳତା, ଖଟା ଲେଶ—ଟିକିଏ ମାତ୍ର ମନୋଦୁଃଖ, ଉପକୃତି—ଉପକାର ।

ହେବ କି ଏଥର ହେ । ୨ । ଗୋପନୃପବଳରୁ ନ ଥିଲେ ହେଲେ ଡର ହେ, ଗଡ଼କୁ ନିକଟ ପରା ଏ ତୁମ୍ଭ ନଗର ହେ । ୩ । ଗରିଷ୍ଠ ପ୍ରତାପୀ କଂସ ଶୁଣିଲେ ଖବର ହେ, ଗୋବର୍ଦ୍ଧନଗିରିଗୁହାପୁଟ ଯିବ ଝୁର ହେ । ୪ । ଗଲେ ମୁଁ ଚିତ୍ତକୁ ସବୁ ହୋଇବ ଗୋଚର ହେ, ଗୀତେ ବୋଲେ କବିରବି ସର୍ବଂସହାସୁର ହେ । ୫ ।

## ଘ

### ରାଗ—ରେଗୁପ୍ତ

ଘନକେଶା ରେ, ଘେନ ଏତେ ଗିର ମୋର ସୁସାରେ । ପଦ ।
ଘସ୍ରନାଥକନ୍ୟାକୂଳବସା ରେ, ଘୋଣାଗ୍ରେ କିଶୋର ଶ୍ୱାସ ପ୍ରସାରେ । ୧ ।
ଘୋରତର କାମକାତିଭୂଷାରେ, ଘାଣ୍ଟି ହେଉଅଛି ଦିବାନିଶାରେ । ୨ ।
ଘଟସ୍ତନା ତୁ ଏ କଷ୍ଟଦଶାରେ, ଘନାଶ୍ଳେଷେ ରଖ ଯଶ ସଂସାରେ । ୩ ।
ଘାରି ହେଉଅଛି ଏ ଦୁର୍ଦ୍ଦଶାରେ, ଘୋରି ହୋଇ ଯାଉଛି ସେ ରସାରେ । ୪ ।
ଘୋଟି କାମତମ ପ୍ରତିଦିଶାରେ, ଘୂମାଉଅଛିଟି ରସାଳସା ରେ । ୫ ।
ଘଡ଼ିଏ ଶ୍ରୀଯୁଗଳ ପ୍ରଶଂସାରେ, ଘଟାଇଲେ କବିରବି ଭାଷାରେ । ୬ ।

## ଙ

### ରାଗ—କାମୋଦୀ

ନିଦ ନାହିଁଟି ନଟବରକୁ ଗୋ, ନେତ୍ରୁ ନିରତେ ମୁଞ୍ଚେ ନୀରକୁ ଗୋ, ନ ଲଭିବାରୁ ନବନୀତାଙ୍ଗି ତୋ ପଲ୍ଲବଅଧରମଧୁରନିର୍ଝରକୁ ଗୋ । ପଦ ।

---

(ଗ) ଟୀକା—ଲଳିତା ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି : ଆବୁର—ମହତ୍ୱ, ଗହନକୁସୁମ—ବଣଫୁଲ ପରି ନିଷ୍ପ୍ରୟୋଜନ, ଗୋପନୃପ—ନନ୍ଦ, ଗଡ଼କୁ—କଂସ ରାଜଧାନୀକୁ, ଝୁର—ନଷ୍ଟ, ସର୍ବଂସହାସୁର—ଭୂସୁର ଅର୍ଥାତ୍ ବ୍ରାହ୍ମଣ ।

(ଘ) ଟୀକା—ଲଳିତା ରାଧାଙ୍କ ନିକଟରେ ଶ୍ରୀକୃଷ୍ଣପ୍ରସଙ୍ଗ ବର୍ଣ୍ଣନ କରୁଅଛନ୍ତି : ସୁସାରେ—ସ୍ଥିର ଚିତ୍ତରେ, ଘସ୍ରନାଥ କନ୍ୟା—ଯମୁନା, ଘୋଣାଗ୍ରେ—ନାକ ଅଗରେ, ଘୋରତରକାମ-କାତିଭୂଷାରେ—କନ୍ଦର୍ପର ଭୟଙ୍କର ଅସ୍ତ୍ର ଆଘାତରେ, ଘନାଶ୍ଳେଷ—ଗାଢ଼ାଲିଙ୍ଗନ, ରସାରେ—ପୃଥିବୀରେ, ରସାଳସା ରେ—ହେ ରସିକେ ।

ନୂଆ ନାଗରୀ କେତେ, ନାହାନ୍ତି ଏ ଜଗତେ ନଚାଇ ନୟନାନ୍ତେ ସ୍ମରକୁ ଗୋ, ନିର୍ମଳ କେଡ଼େ ତୋର, ପୂର୍ବପୁଣ୍ୟ ନାଗର, ନ ଚିନ୍ତେ ତୋ ବିନା ଇତରକୁ ଗୋ । ୧ । ନିପଟ ତୁ କପଟୀ, ନୋହୁ ତୁ ଆମ୍ଭେ ହଟି, ହଟି ସିନା ତୋ ବିଦ୍ୟା ଟରକୁ ଗୋ, ନଉକରିକି ବାଇ ହେବାଯାଏ ଲଗାଇ ଜାଣୁ ତ ମୋହନ ମନ୍ତରକୁ ଗୋ । ୨ । ନିୟମ କରୁ ପରା, ନାହିଁ ଶିଖଣ୍ଡଧରା, ଚାହିଁ ମୁଁ ବୋଲି ଥର ଥରକୁ ଗୋ, ନୟନବାଣ ତୋର, ନ ବାଜି ନିକି ସ୍ମର, ନୀଳଦେହରେ ଦେଲା ଜ୍ୱରକୁ ଗୋ । ୩ । ନ ଜାଣି ଅବା ଜାଣି, ବଢ଼ାଇ ଦେଲୁ ପାଣି, ବ୍ୟୋମସଞ୍ଚାରୀ କଳାକରକୁ ଗୋ, ନ ହସୁ ଜନ ଯେବେ, ଉପାୟବଳେ ଏବେ ଅଣାଅ ତାକୁ ନିଜ କରକୁ ଗୋ । ୪ । ନଳିନୀଦଳ ଶେଯ, ନେତ୍ରେ ଦେଖିଲି ଆଜ, ନୀରଦନିଭ କଳେବରକୁ ଗୋ, ନାସାଗ୍ରେ ଶ୍ୱାସ ବହେ, କବିମିହିର କହେ ସମ୍ଭୃବର ଇଦୃଶ ଜନକୁ ଗୋ । ୫ ।

## ଚ

### ରାଗ—ସାବେରୀ

ଚନ୍ଦ୍ରମୁଖି ରେ, ଚଞ୍ଚଳ ଚାରୁଚନ୍ଦ୍ରକଚୂଳ ଚାହାଁ । ପଦ ।

ଚାପ ଚାରୁ ଚିଲ୍ଲୀ ବଲ୍ଲୀ ଚଳେ, ଚାକିଚ୍‌କ୍କଣଗଣ୍ଡଯୁଗଳେ, ଚଳରତନ କୁଣ୍ଡଳ ଲୋଳେ ଚାହିଁ ଚକ୍ଷୁ ଲେଖା ହୁଏ ପରମସୁଖୀ ରେ । ୧ । ଚୁମ୍ବିଅଛି ଭାଳପଟ ରେଖ, ଚୂର୍ଣ୍ଣକେଶ କି ସୁନ୍ଦର ଦେଖ, ଚନ୍ଦ୍ରଚୟକୁ ଜିଣିଛି ମୁଖ, ଚଞ୍ଚରୀକତୁଲ୍ୟ ତାରତରଳ ଆଖି ରେ । ୨ । ଚମତ୍କାର ଦନ୍ତବାସ ସୀମା, ଚୋରାଇଛି କି ବିମ୍ବସୁଷମା, ଚିତ୍ତ କି ଲାଗୁଛି ଏ କିସ ମା, ଚିହ୍ନା ପଡ଼ିଯିବା କି ଚାତୁରୀ ଉପେକ୍ଷି ରେ । ୩ । ଚତୁର୍ଦ୍ଦଶଲୋକ ରମଣୀୟ, ଚାମୀକର-କାନ୍ତିଚୟମୟ, ଚେଳ ମଧରେ କି କମନୀୟ, ଚେତା ଚମକାଇ ଦେଉଅଛି ନ ରଖି ରେ । ୪ । ଚରିତରେ କବିରବି ଭାଷେ, ଚାରିମୁଖଦେବ ପରିତୋଷେ, ଚେଟୀ ହେଲେ ହେଲେ ଏ ପୁରୁଷେ, ଚିରନ୍ତନ ଜନ୍ମ ପୁଣ୍ୟ ପୁଣ୍ୟରେ ଲେଖି ରେ । ୫ ।

(ଡ) ଟୀକା—ଲଳିତା ରାଧାଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ଦଶା ବର୍ଣ୍ଣନା କରୁଅଛନ୍ତି : ନବନୀତାଙ୍ଗୀ—ଲହୁଣୀପରି ଯାହାର ଅଙ୍ଗ କୋମଳ (ସଂବୋଧନ), ନିପଟ—ନିଶ୍ଚୟ, ଶିଖଣ୍ଡଧରା—ମୟୂରପୁଚ୍ଛ ମୁକୁଟକୁ, ନିକି—କିମ୍ବା, କଳାକର—ଚନ୍ଦ୍ରମା, ନଳିନୀଦଳ ଶେଯ—ପଦ୍ମପତ୍ରଶଯ୍ୟାଗତ, ନୀରଦନିଭକଳେବର—ମେଘସଦୃଶ ଶରୀର (ଶ୍ରୀକୃଷ୍ଣ) । ସମ୍ଭୃବର—ଭଲଭାବେ




## ରାଗ—ମୁଖାରୀ

ଛଇଲା ମୋରେ ଛାଉଳି ଛାଡ଼, ଛଦ୍ମ ନୀରେ ନିରନ୍ତର ନ ବୁଡ଼ । ପଦ ।

ଛାମୁରେ ଥିବା ସହଚରୀଗଣେ, ଛାଇ ତୁ ପରା ମୋ ଅନୁସରଣେ । ୧ ।
ଛଣା ପୀୟୂଷ ପରି କହି ଆଣି, ଛପାଇ ଦେଉଛୁ କାହିଁକି ପୁଣି । ୨ ।
ଛାପ ଦେଇ ଲଘୁ ନ କର ହେଳେ, ଛତି ଟେକାଇ ଦେ ତରୁଣୀକୁଳେ । ୩ ।
ଛିଦ୍ରଭେଦ ଘେନିବାକୁ ମୋହର, ଛକେ ଛକେ ଜଗି ଅଛନ୍ତି ଚର । ୪ ।
ଛୁଇଁ ଦେଇ ନୀଳଛବି ବାସନା, ଛଟପଟ ହୋଇ ମରିବା ସିନା । ୫ ।
ଛାତି ଭିତରୁ ଧୃତି ଗଲା ସରି, ଛଳ ଛାଡ଼ି କୋଳ କଲେ କିଶୋରୀ । ୬ ।
ଛୁଟିଲା ଶଙ୍କା ସଖୀ ହୃଦୟରୁ, ଛ ଏକ ପଦେ କହେ ରାୟଗୁରୁ । ୭ ।




## ରାଗ—ତୋଡ଼ି

ଜଳଜନୟନା ଜାତି କେଡ଼େ କରକଶ ଗୋ,
ଜୀଇ ଥାଇଁ ଯାହା ଜାଣି ପ୍ରିୟଜନକ୍ଲେଶ ଗୋ । ପଦ ।

---

(ଚ) ଟୀକା—ଲଳିତା ଦୂରରୁ ରାଧାଙ୍କୁ ଶ୍ରୀକୃଷ୍ଣଙ୍କ ଶୋଭା ଦେଖାଇ ଦେଉଅଛନ୍ତି : ଚନ୍ଦ୍ରକଚୂଳ—ମୟୂରପୁଚ୍ଛରେ ନିର୍ମିତ ହୋଇଥିବା ମୁକୁଟ; ଚାପଚାରୁ—ଧନୁପରି ସୁନ୍ଦର; ଚିଲ୍ଲୀ—ଭ୍ରୂ; ବଲ୍ଲୀ—ଲତା, ଚାକି—ଲାବଣ୍ୟ, ଚଞ୍ଚରୀକ—ଭ୍ରମର; ତାରତରଳ ଆଖିଁ—ଚକ୍ଷୁର ତାରାଦ୍ୱାରା ଚଳ ଚଳ ହେଉଥିବା ଆଖି; ଦନ୍ତବାସ ସୀମା—ଅଧରର ପ୍ରାନ୍ତଭାଗ; ଏ କିସ ମା—ଏ କି ବିଚିତ୍ର (ଗଞ୍ଜାମ ଅଞ୍ଚଳରେ ପ୍ରଯୁକ୍ତ) । ଚାମୀକର—ସୁବର୍ଣ୍ଣ; ଚେଲ—ବସ୍ତ୍ର; ଚାରିମୁଖଦେବ—ବିଧାତା; ଚେଟୀ—ଦାସୀ ।

(ଛ) ଟୀକା—ରାଧା ଶ୍ରୀକୃଷ୍ଣଙ୍କ ଶୋଭା ସନ୍ଦର୍ଶନ ପରେ ଲଳିତାଙ୍କୁ କହୁଅଛନ୍ତି : ଛଇଲା—ହେ ଚତୁରି, ଛାଉଳି—କପଟ ବ୍ୟବହାର; ଛଦ୍ମ ନୀରେ ନିରନ୍ତରେ ନ ବୁଡ଼—କପଟରୂପ ଜଳରେ ସର୍ବଦା ବୁଡ଼ ନାହିଁ ଅର୍ଥାତ୍ ମୋ ସଙ୍ଗେ କପଟ ବ୍ୟବହାର କର ନାହିଁ । ଛପାଇ ଦେଉଛି—ଲୁଚାଇ ଦେଉଛି, ଛାପ ଦେଇ—ଦାଗ ଦେଇ ବା ଦୋଷାରୋପ କରି; ଛିଦ୍ରଭେଦ ଘେନିବାକୁ—ଦୋଷାରୋପ କରିବାକୁ ।

ଜମ୍ବାରାତି ନୀଳଅଙ୍ଗ ଦୁଃଖଜଳେ ବୁଡ଼ି ଗୋ, ଜର୍ଜର ତମାଳଦଳ ପରି ଝଡ଼ି ପଡ଼ି ଗୋ, ଯାଉଛି ଜମି ଧରା ପରାଗରେ, ଯା ଉଚିତ ତାହା ନ ଲଭିବାରେ, ଜାଣିଶୁଣି କର୍ଣ୍ଣେ ଲୋଚନେ ଚାହିଁ, ଜହର ଯାହା ଗିଳିଲାଇଁ ନାହିଁ । ୧ । ଜପିଲେ କୋଟିକଳ୍ପ ସୁରସର ତୀରେ ଗୋ, ଯା ଚରଣତଳେ ଚୁମ୍ବ ଦେବା ସୁରତିରେ ଗୋ, ଜଗଦୀଶ କି ନ କରନ୍ତି ସତେ, ଜପିଲେ ହେଲେ ଆମ୍ଭଙ୍କୁ ନିରତେ, ଜଳ୍ପିଲେ ଚାଟୁ ନ ବିଚାରି ଊଣା, ଜନମୁ ନାହିଁ ମାନସେ କରୁଣା । ୨ । ଜଗତ ଜୀବାତୁ ସେ ଜଙ୍ଗମନୀଳମଣି ଗୋ, ଜଟାଧରପରଙ୍କୁରେ କମ୍ପୁଛନ୍ତି ପୁଣି ଗୋ, ଯାଇ ଜାକି ଧରିବା କି ଯତନେ, ଜାଗରୂକ ହୋଇ ଜମାଇ ସ୍ତନେ, ଜନେ ହସିଲେ ହସିବେ ଜଗତେ, ଜୀବନ କି ଦୁଃଖ ପାଇଲେ ସତେ । ୩ । ଜନ୍ମାନ୍ତରମାନଙ୍କର ସୁକର୍ମ ବଳରେ ଗୋ, ଜନ୍ମ ସିନା ମାତ୍ର ନନ୍ଦସୁନ୍ଦରୀ କୋଳରେ ଗୋ, ଜୁରାଇ ଘର ଗୋରସ ସମ୍ପତ୍ତି, ଜଞ୍ଜାଳିଲେ ଆମ୍ଭେ କରି ସମ୍ମତି, ଜଳପିବାକୁ ଏବେ ନାହିଁ ବଳ, ଜଗି ପାରିଲାଇଁ ନାହିଁ ଏ କାଳ । ୪ । ଜ୍ୟାଗୀର୍ବାଣ କବିରବି ରାୟଗୁରୁ ଭଣେ ଗୋ, ଯାହା କଲେ ଗୋପକୁ ଦନୁଜ ଜନେ ଜନେ ଗୋ, ଜୀବନଜନେତ୍ର ଥିବାରୁ ସିନା, ଜଣା ନୋହିଲା ସେ ଭୟବାସନା, ଜିଣିବାକୁ ହେଲେ ସେ ଉପକୃତି, ଯାଇଁ ସୁଝିଲାଇଁ ନାହିଁ ଝଟତି । ୫ ।



## ରାଗ—ବଙ୍ଗଳାଶ୍ରୀ

ଝୁମୁଝୁମୁ ନାଦ ଲଳିତାଙ୍କ ପାଦମଣ୍ଡନର ଶୁଣି ତୋଷେ, ଝୁମିଝୁମି କାମ ଅମଳରେ ଶ୍ୟାମ ମିଳି କୁଞ୍ଜଦ୍ୱାରଦେଶେ । ୧ । ଝାଉଁଳିଲା ନବତମାଳ ପଲ୍ଲବ ଅବସ୍ଥା ଶ୍ରୀଅଙ୍ଗେ ରଖି, ଝରିବାର ବାରି ନୟନୁ ନିବାରି ଜଳ୍ପିଲେ ପ୍ରିୟସଖୀ । ୨ । ଝିମିଟକ କଷ୍ଟ ଶତରୁ ଅନଷ୍ଟ ହୋଇଲାଣି ଝୁରୁ ଝୁରି, ଝସଧ୍ୱଜ-ଧନଞ୍ଜୟ ଝାସ ଜ୍ଞାନଲତାକୁ ଦେଲାଣି ସାରି । ୩ । ଝାଙ୍କିନେଇ ମନ-ମଣିକି ଯା ସ୍ତନ ସଂପୁଟରେ ରଖାଇଲୁ, ଝଟତି ତା ରଦବାସରୁ ସୁଆଦ ମଧୁ ତ ନ ଚଖାଇଲୁ । ୪ । ଝାଳିଦେଲୁ ନାହିଁ ଝଳି ଚାନ୍ଦମୁହିଁ

---

(କ) ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି : ଜଳଜନୟନାଜାତି—ପଦ୍ମନେତ୍ରୀ ସ୍ତ୍ରୀସମୂହ, ଜମ୍ବାରାତି ନୀଳଅଙ୍ଗ—ଇନ୍ଦ୍ରନୀଳମଣି ସଦୃଶ ଶ୍ରୀକୃଷ୍ଣଙ୍କ ଶରୀର, ଜର୍ଜରତମାଳଦଳ—ତମାଳଗଛର ପୁରୁଣା ପତ୍ର, ଧରାପରାଗ—ପୃଥିବୀଧୂଳି, ଜୀବାତୁ—ଜୀବନ, ଜଙ୍ଗମ—ଚଳନ୍ତା, ଜଟାଧରପର—ଶିବଶତ୍ରୁ, କାମ; ଜୁରାଇ—ଜୁର କରି ବା ନଷ୍ଟ କରି, ଜଞ୍ଜାଳିଲେ—ବେଣି ଅଳି ବା ଗୋଳମାଳ କଲେ, କଳ୍ପିବାକୁ—ପ୍ରସ୍ତାବ କରିବାକୁ, ଜ୍ୟାଗୀର୍ବାଣ—ଭୂସୁର, ବ୍ରାହ୍ମଣ ।

ଗଣ୍ଡକୁ ମୋ ଗଣ୍ଡେ ଥରେ, ଝୁଲାଇ ନ ଦେଲି ରସକଳ୍ପବଲ୍ଲୀ ଉରୁମୂଳାଞ୍ଚଳ କରେ । ୫ । ଝୁମ୍ପା ଝାଲରିଆ ଅଳକ ତିଳକଶୋଭିନୀର କେଶ ବେଶେ, ଝରା ଖଞ୍ଜି ବିମ୍ବଓଷ୍ଠେ ଶତ ଚୁମ୍ବ ରଚିବି କେବେ ହରଷେ । ୬ । ଝୁଣ୍ଟିଆ ବିଜୟ ବାଦ୍ୟେ ହରିହୟପଦବିଭୂତି ନିରତେ, ଝୁଣ୍ଟି ଦେଇ ଯିବି କେବେ କବିରବି ରାୟଗୁରୁ ବୋଲେ ଗୀତେ । ୭ ।



## ରାଗ—ବରାଡ଼ି

ନୟନେ ନିମିଷେ ନିଦ, ନ ରଖି ତ ମୁଁ ତୋ ପଦ-ମଞ୍ଜୀର-ଶିଞ୍ଜିତେ ଖଞ୍ଜି କାନ, ନିରେଖି ବସିଛି ପଥ, ନ ପୂରୁ ମୋ ମନୋରଥ, ହୋଇଲୁ ତ ଦୁଃଖର ନିଦାନ ରେ, ନତଦେହା, ନିର୍ଦ୍ଦୟତା ପ୍ରକଟ ହୋଇଲା, ନ କହିଲୁ ତ କନକ-ନିନ୍ଦା ନଉସନ୍ଧାଧିକ, ଗଉରାଙ୍ଗୀ ଶୁଣି କି ବୋଇଲା ରେ । ୧ । ନଉକରଗଣେ ଜଣେ, କରି ମୋତେ ଅନୁକ୍ଷଣେ, ରଖିବାକୁ କଲାଟିକି ସହି, ନିରାଶ ଭାରତୀ ଅବା, ଜଳପିଲା ନବ-ଜବା ଦଶନ-ବସନା ପ୍ରାଣସହୀ ରେ, ନତଦେହା, ନିଃସଂଶୟ କରି କହ କହ, ନ ରଖିବାକୁ ନିର୍ଲ୍ଲଜ, ପ୍ରାଣକୁ ମୁଁ ହେବି ସଜ, ଯେବେ ନାହିଁ ବାଳା ଅନୁଗ୍ରହ ରେ । ୨ । ନୀପ ନିକୁଞ୍ଜ ନିକଟ, ନଟନ କେଳିଲମ୍ପଟ ହୋଇ ହରୁଥିଲି ସୁଖେ କାଳ, ନିର୍ଦ୍ଦୋଷରେ ବିନ୍ଧି ନେତ୍ର, ଅନିମିଷ କଙ୍କପତ୍ର, ଟାଳିଲା ମୋ ଜ୍ଞାନଲତା ମୂଳ ରେ, ନତଦେହା, ନିର୍ଯାଣ ସମୟ ହେଲେ ଆସି, ନ ସଙ୍ଖୋଳି ଅକୀରତି, ନେଲା ତ ରତିମୂରତି ନିଶାକରକର-ଦରହାସି ରେ । ୩ । ନବୀନ ନାଗରୀ ନନ୍ଦନନ୍ଦନ ମନ ଆନନ୍ଦ, ନଦୀ ବନେ ମଜାଇଲା ବୋଲି, ନିଖିଳ ଲୋକେ ଏ ଗିର, ନଟୀକି ନଚାଇବାର, ଯଶ ନ ରୁଚିଲା ଦେଲା ପେଲି ରେ, ନତଦେହା, ନିନ୍ଦା ଅରବିନ୍ଦାକ୍ଷୀ ପାଇଲା, ନିର୍ଜ୍ଜରନଗରୀମଣିକୁଟ୍ଟିମେ ଚଢ଼ାଇ ପୁଣି ନିଃଶ୍ରେଣୀଟି କାଟି ପକାଇଲା । ୪ । ନବନୀତୁଁ ସୁକୁମାର, ଦିଶେ ଦେହଟି ରାମାର,

---

(୯) ଟୀକା—ଲଳିତା କୁଞ୍ଜ ନିକଟରେ ଉପସ୍ଥିତ ହୁଅନ୍ତେ ଶ୍ରୀକୃଷ୍ଣ ତାଙ୍କୁ କହୁଅଛନ୍ତି : ପାଦମଣ୍ଡନ—ପାଦର ଅଳଙ୍କାର, ଝୁମିଝୁମି—ଘୁମାଇ ଘୁମାଇ, ଝିମିଟକ—ମୁହୂର୍ତ୍ତକ, କଳ୍ପଶତ—ଶତଯୁଗ, ଅନଳ୍ପ—ଅଧିକ, ଝସଧ୍ୱଜଧନଞ୍ଜୟ ଝାସ—କନ୍ଦର୍ପରୂପ ଅଗ୍ନିର ଦାହ, ସମ୍ପୁଟ—ଫରୁଆ, ଝଟତି—ଚଞ୍ଚଳ, ରଦବାସ—ଅଧର, ଝଳି—(ବିଶେଷଣ) କାନ୍ତିମତୀ, ଝୁଲାଇବା—ହଲାଇବା, ସଂଚାଳିତ କରିଦେବା; ରସକଳ୍ପବଲ୍ଲୀ—ରସକଳ୍ପଲତାରୂପିଣୀ, ଝୁମ୍ପାଝାଲରିଆ—କେଶର ଅଳଙ୍କାର, ଝରା—ଫୁଲପେଣ୍ଡା, ହରିହୟପଦବିଭୂତି—ଇନ୍ଦ୍ରତ୍ୱର ସଂପତ୍ତି ।

ନିରପରାଧ ନିଷ୍ଠୁର ମନ, ନାରୀକେଳ ଫଳଲୀଳା ଉରୋଜେ ବହିଛି ବାଳା, ସେପରି ନୁହଇ ଅପଘନ ରେ, ନତଦେହା, ନ ଘେନିଲା ଦୁଃଖ ଲବେ ହେଲେ, ନ ଘେନୁ ଘେନୁ ଶରଣ ତାହାର ଚାରୁଚରଣ କବିରବି ରାୟଗୁରୁ ବୋଲେ ରେ । ୫ ।

## ଟ

### ରାଗ—ଦେଶାକ୍ଷ

ଟିକାକ ଦୋଷକୁ ରାମା କେଡ଼େ ରୁଷା ରୁଷିଲା ରେ । ପଦ ।

ଟୋପରେ ପକାଇ ରୋଷେ, ନିଗ୍ରହ ଶଲ୍ୟ ବିଶେଷେ, ମୋ ସୁଖମୃଗକୁ ତ ସେ ଧରାଭୂଷା ଭୂଷିଲା ରେ । ୧ । ଟାକର ମାରି ମୋ ଆଶା, ମୁଣ୍ଡେ ଖଞ୍ଜରୀଟଦୃଶା, ପରିପନ୍ଥୀ ଲୋକହସା, କରିବାକୁ ବସିଲା ରେ । ୨ । ଟିକିଏ ହେଲେ ବିବେକ, ନ କରି ସେବକ-ବେକ କରତ ବୋଲି ଦର୍ପକ ଦାରୁଣକୁ ପେଷିଲା ରେ । ୩ । ଟମକ ଯେ ବାଜେ ବ୍ରଜ ବଜାରେ ଦୟାଳୁରାଜ ବୋଲି ମୋ ଦଣ୍ଡରୁ ଆଜ, ଦାଣ୍ଡକୁ କି ଦିଶିଲା ରେ । ୪ । ଟୋକୀଏ ଥିଲେ ଗହଣେ, ଟାକି ଉରୋଜ ଗ୍ରହଣେ, ଟିପି ଦେଲି ନଖ ସେହି କଥାକୁ କି ଘୋଷିଲା ରେ । ୫ । ଟେକାନ୍ତା ବିବେକବତୀ ମଣ୍ଡଳେ ବଳକ୍ଷଛତି, ବୋଲେ କବିରବି ସବୁ କ୍ରୋଧନଦେ ଭାସିଲା ରେ । ୬ ।

---

(ଞ) ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି : ମଞ୍ଜୀର—ନୂପୁର, ଶିଞ୍ଜିତ—ଅଳଙ୍କାରଧ୍ୱନି, କନକନିନ୍ଦାନଉସନ୍ଧାଧିକ—ସୁବର୍ଣ୍ଣକୁ ନିନ୍ଦା କରିବାରେ ଅଧିକ ନିପୁଣ (ନଉସନ୍ଧା—ନିପୁଣ), ନଉକର—ଚାକର, ସହି—ସ୍ୱୀକାର, ନିରାଶ ଭାରତୀ—ନୈରାଶ୍ୟପୂର୍ଣ୍ଣ କଥା, ନବଜବାଦଶନବସନା—ନୂତନ ମନ୍ଦାର ଫୁଲ ପରି ଅଧର ଯାହାର, ନୀପ—କଦମ୍ବ, ନେତ୍ରଅନିମିଷକଙ୍କପତ୍ର—ନିମିଷଶୂନ୍ୟ ଚକ୍ଷୁରୂପ ଶର, ନିର୍ଯାଣ—ପ୍ରାଣବାୟୁର ଦେହତ୍ୟାଗ, ନିର୍ଜରନଗରୀ—ଅମରାବତୀ, ମଣିକୁଟ୍ଟିମ—ରତ୍ନନିର୍ମିତ ପ୍ରାସାଦ, ନିଃଶ୍ରେଣୀ—ନିଶୁଣି ବା ସିଢ଼ି, ଅପଘନ—ଦେହ, ନବନୀତୁଁ—ଲହୁଣିଠୁଁ ।

(ଟ) ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି; ଟୋପରେ—ଖାଲରେ, ନିଗ୍ରହ—ତାଡ଼ନା (ଅନୁଗ୍ରହର ବିପରୀତ), ସେ ଧରାଭୂଷା—ସେହି ପୃଥିବୀର ଅଳଙ୍କାରରୂପିଣୀ, ଭୂଷିଲା—ଆଘାତ କଲା, ଟାକରା ମାରି—ଆଘାତ କରି, ପରିପନ୍ଥୀ—ଶତ୍ରୁ, ଦର୍ପକ—କନ୍ଦର୍ପ, ଟମକ—ଧେଣ୍ଡୁରା, ବଳକ୍ଷଛତି—ଧଳାଛତି ।



## ରାଗ—ମୁଖାବରୀ

ଠଣ ଚନ୍ଦ୍ରମୁହିଁ ରେ ଠଉରିବି କେହି ରେ । ପଦ ।

ଠକ ମୁଁ ବୋଲେ ମାନସେ, ଠୁଳ କଲେ ଶଙ୍କା ଲେଶେ । ୧ । ଠ ବର୍ତ୍ତୁଳ ସ୍ତନେ ନଖ, ଠୁକିଲେ ହେଲେ ବିମୁଖ । ୨ । ଠାରି ନାହିଁ ନୟନାନ୍ତେ, ଠାକୁରଙ୍କ ରାଣ ମୋତେ । ୩ । ଠାଣେଦାର ରଣରଣ, ଠୋ କରି ନେବ ମୋ ପ୍ରାଣ । ୪ । ଠ ପରି ଜଗତ ଦିଶେ, ଠିକେ କବିରବି ଭାଷେ । ୫ ।



## ରାଗ—କାନନଗୌଡ଼ା

ଡାକିଲା କୋକିଲା ଲୀଳା-ସୂନ-ଉପବନରେ

ଡମରୁରୁଚିରମଧ୍ୟା ଖେଳିଲା ମୋ ମନରେ । ପଦ ।

ଡାଳଲୋଳ କିଶଳୟ, କରେ କରି ଅଭିନୟ, ନାଚିଲା ବଲ୍ଲରୀଚୟ ଚନ୍ଦନ ପବନରେ । ୧ । ଡଗରା ବୁଲୁଛି ସ୍ମର, ବିଷାଇ ବିଷମ ଶର, ଧରିଛି ପରାଗ-ଗର ଘୁଁ - ବାକ୍ ଜୀବନରେ । ୨ । ଡାଳିମ୍ବବୀଜ-ରଦନା, ଏ ଦିନେ ହୋଇ ବିମନା, କଲା ତ ଉତ୍ସବ ମନା ଲତିକା ଭବନରେ । ୩ । ଡିମ୍ବଚକିତ କୁରଙ୍ଗନୟନାର ନିକି ଭୃଙ୍ଗ—ଉନ୍ମାଦ-ରବ ତରଙ୍ଗ ପଡୁ ନାହିଁ କାନରେ । ୪ । ଡରୁ ନାହିଁ କି ସେ ଭୀରୁ, ସ୍ମରକର-କରତରୁ କବିରବି ରାୟଗୁରୁ ରଚିଲେ କବନରେ । ୫ ।

---

(ଠ) ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି : ଠଣ—ଶୋଭା, ଠଣଚନ୍ଦ୍ରମୁହିଁ—ହେ ଶୋଭାପୂର୍ଣ୍ଣ ଚନ୍ଦ୍ରମୁଖି ! ଠଉରିବି—ସ୍ଥିର ହୋଇ ରହିବି, ଠୁଳ କଲେ—ଏକତ୍ର କଲେ, ଠାଣେଦାର—ଜମାଦାର, ଯେ ଜୋର୍ ପ୍ରକାଶ କରେ; ରଣରଣ—କନ୍ଦର୍ପ, ଠ ପରି—ଶୂନ୍ୟ ।

(ଡ) ଟୀକା—ଶ୍ରୀକୃଷ୍ଣଙ୍କ ରାଧାଗତ ଅନୁସ୍ମୃତି : ଲୀଳାସୂନ-ଉପବନରେ—କ୍ରୀଡ଼ାପୁଷ୍ପ ଉଦ୍ୟାନରେ, ଡମରୁରୁଚିରମଧ୍ୟା—ଡମରୁପରି ଯାହାର କଟି କ୍ଷୀଣ, କିଶଳୟ—ନୂଆପତ୍ର, ବଲ୍ଲରୀଚୟ—ଲତାସମୂହ, ଡଗରା—ଘୋଷଣାପ୍ରଚାରକ, ବିଷାଇ—ବିଷଯୁକ୍ତ କରି, ବିଷମ ଶର—ପଞ୍ଚବାଣ, ପରାଗଗର—ପୁଷ୍ପରେଣୁରୂପ ବିଷ, ଘୁଁ ବାକ୍—ଯେ ଘୁଁ ଘୁଁ ଶବ୍ଦ କରେ ଅର୍ଥାତ୍ ଭ୍ରମର, ଡିମ୍ବ—ଶିଶୁ, କବନ—କବିତା ।



## ରାଗ—ଶଙ୍କରାଭରଣ

ଢାଳି ଚାହିଁଲା ରେ, ଢାଙ୍କି ପକ୍ଷ୍ମ କି ଭଙ୍ଗୀରେ ରହିଲା ରେ । ପଦ ।

ଢବାତନାବୀଦେହଳୀ ସମୀପରେ ପ୍ରିୟଆଳୀ, ସମାଜେ ବିରାଜି ବର ମହିଳା ରେ । ୧ । ଢୁଳାଇଲା ପରି କାମ-ଅମଳଲାଗିରୁ ଶ୍ୟାମ ଜଳଜନୟନେ ଲୀଳା ବିହିଳା ରେ । ୨ । ଢୁକାଇ ମୋ ଅପଘନ, ଶ୍ରୀଅଙ୍ଗରେ ତା ଅଧୀନ, ହୋଇବାକୁ ସମୟ ନ ସହିଲା ରେ । ୩ । ଢୋକୁଟିଏ ତା ପଲ୍ଲବ, ଅଧରରୁ ମଧୁ ଦ୍ରବ, ଢୋକିବା ବିବେକ ଲବ ନୋହିଲା ରେ । ୪ । ଢକା ପ୍ରକାଶନ୍ତା ମତେ, ଧନ୍ୟ ବୋଲି ଏ ଜଗତେ, କବି-ଚିତ୍ରଭାନୁ ଗୀତେ କହିଲା ରେ । ୫ ।



## ରାଗ—ପୂରବୀ

ଅନାଇ ନାହିଁ ନାଗରମଣିକି ମୁଁ ଢାଳେ । ପଦ ।

ଅନେକ ପ୍ରକାରେ ପ୍ରେମ, ଆଚରେ ଅତସୀଶ୍ୟାମ, ଅଙ୍ଗୀକାର କରି ନାହିଁ କାଳେ । ୧ । ଅହିତ ଜନ ନ ସହେ, ଅପବାଦ କଥା କହେ, ଅଛି ଏହା ଲେଖା ମୋ କପାଳେ । ୨ । ଅମୃତ ବାଣୀ ବିଳାସେ, ଅନଙ୍ଗ ମୋହନ ବେଶେ, ଉପବନ ଅୟନ ଓଗାଳେ । ୩ । ଆଉ କେତେ କେତେବେଳେ, ଅମ୍ଳାନ କେତକୀଦଳେ, ଅରଚି ବନାଇ ବନ୍ଦୁ ଚାଳେ । ୪ । ଅତର୍କିତ ଜାଣି କାଳ, ଅଙ୍କିତ କରେ ମୋ ଗଳ, ଆପଣେ ଗୁନ୍ଥିବା ଫୁଲମାଳେ । ୫ । ଅଗ୍ରିକି ମୋ କବିଭାନୁ, ଅଟକି ଭଜିବା ଦିନୁ, ଅଲଙ୍ଘ୍ୟ କରି ମୁଁ ପରିପାଳେ । ୬ ।

---

(ଢ) ଟୀକା—ଶ୍ରୀକୃଷ୍ଣଙ୍କ ଅନୁଚିନ୍ତା : ପକ୍ଷ୍ମ—ଆଖିପତାବାଳ, ଢବାତନାବୀ—କୋଠାଘର ଝରକା, ଦେହଳୀ— ଚୌକାଠର ତଳଭାଗ, ଢୁଳାଇଲା ପରି—ଘୁମାଇଲା ପରି, କାମଅମଳଲାଗିରୁ—କନ୍ଦର୍ପରୂପ ମାଦକଦ୍ରବ୍ୟର ନିଶାରୁ, ଶ୍ୟାମଜଳଜନୟନେ—ନୀଳଇନ୍ଦୀବର ନେତ୍ରରେ, ଢୁକାଇ—ସଂଯୋଜିତ କରି ବା ପ୍ରବେଶ କରାଇ, ଅପଘନ—ଦେହ, ଚିତ୍ରଭାନୁ—ସୂର୍ଯ୍ୟ ।

(ଣ) ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି; କାଳେ—ଥରେ, ଅତସୀଶ୍ୟାମ—ଅତସୀ (ପେସି) ଫୁଲପରି ଶ୍ୟାମଳବର୍ଣ୍ଣ, ଅହିତଜନ—ଭଗାରିମାନେ, ଉପବନ ଅୟନ



## ତ

### ରାଗ—କଳହଂସକେଦାର

ତମାଳତଳେ ନ ଚାଲେ ରେ ଅଭିନ୍ନା, କେତେ ଦୂର ଯାଏ କାହିଁ ।
ତିଳକୁ ତାଳକ ତୁଲ୍ୟ କଲେ ଲୋକ ତଥ୍ୟ ମରୁଥାଉ ତାହିଁ । ୧ ।
ତରକିବା କଥା ତ୍ରିକାଳେ ସର୍ବଥା ତତ୍ତ୍ୱ ତୁ ଘେନିବୁ ନାହିଁ । ୨ ।
ତୁ ତ ସୁବିବେକୀ, ତୁଳ ମୁଁ କେବେ କି, ତହିଁ ଥିବି ଅବଗାହି । ୩ ।
ତପନେ ଶୀତିମାଅଙ୍କ ଦିଅନ୍ତି ମା ତୁଚ୍ଛା ଲୋକନାମେ ବାହି । ୪ ।
ତୁଟାଏ କି ଜାତି ତୁଣ୍ଡର ପୀରତି ତାମସା ଟାପରା ଟାହି । ୫ ।
ତତ୍ତ୍ୱ ଜାଣେ କବିତରଣି ତା ଭାବି ତଲାସ ଯେ ଯାକୁ ନାହିଁ । ୬ ।



## ଥ

### ରାଗ—ଧନାଶ୍ରୀ

ଥରେ ଏକାନ୍ତରେ ସିନା କହିଥିଲି ସହୀକି,
ସ୍ଥାପିତ ନ କରି ଦୁର୍ଜନଙ୍କ ଆଗେ କହି କି । ପଦ ।

ଥିଲାଠାରେ ବିଶ୍ୱାସ କପଟ ପାରେ ରହିକି, ଥୋଇବା ହୃଦୟେ ଖ୍ୟାତି ପୂର୍ଣ୍ଣ କରେ ମହୀ କି । ୧ । ସ୍ଥାବର ଜଙ୍ଗମେ ଶ୍ୟାମ କାହା ହୃଦେ ନାହିଁ କି, ଥିଲା ମୋ ଲଲାଟପଟେ ଏ ଅଯଶ କାହିଁକି । ୨ । ଥାପିପଣ ଥିବାର ସଜ୍ଜନଗୁଣ ଏହିକି, ସ୍ଥାୟୀ କଲି ବିଷାର୍ଜ୍ଜନ କ୍ଷୀର ଦେଇ ଅହିକି । ୩ । ସ୍ଥିର ପୀରତିବଲ୍ଲୀକି ଦମ୍ଭାନଳେ ଦହିକି, ସ୍ଥଳଆଳୀମାନଙ୍କର ଏ ଦ୍ୱେଷକୁ ମୁହିଁ କି । ୪ । ସ୍ଥିରାଚକ୍ରେ ଜଣେ ବୋଲି ଜାଣଇ ସୁମୁହାଁକି, ଥରୁଥାଏଁଟି ମୁଁ କବିରବି ସାକ୍ଷୀ ତହିଁକି । ୫ ।

---

ଓଗାଳେ—କୁଞ୍ଜବନକୁ ଯିବା ବାଟର ଆଢୁଆଳରେ, ଅରଜି—ପ୍ରେମପୂର୍ଣ୍ଣ ନିବେଦନପତ୍ର, ଅଙ୍ଘ୍ରି—ପାଦ, କବିଭାନୁ—କବିସୂର୍ଯ୍ୟ ।

(ତ) ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି; ତମାଳତଳେ ନ ଚାଲେଁ ରେ ଅଭିନ୍ନା—ହେ ଅଭିନ୍ନହୃଦୟା, କୃଷ୍ଣଙ୍କ ରୂପ ସଙ୍ଗେ ସାମ୍ୟ ଥିବାରୁ ମୁଁ ତମାଳଗଛ ତଳରେ ମଧ ଚାଲେ ନାହିଁ, ତୁଳ—ତୁଳନା କର, ତପନେ ଶୀତିମାଅଙ୍କ—ଏ ସଂସାରରେ ଏପରି ଲୋକ ଅଛନ୍ତି ଯେଉଁମାନେ ସୂର୍ଯ୍ୟତେଜରେ ମଧ ଶୀତଳତା ଦୋଷ ଆରୋପ କରିପାରନ୍ତି, ଟାହି—ଥଟା, କବିତରଣି—କବିସୂର୍ଯ୍ୟ ।

## ଦ

### ରାଗ—ହସନ୍

ଦରହାସି, ଦମ୍ଭତୋୟମୟ ଜଳରାଶି ରେ । ପଦ ।

ଦୂରୁ ହେଲେ ନଟବର, ଦେଖା କେଉଁ ନାହିଁ ତୋର, ଦଶନବ୍ରଣ ଅଧର ଦଳେ ବିଲସେ କାହାର, ଦୟାବତି, ତୁ କେଡ଼େ ସାହସୀ ରେ । ୧ । ଦର୍ପକଦର୍ପଦଳନ, ଦିବ୍ୟ ପରିମଳ ଧନ, ଦେହରେ ଦୋର୍ମୂଳେ ସ୍ତନଦ୍ୱୟରେ ନଖଲାଞ୍ଛନ, ଦଇବ କି, ଦେଇଗଲା ଆସି ରେ । ୨ । ଦିବାନିଶି ତ ମୁଁ ତୋର, ଦେହ ବିହିଲୁ ଯେ ପର, ଦିନେଶତନୟା ତୀର, ଦ୍ରୁମଦୋହଦ ନିକର, ଦରବାରେ, ହେଲୁଣି ଦୋଭାଷୀ ରେ । ୩ । ଦୁଇ ଚରଣସାରସେ ଦେବାର ଶିଖଣ୍ଡ ଶେଷେ, ଦେଖିଲି ଯାବକ ରସେ, ଦୋଷ କି କିଶୋରର ସେ, ଦ୍ରବି କବିରବି ଅଛି ଭାଷି ରେ । ୪ ।

## ଧ

### ରାଗ—କେଦାର

ଧିକ ଧିକ ମନ୍ଦବିଧି ଅପସନ୍ଦ ନାରୀଜନ୍ମ ନ ନିବାରିବାର,
ଧିକ ଅବିବେକ ମୋ ପରି ଗୁଡ଼ାକ କେଡ଼େ ନିର୍ଲ୍ଲଜ ସେ ପାରିବାର । ପଦ ।
ଧମକ ସ୍ଫୁରଣ ହୁଅନ୍ତେ ତରୁଣଚରଣୁ ଅନ୍ୟକୁ ନ ଲଭି ଶରଣ ଗୋ,
ଧୂର୍ତ୍ତ ଆଚରଣ ଧୁରନ୍ଧର ଗୁଣ ଚାଟୁ କ୍ଷଣରେ ବାହାରିବାର । ୧ ।

---

(ଥ) ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି : ସ୍ଥାପିତ ନ କରି—ହୃଦୟରେ ଲୁଚାଇ ନ ରଖି (ଗ୍ରାମ୍ୟ ପ୍ରୟୋଗ) । ଥୋଇବା ହୃଦୟେ—ଯେ ନିଜ ହୃଦୟରେ ବିଶ୍ୱାସକୁ ସ୍ଥିର କରି ରଖେ, ଅହିକି—ସର୍ପକୁ, ପ୍ରୀତିବଲ୍ଲୀ—ପ୍ରୀତିରୂପା ଲତା, ଦମ୍ଭାନଳ—ଛଳନାରୂପ ଅଗ୍ନି, ଥିରାଚକ୍ର—ପଣ୍ଡିତାସମୂହ ।

(ଦ) ଟୀକା—ସଖୀ ରାଧାଙ୍କୁ କହୁଅଛନ୍ତି; ଦମ୍ଭତୋୟମୟ ଜଳରାଶି—ଛଳନାରୂପକ ଜଳପୂର୍ଣ୍ଣ ସମୁଦ୍ର ଅର୍ଥାତ୍ ତୁ ବଡ଼ କପଟାଚାରିଣୀ । ଦର୍ପକ ଦର୍ପଦଳନ—କନ୍ଦର୍ପଗର୍ବ-ଖର୍ବକାରୀ, ପରିମଳ—ସୁବାସ, ଦୋର୍ମୂଳ—ବାହୁମୂଳ; ଦିନେଶତନୟା— ଯମୁନା, ଦୋହଦ—ଅଭିଳାଷ, ଦୋଭାଷୀ—ମିଥ୍ୟାବାଦିନୀ, ଯାବକରସ—ଅଳତାରସ, ଚରଣସାରସ—ପାଦପଦ୍ମ ।

ଧାଇଁ ଧାଇଁ ଦୂତୀମନ୍ଦିରକୁ ଯାତି ପଦେ ଲାକ୍ଷାଦ୍ୟୁତି ନ ଲଭଇ କ୍ଷିତି,
ଧାତାବଶୁଁ ପ୍ରୀତି ଘଟିଲେ ଉନ୍ନତି ବହି ଚେଳାଞ୍ଚଳ ମାରିବାର । ୨ ।
ଧରି ଧନୁର୍ବାଣ ସ୍ମର ସତେ ପ୍ରାଣ ନେବା ପରି ଡରି ଧରି ଦନ୍ତେ ତୃଣ,
ଧରାରେ ତରୁଣ-ଶିର ଆଭରଣ ଲୁଟାଇଲେ ନ ପଚାରିବାର । ୩ ।
ଧରି ଧରି ବଳେ କରୁଥିଲେ କୋଳେ ଧରାଧରୁଁ ବଳେ ଧଇର୍ଯ୍ୟ ନିଶ୍ଚଳେ,
ଧାନେ ଊଣା ତୁଳେ ହେଲେ ସ୍ନେହଖେଳେ କ୍ଷଣକେ ବିନୟ ଚାରି ବାର । ୪ ।
ଧନ୍ୟ ଧୃତିସାର ସୁପୁରୁଷଙ୍କର ପ୍ରସାଦୁ ସଂଭୂତ ସେ ଶଙ୍କରଙ୍କର,
ଧରଣୀନିର୍ଜର କବିରବି ଛାର ଗୁଣି ତାଙ୍କୁ ନ ଜୁହାରିବାର । ୫ ।

## ନ

### ରାଗ—ସିନ୍ଧୁକାମୋଦୀ

ନାହି ନାହିଁ ନିଖିଳ ଜଗତେ ଗୋ ନ ଦିଶଇ ଉପମାନ,
ନବ ନୀରଦ ନୀଳମଣି ଅତସୀଶ୍ୟାମସୁନ୍ଦର ସମାନ ଗୋ । ପଦ ।
ନିରେଖୁଥାଇ ଏ ନଗରେ ଯେ ନିତି ବରତରୁଣଙ୍କ ଶିରୀ,
ନୟନକୁ ଲେଶେ ନ ରୁଚଇ ତ ସେ ନୂଆ ନାଗରଙ୍କ ପରି । ୧ ।
ନତନୁ ନିବହ ଭଜି ଯେବେ ଦେହ ନାନା ବିଳାସ ବହିବ,
ନଳିନ-ପେଶଳ ତା ଚରଣତଳ ନିଉଁଛାଳି ଭଳି ହେବ । ୨ ।
ନତ ନୋହିବା କୁଳଜାତ ନବୋଢ଼ା ନ ରସି ପଶିବ କାହିଁ,
ନକ୍ଷତ୍ରନାଥ-ନିକୁରମ୍ବବିଜୟ-ସନ୍ନଦ୍ଧ ଶ୍ରୀମୁଖ ଚାହିଁ । ୩ ।
ନର୍ମେ ମର୍ମଭେଦୀ ଚିଲ୍ଲୀ ଚାରୁଚାପ ନଚାଇ ଜାଣଇ ସେହି,
ନିଃଶେଷ ତ ବାଲ୍ୟ ନୋହିବାରେ ତୁଲ୍ୟ ତାର ଲୋକେ ନାହିଁ କେହି । ୪ ।

---

(ଧ) ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି; କେଡ଼େ ପାରିବାର—କେଡ଼େ ସାହସିକ, ଲାକ୍ଷାଦ୍ୟୁତି—ଅଳତାରଞ୍ଜିମା, ଚେଳାଞ୍ଚଳ ମାରିବାର—କାନି ପଣତରେ ନିଷେଧ କରିବା, ଚାରି ବାର—ଚାରି ଥର, ତରୁଣଶିର ଆଭରଣ—କୃଷ୍ଣ, ଧରାରେ ଲୁଟାଇଲେ—ପୃଥିବୀରେ ଗଡ଼ିଲେ, ଶଙ୍କରଙ୍କର—ମଙ୍ଗଳମୟ ଶିବଙ୍କର, ଧରଣୀନିର୍ଜର—ବ୍ରାହ୍ମଣ ।

ନିନ୍ଦିଲେ ନିନ୍ଦିବେ ନରେ ପଛେ ଏବେ ନିଶ୍ଚୟ କହୁଛି ଜାଣ,
ନ ଚୁମ୍ବିଲେ ତାର ମଧୁର ଅଧର ନ ଠଉରଇ ମୋ ପ୍ରାଣ । ୫ ।
ନୋହିବୁ ଯେବେ ତୁ ଏ ଘଟନା ହେତୁ ତୋ ନାମେ ତେଜିବି ଦେହ,
ନିୟମ କରି କହୁଛି କବିରବି ଏଥି ନ ଘେନ ସନ୍ଦେହ । ୬ ।

## ପ

### ରାଗ—ମନୋରମା

ପ୍ରୀତିପରି କେ ସୁଆଦ ଗୋ,
ପୀୟୂଷ ତୁଲେ ଯା ବାଦ ଗୋ । ପଦ ।
ପହିଲୁ ଗଞ୍ଜାଇ ଗରବ ଗଞ୍ଜାଇ ସମ୍ଭବାଏ ପରମାଦ,
ପର୍ବଶର୍ବରୀଶ-କରନିକରକୁ ବଳେ ତାହା ଆହାଲାଦ ଗୋ । ୧ ।
ପଡ଼ିଗଲେ କାନେ ଜନ୍ମାଏ ବିବେକ ହଜାଇ ଦେବା ଉନ୍ମାଦ ଗୋ,
ପ୍ରିୟଜନ ଯିବା ଆସିବା ସମୟ ଚରଣମଣ୍ଡନ ନାଦ ଗୋ । ୨ ।
ପୁଷ୍ପଶରସିନ୍ଧୁ କେଳିତରୀ କି ସେ ପଛରୁ ପେଲିବା କାଦ,
ପସନ୍ଦ ତାହାଙ୍କୁ ଅରଜିବା ପାଇଁ ଧଇଲେହେଁ ନୀଚ ପାଦ ଗୋ । ୩ ।
ପ୍ରାପତ ନୁହେ ସେ ପ୍ରାଣୀକି ନ ଥିଲେ ପରମେଶ୍ୱର ପ୍ରସାଦ ଗୋ,
ପୟଃପରିଣତ ମଧୁରସା ସିତ ଶର୍କରା କେତେ ବେଷାଦ ଗୋ । ୪ ।
ପରିପନ୍ଥୀ ରୀତି କରି ଯେଉଁ ସତୀ ଆପାଦିଛି ପରିବାଦ ଗୋ,
ପୃଥ୍ୱୀଦେବ କବିରବି ରାୟଗୁରୁ ବୋଲେ କରୁ ଫରିଆଦ ଗୋ । ୫ ।

---

(ନ) ଟୀକା—ରାଧା ସଖୀଙ୍କୁ କହୁଅଛନ୍ତି; ନବନୀରଦ—ନୂଆ ମେଘ, ଅତସୀ—ଫେଶି ଫୁଲ, ନତନୁନିବହ—ଅନେକ କନ୍ଦର୍ପ, ନଳିନପେଶଳ—ପଦ୍ମପରି କୋମଳ ବା ସୁନ୍ଦର, ନିଉଁଛାଳି—ବନ୍ଦାପନା, ନବୋଢ଼ା—ନବଯୁବତୀ, ନକ୍ଷତ୍ରନାଥ—ଚନ୍ଦ୍ର, ନିକୁରମ୍ବ—ସମୂହ, ବିଜୟସନ୍ନଦ୍ଧ—ଜୟ କରିବାକୁ ଉଦ୍ୟତ, ନର୍ମେ—କୌତୁକରେ, ଚିଲ୍ଲୀ—ଭ୍ରୂ ।

(ପ) ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି; ପୀୟୂଷତୁଲେ—ଅମୃତ ସଙ୍ଗେ, ଗଞ୍ଜାଇ—ମାଦକଦ୍ରବ୍ୟ, ପର୍ବଶର୍ବରୀଶକରନିକର—ପୂର୍ଣ୍ଣିମାର ଚନ୍ଦ୍ରକିରଣସମୂହ, କାଦ—କାତ, ପୟଃପରିଣତ—ଦୁଧରେ ଦ୍ରବୀଭୂତ, ମଧୁରସା—ଦ୍ରାକ୍ଷା,

## ଫ

### ରାଗ—ରେଗୁପ୍ତ

ଫେରି ଯା ଗଲେ ଗୋ,
ସଖି ଫାଟିଲା ମୋ କରମ ଜାଣିଲି ଭଲେ । ପଦ ।

ଫୁଟିଲା ଫୁଲବାସେ ପୂରନ୍ତା କ୍ଷିତି, ଫତୁରୀ ଶୁଣି କିପାଁ କଲି ଏ ରୀତି ଗୋ । ୧ । ଫରୁଆ ଗର୍ଭୁ ଫେଇ ନିର୍ଦ୍ଦୋଷ ମଣି, ଫିଙ୍ଗି ଯା ଦେଲି ରୋଷେ ସଦୋଷ ମଣି ଗୋ । ୨ । ଫୁଲିଗଲି ମୁଁ ଚାଟୁ ଶୁଣି ମଦରେ, ଫୁଲଲଲାମ ମର୍ଦ୍ଦି ଦେଲି ପାଦରେ । ୩ । ଫୁଲ୍ଲପଙ୍କଜ ମୃଦୁ ସୁନ୍ଦର ପାଦ, ଫାଟୁ ଯେ ଥିବ ଲଭି ସଂଚାର ଖେଦ । ୪ । ଫନ୍ଦା ଧବ ଯେ ଫିଙ୍ଗି ଦେଲି ପାଣିକି, ଫୁରୁଣା ହେବି କାହା ଘେନି ଏଣିକି । ୫ । ଫେଇ ଦିଅନ୍ତି କଣ୍ଠୁ ଏ ମଣିହାର, ଫନ୍ଦାଇ ପାରିବ କି କବି ମିହିର । ୬ ।

## ବ

### ରାଗ—ମୁଖାବରୀ

ବିଧାତା କି କଲା ରେ, ବ୍ୟର୍ଥେ ଦିନ ଗଲା ରେ, ବାରବାର ମଦବାରଣବରଗତି, ରତିରସବିଦ୍ୟା-ତରଙ୍ଗିଣୀପତି, ଗୁମାନ ଧରି ସରି ଯାଉଛି ଉଚିତ କି ନିକୁଞ୍ଜମହୀ ମଣ୍ଡିବା ସମୟରେ । ପଦ ।

ବେଶେ କରିବାକୁ ତୋରା, ବନାଉ ଅଛି ମୁଁ ଝରା, ବସିଛି ଦୁଃଖପାସୋରା, ବାଢ଼ି ବିରସପସରା । ୧ । ବିମ୍ୱୋଷ୍ଠେ ଚୁମ୍ୱିବା ଆଶେ, ବିନୟେ ମିଳିଲି ପାଶେ, ବଦନକୁ ମହିଲା ସେ, ବର୍ଜିତ କରିଛି ହାସେ । ୨ । ବାଧୁଥିଲେହେଁ ଦୁର୍ଜ୍ଜନେ, ବୁଡ଼େ ମୋ ସ୍ନେହ ମଜ୍ଜନେ, ବୋଧିଲେ ତ ଏବେ ମନେ, ବିବେକନିଧି ନ ଘେନେ । ୩ । ବନ୍ଧୁ

---

ସିତଶର୍କରା—ନିବାତ, ବେଷାଦ—ଶକ୍ତିଶାଳୀ, ପରିପନ୍ଥୀରୀତି—ଶତ୍ରୁ ପରି ଆଚରଣ, ପରିବାଦ—ନିନ୍ଦା, ଫରିଆଦ—ନାଲିସ୍ ବା ଅଭିଯୋଗ, ଆପାଦିଛି—ସମ୍ପାଦିଛି ।

(ଫ) ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି; ଫତୁରୀ—ହତଭାଗୀ, ଫୁଲଲଲାମ—ପୁଷ୍ପନିର୍ମିତ ଭୂଷଣ, ଫୁଲ୍ଲ—ଫୁଟନ୍ତା, ଫୁରୁଣା—ଭାଗ୍ୟବତୀ, ଫନ୍ଦାଇ ପାରିବ—ମଗାଇ ପାରିବ ।

ମୋ ଶିରୀଷଅଙ୍ଗୀ, ବକ୍ରବିଷମଅପାଙ୍ଗୀ, ବସନ୍ତବିହାରସଙ୍ଗୀ, ବଢ଼ାଇ ଦେଲା କେ ଭଙ୍ଗୀ । ୪ । ବିସ୍ମୟ ଛନ୍ଦେ ମୋ ଚିତ୍ତେ, ବନମାଳା ସଖି ମୋତେ, ବିସ୍ମରି ଦେଲା କେମନ୍ତେ, ବୋଲେ ବଳଦେବ ଗୀତେ । ୫ ।



## ରାଗ—କାମୋଦୀ

ଭୂଲୋକର ଭର୍ମଭୂଷା ଯୋଷା ରତନ ରସାଳସା ସେ, ଭଙ୍ଗୁର ତରାଳକଠାଣି, ଭର୍ଗ ଅହିତ ମାର୍ଗଣ ଶତ ସମ୍ମୋହନ ଚାହାଣି, ଭାବତୁନ୍ଦିଳ କେଳିକୋକିଳ, କଳକୂଜନ ବାଣୀ, ଭାରୀ ନିତମ୍ବ ବିମ୍ବ ଉରଜା, ବାରିଜନେତ୍ରା, ନାଗରୀରାଜା, ବଲ୍ଲଭା ମୋର ରଙ୍ଗ ସୁନ୍ଦର ପଲ୍ଲବସାରପାଣି । ୧ । ଭଲା ତା ଲୀଳାଚଞ୍ଚଳ ଡୋଳା ଅପାଙ୍ଗପ୍ରାଙ୍ଗଣଖେଳା, ପସନ୍ଦ କୁନ୍ଦ ସୁନ୍ଦର ମନ୍ଦହାସ, ଭ୍ରୂଯୁଗଖେଳ ଚପଳ ନୀଳଭୁଜଙ୍ଗିନୀ ସଂକାଶ, ଭୟାଭିନୟ ଦୟା ବିନୟ ନୟନ ଫରମାସ, ଭିତ୍ତିରେ ଲେଖି ମୋ ବଦନ, ଚୁମ୍ବନେ ବଳାଇ ମନ, ଚାହିଁ ମୋତେ, କି ସ୍ନେହସ୍ମିତେ ଠାରେ ଦଶନବାସ । ୨ । ଭରତକୃତ ସିଦ୍ଧାନ୍ତ ମତ ସଙ୍ଗୀତ କଳା ସମ୍ପତ୍ତି ନୂତ, ନବୀନ ବନରୁହ ବିପିନଭୃଙ୍ଗୀ, ଭାରତୀଙ୍କର ସାର ଭଣ୍ଡାର, ଲୁଣ୍ଠନ ଖାନାଜଙ୍ଗୀ, ଭୂଷଣତତି ଶୋଭା ସମ୍ପତ୍ତି, ଜନନ ଚତୁରାଙ୍ଗୀ, ଭିଦୁରପାଣି ନୀଳମଣିକୁନ୍ତଳ କୃତଚାରୁବେଣୀ, ବିମ୍ବପ୍ରତିବିମ୍ବ ରଦନଅମ୍ବରା, ପ୍ରାଣସଙ୍ଗୀ । ୩ । ଭଜନ ଇଷ୍ଟମନ୍ତ୍ର କାରିକା ଭାବିନୀ ସେ ମୋ ଜୀବିକା ବିକା, ମୋ ଦେହ ତାହାରି ସ୍ନେହ ଧନେ, ଭଗାରିଜନ ବଦନ ମ୍ଳାନ ହୁଏ ତା ଅବଧାନେ, ଭୂମିରେ କାହିଁ ଶରଣ ନାହିଁ ତାହା ବାହାରେ ଆନେ, ଭରସା ସାର ସେହି ମୋହର ଭଲ ହୋଇବା ଭାଲାକ୍ଷର କାହିଁ ରୂପ କିଶୋରୀ ଉପମାନେ । ୪ । ଭୃତ୍ୟବତ୍ସଳା, ନୃତ୍ୟକୁଶଳା, ଦାସୀ ଅନୁରାଗଶୀଳା, କୁଞ୍ଜନିଳୟପୁଞ୍ଜ ମଞ୍ଜୁଳଖେଳା, ଭୂତେଶପରଶର ବିକାର କୀଲାଲନିଧି ଭେଳା, ଭୂତାନୁକମ୍ପା, ଜଳଧିଶମ୍ପାଗୋରୀ ଆନୀଳଚେଲା, ଭାଷଇ କବିମିହିର ଭାବି ବ୍ରଜରାଜନନ୍ଦନ ଗାନ୍ଧର୍ବୀ ଚାରିପଦବାରିରୁହରେ କରି ମାନସମେଳା । ୫ ।

(ବ) ଟୀକା—ଶ୍ରୀକୃଷ୍ଣଙ୍କର ଭାବନା; ମଦବାରଣବରଗତି—ମତ୍ତଗଜଗମନା, ବାରବାର—ଥରକୁ ଥର, ରତିରସବିଦ୍ୟା-ତରଙ୍ଗିଣୀପତି—ରତିରସବିଦ୍ୟାରୂପ ନଦୀର ପତି ଅର୍ଥାତ୍ ସମୁଦ୍ର । ଝରା—ପୁଷ୍ପଭୂଷଣ, ପସରା—ଦୋକାନ, ବାଧୁଥିଲେ—ବାଧା ଦେଲେହେଁ, ଶିରୀଷଅଙ୍ଗୀ—କୋମଳାଙ୍ଗୀ ।

## ମ

### ରାଗ—ଶୋକକାମୋଦୀ

ମନ୍ଦହାସି ଯିବା ଆସ ରେ । ପଦ ।

ମହେନ୍ଦ୍ରମଣି ମୂରତି ପୁଣି ମନେ ସଂକଳ୍ପିଛନ୍ତି ରାସରେ । ୧ । ମୁରଲୀଯନ୍ତ୍ର ମୋହନମନ୍ତ୍ର ମୋହି ନେଲାଣି ମୋ ମାନସରେ । ୨ । ମୃଦୁଲଳିତ ମଧୁରଗୀତ ମନା କଲାଣି କୁଳତ୍ରାସ ରେ । ୩ । ମାତି ସସ୍ନେହେ ମୁକୁନ୍ଦଦେହେ ମିଶି ଖଞ୍ଜିବା ବାହୁ ପାଶରେ । ୪ । ମୁଖୁ ତାହାର ମରନ୍ଦାହାର ମାଗ ଦଶନେ ଧରି ଘାସ ରେ । ୫ । ମହା ପ୍ରଚଣ୍ଡ ମଦନକାଣ୍ଡ ମୁନେ ହେବଟି ପ୍ରାଣ ନାଶ ରେ । ୬ । ମହୀଗୀର୍ବାଣେ ମୁଖ୍ୟ ଯେ ଭଣେ ମାନସୁ କଲା ପରମାସ ରେ । ୭ ।

## ଯ

### ରାଗ—ବରାଡ଼ି

ଯଦୁମଣି ଯିବେ ପୁଣି ଯାମିନୀ ନ ସରେ ଆଉ ନାହିଁ ନାଡ଼ି । ପଦ ।

ଯନ୍ତର କି ଜାଣୁ ଯେବେ, ଯେମନ୍ତେ ହୋଇଲେ ଜବେ, ଯାତ୍ରା ଅନୁକୂଳମୂଳ ଦେ ଉପାଡ଼ି । ୧ । ଯୁଗ୍ମ ନୋହିଥିଲେ କ୍ଷଣେ, ଯୁଗୁଁ ମୁଁ ଅଧିକ ମଣେ, ଯୁବଚନ୍ଦ୍ର ତ ଆମ୍ଭର ଲାଗି ଶାଢ଼ୀ । ୨ । ଯମରୁ ଦାରୁଣ ମାରଯବନଶର ପ୍ରହାର, ଯାତନାକୁ କେ ଆମ୍ଭର ଦେବ ଆଡ଼ି । ୩ । ଯୁବତିନେତ୍ର-ଅଞ୍ଜନ, ଯାମଳତରୁଭଞ୍ଜନ, ଯେବେ ଯିବେ ନୋହିବେଟି କେ ଆଗାଡ଼ି । ୪ । ଯତ୍ନେ କବିରବି ବୋଲେ, ଯୋଗ ଥିଲା ଏ କି ଭାଲେ, ଯାବନ୍ତ ତେଜିବା ତହିଁ କରତାଡ଼ି । ୫ ।

---

(ଭ) ଟୀକା—ଶ୍ରୀକୃଷ୍ଣଙ୍କର ଅନୁଚିନ୍ତା; ଭୂଲୋକର ଭର୍ମଭୂଷା—ପୃଥିବୀର ସ୍ୱର୍ଣ୍ଣ ଅଳଙ୍କାର ସଦୃଶ। । ଭର୍ଗଅହିତ—କନ୍ଦର୍ପ, ମାର୍ଗଣ—ବାଣ, ଭରତ—ସଙ୍ଗୀତଶାସ୍ତ୍ରର ଆଚାର୍ଯ୍ୟ, ନୁତ—ପ୍ରଶଂସିତ, ବନରୁହବିପିନ—ପଦ୍ମବନ, ଖାନାଜଙ୍ଗୀ—ଜମାଦାର, ଭାଲାକ୍ଷର—ଅଦୃଷ୍ଟ ଲିପି, ଭୂତେଶପର—କନ୍ଦର୍ପ, କୀଲାଳନିଧି—ସମୁଦ୍ର ।

(ମ) ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି; ମହେନ୍ଦ୍ରମଣି ମୂର୍ତ୍ତି—ଇନ୍ଦ୍ରନୀଳମଣିକାନ୍ତିଧାରୀ, କୁଳତ୍ରାସ—ବଂଶମର୍ଯ୍ୟାଦାଜନିତ ଭୟ, ମରନ୍ଦାହାର—ମକରନ୍ଦରୂପ ଖାଦ୍ୟ, ଘାସ—କୁଟା, ମହୀଗୀର୍ବାଣ—ବ୍ରାହ୍ମଣ ।

# ର

## ରାଗ—ମୁଖାବରୀ

ରାମାବର ରେ, ରୋଷ ବହିଲୁ କି ନଉକରରେ,

ରଦନର ବ୍ରଣ ଦେଖି ଦରପଣ ବିମ୍ବରେ ଦଶନାମ୍ବରରେ । ପଦ ।

ରୁଦ୍ରାଣୀଙ୍କ ବ୍ରତ, ଦିନେ ସନ୍ତପତ, ହୋଇ ମନମଥଜ୍ୱରରେ, ରମ୍ଭା ସମ୍ଭାବନାଯୋଗ୍ୟ ଊରୁମୂଳ ଛୁଇଁ ଦେବାରୁ ନଖର ରେ । ୧ । ରାତି ପାହିଗଲା ବୋଲି କମ୍ପୁଥିଲୁ ଗୁରୁଜନଙ୍କର ଡରରେ, ରତି ଶେଷେ ହଟି ଛନ୍ଦିଲି ତୋ କଟି ଯାହା ପୀତଫେଟା ଫେରରେ । ୨ । ରାଣ ବୋଲୁ ଠେସି ନଖି ଭାଷି ହସି ପଶିଗଲୁ ଅନ୍ତଃପୁରରେ, ରସିକା ରେ ପାଣି ବାଢିବାର ଜାଣି ନାହିଁ ମୁଁ ତୋ ପୟୋଧରରେ । ୩ । ରଙ୍କ ସଦୃଶ ତ ହେଉଥାଏ ଚିତ୍ତ ବୁଡ଼ି ତୋ ଶୋଭା ନିର୍ଝରରେ, ରମିବାରେ ଚେତା ରହେ କି ପଣ୍ଡିତାମଣି ବିବେଚନା କର ରେ । ୪ । ରସିଲେ ଏ ବାଣୀ ଶୁଣି ଠାକୁରାଣୀ ମୋହନମୁରଲୀଧରରେ, ରଥକୁଳ-ଜଳନିଧି-ବୀଚି ବଳଦେବ ବନ୍ଦେ ଅବସରରେ ॥

# ଲ

## ରାଗ—ସାବେରୀ

ଲାଗିଲା ରେ ଲାବଣ୍ୟନିଧିକି ଶ୍ୟାମ ଲଟ,

ଲୋଚନେ ଦେଖିଲେ ଲୋକ ମୁକୁଟଚନ୍ଦ୍ରକଯାକ

ଲାକ୍ଷାରେ ହେବାରେ ନଟପ୍ଲଟ । ପଦ ।

---

(ଯ) ଟୀକା—ଲଳିତାଙ୍କୁ ରାଧା କହୁଅଛନ୍ତି; ନାଡ଼ି ନାହିଁ—ଜ୍ଞାନ ନାହିଁ, ଜବେ—ଶୀଘ୍ର, ଆଡ଼ିଦେବା—ବ୍ୟର୍ଥ କରିଦେବା, ଆଗାଡ଼ି—ଅଗ୍ରଗାମୀ ।

(ର) ଟୀକା—ଶ୍ରୀକୃଷ୍ଣ ରାଧାଙ୍କୁ କହୁଅଛନ୍ତି; ନଉକର—ଚାକର, ରଦନ—ଦାନ୍ତ, ଦଶନାମ୍ବର—ଅଧର, ରୁଦ୍ରାଣୀଙ୍କ ବ୍ରତ—ଗୌରୀବ୍ରତ, ନଖର—ନଖଦ୍ୱାରା, ପୀତଫେଟା—ହଳଦିଆ ପିନ୍ଧା ଲୁଗା, ନଖି—ଦୁଇଟି ଅଙ୍ଗୁଳିରେ ନଖ ପରସ୍ପର ଘଷିଲେ ରାଣ କାଟେ ନାହିଁ, ଏହି ପ୍ରଥାକୁ 'ନଖି' ବୋଲି କହନ୍ତି । ରଥକୁ ଜଳନିଧି ବୀଚି—ରଥବଂଶରୂପ ସମୁଦ୍ରର ଲହରୀସ୍ୱରୂପ ।

ଲବଙ୍ଗଲତା ଭବନେ, ବ୍ୟସ୍ତ ହୋଇ ନିଧୁବନେ, ପଡ଼ିଅଛି ପୁଣି ଫୁଲଖଟ; ଲୋହିତ ସୁଧାଂଶୁ-କଳା ନୀଳଲୋହିତ ବହିଲା ପରି ପୁଣି ଦିଶେ ସ୍ତନଘଟ । ୧ । ଲଳିତା ଦେଖିଲା ପୁଣି, ଲାଗି ହେବାର କାଛେଣୀ, କରି ନୀଳଚେଳ ନୂଆନଟ; ଲହକେ ପୁଣି କିଶୋରୀରତନ ଚେତା ପାସୋରି, ପିନ୍ଧି ପକାଇଲା ପୀତପଟ । ୨ । ଲଜ୍ଜା ହେବାରୁ ପ୍ରବଳ, ହେଲେ ହେଲେ ଅନୁକୂଳ, ରାଜି ନ କରିବାରୁ ଉଲଟ; ଲକ୍ଷ ପରିମିତ ଆନ, ପକାଇ ସେହି ବିଧାନ ହେବାଯାଏ କଲେ ପୁଣି ହଟ । ୩ । ଲେଖାଧିପ ମଣିମୟ ଦିଶୁଛି ଶଶୀ ଉଦୟ, ସମୟେ ଅର୍ଯମାଜେମାତଟ; ଲଳିତ ଶମ୍ପାବଲ୍ଲରୀ, ଜିଣି ତାହା ମଧ୍ୟେ ଶିରୀ, ବିଳସୁଛି ପୁଣି ଝଟଝଟ । ୪ । ଲୁଳିଗଲାନି ନିକୁଞ୍ଜସଞ୍ଚାରୁ ଚରଣକଞ୍ଜ, କହେ କବିରବି ମଧୁଲିଟ; ଲୁଚାଉଥାଏ ଯୁବତୀ-ରତନ ମୋହନ ପ୍ରୀତି, ନ ଜାଣଇ ବୋଲି ମୁଁ ନିପଟ । ୫ ।

## ବ

### ରାଗ—ରେଗୁପ୍ତ

ବନ୍ଧୁ ମୋ କାହୁଁ କିସ ଶୁଣିଲା ରେ, ବିଷ ତୁଲ୍ୟ ତ ମୋତେ ମଣିଲା ରେ,
ବଚନ ନ କହିଲା, ବିନୟ ନ ସହିଲା,
କି ହେଲା, ମହିଳାବର ରୁଷି ରହିଲା ରେ । ପଦ ।

ବସନ୍ତକାଳ, ବିଚ୍ଛେଦରେ ଏକାଳ, ବହଇ ମଳୟାନିଳ, ବିଯୋଗିପ୍ରଳୟାନଳ, ବିପକ୍ଷ ସଙ୍ଗରେ ତ ଗଣିଲା ରେ । ୧ । ବାଳାବର ସେ, ବେଳେ ମୋରେ ନ ରୁଷେ, ବିବେକ ନ କରି ଲେଶେ, ବିଳସିବାର ହରଷେ, ବରଜି ଏ ଦୁର୍ଯୋଗ କିଣିଲା ରେ । ୨ । ବିଡ଼ିଆ ବିଡ଼ି, ବଢ଼ାଇଲି ସଜାଡ଼ି ବାତ୍ସଲ୍ୟପୀୟୂଷ ଭିଡ଼ି, ବସିଲା ଶ୍ରୀମୁଖ

---

(ଲ) ଟୀକା—ସଖୀମାନେ ରାଧାକୃଷ୍ଣଗତ ପ୍ରୀତି ବର୍ଣ୍ଣନ କରୁଅଛନ୍ତି; ଲାବଣ୍ୟନିଧି—ପରମା ସୁନ୍ଦରୀ ରାଧା, ଲଟ—ଜଞ୍ଜାଳ, ଲାକ୍ଷା—ଅଳତାର ବୋଳ, ନିଧୁବନ—କ୍ରୀଡ଼ାକୌତୁକ, ଲୋହିତ ସୁଧାଂଶୁକଳା—ରକ୍ତବର୍ଣ୍ଣ ଚନ୍ଦ୍ରରେଖା, ନୀଳଲୋହିତ—ମହାଦେବ, କାଛେଣୀ ପରି ଲାଗିହେବା—ଅଣ୍ଟାରେ ଭିଡ଼ି କରି ପିନ୍ଧିବା, ନୀଳଚେଳ—ନୀଳବସ୍ତ୍ର (ରାଧାଙ୍କର); ନୂଆନଟ—ଶ୍ରୀକୃଷ୍ଣ, ଲହକେ—ଅବନତ ହୋଇ ନା ନଇଁପଡ଼ି; ଆନ—ରାଣ, ଲେଖାଧିପ ମଣିମୟ—ଇନ୍ଦ୍ରମଣି ତେଜଃପୂର୍ଣ୍ଣ, ଅର୍ଯମାଜେମାତଟ—ଯମୁନା କୂଳ, ଶମ୍ପାବଲ୍ଲରୀ—ବିଦ୍ୟୁତ୍ ଲତା, ଲୁଳି ଗଲାନି—କ୍ଳାନ୍ତ ହୋଇ ପଡ଼ିଲାଣି ।

ମୋଡ଼ି, ବକ୍ରନାଳ କଞ୍ଜକୁ ଜିଣିଲା ରେ । ୩ । ବିକଳ ହୋଇ ବହୁ ଅଶ୍ରୁ ବୁହାଇ ବଦନ ବିଧୁ ନୁଆଇଁ; ବରତୁଳସ୍ତନେ ଥୋଇ, ବରୁଣାଦ୍ରିଚନ୍ଦ୍ରକୁ ଟାଣିଲା ରେ । ୪ । ବିଅର୍ଥେ ଦିନ ବଞ୍ଚାଉଅଛି ମୋ ଧନ, ବିଷମ ଏ ଯଉବନ ବିଜୁଳିଠାରୁ ଜବନ, ବଳଦେବ କବୀନ ଭଣିଲା ରେ । ୫ ।

## ଶ

### ରାଗ—ତୋଡ଼ିମୁଖାବରୀ

ଶ୍ରୀହରି ହେ ରଜନୀ ପାହିଲା, ଶତପତ୍ର ବନରୁ ପବନ ମନ୍ଦ ମନ୍ଦ ବହିଲା, ଶମନଭଗିନୀର ନୀରଜାଙ୍ଘ୍ରିନୂପୁର ପରିପୂରିତ ମନୋରଥ ରଥାଙ୍ଗସ୍ୱର, ଶଶି-କର-ଶୀକର ନିକର ଅସ୍ତଧର ବରଚୂଳକୁ ମାତ୍ର ଚାହିଁଲା । ପଦ ।

ଶ୍ରମ-ସିନ୍ଧୁ ମଧ୍ୟେ କେ ସାହସତରୀ ବାହିଲା, ଶଙ୍କା ଲେଶ ହେଲେ ଦିବ୍ୟଚିତ୍ତକୁ ନ ପାଇଲା । ୧ । ଶମ୍ଭୁପରିପନ୍ଥୀ ତୂଣେ କେତେ ବାଣ ବହିଲା । ଶୃଙ୍ଗାର-ଶାସ୍ତ୍ରକୁ ନିଶି ସମୟ ନ ସହିଲା । ୨ । ଶାବକ ମୃଗାକ୍ଷୀ କେତେ ଜନ୍ମ ତପେ ଦାହିଲା । ଶମ୍ପାୟୁଧମଣି ଶ୍ୟାମତନୁ ମନ ମୋହିଲା । ୩ । ଶରଦିନ୍ଦୁ ସୁଧାସୃତିନାଳକୁ କି ବହିଲା, ଶ୍ରବଅବତଂସ କଳହଂସ ଧ୍ୱନି ନୋହିଲା । ୪ । ଶମ୍ବରାରି ସଉଚିକ ଏ ଭୀତିକି ବହିଲା, ଶରସୂଚୀରେ ଶରୀର ଯୁଗ ଗାଢ଼େ ସିଇଁଲା । ୫ । ଶୂର କବିକର ପଦକଞ୍ଜତଳେ କହିଲା, ଶେଷ ଆଜ ନିଶାକୁ ରହିଲେ ପଛେ ରହିଲା । ୬ ।

---

(ବ) ଟୀକା—ଶ୍ରୀକୃଷ୍ଣଙ୍କ ରାଧିକାଗତ ଚିନ୍ତା; ବିଚ୍ଛେଦରେ ଏ କାଳ—ବିରହ ବିଷୟରେ ଏହା ଯମସ୍ୱରୂପ, ବିଯୋଗି ପ୍ରଳୟାନଳ—ବିରହୀ ପକ୍ଷରେ ପ୍ରଳୟ କାଳର ଅଗ୍ନି ପରି, ବେଳେ—ଥରେ, ବିଡ଼ିଆ ବିଡ଼ି—ପାନଖିଲ, ବାତ୍ସଲ୍ୟପୀୟୂଷ ଛଡ଼ି—ସ୍ନେହରୂପ ଅମୃତକୁ ଡାକିଦେଇ ଅର୍ଥାତ୍ ସ୍ନେହଶୂନ୍ୟ ହୋଇ, ବକ୍ରନାଳକଞ୍ଜ—ଯେଉଁ ପଦ୍ମର ନାଡ଼ ବଙ୍କା, ବରୁଣାଦ୍ରିଚନ୍ଦ୍ର—ପଶ୍ଚିମ ଦିଗର ଅସ୍ତଗାମୀ ଅତଏବ ଆରକ୍ତ ଚନ୍ଦ୍ର, ଜବନ—ଚଞ୍ଚଳ, କବୀନ—କବିସୂର୍ଯ୍ୟ ।

(ଶ) ଟୀକା—ସଖୀମାନେ କୁଞ୍ଜଗୃହଗତ ଶ୍ରୀକୃଷ୍ଣଙ୍କୁ ନିଦରୁ ଉଠାଉ ଅଛନ୍ତି; ଶତପତ୍ରବନରୁ—ପଦ୍ମବନରୁ, ଶମନଭଗିନୀର ନୀରଜାଂଘ୍ରିନୂପୁରପରିପୂରିତ ମନୋରଥ ରଥାଙ୍ଗସ୍ୱର—ଯମୁନାର ପଦ୍ମପାଦର ନୂପୁରଶବ୍ଦ ସଦୃଶ ପୂର୍ଣ୍ଣମନୋରଥ ଚକ୍ରବାକମିଥୁନର ଶବ୍ଦକୁ ଘେନି ପଦ୍ମବନର ପବନ ଧୀରେ ଧୀରେ ବହିଲା । ଶଶିକରଶୀକରନିକର—ଚନ୍ଦ୍ରକିରଣରୂପ ଜଳକଣାସମୂହ, ଅସ୍ତଧର-

## ସ

### ରାଗ—ଭୈରବ

ସାଢ଼ୀ କାହିଁ ଦେବଟି ହେ, ସଙ୍କୋଚେ ମୋର ପ୍ରାଣ ଯିବଟି ହେ, ସୁନ୍ଦର ହେ ମଲି, ଏ ବଡ଼ ଛଇଳି, ଛାଉଲିରେ ଜାତି ନେବଟି ହେ । ପଦ ।

ସାକ୍ଷାତ ଦେଖିଲେ ହେଲେ ଲୋଚନେ, ସମସ୍ତଙ୍କୁ ଜଟି ହୁଏ ବଚନେ, ସାଧିଅଛି ଏ କି ସର୍ବଜ୍ଞ ଦେବୀ କି ଏହାକୁ ପାରିବ କେ ବଟି ହେ । ୧ । ସହସ୍ର କୋଟି ସପତଟି ମୋର, ସତେ କାହିଁ ଛପାଇଛ ଅମ୍ବର, ସୁନାପୁଅ ପରା, ସଖୀ ଆଗେ ଧରା ନ ପଡ଼ୁ ମୋତେ ରଖିବଟି ହେ । ୨ । ସୁଖସଙ୍ଖାଳି ହେ ଦୁଃଖପାସୋରା, ସେ ବିଧିକି ନ ମଙ୍ଗିବାରୁ ପରା, ସଢ଼ାଉଛ ଲାଜ ଯନ୍ତେ ନିଶି ଆଜ, ସବୁ ସେହିପରି ହେବଟି ହେ । ୩ । ସରୁକଟୀରେ ପୀତଚେଳ ଭିଡ଼ି, ସୀମା ପାର କରିଅଛ ମୋ ଶାଢ଼ୀ, ସମର୍ପିତ ଜନ, ସଂକୋଚରେ ଲୀନ, ହେଲେ ଆପଣା ଲାଘବଟି ହେ । ୪ । ସଂସାରେ ନ ଥିବାର ତୁମ୍ଭ ସ୍ନେହ, ସୁରତ ସରିଲେ ସହାୟ ନୁହ, ସରୋଜାକ୍ଷିଜାତି, କଦମ୍ବ ବ୍ରତତୀ ମନ୍ଦିରେ ସପନ ଦେଖିବଟି ହେ । ୫ । ସମ୍ପାଦିଛ ସତେ କାହିଁ ଆପଣ, ସୀମନ୍ତିନୀକି ସଢ଼ାଇବା ଗୁଣ, ସ୍ମରୁଥିବ ଅନୁଦିନେ କବିଭାନୁ ରାୟଗୁରୁ ବଳଦେବଟି ହେ । ୬ ।

## ଷ

### ରାଗ—ତୋଖି

ଷୋଡ଼ଶ ସହସ୍ର ବ୍ରଜ, ସରୋଜନେତ୍ରା ସମାଜ, ବିପିନ ମରନ୍ଦପାନେ ଅତି ସରାଗେ । ଷଟପଦ ଯୁବବର, ପରି ଶିଖଣ୍ଡଶେଖର ବିହରିଲେ ଶରଦ ରଜନୀ ବିଭାଗେ । ଷଡ଼ାସ୍ୟଜନକାହିତର; ଷଷ୍ଠବାଣ ବନିଲେ ସେ ମୁରଲୀଧର । ୧ । ଷଡ଼କ୍ଷର ମନ୍ତ୍ର ଜପ, କରିଥିଲେ, କି ଅନଳ୍ପ, କଷ୍ଟ ଯାଏ ନବ ଗୋପତରୁଣୀ ଜନେ । ଷଡ଼ଙ୍ଗ

---

(ସ) ବରଚୂଳ—ଅସ୍ତପର୍ବତର ଅଗ୍ରଭାଗ, ଶମ୍ଭୁପରିପନ୍ଥୀ—କନ୍ଦର୍ପ, ଶମ୍ପାୟୁଧମଣି ଶ୍ୟାମତନୁ—ଇନ୍ଦ୍ରନୀଳମଣି କାନ୍ତିଧାରୀ କୃଷ୍ଣଙ୍କର ଶ୍ୟାମ ଶରୀରକୁ, ସୁଧାସୃତି—ପଦ୍ମ, ଶମ୍ବରାରି—କନ୍ଦର୍ପ, ସୌଚିକ—ଦରଜୀ, ଶୂରକବି—କବିସୂର୍ଯ୍ୟ । ଟୀକା—ରାଧା କୃଷ୍ଣଙ୍କୁ କହୁଅଛନ୍ତି; ଛଇଳି—ରସିକା, ପରିହାସପ୍ରିୟା; ଛାଉଲି—ପରହାସ, ଜଟି ହୁଏ—ବିବ୍ରତ କରେ, ବଟି ପାରିବ—ଭଣ୍ଡିଦେବ ବା ଠକିଦେବ, ଶପଥ—ରାଣ, ଅମ୍ବର—ଲୁଗା, ସରୋଜାକ୍ଷି ଜାତି—ପଦ୍ମଲୋଚନା ନାରୀଜାତି, କଦମ୍ବବ୍ରତତୀ ମନ୍ଦିରେ—କେଳିକଦମ୍ବ ଲତାକୁଞ୍ଜରେ, ସଢ଼ାଇବା—କଷ୍ଟଦେବା ।

ବେଦ ସ୍ତବନ-ଯୋଗ୍ୟବାହୁ ଆଲିଙ୍ଗନ, ମୁଖ ସଉଭାଗ୍ୟର ହୋଇଲେ ଭାଜନ । ଷଡୁପାୟ ବିଚାରି ହରି, ଷଡ଼ାରାତି ପ୍ରଥମକୁ ଦେଲେ ନିବାରି । ୨ । ଷଡ଼ଜାଦି ସ୍ୱର ସଙ୍ଗୀତ, ମଣିମଣ୍ଡନ ଶିଞ୍ଜିତ, ହେଲା ବୀଣା ଆଦ୍ୟ ବାଦ୍ୟରବନିବହ । ଷଟପଞ୍ଚାଶତ କୋଟି, ଜୀବଙ୍କ ହୃଦୟେ ଘୋଟି, ପ୍ରସରିଲା ପରଂବ୍ରହ୍ମାନନ୍ଦ ପ୍ରବାହ । ଷଣକ୍ଷୀଣ ନୋହିଲା ପରି, ଷୋଡ଼ଶଦାଏ ମଣିଲେ ମୋଦେ ବିହରି । ୩ । ଷଡ଼ରତୁ ରୀତି ବନଯାକ ହୋଇଲା ଶୋଭନ, ସୁରବାରବିଳାସିନୀମାନେ ନାଚିଲେ; ଷଟସପ୍ତବିଂଶକୋଟି ଦେବେ ବିଷ୍ଣୁପଦେ ଗୋଟି, ହୋଇ ମୋଦେ ଦୁନ୍ଦୁଭି ବାଦନ ରଚିଲେ । ଷ-କାର ନିୟମ ସରିଲା, ଷଟ୍‌କର୍ମ-ନିରତ କବିରବି କହିଲା ।

## ହ

### ରାଗ—କାଫି

ହେଲେ ହରିହୟଭୃତି ଆଜି ମିଳିଲା ରେ । ପଦ ।

ହାସ ପୀୟୂଷ-ଶୀକର, ହୃଷ୍ଟମୁଖ ଶଶିକର, ସନ୍ଦେହ ଅନ୍ଧକାରକୁ ଗିଳିଲା ରେ । ୧ । ହରଷେ ମୋ ଚାଟୁବାଣୀ, ହୃଦୟକଞ୍ଜକୁ ଆଣି, ହରିଣାକ୍ଷୀ ଯା ମୋ କୋଳେ ଖେଳିଲା ରେ । ୨ । ହଜାରେ ଚୁମ୍ବିଲି ଘଷି, ଗଣ୍ଡେ ଗଣ୍ଡ ଇଷି ଇଷି ଗିର ସଙ୍ଗେ କି ରସ ଉଛୁଳିଲା ରେ । ୩ । ହୃଦେ ଲଗାଇଲି ସ୍ତନ, ହରିତାଳ ତାଳ ଧନ, ମନ ଘନ ପରିରମ୍ଭେ ବଳିଲା ରେ । ୪ । ହରିଲି ବସନ ଯହୁଁ, ହସି ବ୍ୟାଜେ ଉହୁଁ ଉହୁଁ ଭାଷୁଥିଲା ମୁଖେ ମାତ୍ର ଚଳିଲା ରେ । ୫ । ହରିଦଶ୍ୱଦେବସୁତା, ଟଟ ନାଟ ତତ୍ପରତା, ହାଟକାଙ୍ଗୀ ଲାଭ ଫଳ ଫଳିଲା ରେ । ୬ । ହଟେ ପୂରି ଅଭିଳାଷ, ହେବାର ମୁଁ ପୂର୍ଣ୍ଣତୋଷ, କବିରବି ରାୟଗୁରୁ କଳିଲା ରେ । ୭ ।

---

(ଷ) ଟୀକା—ବନବିହାରବର୍ଣ୍ଣନ : ସରୋଜନେତ୍ରାସମାଜ ବିପିନମରନ୍ଦ ପାନେ—ପଦ୍ମନେତ୍ରା-ନାରୀସମୂହରୂପ ବନର ମକରନ୍ଦ ପାନରେ, ଷଡ଼ାସ୍ୟଜନକାହିତର—କାର୍ତ୍ତିକେୟ ପିତାଙ୍କର ଶତ୍ରୁ ଅର୍ଥାତ୍ କନ୍ଦର୍ପର, ଷଷ୍ଠବାଣ ବନିଲେ—କନ୍ଦର୍ପର ୫ ଗୋଟି ବାଣ, ମାତ୍ର ଶ୍ରୀକୃଷ୍ଣ ତାହାର ଷଷ୍ଠବାଣ ସ୍ୱରୂପ ହୋଇଥିଲେ । ଷଡ଼କ୍ଷରମନ୍ତ୍ର—ଓଁ ନମଃ ଶିବାୟ ଏହି ମନ୍ତ୍ର, ଅନଳ୍ପକଳ୍ପ—ବହୁଯୁଗ, ଷଡ଼ଙ୍ଗ ବେଦ—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ, ଛନ୍ଦ—ଏହି ଛ ଅଙ୍ଗ ସହିତ ବେଦ, ଷଡ଼ାରାତି ପ୍ରଥମ—କାମାଦି ଛ ଶତ୍ରୁର ପ୍ରଥମ ଅର୍ଥାତ୍ କାମ; ଷଡୁପାୟ—ସାମ, ଭେଦ, ଦାନ, ନତି, ଉପେକ୍ଷା ଓ ରସାନ୍ତର—ମାନଭଙ୍ଗ ନିମିତ୍ତ ନାୟକ ଅବଲମ୍ବିତ ଏହି ଛଅଗୋଟି ଉପାୟ ।



### ରାଗ—ସୋମ

 କ୍ଷୀଣମଧମା ରେ, କ୍ଷଣେ ନୋହିବାଟି ଭିନ୍ନ,
କ୍ଷେମତନ୍ତୁ ପରି ହରିବା ଏ ଯଉବନ । ପଦ ।

କ୍ଷୋମରୂପିଣୀ ଚନ୍ଦ୍ରଚାରିମଚୌର୍ଯ୍ୟ ଧୂର୍ଯ୍ୟତରାନନେ, କ୍ଷୁଣ୍ଣ ବାସବ ନୀଳ ଚାମର ଚୂର୍ଣ୍ଣକୁନ୍ତଳ ଶୋଭନେ, କ୍ଷୌଣୀଭୃଦ୍‌ବର, ପୀବର ସ୍ତନମଣ୍ଡନେ, ଯମୁନାବନେ, କ୍ଷପାକରକରେ ଖେଳୁଥିବା ଆଲିଙ୍ଗନେ । ୧ । କ୍ଷୌଦ୍ରସାର ସମାନଭାଷୀ ସୁ-କୁନ୍ଦସୁନ୍ଦରହାସୀ ରେ, କ୍ଷ୍ୱେଡ଼ଭୂଷିତକଣ୍ଠ ପଦସରୋଜ ସେବନ୍ତୁ କାଶୀରେ, କ୍ଷୀବକୁଞ୍ଜରଗାମିନୀ ମୁଁ ଲଲାମ ଖୋସିଲି ତୋ ଶିରେ, କ୍ଷାଳିତ ହୋଇ ତୋ ପ୍ରେମପୀୟୂଷ ରାଶିରେ । ୨ । କ୍ଷୀରନୀର ସୁଧାଂଶୁ କୈରବ ବାରି ମୀନ ବରାବରେ, କ୍ଷେପିବା ପ୍ରତି ରାତି ବାସର କାମକେଳି ଦରୋଦରେ କ୍ଷୁଦ୍ରଘଣ୍ଟ ସମୂହ ନୂପୁରୁ ହଂସକାଦି ନିନାଦରେ, କ୍ଷମେ ପୂଆଇବା ମାର ତାପକୁ ମୋଦରେ । ୩ । କ୍ଷୁବ୍ଧ ଦୁଗ୍ଧ ସମୁଦ୍ରବୀଚି ବିକୀର୍ଣ୍ଣବିନ୍ଦୁ ଶୁଚିସ୍ମିତେ, କ୍ଷମ କୋମଳ ହେମଚମ୍ପକ-ଗୌରବିଗ୍ରହମଣ୍ଡିତେ, କ୍ଷୋଦ ହିଙ୍ଗୁଳଲାଲ ଦନ୍ତ-ଦୁକୂଳଶୋଭିନି ପଣ୍ଡିତେ, କ୍ଷିତିସୁର କବିକଞ୍ଜବାନ୍ଧବବନ୍ଦିତେ । ୪ ।

---

(ହ) ଟୀକା—ଶ୍ରୀକୃଷ୍ଣ ରାଧିକାଙ୍କ ପ୍ରଣୟର ଅନୁସ୍ମୃତି କରୁଅଛନ୍ତି : ହେଳେ—ଅକ୍ଲେଶରେ, ହରିହୟଭୃତି—ଇନ୍ଦ୍ରସମ୍ପତ୍ତି, ହାସପୀୟୂଷଶୀକର—ହାସ୍ୟରୂପ ଅମୃତର କଣିକା, ଘନପରିରମ୍ଭ—ଗାଢ଼ ଆଲିଙ୍ଗନ, ବ୍ୟାଜେ—ଛଳରେ, ହରିଦଶ୍ୱଦେବସୁତା—ସୂର୍ଯ୍ୟକନ୍ୟା, ଯମୁନା; ହାଟକାଙ୍ଗୀ—ସୁବର୍ଣ୍ଣପରି ଗୌର ଅଙ୍ଗ ଯାହାର, ହଟେ—ବଳାତ୍କାରରେ, ପୂରି—ପୂର୍ଣ୍ଣ କରି ।

(କ୍ଷ) ଟୀକା—ପୂର୍ଣ୍ଣକାମ ଶ୍ରୀକୃଷ୍ଣ ରାଧାଙ୍କୁ କହୁଅଛନ୍ତି : କ୍ଷେମତନ୍ତୁ—ମଙ୍ଗଳସୂତ୍ର । କ୍ଷୋମରୂପିଣୀ—ଦୁକୂଳରୂପିଣୀ, ଚନ୍ଦ୍ରଚାରିମଚୌର୍ଯ୍ୟଧୂର୍ଯ୍ୟତରାନନେ—ଚନ୍ଦ୍ରର ଚାରୁତ୍ୱ ଚୋରି କରିବାରେ ଅତି ନିପୁଣ ଆନନ ଯାହାର, ଅର୍ଥାତ୍ ଯାହାର ମୁଖର ସୌନ୍ଦର୍ଯ୍ୟ ଚନ୍ଦ୍ରର ସୌନ୍ଦର୍ଯ୍ୟ ଅପେକ୍ଷା ଅଧିକତର ମନୋହର । କ୍ଷୁଣ୍ଣବାସବ ନୀଳଚାମର ଚୂର୍ଣ୍ଣକୁନ୍ତଳ ଶୋଭନେ—ଶାଣଦ୍ୱାରା ଘଷା ହୋଇଥିବା ଇନ୍ଦ୍ରନୀଳମଣି ଓ ଚାମର ପରି ଚୂର୍ଣ୍ଣକୁନ୍ତଳଦ୍ୱାରା ପରିଶୋଭିତ । କ୍ଷୌଣୀଭୃଦ୍‌ବର—ପର୍ବତଶ୍ରେଷ୍ଠ, ପୀବର—ପୃଥୁଳ, କ୍ଷପାକରକରେ—ଚନ୍ଦ୍ରକିରଣରେ, କ୍ଷୌଦ୍ରସାର ସମାନଭାଷୀ—ମହୁର ସାରପରି ଭାଷା ଯାହାର, ମିଷ୍ଟଭାଷୀ, ସୁକୁନ୍ଦ ସୁନ୍ଦରହାସୀ—ସୁନ୍ଦର କୁନ୍ଦପୁଷ୍ପ ପରି ହସ ଯାହାର, କ୍ଷ୍ୱେଡ଼ଭୂଷିତ କଣ୍ଠ—ବିଷଦ୍ୱାରା ଭୂଷିତ କଣ୍ଠ ଯାହାର, ମହାଦେବ; ପଦସରୋଜ ସେବନ୍ତୁ କାଶୀରେ—ବାରାଣସୀରେ

ମହାଦେବଙ୍କ ପାଦପଦ୍ମ ସେବା କରିଥିବା ହେତୁ; କ୍ଷୀବକୁଞ୍ଜରଗାମିନୀ—ମତ୍ତଗଜଗମନା, ଲଲାମ—ଭୂଷଣ, କ୍ଷାଳିତ—ଧୌତ, କୈରବ—କୁମୁଦ, କଇଁ, ବରାବରେ—ସମାନରେ, ବାସର—ଦିନ, ଦରୋଦରେ—ପଶାଖେଳରେ, ହଂସକ—ପାଦର ଅଳଙ୍କାରବିଶେଷ, କ୍ଷମେ—ଉତ୍ତମ ରୂପେ, କ୍ଷୋଦ—ଚୂନା, ଦନ୍ତଦୁକୂଳ—ଅଧର, କ୍ଷିତିସୁର—ବ୍ରାହ୍ମଣ, କବିକଣ୍ଠବାନ୍ଧବ—କବିସୂର୍ଯ୍ୟ ।



# ପ୍ରମୋଦୟ ଚଂପୂ

## (ଚୌପଦୀ ଚନ୍ଦ୍ରୋଦୟ)

## (୧)

### ସଖୀ

### ରାଗ—ପୂରବୀ—ଆଠତାଳି

କଳାବତୀ ରେ, କହ ମୋଠାରୁ ତେଜି କପଟରୀତି । ଘୋଷା ।

କିପାଁ ଆଜ ଆଜନମ, ସୁଖୀ କଳାକର ମୁଖ ଅଛି ଶୁଖି
କମନୀୟ ବିମ୍ବ-ବିଜୟୀ ଅଧରେ
ମୃଗମଦେ ଭୃଙ୍ଗ ନାହିଁ ଲେଖି । ୧ ।
କୋକନଦଜିଣା ଚାରୁକର କିଶଳୟ ଗଣ୍ଡେ ମଣ୍ଡିବାର
କେଉଁକାଳେ ହେଲେ ଦେଖି ତ ନ ଥିଲା
ପରାଣ ସଖି, ନୟନ ମୋର । ୨ ।
କଞ୍ଜଲତା ମନ୍ଦ ବାତ ପରି କମ୍ପୁଛି ତୋ'ତନୁ ସୁକୁମାରୀ
କିସ ଏ ବେଦନା ତୁ ରାଜନନ୍ଦନା
ଲଭି ମଜ୍ଜିଅଛୁ ଶୋକବାରି । ୩ ।
କନକକୁ ବଳିଥିବା ତେଜ କଳା କିପାଁ ପଡ଼ିଗଲା ଆଜ
କହଇ ଶ୍ରୀ ଜଗଦ୍ଦେବ ଦୁଃଖେ ପୋଡି ଅଛୁ
କିପାଁ ମୁଖ - ଦ୍ୱିଜରାଜ । ୪ ।

## (୨)

### ସଖୀ

### ରାଗ—ବସନ୍ତ—ତ୍ରିପଟା

ଖଞ୍ଜନ ଗଞ୍ଜନାକ୍ଷୀ ଆହା ରେ ପ୍ରାଣସଖି ।
ନ ଘେନିଲୁ ତ ମୋ ବାଣୀ ରେ । ଘୋଷା ।
ଖମଣି ସୂତାତଟ, ବିଟ ସେ ନନ୍ଦଚାଟ
ବୋଲି ନ ଥିଲୁ ଏହା ଜାଣି ରେ । ୧ ।

---

ଟୀକା—(୧) କୋକନଦ—ରକ୍ତପଦ୍ମ ବା ରକ୍ତ କଇଁ । କଞ୍ଜଲତା—ପଦ୍ମନାଡ଼ (ପତ୍ର ସହ) ।
ଦ୍ୱିଜରାଜ—ଚନ୍ଦ୍ର ।

ଖୁରିକେ ସେ କିଶୋର-ବର ତରଳତର
ଭ୍ରୂଭଙ୍ଗୀ ଦିଏ ଦମ୍ଭ ହାଣି ରେ । ୨ ।
ଖଣ୍ଡିବ ସତୀବ୍ରତ ବୋଲି ତା'ର ନେତ୍ରାନ୍ତ-
ଶରକୁ ରଖିଛି ସେ ଶାଣି ରେ । ୩ ।
ଖଟି ହରିଚନ୍ଦନ କହେ ନ ଜାଣୁ ଧନ,
ବୋଲି ମୋହନ ବଂଶୀପାଣି ରେ । ୪ ।

## (୩)

## ରାଧା

### ରାଗ—ଗୁର୍ଜ୍ଜରୀ—ନିଃସାରୀ ତାଳ

ଗୁମାନ କରିବା ବୃଥା ରେ ସଙ୍ଗିନୀ, ଗୁମାନ କରିବା ବୃଥା
ଗତି ତ ନ ଥିବ ଘନଶ୍ୟାମ ବିନୁ ଖଣ୍ଡିବାକୁ କାମବ୍ୟଥା । ଘୋଷା ।
ଗରବ ପରବ ଚନ୍ଦ୍ରମାକୁ ନିନ୍ଦେ
ଯେଉଁ ଶୀରିମୁଖ ଦ୍ୟୁତି
ଗଲେ ଯିବ ପଛେ ଜୀବ, ଆଉ ଥରେ
ଦେଖିବାକୁ ବଳେ ମତି । ୧ ।
ଗଗନ ମଣି-ତନୟାତଟଚାରୀ
ବାରିରୁହ ଚାରୁନେତ୍ର ।
ଗାଢ଼ ପରିରମ୍ଭ ବିନା ସଖି, ଦମ୍ଭ
ଭଜିପାରେ କି ମୋ ଗାତ୍ର । ୨ ।
ଗୁରୁ ହେଲାନି ପିନ୍ଧିବା ସରୁବାସ
ବାସରେ ନ ରହେ ମତି ।
ଗୋଟିଏ ବାସର କଳପ ମଣଇଁ
ଦେଖି ବାସନ୍ତିକ ରୀତି । ୩ ।

(୨) ଖମଣିସୁତା—ସୂର୍ଯ୍ୟକନ୍ୟା ଯମୁନା । ବିଟ—କାମୁକ ବା ଧୂର୍ତ୍ତ ବ୍ୟକ୍ତି । ଖୁରିକେ—ନିମିଷକେ ।

ଗରଳ ପରି ଉପବନ ପବନ
ଲାଗୁଅଛି ମୋତେ ସଖି !
ଗଲାଟି ଜୀବନ ଭଣେ ଜଗଦ୍ଦେବ
ଆଉ ନ ପାରେ ମୁଁ ରଖି । ୪ ।

## (୪)

## ଶ୍ରୀକୃଷ୍ଣଙ୍କ ପ୍ରତି ସଖୀ

### ରାଗ—ପଞ୍ଚମ ବରାଡ଼ୀ—ଝୁଲା

ଘାରିହେଲା ପରି କାମ ଅମଳେ ତ ବସ ଶ୍ୟାମ
ତାମରସ ମୁଖେ ନାହିଁ ହାସ ।
ଘଡ଼ିକୁ ଘଡ଼ି ତ ମୋହ ଭଜୁଅଛି ତୁମ୍ଭ ଦେହ
କି ବାରଣେ କର ପରକାଶ ।
ହେ ଘନଶ୍ୟାମ,
ଘାଣ୍ଟି ହେଲା ପରି ତୁମ୍ଭ ମନ
ଘର୍ମ ବିନ୍ଦୁ ବହେ ଅପଘନ;
ଘୋଷୁଛ ତ ପରା ନବବାଳା ନାମମନ୍ତ୍ର ଭାବ—
ବଶେ ତା' ମୂରତି କରି ଧ୍ୟାନ । ୧ ।
ଘନଜଘନା କେ ଭ୍ରୂରୁ, ଶୁଭାଙ୍ଗୀ ବିଭ୍ରମ ଚାରୁ—
କଟାକ୍ଷ ବିକ୍ଷଣେ ତୁମ୍ଭ ଚିତ୍ତ
ଘେନିଗଲା କି ହେ ହରି, ନୋହିଲେ କି ଏତେ ସରି
ଅଶକତ ହୋଇ ରହିଥାନ୍ତ
ହେ ଘନଶ୍ୟାମ,
ଘଟିବ କି ନାହିଁ ନ ବିଚାରି
ଘନନୀଳ ଶ୍ରୀଅଙ୍ଗ ମାଧୁରୀ ।
ଘୋର ବିରହ-ଦହନ, ଝାସେ କରାଇ ନିଉନ
ଦଶ କଳା ଶେଷ ଚନ୍ଦ୍ରପରି ହେ । ୨ ।

(୩) ଗଗନମଣିତନୟାତଟ—ସୂର୍ଯ୍ୟକନ୍ୟା ଯମୁନା ନଦୀତଟ । ବାରିରୁହ—ପଦ୍ମ । ପରିରମ୍ଭ—ରମଣ ବା ଆଲିଙ୍ଗନ । ବାସରେ—ଘରେ । ବାସର—ଦିନ । କଳପ (କଳ୍ପ)—କୋଟି କୋଟି ବର୍ଷ । ବାସନ୍ତିକ—ବସନ୍ତକାଳୀନ ।

ଘୃତ କି ତରଳ ନୋହି, ଅନଳ ସମୀପେ ରହି—
ପାରେ ଏହା ନ ଜାଣେ କି ମୁହିଁ
ଘରେ ସ୍ଫୁଟ ହେଲେ ତାତ, କି ବୋଲିବେଟି କହ ତ
ବିଚାର ନ କର କାହିଁପାଇଁ
ହେ ଘନଶ୍ୟାମ,
ଘେନି ମୋ ବାଣୀ ଯମୁନାଜଳ-
ଘାଟ ତେଜି ଭବନକୁ ଚଳ;
ଘୋଷଣ ଆଉ ନ ଦିଅ, ବ୍ରଜମହାରାଜ ପୁଅ
ହେଲେ ବୋଲି ମଦନ-ଚଞ୍ଚଳ ହେ । ୩ ।
ଘୋଟି ଆସୁଅଛି ଅତି, ତିମିର ସଙ୍କୁଳ ରାତି
ଜନାନ୍ତରେ କିପାଁ ଅଛ ବସି
ଘଟ ପ୍ରତିଘଟ ସ୍ତନ ସ୍ପୃହା ଛାଡ଼ ଏବେ ଘେନ
କରତଳେ କମନୀୟ ବଂଶୀ
ହେ ଘନଶ୍ୟାମ,
ଘୋରି ଚନ୍ଦ୍ରସାର ମନୋହର
ଘନସାର ମିଶାଇ କିଶୋର;
ଘେନ ହୃଦୟରେ ସ୍ମର ତାପ ହୋଇଯିବ ଦୂର
କହେ ସ୍ନେହେ ଜଗଦ୍ଦେବ ଗିର ହେ । ୪ ।

## (୫)

## ଶ୍ରୀକୃଷ୍ଣ

### ରାଗ—ତୋଡ଼ି ଜଙ୍ଗଲା-ଏକତାଳି

ନାହିଁ ତ ସଙ୍ଗରେ ମୋର କାହିଁ ପ୍ରିୟସଖୀ ରେ । ଘୋଷା ।
ନବ ପଲ୍ଲବ ଅଧର, ନିକଟେ ଯେ ମନୋହର
ନୀଳଚିତ୍ରେ ଲୀଳା-ମଧୁକର ଅଙ୍କ ଲେଖି ରେ । ୧ ।

(୪) ତାମରସ—ପଦ୍ମ । ଘର୍ମ—ଝାଳ । ବ୍ରଜମହାରାଜ—ନନ୍ଦ ରାଜା । ଘୋଷଣ—ରଟନା ବା ପ୍ରଚାର । ଚନ୍ଦ୍ରସାର—ଭଲ ଚନ୍ଦନ, ଘନସାର—କର୍ପୂର ।

ନଟ ରୁଚିର ଖଞ୍ଜନ,—ନିବହ ଶୋଭା ଗଞ୍ଜନ
ନୟନାନ୍ତେ ଯେ ମୋହନ ଶର ଅଛି ରଖି ରେ । ୨ ।
ନୂଆକରି ଯେ କିଶୋରୀ ନାଗରଙ୍କ ଦମ୍ଭ ହରି—
ନେବାର ବିଳାସ ଅଛି ମାଧୁରୀକି ଶିଖି ରେ । ୩ ।
ନିରୂପମ ଯା'ର ଗଦ, ନଳିନଜ ମକରନ୍ଦ
ନିତି ଜଗଦ୍ଦେବ ମତି ଭୃଙ୍ଗ ପାରେ ଚାଖି ରେ । ୪ ।

(୬)

## ରାଧାଙ୍କ ପ୍ରତି ସଖୀ

### ରାଗ—ବସନ୍ତ—ରୂପକ

ଚଞ୍ଚଳ ଦୃଗଞ୍ଚଳବତୀ, ତୋ ଘେନି ନୀଳନୀରଦ-
ତନୁ ତନୁ ଦିଶେ ଗୋ । ଘୋଷା ।
ଚକୋର ପରି ତାର, ଚିତ୍ତ ନିରତେ ତୋର
ଚାରୁ ବଦନଚନ୍ଦ୍ରେ ରସେ ଗୋ । ୧ ।
ଚମକି ସ୍ମରଣରେ ଚିତ୍ତ ନିବେଶି ତୋରେ
ଚକିତେ ଚାହୁଁ ଚଉପାଶେ ଗୋ । ୨ ।
ଚରଣ କିଶଳୟ ଚାଳିବାକୁ ସଂଶୟ
ଚିର ବିରହତାର ବଶେ ଗୋ । ୩ ।
ଚିନ୍ତି ରୂପ ତୋହରି ଚିତ୍ର ପ୍ରତିମା ପରି
ଚାହିଁଲେ ଦୂରକୁ ଆଭାସେ ଗୋ । ୪ ।
ଚାତୁର୍ଯ୍ୟବତୀ ତୋଷେ ଚନ୍ଦ୍ରକଚୂଳ ପାଶେ
ଚଳ ତୁ ଜଗଦ୍ଦେବ ଭାଷେ ଗୋ । ୫ ।

---

(୫) ନିବହ—ସମୂହ । ନଳିନଜ ମକରନ୍ଦ—ପଦ୍ମଜାତ ମଧୁ ।

(୬) ତନୁ—ଦେହ । ତନୁ—କ୍ଷୀଣ ବା କୃଶ । ଚନ୍ଦ୍ରକଚୂଳ—ଚୂଳରେ ମୟୂରପୁଚ୍ଛ ଥିବା ଶ୍ରୀକୃଷ୍ଣ ।

## (୭)

## ସଖୀ

### ରାଗ—ଶଙ୍କରାଭରଣ—ଆଠତାଳି

ଛାଡ଼ ରେ ସଖି, ମନରୁ ତ୍ରାସ ରେ,
ଛାର ମାର ଆଉ କରିବ କିସ ରେ । ଘୋଷା ।
ଛାଇପରି ରେ ତୋତେ ଅନୁସରି
ଛାମୁରେ ଥିବ ବଲ୍ଲଭ ତୋହରି । ୧ ।
ଛନ୍ଦି ବାହୁ ଜାନୁ ଯୁଗଳେ ତୋତେ
ଛାତିପରେ ଭିଡ଼ି ମାତିବ ରତେ । ୨ ।
ଛିଡ଼ିଗଲେ ଭିଡ଼ିବାର ତୋହର
ଛଳ ନ କରି ବୁଝି ରାମାବର । ୩ ।
ଛଟକାକ୍ଷୀ ନବନାଗରୀରାଜ
ଛଡ଼ାଇବ ଟି ଆଜ ତୋତେ ଲାଜ । ୪ ।
ଛପି ଗଲାନି ଦିବାକର ଦ୍ୟୁତି
ଛଦ୍ମ ନୁହଁ ଜଗଦ୍ଦେବ ଭାରତୀ । ୫ ।

## (୮)

## ସଖୀ

### ରାଗ—ମୁଖାବରୀ—ଏକତାଳି

ଜାଣିବୁ ରେ, ଦମ୍ଭେ ହାଣିବୁ ରେ । ଘୋଷା ।
ଜବାଜିତ ଅଧରୀ—ଅଭିସାରକୁ କରି
ମଦନେ ମତ୍ତ-କରିରାଜ ଗମନ ହରି । ୧ ।
ଜଳଜ ରମ୍ୟ ମୁଖୀ—ସ୍ମିତ ଅଧରେ ରଖି
ଭୂରୁ ଚାପରେ ସଖି ନେତ୍ରାନ୍ତ ଶର ଯୋଖି । ୨ ।

(୭) ତ୍ରାସ—ଭୟ ବା ଆଶଙ୍କା । ରତେ—ରତିକ୍ରୀଡ଼ାରେ । ଛପି ଗଲାନି ଦିବାକରଦ୍ୟୁତି—ସୂର୍ଯ୍ୟାସ୍ତ ହେଲାଣି । ଛଦ୍ମ—ଛଳ ବା କପଟ ।

ଢାବେଶ ଅଙ୍କେ ଢଡ଼ି—ତୋର ଶ୍ରୀହସ୍ତ ବୁଡ଼ି
ବସିବା ପରି ବୁଡ଼ି—ନିବିଡ଼ ବନ୍ଧେ ଭିଡ଼ି । ୩ ।
ଯତନେ ନାସାମଣି—ତୁଲେ ନଚାଇ ବେଣୀ
କୁସୁମଧନୁ ପାଣି—ଭଣ୍ଡାରୁ ରସ ଛାଣି । ୪ ।
ଢଗଦ୍ଦେବ ଯେ ଭାଷି—ଭଲେ ତନୁରେ ମିଶି
ସଖି ତୁ ଆଜ ନିଶି—ନବ ସୁରତେ ରସି । ୫ ।

## (୯)

## ସଖୀ

### ରାଗ—କାମୋଦୀ—ଆଦିତାଳ

ଝୁରୁଥିବ ସେ କାମ ଅମଳ ବଶେ ଶ୍ୟାମ
ସୁମରି ତୋର ମୁଖ ଶଶୀକି ରେ । ଘୋଷା ।
ଝମ ଝମ ବାଜିବା—ଭୂଷଣ ରାଜି ଜବା-
ଅଧରା ସମରପ ସଖୀକି ରେ । ୧ ।
ଝସକେତନ ଶର—କରୁଥିବ ପ୍ରହାର
ମରମେ ନିକୁଞ୍ଜବିଳାସୀକି ରେ । ୨ ।
ଝରା ସଜାଡ଼ି ରଖି ଅଛି ରେ ପ୍ରିୟସଖି !
ଗଭା ଉପରେ ଦେବି ଖୋସିକି ରେ । ୩ ।
ଝୀନବସନା କାନ୍ତ—ପାଶ ତେଜି ଏମନ୍ତ
ସମୟେ ଏକାନ୍ତରେ ବସି କି ରେ ? । ୪ ।
ଝଟତି ଆସ ଭାଷେ—ଢଗଦ୍ଦେବ ହରଷେ
ପ୍ରିୟାପାଶେ ପୁହାଅ ନିଶୀକି ରେ । ୫ ।

(୮) ଢଳଢ—ପଦ୍ମ । କୁସୁମଧନୁ—କନ୍ଦର୍ପ ।
(୯) ଝସକେତନ—କନ୍ଦର୍ପ । ନିକୁଞ୍ଜବିଳାସୀକି—ଶ୍ରୀକୃଷ୍ଣଙ୍କୁ ।

## (୧୦)

## ସଖୀ

### ରାଗ—ପୁନ୍ନାଗ—ଯତି

ଆସ ଆସ ସଖି, ଯିବା ବାସକୁ ଗୋ । ଘୋଷା ।
ଆଉ ରହିଲେ ଏ ବନେ—ଅସତୀ ବୋଲିଟି ଜନେ
ଅବଶ୍ୟ କରିବେ ଉପହାସକୁ ଗୋ । ୧ ।
ଅଖିଳ ଲାବଣ୍ୟଶୀରି—ଆଉ କି ଆସିବେ ହରି
ଅରୁଣ ଭଜିଲା ପରକାଶକୁ ଗୋ । ୨ ।
ଆମ୍ଭ ଅବସ୍ଥା ସଜନୀ—ଆଗରେ ରଖି ପଦ୍ମିନୀ
ଅଧରେ ଧରିଛି ଦରହାସକୁ ଗୋ । ୩ ।
ଆନ ନାଗରୀକୁ ଧରି—ଆରମ୍ଭିଲେ ନିଶ୍ଚେ ହରି
ଅନଙ୍ଗ ରଙ୍ଗରେ ଅଭିଳାଷକୁ ଗୋ । ୪ ।
ଆର୍ତ୍ତି କରେ ଜଗଦ୍ଦେବ—ଆଉ କି ସତେ ଆସିବ
ଅଭିନବ କୁଞ୍ଜବନ ରାସକୁ ଗୋ । ୫ ।

## (୧୧)

## ରାଧା

### ରାଗ—ତୋଡ଼ି ଜଙ୍ଗଲା—ନିଃସାରୁ ତାଳ

ଟାଳିଲା କେ ମୋ ସୁଖ ମୂଳକୁ
ଚନ୍ଦ୍ରମୁଖ ରସି ରହିଲେ କାହା ପାଶେ । ଘୋଷା ।
ଟଙ୍କାରି ସ୍ମରଶର, ବିନ୍ଧେ ମରମେ ମୋର
ବାରବାର ଅତି ନିରାଶେ । ୧ ।
ଟେକାଇ ଶୁଭାଙ୍ଗିନୀ,—ଚନ୍ଦ୍ରକୁଳେ ସଙ୍ଗିନୀ
ରମିଲା ଶ୍ୟାମରେ ହରଷେ । ୨ ।
ଟିକିଏ ନାହିଁ ଦୋଷ, କାହିଁକି ଧରି ରୋଷ
ହରି ନଇଲେ ମୋର ପାଶେ । ୩ ।
ଟାଣି ନେଇ ମୋ ମତି, ଆନ ରାମାରେ ପ୍ରୀତି—
କଲେ ଶ୍ରୀ ଜଗଦ୍ଦେବ ଭାଷେ । ୪ ।

---

(୧୦) ଅରୁଣ ଭଜିଲା ପରକାଶକୁ—ପ୍ରଭାତ ହେଲା । ଆର୍ତ୍ତି—ଦୁଃଖ ।
(୧୧) ଟାଳିଲା—ନଷ୍ଟ କଲା । ସ୍ମରଶର—କନ୍ଦର୍ପବାଣ ।

## (୧୨)

### ରାଧା

### ରାଗ—ପୂରବୀ—ଏକତାଳି

ଠଉରିବି ମୁଁ କିପରି ଆଗୋ ସୁନାଗୋରୀ,
ଠକପଣ ତ ମୋଠାରେ ଆଚରିଲେ ହରି । ଘୋଷା ।
ଠ ବର୍ତ୍ତୁଳ ଚନ୍ଦ୍ରମା ମଣ୍ଡଳ ଦେଖ ସଖି
ହୃଦୟ ଦମ୍ଭକୁ ମୋର ଦେଉ ନାହିଁ ରଖି । ୧ ।
ଠୁଳହୋଇ ପୁଷ୍ପଙ୍କରେ ମଧୁକର କୁଳ
ମଧୁର ନିନାଦେ ମୋତେ କରନ୍ତି ଆକୁଳ । ୨ ।
ଠାବେ ଠାବେ ମନୋହର କୁସୁମିତ କୁଞ୍ଜ
କରାଉଛି ମୋହୋ ମୋହ ବିକଶି ନୀରଜ । ୩ ।
ଠିକ କହି ପ୍ରିୟ ସଜନୀରେ ପିକଶ୍ରେଣୀ
ଦହଇ ମୋ ହୃଦ ଶୀରି ଜଗଦ୍ଦେବ ଭଣି । ୪ ।

## (୧୩)

### ସଖୀ

### ରାଗ—କାମୋଦୀ—ଏକତାଳି

ଡାକେ ସଖୀ ନ ଶୁଣେ ଶ୍ୟାମ କାହିଁକି ?
ଡାକିମଧାରେ ଆଉ ମନେ ନାହିଁ କି । ଘୋଷା ।
ଡରିବୁଁ ବୋଲି ଆମ୍ଭେ, ଲୁଚି ତ ସିନା ତୁମ୍ଭେ
ଆମ୍ଭର ଦମ୍ଭ ବିଡ଼ିବାର ପାଇଁକି । ୧ ।
ଡାଳିମ୍ବ ସୁଦଶନା, ଡରିବ ତୁଚ୍ଛା ସିନା
ଡରେ ଘରେ ଯେ ଦେଖି ନିଜ ଛାଇକି । ୨ ।
ଡକାଇ ଏତେ ସରି, କରୁଛି ଯାହା ହରି
କାଲି ପାରିବ ସଖୀ ମୁଖ ଚାହିଁ କି । ୩ ।

(୧୨) ଦମ୍ଭ—ଧୈର୍ଯ୍ୟ । ନୀରଜ—ପଦ୍ମ ।

ଡମ୍ବରୁମଧ୍ୟା ଯେବେ, ମାନିନୀ ହେବ ତେବେ
ଜଗଦ୍ଦେବ ପାରିବ ସମଝାଇ କି । ୪ ।

## (୧୪)

## ରାଧା

### ରାଗ—କେଦାର—ତ୍ରିପଟା

ଢାଳେ ଜୀବନ ନେବ ସ୍ମର ହଟିଲା ରେ । ଘୋଷା ।
ଢକ୍କା ବାଜିବ ଟି ବ୍ରଜେ, ଅସତୀ ବୋଲି ସହଜେ
ପ୍ରାଚୀଠଉଁ ଅନ୍ଧକାର ତୁଟିଲା ରେ । ୧ ।
ଢୋକିବାକୁ ବିଷ ଚିତ୍ତ, ହେଉଛି ରେ ପ୍ରାଣମିତ
ଦେଖ ଅରବିନ୍ଦ ଜଳେ ଫୁଟିଲା ରେ । ୨ ।
ଢାଳିଦେଇ ମୋର ମୋଦ,—ନୀର ଘଟକୁ ବିପଦ
ମହାଭୟପ୍ରଦ ହୋଇ ଘୋଟିଲା ରେ । ୩ ।
ଢଳ ପଡ଼ିବି ଏଥର, ଭାଷେ ଜଗଦ୍ଦେବ ଗିର
'ଶଠ ପଣ କରି ଶ୍ୟାମ ଜୁଟିଲା ରେ । ୪ ।

## (୧୫)

## ରାଧାଙ୍କପ୍ରତି ସଖୀ

### ରାଗ—କେଦାର—ରୂପକତାଳ

ଆଜି ରାଜି ରାସେ କର ରେ । ଘୋଷା ।
ଅତସୀ ଶ୍ୟାମ, ହେଉ ସକାମ
ପିଇ ତୋ ଚାରୁ ବିମ୍ବାଧର ରେ । ୧ ।
ଅନଙ୍ଗାହତେ, ପ୍ରିୟ ହୃଦାନ୍ତେ
ଖେଳୁ ତୋ ମଣିମୟ ହାର ରେ । ୨ ।

(୧୩) ଡାକିମଧ୍ୟା—ଡମ୍ବରୁ ମଝି ଭଳି ସରୁ କଟୀବିଶିଷ୍ଟା ରାଧା ।
(୧୪) ଢାଳେ—ସହଜରେ ବା ଅବଲୀଳା କ୍ରମେ । ମୋଦନୀର—ଆନନ୍ଦଜଳ ।

ଆନନ୍ଦଭର, କରୁ କାନ୍ତର
ତୋ ଘନ ପୀନ ପୟୋଧର ରେ । ୩ ।
ଆରେ କିଶୋରୀ, ହେଉ ସେ ହରି
ତୋ ମୁଖଚନ୍ଦ୍ର ଚକୋର ରେ । ୪ ।
ଅତି ହରଷେ, ଭାବାତିବଶେ
ଭାଷଇ ଜଗଦ୍ଦେବ ଗିର ରେ । ୫ ।

## (୧୬)

## ଶ୍ରୀକୃଷ୍ଣଙ୍କପ୍ରତି ସଖୀ

### ରାଗ—ଝିଂଝୋଟି—ଆଦିତାଳ

ତମାଳ ନୀଳତନୁ
ତାପ ନ ଯାଏ ମୋ ସଖୀ ମନୁଁ ହେ । ଘୋଷା ।
ତରଣୀଜାତଟ ବନୁ ତୁମ୍ଭଙ୍କୁ ଶ୍ରୀହରି
ଖୋଜି ଖୋଜି ହରିଣାକ୍ଷୀ ଫେରିଯିବା ଦିନୁ । ୧ ।
ତରଳ ନୟନୁ ତେଜୁଅଛି ନିରନ୍ତରେ
ନୀରଧାର ବରଷିଲା ପରି ଘନୁ । ୨ ।
ତୀକ୍ଷଣ ବାଣ ଅତନୁ ତାମରସମୁଖୀ—
ମରମକୁ ଯୋଖି ବିନ୍ଧେ ଫୁଲଧନୁ । ୩ ।
ତାପ ଦିଏ ହିମଭାନୁ ତନୁରେ ଫୋଟକା—
ହେଉଅଛି ଏକା ଘନସାର ବିଲେପନୁ । ୪ ।
ତୁମ୍ଭ ଅବଲୋକନୁ ଭାଷେ ଜଗଦ୍ଦେବ
ତା'ର ପ୍ରାଣ ଯିବ ଶ୍ରୀଅଙ୍ଗଟି ହେଲା ତନୁ । ୫ ।

---

(୧୫) ଅନଙ୍ଗାହତେ—ରତିକ୍ରୀଡ଼ାରେ ।
(୧୬) ତରଣୀଜାତଟ—ଯମୁନାକୂଳ । ତାମରସମୁଖୀ—ପଦ୍ମମୁଖୀ । ହିମଭାନୁ—ଚନ୍ଦ୍ର ।

## (୧୭)

## ସଖୀ ପ୍ରତି ଶ୍ରୀକୃଷ୍ଣ

### ରାଗ—ତୋଡ଼ି—ଆଠତାଳି

ଥିଲେ ଅପରାଧ ମୋର,
ଥରେ କ୍ଷମା ନ କରିବ କି ସେ ରାମାବର । ଘୋଷା ।
ଥଳ କମଳ ବିଜୟୀ ଚରଣେ ମୁଁ ତା'ର
ଲାକ୍ଷା ଲେଖୁଥିବି ନିତି କଲେ ଅଙ୍ଗୀକାର । ୧ ।
ଥିବି ଖଟି ପାଶେ ତା'ର ମରଜିକି ଜାଣି
କଲେ ଅନୁକମ୍ପା ମୋରେ ସୁରସିକାମଣି । ୨ ।
ଥାଉ ବା ନ ଥାଉ ମୋହୋଠାରେ ତା' କରୁଣା
ମୋ ମନରେ ଭାବିଛି ତ ମୁଁ ତାହାର କିଣା । ୩ ।
ଥିର ଗମନାକୁ ମୋର ହୃଦୟରେ ହାର—
କରିବାକୁ ସହଚରୀ ଉପାୟ ବିଚାର । ୪ ।
ଥାଏ ଯା' ମୋଠାରେ ସଖି ଚିତ୍ତେ ଦୟା ତୋର
କହିବାକୁ ଅଛି କିସ ଜଗଦ୍ଦେବଙ୍କର । ୫ ।

## (୧୮)

## ଶ୍ରୀକୃଷ୍ଣ

### ରାଗ—ପୂରବୀ—ଏକତାଳି

ଦୟା ନ କଲେହେଁ ଦାରୁଣ ହୃଦୟ ସେହି
ଯେତେ ଯେତେ ଦୁଃଖ ପୂର୍ଣ୍ଣଚନ୍ଦ୍ର ମୁଖ ପାଶୋରିବି ସଖି କେହି । ଘୋଷା ।
ଦଳିତ ଅଞ୍ଜନ-ଗଞ୍ଜନକେଶୀକି ଜଗି ନିତି ତା' ମରଜି
ଦୟିନୀ କରି ମୁଁ କେତେ ଆୟାସରେ କରାଇଥିଲିଟି ରାଜି । ୧ ।
ଦ୍ୟୁମଣିତନୟା ତଟର ନିକଟ ନିକୁଞ୍ଜ ସଙ୍କେତ କରି
ଦର ବିକଶିତ ଅରବିନ୍ଦ ହେବାଯାଏ ଜଗିଲା କିଶୋରୀ । ୨ ।

(୧୭) ଲାକ୍ଷା—ଅଳତା ।

ଦେଇ ବିସୋରି କହିବା ଗିର କେଉଁ କିଶୋରୀ ସଙ୍ଗତେ ରସି
ଦୋଷ ବିନା ଦୁଃଖୀ କରାଇ ମୋ ସଖୀ ଦିବ୍ୟବେଶ କରେ ବାସି । ୩ ।
ଦିଶୁ ନାହିଁ ମୋତେ ଉପାୟ କିଛିତେ ଶ୍ରୀହରିଚନ୍ଦନ ଭାଷେ
ଦୁଃଖ ସହଚରୀ ଚିତ୍ତେ ଅଛି ପୂରି ନ କହିବି ତାର ପାଶେ । ୪ ।

## (୧୯)

## ସଖୀ ପ୍ରତି ଶ୍ରୀକୃଷ୍ଣ

### ରାଗ—ବଙ୍ଗଳାଶ୍ରୀ—ଏକତାଳି

ଧରଣୀ-ମଣ୍ଡନାକୁ ତୁ କହ ସହଚରୀ ଗୋ
ଧୀରା ମୋଠାରେ ନିରାଶ ନ କରିବା ପରି ଗୋ । ଘୋଷା ।
ଧଇଲେ ହେଲେହେଁ କଣ୍ଠତଟରେ ଜୀବିତ ଗୋ
ଚିର ତୃଷାତୁରେ ସେ ଅସ୍ଥିର କରି ଚିତ୍ତ ଗୋ
ଧରାଧର ଅଭିନବ ଉଦକ
ଧାରା ପାନ ବିହୀନରେ ଚାତକ
ଧରା ସରିଲେ କି ହୁଏ ଉତ୍ସୁକ—
ବିଚକ୍ଷଣୀ କି ନ କରେ ବିବେକ ଗୋ । ୧ ।
ଧର କି ବିନା ଇନ୍ଦୁ କୁମୁଦ ଆନନ୍ଦ ଗୋ
ପ୍ରଭାକର ବିନା ବିକାଶେ କି ଅରବିନ୍ଦ ଗୋ,
ବରହୀ କି ନବ ଉଦୟ ଘନ
ବିହୀନେ ନଚାଇ ପାରେ କି ଆନ
ସେପରିରେ ସେ କିଶୋରି ରତନ—
ବିହୀନେ ଆନେ ରସେ କି ମୋ ମନ ଗୋ । ୨ ।
ଧରାଶୋଭିନୀ ମୋଠାରୁ ତେଜିଲେ କୃପାକୁ ଗୋ
ଧରି ପାରିବି ପିଣ୍ଡେ ପରାଣ କି
ପ୍ରତି ଆଶା କରି ଶଶ ଶଶୀକି

(୧୮) ଦ୍ୟୁମଣିତନୟା—ସୂର୍ଯ୍ୟକନ୍ୟା ଯମୁନା । ବିସୋରି—ପାସୋରି ।

ତେଜିବାର ଯିବ ଆଜ ସରିକି,
ବହି ତାକୁ ବିଧି ଦେଲା କଳଙ୍କି
ନ ଭାବେ କି ସେ ତ ଅଟେ ବିବେକୀ ଗୋ । ୩ ।
ଧରାରେ ତା' ସମ ନାହିଁ ବିଚକ୍ଷଣା ପଣେ ଗୋ
କିପାଁ ମୋରେ ମାନ କରିଅଛି ଅକାରଣେ ଗୋ
ନବଘନେ ବିଦ୍ୟୁଲତା ସଦୃଶେ,
ବିଳସ ମୋ ଅଙ୍ଗେ ଅତି ହରଷେ
ଦେଖ ବସନ୍ତ ଶୋଭା ପରକାଶେ
ସପ୍ରେମରେ ହରିଚନ୍ଦନ ଭାଷେ । ୪ ।

## (୨୦)

## ସଖୀ ପ୍ରତି ଶ୍ରୀକୃଷ୍ଣ

### ରାଗ—ପିଲୁ—ଝମ୍ପା

ନାହିଁ ନ କର ନୀରଜ ମୁଖୀ ରେ । ଘୋଷା ।
ନ ପାରି ମୁଁ ପାଶୋରି, ନିରତେ ସେ କିଶୋରୀ—
ମୂରତୀ ନେତ୍ରେ ଅଛି ରଖି ରେ । ୧ ।
ନବ ନାଗରୀ ମୋର, ନୋହିଲେ ହୃଦେ ହାର
ଦେବି ମୁଁ ଜୀବନ ଉପେକ୍ଷି ରେ । ୨ ।
ନିର୍ଦ୍ଦୟ ପାପ ସ୍ମର, ସନ୍ଧି ବିନ୍ଧଇ ଶର
ନିରତେ ମରମକୁ ତୋଖି ରେ । ୩ ।
ନବୀନା ରେ ବିନୟ,—କରି ଏବେ ହୃଦୟ
ଆଣିଦିଅ ତୋ ପ୍ରିୟସଖୀ ରେ । ୪ ।
ନାହିଁ ତ ମୋର ଆନ, ନାଗରୀ ରସେ ମନ
ଏଥକୁ ଜଗଦ୍ଦେବ ସାକ୍ଷୀ ରେ । ୫ ।

---

(୧୯) ଧରାଧର—ପର୍ବତ । ଉଦକ—ଜଳ । ବରହୀ—ମୟୂର । ଶଶ—ଶଶା, ଶଶୀକି—ଚନ୍ଦ୍ରକୁ ।

(୨୦) ନୀରଜମୁଖୀ—ପଦ୍ମମୁଖୀ । ଉପେକ୍ଷି—ତ୍ୟାଗ କରି ।

(୨୧)

## ଶ୍ରୀକୃଷ୍ଣଙ୍କ ପ୍ରତି ସଖୀ

### ରାଗ—ବିଭାସ—ଏକତାଳି

ପ୍ରୀତି କରି କାହାପାଶେ ପ୍ରହାଇଲ ନିଶା ତୋଷେ । ଘୋଷା ।
ପରିଣତ ବିମ୍ବ ଅଧରେ କାହାର ରଦନ କ୍ଷତ ବିକାଶେ
ପଲ୍ଲବ-ବିଜୟୀ-କର କାହା କୁଚ କୁଙ୍କୁମେ ଅଙ୍କିତ ଦିଶେ । ୧ ।
ପଡ଼ି କା’ ଚରଣେ ଶିଖଣ୍ଡ ମୁକୁଟ ରଙ୍ଗ କଲ ଲାକ୍ଷା ରସେ
ପରିରମ୍ଭ କଲ କାହାର ବଳୟ-ଚିହ୍ନ ଦିଶେ ବେନିପାଶେ । ୨ ।
ପାଲଟ କରି କେଉଁ ସହଚରୀର ଚିତ୍ତକୁ ସମ୍ଭ୍ରମେ ବାସେ
ପିନ୍ଧିଅଛ ନିଜ କଟିତଟେ ଆଜ ଚାହିଁ କି ସୁନ୍ଦର ଦିଶେ । ୩ ।
ପାନବୋଳ ଗଣ୍ଡେ, ଲଲାଟେ ସିନ୍ଦୂର ଲାଗି ତ ଅଛି ବିଶେଷେ
ପରୁଆ ନ କର ଚିତ୍ତରେ ତୁମ୍ଭର ଜନାପବାଦକୁ ଲେଶେ । ୪ ।
ପ୍ରତି ଅଙ୍ଗ ଯାକ କି ଶୋଭା ଦିଶଇ କରଜ-କ୍ଷତ ବିଳାସେ
ପ୍ରେମଭରେ ହରିଚନ୍ଦନ ଭାବଇ ସେ ରୂପ ନିଜ ମାନସେ । ୫ ।

(୨୨)

## ସଖୀପ୍ରତି ଶ୍ରୀକୃଷ୍ଣ

### ରାଗ—ନଟ—ଏକତାଳି

ଫୁଲଶରେ ନ ଯା’ ମୋତେ ସୁକୁମାରୀ ମାରି ରେ । ଘୋଷା ।
ଫେଡ଼ି କହୁଛି ମୁଁ ସତେ, ଘେନ ମୋ ବିନୟ ଚିତ୍ତେ
ବଚନେ ନ ପାରି ତୋତେ, ରହିଲି ମୁଁ ହାରି ରେ । ୧ ।
ଫିଟାଇ ସଜନୀ ମାନ—ଗ୍ରନ୍ଥିକି ରାମାରତନ
ମୋତେ ଏ ବିପଦୁଁ ବେଗେ ନିଅ ତୁ ଉଦ୍ଧରି ରେ । ୨ ।
ଫନ୍ଦା କରିଛି ମୁଁ ତୋତେ, ନାହିଁ ତୋ ବିନା ଜଗତେ
ମୋତେ କାମ ପାରାବାରୁ, କରିବାକୁ ପାରିରେ । ୩ ।

(୨୧) ରଦନ—ଦନ୍ତ । ପରିରମ୍ଭ—ଆଲିଙ୍ଗନ । ବଳୟ—ବଳା । ପରୁଆ—ଖାତିର ବା ଭୟ ।

ଫୁଟାଇ ନ ଦେଇ ତମ,—ବାଣୀରେ ମୋର ମରମ
ଦେଖାଅ ସଖୀକି ବାରେ ଉପାୟ ବିଚାରି ରେ । ୪ ।
ପରମାସ ଆଜି ବେଶେ, ଶ୍ରୀ ହରିଚନ୍ଦନ ଭାଷେ
ଶରଣ କେ ଅଛି ମୋର ବିନା ରେ ମୋ ତୋହରି ରେ । ୫ ।

## (୨୩)

## ରାଧାଙ୍କ ପ୍ରତି ସଖୀ

### ରାଗ—କଲ୍ୟାଣ—ଆଦିତାଳ

ବିମ୍ବାଧରୀ, ବସି କୁଞ୍ଜେ ଲୋଡ଼େ ତୋତେ ହରି । ଘୋଷା ।
ବିଷପରି ମଣେ ଶ୍ରୀଅଙ୍ଗ ସୁବେଶ
ବିଷଧର ପରି ଛାଡ଼ଇ ନିଃଶ୍ୱାସ,
ବିଧୁ କିରଣରୁ ହୁଡୁଅଛି ତ୍ରାସ
ପ୍ରଭାକର ପ୍ରଭାପରି । ୧ ।
ବଳି ପଡ଼ିଲାଣି ବିରହ ସନ୍ତାପ
ବିକଳେ ଭାବୁଛି ତୋହର ସ୍ୱରୂପ
ବରଜ ତା'ଠାରେ କରିଥିବା କୋପ
ବାରେ କରୁଣାକୁ ଧରି । ୨ ।
ବିଞ୍ଚି ଜାତୀ ଶେଯେ ସୁଧାକର ରଜ
ବାସନ୍ତୀକ ପୁଷ୍ପେ ମଣ୍ଡୁ କେଳିକୁଞ୍ଜ
ବିନ୍ଧୁଅଛି ତାକୁ ଶର ମନସିଜ
ବିଶେଷରେ କୋପ ଧରି । ୩ ।
'ବେଗେ ଆସ ଆସ ଆସ ରେ କିଶୋରି !
ବିହର ମୋ ସଙ୍ଗେ ବୃନ୍ଦାବନ ହେରି'
ବୋଲି ଡାକୁଅଛି ଶୁଣ ସୁକୁମାରୀ
ବଂଶୀ ତୋ ନାମକୁ ଧରି । ୪ ।
ବୋଲେ ଜଗଦ୍ଦେବ ତେଜ ସଖି ମାନ
ବ୍ରଜକିଶୋର ତୋ ଚରଣ ମଣ୍ଡନ

(୨୨) ପାରାବାରୁ—ସମୁଦ୍ରରୁ । ତମବାଣୀରେ—ନିରାଶ କଥାରେ ।

ବାଜିବା ନୂପୁର ଶବଦକୁ କର୍ଣ୍ଣ—
ବେନି ଏକା ଅଛି ଡେରି । ୫ ।

## (୨୪)

## ରାଧାଙ୍କପ୍ରତି ସଖୀ

### ରାଗ—କେଦାର—ଝୁଲା

ଭୁଲନା ସଖି ତୁ ତା' ଗିରେ
ଭଲ ନୁହେଁ ପ୍ରୀତି ଶ୍ୟାମ ସଙ୍ଗରେ । ଘୋଷା ।
ଭ୍ରମିଗଲି ସିନା ସଜନୀ, କପଟ ବାଣୀ ସତକରି ମଣି
କରୁ ପଛେ ବଂଶୀଧ୍ୱନି,
ନ କହି ସହି, ରହ ହୋଇ ତୁନି । ୧ ।
ଭୀତି ନାହିଁ ମଦନଶରେ, ଆଉ କ୍ଷଣ-ଭାବକୁ ମୁଁ ନ ପାରେ
ବିଡ଼ିଲୁ ତ ତା' ଚିତ୍ତ ବାରେ,
ରଖିଅଛି ହୃଦେ ବରି ମୁଁ ଗାରେ । ୨ ।
ଭାବବଶେ ଯାହାର ପାଶେ, କାଲି ରହିଲା ସେ ବିସୋରି ବାସେ
ସଙ୍ଗେ ତାର ସୁରତ ରସେ
ମାତୁ ଯା' ତୁ କହିଦିଅ ସରସେ । ୩ ।
ଭୃଙ୍ଗପରି ଶ୍ୟାମ ସ୍ୱଭାବ, ନେବ କୁଳବଧୂଙ୍କର ସେ ଜୀବ
ନିଶ୍ଚୟ ମୋ କଥାକୁ ଭାବ
ଭଣେ ହରିଚନ୍ଦନ ଜଗଦ୍ଦେବ । ୪ ।

---

(୨୩) ବିଷଧର—ସାପ । ହୂତୁଅଛି—ଭୂଲ୍ କରୁଛି । ତ୍ରାସ—ଭୟ । ବରଜ—ତ୍ୟାଗ କର । ଜାତୀ—ଜାଇ ଫୁଲ । ସୁଧାକର-ରଜ—କର୍ପୂର ଚୂର୍ଣ୍ଣ ।

(୨୪) କ୍ଷଣଭାବକୁ—ସୁଯୋଗକୁ । ଭୃଙ୍ଗ—ଭ୍ରମର ।

(୨୫)

## ରାଧାଙ୍କପ୍ରତି ସଖୀ

### ରାଗ—କାମୋଦୀ—ଏକତାଳି

ମରଜିକି ଚାହିଁ ତୋର ନିଏ୍ନ ନାହିଁ କଳିଟି । ଘୋଷା ।
ମଦନରୁ ମନୋହର—ଅଟେ ଶ୍ୟାମ କଳେବର
ଦେଖି ସଖି, ତୁ ଅବଶ୍ୟ ପଛେ ଯିବୁ ଭୁଲିଟି । ୧ ।
ମାନ ନ ରହିବ ତୋର—ନାଚିବ ଯେବେ ତାହାର
ନାଗରୀଙ୍କ ଧୃତି ହର ଚାରୁ ଚିଲ୍ଲୀ-ବଲ୍ଲୀଟି । ୨ ।
ମହା ଅବିବେକୀ ପରି—ତୋ ବୋଲରେ ନ ବିଚାରି
ସୁକୃତ ପ୍ରାପତ ନିଧି ପାଦେ ଫିଙ୍ଗି ଦେଲିଟି । ୩ ।
ମାନେ କରିବୁ ନିଷେଧ—ପଛେ ନୋହିବ ସେ ବୋଧ
ଯେବେ ବୁଡ଼ିଲେ ତୁ କାମସିନ୍ଧୁରେ ମୁଁ ମଲିଟି । ୪ ।
ମନମୋହନ ମନ୍ତର—ଭାଷେ ଜଗଦ୍ଦେବ ଗିର
ତା'ର ଲୀଳାରେ ଡୋଳାକୁ ଖେଳାଇ ମୁଁ ଦେଲିଟି । ୫ ।

(୨୬)

## ଶ୍ରୀକୃଷ୍ଣଙ୍କପ୍ରତି ସଖୀ

### ରାଗ—କାମୋଦୀ—ଆଠତାଳି

ଯଥାର୍ଥ କରି ଶ୍ୟାମ କହୁଛି ହେ,
ଜେମାର ଅଙ୍ଗୀକାର ନୋହୁଛି ହେ । ଘୋଷା ।
ଯାମକୁ ଯାମ ତାମରସ-ନେତ୍ରାକୁ କାମ
ବିନ୍ଧି ମରମେ ଶର ମୋହୁଛି ହେ ।
ତେମନ୍ତେ ହେଲେ ଯାହା କରିଅଛି ସୁଦେହା—
ଚିତ୍ତେ ନିବିଡ଼େ ଶଙ୍କା ରହିଛି ହେ । ୧ ।

(୨୫) ଚିଲ୍ଲିବଲ୍ଲୀ—ଭୂରୁ ଲତା । ଡୋଳାକୁ ଖେଳାଇ—ଭଲ ରୂପେ ଦେଖି ।

ଯତ୍ନ କଲେଁ ହଁ ରହି ନିରତେ ପ୍ରିୟସହୀ—
ନୟନୁ ଅଶ୍ରୁଧାରା ବହୁଛି ହେ
ଯାବକ ଚିତ୍ର ଚାରୁ ଚରଣ ପଙ୍କଜରୁ
ପଡ଼ିବା ପ୍ରବାହରେ ଧୋଉଛି ହେ । ୨ ।
ଯାବତ ସୁବିନୟ କହିଲେ ମୁଁ ସଦୟ
ନ କରି ତୁନି ହୋଇ ରହିଛି ହେ
ନବ ନଳିନୀ ଦଳେ ପହୁଡ଼ିଛି ବିକଳେ
ନିଃଶ୍ୱାସ ମାତ୍ର ତାର ବହୁଛି ହେ । ୩ ।
ଯାମିନୀଶ, ବସନ୍ତ, ମଧୁପ, ପରଭୃତ
ରୁତଜାତ ସନ୍ତାପ ସହୁଛି ହେ
ନବ ପଲ୍ଲବ କରେ ଅବିରତେ ଶୋକରେ
ଚାରୁ ଖଣ୍ଡମଣ୍ଡଳ ବହୁଛି ହେ । ୪ ।
ଯାତନା ଦେଇ କୁମ୍ଭଜିତ-ସ୍ତନାକୁ ତୁମ୍ଭ
ବିରହ ହୁତବହ ଦହୁଛି ହେ
ଜଗଦ୍ଦେବ ଭାଷଇ ତାର ସହାୟ ହୋଇ
ମଳୟ ଗନ୍ଧବହ ବହୁଛି ହେ । ୫ ।

## (୨୭)

## ଶ୍ରୀକୃଷ୍ଣଙ୍କପ୍ରତି ସଖୀ

### ରାଗ—ସୁରଠ—ଝୁଲା

ରାଜି ନ କଲା ଆଜି ରମଣୀବର
ଏଣିକି ତୁମ୍ଭେ ତୁମ୍ଭ ଉପାୟ କର । ଘୋଷା ।
ରୋଷ ତା' ମନୁ ଯେବେ ପାରିବ ହରି
ଗମନ କର ଯହିଁ ଅଛି କିଶୋରୀ । ୧ ।

---

(୨୬) ଯଥାର୍ଥ କରି—ନିଶ୍ଚିତ ଭାବେ । ଯାମକୁ ଯାମ—ଘଡ଼ିକୁ ଘଡ଼ି । ନିରତେ—ସବୁବେଳେ । ଯାବକ—ଅଳତା । ଯାମିନୀଶ—ଚନ୍ଦ୍ର । ପରଭୃତ—କୋଇଲି । ରୁତ—କାକଳି । ହୁତବହ—ଅଗ୍ନି ।

ରାଧାର ମନେ ଅଛି ଦୁର୍ଜୟ ମାନ
ପାରିଲେ ନାଶ, କହି ଚାଟୁ ବଚନ । ୨ ।
ରସିକା ଆମ୍ଭ ବାଣୀ ସତ ନ ଘେନେ
ଲଭିଛି ଯେଉଁ ତାପ ରଖିଛି ମନେ । ୩ ।
ରାମା ତୁମ୍ଭର ପୂର୍ଣ୍ଣଚନ୍ଦ୍ର ବଦନ
ଦେଖିଲେ ଅବା ମନୁ ତେଜିବ ମାନ । ୪ ।
ରାଣକୁ ମୋର ହେଲେ ପ୍ରାଣ ସଙ୍ଗାତ
ଭଣଇ ଜଗଦ୍ଦେବ ନ କଲା ସତ । ୫ ।

(୨୮)

## ରାଧାଙ୍କପ୍ରତି ଶ୍ରୀକୃଷ୍ଣ

### ରାଗ—ବିହାଗ—ଝୁଲା

ଲାବଣ୍ୟବତୀ ଲାଜ ଧରୁ ଆଜ ମତିରେ । ଘୋଷା ।
ଲଳିତ-ଅଧରା ଲେଖୁ ନଖେ ଧରା
ଶରଦ ଚନ୍ଦ୍ରମା ମୁଖ ପୋତି ରେ । ୧ ।
ଲେଖିବା ବିନୟ କଲୁ କି ହୃଦୟ
ନବୀନା ତୋ ବିନା କେ ମୋ ଗତି ରେ । ୨ ।
ଲାଖ କରି ମାର ହୃଦୟକୁ ଶର
ବିନ୍ଧେ ଅତି କୋପେ ରତିପତି ରେ । ୩ ।
ଲତା ରମ୍ୟକୁଞ୍ଜ ମଣ୍ଡ ପଦକଞ୍ଜ
ଖଞ୍ଜନାକ୍ଷୀ ଘେନ ମୋ ବିନତିରେ । ୪ ।
ଲିଭାଅ ବିରହ ଜାତ ହୁତବହ
ଜଗଦ୍ଦେବ କହେ ଭାରତୀରେ । ୫ ।

(୨୭) ତାପ—ଦୁଃଖ । ରାଣକୁ—ଶପଥକୁ ।
(୨୮) ରତିପତି—କନ୍ଦର୍ପ । ଭାରତୀ—ବିନୟ ଭକ୍ତି ।

(୨୯)

## ରାଧାଙ୍କପ୍ରତି ଶ୍ରୀକୃଷ୍ଣ

### ରାଗ—ତୋଡ଼ି—ନିଃସାରୂ ତାଳ

ବନ୍ଧୁ ମୋ ହୃଦୟ ହାରା—ବନ୍ଧୂକ ଚାରୁ ଅଧରା
ବିଅର୍ଥେ ନ କର ମାନ—ବିକାଶୁ ଚନ୍ଦ୍ରବଦନ । ଘୋଷା ।
ବହଇ ମଳୟାନିଳ—ବିରହୀ ହୃଦ ଆକୁଳ
କରନ୍ତି ଅତି କୋମଳ—ଧ୍ୱନିରେ କୋକିଳକୁଳ
କିରଣରେ ଧରାତଳ—କରି କେଡ଼େ ସୁମଞ୍ଜୁଳ
ଗଗନେ ହୋଇ ନିର୍ମଳ—ଉଦୟ ଚନ୍ଦ୍ରମଣ୍ଡଳ । ୧ ।
ବନଜନୟନେ ବନ—ରଖି ରମଣୀ ରତନ
କର ପଲ୍ଲବେ ବଦନ—କମଳ କରି ଧିଆନ
ନ କହୁ ମୋତେ ବଚନ—ଅଧର ସ୍ମିତ-ବିହୀନ
ଆଜ ତ ଏଡ଼େ ବିମନ—କିପାଁ ରେ ଜୀବଜୀବନ । ୨ ।
ବନ୍ଧୁ, ତୋ ଗୁମାନ ଆଜି—ଦେଖି ଧନୁର୍ଗୁଣ ମାଜି
ମରମକୁ ଖୋଜି ଖୋଜି—ବିନ୍ଧେ ସ୍ମର ଶରରାଜି
ମୋ ହୃଦରେ ଆଣ୍ଟେ ବାଜି—ଯିବା ସକାଶରୁ ମଜି—
ଗଲାଣି ମୋ ଧୃତି ହଜି—ନୋହୁଛି ତୁ କିପାଁ ରାଜି । ୩ ।
ବଦନ ଚାରୁ ଅମ୍ବୁଜ—କର ତୁ ପ୍ରସନ୍ନ ଆଜ
ଦେଖି ପୂର୍ଣ୍ଣ ଦ୍ୱିଜରାଜ—ପାଉ ଅତିଶୟ ଲାଜ
ମୋଠାରୁ ଗୁମାନ ତେଜ—ଆଭରଣେ ତନୁ ସାଜ
ମୋର ଅଙ୍କରେ ବିରାଜ—ଭଣେ ବସୁଦୁର୍ଗ ରାଜ । ୪ ।

(୨୯) ବନ୍ଧୂକ—ବଧୁଲି ଫୁଲ । ବନଜ ନୟନେ—ପଦ୍ମନେତ୍ରରେ । ବନ—ଲୋତକ । ଅମ୍ବୁଜ—ପଦ୍ମ । ଦ୍ୱିଜରାଜ—ଚନ୍ଦ୍ର । ବସୁଦୁର୍ଗ—ଆଠଗଡ଼ ।

## (୩୦)

# ସଖୀ ପ୍ରତି ରାଧା

### ରାଗ—ବାହାର—ଏକତାଳି

ଶ୍ୟାମଳ-ତନୁକୁ ପଚାର ରେ ସଖି । ଘୋଷା ।
ସ୍ନେହ ଯେବେ ଥିଲା ଆନେ କିପାଁ ଆଉ ମୋତେ ଗୋ,
କରାଉଥିଲେ ସେ ଅଭିସାର ଗୋ । ୧ ।
ସଙ୍କେତ କରାଇ ସତେ କେଉଁ ରସିକାକୁ ଗୋ,
କଲେ କଣ୍ଠେ ତପନୀୟ ହାର ଗୋ । ୨ ।
ଶତ ଶପଥରେ ମୋତେ କରାଇଲେ ରାଜି ଗୋ,
କଲେ କିପାଁ ଏତେ ନାରଖାର ଗୋ । ୩ ।
ସହଜେ ଅବଳା ମୁହିଁ ରଜନୀରେ ବନେ ଗୋ
କେ କରନ୍ତା ମୋତେ ପ୍ରତିକାର ଗୋ । ୪ ।
ସପ୍ରେମରେ ଜଗଦ୍ଦେବ ଭାଷେ ବିନା ଦୋଷେ ଗୋ
କରାଇଲେ ଉର ବିରହାର ଗୋ । ୫ ।

## (୩୧)

# ରାଧାଙ୍କପ୍ରତି ଶ୍ରୀକୃଷ୍ଣ

### ରାଗ—ଶାବେରୀ—ଝୁଲା

ସୁକୁମାରୀ ନୃପତିକୁମାରି ।
ନ ଯା' ମୋତେ ମାରି ରେ । ଘୋଷା ।
ସୁର ମନୋହାରୀ—ମୋ ଅଙ୍କ ବିହାରି
ହୁଅ, ମନସିଜ-ରାଜ ଯାଉ ଆଜ ହାରି ରେ । ୧ ।
ସୁଲଳିତ ବାରି,—ରୁହ ନେତ୍ରବାରି
ନିର୍ଝରକୁ ନ ଝରାଇ ଦିଅ ତୁ ନିବାରି ରେ । ୨ ।
ସ୍ମରନଦୀ ପାରି, କରାଇ ଉଦ୍ଧାରି
ନ ନେଇ ତୁ ମୋତେ ରହୁ ଚିତ୍ତେ କି ବିଚାରି ରେ । ୩ ।
ସିଞ୍ଚ କୃପାବାରି—ଶାୟକ ପ୍ରହାରି
ବୋଲେ ଜଗଦ୍ଦେବ ସ୍ମର ଦେହଟି ସଂହାରି ରେ । ୪ ।

---

(୩୦) ଶ୍ୟାମଳ ତନୁ—ଶ୍ରୀକୃଷ୍ଣ । ତପନୀୟ—ସୁନା । ଉର—ବକ୍ଷଦେଶ ।
(୩୧) ମନସିଜ ରାଜ—କନ୍ଦର୍ପ ରାଜା । ସ୍ମରନଦୀ—କାମରୂପକ ନଦୀ । ଶାୟକ—ଶର ବା ବାଣ ।

## (୩୨)

## ରାଧାଙ୍କ ପ୍ରତି ସଖୀ

### ରାଗ—ମଙ୍ଗଳଗୁଜ୍ଜରୀ—ଆଦିତାଳ

ସଖି, ନ ବସ ଗୋ ତୁ ଗୁମାନେ । ଘୋଷା ।
ଶୁଣି ଶ୍ୟାମ ତୋର ବାଣୀ—ପ୍ରାଣକଣ୍ଠତଟେ ଆଣି
ରଖିଲା ପରି ରେ ଦିଶେ ଅନୁମାନେ । ୧ ।
ଶରଦଚନ୍ଦ୍ରମା ମୁଖୀ—କର ତୁ ଶ୍ୟାମକୁ ସୁଖୀ
ଅଧର ମଧୁର ସୁଧା ରସପାନେ । ୨ ।
ଶପତ କଲାଣି ବେଣୁ—ଛୁଇଁ ତ ନୀରଦତନୁ
ମନେ ହେଲେ ନ ରସିବି ବୋଲି ଆନେ । ୩ ।
ସହି ରେ ତୁ ଦୟାବତୀ,—ବୋଲାଇ ନିଷ୍ଠୁର ଅତି—
ହେବାର ଆଜ ଗୋ ଘେନ ତୋତେ ଯେ ନ ମାନେ । ୪ ।
ସହରକ୍ଷେ ରାଜଇନ୍ଦୁ ଭଣଇ ସେ ପ୍ରାଣବନ୍ଧୁ
କର କରୁଣାକୁ ଦିବ୍ୟ ଅବଧାନେ । ୫ ।

## (୩୩)

## ସଖୀ

### ରାଗ—ରାମକିରୀ—ଏକତାଳି

ହରି ପାଶରେ ସଜନୀ ଥାଉ ଗୋ ଆଜ ରଜନୀ । ଘୋଷା ।
ହେଲାନି ସଖୀର ହାସ—ବଦନଚନ୍ଦ୍ର ପ୍ରକାଶ
ତେଜିଲାଣି ଶ୍ୟାମରୋଷ
ଏଠାରୁ ଗୋ ଯିବା ଆସ । ୧ ।
ହଟିଛି ମଦନରାଜ—ବିନ୍ଧି ଶାୟକସମାଜ
ନାଶିବାକୁ ସଖୀ ଲାଜ—କଲା କି ଗୋ ଧନୁସଜ । ୨ ।
ହିମ ବିନା କମ୍ପେ ତନୁ—ସ୍ୱେଦ ସଖୀ ଅପଘନୁ
ବହଇ ସନ୍ତାପ ବିନୁ—ନ ସ୍ଫୁରେ ବାଣୀ ବଦନୁ । ୩ ।

(୩୨) ନୀରଦତନୁ—ଶ୍ରୀକୃଷ୍ଣ ।

ହେବାରୁ ସ୍ମର ଆୟତ—ହେଲେ ହେଁ ପ୍ରିୟ ସଙ୍ଗାତ
ଆମ୍ଭଙ୍କୁ ତେଜିବା ଚିତ୍ତ—କଲାନି ଗୋ ପ୍ରାଣମିତ । ୪ ।
ହରଷରେ ରାମସୋମ—ଧରି ନିଜ ହୃଦେ ପ୍ରେମ
ଭାବିଲାନି ଘନଶ୍ୟାମ,—ପଦ ଅଷ୍ଟଦୁର୍ଗ ଧାମ । ୫ ।

## (୩୪)

## ରାଧାଙ୍କ ପ୍ରତି ସଖୀ

### ରାଗ—ତୋଡ଼ି ଜଙ୍ଗଲା—ରୂପକ

କ୍ଷୀରୋଦବାସ କରିଛି ସବୁ ପ୍ରକାଶ ରେ ସଙ୍ଗିନୀ । ଘୋଷା ।
କ୍ଷମା ନ କଲୁ ତ ଆମ୍ଭ ବୋଲେ ଶ୍ୟାମ ଦୋଷ
ସେ ମାନ କତୁରୀ ଦେଲା କି ଚତୁରୀ
ତା' ଭ୍ରୂରୁ ଭଙ୍ଗୀ ବିଳାସ ରେ । ୧ ।
କ୍ଷମ ନିକି ତୋତେ ଆମ୍ଭେ କରିବାକୁ ତୋଷ
ମୋହିଲା ତୋ ମନ ଛଡ଼ାଇ ଗୁମାନ
ମୋହନ ସୁମନ୍ଦ ହାସ ରେ । ୨ ।
କ୍ଷୋଭ ନାହିଁ ଆମ୍ଭଙ୍କୁ ଯା ତେଜାଇଲୁ ପାଶ
ସଖି, ରଖି ତ ନ ପାରିଲୁ ଶ୍ରୀଅଙ୍ଗେ
ଚିର ସଙ୍ଗୀ ନୀଳ ବାସ ରେ । ୩ ।
କ୍ଷୀଣୋଦରୀ, ଶ୍ୟାମକୁ କଲୁ କି ନିଜ ଦାସ
ପରବ ଚନ୍ଦ୍ର ଗରବ-ହର ମୁଖୀ
ଆରମ୍ଭି ତ ଥିଲୁ ରାସ ରେ । ୪ ।
କ୍ଷୀର ରଖି ନୀର ଉପେକ୍ଷିଲା ପରି ହଂସ
ଭାଷେ ଜଗଦ୍ଦେବ ତୋ ଶ୍ରୀଅଙ୍ଗ ବନ୍ଧୁ
କଲା ଶ୍ୟାମ ରସ ଶେଷ ରେ । ୫ ।

---

(୩୩) ସମାଜ—ସମୂହ । ସ୍ୱେଦ—ଝାଳ । ରାମସୋମ—ରାମଚନ୍ଦ୍ର ।
(୩୪) କ୍ଷୀରୋଦ ବାସ—ପାଟ ଲୁଗା । କତୁରୀ ଦେଲା—କାଟି ପକାଇଲା । ପରବଚନ୍ଦ୍ର—ପୂର୍ଣ୍ଣଚନ୍ଦ୍ର ।

# ପ୍ରଥମ ଛାନ୍ଦ

## ରାଗ—ମଙ୍ଗଳଗୁଜ୍ଜରୀ

### (ପୁରୀ ଜଗନ୍ନାଥ ମନ୍ଦିର ବେଢ଼ାର ଦେବଦେବୀଙ୍କ ସ୍ତୁତି)

ଜୟ ଲବଣଜଳଧି ତୀରଅଳଙ୍କାର । ଜୟ ଜମ୍ବୁଦୀପ କମ୍ବୁମଧ କ୍ଷେତ୍ରବର ହେ । ୧ । କଷ୍ଟଧ୍ୱଂସୀ ଅଷ୍ଟ ଅଷ୍ଟମୂର୍ତ୍ତି ଜୟ ଜୟ । ବସୁସଂଖ୍ୟ ଭବାନୀ କର ମୋ ଭୟ କ୍ଷୟ ହେ । ୨ । ମାର୍କଣ୍ଡେୟ ସିତଗଙ୍ଗା ଶ୍ରୀ ରୋହିଣୀକୁଣ୍ଡ । ତୀର୍ଥରାଜ ଇନ୍ଦ୍ରଦ୍ୟୁମ୍ନ କଳିତାପ ଖଣ୍ଡ ହେ । ୩ । ଯହିଁ ମହେନ୍ଦ୍ରଚରମେ ବେତ୍ରବଲ୍ଲୀ ଖେଳେ । ଦୀନ ପ୍ରପନ୍ନ ପ୍ରବେଶ ହୋଏ ନିରର୍ଗଳେ ହେ । ୪ । ସେ ସିଂହଦ୍ୱାରକୁ ରଚି ଲକ୍ଷେ ନମସ୍କାର । ଆଶା କରିଅଛି ତରିବାକୁ ଏ ସଂସାର ଯେ । ୫ । ପତିତ ଉଦ୍ଧାର ତ ଆମ୍ଭର ଆବଶ୍ୟକ । ଅବଲମ୍ବ କରିଛନ୍ତି ମୁମୁକ୍ଷୁ ଅନେକ ଯେ । ୬ । ଆଗ ପଛ ହେଲେ ହେବ ପ୍ରଭୁପଣ କ୍ଷତି । ଏହି ଚିନ୍ତାରେ ଯେ ଚିତ୍ର ପରି ଆଭାସନ୍ତି ଯେ । ୭ । ସେ ପତିତପାବନଙ୍କ ଚରଣକମଳେ । ବନ୍ଦେ ନନ୍ଦାବର୍ତ୍ତତଳ ବନ୍ଦାପନା ବେଳେ ଯେ । ୮ । ଭବଭୟରାଶିକି ଯେ ନାଶିବାରେ କ୍ଷମ । କାଶୀଶ୍ୱର ସେହି ପରକାଶିବେ ମୋ କ୍ଷେମ ଯେ । ୯ । କାକଚଞ୍ଚୁପୁଟଭ୍ରଷ୍ଟ ଯାହାଙ୍କର ଲବ । ବିତରନ୍ତି ତ୍ରିଲୋକ ନିର୍ବାଣ ମହୋତ୍ସବ ଯେ । ୧୦ । ସେ ଶ୍ରୀ ମହାପ୍ରସାଦ ସୌରଭ ନିକେତନ । ମୋ ଶରଣ ଦ୍ୱାବିଂଶତି ସଂଖ୍ୟକ ସୋପାନ ଯେ । ୧୧ । ବିରଚିତ ସୂଚିକର୍ମରୁଚି ମନୋହର । ହରଷ ବରଷ ଭୋଗମଣ୍ଡପ ମୋହର ହେ । ୧୨ । ଅଜାଣନଗଜାପତି ଜଗତ ଜୀବାତୁ । ଆତୁରତା ନାଶ ଆନନ୍ଦେ ମୋ ଚିତ୍ତ ମାତୁ ହେ । ୧୩ । ସ୍ୱଦିଗକୁ ପତିତବ୍ରଜକୁ ଧରି ବଳେ ।

---

ପ୍ରଥମ ଛାନ୍ଦ

୧ । କମ୍ବୁମଧକ୍ଷେତ୍ରବର—ପୁରୀ ଶଙ୍ଖକ୍ଷେତ୍ର ନାମରେ ପ୍ରସିଦ୍ଧ । ୨ । ଅଷ୍ଟ ଅଷ୍ଟମୂର୍ତ୍ତି—ଜଳ, ଅଗ୍ନି, ବାୟୁ, ଆକାଶ, ପୃଥିବୀ, ଯଜମାନ, ଚନ୍ଦ୍ର ଓ ସୂର୍ଯ୍ୟ—ଏହି ଅଷ୍ଟରୂପବିଶିଷ୍ଟ ଅଷ୍ଟଶମ୍ଭୁ । ବସୁସଂଖ୍ୟ ଭବାନୀ—ଅଷ୍ଟଦୁର୍ଗା । ୩ । ସିତଗଙ୍ଗା— ଶ୍ୱେତଗଙ୍ଗା ନାମକ ତୀର୍ଥ, ତୀର୍ଥରାଜ—ସମୁଦ୍ର । ୪ । ମହେନ୍ଦ୍ର ଚରମେ—ଇନ୍ଦ୍ରଙ୍କ ପିଠିରେ, ଦୀନପ୍ରସନ୍ନ—ଦରିଦ୍ର ଆଶ୍ରିତ ଲୋକ । ନିରର୍ଗଳେ—ବିନା ବାଧାରେ । ୮ । ନନ୍ଦାବର୍ତ୍ତତଳ —ନନ୍ଦାବର୍ତ୍ତ ନାମକ ଦ୍ୱାରର ନିମ୍ନଭାଗ । କ୍ଷେମ—ମଙ୍ଗଳ । ୧୦ । କାକଚଞ୍ଚୁପୁଟଭ୍ରଷ୍ଟ ଲବ —କୁଆଥଣ୍ଟରୁ ଖସିପଡ଼ିଥିବା ମହାପ୍ରସାଦ କଣିକା । ନିର୍ବାଣ ମହୋତ୍ସବ—ମୁକ୍ତିରୂପ ଆନନ୍ଦ । ୧୨ । ସୂଚିକର୍ମରୁଚି—ସୂକ୍ଷ୍ମକାରିଗିରୀ ଯୋଗୁଁ ସୁନ୍ଦର । ୧୩ । ଅଜାଣନଗଜାପତି—ଭୋଗମଣ୍ଡପ ପୂର୍ବରେ ଗାତ ଭିତରେ ଥିବା ପାର୍ବତୀ - ପତି ବା

ଶମନଙ୍କର କିଙ୍କରେ ଘେନିଯିବା ବେଳେ ଯେ । ୧୪ । କରଜଲଜର ଚକ୍ରେ ତରଜନ କରି । ଉଦୀଚୀକି ଛାଡ଼ ବୋଲି ଦେଲାପରି ଠାରି ଯେ । ୧୫ । ସେହି ଦିଗେ କରି ମୁଖଚନ୍ଦ୍ରକୁ ଆପଣ । ପୃଷ୍ଠେ ପକାଇଛ ରୋଷ ଜୟ ନାରାୟଣ ହେ । ୧୬ । ନିମୀଳନା କେଳିକାଳେ ଯା କୁମ୍ଭ ଶଙ୍କାରେ । ଉମା କୁଚାଚଳନୀଳଦୁକୂଳ ଝିଙ୍କାରେ ଯେ । ୧୭ । କୁମାର ହଟ ପ୍ରକଟ କରୁଁ ତାହା ଦେଖି । ହର ହସୁ ହେଠମୁଖ ହେଲେ ଚନ୍ଦ୍ରମୁଖୀ ଯେ । ୧୮ । ସେ ଭକ୍ତଜନସମୂହ ମହାବିଘ୍ନବାର । ଅଟକିବା ବଟଗଣେଶଙ୍କୁ ନମସ୍କାର ହେ । ୧୯ । ନମୋ ନମୋ ନମୋଽସ୍ତୁତେ ଇନ୍ଦ୍ରାଦିରେ କରି । କରିମୁଖଜନନୀ ମଙ୍ଗଳା ବିଶ୍ୱେଶ୍ୱରୀ ଗୋ । ୨୦ । ଯାହା ନଟନପାଟବ ପ୍ରକଟନ ଘେନି । ଜଟାଟବୀ ଅଗ୍ରବିନିର୍ଗତ ମନ୍ଦାକିନୀ ଗୋ । ୨୧ । ଦିଗଙ୍ଗନାକୁଚକୁମ୍ଭ ପତ୍ରଭଙ୍ଗ ତୁଲେ । ଦଶଗଜଥାନ ଘଳୀ ଦାନ ଧୋଇଦେଲେ ଯେ । ୨୨ । ସେ ବଟ ବିଟପୀଶ୍ୱର ଚରଣପଙ୍କଜେ । ଶରଣ ପ୍ରପନ୍ନ ହୋଇ ଅହର୍ନିଶ ଭଜେ ଯେ । ୨୩ । ଧରାସ୍ତନ ଭ୍ରମାବହ ନୀଳ ଶିଳୋଚ୍ଚୟ । ପତ୍ରାବଳି ଚିତ୍ରାକୃତି ମହାମହୋଚ୍ଛ୍ରୟ ଯେ । ୨୪ । କଳ୍ପବଟଙ୍କର ସେ ଅନଳ୍ପ ଅନାତପ । କରନ୍ତୁ ମୋ ଭବଭ୍ରମ ଭବଶ୍ରମ ଲୋପ ଯେ । ୨୫ । କବଳିତ କଳା କାଦମ୍ବିନୀ କାନ୍ତି କେଳି । କରନ୍ତୁ କଲ୍ୟାଣ କୃଷ୍ଣ ମୋ ମାନସେ ଖେଳି ଯେ । ୨୬ । ରାଧାମୁଖାମ୍ବୁଜ ଭ୍ରମେ ସ୍ୱପାଦ ସାରସ । ତୁମ୍ଭେ ଯେ ନିରନ୍ତରେ ବଳାଇ ମାନସ ଯେ । ୨୭ । ପ୍ରଳୟଜଳରେ ଖଟ କରି ବଟଦଳ । ପହୁଡ଼ିଲେ ମୋଦେ ନୀଳନବୀନକୁନ୍ତଳ ଯେ । ୨୮ । ଭବଭୟ ପୟୋଧିକି ତରିବା

---

ମହାଦେବ । ଜୀବାତୁ—ଜୀବନ । ୧୪ । ସ୍ୱଦିଗକୁ—ଯମଙ୍କ ଅଧିଷ୍ଠିତ ଦକ୍ଷିଣ ଦିଗକୁ । ପତିତବ୍ରଜ— ପାପିସମୂହ । ଶମନଙ୍କର କିଙ୍କର— ଯମଦୂତ । ୧୫ । କରଜଲଜର—ହସ୍ତପଦ୍ମରେ ଥିବା, ଉଦୀଚୀ—ଉତ୍ତର ଦିଗ, ସ୍ୱର୍ଗମାର୍ଗ । ୧୬ । ବେଢ଼ାର ଅଗ୍ନିକୋଣରେ ଥିବା ନାରାୟଣମୂର୍ତ୍ତି ଉତ୍ତରମୁଖୀ । ୧୭ । ନିମୀଳନାକେଳି—ଆଖି ବୁଜାବୁଜି ଖେଳ, ଯା କୁମ୍ଭଶଙ୍କାରେ—ଯେଉଁ ଗଣେଶଙ୍କ କୁମ୍ଭଦ୍ୱୟ ବୋଲି ଭ୍ରମ କରି । ୧୮ । କୁମାର—କାର୍ତ୍ତିକେୟ, ହେଠମୁଖ—ନମ୍ରମୁଖ, ଚନ୍ଦ୍ରମୁଖୀ—(ଏଠାରେ ଚନ୍ଦ୍ରାନନା ପାର୍ବତୀ) । ୧୯ । ମହାବିଘ୍ନବାର—ବଡ଼ ବଡ଼ ବାଧାସବୁ, ଅଟକିବା—ଅଟକାଇବା, ବନ୍ଦ କରି ରଖିବା । ୨୧ । ଯାହା ନଟନପାଟବ ପ୍ରକଟନ ଘେନି—ଯେଉଁ ଦୁର୍ଗାଙ୍କ ନୃତ୍ୟନିପୁଣତା ପ୍ରକାଶ ପାଇବାରୁ । ଜଟାଟବୀ—ଶିବଙ୍କ ଜଟାରୂପ ଅରଣ୍ୟ । ୨୨ । ଦିଗଙ୍ଗନା କୁଚକୁମ୍ଭପତ୍ରଭଙ୍ଗତୁଲେ —ଦଶଦିଗରୂପ ସ୍ତ୍ରୀମାନଙ୍କ କୁଚରୂପକୁମ୍ଭରେ ଚିତ୍ର ହୋଇଥିବା କସ୍ତୁରୀ ପ୍ରଭୃତିରେ ଅଙ୍କିତ ପତ୍ରର ଚିତ୍ର ଧୋଇଦେବା ସାଙ୍ଗେ ସାଙ୍ଗେ, ଦଶଦିଗ୍‌ଗଜଙ୍କର ଗଣ୍ଡସ୍ଥଳର ମଦଜଳଧାରାକୁ ଯେ ପ୍ରଳୟରେ ଧୋଇଥିଲେ । ୨୩ । ବଟ ବିଟପୀଶ୍ୱର—କଳ୍ପବଟ ମୂଳରେ ଥିବା ବଟକୃଷ୍ଣ । ୨୪ । ମହାମହୋଚ୍ଛ୍ରୟ— ଅତି ଉଚ୍ଚ । ୨୫ । ଅନଳ୍ପ ଅନାତପ—ପ୍ରଚୁର ଛାୟା । ୨୬ । କବଳିତ କଳା କାଦମ୍ବିନୀକାନ୍ତି କେଳି—କୃଷ୍ଣବର୍ଣ୍ଣ ମେଘଭଳି ମନୋହର । ୨୭ । ସ୍ୱପାଦସାରସ—ନିଜ ପାଦରୂପ ପଦ୍ମ । ୩୦ । ଭୁଜଙ୍ଗପୁଙ୍ଗବତଳ୍ପ—ଅନନ୍ତ ନାଗ ଉପରେ

ଆନନ୍ଦେ । ବନ୍ଦେ ସେ ବାଳମୁକୁନ୍ଦଚରଣାରବିନ୍ଦେ ଯେ । ୨୯ । ଭୁଜଙ୍ଗପୁଙ୍ଗବତଳ୍ପ ଅର୍ଥିକଳ୍ପତରୁ । ଦନୁଜମଣ୍ଡଳୀମୁଣ୍ଡ ଧରାଧର ସ୍ୱରୁ ଯେ । ୩୦ । ରମା ସରସ୍ୱତୀଙ୍କର କରସେବ୍ୟପଦ । ଶ୍ରୀପୁରୁଷୋତ୍ତମ ହର ମୋହର ବିପଦ ହେ । ୩୧ । ଖଡ଼୍‌ଗ ଧରି ଯେ ହରି ଗର୍ଭ ଗଡ଼ଭୟ । ନିରତେ ନିବାର କ୍ଷେତ୍ରପାଳ ଜୟ ଜୟ ହେ । ୩୨ । ଉତ୍ତୁଙ୍ଗ ମହୀଧ୍ରବୁଦ୍ଧି ହୋଇଲେ ପ୍ରାସାଦେ । ଜମ୍ଭାରି ଦମ୍ଭୋଳିକେଳି ହୋଇବ ପ୍ରମାଦେ ଯେ । ୩୩ । ତାହା ନିବାରଣ ପରାକ୍ରମ ଚିତ୍ତେ ଚିନ୍ତି । ଦେଉଳକମଉଳି ସ୍ଥଳେ ଯେ ବିରାଜେ ନିତି ହେ । ୩୪ । କ୍ଷମା କରି ନିଖିଳ ପାତକୀ ଜନ୍ତୁମନ୍ତୁ । ସେ ନୀଳଚକ୍ର ମୋ ଦୁଃଖଚକ୍ର ନିବାରନ୍ତୁ ଯେ । ୩୫ । ପ୍ରବଳନ୍ତେ ହିରଣ୍ୟଦନୁଜଗଜବଳେ । ସମଗ୍ର କେଶରିବେଶ ପରିଗ୍ରହ ବେଳେ ଯେ । ୩୬ । ବିପତ୍ତି ଅଶକ୍ତ ଭକ୍ତ କରନ୍ତେ ସ୍ମରଣା । ହୃଦକଞ୍ଜ ଦ୍ରବମୟ କରନ୍ତେ କରୁଣା ଯେ । ୩୭ । କଣ୍ଠଯାଏ କଣ୍ଠୀରବ ବେଶ ହୋଇଥିଲେ । ସ୍ତମ୍ଭରୁ ସମ୍ଭବି ଦନୁଜକୁ ଯେ ମାଇଲେ ଯେ । ୩୮ । ପାପବଶୁଁ ଯିବାବେଳେ ମୁଁ ନରକେ ସରି । ଅବଲମ୍ବ ହୋଇବେ କି ସେ ନରକେଶରୀ ଯେ । ୩୯ । ବିଭ୍ରାଜିତ ସୁରାଚାର୍ଯ୍ୟ ଧରାସୁରଙ୍କର । ବିଦ୍ୟାକେଳିସ୍ଥଳୀ ଶତ୍ରୁ ଦୁରିତପଙ୍କର ଯେ । ୪୦ । ଯହିଁ ସୁନାସୀର ଶିରେ କରନ୍ତି ବନ୍ଦନ । ସେ ମୁକ୍ତିମଣ୍ଡପ ହେବେ ମୋର ଆନନ୍ଦନ ଯେ । ୪୧ । ତୁରୀୟ ସମୟେ ଚୂରି ପ୍ରତ୍ୟୂହ ମୋହର । ପୂରିବେ କି ମନୋରଥ ଖୁରିଗଣେଶ୍ୱର ଯେ । ୪୨ । ଯହିଁ ଅବଗାହିବାରୁ ଛାର କାକପାଳ । ବନ୍ଦିଲେ ତାହାକୁ ଇନ୍ଦ୍ର ଆଦି ଦେବଜାଳ ଯେ । ୪୩ । କଳୁଷମଣ୍ଡଳଧ୍ୱଂସୀ ସେ ରୋହିଣୀକୁଣ୍ଡ । ଖଣ୍ଡନ କରନ୍ତୁ ଚଣ୍ଡଭାନୁସୁତଦଣ୍ଡ ହେ । ୪୪ । ଯାହା ପ୍ରସାଦବଶରୁ ମହାପ୍ରସାଦରେ । ପବିତ୍ର ହୁଅଇ ଜଗତ୍ରୟ ପ୍ରମୋଦରେ ଯେ । ୪୫ । ମୃଗେନ୍ଦ୍ରବାହିନୀ କ୍ଷେତ୍ରବର ଅଧୀଶ୍ୱରୀ । ନାଗସୁତା ସୁଧରାକୁମ୍ଭଧାରିଣୀ ସୁନ୍ଦରୀ ଯେ । ୪୬ । ବିମଳା ବିମଳ ଅମ୍ଭୋରୁହବିଲୋଚନା । ହୋଇବେ କି ମୋର ପାପକଳାପମୋଚନା ହେ । ୪୭ । ରଜ ତମ ସତ୍ତ୍ୱ ତିନି ଗୁଣ ମଧ ମୟ । ରଜତମହୀଧ୍ରନିକେତନା ଜୟ ଜୟ ହେ । ୪୮ ।

---

ଶୋଇଥିବା । ଧରାଧରସ୍ୱରୁ—ପର୍ବତର ବକ୍ର । ୩୩ । ଉତ୍ତୁଙ୍ଗମହୀଧ୍ର ବୁଦ୍ଧି—ଉଚ୍ଚପର୍ବତଜ୍ଞାନ । ପ୍ରାସାଦ—ବଡ଼ ଦେଉଳ । ଜମ୍ଭାରିଦମ୍ଭୋଳି—ବଜ୍ର । ୩୫ । ପାତକୀ ଜନ୍ତୁମନ୍ତୁ—ପାପୀ ଜୀବଙ୍କର ଅପରାଧ । ୩୬ । ହିରଣ୍ୟ -କଶିପୁ ରାକ୍ଷସ ମତ୍ତ ହାତୀ ପରି ପ୍ରବଳ ହେଲା ବେଳେ । ୩୭ । ବିପତ୍ତି ଅଶକ୍ତଭକ୍ତ—ବିପତ୍ତି ସମୟରେ ଅକ୍ଷମ ହୋଇଥିବା ଭକ୍ତ ପ୍ରହ୍ଲାଦ । ୩୩ । କଣ୍ଠୀରବ—ସିଂହ । ୪୦ । ବିଭ୍ରାଜିତ—ଶୋଭିତ, ସୁରାଚାର୍ଯ୍ୟଧରାସୁରଙ୍କ—ବୃହସ୍ପତି ସଦୃଶ ବ୍ରାହ୍ମଣମାନଙ୍କର । ୪୧ । ସୁନାସୀର— ଇନ୍ଦ୍ର । ୪୨ । ତୁରୀୟ ସମୟେ—ଚତୁର୍ଥାବସ୍ଥାରେ, ପ୍ରତ୍ୟୂହ—ବାଧା, ଦୁଃଖ । ୪୪ । ଚଣ୍ଡଭାନୁସୁତଦଣ୍ଡ—ଯମଦଣ୍ଡ । ୪୫ । ଜଗନ୍ନାଥଙ୍କ ଭୋଗ ବିମଳାଙ୍କୁ ସମର୍ପିତ ହେବା ପରେ 'ମହାପ୍ରସାଦ'ରେ ପରିଣତ ହୁଏ । ୪୮ । ବଳରାମ ରଜୋଗୁଣରୂପୀ; ସୁଭଦ୍ରା ତମୋରୂପିଣୀ ଓ ଜଗନ୍ନାଥ ସତ୍ତ୍ୱରୂପୀ । ରଜତମହୀଧ୍ରନିକେତନ—ରୂପାପର୍ବତତୁଲ୍ୟ ପ୍ରାସାଦ, ବଡ଼ ଦେଉଳ । ୪୯ ।

ଶିଖଣ୍ଡମଣ୍ଡନ ଭଣ୍ଡପୂର୍ବ ଗଜାନନ । ନରହରି ରାଧାଧବ ମଦନମୋହନ ଯେ । ୪୯ । ବରଷେ ହରଷ କୃପାପୀୟୂଷନିର୍ଝର । ଏ ପଞ୍ଚ ମୋ ପ୍ରପଞ୍ଚ ବାସନା ଦୂର କର ହେ । ୫୦ । ସରସ୍ୱତୀ ବୋଲି ଖ୍ୟାତି ଏକେ ଯାହାଙ୍କର । ସ୍ତୁତି ଉଚ୍ଚାରନ୍ତି ଶ୍ରୁତିମୁଖାଦି ଶଙ୍କର ଯେ । ୫୧ । ତ୍ରିଭୁବନଜନୟିତ୍ରୀ ଶ୍ରୀ ଭୁବନେଶ୍ୱରୀ । ପରିପାଳନ୍ତୁ ମୋ ଶିରୀକପଟବଲ୍ଲରୀ ଯେ । ୫୨ । ଇନ୍ଦ୍ରଦ୍ୟୁମ୍ନମୋଦମହୋଦଧିରା-କାଧବ । ପ୍ରସନ୍ନ ହୁଅନ୍ତୁ ମୋରେ ଶ୍ରୀ ନୀଳମାଧବ ଯେ । ୫୩ । ସ୍ଫୁଟ ଅଟ୍ଟହସନ ମାଳିକା ବକାଳିକା । କରନ୍ତୁ ଶଂବରବୃଷ୍ଟି ମୋଠାରେ କାଳିକା ଗୋ । ୫୪ । ଶ୍ରୀବସ୍ତଲାଞ୍ଛନ ବସ୍ତଗୁଚ୍ଛସହଚରୀ । ଚରାଚରେଶ୍ୱରୀ ନେତ୍ର ଅନ୍ତେ ରଚ ଶିରୀ ଗୋ । ୫୫ । ସମୃଦ୍ଧ ରାକ୍ଷସଯୁଦ୍ଧ ବୁଦ୍ଧିର ପ୍ରଭାବ । ସମୀରନନ୍ଦନ ବଢ଼ାଅ ମୋ ନେତ୍ରୋତ୍ସବ ହେ । ୫୬ । ବିଚିତ୍ର ଚିତ୍ରବିନ୍ୟସ୍ତ ଗଣେଶ ନୃହରି । ହରନ୍ତୁ ମୋହର ଚିତ୍ତସନ୍ତାପ ଲହରୀ ହେ । ୫୭ । ସୁରଧୁନୀ ଆଦି ନଦୀମାନଙ୍କର ତୀର୍ଥ । ଶ୍ରୀଚରଣାମୃତ କୁଣ୍ଡ କରନ୍ତୁ କୃତାର୍ଥ ହେ । ୫୮ । ଅମ୍ବରସ୍ଥଳୀ ମହିଳା ରତନଭୂଷଣ, କରନ୍ତୁ ପୂଷଣ କଳିଜମ୍ବାଳ ଶୋଷଣ ଯେ । ୫୯ । ପାତାଳେଶ ନାମ ବ୍ୟୋମକେଶ ଉତ୍ତରାଣୀ । ଦୁହେଁ ମୋର ହୁଅନ୍ତୁ ରକ୍ଷକ ଉଦ୍ଧାରିଣୀ ଯେ । ୬୦ । ଅମରୀଗୀତ ଲାବଣ୍ୟବିଭୂତି ସେ ମୋତେ । ରଖନ୍ତୁ ଶୀତଳା କୃପା ଅପାଙ୍ଗେ ନିରତେ । ୬୧ । ଧରାଧର ଅଧିରାଜ କନ୍ୟାତୁଲେ ମିଶି । କର ଲୋକେଶ୍ୱର ମୋତେ ସ୍ୱପଦନିବାସୀ ହେ । ୬୨ । କାଶୀ ତେଜି ଆସି ଯେଚି କଲେ କ୍ଷେତ୍ରସ୍ଥିତି । ବିଶ୍ୱନାଥ ନିଃସ୍ୱ ଚିନ୍ତାମଣି ସେ ମୋ ଗତି ହେ । ୬୩ । ଶ୍ମଶାନନିଳୟ ଦିଗମ୍ବର ହେଲେ ହେଲେ । ବୃଷା ନ ଦେଖିବା ଶିରୀ ଦିଅନ୍ତି ଯେ ଭଲେ ହେ । ୬୪ । ଈଶାନ ପ୍ରଭାବ ପ୍ରଭୁ

---

ଭଣ୍ଡପୂର୍ବଗଜାନନ—ଭଣ୍ଡ ଗଣେଶ । ୫୦ । ପ୍ରପଞ୍ଚବାସନା—ସଂସାରକାମନା । ୫୧ । ଶ୍ରୁତିମୁଖ—ବ୍ରହ୍ମା । ୫୨ । ଶିରୀକପଟବଲ୍ଲରୀ—ସୌଭାଗ୍ୟ ରୂପ କପଟଲତା । ୫୩ । ଇନ୍ଦ୍ରଦ୍ୟୁମ୍ନ ... ଧବ—ଇନ୍ଦ୍ରଦ୍ୟୁମ୍ନଙ୍କ ଆନନ୍ଦସାଗର ବଢ଼ାଇବାରେ ପୂର୍ଣ୍ଣିମା ଚନ୍ଦ୍ରସ୍ୱରୂପ । ୫୪ । ସ୍ଫୁଟଅଟ୍ଟହସନ—ଯାହାଙ୍କର ଅଟ୍ଟହାସ ବକପନ୍ତି ପରି ଓ ଯାହାଙ୍କର ବର୍ଣ୍ଣ କଳାମେଘ ପରି । ଶଂବରବୃଷ୍ଟି—ମଙ୍ଗଳରୂପ ବରଦାନ ଏବଂ ଜଳବୃଷ୍ଟି । ୫୫ । ଶ୍ରୀବସ ...ସହଚରୀ—ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥଳ ନିବାସିନୀ । ନେତ୍ର ... ଶିରୀ—ନେତ୍ରକୋଣରେ ମୋ ସୌଭାଗ୍ୟର ସଙ୍କେତ କର । ୫୬ । ସମୃଦ୍ଧ ... ପ୍ରଭାବ—ପରାକ୍ରାନ୍ତ ରାକ୍ଷସମାନଙ୍କର ଯୁଦ୍ଧ ବୁଦ୍ଧିର ଶାସକ । ସମୀରନନ୍ଦନ—ହନୁମାନ । ୫୯ । ପୂଷଣ—ସୂର୍ଯ୍ୟ, କଳିଜମ୍ବାଳ—କଳିକାଳଜନିତ ପାପରୂପ ପଙ୍କ । ୬୦ । ପାତାଳେଶ୍ୱର ଶିବ ଓ ଉତ୍ତରାଣୀ ଠାକୁରାଣୀ—ଯଥାକ୍ରମେ ମୋ ରକ୍ଷକ ଓ ଉଦ୍ଧାରିଣୀ ହୁଅନ୍ତୁ । ୬୨ । ଲୋକେଶ୍ୱର— ଲୋକନାଥ ମହାଦେବ, ସ୍ୱପଦନିବାସୀ—ଶିବଲୋକବାସୀ । ୬୪ । ହେଳେ—ଅକ୍ଳେଶରେ, ଦିଗମ୍ବର—ଲଙ୍ଗଳା, ବୃଷା—ଇନ୍ଦ୍ର । ୬୫ । ଈଶାନ—ସୂର୍ଯ୍ୟଙ୍କପରି ପ୍ରଭାବଶାଳୀ ଈଶାନେଶ୍ୱର । ୬୭ । ସଦାଶିବ-ଶିବ—ମଙ୍ଗଳମୟ ମହାଦେବ, ବାରିଜସୁତ—ବ୍ରହ୍ମା । ୬୮ । ପକ୍ଷିସାର୍ବଭୌମ—ପକ୍ଷିରାଜ, ଗରୁଡ଼ । ୬୯ । କଳାରାହାଟ—

ଈଶାନନାଥର । ସମଗ୍ରତା ସେ କରିବେ ମୋ ମନୋରଥର ଯେ । ୬୫ । ସୁନ୍ଦର ମନ୍ଦିର ଜଗନ୍ମୋହନ ଯା ନାମ । ଲକ୍ଷବାର ଘେନନ୍ତୁ ସେ ମୋହର ପ୍ରଣାମ ଯେ । ୬୬ । ସଦାଶିବ ଶିବ ସେ ବାରିଜସୁତ ଦୁହେଁ । ପ୍ରତିକୂଳକୂଳକୁ ନାଶନ୍ତୁ ଅନୁଗ୍ରହେ ଯେ । ୬୭ । ତକ୍ଷକର ଦଷ୍ଟଜନରକ୍ଷକ ଯା ନାମ । ପକ୍ଷପାତ କରନ୍ତୁ ସେ ପକ୍ଷିସାର୍ବଭୌମ ଯେ । ୬୮ । ଜୟ ବିଜୟଙ୍କୁ ମୋ ଅନେକ ନମସ୍କାର । କଳାରାହାଟକୁ ଯିବାବେଳେ ନ ନିବାର ହେ । ୬୯ । ନମସ୍ତେ ଶ୍ରୀ ପରଂବ୍ରହ୍ମ ଚତୁର୍ଦ୍ଧା ବିଗ୍ରହ । ଅବଦାତ କୃଷ୍ଣ ହରିଦ୍ରାଭ ମହାମହ ହେ । ୭୦ । ଅବକାଶଠାରୁ ପୁଷ୍ପାଞ୍ଜଳିଯାଏ ରହି । କରୁଥିବି ଦଣ୍ଡବତ ମୋ ବାଞ୍ଛିତ ଏହି ହେ । ୭୧ । ବନ୍ଦଇ ହେ ବିଶାରଦ ରସାତଳଦେବେ । ଦୟାଳୁ ମୋଠାରେ ହୃଦୟାଳୁମାନେ ହେବେ ଯେ । ୭୨ । ସରସ ଶ୍ରୀହରଷାଦି ମହାକବିମାନେ । ବିହରିଲେ ମହୋନ୍ନତ କବନବିମାନେ ଯେ । ୭୩ । ସେବି ମାନ ତେଜି ସେ ବିମାନ ଅନାତପ । କଲି ଚନ୍ଦ୍ରକଳା ଗ୍ରନ୍ଥାରମ୍ଭ ସଙ୍କଳପ ହେ । ୭୪ । ବିଷଦୋଷ କଣ୍ଠେ ରଖି ଗଉଣୀରମଣ । ଚନ୍ଦ୍ରକଳାକୁ ଯେମନ୍ତ ଘେନିଲେ ତ ଜାଣ ହେ । ୭୫ । ନିରକ୍ଷର ଖଳ ନୋହେ କଟାକ୍ଷର ଲକ୍ଷ୍ୟ । ତାହାକୁ ମାଗୁଣୀ ଏତେ ନୋହୁ ସେ ମୋ ପକ୍ଷ ହେ । ୭୬ । ଚିରନ୍ତନ ଭିତ୍ତିଚ୍ୟୁତ ଲୋଷ୍ଟ୍ରଜ ଧ୍ୱନିକି । ସ୍ତୁତି ନିନ୍ଦା କେଉଁମତେ ପଣ୍ଡିତେ ଘେନି କି ହେ । ୭୭ । ତଥାପି ସେ କର୍ଣ୍ଣବିଳେ ବ୍ୟଥା ନ ଦେବାକୁ । ବିରତି ଲଭନ୍ତୁ ବୋଲି କହୁଛି ତାହାଙ୍କୁ ଯେ । ୭୮ । ପଦଲଗ୍ନ ଜମ୍ବାଳକୁ ଜଳେ ଧୁଆଇଲେ । ତା ମାର୍ଜନା କଲା ବୋଲି କେହି ତ ନ ବୋଲେ ହେ । ୭୯ । ଦ୍ୱିତୀୟ ଛାନ୍ଦରେ ହେବ ଚରିତ ଆରମ୍ଭ । ନିର୍ବାହରୁ ଅନ୍ତରାୟ ହରିବେ ହେରମ୍ବ ହେ । ୮୦ । ଚିନ୍ତା ରଖି ସୀତାକାନ୍ତ ପଦସରୋରୁହେ । ଜଳନ୍ତରଧରାମରାବତୀପତି କହେ ହେ । ୮୧ ।



ଜଗମୋହନ ଓ ରତ୍ନସିଂହାସନ ମଧ୍ୟରେ ଥିବା ପ୍ରଥମ ଦ୍ୱାରକୁ ଜୟ ବିଜୟ ଦ୍ୱାର ଓ ରତ୍ନସିଂହାସନର ନିକଟବର୍ତ୍ତୀ ଦ୍ୱାରକୁ କଳାରାହାଟ ଦ୍ୱାର କୁହାଯାଏ । ୭୦ । ଅବଦାତ—ଶୁକ୍ଳ, ମହାମହଃ—ମହତ୍ ତେଜଃସ୍ୱରୂପ । ୭୨ । ରସାତଳଦେବେ—ବ୍ରାହ୍ମଣମାନେ । ୭୩,୭୪ । ଶ୍ରୀ ହର୍ଷ—ନୈଷଧଚରିତ ନାମକ ସଂସ୍କୃତ ମହାକାବ୍ୟପ୍ରଣେତା । କବନବିମାନ—କବିତ୍ୱରୂପ ବିମାନ । ମାନ ତେଜି—ଅହଙ୍କାର ଛାଡ଼ି, ସେ ବିମାନଅନାତପ ସେବି—ସେ ବିମାନର ଛାଇକୁ ଆଶ୍ରୟ କରି । ୭୬ । ଚିରନ୍ତନ ଭିତ୍ତିଚ୍ୟୁତ—ପୁରୁଣା କାନ୍ଥରୁ ଖସୁଥିବା । ଲୋଷ୍ଟ୍ରଜ—ଟେକାରୁ ଜାତ ହେଉଥିବା । ୮୦ । ହେରମ୍ବ—ବିଘ୍ନରାଜ ଗଣେଶ ।



# ଦ୍ୱିତୀୟ ଛାନ୍ଦ

## ରାଗ—କେଦାରକାମୋଦୀ

### ଶାପାନୁକଂପ

ଶୁଣିମା ହେଉ ବିଶାରଦେ ସାଦରେ । ବଳଦଳନ ଶେଷ ମହା ମୋଦରେ ଯେ । ମହେନ୍ଦ୍ର ବସିଥିଲେ ଆରମ୍ଭି ସଭା । କେ ଭାରତୀରେ କହୁ ସଭାର ଶୋଭା ଯେ । ୧ । ନବ ଦିଗୀଶ ଏକାଦଶ ଗିରୀଶ । ଦ୍ୱାଦଶ ବାସରେଶ ନବ ଲୋକେଶ ଯେ । ସପ୍ତବିଂଶତି ଋକ୍ଷ ଚନ୍ଦ୍ରାଦି ଗ୍ରହ । ବିରାଜି ଥିଲେ ଧରି ନିଜ ବିଗ୍ରହ ହେ । ୨ । ଦ୍ୱିଶତବିଂଶତି ଯେ ମହାରାଜିକ । ହୋଇ ନ ଥିଲେ ନିକି ସେ ସାମାଜିକ ହେ । ପ୍ରସିଦ୍ଧ ସିଦ୍ଧ ସାଧ୍ୟ ଧାଟୀରେ ମିଶି । ହରଷେ ଥିଲେ ଅଷ୍ଟବସୁଏ ବସି ଯେ । ୩ । ତ୍ରିଶତ ଷଡ଼ଧିକ ତୁଷିତ ସୁରେ । ପ୍ରବନ୍ଧସଂଖ୍ୟ ଆଭାସୁର ନିର୍ଜରେ ହେ । ବ୍ରାହ୍ମୀ ପ୍ରମୁଖ ମାତା ଥିଲେ ବିରାଜି । ଶ୍ରୁତିମଣ୍ଡଳୀ ଥିଲେ ମୂର୍ତ୍ତିକି ଭଜି ଯେ । ୪ । ଭଣି ମାନବ ଗିରେ କେ କରୁ ଶେଷ । ଅଣିମା ଆଦି ବିଭୂତିଙ୍କ ବିଳାସ ଯେ । ରାଶି ବାସର ତିଥି ଯୋଗ କରଣ । କାଶୀବାସିଭୂଷଣ ଭୂପତିଗଣ ହେ । ୫ । ନିମିଷୁଁ ମନ୍ୱନ୍ତର ଯାଏ ଶରୀର—ମାନଙ୍କୁ ଘେନି କାଳ ଥିଲା ହାଜର ହେ । ଦୁଇ ଯୁଗଳ ଯୁଗ ଯାଗଙ୍କ ରାଜି । ଷଡ଼ଋତୁଙ୍କ ପାଶେ ଥିଲେ ବିରାଜି ଯେ । ୬ । ଚାରିସଂବର୍ତ୍ତ ବର୍ତ୍ତିଥିଲେ ହରଷେ । ସପତ ଦ୍ୱୀପ ଚାରି ସମୁଦ୍ର ପାଶେ ଯେ । ଅଷ୍ଟସଂଖ୍ୟକ କୁଳ ଧରିତ୍ରୀ ଧରେ । ଅଭ୍ରମୁରମଣାଦି ଆଶାକୁଞ୍ଜରେ ଯେ । ୭ । ଅତଳ ଆଦି ବିଶ୍ୱଲୋକ ନିକର । କରକୁ ଯୋଡ଼ି ହୋଇଥିଲେ କିଙ୍କର ଯେ । ପ୍ରଭବ ଆଦି ସମ୍ୱସରଙ୍କ ତୁଲେ । ଇନ୍ଦ୍ରପ୍ରମୁଖ ଖଣ୍ଡ ମଣ୍ଡଳେ ଥିଲେ

---

**ଦ୍ୱିତୀୟ ଛାନ୍ଦ**

୧ । ବଳଦଳନ ଶେଷ—ବଳାସୁର ବିନାଶ ପରେ । ୨ । ନବଦିଗୀଶ—ଇନ୍ଦ୍ରାଦି ନବଦିକ୍‌ପାଳ, ଦ୍ୱାଦଶବାସରେଶ—ବାରସୂର୍ଯ୍ୟ, ଲୋକେଶ— ପ୍ରଜାପତି, ଋକ୍ଷ—ନକ୍ଷତ୍ର, ବିଗ୍ରହ—ଶରୀର । ୩ । ଧାଟୀ—ଧାଡ଼ି । ୪ । ତୁଷିତସୁର—ଗଣ ଦେବତାବିଶେଷ, ପ୍ରବନ୍ଧସଂଖ୍ୟ ଆଭାସୁରନିର୍ଜରେ—୬୪ ସଂଖ୍ୟକ କାନ୍ତିଦେବତା, ଶ୍ରୁତିମଣ୍ଡଳୀ—ବେଦସମୂହ । ୬ । ଦୁଇଯୁଗଳଯୁଗ—ଚାରିଯୁଗ । ୭ । ଚାରିସଂବର୍ତ୍ତ—ସଂବର୍ତ୍ତ ଆଦି ଚାରି ମେଘ, କୁଳଧରିତ୍ରୀଧରେ—କୁଳପର୍ବତମାନେ, ଅଭ୍ରମୁରମଣ—ଐରାବତହସ୍ତୀ, ଆଶାକୁଞ୍ଜରେ—

ଯେ । ୮ । ଊନପଞ୍ଚାଶ ସଂଖ୍ୟ ଜଗତ ପ୍ରାଣ । ଅଗମ୍ୟାଦି ଅରଣ୍ୟ ଶରୀରଗଣ ହେ । ଅଯୋଧ୍ୟା ଆଦି ସପ୍ତପୁରୀ ମୂରତି । ଏକ ପ୍ରଦେଶେ ହୋଇଥିଲେ ଭରତି ଯେ । ୯ । ଅଙ୍ଗ ବଙ୍ଗାଦି ଷଟ ପଞ୍ଚାଶ ଦେଶ । ହାଜର ଥିଲେ ଧରି ନିର୍ଜର ବେଶ ହେ । ଯକ୍ଷ ଗନ୍ଧର୍ବକୁଳ ଗନ୍ଧର୍ବାନନେ । ହାହାଦି ମହାଗୁଣଶାଳୀ ଗାୟନେ ହେ । ୧୦ । ମରୀଚି ଆଦି ଅତି ଚିରତ୍ନ ଋଷି । ଧରି ଚିନ୍ମୟରୂପ ଥିଲେ ସେ ବସି ହେ । ବେଦସଂଖ୍ୟକ ସମ୍ପ୍ରଦାୟ ଆଶ୍ରମ । ଷଟ ପ୍ରମାଣ ବ୍ରତ ସନ୍ତତି ଶମ ହେ । ୧୧ । ହ୍ରୀଭ୍ରାନ୍ତି କାନ୍ତି କୀର୍ତ୍ତି କରୁଣା କ୍ଷମା । ସମୃଦ୍ଧି ଲଜ୍ଜା ଘେନି ନିଧି ଉପମା ହେ । ରମ୍ଭାଦି ଜମ୍ଭାରାତି ପ୍ରିୟ ସୁକେଶୀ । ଜୃମ୍ଭାଦି ନିଦ୍ରା ଯାଏ ଥିଲେ ବିଳସି ଯେ । ୧୨ । ସଂକଳ୍ପ ମଣି ମହୌଷଧିଏ ସୁଖେ । ଥିଲେ ଅଶ୍ୱିନୀତନୁଭବଙ୍କ ପାଖେ ଯେ । ନନ୍ଦନବନୀ ହରିଚନ୍ଦନଲତା । ଏ ସମସ୍ତଙ୍କ ପରିଣାମ ଦେବତା ଯେ । ୧୩ । ଯହିଁ ସାକ୍ଷାତ ସୁର ଈଶ୍ୱର ବିଜେ । କେତେ କହିବା ଯେତେ ଥିଲେ ସମାଜେ ଯେ । ଏକାଳେ ମେରୁପାଦ କୃତମନ୍ଦିର । ଲାବଣ୍ୟଧ୍ୱଜ ନାମ ଗନ୍ଧର୍ବ ବର ଯେ । ୧୪ । କେଳିମଞ୍ଜୁଳା ନାମ ମହିଳାସାଥେ । ଘେନି ମୋହନା ନାମ ବିପଞ୍ଚୀ ହାତେ ଯେ । ପ୍ରବେଶ ହୋଇ ଦିବ୍ୟ ସଂସଦତଳେ । ଜମ୍ପତି ଶିରେ କର ଯୋଡ଼ିବା ବେଳେ ଯେ । ୧୫ । ଏକାବେଳକେ ସଭ୍ୟ ନେତ୍ରମଣ୍ଡଳୀ । କଲା ସେ ଯୁଗଳିର ଉପରେ କେଳି ଯେ । ଶକ୍ରମାନସେ ଏହି ଚିନ୍ତା ରହିଲା । ଏ ଶତକୋଟି ଆହା ନେତ୍ର ନୋହିଲା ଯେ । ୧୬ । ସଂଯତ ତେଡ଼େ ବଡ଼ ବିବୁଧସଭା । ମଦନେ କମ୍ପିଗଲା ଚାହିଁ ତା ଶୋଭା ଯେ । ଗନ୍ଧର୍ବ କଲା ଗୁଣାଙ୍ଗୁଳି ସଂଯୋଗ । ତା ରାମା କଲା ମନୋରଞ୍ଜନା ରାଗ ଯେ । ୧୭ । ନୟନେ ଚାହିଁ ଛବି ଅପରିମିତ । ଶ୍ରବଣେ ଶୁଣି ସର୍ବୋତ୍ତର ସଙ୍ଗୀତ ହେ । ସଭା ଦିଶିଲା ହେଲା ପରି ଯା ଲେଖା । ସେ ଦିନୁ ବୋଲାଇଲେ ଗୀର୍ବାଣେ ଲେଖା ଯେ । ୧୮ । ରାକାରସିକ ବିଶ୍ୱମୟୂଖ ରଢ଼ି ।

---

ଦିଗ୍‌ହସ୍ତୀମାନେ । ୮ । ଇନ୍ଦ୍ରପ୍ରମୁଖଖଣ୍ଡମଣ୍ଡଳ—ଇନ୍ଦ୍ରାଦି ନବଖଣ୍ଡ ମହୀମଣ୍ଡଳ । ୧୦ । ଗନ୍ଧର୍ବାନନେ—ଘୋଡ଼ାଙ୍କ ମୁହଁ ପରି ଯେଉଁ କିନ୍ନରମାନଙ୍କ ମୁହଁ, ଗାୟନେ—ଗାୟକମାନେ । ୧୧ । ଅତି ଚିରତ୍ନ—ଖୁବ୍ ପୁରାତନ, ଚିନ୍ମୟ—ଜ୍ଞାନମୟ, ବେଦସଂଖ୍ୟକ—ଚାରିସଂଖ୍ୟକ, ଷଟ ପ୍ରମାଣବ୍ରତ—ଜନ୍ମାଷ୍ଟମୀ ପ୍ରଭୃତି ଷଡ଼ଜୟନ୍ତୀ, ସନ୍ତତି—ଗୋତ୍ରଦେବତା, ଶମ—ଶାନ୍ତଦେବତା । ମହାପଦ୍ମାଦିନିଧିମାନେ ହ୍ରୀଭ୍ରାନ୍ତି ପ୍ରଭୃତିଙ୍କ ସଙ୍ଗେ ଶୋଭା ପାଉଥିଲେ, ଜମ୍ଭାରାତିପ୍ରିୟ—ଇନ୍ଦ୍ରଙ୍କ ପ୍ରଣୟିନୀ, ଜୃମ୍ଭା—ହାଇମାରିବା (ଏକଗୋଟି ଦେବତା) । ୧୩ । ସଂକଳ୍ପମଣି—ଚିନ୍ତାମଣି, ଅଶ୍ୱିନୀତନୁଭବ—ଅଶ୍ୱିନୀକୁମାର, ପରିଣାମ ଦେବତା—ଇଷ୍ଟଦେବତା । ୧୪ । ମେରୁପାଦକୃତ ମନ୍ଦିର—ମେରୁପର୍ବତ ପାଦଦେଶରେ ଯେ ଘରକରି ରହିଥିଲା । ୧୫ । ବିପଞ୍ଚୀ—ବୀଣା, ଦିବ୍ୟସଂସଦ—ସ୍ୱର୍ଗୀୟ ସଭା, ଜମ୍ପତି—ଦମ୍ପତି, ପତି ଓ ପତ୍ନୀ । ୧୭ । ଗୁଣାଙ୍ଗୁଳିସଂଯୋଗ—ବୀଣାର ତାରରେ ଆଙ୍ଗୁଠି ଲଗାଇବା । ୧୮ । ସର୍ବୋତ୍ତର—ଉତ୍‌କୃଷ୍ଟ, ଲେଖା—ଚିତ୍ର, ଦେବତା;

ତାରାଡ଼ମ୍ବର ଯଥା ଛପଇ ସଡ଼ି ଯେ । ଯହୁଁ ଦୁହିଙ୍କ କରକାନ୍ତି ବାଜିଲା । ନିର୍ଜରଙ୍କର ତେଜଃପୁଞ୍ଜ ଭାଜିଲା ଯେ । ୧୯ । ନିର୍ବାଣାଲାତ ପରି ହେବାରୁ ଶିରୀ । ଗୀର୍ବାଣାବଳି ଚିତ୍ତେ ହେଲା ଏପରି ଯେ । ଭ୍ରମରେ ହେଲେ ଏହା ସମରେ କେହି । ଅମରେ ଆମ୍ଭେ ଦିଶିଲାଇଁତ ନାହିଁ ଯେ । ୨୦ । ଭ୍ରମରୀ ତୁଲ୍ୟ କେଶ ଠାରୁ ନିରେଖି । ଚମରୀନୟନାଙ୍କୁ ତାହାର ଦେଖି ଯେ । ଅମରୀ ବିଚାରିଲେ ନ ମରି ଆମ୍ଭେ । କାହିଁକି ଧରିଥାଇଁ ଦେହକୁ ଦମ୍ଭେ ଯେ । ୨୧ । ତଦନନ୍ତରେ ସୁରେ ଭାଳି ମାନସେ । ଗନ୍ଧର୍ବ ଦମ୍ପତିକି ବସାଇ ପାଶେ ଯେ । କହିଲେ ତୁମ୍ଭ ରୂପ ଗୁଣ ବିଚାରି । ପ୍ରସନ ହେଲୁଁ ସର୍ବ ତ୍ରିଦିବଚାରୀ ଯେ । ୨୨ । ଏ ଲୋକେ ଆମ୍ଭ ତୁଲେ ହେବ ଦେବତା । ଯାହା ମାଗିବ ଏବେ ଦେବେ ଦେବତା ଯେ । ଦୁହେଁ ଦୁହିଁଙ୍କ ଦେହ ଲାବଣ୍ୟ ଲବ । ଦେବଙ୍କୁ କିଛି କିଛି ଦେବୀଙ୍କି ଦେବ ହେ । ୨୩ । ସୁରଙ୍କ ରୂପରଙ୍କ ଭାରତୀ ଶୁଣି । ସରୂପ ସ୍ୱରୂପାତ ହେଲା କି ମଣି ଯେ । ବିସ୍ମିତ ହୋଇ କର ଯୋଡ଼ି କହିଲେ । ଉଚିତ ପ୍ରକାରେ ତ ଆଜ୍ଞା ନୋହିଲେ । ୨୪ । ନିର୍ଦ୍ଦୋଷ ରମ୍ୟରୂପ ଗୁଣପଟଳୀ । ଗନ୍ଧର୍ବମାନଙ୍କର ମୂଳ ସଞ୍ଚାଳି ଯେ । ହାଜର ଅଛୁଁ ପ୍ରାଣ ସମର୍ପଣକୁ । କେ ଦେବ ସଉଦର୍ଯ୍ୟ ଗୁଣ କଣକୁ ହେ । ୨୫ । ପରସଞ୍ଚିତେ ରଖିବାର ଇକ୍ଷଣ । ନୁହଇ ତୁମ୍ଭ ପରି ପ୍ରଭୁ ଲକ୍ଷଣ ଯେ । ଦେବ ଯାହାକୁ ନିକି ନେଇ ତାହାର । ଏ ରୀତି ଚତୁର୍ଦ୍ଦଶ ଲୋକୁଁ ବାହାର ହେ । ୨୬ । କରି ଏ କରକଶ ଗିର ଶ୍ରବଣ । କୁପିତ ହୋଇ ନାକନିବାସିଗଣ ଯେ । ଗାୟନ ଯୁବା ଯୁବତୀଙ୍କ ଉପରେ । ପ୍ରହାର କଲେ ତୀବ୍ରଶାପ ରୋଷରେ ଯେ । ୨୭ । ନିଶା ରଥାଙ୍ଗ ଯୁବା ଯୁବତୀ ପରି । ବିଚ୍ଛିନ୍ନ ହୁଅ ନିତ୍ୟେ ଛାଡ଼ି ଏ ଶିରୀ ଯେ । ତହୁଁ ଉଦିତ ହେଲା ପ୍ରଳୟ ଭୟ । ଝାମ୍ପିଲା କମ୍ପ ଜମ୍ପତିର ହୃଦୟ ଯେ । ୨୮ । ଶୋକବିବଶ ହୋଇ କଲେ ଏ ସ୍ତୁତି । ନମୋ ନମସ୍ତେ ସୁଧାଶନସନ୍ତତି ହେ । ନମସ୍ତେ ନାକଲୋକନିବାସିବାର । ଉଚିତ ନୋହେ ଦୀନ ବିନାଶିବାର ହେ । ୨୯ । ପୀୟୂଷ ଅମ୍ଭୋଦରୁ ଦମ୍ଭୋଳି ବୃଷ୍ଟି । ସମ୍ଭବିଲେ କି ଆଉ ସ୍ତମ୍ଭିବ ସୃଷ୍ଟି ହେ । ରକ୍ଷକଠାରେ ହେଲେ ତକ୍ଷକରୀତି । ଶରଣଠାରୁ ହେଲେ

---

ଗୀର୍ବାଣ—ଦେବତା । ୧୯ । ରାକାରସିକ—ପୂର୍ଣ୍ଣିମାଚନ୍ଦ୍ର, ବିଶ୍ୱମୟୂଖ—ସମଗ୍ରକିରଣ, ତାରାଡ଼ମ୍ବର—ନକ୍ଷତ୍ରମାନଙ୍କର ଶୋଭା, ଛପଇ—ଲୁଚିଯାଏ, କରକାନ୍ତି—(ଶରୀରର) ତେଜର ଶୋଭା । ୨୦ । ନିର୍ବାଣାଲାତ—ନିଆଁ ନିଭି ଯାଇଥିବା ଅଙ୍ଗାର ପରି । ୨୪ । ସରୂପ ସ୍ୱରୂପାତ—ପ୍ରକୃତ ବଜ୍ରପାତ । ୨୫ । ଗୁଣପଟଳୀ—ଗୁଣସମୂହ । ୨୮ । ନିଶାରଥାଙ୍ଗ ଯୁବାଯୁବତୀ ପରି—ରାତିରେ ପରସ୍ପର ବିଚ୍ଛିନ୍ନ ରହୁଥିବା ଚକ୍ରବାକ ଦମ୍ପତି ପରି, ପ୍ରଳୟ—ମରଣ । ୨୯ । ସୁଧାଶନସନ୍ତତି—ଅମୃତଭୋଜନକାରୀ ଦେବବୃନ୍ଦ, ନାକଲୋକନିବାସିବାର—ସ୍ୱର୍ଗଲୋକବାସିଗଣ । ୩୦ । ପୀୟୂଷଅମ୍ଭୋଦରୁ—ଅମୃତପୂର୍ଣ୍ଣ ମେଘରୁ, ଦମ୍ଭୋଳି—ବଜ୍ର, ସ୍ତମ୍ଭିବ—ସ୍ଥିର ହେବ, ରହିବ; ତକ୍ଷକରୀତି—ସର୍ପପରି ବ୍ୟବହାର । ୩୧ । ଫନ୍ଦା—ବ୍ୟବସାୟ,

ମରଣ ଭୀତି ହେ । ୩୦ । ପନ୍ଦା ହୁଅଇ ନିନ୍ଦା ସର୍ବ ବଦନେ । ବନ୍ଦାରୁବିନାଶନ ନାହିଁ ଭୁବନେ ହେ । ହରିଙ୍କି ଭଜି ଯମୁଁ ଡରି କି ଲବେ । ତରାଂକି ପାଇ ବୁଡ଼ି ମରି କି କେବେ ହେ । ୩୧ । ପ୍ରପନ୍ନତ୍ରାଣପରାୟଣ ଲକ୍ଷଣେ । ରକ୍ଷଣ କର ର'କ୍ଷା ସୁବିଚକ୍ଷଣେ ହେ । ଘେନି ଇତ୍ୟାଦି ସ୍ତବ ଶ୍ରବଣପୁଟେ । ଦେବେ ବିହିଲେ କୃପା ହୃଦସମ୍ପୁଟେ ଯେ । ୩୨ । ତପ୍ତ ଅଙ୍କୁରେ ଯଥା ସୁଧା ସେଚନ । ରଚିଲେ ତଥା ଏହି ମୃଦୁ ବଚନ ଯେ । ବୃଥା ନୁହଇ କଥା ତ୍ରିଦଶଙ୍କର । ତଥାପି ହେଉ ବ୍ୟଥାହର ଏ ଗିର ଯେ । ୩୩ । ଦେହାନ୍ତେ ଏହି ରୂପ ଗୁଣ ବହିବ । ଏ ଦେହେ ଆଉ ତୁମ୍ଭ ସଙ୍ଗ ନୋହିବ ଯେ । ଏହି ନିକଟେ ଲବ୍ଧ ହେବ ପଞ୍ଚତା । ତୁ ହେବୁ ଦ୍ରୁମ, ଲତା ହେବ ବନିତା ଯେ । ୩୪ । ଗୋମତୀତୀରେ ହେବୁ ତୁ ଚୂତତରୁ । କୈଳାସେ ଦ୍ରାକ୍ଷା ଲତା ହେବ ରମ୍ଭୋରୁ ଯେ । ଫଳେ ଋଷିଙ୍କି ଶଶିଚୂଳ ଶିବାଙ୍କୁ । ତୋଷିବ ତରୁଜନ୍ମ ତରିଯିବାକୁ ଯେ । ୩୫ । ନୃଲୋକେ ରବିଭବ ବାହୁଜକୁଳେ । ଜନକଜନୟିତ୍ରୀ ତପସ୍ୟାବଳେ ଯେ । ବଦାନ୍ୟ ବିଶାରଦ ଶୂର ସୁନ୍ଦର । ହୋଇ ହୋଇବୁ ମହାରାଜକୁମାର ଯେ । ୩୬ । ସରୋଜସମ୍ଭୂବ କ୍ଷତ୍ରବଂଶରେ । ଗିରିସାମନ୍ତତନୁଭବା ଅଂଶରେ ଯେ । ଏଥୁଁ ଅଧିକ ଶୋଭା ଗୁଣକୁ ଧରି । ତୋ ରାମା ହେବ ଚକ୍ରବର୍ତ୍ତିକୁମାରୀ ଯେ । ୩୭ । ସେହି ଦେହରେ ପୁଣି ଦମ୍ପତିସୁଖ । ପାଇବ ଯଥା ରତିଫୁଲବିଶିଖ ଯେ । ଏ ଆଜ୍ଞା ଅନ୍ତେ ଉର୍ଦ୍ଧ୍ୱେ ଦିଅନ୍ତେ ଦୃଷ୍ଟି । ହୋଇଲା କଳ୍ପତରୁ କୁସୁମବୃଷ୍ଟି ଯେ । ୩୮ । ସପକ୍ଷ ଯାନଯୁଗ ହାଜର ହେଲା । ବହି ଦୁହିଁକି ଦୁଇ ପ୍ରଦେଶେ ନେଲା ଯେ । ବାତାମ୍ବୁପର୍ଣ୍ଣାଶନ ତପ ଆଚରି । ମୁନିମଣ୍ଡଳିପାଦେ ସେବନ କରି ଯେ । ୩୯ । ଲାବଣ୍ୟଧ୍ୱଜ କଲା ବାସ ସେ ବନେ । ରହିଲା ରାମା ଉମାପାଶ ସେବନେ ଯେ । ତାହା ଲାବଣ୍ୟଶିରୀଗୁଣ ବିଚାରି । ଆହାଲାଦରେ ନିଜ ପୁତ୍ରୀକି ପରି ଯେ । ୪୦ । ପରମ ସ୍ନେହେ କଲେ ପରିପାଳନ । ଦଇବ ସଂକଳପ ହେବ କି ଆନ ଯେ । ଦିନେ ନାରଦ ବ୍ରହ୍ମାନନ୍ଦ ଅମଳେ । ମଜ୍ଜି ଅମ୍ବରୋଦରେ ବିହରୁଥିଲେ ଯେ । ୪୧ । ମହତୀ ଦଣ୍ଡ ଭୂଷା କୁସୁମମାଳ । ଜବନ

---

ବନ୍ଦାରୁ—ବନ୍ଦୀ, ଭାଟ (ଗନ୍ଧର୍ବମାନେ ଦେବତାଙ୍କର ଭାଟକାର୍ଯ୍ୟ କରନ୍ତି) । ୩୨ । ହୃଦସଂପୁଟେ—ହୃଦୟରୂପ ପରୁଆରେ । ୩୪ । ପଞ୍ଚତା ଲବ୍ଧ ହେବ—ପଞ୍ଚତ୍ୱ ପ୍ରାପ୍ତ ହେବ ଅର୍ଥାତ୍ ମରିବ । ୩୬ । ରବିଭବ ବାହୁଜ—ସୂର୍ଯ୍ୟବଂଶୀୟ କ୍ଷତ୍ରିୟ, ବଦାନ୍ୟ—ଦାତା, ବିଶାରଦ—ପଣ୍ଡିତ । ୩୭ । ସରୋଜସମ୍ଭୂବ କ୍ଷତ୍ରବଂଶରେ—ପଦ୍ମଜାତ କ୍ଷତ୍ରିୟ କୁଳରେ, ଗିରିସାମନ୍ତତନୁଭବା ଅଂଶରେ—ପାର୍ବତୀଙ୍କ ଅଂଶରେ । ୩୮ । ଫୁଲବିଶିଖ—କନ୍ଦର୍ପ । ୩୯ । ସପକ୍ଷ ଯାନଯୁଗ—ପକ୍ଷ ଲାଗିଥିବା ଦୁଇଟି ବ୍ୟୋମଯାନ, ବାତାମ୍ବୁପର୍ଣ୍ଣାଶନତପ—ଯେଉଁ ତପସ୍ୟାରେ କେବଳ ବାୟୁ, ଜଳ, ପତ୍ର ମାତ୍ର ଭକ୍ଷଣ କରାଯାଏ । ୪୦ । ବ୍ରହ୍ମାନନ୍ଦ ଅମଳେ—ପରଂବ୍ରହ୍ମ ଚିନ୍ତାରୂପ ଆନନ୍ଦରେ ବା ନିଶାରେ ଉନ୍ମତ୍ତ ହୋଇ, ଅମ୍ବରୋଦରେ—ଆକାଶ ମଧ୍ୟରେ । ୪୨ ।

ପବନରୁ ହୋଇ ଆନ୍ଦୋଳ ଯେ । ପୁନ୍ନାଗ ମଲ୍ଲୀ ଦୁଇ କୁସୁମ ଝଡ଼ି । ଚପଳେ ଗଲେ ଦୁଇ ଦିଗକୁ ଉଡ଼ି ଯେ । ୪୨ । ଗନ୍ଧର୍ବେ ପଡ଼ି ସେ ପୁନ୍ନାଗ କୁସୁମ । କଲା ତାହାକୁ ପିକବଲ୍ଲଭ ଦ୍ରୁମ ଯେ । କେଳିମଞ୍ଜୁଳା ଉରେ ବାଜିଲା ମଲ୍ଲୀ । ହେଲା ସେ କଇଳାସେ ମୃଦ୍ୱିକା ବଲ୍ଲୀ ଯେ । ୪୩ । ସମ୍ପୂର୍ଣ୍ଣ ହେଲା ଭାବି ପ୍ରତ୍ୟୂହଦ୍ୱନ୍ଦ୍ୱ । ଶାପାନୁକମ୍ପ ନାମ ଦ୍ୱିତୀୟ ଛାନ୍ଦ ହେ । ତୃତୀୟେ ସର୍ବଜନ ଶ୍ରବଣୋତ୍ସବ । କହିବି ମହାଗଜଘୋଷ ବିଭବ ହେ । ୪୪ । ଯେ ବନବାସୀ ହୋଇ ଅବନିପ୍ରିୟ । ଅସିତାମ୍ବୁଜଦ୍ୟୁତି ସୀତାପ୍ରଣୟ ଯେ । ସେ ରାମ ରମଣୀୟ ପଦସାରସ । ବନ୍ଦଇ ରାମଚନ୍ଦ୍ର ଦେବ ନରେଶ ଯେ । ୪୫ ।



---

ମହତୀ—ନାରଦଙ୍କ ବୀଣା, ଜବନ—ବେଗବାନ୍ । ୪୩ । ପିକବଲ୍ଲଭଦ୍ରୁମ —ଆମ୍ରଗଛ, ମୃଦ୍ୱିକାବଲ୍ଲୀ —ଦ୍ରାକ୍ଷାଲତା । ୪୪ । ପ୍ରତ୍ୟୂହଦ୍ୱନ୍ଦ୍ୱ— ବାଧା ଦୁଇଗୋଟି, ମହାଗଜଘୋଷ —ରାଜଧାନୀର ନାମ । ୪୫ । ଅବନିପ୍ରିୟ —ପୃଥିବୀପତି, ଅସିତାମ୍ବୁଜଦ୍ୟୁତି—ନୀଳପଦ୍ମପରି କାନ୍ତି ଯାହାଙ୍କର (ରାମଚନ୍ଦ୍ରଙ୍କ ବିଶେଷଣ), ସୀତାପ୍ରଣୟ— ସୀତାପତି ।



# ତୃତୀୟ ଛାନ୍ଦ

## ରାଗ—କୃଷ୍ଣକଳା

## (ମହାଗଜଘୋଷ ରାଜଧାନୀର ବର୍ଣ୍ଣନା)

ଶୁଣ ଗୁଣନିକୁରମ୍ବ ନିପୁଣ ନାଗରେ । ମଳୟ ଉତ୍ତର ମେରୁ ଦକ୍ଷିଣ ଭାଗରେ । ଅଛି ଅଭିରାମ କାମରୂପ ନାମ ଦେଶ । ତହିଁ ରାଜେ ରାଜଧାନୀ ମହାଗଜଘୋଷ ହେ । ୧ । ଯା ପରିଖା ପରି ଖାତ ନୋହେ ମହାର୍ଣ୍ଣବ । ତ୍ରିକୂଟକୂଟକୁ ବଳି କରେ ନେତ୍ରୋତ୍ସବ ଯେ । ସ୍ୱର୍ଗୀୟ ମାର୍ଗସଂସର୍ଗୀ ମହୋନ୍ନତ ଦୁର୍ଗ । ଗୁରୁଜଳଧରଚୁମ୍ବି ଗୁରୁ ଯେ ଉତ୍ସର୍ଗ ଯେ । ୨ । ଭଣ୍ଡିରନ୍ଧ୍ରେ ମଣ୍ଡା ହୋଇବାରୁ ଚାରିପାଶେ । ଭାର୍ଗବମାର୍ଗଣ ଭିନ୍ନ ଗିରି ପରି ଦିଶେ ଯେ । ଅଶେଷ ସୁବର୍ଣ୍ଣମାନେ ହେବାରୁ ବରଣ । ଯାଗଶାଳା ପରି ସେ ନଗରୀ ଆଚରଣ ଯେ । ୩ । ଅନେକ ସହସ୍ରନେତ୍ର ମଣ୍ଡିତ ହେବାରୁ । ଅତିଶୟ ପ୍ରତିଷ୍ଠିତ ତ୍ରିପିଷ୍ଟପଠାରୁ । ଅସଂଖ୍ୟ ନର ବାହନେ ସଞ୍ଚରିବା ଘେନି । ଅଳକାକୁ ହସୁଛି ସେ ମହାରାଜଧାନୀ ଯେ । ୪ । ଅମିତ ହିରଣ୍ୟ ଗର୍ଭଗୃହ ସମ୍ପର୍କରୁ । ସେ ନଗରୀ ଗରୀୟସୀ ବିରଞ୍ଚିଲୋକରୁ । ବହୁ କୁଣ୍ଡଳୀନ ସ୍ନେହପାତ୍ର ସେ କଟକ । ଏଣୁ ଜଣା ହୋଏ ତହୁଁ ଊଣା ନାଗଲୋକ ଯେ । ୫ । ଚିତ୍ରାବଳୀ ଅଛି ନିକି ସେ ମଧୁ ପୂର୍ଣ୍ଣିମା । ପତ୍ରାବଳୀ ଅଛି କି ସେ ବେଶବତୀ ବାମା । ଗୁଣବତୀ ହେବାରୁ ପ୍ରତୀତ ସେ କି ସ୍ରଜ । ମହା

---

### ତୃତୀୟ ଛାନ୍ଦ

୧ । ନିକୁରମ୍ବ—ସମୂହ । ୨ । ପରିଖା— ଗଡ଼ଖାଇ, ଖାତ—ଗଭୀର (ଖୋଳା ଯାଇଥିବା), ତ୍ରିକୂଟକୂଟ—ଲଙ୍କାସ୍ଥିତ ତ୍ରିକୂଟ ପର୍ବତର ଶିଖର, ସ୍ୱର୍ଗୀୟ ମାର୍ଗସଂସର୍ଗୀ—ଆକାଶସ୍ପର୍ଶୀ, ଗୁରୁଜଳଧରଚୁମ୍ବୀ—ଅତି ଉଚ୍ଚରେ ଥିବା ମେଘକୁ ସ୍ପର୍ଶ କରୁଥିବା, ଉତ୍ସର୍ଗ—ଉଚ୍ଚତା । ୩ । ଭଣ୍ଡିରନ୍ଧ୍ରେ —ପ୍ରାଚୀର ଗାତ୍ରରେ ଖୋଳା ଯାଇଥିବା ଗର୍ତ୍ତରେ, ମଣ୍ଡା—ଭୂଷିତ, ଭାର୍ଗବମାର୍ଗଣଭିନ୍ନ ଗିରି—ପରଶୁରାମଙ୍କ ଶରରେ ବିଦୀର୍ଣ୍ଣ ହୋଇଥିବା କ୍ରୌଞ୍ଚ ନାମକ ପର୍ବତ (ଶ୍ଳେଷାଳଙ୍କର) । ବରଣ—ପ୍ରାଚୀର, ଅନ୍ୟପକ୍ଷରେ—ନିଯୁକ୍ତକରଣ, ସୁବର୍ଣ୍ଣ ସୁନା, (ଅନ୍ୟପକ୍ଷରେ) ବ୍ରାହ୍ମଣ । ୪ । ଅନେକ ସହସ୍ର ନେତ୍ର—ବହୁସଂଖ୍ୟକପତାକା (ଅନ୍ୟପକ୍ଷରେ) ଅନେକ ଇନ୍ଦ୍ର, ତ୍ରିପିଷ୍ଟପ—ସ୍ୱର୍ଗ, ବାହନେ—ଶୁଆରୀ ପ୍ରଭୃତି ଯାନରେ, ନରବାହନ—କୁବେର, ଅଳକା—କୁବେରପୁରୀ । ୫ । ହିରଣ୍ୟଗର୍ଭଗୃହ—ସୁବର୍ଣ୍ଣପୂର୍ଣ୍ଣ ଘର, ହିରଣ୍ୟଗର୍ଭ—ବ୍ରହ୍ମା,

ସେନାଦରବତୀକି ଦେବ ଫଉଜ ଯେ । ୬ । ଅନୁସରି ଅଛି ଯାହା ସୁମଧୁର ଧ୍ୱନି । କବୀନ୍ଦ୍ର ଭାରତୀ କି ସେ ନୋହେ ରାଜଧାନୀ । ହେବା ଘେନି ସୁରୁଚି ରମଣୀଗଣଯୁତ । ଭାଗ୍ୟବନ୍ତ ଗୃହପରି ହୁଅଇ ପ୍ରତୀତ । ୭ । ଭାସ୍ୱଦଂଶୁ କ୍ଳାନ୍ତି ହୋଇଅଛି ଚୂଳଦେଶେ । ମହାପୁରୀ, କଇତବ ବିଷ୍ଣୁ ପଦୀ କି ସେ । ବହୁବିଧ ଅଗ୍ରହାରରାଜିରେ ବିରାଜେ । ଜବାଧରା ପୟୋଧର ବିବାଦକୁ ସାଜେ ଯେ । ୮ । ବିବିଧ ସୁମନ୍ତେ ଚଳିବାରୁ ଅଧିକାର । ଅଯୋଧ୍ୟା ନଗରୀକି ସେ କରୁଛି ଧିକ୍କାର । ସମସ୍ତ ଅର୍ଥଦାୟିନୀ ହରିଭକ୍ତି ପରି । ବିମାନ ଉଦୟା କି ସେ ଅନୁକୂଳା ନାରୀ ଯେ । ୯ । ନୀତିମତୀ ସେ ଅନୀତିମତୀ କଲା ବିହି । ଅବାଦିତ୍ରା ହେଲେ ହେଳେ ସବାଦିତ୍ରା ସେହି । ଅଗଚୟୋଚିତା ପୁଣି ସେ ନାଗରୋଚିତା । ଗଜଘଟା ପୂର୍ଣ୍ଣ ହୋଇ ନଗଜା ରଚିତା । ୧୦ । ଭୂପରାଗ ନାହିଁ ନିତି ହେବାରୁ ମାର୍ଜିତ । ପୁଣି ଭୂପରାଗରୁ ସେ ହୋଇଛି ନିର୍ମିତ । ମଧ୍ୟେ ମଧ୍ୟେ ବିଭୂଷିତ ଚିତ୍ର ପରଦାରେ । କାହାରି ମାନସ ହେଉ ନାହିଁ ପର ଦାରେ । ୧୧ । ଅନବରତରେ ନବରତ ମହୋତ୍ସବ । ଉଚ୍ଛୁଳେ ମଙ୍ଗଳଗୀତ,

---

ବିରଞ୍ଚିଲୋକ—ବ୍ରହ୍ମଲୋକ, ଗରୀୟସୀ—ଅତି ଉତ୍କୃଷ୍ଟ, କୁଣ୍ଡଳୀନ— କୁଣ୍ଡଳପିନ୍ଧିଥିବା, (ଅନ୍ୟପକ୍ଷରେ) କୁଣ୍ଡଳୀ ବା ସର୍ପ । ୬ । ଚିତ୍ରାବଳୀ—ଚିତ୍ରସମୂହ ଓ ଚିତ୍ରାନକ୍ଷତ୍ରସମୂହ, ମଧୁପୂର୍ଣ୍ଣିମା—ଚୈତ୍ରପୂର୍ଣ୍ଣିମା, ପତ୍ରାବଳୀ—ନାନାଜାତୀୟ ବୃକ୍ଷର ପତ୍ର ଓ ସ୍ତନକପୋଳ ପ୍ରଭୃତିରେ ପତ୍ରାକୃତି ଚିତ୍ରରଚନା, ଗୁଣବତୀ—ଗୁଣଯୁକ୍ତା ଓ ସୂତାରେ ଗୁନ୍ଥା ହୋଇଥିବା, ସ୍ରଜ—ଫୁଲମାଳ, ମହାସେନାଦରବତୀ—ବହୁ ସୈନ୍ୟଙ୍କୁ ଯେ ଆଦରରେ ରଖିଅଛି ଓ ମହାସେନ ଅର୍ଥାତ୍ କାର୍ତ୍ତିକେୟଙ୍କୁ ଆଦର କରୁଥିବା, ଦେବଫଉଜ—ଦେବସେନା । ୭ । ସୁମଧୁର ଧ୍ୱନି—(ସେ ନଗରୀରେ) ସର୍ବଦା ହେଉଥିବା ସୁନ୍ଦର ଶବ୍ଦ, କବୀନ୍ଦ୍ର ଭାରତୀ—ବାଲ୍ମୀକିଙ୍କ କଥା ବା ରଚନା । ସୁରୁଚିରମଣୀଗଣ ଯୁତ—ସୁନ୍ଦର ହୀରାପ୍ରଭୃତି ମଣିରେ ପରିପୂର୍ଣ୍ଣ, (ଅନ୍ୟପକ୍ଷରେ) ସୁରୁଚି (ସୁନ୍ଦର ରୁଚିଯୁକ୍ତା) ରମଣୀଗଣ (ସ୍ତ୍ରୀସମୂହ)ଙ୍କ ଦ୍ୱାରା ପୂର୍ଣ୍ଣ । ୮ । ଭାସ୍ୱଦଂଶୁକାନ୍ତି —ଶୁକ୍ଳକିରଣମୟ (ସ୍ୱର୍ଗ ଗଙ୍ଗା ପକ୍ଷରେ) ଧଳା କିରଣବୋଳା । ମହାପୁରୀକୈତବ ବିଷ୍ଣୁପଦୀ କି ସେ—ମହାରାଜଧାନୀ ଛଳନାରେ ପ୍ରକୃତରେ ସେ ବିଷ୍ଣୁପଦୀ ଅର୍ଥାତ୍ ଗଙ୍ଗା (ଅପହ୍ନୁତି ଅଳଙ୍କାର), ଅଗ୍ରହାର ରାଜି—ବ୍ରାହ୍ମଣଶାସନସମୂହ ଏବଂ ଆଗରେ ପଡ଼ିଥିବା ହାର, ପୟୋଧର— କୁଚ । ୯ । ସୁମନ୍ତେ—ଉତ୍ତମ ମନ୍ତ୍ରଣାଦ୍ୱାରା, ସୁମନ୍ତ—ଦଶରଥଙ୍କ ସାରଥି ମନ୍ତ୍ରୀ, ଅର୍ଥଦାୟିନୀ—ଧନଦାତ୍ରୀ ଓ ଚତୁର୍ବର୍ଗଦାୟିନୀ, ବିମନ ଉଦୟ—ନାନାବିଧ ରଥଦ୍ୱାରା ଶୋଭମାନା ଓ ବିଶେଷ ରୂପେ ମାନବତୀ । ୧୦ । ନୀତିମତୀ—ନ୍ୟାୟପରାୟଣା, ଅନୀତିମତୀ— ଶସ୍ୟବିନାଶକ, ଇତିଭୟ ଶୂନ୍ୟ; ବିହି—ବିଧାତା, ଅବାଦିତ୍ରା—ଅବାଦୀ ଅର୍ଥାତ୍ ମିତ୍ରମାନଙ୍କୁ ରକ୍ଷା କରେ ଯେ, ସବାଦିତ୍ରା—ସର୍ବଦା ଯେଉଁଠାରେ ବାଦ୍ୟ ବାଜୁଥାଏ । ଅଗଚୟୋଚିତା— ନାନାବୃକ୍ଷପୂର୍ଣ୍ଣା, ନାଗରୋଚିତା—ରସିକପୂର୍ଣ୍ଣସ୍ଥାନ, ଗଜଘଟା—ହାତୀସବୁ, ନଗଜାରଚିତା— ପାର୍ବତୀମୂର୍ତ୍ତି ଶୋଭିତା । ୧୧ । ଭୂପରାଗ—ଧୂଳି, ମାର୍ଜିତ—ପରିଷ୍କୃତ, ଭୂପରାଗ—ରାଜାଙ୍କ ସ୍ନେହ ବା ଅନୁଗ୍ରହ । ଚିତ୍ର ପରଦାରେ—ଚିତ୍ରିତ ଯବନିକାରେ, ପର ଦାରେ—ପର ସ୍ତ୍ରୀ ଠାରେ । ୧୨ ।

ହୁଳହୁଳି ରବ ଯେ । ଅନଙ୍ଗବିଳାସସ୍ଥଳୀ ପରି ରସୋତ୍ତର । ପୁଣି ଶତ ଶତ ଶତାଙ୍ଗରେ ମନୋହର ଯେ । ୧୨ । ମରକତ ମାଣିକ୍ୟ ସ୍ଫଟିକ ବାହମୟ । ହୋଇ ପ୍ରତି ଗୃହାଙ୍ଗଣେ କେଳି ଜଳାଶୟ । ଘେନି ସର୍ବରତୁ ମଳୟଜ ପବନକୁ । ସେବିଛନ୍ତି ପ୍ରତିବାଟୀ ପୁଷ୍ପୋପବନକୁ । ୧୩ । ନ ଥିବାରେ କେଳିଗିରି ମଣ୍ଡପ ଜଗତୀ । ନାହିଁ ତହିଁ ମହାଜନମାନଙ୍କ ବସତି । କୁରୁବିନ୍ଦ ଇନ୍ଦ୍ରନୀଳ ବଇଦୁର୍ଯ୍ୟମୟ । ହେବାରୁ ସେ ପୁରେ ଅଟ୍ଟ କୁଟ୍ଟିମ ନିଳୟ । ୧୪ । ଖମଣ୍ଡଳେ ଖେଳିଲା ଯା ତହୁଁ ନାନାଭାନୁ । ଘନେ ବୋଲାଇଲେ କାମରୂପୀ ସେହି ଦିନୁ । ହଜାର ସ୍ଥଳରେ ଯହିଁ ବଜାର ବସୁଛି । ବାଜାର ନିର୍ଘୋଷ ତହିଁ ଉଦରେ ମିଳୁଛି । ୧୫ । ଗଜଘଟା ଘଣ୍ଟାନାଦ ବୃଂହିତରେ ମିଶା । ହରିହୟହୟାନ୍ୱୟ ହୟଚୟ ହ୍ରେଷା । ଚନ୍ଦ୍ରସୂର୍ଯ୍ୟ ଚିହ୍ନ ଚାରୁ ଚିରାଳ ମର୍ମର । କରି କର୍ଣ୍ଣତାଳ ଧ୍ୱନି ଘରଟଘର୍ଘର ଯେ । ୧୬ । ଉଷ୍ଟ୍ର ପଟଳୀର ପଟୁତର ଗରଜନ । ସଂଳାପ ଆରମ୍ଭିବାରେ ସେ ନଗରଜନ । ବୀଣା ରବା ବେହେଲା ସିତାରାଦି ସଙ୍ଗୀତ । କେତେ କେତେ ସ୍ଥାନେ ବାରବିଳାସିନୀ ନୃତ୍ୟ । ୧୭ । କେତେ ପ୍ରଦେଶରେ ରସୋତ୍ତର ବାକ୍ୟାଳାପ । ଛାନ୍ଦ ଚଉପଦୀ ଢଗ ପହଳୀ କଳାପ । ବେଦାନ୍ତ ମୀମାଂସା ତର୍କ ବ୍ୟାକରଣ ନ୍ୟାୟ । ସିଦ୍ଧାନ୍ତ କରନ୍ତି ଶୁକସାରୀ ସମବାୟ । ୧୮ । ନିଜ ମତି ପକ୍ଷପାତୀ ଦ୍ୱିଜାତି ଭାରତୀ । କେଉଁ କେଉଁ ସ୍ଥଳେ ଗୀତ ହେଉଛନ୍ତି ଶ୍ରୁତି । କବାଟ ଫେଟନା ରବେ ହୋଇଛି ସଂଯୁତ । ରମଣୀଗଣ ବାଢେଣୀ ଭୂଷଣଶିଞ୍ଜିତ । ୧୯ । ସମସ୍ତ ପ୍ରାସାଦ ଚିତ୍ରଶିଳ୍ପରୁ ଇତରେ । ନାହାନ୍ତି ବର୍ଣ୍ଣସଙ୍କର ସେ ପୁର ଭିତରେ । ରତ ବିନା ଆନେ ତହିଁ ନାହିଁ କେଶଗ୍ରହ । ଅକ୍ଷକ୍ରୀଡ଼ା ବିନା ଦେଖା ନାହିଁ ଶୂନ୍ୟଗୃହ । ୨୦ । ଦନ୍ତବାସ ଗୀତ

---

ଅନବରତ—ସର୍ବଦା, ନବରତ ମହୋତ୍ସବ—ନୂତନ ରତି ମହୋତ୍ସବ, ରସୋତ୍ତର—ଶୃଙ୍ଗାରାଦି ରସର ଯୋଗ୍ୟ, ଶତାଙ୍ଗ—ରଥ । ୧୩ । କେଳିଜଳାଶୟ—କ୍ରୀଡ଼ା ପୁଷ୍କରିଣୀ, ବାହମୟ—ପାର୍ଶ୍ୱଯୁକ୍ତ, ଚାରିବାହିଥିବା । ୧୪ । ଜଗତୀ—ବଡ଼କୋଠା, ଅଟ୍ଟକୁଟ୍ଟିମନିଳୟ—ସମୁଚ୍ଚ ଅଟ୍ଟାଳିକା । ୧୫ । ଖମଣ୍ଡଳ—ଆକାଶଦେଶ, ନାନାଭାନୁ—ନାନାବିଧ କିରଣ, ଘନେ—ମେଘମାନେ, କାମରୂପୀ—ନିଜ ଇଚ୍ଛାରେ ବିଭିନ୍ନ ରୂପଧାରଣକାରୀ । ୧୬ । ଗଜଘଟା—ହସ୍ତିସମୂହ, ବୃଂହିତ—ହାତୀର ରବ, ହରିହୟହୟାନ୍ୱୟ—ଇନ୍ଦ୍ରଙ୍କ ଉଚ୍ଚୈଃଶ୍ରବା ଅଶ୍ୱବଂଶୀୟ, ହରିଚୟ—ଅଶ୍ୱମାନେ, ହ୍ରେଷା—ଘୋଡ଼ାର ଧ୍ୱନି, ଚିରାଳ—ପତାକା, ଘରଟଘର୍ଘର—ପେଷଣାମାନଙ୍କର ଘର୍ ଘର୍ ଶବ୍ଦ, ରବା (ପାରସି ରବାବ୍)—ଏକପ୍ରକାର ବାଦ୍ୟଯନ୍ତ୍ର । ୧୮ । ରସୋତ୍ତର—ରସମୟ, ସମବାୟ—ସମୂହ । ୧୯ । ଦ୍ୱିଜାତି—ବ୍ରାହ୍ମଣ, ଭାରତୀ—ବିଦ୍ୟା, ଶ୍ରୁତି—ବେଦ, ଫେଟନାରବ —ଫିଟାଇବା ଶବ୍ଦ, ଶିଞ୍ଜିତ—ଅଳଙ୍କାରଧ୍ୱନି । ୨୦ । ସେ ନଗରୀର ପ୍ରାସାଦମାନଙ୍କରେ କେବଳ ବର୍ଣ୍ଣସଙ୍କର (ବିଭିନ୍ନ ବର୍ଣ୍ଣର ମିଶ୍ରଣ) ଦେଖାଯାଏ କିନ୍ତୁ ବର୍ଣ୍ଣସଙ୍କର ଅର୍ଥାତ୍ ମିଶ୍ରଜାତି ସେଠାରେ ନାହାନ୍ତି । ରତ ବିନା ଆନେ—ରତିକ୍ରିୟା ଛଡ଼ା

ବିନା ରାଗ ନାହିଁ ଆନେ । କୁଞ୍ଜରେ ମଦବିକାର ଅଛି ନାହିଁ ଜନେ । ବିପକ୍ଷ ବୋଲାଏ ଏକା ବିହଙ୍ଗମ ପକ୍ଷ । କୁଟିଳ କେବଳ କଳାବତୀଙ୍କ କଟାକ୍ଷ । ୨୧ । କାବ୍ୟେ ଦୃଢ଼ବନ୍ଧ ଶାସ୍ତ୍ରେ ଚିନ୍ତା କମ୍ପ ଧ୍ୱଜେ । କଠିନତା ମଣି ମାତ୍ର ରମଣୀଉରଜେ । କନକ କଳିତ ଦଣ୍ଡ ସିତ ଆତପତ୍ରେ । ଚଞ୍ଚଳତା ବାରନିତମ୍ବିନୀ ଜନନେତ୍ରେ । ୨୨ । ଜ୍ଞାନପ୍ରଦୀପରୁ ହୃଦନ୍ତରେ ତମ ନାହିଁ । ମଣିପୁରମୟୂଖରୁ ବାହାରେ ସେ କାହିଁ । ରଜୋଗୁଣ ମାତ୍ର ମନ୍ତ୍ର କେତକୀ କେଶରେ । ମହା ସତ୍ତ୍ୱବନ୍ତ ପ୍ରତି ଗୁଣ ପୁରୁଷରେ । ୨୩ । ରଳ ଦୁଇବର୍ଣ୍ଣ ଅଭିପ୍ରାୟ ଜାଣି ଏକ । ଖଳ ବୋଲି ରାସଭକୁ ଜାଣନ୍ତି ରଜକ । ଡଳ ଦୁଇବର୍ଣ୍ଣେ ନ ଥିବାରୁ ଭେଦମତି । ଜଳକୁ ସକଳେ ଜଡ଼ ବୋଲି ବିଚାରନ୍ତି । ୨୪ । ଅନୀକରେ ନଖଚଞ୍ଚୁ ଯୋଧି ବିହଗରେ । ବିପତ୍ତି ବୃଦ୍ଧି କରନ୍ତି ନରେ ସେ ନଗରେ । ଦର ବୋଲି ତହିଁ ଜନ କମ୍ବୁକୁ ଭାଷଇ । ବିରୋଧ ମାତ୍ରକ ଅଳଙ୍କାରେ ଆଭାସଇ । ୨୫ । ଚାପ ବିଦ୍ୟା ଖୁରଳୀରେ ମାତ୍ର ଗୁଣଚ୍ଛେଦ । ଜନମନେ ନାହିଁ ଶରବ୍ୟରେ ଏକା ଭେଦ । ବାମାକଟୀ ମାତ୍ର କୃଶ କୃଶ ନାହିଁ ଜନ । ଜାତିହୀନ ନାହିଁ ପୁଷ୍ପ ସମୟରୁ ଆନ । ୨୬ । ସାତପୁରୀ ମହଲାଙ୍କ ମହୋନ୍ନତ ଶିର । ଧିଷଣନେଦିଷ୍ଠ ନୋହେ ଧିଷଣାଗୋଚର । ଦେବଙ୍କର ସଳିଳମଜ୍ଜନକାଳେ ନିତି । ଦେବଦାସୀମାନେ ହୋଇ ସସଂଭ୍ରମ ଅତି । ୨୭ । ସ୍ୱସଞ୍ଚିତ ଜଳଘଟ ରାଶି ବୋଲି ଆସି । ଧରନ୍ତି ବଡ଼ଭୀଚୂଳ କନକ

---

ଅନ୍ୟତ୍ର, କେଶଗ୍ରହ—ମସ୍ତକର କେଶକୁ ଧରିବା, ଅକ୍ଷକ୍ରୀଡ଼ା—ପଶାଖେଳ, ଶୂନ୍ୟଗୃହ—ପଶାପାଲିରେ ଗୋଟି ଚାଳିବାରୁ ଖାଲି ହୋଇଥିବା ପାଳିର ଘର, ଶୂନ୍ୟଗୃହ—ମନୁଷ୍ୟାଦି ନ ଥିବା ଘର । ୨୧ । ଦନ୍ତବାସ—ଅଧର, ରାଗ—ରକ୍ତିମା ଅଥଚ କ୍ରୋଧ, କୁଞ୍ଜରେ— ହାତୀଠାରେ, ମଦବିକାର—ମଦଜଳଧାରାର କ୍ଷରଣ, ଅଥଚ ଗର୍ବ । ବିପକ୍ଷ—ପକ୍ଷୀର ଡେଣା ଅଥଚ ଶତ୍ରୁ । କୁଟିଳ—ବକ୍ର ଅଥଚ ଠକ, ଧୂର୍ତ୍ତ । ୨୨ । କନକକଳିତଦଣ୍ଡ—ସୁନା ଦ୍ୱାରା ଶୋଭିତ ଯଷ୍ଟି, ଅଥଚ ଶାସନ ରକ୍ଷାପାଇଁ ଅର୍ଥ ଦଣ୍ଡ ହୁଏ ନାହିଁ । ସିତ ଆତପତ୍ର—ଶୁକ୍ଳବର୍ଣ୍ଣ ରାଜଛତ୍ର, ବାରନିତମ୍ବିନୀ—ବେଶ୍ୟା । ୨୩ । ମଣି ... କାହିଁ—ମଣିରେ ନିର୍ମିତ ଗୃହମାନଙ୍କରୁ ତେଜ ବାହାରୁଥିବାରୁ ଅନ୍ଧକାର ନଗରୀର ବହିର୍ଦ୍ଦେଶରେ ବି ନ ଥାଏ । ରଜୋଗୁଣ ରାଜସିକତା ଅଥଚ ପରାଗମୟତା; ମନ୍ତ୍ର—ମନ୍ତ୍ରଣା, କେତକୀ ଓ କେଶରେ—କେତକୀ ଫୁଲରେ ଓ ନାଗେଶ୍ୱର ଫୁଲରେ । ପ୍ରତ୍ୟେକ ପୁରୁଷଠାରେ ମହାସତ୍ତ୍ୱ ଗୁଣ ଅଛି । ୨୪ । ଖଳ—ଦୁର୍ଜନ, ଖର—ଗଧ । ୨୫ । ଅନୀକରେ—ଯୁଦ୍ଧରେ, ବିପତ୍ତି—ବିପଦ ଅଥଚ ବି (ପକ୍ଷୀମାନଙ୍କର) ପତି, ଶ୍ରେଷ୍ଠପକ୍ଷୀ; ଦର—ଭୟ ଓ ଶଙ୍ଖ, ବିରୋଧମାତ୍ରକ ଅଳଙ୍କାରେ ଆଭାସଇ—ସେଠାରେ ବିରୋଧ ଅର୍ଥାତ୍ ଶତ୍ରୁତା ନାହିଁ କେବଳ ଅଳଙ୍କାର ଗ୍ରନ୍ଥରେ ବିରୋଧାଭାସ ନାମକ ଅଳଙ୍କାର ଅଛି । ୨୬ । ଚାପବିଦ୍ୟାଖୁରଳୀରେ—ଧନୁର୍ବିଦ୍ୟା ଅଭ୍ୟାସରେ, ଗୁଣଛେଦ—ଧନୁର ଜ୍ୟା ଛିଣ୍ଡିବା ଅଥଚ ଗୁଣହୀନତା, ଶରବ୍ୟରେ ଏକା ଭେଦ—ଲକ୍ଷ୍ୟକୁ କେବଳ ଭେଦ କରାଯାଏ, କିନ୍ତୁ କାହାରି ମଧ୍ୟରେ ଭେଦଭାବ ନ ଥାଏ । ଜାତିହୀନ—ନୀଚଜାତି ଅଥଚ ମାଳତୀଫୁଲର ଅଭାବ । ୨୭ । ସାତମହଲା କୋଠାମାନଙ୍କର ଉପରିଭାଗଧିଷଣା ଅର୍ଥାତ୍ ବୃହସ୍ପତିଙ୍କର ମଧ୍ୟ ଧିଷଣାଗୋଚର ଅର୍ଥାତ୍

କଳସୀ । ନୀରନ୍ଧ୍ର ହେବାରୁ ବରଜନ୍ତି କେଉଁମାନେ । ପତାକାକୁ ଦେଖି କେ ହସନ୍ତି ମନେ ମନେ । ଯହିଁ ପୁରେ ଶୋଇଥିଲା ସଚିବଯୁବତୀ । ମାରବିକାରବିଧୁର ହୋଇ ବାଚସ୍ପତି । ନିଜ ଅନ୍ତଃପୁର ଭ୍ରମେ ପଶିଲେ ସେ ପୁରେ । ଦେଖିଲେ ଶୋଇଛି ବାଳା ପଲଙ୍କ ଉପରେ । ୨୯ । ନିଜ ସରସିଜନେତ୍ରା ଭ୍ରମେ ରତି କରୁ । ନିଦ୍ରାଭଙ୍ଗେ ପଚାରିଲା ସେ ହେମରମ୍ଭୋରୁ । କାହିଁ କେ ତୁ ଆସିଲୁ ଏ କେମନ୍ତ ଅନୀତି । ଶୁଣି ସଂକୋଚରେ ବୁଝାଇଲେ ବୃହସ୍ପତି । ୩୦ । ପୂର୍ଣ୍ଣ ଶରଚ୍ଚନ୍ଦ୍ର ମୁଖି କୁପିତ ନୁହ ରେ । ନିଜପୁରୀ, ନାରୀଭ୍ରମେ ମଦନମୋହରେ । ସୁରଗୁରୁ ଆମ୍ଭେ ଏଥି ହୋଇଲୁ ପ୍ରବେଶ । ଏଥୁଁ ତତେ ନ ଲାଗିବ ବ୍ୟଭିଚାର ଦୋଷ । ୩୧ । ଏହି ଗର୍ଭାଧାନେ ଜାତ ହେବ ଯେଉଁ ସୁତ । ଏ ରାଜ୍ୟ ରାଜପୁତ୍ରର ହେବ ପ୍ରିୟମିତ । ଆମ୍ଭ ତୁଲ୍ୟ ରୂପବନ୍ତ ବିଦ୍ୟାବନ୍ତ ହେବ । ଏତେ କହି ସ୍ୱପୁରକୁ ବିଜେ କଲେ ଜୀବ । ୩୨ । ସୁରତାର୍ଥୀ ସୁରେ ବଳେ କରନ୍ତେ ବିବାସ । ଅମରୀଏ ହୋଇ ଅପତ୍ରପାରେ ବିବଶ । ସେ ପୁରୀ ସଉଧଚୂଳ ପତାକା ଅମ୍ବର । ଓଟାରି କରନ୍ତି ଆବରଣ ନିତମ୍ବର । ୩୩ । ବାଜି ସେ ପୁର ଅଟ୍ଟାଳୀ ଚେଳବଲ୍ଲୀବାତ । ହୋଏ ଦେବତରୁଣୀଙ୍କ ରତିଶ୍ରମ ହତ । ଯାହା ମହାରଜତ କୁଟ୍ଟିମ ଉନ୍ନତିରୁ । ରଜୁପଥେ ରବିରଥ ନ ଚଳେ ଭୀତିରୁ । ୩୪ । ଦକ୍ଷିଣ ଉତ୍ତରେ ଫେରିବାରୁ ଛ ଛ ମାସ । ଅୟନ ବୋଲାଇ ଯୁଗେ ହୋଇଛି ବରଷ । ଯାହା ପତାକିକଦଣ୍ଡ ଚୁମ୍ବନ୍ତେ ଚନ୍ଦ୍ରମା । ରୁଣ୍ଡ ହୁଏ ସେ ଦଣ୍ଡକୁ ଶ୍ୱେତଛତ୍ରରମା । ୩୫ । ବ୍ୟୋମଭଙ୍ଗା କଳରବ ଛାଡ଼ି କୁତୂହଳେ । ଅଦୃଶ୍ୟ ହେବାରୁ ଚାହୁଁ ଚାହୁଁ ନିଶାଜଳେ । ଜନେ ସେ ନଗରଚୂଳ ଚେଳବଲ୍ଲୀ ଦେଖି । ପାରାବତ ମଣି ମନେ ହେଉଛନ୍ତି ସୁଖୀ । ୩୬ । ଯହିଁ ପୁରପତାକିକା ନୀଳମଣି ଦଣ୍ଡ । ବାଜି ଭାଜି ରହିବାରୁ ଯବ ତୁଲ୍ୟ ଖଣ୍ଡ । ସୁଧାକରେ କଳଙ୍କ ବୋଲନ୍ତି ଅଜ୍ଞ ଜନେ । ସେ ପୁରୀ ଉନ୍ନତି କାହିଁ ଇତର ଭୁବନେ । ୩୭ । ଯହିଁ ନିଳୟ ଧାରଣା

---

ଜ୍ଞାନଗୋଚରର ନେଦିଷ୍ଠ (ନିକଟତମ) ହୁଏ ନାହିଁ । ସସଂଭ୍ରମ—ଉଦ୍‌ବିଗ୍ନ । ୨୮ । ବଡ଼ଭୀ—ଚନ୍ଦ୍ରଶାଳା, ନୀରନ୍ଧ୍ର—ଛିଦ୍ରଶୂନ୍ୟ । ୨୯ । ମାରବିକାରବିଧୁର—କାମପୀଡ଼ିତ, ବାଚସ୍ପତି—ବୃହସ୍ପତି । ୩୦ । ନିଜ ସରସିଜନେତ୍ରା ଭ୍ରମେ—ସ୍ୱକୀୟ ପଦ୍ମନେତ୍ରା ସ୍ତ୍ରୀ ଭ୍ରମରେ । ୩୨ । ଜୀବ—ବୃହସ୍ପତି । ୩୩ ॥ ବିବାସ—ନଗ୍ନ, ଅମରୀଏ—ଦେବୀମାନେ, ଅପତ୍ରପା—ଲଜ୍ଜା, ବିବଶ—ବ୍ୟାକୁଳ, ଅମ୍ବର—ଲୁଗା । ୩୪ । ମହାରଜତ କୁଟ୍ଟିମ ଉନ୍ନତିରୁ—ସୁବର୍ଣ୍ଣନିର୍ମିତ ଅଟ୍ଟାଳିକାମାନଙ୍କର ଅତି ଉଚ୍ଚତା ହେତୁରୁ । ରଜୁପଥ—ସରଳମାର୍ଗ । ୩୫ । ପତାକିକଦଣ୍ଡ—ପତାକାଯୁକ୍ତଦଣ୍ଡ, ଶ୍ୱେତଛତ୍ରରମା —ଶୁକ୍ଳବର୍ଣ୍ଣଛତ୍ରର ସୌନ୍ଦର୍ଯ୍ୟ । ୩୬ । ବ୍ୟୋମ ଭଙ୍ଗ—ଆକାଶରେ ଯେ ଲେଉଟି ଲେଉଟି ଗତି କରେ, କଳରବ—ପାରା, ନିଶାଜଳ— ହଳଦୀପାଣି । ୩୭ । ନିଳୟଧାରଣା ପାଞ୍ଚାଳିକାଗଣେ—କୋଠାଘରରେ ଧାରଣା ହୋଇଥିବା ପୁତ୍ତଳିକାସମୂହ, ଅଭିସାରରସବଶ

ପାଞ୍ଚାଳିକାଗଣେ । ଅନିମିଷାଦି ଅନେକ ଲାବଣ୍ୟ ଲକ୍ଷଣେ । ପ୍ରତିନିଶା ଅଭିସାର ରସବଶ ସୁରେ । ଭିଡ଼ି ବାମାଭ୍ରମରେ ଚୁମ୍ବନ୍ତି ଚିବୁକରେ । ୩୮ । ସୁରମଣିକଦମ୍ବ କାମିତ ପୂର୍ତ୍ତିକାରୀ । କୃଷ୍ଣଚନ୍ଦ୍ରଙ୍କୁ ଇନ୍ଦ୍ରଙ୍କୁ ନମସ୍କାର କରି । ରାମଚନ୍ଦ୍ର ଛୋଟରାୟ ଦେବ କ୍ଷମାପତି । କଲେ ମହା ଗଜଘୋଷ ସ୍ତବ ସମାପତି । ୩୯ । ଉତ୍ତର ଛାନ୍ଦରେ ନୃପପୁତ୍ର ଜନ୍ମୋତ୍ସବ । ରସିକ ଶ୍ରବଣାନନ୍ଦ ଆରମ୍ଭ ହୋଇବ । ଏ ଛାନ୍ଦ ଚାରି ଚରଣ ପଦ ଚତ୍ୱାରିଂଶ । ସଂଖ୍ୟା ବୋଲି ଜାଣ ସଂଖ୍ୟାବାନ ଅବତଂସ । ୪୦ ।



---

ସୁରେ—ସଙ୍କେତ ସ୍ଥାନକୁ ରସବଶ ହୋଇ ଯାଉଥିବା ଦେବତାମାନେ । ୩୮ । ସୁରମଣୀକଦମ୍ବ —ସୁନ୍ଦରୀ ଗୋପିକାସମୂହ, ସୁନ୍ଦରୀ ଦେବାଙ୍ଗନା; ବାମିତ—କାମନା, କ୍ଷମାପତି—ପୃଥ୍ୱୀପତି, ରାଜା । ୪୦ । ସଂଖ୍ୟାବାନ ଅବତଂସ— ଗଣନାକାରୀଙ୍କ ମଧ୍ୟରେ ଶ୍ରେଷ୍ଠ ।



# ଚତୁର୍ଥ ଛାନ୍ଦ

## ରାଗ—ବଙ୍ଗଳାଶ୍ରୀ

## କୁମାରୋତ୍ସବ

ପ୍ରମୁଦିତ ହୃଦେ ଶୁଣ ବିଶାରଦେ ସେ ମହୀମଣ୍ଡଳୀ ଧବ । ପରତାପନର କରତା ସେ ବୀର ପରତାପକଣ୍ଠୀରବ । ୧ । ସୁନ୍ଦରପଣରେ କନ୍ଦରପ ତୁଲ୍ୟ ଚନ୍ଦରଠାରୁ ଶୀତଳ । ଶରଣାପନ୍ନ ରକ୍ଷଣ ବିଚକ୍ଷଣ ଲକ୍ଷଣ ଖେଳନସ୍ଥଳ । ୨ । ବିତରଣଗୁଣେ ଇତରଭୂନାଥମଣ୍ଡଳେ ନାହିଁ ତା ତୁଳ । ସିତରଶ୍ମି ତୁଲ୍ୟ ଯଶେ ଯେ ଜଗତୀ ଭିତର କରେ ଧବଳ । ୩ । ହିତରକ୍ଷକ ସଙ୍ଗୀତ ରସିକତା ଜିତରମ୍ଭା ଗୁରୁଜନ । ଚିତ୍ତର ଗମ୍ଭୀରଗୁଣେ ପାରାବାର ଅମିତ ରସ ବଚନ । ୪ । ଦଣ୍ଡିତ ନୁହଇ ଭଣ୍ଡିତ ନ ଜାଣେ ମଣ୍ଡିତ ଗୁଣ ମଣ୍ଡଳେ । ଖଣ୍ଡିତ ନୋହିବା ପଣ୍ଡିତପଣେ ସେ ଚଣ୍ଡୀତନୟରୁ ବଳେ । ୫ । ଅମରଙ୍କ ତୁଲେ ସମର କରିବା ସମରଥପଣ ତାର । ନ ମରନ୍ତି ଶିଶୁତରୁଣ ସେ ଦେଶେ ଯମର ଏପରି ଦର । ୬ । ଦ୍ୱିଜାତି ପୂଜାତିଶୟପରାୟଣ ଗୁରୁଦେବ ପାଦସେବୀ । ପଞ୍ଚବିଂଶ ବୟ ଚଞ୍ଚଳ ଆଶୟ ପରିତ୍ୟାଗୀ ମହାକବି । ୭ । ରସାମୃତଘଟପୟୋଧରା ପଟ୍ଟମହିଷୀ ହେମମଞ୍ଜରୀ । ସେ ଭୂପତି ଅକ୍ଷି ମନବ୍ୟାଜପକ୍ଷିତ୍ରିତୟ ବନ୍ଦି ପଞ୍ଜରୀ । ୮ । ମାରମହିଳାରୁ ଅଧିକ ଲାବଣ୍ୟ ସାରମୟ ହେବା ଘେନି । ହାରମଧମଣି ତାର ଚିତ୍ତେ ମଣି ତା ରମଣ ଥାଏ ଘେନି । ୯ । ଶଚୀର

---

### ଚତୁର୍ଥ ଛାନ୍ଦ

୧ । ପରତାପନ—ଶତ୍ରୁକୁ ଦଣ୍ଡ ଦେବା, ପରତାପକଣ୍ଠୀରବ—କଣ୍ଠୀରବ ବା ସିଂହପରି ପ୍ରତାପୀ । ୨ । ଲକ୍ଷଣ ଖେଳନସ୍ଥଳ— ସୁଲକ୍ଷଣମାନଙ୍କ କ୍ରୀଡ଼ାଭୂମି ବା ଆଧାର । ୩ । ସିତରଶ୍ମି—ସିତାଂଶୁ—ଚନ୍ଦ୍ର । ୪ । ହିତରକ୍ଷକ —ଉପକାରୀମାନଙ୍କର ରକ୍ଷାକର୍ତ୍ତା, ସଙ୍ଗୀତ ... ଗୁରୁଜନ—ସଙ୍ଗୀତ ରସିକତା ବିଷୟରେ ସଙ୍ଗୀତନିପୁଣା ରମ୍ଭା ବେଶ୍ୟାର ଗୁରୁଙ୍କୁ ଯେ ଜୟ କରିଅଛନ୍ତି, ଅମିତରସବଚନ—ଯାହାଙ୍କର କଥା ନାନାବିଧ ରସରେ ପୂର୍ଣ୍ଣ । ୫ । ଦଣ୍ଡିତ ନୁହଇ—ଦଣ୍ଡ ଦେବାରେ ଅଭ୍ୟସ୍ତ ନୁହେଁ । ଭଣ୍ଡିତ ନ ଜାଣେ—ଠକିବା କଥା ଜାଣେ ନାହିଁ । ଖଣ୍ଡିତ ନୋହିବା ପଣ୍ଡିତ ପଣରେ—ଅଖଣ୍ଡ ପାଣ୍ଡିତ୍ୟରେ, ଚଣ୍ଡୀତନୟ—ଗଣେଶ । ୮ । ରସାମୃତ ... ପୟୋଧରା—ରସମୟ ଅମୃତ ମାଠିଆପରି କୁଚ ଯାହାର, ଅକ୍ଷି—ଦୁଇ ଆଖିକୁ ଓ ମନକୁ ବନ୍ଧୀ କରିବା ବିଷୟରେ ପଞ୍ଜରୀପରି । ୯ । ମାରମହିଳା—ରତି, ହାର ... ତା ରମଣ

ଭୋଗ୍ୟ ଭୁଞ୍ଜଇ କାନ୍ତ ସଙ୍ଗେ ରଚି ରତିରସ କେଳି । ଅଚିରବୟସୀ ପତିସ୍ନେହୁଁ କେବେ ନ ଚିରଇ ମହୀସ୍ଥଳୀ । ୧୦ । ଏଡ଼େ ଭାଗ୍ୟବତୀ ହେଲେହେଁ ସେ ସତୀଶିଖା ମଣି ପ୍ରତିଦିନେ । ସନ୍ତାନ ଅଭାବ ଚିନ୍ତାରୁ ଲାଘବ ଲଭି ବିଚାରଇ ମନେ । ୧୧ । ଅଖଣ୍ଡମଣ୍ଡଳ ଅଚଳାଖଣ୍ଡଳ କରପଲ୍ଲବ ଧଇଲି । ଲକ୍ଷ ସାମନ୍ତାଣୀ ଶିରଭୂଷାମଣିକିରଣେ ପଦ ଧୋଇଲି । ୧୨ । ରତିରଙ୍ଗରେ ବିଶାରଦା ହୋଇଲି ସତର ହେଲା ବୟସ । ମୁଁ ତ ରଖି ନ ପାରିଲି ଆଖିପାଖେ ସୁତର ମୁଖ-ରାକେଶ । ୧୩ । ମୋର ସଙ୍ଗେ ଧୂଳିଗୃହ ରଚି କେଳି କରୁଥିଲେ ଯେତେ ସହୀ । ସୁତ ରଖି ତଳେ ଜୁହାରିବା ବେଳେ ଲାଜେ ନ ପାରିଲି ଚାହିଁ । ୧୪ । ଏମନ୍ତ ସନ୍ତତି ଅଭାବ ଚିନ୍ତନେ ସେ ମନ୍ଥରତରଗତି । ଉଭା ହେଲା ଦିନେ ବିଷଣ୍ଣବଦନେ ହେଲାପରି ମାନବତୀ । ୧୫ । ଚାହିଁ ତା ନରେଶ ନାହିଁ ତ ମୋ ଦୋଷ କାହିଁକି ରେ ରୋଷ ବୋଲି । ହେବାରୁ କାତର ଜଣାଇଲା ତାର ପ୍ରିୟସଖୀ ରସବଲ୍ଲୀ । ୧୬ । ଦେବ ମୋ ସଜନୀ ପୂର୍ଣ୍ଣିମା ରଜନୀ ତୁମ୍ଭେ ବିଭାବରୀଧବ । ଘେନ ମାନବେଶ ସେ କି ମାନବେଶ ନ କହି ଲାଜେ ବହିବ । ୧୭ । ନ ଛୁଇଁଲା ଶିଶୁ ଅଞ୍ଜନ ଆବିଳ ବଦନ ରଦନାଂଶୁକ । କେବଳ ଏ ବଳଦଳନ ସମ୍ପତ୍ତି ବୃଥା ଘେନି କରେ ଶୋକ । ୧୮ । ଧରାଧିପ ଶୁଣି ସୁନିର୍ବେଦଶୃଣିପରାଧୀନ-ମନହାତୀ । ଅଙ୍କେ ବସାଇ ପଙ୍କେରୁହନେତ୍ରାକୁ ଜଣାଇଲେ ଏ ଭାରତୀ । ୧୯ । ଧନରେ ମନରେ କଳପିବା କଥା ଦଇବ ନ କରେ ପୂରା । କେଶ ଜାତ ହୁଏ କେହି ସେ ନ ଜାଣେ ଯେ ସଜାଡ଼ିପାରେ ଝରା । ୨୦ । ତଥାପି ସୁଭଗା ମଥାଭୂଷା ତୁ ମୋ କଥା ମୁଁ କିସ କହିବି । ନ ଥାଇ ସୁକୃତ କରିଛି କି ତତେ ବ୍ୟଥାହାରିଣୀ ବାନ୍ଧବୀ । ୨୧ । ପ୍ରତି ମାସେ ପୂର୍ଣ୍ଣେ ସିଦ୍ଧବିନାୟକ ପ୍ରତିମା ସେବା କରିବା । ଯତିମାନଙ୍କୁ ଗୋମତୀମାତାଙ୍କର ତଟରେ ଅନୁସରିବା । ୨୨ । ଜପନୀୟ

---

(ରାଜା) ତାକୁ ତାର (ଦୀପ୍ତିମୟ) ହାର ମଧ୍ୟ ମଣି ମଣି (ମନେ କରି) ଚିତ୍ତରେ ଘେନିଥାଏ । ୧୦ । ଅଚିରବୟସୀ—ଅଳ୍ପ ବୟସ୍କା, ନ ଚିରଇ ମହୀସ୍ଥଳୀ—ମାନବତୀ ବା ଦୁଃଖିତା ହୁଏ ନାହିଁ । ୧୨ । ଲକ୍ଷ ... ଧୋଇଲି—ମୁଣ୍ଡରେ ମଣି ପିନ୍ଧିଥିବା ଅଗଣିତ ସାମନ୍ତ ରାଜାଙ୍କ ରାଣୀମାନେ ମୋ ଗୋଡ଼ତଳେ ମୁଣିଆ ମାରୁଅଛନ୍ତି, ଅଖଣ୍ଡ ... ଆଖଣ୍ଡଳ—ସମଗ୍ର ପୃଥିବୀର ଇନ୍ଦ୍ର । ୧୩ । ମୁଖ-ରାକେଶ—ମୁଖରୂପ ପୂର୍ଣ୍ଣଚନ୍ଦ୍ର । ୧୭ । ମାନବେଶ—ମନୁଷ୍ୟଶ୍ରେଷ୍ଠ ବା ରାଜା ଓ ମାନବତୀର ବେଶ । ୧୮ । ନ ଛୁଇଁଲା—ପୁତ୍ରର କଜ୍ଜଳଲିପ୍ତ ମୁଖ ଓ ଅଧର ସ୍ପର୍ଶ କଲା ନାହିଁ । ବଳଦଳନସମ୍ପତ୍ତି—ଇନ୍ଦ୍ର ସମ୍ପତ୍ତି । ୧୯ । ଶୃଣି—ଅଙ୍କୁଶ, ସୁନିର୍ବେଦଶୃଣି— ଅତି ଦୁଃଖରୂପ ଅଙ୍କୁଶଦ୍ୱାରା ଯାହାଙ୍କର ମନରୂପ ହାତୀ ପରାଧୀନ ହେଲା । ୨୦ । ଝରା—କେଶଭୂଷଣ ଫୁଲତୋଡ଼ା, ଯେଉଁ ଲୋକ କେଶକୁ ଭୂଷିତ କରିବାକୁ ଝରା ତିଆରି କରିପାରେ ସେ ଲୋକ କେଶ କିପରି ଜାତ ହୁଏ ତାହା ଜାଣେ ନାହିଁ । ୨୨ । ଗୋମତୀମାତା—ଗଙ୍ଗା । ୨୩ ।

ଭୂମିଦେବଙ୍କ ଚରଣରଜ ସେବି ପ୍ରତିଦିନ । ଗୋପନୀୟ କରି ତପନୀୟମୟ ଗୋପାଳଙ୍କୁ ଦେବା ଦାନ । ୨୩ । ଯିବା ଶିବାଶ୍ରମ ନିବାସୀଙ୍କି ନମସ୍କରଣଗଣେ ତୋଷିବା । ଶିବ ଶିବା ଦୁହେଁ ଥିବା ସୀମା ଖୋଜି ସୁବାସିତ ଫୁଲ ଦେବା । ୨୪ । ନିକଟେ ପ୍ରକଟ ହୋଇବ ପୁରଟଘଟିତ ଲତାରେ ଫଳ । ଏପରି ପ୍ରବୋଧ କରି ଅବରୋଧ ତ୍ୟଜନ୍ତେ ଧରାଖଣ୍ଡଳ । ୨୫ । ଅତି ବେଗେ ବେତ୍ରବଲ୍ଲରୀଧାରିଣୀ କେ ପ୍ରତିହାରିଣୀ ଜଣେ । ଜଣାଇଲା ଏତେ ବିନୟ ସହିତେ ବନ୍ଦି ନରେନ୍ଦ୍ର ଚରଣେ । ୨୬ । ଦେବ ସିଂହଦ୍ୱାରରକ୍ଷକ ଲକ୍ଷକ ସରଦାର ଶୂରବର । ପେଷିଛି ସନ୍ଦେଶ ଚରଣ ସାରସ ତଳେ ହେବାକୁ ଗୋଚର । ୨୭ । ନଇମିଷାରଣ୍ୟ ଉଟଜରୁ ପୁଣ୍ୟପୁଞ୍ଜ ନାମା ଜଣେ ଯତି । ଗୁଣ୍ଡିଚାମଣ୍ଡପବେଢ଼ା ଉପବନ ବକୁଳତଳେ ଅଛନ୍ତି । ୨୮ । କରମାଳିବ୍ରଜ ପରି ପୁଣି ତେଜ କରମାଳାରେ ମଣ୍ଡିତ । ପରମାନନ୍ଦର ବିଳାସମନ୍ଦିର ଧରମାକାର ପଣ୍ଡିତ । ୨୯ । ସଞ୍ଚାରେ ଚରଣ ସଞ୍ଚା ରହୁ ନାହିଁ ପୁଣି ଧୂଳିମୟେ ପଥି । ଅଳପ ବୟସ ପରି ଦିଶୁଛନ୍ତି କଳପଜୀବୀଙ୍କ ସାଥି । ୩୦ । ଅନୂରୁକରପିଙ୍ଗଳ ଖର୍ବକେଶ ତନୁରୁହଶ୍ରେଣୀ ଠାଣି । କଳିତ ତ୍ରିଦଣ୍ଡ କରକ ଅଖଣ୍ଡ ବିଭୂତିଭୂଷିତ ପୁଣି । ୩୧ । କାହାର ନେତ୍ର ଗୋଚର ହେଉ ନାହିଁ ଆହାର ଅଙ୍ଗୀକରଣ । ତଳକଳିତକରର ସର୍ବସିଦ୍ଧି ବଳକଳଆଭରଣ । ୩୨ । ଏ ଭାରତୀ ଭୂପଶ୍ରୁତିରନ୍ଧ୍ରକୂପ ସୁଧାପୂରରୁ ବଳିଲା । ଧରାଧୁରନ୍ଧର ସଚିବ ପ୍ରବର ଦ୍ୱିତୀୟ ହୋଇ ଭାଳିଲା । ୩୩ । ଏ ସମୟେ ରବି ବାରୁଣୀକି ସେବି ଅମ୍ବରକୁ ଦେଲେ ତେଜି । ଅମ୍ବୁଜିନୀ ଚାହିଁ ଅପତ୍ରପା ବହି ରହିଲା ନୟନ ବୁଜି । ୩୪ । ଲଜ୍ଜାଭର ଘେନି କୋକବିଳାସିନୀ କାନ୍ତପାଶୁଁ ହେଲା ଦୂର । କୁମୁଦିନୀ ବାସ ମୁଖେ ରଖି ହାସ ପ୍ରକାଶିଲା ଦରଦର । ୩୫ । ପିତୃଜନୟିତ୍ରୀ ବିଧି ସାରି ମନ୍ତ୍ରୀ ପୁଙ୍ଗବକୁ ସଙ୍ଗେ ଘେନି । ଗୁପତେ ନୃପତି ଗଲେ ଅର୍ଦ୍ଧରାତ୍ରିକାଳେ ଯହିଁଥିଲେ ମୁନି । ୩୬ । ଦେଖିଲେ ନାସିକାଅଗ୍ର ଜାଗରୂକ ହୋଇଛି ନୟନତାରା । ବୀରାସନେ ବସି ଦିଶୁଛନ୍ତି ଋଷି ଏକମୁଖ ବ୍ରହ୍ମା ପରା । ୩୭ । ପରାଗମୟ ଭୂତଳେ ଭୂମିନାଥ ପଡ଼ି

---

ଜପନୀୟ—ଧ୍ୟାନଯୋଗ୍ୟ, ଭୂମିଦେବ—ବ୍ରାହ୍ମଣ, ତପନୀୟ ଗୋପାଳ—ସୁବର୍ଣ୍ଣନିର୍ମିତ ଗୋପାଳ ପ୍ରତିମା, ପୁରଟଘଟିତ ଲତାରେ—ସୁବର୍ଣ୍ଣନିର୍ମିତ ଲତାରେ, ଅବରୋଧ—ଅନ୍ତଃପୁର, ଧରାଖଣ୍ଡଳ—ପୃଥିବୀର ରାଜା । ୨୮ । ଉଟଜ— କୁଡ଼ିଆ । ୨୯ । କରମାଳିବ୍ରଜ—ସୂର୍ଯ୍ୟସମୂହ । ୩୦ । ସଞ୍ଚାରେ—ଯିବାବେଳେ, ଚରଣସଞ୍ଚା—ପଦଚିହ୍ନ, କଳ୍ପଜୀବୀ—ଅତି ବୃଦ୍ଧ । ୩୧ । ଅନୂରୁକରପିଙ୍ଗଳ—ଅରୁଣକିରଣ ପରି ନୀଳପୀତବର୍ଣ୍ଣ, ତନୁରୁହଶ୍ରେଣୀ—ରୋମସମୂହ, କଳିତତ୍ରିଦଣ୍ଡକରକ—ଦଣ୍ଡକମଣ୍ଡଳୁଧାରୀ । ୩୨ । ତଳକଳିତକରର ସର୍ବସିଦ୍ଧି—ସର୍ବପ୍ରକାର ସିଦ୍ଧି ଯାହାଙ୍କ କରତଳ ସ୍ଥିତ । ବଳକଳ—ବଲ୍କଳ । ୩୩ । ଶ୍ରୁତିରନ୍ଧ୍ରକୂପ —କାନରୂପ କୂଅ, ସୁଧାପୂର—ଅମୃତପ୍ରବାହ । ୩୪ । ବାରୁଣୀ—ପଶ୍ଚିମ ଦିଗ, ଅମ୍ବୁଜିନୀ—ପଦ୍ମିନୀ, ଅପତ୍ରପା—ଲଜ୍ଜା । ୩୫ । କୋକବିଳାସିନୀ—ଚକ୍ରବାକୀ । ୩୬ । ପିତୃଜନୟିତ୍ରୀବିଧି— ସନ୍ଧ୍ୟାବିଧି । ୩୮ । ପରାଗମୟ—ଧୂଳିପୂର୍ଣ୍ଣ, ଦଣ୍ଡକୁ—ଏକଦଣ୍ଡବ୍ୟାପି, ଦଣ୍ଡିବର—ଯତିଶ୍ରେଷ୍ଠ,

ହେଲେ ଦଣ୍ଡବତ। ଦଣ୍ଡକୁ ସେ ଦଣ୍ଡିବର ବରଷିଲେ ସୁକଲ୍ୟାଣ ଖଣ୍ଡବତ। ୩୮। ଅହିତମଦମର୍ଦ୍ଦନ ହୋଇ ହୁଅ ମହୀତଳ-ପୁରନ୍ଦର। ଗୁଣମଣି ବ୍ରଜମୟ ତୋ ତନୁଜ ହେଉ ଅନଙ୍ଗସୁନ୍ଦର। ୩୯। ତହୁଁ ମହାନନ୍ଦ ଜନମି ଅମନ୍ଦ ଉଲ୍ଲାସ ବିନୟେ ନୃପ। କହିଲେ ହେ ବିଶ୍ୱୋପକାରକାରଣ ପରମଧର୍ମ ସ୍ୱରୂପ। ୪୦। ଦେଇଅଛ ସର୍ବ କେବଳ ଅପୂର୍ବ ତୃତୀୟ ଆଶୀର୍ବଚନ। ସିଦ୍ଧି ଅଭାବରୁ ଦୁଃଖୀ ହୋଇଛନ୍ତି ନିବାସ ମନ ଲୋଚନ। ୪୧। ଏ ଜଣାଣ ଶଶୀ ଦ୍ରବାଇଲା ଋଷି ହୃଦନ୍ତର-ଶଶିମଣି। ନେତ୍ରମୁକୁଳିତ କରି କଲେ ଚିତ୍ତ ସମାଧିରେ ଧୀରେ ପୁଣି। ୪୨। ସ୍ୱକୀୟ ଆଶ୍ରମସିଦ୍ଧ ଚୂତଦ୍ରୁମ ପଚେଳିମ ଫଳ ଆସି। ହେଲା କରଗତ ଦେଇ ତିରୋହିତ ହୋଇଲେ ସିଦ୍ଧ ସନ୍ନ୍ୟାସୀ। ୪୩। ସାଣି ଦେଲା ପାଣିବତ ପୀତ ମଣି ପରି ପରିଣତ ଚୂତ। ଆଣି ରାଣୀ ମୃଦୁକଞ୍ଜପାଣିପୁଟେ କଲେ ତାହା ସମର୍ପିତ। ୪୪। ଦେବୀ ସେବି ସେ ବିଶୁଦ୍ଧ ସିଦ୍ଧ ଫଳ ସଉରଭ ମହାସୁଖେ। ପୁରି ସେ ନିଶୀଥ କୃତମନୋରଥ ପହୁଡ଼ିଲା ପ୍ରିୟପାଖେ। ୪୫। ଅମ୍ବର ହୋଇଲା ତୋଳି ଘେନିଗଲା କୁସୁମବନିକା ପରି। ଝଡ଼ିଗଲା ବାସି ପ୍ରସୂନସଦୃଶୀ କେତେ ତାରକାମାଧୁରୀ। ୪୬। କୁମୁଦୁଁ ବଳେ କବାଟୀ ଫେଡ଼ି ଯହୁଁ ପଳାଇଲେ ଅଳିଯାକ। କେ କେ ରେ କେ ବୋଲି ତାମ୍ରଚୂଡ଼ଚୟ ଡାକିଲେ ଯାମିକ ଡାକ। ୪୭। ପୂର୍ବାଶା ଅରୁଣ କରିଣ କୁଙ୍କୁମପଙ୍କ ରାଗବେଶେ ରସି। ରବିଙ୍କି ଯା ବିଭାକର ବୋଲାଇଲା ପଦ୍ମିନୀଏ ଦେଲେ ହସି। ୪୮। ସେହି ଦିନୁ କ୍ରମକ୍ରମରେ ସେ ହେମମଞ୍ଜରୀ ଖଞ୍ଜନଦୃଶା। ବିଜାତୀୟ ଶୋଭା ବହି ହେଲା ଗର୍ଭାଧାନ ବିଧାନସାଳସା। ୪୯। ପାରିଜାତୁଁ ହରିହୟବନୀ ପରି ଜଳଭରୁଁ ଘନମାଳା। କଉସ୍ତୁଭସଙ୍ଗୀ ହେବାରୁ ରଥାଙ୍ଗୀ ଉରସ୍ଥଳୀକି ସେ ବାଳା। ୫୦। ରସଗର୍ଭବତୀ କି

---

ଖଣ୍ଡବତ—ସାକର ପରି। ୩୯। ଅହିତମଦମର୍ଦ୍ଦନ—ଶତ୍ରୁଗର୍ବ-ବିନାଶକ, ଗୁଣମଣିବ୍ରଜମୟ—ନାନାଗୁଣ ପରିପୂର୍ଣ୍ଣ, ତନୁଜ—ପୁତ୍ର, ଅନଙ୍ଗ ସୁନ୍ଦର—କନ୍ଦର୍ପପରିରୂପବାନ୍। ୪୦। ଅମନ୍ଦ—ପ୍ରଚୁର। ୪୧। ତୃତୀୟ ଆଶୀର୍ବଚନ (ପୁତ୍ରଲାଭ ରୂପ) ତୃତୀୟ ଆଶିଷ। ୪୨। ଶଶିମଣି —ଚନ୍ଦ୍ରକାନ୍ତମଣି, ମୁକୁଳିତ—ମୁଦ୍ରିତ। ୪୩। ପଚେଳିମ—ପାଚିଲା। ୪୪। ସାଣି ... ସାଣ ଦେଇ—ଉଜ୍ଜ୍ୱଳ କରି ପାଣି ଦେଇଥିବା ହଳଦିଆ ବର୍ଣ୍ଣର ମଣିଭଳି, ପରିଣତଚୂତ—ପାଚିଲା ଆମ୍ବ। ୪୫। (ପ୍ରଭାତବର୍ଣ୍ଣନା) ଫୁଲ ତୋଳିନେଲେ ଫୁଲ ବଗିଚା ଯେପରି ହୁଏ, ସକାଳେ ତାରାମାନେ ମ୍ଳାନ ହେବାରୁ ଆକାଶ ସେପରି ଦେଖାଗଲା। ୪୬। ପ୍ରସୂନ—ଫୁଲ। ୪୭। ତାମ୍ରଚୂଡ଼—କୁକୁଡ଼ା, ଯାମିକଡାକ—ପ୍ରହରୀଙ୍କ ଡାକ। ୪୮। ପୂର୍ବଦିଗରୂପନାୟିକା ରକ୍ତବର୍ଣ୍ଣ ଅରୁଣକିରଣରେ ଭୂଷିତ ହୋଇ ସୂର୍ଯ୍ୟଙ୍କୁ ମୋତେ ବିଭା କର ବୋଲି ଯାହା କହିଲା ତା ଶୁଣି ପଦ୍ମିନୀମାନେ (ସୂର୍ଯ୍ୟଙ୍କ ପତ୍ନୀରୂପିଣୀ) ହସି ଦେଲେ, ଅର୍ଥାତ୍ ସୂର୍ଯ୍ୟ ଉଦୟ ହେବାରୁ ପଦ୍ମ ଫୁଟିଲେ। ବିଭାକର—ବିବାହ କର ଓ ସୂର୍ଯ୍ୟ। ୪୯। ସାଳସା—ଅଳସଯୁକ୍ତ। ୫୦। ରଥାଙ୍ଗୀ—ଚକ୍ରଧର, ବିଷ୍ଣୁ; ପାରିଜାତ ଫୁଲ ହେତୁରୁ ନନ୍ଦନବନ ଯେପରି ଦିଶେ, ଜଳଭାର ହେତୁରୁ ମେଘମାଳା ଯେପରି ଦିଶେ, କୌସ୍ତୁଭମଣି ଧରି ବିଷ୍ଣୁ ଯେପରି

କବିଭାରତୀ କି ଧର୍ମବତୀ ମତି ସେ । ନୀଳପୟୋଧର ମୁଖୀ ହୋଇବାରୁ ପ୍ରାବୃଟ ପରି ଆଭାସେ । ୫୧ । ଜୃମ୍ଭାବିଜୃମ୍ଭଣ ଖରଶ୍ୱାସଗଣ ବେଶଭୂଷାରେ ଅରୁଚି । ବଟଦଳ ପରି ଛଟକେ ଦିଶିଲା ଅଦୃଶ୍ୟ ଉଦରରୁଚି । ୫୨ । ବାରବାନିସୁନାଦେହା ସେ ହୋଇଲା ବାରଣଦନ୍ତପ୍ରତିମା । ଦ୍ୱିରଦରଦନପଲଙ୍କ ବରଜି ତଳ୍ପ କଲା ଖାଲି କ୍ଷମା । ୫୩ । ବରଜି ଅମୃତସଦୃଶ ଅଶନ ରସିଲା ମୃଦ ଭକ୍ଷଣେ । ଶିଥିଳାଇ ବାସ ପିନ୍ଧିବା ଅଳସ ଖେଳିଲା ଲୋଳଈକ୍ଷଣେ । ୫୪ । ପ୍ରତିଦିନ ଗୋରୀ ବ୍ରତଦିନ ପରି ହେଲା ସୁରତବିରତ । ତାମସ ସୁଷମାନିଧିର ଏପରି ଦଶ ମାସ ସମାପତ । ୫୫ । ରସବସମନା ସିନ୍ଧୁକୁ ମନ୍ଦର ପ୍ରସବ ସମୟ ହେଲା । ପାରିଜାତ ତରୁପରି ଜାତରୂପଦେହା ସୁତ ଜାତ କଲା । ୫୬ । ନାକ୍ଷତ୍ରିକଗୋଷ୍ଠୀ ସିଦ୍ଧ ହେଲା କୋଷ୍ଠୀ ଚକ୍ରବର୍ତ୍ତୀଯୋଗଯୁତ । କରାଇଲେ ରାଜା ମହୋତ୍ସବ ବାଦ୍ୟଧ୍ୱନି ତୁନ୍ଦିଳ ଜଗତ । ୫୭ । ସୁବର୍ଣ୍ଣ ବରଷାପୂର୍ଣ୍ଣ ହେଲା ରସା ଧନଦ ହେଲେ ଯାଚକ । କି ନିଶା କି ଦିନ ନ ଜାଣିଲେ ଜନ ତିନି ସାତ ଦିନଯାକ । ୫୮ । ଜାତ କଲେ ନାହିଁ ସୁବୀର ବୋଲିବା ଜାତକ ନାମ ପ୍ରଥମେ । ସିଦ୍ଧଗିର ସ୍ମରି ସମସ୍ତେ ଡାକିଲେ ଅନଙ୍ଗ ସୁନ୍ଦର ନାମେ । ୫୯ । ଦିନୁ ଦିନୁ ଶଶୀପରି ଅଙ୍କମସୀ ବିନା ବଢ଼େ ଭୂପସୁତ । ବ୍ରଜେ ବନମାଳୀ ପରି ବାଲ୍ୟ କେଳି ରଚଇ ଅପରିମିତ । ୬୦ । ଶ୍ରୁତିବେଧ ହେଲା ଯହୁଁ ବିଦ୍ୟାଶାଳା ପରବେଶ କରାଇଲେ । ଗୁରୁପ୍ରଭାବଜ ମନ୍ତ୍ରୀସୁତ ରାଜବଲ୍ଲଭାଖ୍ୟ ସଖା ତୁଲେ । ୬୧ । ଅମରକେଶରୀ ଫଣୀଶ୍ୱର ପରିପାଳିତ କାବ୍ୟପଟଳୀ । ନାଟକ ଅଳଙ୍କାର ତର୍କ ବେଦାନ୍ତ ସ୍ମୃତି ଇତିହାସ ପାଳୀ । ୬୨ । ଅଷ୍ଟାଦଶମିତ ପୁରାଣ ଚରିତ ଗଣକ ଚିକିତ୍ସାମତ । ରତ୍ନାଶ୍ୱବାରଣ ଶସ୍ତ୍ରପରୀକ୍ଷଣ ଅନଳ୍ପ ଶିଳ୍ପ ସଙ୍ଗୀତ । ୬୩ । ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ହଠ ଚମଟ ଶାବର । ସବୁଦେଶ

---

ଦିଶନ୍ତି, ଗର୍ଭଧାରଣ କରି ସେ ରାଣୀ ସେହିପରି ଦିଶିଲେ । ୫୧ । ପ୍ରାବୃଟ—ବର୍ଷାକାଳ । ୫୨ । ଜୃମ୍ଭାବିଜୃମ୍ଭଣ—ହାଇ ମାରିବା । ୫୩ । ବାରବାନିସୁନା ଦେହା—ଉଜ୍ଜ୍ୱଳ ସ୍ୱର୍ଣ୍ଣବର୍ଣ୍ଣାଙ୍ଗୀ, ବାରଣଦନ୍ତପ୍ରତିମା—ହାତୀଦାନ୍ତ ପିତୁଳା ପରି ଧଳା, ଦ୍ୱିରଦରଦନପଲଙ୍କ— ହାତୀଦାନ୍ତ ପଲଙ୍କ, ତଳ୍ପ—ଶଯ୍ୟା, କ୍ଷମା—ପୃଥିବୀ, ମାଟି । ୫୪ । ଅଶନ— ଭୋଜନ, ମୃଦ—ମାଟି, ଲୋଳଈକ୍ଷଣେ—ଚଞ୍ଚଳ ନେତ୍ରରେ । ୫୫ । ଜାତରୂପଦେହା—ସ୍ୱର୍ଣ୍ଣାଙ୍ଗୀ । ୫୬ । ନାକ୍ଷତ୍ରିକଗୋଷ୍ଠୀ—ଗଣକ ବା ଜ୍ୟୋତିଷଗଣ (ଦ୍ୱାରା) । ତୁନ୍ଦିଳ—ପରିପୂର୍ଣ୍ଣ । ୫୭ । ଧନଦ—କୁବେର, ଧନୀ; ଯାଚକ—ମାଗିବା ଲୋକ, ରସା—ପୃଥିବୀ, ତିନି ସାତ ଦିନ—୨୧ ଦିନ । ୫୮ । ଅଙ୍କମସୀ— କଳଙ୍କକାଳିମା । ୬୦ । ଶ୍ରୁତିବେଧ—କାନଫୋଡ଼ା, ଗୁରୁପ୍ରଭାବଜ—ବୃହସ୍ପତିଙ୍କ ଔରସଜାତ । ୬୨ । ଅମରକେଶରୀ—(କୋଷକାର) ଅମର ସିଂହ, ଫଣୀଶ୍ୱର—ପ୍ରସିଦ୍ଧ ଭାଷ୍ୟକାର, ପରିପାଳିତ— ସଙ୍କଳିତ, ପ୍ରଣୀତ । କାବ୍ୟପଟଳୀ—କାବ୍ୟସମୂହ, ପାଳି—ରାଶି, ସମୂହ । ୬୩ । ଅଷ୍ଟାଦଶମିତ— ୧୮ ସଂଖ୍ୟକ, ରତ୍ନ, ଅଶ୍ୱ, ବାରଣ (ହାତୀ), ଶସ୍ତ୍ର (ଖଡ୍ଗାଦି) ପରୀକ୍ଷା କରିବା ଶାସ୍ତ୍ର । ଅନଳ୍ପ—ପ୍ରଚୁର । ୬୪ ।

ଗିର କାଳୀତାଳଦଳ ଲେଖା ବିବିଧ ଅକ୍ଷର । ୬୪ । ଶତଅବଧାନ ସରସ କବନ ମହାରାଜ ନୀତିଯାକ । ଅସାଧତର ତୁରଙ୍ଗମଦମନ ଧୃତିବିନୟବିବେକ । ୬୫ । ନୋହିଲା ସେ ଦୁହିଙ୍କର ସେହି ବିଦ୍ୟା ଯହିଁ ସେ ନ କଲେ ଇଚ୍ଛା । ଲୋଡ଼ିଲେ ମିଳିଲା ନାହିଁ କି ଭାରତୀଭଣ୍ଡାର ହେବାରୁ ତୁଚ୍ଛା । ୬୬ । ତନୁମାତ୍ର ଭିନ୍ନ ଜୀବନେ ଜୀବନ ମନରେ ମନ ମିଶିଲା । ଏପରି ସମୟ ହରୁଁ ସଖାଦ୍ୱୟ କିଶୋରତା ପ୍ରକାଶିଲା । ୬୭ । ଅତି ସୁକୁମାର ଏ ଦୁଇ କୁମାର ବୋଲି ନ ଆଚରି ଦୟା । ଦିନୁଦିନୁ ମନ ବନରେ ମଦନମୃଗୟୁ କଲା ମୃଗୟା । ୬୮ । ଲଜ୍ଜାଗଉରବ ଘେନି ଏକ ଭାବ ଆରକେ ନୁହଇ ଜଣା । କରୁଥାନ୍ତି ନିତି ସରସ ଭାରତୀ ସୁଧାରେ ମନ ମାଜଣା । ୬୯ । ଲେଖାରେ ତୁରୀୟ ସୁଚରିତମୟ ଏକସ୍ତରୀ ମୟ ପଦ । ଶେଷ ଶ୍ଳେଷଯୁତ ହେଲା ସମାପତ କୁମାରୋତ୍ସବ ଏ ଛାନ୍ଦ । ୭୦ । ଗୋବରଧନ ବିହାରୀ ହରି ଚାରିପାଦ ବାରିରୁହ । ରାମଚନ୍ଦ୍ର ଦେବ ମନମିଳିନ୍ଦକୁ ଦେବ ମରନ୍ଦପ୍ରବାହ । ୭୧ ।



---

ଶାବର—ଗୁଣିବିଦ୍ୟା । କାଳୀତାଳଦଳଲେଖା—କାଗଜଲେଖା ଓ ତାଳପତ୍ରଲେଖା । ୬୫ । ଶତଅବଧାନ—ଏକ ସମୟରେ ଶହେ ଲୋକଙ୍କ ପ୍ରଶ୍ନର ଉତ୍ତର ଦେବା ରୂପ ବିଦ୍ୟା, କବନ—କବିତା, ଧୀର, ବିନୟୀ, ବିବେକୀ ହେବା ଶିକ୍ଷା । ୬୮ । ମଦନମୃଗୟୁ— କାମରୂପ ଶିକାରୀ । ୬୯ । ଲଜ୍ଜାର ଆଧିକ୍ୟରୁ ନିଜ ନିଜ ହୃଦୟର କାମବିକାର କେହି କାହାକୁ ଜଣାଉ ନ ଥାନ୍ତି; ମାତ୍ର ରସଗର୍ଭକ କଥାମୃତ ଦ୍ୱାରା ପରସ୍ପର ମନୋମୋହନ କରୁଥାନ୍ତି । ୭୦ । ତୁରୀୟ—ଚତୁର୍ଥ । ୭୧ । ଗୋବର୍ଦ୍ଧନ ପର୍ବତରେ ବିହାରକାରୀ ହରିଙ୍କର ଏବଂ ଗୋବର୍ଦ୍ଧନ (ବୃଷଭ)-ବିହାରୀ ହରଙ୍କ ଚାରି ପାଦ ବାରିରୁହ (ପଦ୍ମ) ରାମଚନ୍ଦ୍ର ଦେବ ମନରୂପ ମିଳିନ୍ଦକୁ (ଭ୍ରମରକୁ) ମରନ୍ଦ (ମକରନ୍ଦ) ପ୍ରବାହ ଦେବେ ।



# ପଞ୍ଚମ ଛାନ୍ଦ

## ରାଗ—କୌଶିକ

## ବାଳାବତାର

ଅଥ ମନମଥରସକଥାପଥ ପଥିକେ ଶୁଣ ହୃଷ୍ଟଚିତ୍ତେ । ମହାଗଜଘୋଷ ପୂରୁବକୁ କ୍ରୋଶ ଶତ ପଞ୍ଚକ ପରିମିତେ । ଅଛି ଅଶେଷ । ବିଭବନାମେ ରାଜ୍ୟରାଜ । ମଣିମଞ୍ଜୁଳା ରାଜଧାନୀ ସେ ଦେଶ ତାରାଳି ମଧ୍ୟ ଦ୍ୱିଜରାଜ । ୧ । ଆହା ଜଗତୀରେ ତାହା ଯଶ ଲବ କାହା ଜନ୍ମକେ କୁହାଭଳି । ଯାହା ଜଳିଜଳେ ରାହାଜଗୁଆଳେ ଜାହାଜ ଲକ୍ଷଲକ୍ଷ ଚାଳି । ହେଉ ଅଛନ୍ତି । ସାହା ଜଗତଜନଙ୍କର । ବାହାଜନ୍ୟ ଯଶେ ମିଶିଛି ବିଶେଷେ ମହାଜନପଣ ତାଙ୍କର । ୨ । ଦୁର୍ଗଚାରି ବାହି ଉପସର୍ଗରୁ ଯହିଁ ଅଶଙ୍କ ହୋଇ ଅନୁମାନେ । ଉଦୟାସ୍ତ ଉମାଗୁରୁ ବିନ୍ଧ୍ୟନାମାଚଳ ଚିହ୍ନନ୍ତି ନାହିଁ ଜନେ । ପ୍ରତି ପ୍ରଭାତେ । ପ୍ରାଚୀର ପ୍ରାଚୀର ଶିଖରେ । ଚିରକାଳୁ ଥିବା ଅଭିନବ ଜବାସ୍ତବକ ଭ୍ରମ ହୋଏ ସୂରେ । ୩ । ପଙ୍କେରୁହ ବଂଶଭବ ଅବତଂସ ହେବାରୁ ସେ ଧରାଧିନାଥ । ତପନୀୟମୟ ବୃତ୍ତିସମୁଦୟ ହେବାର ହୋଇଲା ଯଥାର୍ଥ । ବସୁନ୍ଧରାରୁ । ସ୍ୱର୍ଗକୁ ମାର୍ଗ ବୋଲି ଏତେ । ସହର ବାହାର ମଣ୍ଡା ମଣିଝଣ୍ଡା ଦଣ୍ଡରୁ ହେଉଛି ପରତେ । ୪ । ଜନ୍ମୁ ତହିଁ ରହି ଯଉବନ ବହି ଲଭି ତହିଁରେ ପରିଣତି । ସେହି ମହାରାଜଧାନୀ ସୀମା ଆଜିଯାଏ ଜନେ କଳି ନାହାନ୍ତି । ଆନ ଦେଶରୁ । ଆସିବା ଜନ କି କଳିବ । ଧରାରଜ

---

### ପଞ୍ଚମ ଛାନ୍ଦ

୧ । ମନ୍ମଥରସ—ଶୃଙ୍ଗାରରସ, ସେ କଥାପଥରେ ଯେଉଁମାନେ ପଥିକ । ରାଜ୍ୟରାଜ—ରାଜ୍ୟଶ୍ରେଷ୍ଠ, ତାରାଳି— ନକ୍ଷତ୍ରସମୂହ, ଦ୍ୱିଜରାଜ—ଚନ୍ଦ୍ର । ୨ । ଯେଉଁ ନଗରୀର ଯଶର ଲବମାତ୍ର ସଂସାରରେ କୌଣସି ଲୋକ ଜୀବନରେ କହିପାରିବ ନାହିଁ । ଜଳିଜଳେ —ପରିଖାର ପାଣିରେ, ରାହାଜଗୁଆଳେ—ବାଟ ଜଗିଥିବା ଲୋକମାନେ, ବାହାଜନ୍ୟ ଯଶେ— କ୍ଷତ୍ରିୟ ଯଶ ସଙ୍ଗରେ ସେହି ମହାଜନଙ୍କ ପରୋପକାର ଯଶ ମିଶିଛି । ୩ । ଉଦୟାସ୍ତ— ଉଦୟ ଓ ଅସ୍ତ ପର୍ବତ, ଉମାଗୁରୁ—ହିମାଳୟ ପର୍ବତ, ପ୍ରାଚୀର—ପୂର୍ବଦିଗର, ପ୍ରାଚୀର— ପାଚିରି, ଜବାସ୍ତବକ—ମନ୍ଦାରଫୁଲର ପେଣ୍ଡା, ସୂରେ—ସୂର୍ଯ୍ୟଙ୍କଠାରେ । ୪ । ପଙ୍କେରୁହବଂଶ ... ପଦ୍ମବଂଶଜାତ ରାଜାମାନଙ୍କ ଭୂଷଣସ୍ୱରୂପ, ତପନୀୟମୟବୃତ୍ତି—କେବଳ ସୁନାର କାରବାର

ଗଣି ପାରିବ କେ ପୁଣି ମଣି ସାନୁସୁନା ତୁଳିବ । ୫ । ସେ କି ଦାମୋଦର ଦେବଙ୍କ ଉଦର ତହିଁ ଯା ନାହିଁ କାହିଁ ନାହିଁ । ଦେବଙ୍କ ଅଭ୍ୟାସ ହେଲା ଅନିମିଷ ଯାହା ସମ୍ପତ୍ତି ଚାହିଁ ଚାହିଁ । ଯହିଁ ଆପଣେ । ବସେ ପଣପଣ କୁଞ୍ଜର । ଗଣନା କେ ପୁଣି କରିବ ସାଜେଣି ଉଷ୍ଟ୍ର ତୁରଙ୍ଗମ ପୁଞ୍ଜର । ୬ । ପରିବାର ହାଟ ବାଟକୁ ନିଅନ୍ତି ପରିବାରେ ଯହିଁ ହାଟକ । ଯହିଁ ଜନ ପଙ୍କେରୁହଚୟ ଅଙ୍କେ ଏକା ଜାଣନ୍ତି ବରାଟକ । ଯହିଁ ଦୁଆରେ । ଶାକ ଗୋ ବୋଲି ଡ଼ାକ ଶୁଣି । ସୁରୂପାଳୀ ନେଇ ସ୍ୱରୂପେ କୁଢ଼ାଇ ଦିଅନ୍ତି ଦିବ୍ୟ ମୋତି ମଣି । ୭ । ହେବା କ୍ଷଣେ ଜଣା ବଜାର ବିଛଣା ଉଠିଯିବା କାଳ ନିକଟ । ପୁଳିନ୍ଦସୁନ୍ଦରୀ ପଡ଼ିବା କସ୍ତୂରୀ ପଗଡ଼ କରି କୂଟକୂଟ । ହେଲେ ରଖନ୍ତି । ମିଶାଇ ଅବକର ତୁଲେ । ତାହାର ବସତି ଦୁଆରେ ଦିଅନ୍ତି ଗୋମୟ ଆଣ ଗୋ ଯେ ବୋଲେ । ୮ । ସୁନାଗରୀଆରେ ଜୀବନ ଦେ ବୋଲି ଦାସୀକି ବୋଲୁଁ ଗୃହପତି । ଯହିଁ କୁଟୁମ୍ବିନୀ ଆନ ଭାବ ଘେନି ହୁଅନ୍ତେ ଦୃଢ଼ ମାନବତୀ । ଜାଣି ଭୟରେ । ଅବରୋଧକୁ ଧବ ଯାଏ । ବସାଇ କୋଳରେ ସୁରୂପା ଡ଼ାଳରେ ଦୃଷ୍ଟିକି ବୋଲି ସମଜାଏ । ୯ । ବରଣମଉଳି ବିଷ୍ଣୁପଦୁଁ ବଳି ବ୍ୟାପିଥିବାରୁ ଚାରିପାଖେ । ବହୁଳ ପକ୍ଷରେ ବହଳ ଋକ୍ଷଙ୍କ ପଟଳୀ ଚୁମ୍ବିବାରୁ ଶିଖେ । ଯେଉଁ ନଗରୀ । ଜନ ବିଚାରେ ତାହା ଦେଖି । ଏ କି ଚମତ୍କାର ଅକାଳେ ଚତୁର ଦିଗ ଅଚଳେ ଦବଶିଖୀ । ୧୦ । କେଉଁ ପୁରେ କ୍ଷିତି ମାର୍ଜନା କରନ୍ତି ସୁନାଖଡ଼ିକା ଝାଡୁଧରା । କସ୍ତୂରୀ ରୋଚନା ଗନ୍ଧସାର ସିନା କୁଙ୍କୁମ ତୁଲେ ପଡ଼େ ଛରା । ଚିତ୍ର କମ୍ବଳ । ବିଛଣା ଭ୍ରମେ ପରିବାରେ । କରରୁହ ଛିଡ଼ା ପୀଡ଼ାକୁ ଲଭନ୍ତି ଖାଲି ଧରାକୁ ଝିଙ୍କିବାରେ । ୧୧ । ସଲାବଣ୍ୟରସ ପୂରିଛି ବିଶେଷ ନାହିଁ ତା ବୀଚିଜାତଦର । ରତନ ମକରକୁଣ୍ଡଳୀ ପ୍ରକର ସନ୍ତାନଜନ୍ମ ସୁଖାକର । ପ୍ରତି ପ୍ରାଙ୍ଗଣ ।

---

ଯାହାଙ୍କର (ରାଜ ପକ୍ଷରେ); ସୂର୍ଯ୍ୟସମ୍ବନ୍ଧୀୟ (ପଦ୍ମ ପକ୍ଷରେ); ମଣିବିଭୂଷିତ ପତାକାଦଣ୍ଡ । ୫ । ମଣିସାନୁସୁନା—ମଣିମୟ ପର୍ବତ ଶୃଙ୍ଗରେ ଥିବା ସୁନା । ୬ । ଆପଣେ—ବଜାରରେ, କୁଞ୍ଜର—ହାତୀ, ସାଜେଣି—ସଜ୍ଜିତ, ତୁରଙ୍ଗମପୁଞ୍ଜ— ଅଶ୍ୱସମୂହ । ୭ । ହାଟକ—ସୁନା, ବରାଟକ—କଉଡ଼ି ଓ ପଦ୍ମବୀଜକୋଷ; ସୁରୂପାଳୀ—ସୁନ୍ଦରୀ ସ୍ତ୍ରୀମାନେ, ସ୍ୱରୂପେ—ପ୍ରତ୍ୟକ୍ଷରେ । ୮ । ପୁଳିନ୍ଦସୁନ୍ଦରୀ—ନୀଚଜାତୀୟା ସୁନ୍ଦରୀମାନେ, କସ୍ତୂରୀପଗଡ଼—କସ୍ତୁରୀର ଖଣ୍ଡ ବା କଣା; କୂଟ—କୁଢ଼, ଅବକରତୁଲ—ଅଳିଆ ସାଙ୍ଗରେ । ୯ । ସୁନା ଗରୀଆରେ—ସୁନାରେ ତିଆରି ଗରାରେ, (ଅନ୍ୟ ପକ୍ଷରେ)—ହେ ସୁରସିକା ଆ, ଜୀବନ—ପାଣି ଓ ପ୍ରାଣ, କୁଟୁମ୍ବିନୀ—ନିଜ ସ୍ତ୍ରୀ, ଅବରୋଧ—ଅନ୍ତଃପୁର, ଧବ—ସ୍ୱାମୀ । ୧୦ । ବରଣମଉଳି—ପ୍ରାଚୀରର ଅଗ୍ରଭାଗ, ବିଷ୍ଣୁପଦ —ଆକାଶ, ବହୁଳ ପକ୍ଷରେ—କୃଷ୍ଣପକ୍ଷରେ, ବହଳଋକ୍ଷକ ପଟଳୀ—ବହୁ ତାରକାସମୂହ । ଦବଶିଖୀ—ଦାବାନଳ, ବନାଗ୍ନି । ୧୧ । କସ୍ତୁରୀ, ଗୋରୋଚନା, ଚନ୍ଦନ, କୁଙ୍କୁମ ପ୍ରଭୃତି ବିଭିନ୍ନ ରଙ୍ଗର ଛରା (ଛିଟିକା) ପଡ଼ିବାରୁ ପରିବାର ଲୋକମାନେ ସେ ସବୁକୁ ଚିତ୍ରକମ୍ବଳ ମନେ କରି ବୃଥା

ମଣ୍ଡନେ କୀଲାଲ ଦିଶଇ । ଚନ୍ଦ୍ର ତୁରଙ୍ଗମ ଗଜ ଲକ୍ଷ୍ମୀଜନ୍ମସ୍ଥଳୀ ସେ ସିନ୍ଧୁକୁ ହସଇ । ୧୨ । ନିଜ ଦାନବାରି ଗଜଦାନବାରି ବହେ ଦାନବାରି ଗୃହକୁ । ଅର୍ଭକେ ତାହାର ଗର୍ଭକୁ ଚଳାଇ ତରୀମଣ୍ଡପ ସମୂହକୁ । ଖେଳି ମଣନ୍ତି । ମାଧବ ପ୍ରତି ମାସଯାକ । ମାଧବପ୍ରତିମା ଚାପକେଳିରମା ଭାବି ହେବାରୁ ସମୁତ୍ସୁକ । ୧୩ । ପ୍ରତିମାସେ ରାକାପ୍ରଦୋଷେ ରସିକାଜନଙ୍କ ଭ୍ରମ କି କହିବା । କେ ଥାଏ ତଳରେ କେ ଉର୍ଦ୍ଧ୍ୱସ୍ଥଳରେ ଅଟ୍ଟାଳିକାରେ ଥାଏ ଅବା । ଯେଟି ଉପରେ । ଥାଏ ସେ ଚନ୍ଦ୍ରକୁ ବନ୍ଦାଏ । ତଳେ ଥିବା ବାମା ଉର୍ଦ୍ଧ୍ୱଗତା ରାମାଲପନକୁ ଅର୍ଘ୍ୟ ବନ୍ଦାଏ । ୧୪ । ଯହିଁ ଗୃହଚୂଳ ହିରଣ୍ୟମଞ୍ଜୁଳ କଳଶୀ ଉପର ଦଣ୍ଡକୁ । ଚୁମ୍ବିବା ଦଣ୍ଡକ କାଳେ ଚାହିଁ ଲୋକ କଳା ବଳାହକଖଣ୍ଡକୁ । ମନେ ବିଚାରେ । ବଡ଼ଭୀ ନୀଳଚେଳବଲ୍ଲୀ । ଯେଉଁ ବର୍ଣ୍ଣ ଘନ ଚୁମ୍ବେ ତାକୁ ଜନ ଘେନେ ସେ ବର୍ଣ୍ଣବାନା ବୋଲି । ୧୫ । ଯେବେ ସର୍ବଯୋଟ ପ୍ରକାରେ ପ୍ରାବୃଟକାଳୀନ ଘନ ବ୍ୟୋମେ ଘୋଟେ । ଦେଖି ବାତଲୋଳ ସୁପୀତ ଦୁକୂଳ ଲତା ବଡ଼ଭୀ ଗିରିକୂଟେ । କେଉଁ ପ୍ରାସାଦେ । ଚାହିଁ ଅବଦାତପତାକା । ଜନ ଘେନେ ପୀତ କେତୁକୁ ତଡ଼ିତ ଧବଳକେତୁକୁ ବଳାକା । ୧୬ । ନିସର୍ଗ ଚପଳା ବଲ୍ଲରୀକଖେଳା ଆକାଶ ମଧ୍ୟରେ ଅନାଇ । କେ ବୋଲେ ହେ ମିତ ବଡ଼ଭୀର ପୀତ ପତାକା ଦେଖିଲ କି ନାହିଁ । ରବି ମୟୂଖ । ଛନ୍ନ ହେବାରୁ ଘନେ ସିନା । ଜଣାଗଲା ଏତେ ଦିନକେ ନିକେତମଉଳିଶିଖେ ପୀତ ବାନା । ୧୭ । ଭୁଜଙ୍ଗମ ନର ଦୁଇ ପୁରସାର ବିଜୟେ ଆଦର ନ କରି । କେଉଁ ମଣିମୟ ପ୍ରାସାଦ ନିଳୟ ଅସିତ ଅଂଶୁକ ମଞ୍ଜରୀ । ଜମିଯାଏ ଯା । ଆକାଶ ଉର୍ଦ୍ଧ୍ୱେ ଖେଳି ଖେଳି । ହୁଅଇ ପ୍ରତୀତି ଜିଣି ସ୍ୱର୍ଗଦ୍ୟୁତି ତା ମୁଖେ ଲଗାଏ

---

ଝିଙ୍କିବାକୁ ଚେଷ୍ଟା କରି ନଖ ଛିଡ଼ିବାରୁ କଷ୍ଟ ପାଆନ୍ତି । ୧୨ । ସଲାବଣ୍ୟରସ—ଲାବଣ୍ୟ-ପୂର୍ଣ୍ଣ ଶୃଙ୍ଗାର ରସ ଓ ସୁନ୍ଦର ଜଳ, ବୀଚିଜାତଦର—ଲହରୀ ହେତୁରୁ ଭୟ, ସନ୍ତାନ—ପୁତ୍ରାଦି, କଳ୍ପବୃକ୍ଷ; କୀଲାଲ—ଜଳ ଓ କିପରି ରକ୍ତବର୍ଣ୍ଣ; ପ୍ରତି ଅଗଣାରେ ଥିବା ସୁନ୍ଦର ଜଳାଶୟମାନଙ୍କୁ ସମୁଦ୍ର ସଙ୍ଗେ ତୁଳନା କରାଯାଇଅଛି । ୧୩ । ନିଜ ଦାନବାରି—ନିଜେ ଦାନ କରିବା ବେଳେ ଦେଉଥିବା ଜଳ; ଗଜଦାନବାରି—ହସ୍ତୀମାନଙ୍କର ମଦଜଳ, ଦାନବାରିଗୃହକୁ—ସମୁଦ୍ରକୁ, ଅର୍ଭକେ— ପିଲାମାନେ, ତରୀମଣ୍ଡପ—ଖେଳିବା ପାଇଁ କରିଥିବା ମଣ୍ଡପାକୃତି ନୌକା; ମାଧବ— ବୈଶାଖମାସ, ବୈଶାଖରେ ମାଧବ ପ୍ରତିମା (ବିଷ୍ଣୁପ୍ରତିମା)ଙ୍କର ଚାପକ୍ରୀଡ଼ାର ରମା (ସୌନ୍ଦର୍ଯ୍ୟ) ଭାବି ସମୁତ୍ସୁକ (ଆନନ୍ଦିତ) ହୁଅନ୍ତି । ୧୪ । ରାକାପ୍ରଦୋଷ—ପୂର୍ଣ୍ଣିମାର ସନ୍ଧ୍ୟା, ରାମାଲପନ—ସ୍ତ୍ରୀର ମୁଖ (ଚନ୍ଦ୍ର) । ୧୫ । କଳାବଳାହକ—କଳାମେଘ, ବଡ଼ଭୀ— ଚନ୍ଦ୍ରଶାଳା, ନୀଳଚେଳବଲ୍ଲୀ—ନୀଳବର୍ଣ୍ଣର ବସ୍ତ୍ରଖଣ୍ଡ । ୧୬ । ସର୍ବଯୋଟ ପ୍ରକାରେ— ଚାରିଆଡୁ ଏକାଠି ମିଳି, ପ୍ରାବୃଟକାଳୀନ —ବର୍ଷାକାଳରେ, ବାତଲୋଳ—ପବନରେ ଚଞ୍ଚଳ, ସୁପୀତଦୁକୂଳ—ହଳଦିଆ ପାଟବସ୍ତ୍ରଖଣ୍ଡ, ବଡ଼ଭୀଗିରିକୂଟେ—ଚନ୍ଦ୍ରଶାଳାରୂପ ପର୍ବତ ଶିଖରରେ, ପ୍ରାସାଦେ—କୋଠାରେ, ଅବଦାତ— ଧଳା, ପୀତକେତୁ—ହଳଦିଆ ପତାକା, ବଳାକା —ବକପଂକ୍ତି । ୧୭ ।

କି କାଳୀ । ୧୮ । ଋକ୍ଷ ପ୍ରତିବିମ୍ବ ଡମ୍ବରାବଲମ୍ବ ନୀଳାଶ ଜଗତୀରେ ନିଶି । ଲଉଲୀ ବୟସୀ ଚାରି ପାଞ୍ଚ ମିଶି କୁସୁମ ଗୁଚ୍ଛୁ ଗୁଚ୍ଛୁ ରସି । ଚୂତ କୁସୁମ । ବୋଲି କେ ପ୍ରତିବିମ୍ବ ଧରେ । ସମୀରଣ ଉଡ଼ା ଫୁଲ ଭ୍ରମେ ଛିଡ଼ା ହୋଇ କେ ତାହାକୁ ଓଟାରେ । ୧୯ । ଯହିଁ କେଉଁ ରସଲମ୍ପଟ ପୁରୁଷ ଗବାକ୍ଷ ପାଶେ ବସିଥିଲା । ଅବିଦୂର ଶଶିବିମ୍ବକୁ ପ୍ରେୟସୀବଦନ ଭ୍ରମେ ଚୁମ୍ବି ଦେଲା । ଉଣା ହେବାରୁ । ମାଧୁର୍ଯ୍ୟ ବୋଇଲା ଯା ଛି ଛି । ସେହି ଦିନୁ ଲାଜ ଭଜି ଦ୍ୱିଜରାଜ କାଳିମା ଲଭିଅଛି କିଛି । ୨୦ । ରଞ୍ଜିବାକୁ ନେତ୍ରଖଞ୍ଜି କାଂସ୍ୟପାତ୍ର ଦୀପଶିଖେ କେ ଗଲା ବୁଲି । ତହିଁ ପୁଣି ଆସି ପୂରେ ଦେଖି ଶଶୀ ମସି ପଡ଼ିଲା ପାତ୍ରେ ବୋଲି । ଭ୍ରମେ ଅଙ୍ଗୁଳି । ଅଗ୍ର ତା କଳଙ୍କେ ଘଷିଲା । କହୁଁ କହୁଁ ଶଶୀଜାଳମାର୍ଗେ ଖସି ଗଲା ଜାଣି ମନେ ହସିଲା । ୨୧ । ଯହିଁ ପ୍ରାଭାତିକ ବାଜା ବନ୍ଦୀତାକ ହୟହ୍ରେଷା ଗଜବୃଂହିତ । କରଟରଟନ ତାମ୍ରଚୂଡ଼ସ୍ୱନ ନୋହେ ପ୍ରାସାଦ ଉର୍ଦ୍ଧ୍ୱଗତ । ଶୋଣ ରତନ । କରେ ସୂରସୁତ ସୁଷମା । ହେବାରୁ ଆଚ୍ଛନ୍ନ ନ ଜାଣନ୍ତି ଜନ ସମାପ୍ତ ହେବାର ତ୍ରିଯାମା । ୨୨ । ମରକତମୟ ସବୁରି ନିଳୟ ପ୍ରାଙ୍ଗଣ ତଳ ଉଲ୍ଲସଇ । କିଛି କିଛି ନୀଳୀ ମିଶିବାର କେଳିସରସୀ ପରି ଆଭାସଇ । ଯେବେ ନ ଥାନ୍ତା । ହଂସ ପଙ୍କଜ ଦ୍ୱୀପଦଣ୍ଡୀ । ସ୍ନାନ ଅବସରେ ସେ ନଗରେ ନରେ ଦୁହିଙ୍କି ନ ପାରନ୍ତେ ଊଣ୍ଡି । ୨୩ । ଯେଉଁ ପୁର ଅଟ୍ଟକୁଟ୍ଟିମନିକଟ ବୃନ୍ଦାରକଙ୍କ ମନ୍ଦାକିନୀ । ତହୁଁ ଆସି ମନ୍ଦବାତ ଅରବିନ୍ଦ ମରନ୍ଦବିନ୍ଦୁବୃନ୍ଦ ଘେନି । ଜଗି ବସନ୍ତ । ନିଦାଘ ଏ ଦୁଇ କାଳକୁ । ଜଳାକବାଟୀଧାଟୀ ପାଖେ ରଚଇ ଜଳଯନ୍ତ୍ର କୁତୂହଳକୁ । ୨୪ । ଯହିଁ କଳାବତୀକୁଳ କଳଗୀତି ଶିଖିବାକୁ ଛପି ନ ଟଳି । ରହିବାରୁ ଅଟ୍ଟଗୃହାଚଳକୂଟ ଘେରି ସୁରଙ୍ଗନା ପଟଳୀ । ଦେବେ ଜାଣନ୍ତି । ନାହିଁ କେ ସତ କେ କୃତ୍ରିମ । ଭେଦ ଜାଣିବାକୁ ମେରୁଠାରୁ ଯହିଁ ଚୂଳେ କଳସମୟ କମ । ୨୫ । ପ୍ରତି ଗୃହବାଟୀ ଉପବନିକାଟିମାନଙ୍କୁ

---

ନିସର୍ଗ—ପ୍ରାକୃତିକ ବିଦ୍ୟୁତ୍‌ଲତାରକ୍ରୀଡ଼ା, ଛନ୍ନ—ଆଚ୍ଛନ୍ନ, ଆବୃତ; ନିକେତମୌଳିଶିଖେ—ଗୃହର ଅଗ୍ରଭାଗରେ । ୧୮ । ଭୁଜଙ୍ଗମ ... ପୁର— ପାତାଳ ଓ ମର୍ତ୍ତ୍ୟ ଦୁଇ ଲୋକର ସାରାଂଶକୁ ଜୟ କରିବାକୁ ଇଚ୍ଛା ନ କରି; ଅସିତଅଂଶୁକ ମଞ୍ଜରୀ—କଳାରଙ୍ଗର ବସ୍ତ୍ରଖଣ୍ଡ, ସ୍ୱର୍ଗଦ୍ୟୁତି—ସ୍ୱର୍ଗଶୋଭା । ୧୯ । ଋକ୍ଷପ୍ରତିବିମ୍ବ ... ନିଶି— ନକ୍ଷତ୍ରମାନଙ୍କର ପ୍ରତିବିମ୍ବ ଶୋଭାର ଛାୟା ଇନ୍ଦ୍ରନୀଳମଣି କୋଠା ଉପରେ ପଡ଼େ; ଲଉଲୀବୟସୀ—ଅଳ୍ପବୟସ୍କା । ୨୦ । ଗବାକ୍ଷ—ଝରକା, ଅବିଦୂର—ନିକଟବର୍ତ୍ତୀ, ଦ୍ୱିଜରାଜ—ଚନ୍ଦ୍ର । ୨୧ । କଂସା ଥାଳିଆକୁ ଦୀପଶିଖା ଉପରେ ରଖିଲେ ତହିଁରେ ଚକ୍ଷୁର କଜ୍ଜଳ ଜାତ ହୁଏ, ଜାଳମାର୍ଗେ—ଝରକାବାଟେ । ୨୨ । କରଟରଟନ—କୁଆରଡ଼ି, ଶୋଣରତନ ... ରକ୍ତବର୍ଣ୍ଣ ରତ୍ନମାନଙ୍କ କିରଣରେ ସୂରସୁତ (ଅରୁଣ)ର ସୁଷମା (ଶୋଭା), ତ୍ରିଯାମା— ରାତ୍ରି । ୨୪ । ଅଟ୍ଟକୁଟ୍ଟିମ—ଉନ୍ନତ କୋଠା, ବୃନ୍ଦାରକ—ଦେବତା, ଅରବିନ୍ଦ ... ପଦ୍ମ ମକରନ୍ଦ-ବିନ୍ଦୁସମୂହ, ଧାଟୀ—ସମୂହ, ଧାଡ଼ି । ୨୫ । କଳାବତୀକୁଳ—ସ୍ତ୍ରୀ ସମୂହ, ଛପି—ଲୁଚି,

ବରନିବା କିସ । ଇନ୍ଦ୍ରଆନନ୍ଦନ ହେବାର ନନ୍ଦନବନେ ନାହିଁ ଯା ଶୋଭା ଲେଶ । ଶଶୀଉପଳ । ଆବାଳ ସବୁ ଲତା ମୂଳେ । ସୁଧାଂଶୁ ସ୍ପର୍ଶରେ ବଳକ୍ଷ ପକ୍ଷରେ ପୂରଇ ନିଜ ଦ୍ରବ ଜଳେ । ୨୬ । ମହୀ ମାରକତ ପ୍ରଣାଳୀ ଅମିତ ମହିମା ରଜତରତନ । ଝଡ଼ିଯିବା ଦଳ ଫଳ ଫୁଲଜାଳ ଯହିଁ ରକ୍ଷକବରତନ । ଏଳା ଲବଙ୍ଗ । ପ୍ରିୟଙ୍ଗୁ ଦ୍ରାକ୍ଷା ଜାତିଫଳ । କ୍ରମୁକ ଲାଙ୍ଗଳୀ କର୍ପୂର କଦଳୀ ରୁଚକ ପନସ ରସାଳ । ୨୭ । ଡାଳିମ୍ବ ଜମ୍ବୀର ଲେମ୍ବୁ ଜମ୍ବୁ ବରକୋଳି କମଳା ନାଗରଙ୍ଗ । ଏବଂବିଧ ମହୀରୁହବ୍ୟୂହେ ଯହିଁ ନାନା କୁସୁମ ଲତାସଙ୍ଗ । ଚମ୍ପା କେଶର । ପୁନ୍ନାଗ ମଲ୍ଲୀ ଛୁରିଅନା । ପନୀର ଅଶୋକ ଜାତି କୁରୁଣ୍ଟକ କଣ୍ଟକ ସେବତୀ ସୁମନା । ୨୮ । ଯୂଥିକା ନିଆଳୀ ମାଧବୀ ପାଟଳୀ ଅସିତ ଇଟଳା ପଳାସ । ସ୍ଥଳୋତ୍ପଳ ଦୁଲୁଦୁଲାଙ୍ଗ ରଙ୍ଗଣୀ କୁନ୍ଦ ଗୁଲାବ ଗୁଲ୍ଲବାସ । ବାସ ତଗର । ତରାଟ ରଙ୍ଗ କନିୟର । କରବୀର ନିତି ମଲ୍ଲିକା ସେବତୀ ବଧୂଲୀ ଅଲାର ମନ୍ଦାର । ୨୯ । ଦୟଣା ମରୁଆ ପଚାପତ୍ରୀ ଚୂଆ ଚୁନି ନାଗିଣୀ କୁରୁବେଲୀ । ତହିଁ ଅନୁଲକ୍ଷୀ ପୋଷା ପଶୁପକ୍ଷୀ କ୍ରୀଡ଼ନ୍ତି ମତଲ୍ଲୀ ମତଲ୍ଲୀ । ପୁଣି ବିରୋଧ । ନାହିଁ କାହା ତୁଲେ କାହାର । କେ ପଲ୍ଲବକଣ କେ ତମାଳ ତୃଣ କେ ଫୁଲ ମରନ୍ଦ ଆହାର । ୩୦ । ପଞ୍ଚଜାତି ମୃଗ ଗବୟ ଖଡ଼ଗ ଚମରୀ କସ୍ତୁରୀ କୁରଙ୍ଗ । ଶାଳିଆପତନୀ ମହୀଦାର ଘେନି କରୁଅଛନ୍ତି ନାନାରଙ୍ଗ । ନାନା ନିଗମ । ପଢ଼ା ଶାରୀ ଶୁକ ସହିତ । ମରାଳ ମୟୂର ରଥାଙ୍ଗ ଚକୋର ଦୁଇ କେନାଟୀ ପରଭୃତ । ୩୧ । ଶରାସ୍ୟଟଙ୍କାର ଶଙ୍କାର ନିଦାନ ଝଙ୍କାର ପଣ୍ଡିତ ରୋଲମ୍ବ । ପ୍ରସବ କଦମ୍ବ ମକରନ୍ଦଚୁମ୍ବକେଳିକି କରି ଅବଲମ୍ବ । ତହିଁ ଖେଳନ୍ତି । ଚମ୍ପକ ବିନା ମଦେ ରସି । ଅଖିଳ ବ୍ରତତୀ ଫୁଟନ୍ତି ଫଳନ୍ତି ଯେଉଁ ଆରାମେ ବାରମାସୀ । ୩୨ । ସେ ପୁରାଧିରାଜ ବୀରଧର୍ମଧ୍ୱଜ ଗୁଣଗଣମଣିମଣ୍ଡିତ । ନିର୍ଜ୍ଜିତାରିଜାତ ଅର୍ଥିପାରିଜାତ

---

ନ ଟଳି—ସ୍ଥିର ହୋଇ, ମେରୁର ଶୃଙ୍ଗାବଳୀ ସୁବର୍ଣ୍ଣମୟ ଏବଂ ଏ ନଗରର କୋଠା ଉପର ସୁବର୍ଣ୍ଣମୟ, ତେଣୁ ଭେଦ ଜାଣି ହୁଏ ନାହିଁ । କୋଠାମାନଙ୍କରେ ସୁନାର କଳସସବୁ ଥିବାରୁ ପ୍ରଭେଦ ଜଣାଯାଏ । ୨୬ । ଉପବନିକା—ବଗିଚା, ଆନନ୍ଦନ—ଆନନ୍ଦଜନକ, ପ୍ରୀତିପ୍ରଦ; ନନ୍ଦନବନ —ଇନ୍ଦ୍ରଙ୍କବଗିଚା, ଶଶୀଉପଳ—ଚନ୍ଦ୍ରକାନ୍ତମଣି (ଚନ୍ଦ୍ରକିରଣରେ ଯହିଁରୁ ପାଣି ବାହାରେ), ଆବାଳ—ଆଳବାଳ ବା ମନ୍ଦା, ବଳକ୍ଷପକ୍ଷ— ଶୁକ୍ଳପକ୍ଷ । ୨୭ । ମାରକତ ପ୍ରଣାଳୀ—ମରକତ-ମଣି ନିର୍ମିତ ପାଣିନାଳ, ରକ୍ଷକବରତନ— ଚାକରମାନଙ୍କର ବେତନ ବା ଦରମା । ଏଳା—ଅଳାଇଚ, ଜାତିଫଳ—ଜାଇଫଳ, କ୍ରମୁକ—ଗୁଆ, ଲାଙ୍ଗଳୀ—ନଡ଼ିଆ, ରୁଚକ— ଟଭା, ରସାଳ—ଆମ୍ବ । ୨୯ । ସ୍ଥଳୋତ୍ପଳ— ସ୍ଥଳପଦ୍ମ, ଦୁଲୁଦୁଲାଙ୍ଗ—ଦୋହଲୁଥିବା, ଯୂଥିକା— ଯୂଈ, ଅସିତ—କଳା, ମତଲ୍ଲୀ ମତଲ୍ଲୀ—ଉତ୍କୃଷ୍ଟ ବା ପ୍ରଶସ୍ତଜାତୀୟ (ପୋଷା ପଶୁପକ୍ଷୀମାନେ) । ୩୧ । ମହୀଦାର—ବରାହ, ନାନା ନିଗମ—ନାନା ଶାସ୍ତ୍ର । ପରଭୃତ— କୋଇଲି । ୩୨ ।

ଆଶ୍ରିତଭରଣପଣ୍ଡିତ । କେଳି କଲ୍ଲୋଳା । ତାର ପ୍ରିୟପାଟ ଅଙ୍ଗନା । ମାରତୁଲ୍ୟ ତିନି କୁମାରଜନନୀ ନନ୍ଦନା ବିନା ମ୍ଳାନମନା । ୩୩ । ପ୍ରତିଦିନ ବାମା ଗଉରୀପ୍ରତିମା ନିଷଶତ ସ୍ୱର୍ଣ୍ଣେ ଗଢ଼ାଇ । ଚେଳ ଅଳଙ୍କାର ତୁଲେ ଦ୍ୱିଜଙ୍କର ମହିଳାକୁ ଦେଇ ବଢ଼ାଇ । ବନ୍ଦି ଚରଣେ । ବୋଲେ ଏ ବିନୟ ବଚନେ । ଦ୍ୱିତୀୟ ସାବିତ୍ରୀ ସମ ଲଭ ପୁତ୍ରୀ ବୋଲ ଗୋ ଗୁରୁପତ୍ନୀମାନେ । ୩୪ । ଅଷ୍ଟମୀ ନବମୀ ଅମା ପଉର୍ଣ୍ଣମୀ ଚତୁର୍ଦ୍ଦଶୀ କୁଜବାସରେ । ଗଉରୀଙ୍କ ଓଷା ପୂଜୁଥାଏ ଯୋଷାରାଜି ଘେନି ଉପବାସରେ । ଗଙ୍ଗା ଯମୁନା । ଆଦି ପୁଣ୍ୟ ନଦୀ ସ୍ନାନକୁ । କରାଇ ବରଣ ପେଷୁଥାଏ ଗୁଣବନ୍ତ ଭୂଗୀର୍ବାଣମାନଙ୍କୁ । ୩୫ । ଏପରି ବୟସ ହେଲା ଊନବିଂଶ ପହୁଡ଼ିଥିଲା ନାଥ କୋଳେ । ସେ ବାଳାରତନ ଲଭିଲା ସ୍ୱପନ ତ୍ରିଯାମା ଅବସାନକାଳେ । ପୂର୍ଣ୍ଣ କନକ । କୁମ୍ଭ ଧରିଛି କନ୍ୟା କେହି । ବିଭୂଷିତା ବାଳୀ ଜଣେ କେ ମରାଳୀ ନିଜପୁରତେ ଅଛି ବହି । ୩୬ । ଚାହୁଁଥିଲା ବୀଣାଯନ୍ତ୍ର କେ ପ୍ରବୀଣା ଆଳାପି ଆଳାପି ରଙ୍ଗରେ । ପରବେଶ ହେଲା ପରି ଜଣାଗଲା ପୁଣି ରଜତାଦ୍ରି ଶୃଙ୍ଗରେ । ମୋଦେ ବନ୍ଦିଲା । ଅଚଳେନ୍ଦ୍ରଜେମା ଚରଣ । ଜଣାଇଲା ସୁତା ଅଭାବ ଦୁଃଖିତାଶୟ ହୋଇବା ଆଚରଣ । ୩୭ । ଶୁଣି ପୁଣି ଦେବୀ ନରେଶବାନ୍ଧବୀଠାରେ କରୁଣାଦୃଷ୍ଟି ଢାଳି । ସୁପୁଷ୍ଟଗୋସ୍ତନୀଲତିକାରୁ ଘେନି ଗୋଟିଏ ପରିପକ୍ୱ କୋଳି । ରାଣୀପାଣିରେ । ଦେଲାକ୍ଷଣେ ପୁଣି ଗିଳିଲା । ଦେବୀଙ୍କ ପୁରତେ ଥିବାର ପରତେ ହେଉଅଛି ନିଶା ଟଳିଲା । ୩୮ । ସେହିଦିନୁ ଗର୍ଭବତୀ ସେ ବିଦର୍ଭମହୀମହେନ୍ଦ୍ର ଜେମା ହେଲା । ଦିନୁ ଦିନ ତାର ଅଳସ ମନ୍ଥରଗତି ମଣ୍ଡିତ କ୍ଷମା ହେଲା । ନିତି ହଟିଲା । ଧରଣୀତଳ ଶୟନକୁ । କଞ୍ଜପରି କଲା ଖଞ୍ଜରୀଟଖେଳା-ମଞ୍ଜୁଳତର ନୟନକୁ । ୩୯ । ଅଣାଇ ବଲ୍ମୀକ ପକାଇ ଉଦକ ତା ବାସ ଆଘ୍ରାଣେ ରସଇ । ତୁମ୍ବିସୂନ ପିତା ଜାଣି ମୋଦେ ସୁତା ହେବ ବୋଲି ମନେ ହସଇ । ଖଡ଼ି ଖେଳରେ । ରହିବା ଦେଖି ଦୁଇ ଅଙ୍କ । ବିଚାରଇ ରାମା ଜାତ ହୋଇ ଜେମା ଅବଶ୍ୟ ମଣ୍ଡିବ ମୋ ଅଙ୍କ । ୪୦ । ଭଜିଲା ଗଭୀର ଆବର୍ତ୍ତ ନାଭିର ତଳସ୍ଥଳକୁ ଲାଗିବାସ । ବାସି ବନ୍ଧୁଜୀବ ସୁଷମାବିଭବ ଆସି ବହିଲା ଦନ୍ତବାସ । ରାମା ପହଣ୍ଡେ । ସଞ୍ଚରିଲେ ଦଣ୍ଡେ ଫୁଟିଲା । ଆହାର ନାହାର ଉସଙ୍ଗବିହାର ରାହାରୁ ଶରଧା ତୁଟିଲା । ୪୧ ।

---

ଶରାସ୍ୟ—ଧନୁ, ରୋଳମ୍ବ—ଭ୍ରମର, ବ୍ରତତୀ—ଲତା । ୩୩ । ନିର୍ଜିତାରିଜାତ—ପରାଜିତ ହୋଇଅଛନ୍ତି ଶତ୍ରୁସମୂହ ଯାହାଦ୍ୱାରା, ଅର୍ଥୀପାରିଜାତ—ଯାଚକଙ୍କ ପକ୍ଷରେ କଳ୍ପଦ୍ରୁମ ପରି, ନନ୍ଦନା—କନ୍ୟା । ୩୪ । ନିଷଶତସ୍ୱର୍ଣ୍ଣେ—ଏକଶତ ମୋହର ସୁନାରେ । ୩୫ । କୁଜବାସର—ମଙ୍ଗଳବାର; ଭୂଗୀର୍ବାଣ—ବ୍ରାହ୍ମଣ । ୩୭ । ଅଚଳେନ୍ଦ୍ରଜେମା— ପାର୍ବତୀ । ୩୮ । ଗୋସ୍ତନୀଲତିକା—ଦ୍ରାକ୍ଷାଲତା । ୪୦ । ବଲ୍ମୀକ—ଉଇହୁଙ୍କା ମାଟି । ତୁମ୍ବିସୂନ— ଲାଉଫୁଲ; ଗର୍ଭିଣୀ ସ୍ତ୍ରୀକୁ ଲାଉଫୁଲ ପିତା ଲାଗିଲେ ଝିଅ ଜାତ ହୁଏ । ନାଭି ... ନାହିରୁ ପାଣି ଶୁଖିଯିବା ପରେ ।

ଗ୍ରହପଞ୍ଚକର ଉଚ୍ଚସ୍ଥାନ ପରବେଶରେ ରହିଥିଲେ ମେଷେ । ଅସମ ଲାବଣ୍ୟନିଧିର ଗର୍ଭକୁ ଦଶମ ମାସ ପରବେଶେ । ଶୁଭ ଲଗ୍ନରେ । ପ୍ରକାଶି ରାମାଜନ୍ମୋତ୍ସବ । ଜରାୟୁ ବରଜି ଧରାତଳ ଭଜି କଲା କୋକିଳ କଳରବ । ୪୨ । କୁମାର କୁମାର ବୋଲି ପରିଚାରଜନେ ଭିତରେ କଲେ ଖ୍ୟାତି । ଢେମାର ଯେ ମା ରଙ୍କନିଧି ଦେଖିଲା ପରି ଦେଖିଲା ତାହା ପ୍ରୀତି । କିସ କହିବା । ସେ କି କୁହାଯାଏ ବଚନେ । ବ୍ରହ୍ମ ଅବଲୋକ ଉତ୍ସବ କି ଲୋକ ଲଭେ ସପୁଲକ ଲୋଚନେ । ୪୩ । ନାଭିଜଳ ତୁଟି ନାଡ଼ୀନାଳ କାଟି କରାଇ ଅଉଷଧିସ୍ନାନ । ଧାଇ ଗୀତ ଗାଇ ତଳପେ ଶୁଆଇ କଲେ ଅରିଷ୍ଟବିଧିମାନ । ସମୁଚ୍ଛଳିଲା । ମଙ୍ଗଳ ହୁଳହୁଳି ବାଜା । ଘେନି ରତ୍ନାଞ୍ଜଳି ନୟନଯୁଗଳି ପବିତ୍ର କଲେ ମହାରାଜା । ୪୪ । ତାହା ଜନ୍ମ ଶୁଣି ଯା ହାଟକଶ୍ରେଣୀ ବୃଷ୍ଟିରେ ପୂର୍ଣ୍ଣ କଲେ କ୍ଷମା । କବି ଭାବି କହେ ସେ କି ଶିଶୁ ନୋହେ କଳଙ୍କଦରିଦ୍ର ଚନ୍ଦ୍ରମା । ରାଣୀ ଉଦର । ଆକାଶୁଁ ହେବାରୁ ଉଦିତ । କଳଙ୍କୀ ଶଶୀକି ବରଜି ଆସି କି ତାରାଳି ହେଲା ଭୂମିଗତ । ୪୫ । ଲୁଟିଲେ ପ୍ରଜାଏ ସାତଦିନ ଯାଏ ହଜାର ସଂଖ୍ୟକ ବଜାର । ସହସ୍ରାଂଶୁଁ ଅଂଶ ନ ଲଭିଲା ଶେଷ ଲୁଟିବାରେ ହେଲେ ବେଜାର । ଲକ୍ଷ ରଜକେ । ସଜ କରିବା ଚେଲକୂଟ । ବରଜି ବିଦୂରେ ଡାକିଲେ ମୋଦରେ ଆସ ହେ ଜନେ ଲୁଟ ଲୁଟ । ୪୬ । ଏକବିଂଶ ଦିନ ସକଳ ଭୁବନ ସେ ପୁରେ ପରି ଆଭାସିଲେ । ଗଉରବ ମୂଳ ହୋଇ ନୃପକୁଳଗୁରୁ ମହୀସୁରେ ଆସିଲେ । ଯେମାମଣିକି । ରଖନ୍ତେ ମହାରାଜ କୋଳେ । ଅଷ୍ଟକଞ୍ଜମାଳାଭୂଷିତ ଚପଳା ଘନାଙ୍ଗେ ଖେଳିଲା କି ଲୋଳେ । ସେ ନରେନ୍ଦ୍ରବାଳୀ ରାଶି ଋକ୍ଷ ଭାଳି ମୀନ ରେବତୀ ମୂଳ କଲେ । ଚମ୍ପାମାଳା କୋଷ୍ଠୀ ଲେଖିଲା ବିପ୍ରୋଷ୍ଠୀ ଚନ୍ଦ୍ରକଳା ବୋଲି ବୋଇଲେ । କୋଳ ତଳପ । ଖଟଦୋଳି ପୂରାବୟବ । ଜନଙ୍କ ନୟନ ହୃଦୟ ବଚନ ସେ ଦିନୁ ହୋଇଗଲେ ଶିବ । ୪୮ । ନଗରୀ ଭୂପାଳରାଜବଧୂ ନୀଳ କମଳନୟନା ଜନମ । ପଞ୍ଚାଶତପଦ ଘଟିତ ଏ ଛାନ୍ଦ ବାଳାବତାର ଏହା ନାମ । ଏହା ଉତ୍ତର । ଛାନ୍ଦେ ପ୍ରଥମୁଁ ଯେମା ଛବି । ବାଳଲୀଳା ଧରି ହେବାର କିଶୋରୀ ସଂକ୍ଷେପେ ବରନିବ କବି । ୪୯ । କମଳାଙ୍କ ଶିଶୁ କର୍କଶପରଶୁକର - ବନ୍ଦ୍ୟ କଞ୍ଜନୟନ । କମଳାଙ୍କ ସ୍ତନ କର୍ପୂର ଚନ୍ଦନ କମଳଧିମଧଶୟନ । କମ୍ବୁ କଟକ । କମଳ ସିଂହାସନେ ସ୍ଥିତ । କର ରାମଚନ୍ଦ୍ର ଦେବ ଧରାଇନ୍ଦ୍ରଠାରେ କରୁଣା ଦୃଷ୍ଟିପାତ । ୫୦ ।

●

ଅରିଷ୍ଟ—ଅନ୍ତୁଡ଼ିଶାଳ । ୪୫ । ଯା ହାଟକେ ... ସୁବର୍ଣ୍ଣ ବୃଷ୍ଟିରେ ଯାହା ପୃଥିବୀକୁ ପୂର୍ଣ୍ଣ କଲେ; କଳଙ୍କଦରିଦ୍ର—କଳଙ୍କହୀନ, ତାରାଳି— ନକ୍ଷତ୍ରଗଣ । ୪୬ । ସହସ୍ରାଂଶୁ ଅଂଶ—ହଜାର ଭାଗରୁ ଭାଗେ ମଧ ସରିଲା ନାହିଁ । ଚେଲକୂଟ—ଲୁଗାଗଦା । ୪୭ । ଗୁରୁମହୀସୁରେ —ଗୁରୁସ୍ଥାନୀୟ ବ୍ରାହ୍ମଣମାନେ; ଅଷ୍ଟକଞ୍ଜମାଳା —ଆଠଗୋଟି ପଦ୍ମମାଳ, ଘନାଙ୍ଗେ— ମେଘକୋଳରେ । ୫୦ । କମଳାଙ୍କ ଶିଶୁ—ବ୍ରହ୍ମା; କର୍କଶପରଶୁକର—ଶିବ; କଞ୍ଜନୟନ—ପଦ୍ମନେତ୍ର (ଜଗନ୍ନାଥ), କମଳଧି—ସମୁଦ୍ର, କମ୍ବୁ କଟକ —ଶଙ୍ଖକ୍ଷେତ୍ର, ପୁରୀ ।

●

# ଷଷ୍ଠ ଛାନ୍ଦ

## ରାଗ—ଘଣ୍ଟାରବ
## କୁମାରୀ ବିନୋଦରଞ୍ଜନ

ତଦନ୍ତେ ରସିକେ ଶୁଣ । ବୁଝି ବୁଝି ଭଲ କ୍ଷଣ । ଯେଉଁ ପରି ଜନେ ଦେଖନ୍ତି ନୟନେ ହେମାର ଶୁଭ ଲକ୍ଷଣ । ୧ । ଭାବିବା ଲାବଣ୍ୟ ରମା । କେ କହେ ନୁହେ ଏ ହେମା । ଧରି ଶିଶୁଲୀଳା କନକ ଚପଳାବଲ୍ଲରୀ ମଣ୍ଡିଲା କ୍ଷମା । ୨ । ସୁଧାମୟଧାମସାର । ତା ଶଶମିଷ ମସାର । କଲା ମୁଖ କେଶ ଅବଶ ଲୋକେଶ ଏ ବସୁନ୍ଧରାଭୂଷାର । ୩ । ଲଲାଟପଟ କପଟ । ଅଷ୍ଟମୀ ବିଧୁ ପ୍ରକଟ । ଝଳିରେ ଝଟକି ରଖୁଛି ଅଟକି ଲୋକନେତ୍ରକୁ ନିପଟ । ୪ । ଦୂରୁ ଅନା ପ୍ରାଣସଙ୍ଗି । ଭୂରୁ ଅସିତ ଭୁଜଙ୍ଗୀ । ଆଜଠାରୁ ବହେ ଗଣନାରେ ଶହେ ଅହେତୁକ ଖେଳାଭଙ୍ଗୀ । ୫ । ଲାସିକା ଶୋଭା ମନ୍ଦିର । ନାସିକାକୁ ବେଦବର । ସାର ତିଳଫୁଲେ ସଜାଡ଼ିଛି ମାର ଭାରତି ହେବ ଆଖର । ୬ । ଅଧରଶୋଭାକୁ ଭାବ । ମନ୍ଦର କି ବନ୍ଧୁଜୀବ । ନ ଚଳଇ ଅରି ଚରଣ ଏ ଶିରୀ ଦେଖି କେଉଁ ବନ୍ଧୁ ଯିବ । ୭ । ନେତ୍ର ବିଚିତ୍ର ସାରଙ୍ଗ । ତାରା ଇନ୍ଦ୍ର ନୀଳ ଭୃଙ୍ଗ । କୋଟି ଶୁଭଲକ୍ଷ୍ମଜଳଧିର ପକ୍ଷ୍ମପାଳୀ ରଖିଅଛି ସଙ୍ଗ । ୮ । ଗଣ୍ଡ ଦରପଣ ବିମ୍ବେ । ଭିତ୍ତିଚିତ୍ର ପ୍ରତିବିମ୍ବେ । କେଡ଼େ ଭାଗ୍ୟବତୀ ନରେନ୍ଦ୍ରଯୁବତୀ ଗଣ୍ଡେ ଯା ଏହାକୁ ଚୁମ୍ବେ । ୯ । ଯୋଗବଶୁଁ ଆଦରଶେ । ପ୍ରତିଫଳ ଯେବେ ଦିଶେ । ଯଥା ରାଜେ ରଙ୍ଗ

---

**ଷଷ୍ଠ ଛାନ୍ଦ**

୩ । ସୁଧାମୟ ଧାମସାର—ଚନ୍ଦ୍ରଲୋକର ସାରଭାଗ, ତା ଶଶମିଷ ମସାର—ଚନ୍ଦ୍ରର ଶଶରୂପୀ କଳଙ୍କ କପଟ ଇନ୍ଦ୍ରନୀଳମଣି ପରି, କଲାମୁଖ ... ବ୍ରହ୍ମା ଚନ୍ଦ୍ର ଲୋକର ସାରାଂଶ ଓ ତନ୍ମଧ୍ୟସ୍ଥ ଇନ୍ଦ୍ର ନୀଳମଣି (କଳଙ୍କ) ଆଣି ଅବଶ ହୋଇ ଯଥାକ୍ରମେ ଏ ସୁନ୍ଦରୀର ମୁଖ ଓ କେଶକୁ ନିର୍ମାଣ କରିଛି । ୪ । ଝଳି—କାନ୍ତି । ନିପଟ—ଏକାନ୍ତ ଭାବରେ । ୫ । ଭୂରୁ—ଭ୍ରୂ; ଅସିତଭୁଜଙ୍ଗୀ—କୃଷ୍ଣସର୍ପୀ । ୬ । ଲାସିକା—ନିତ୍ୟସ୍ଥଳ, ଆଖରକୁ (ଶେଷରେ) କନ୍ଦର୍ପର ଶରମୂଣା ହେବ ବୋଲି ବ୍ରହ୍ମା ନାସିକାକୁ ରାଶିଫୁଲର ସାରବସ୍ତୁରେ ସଜାଡ଼ି ରଖିଛି । ୮ । ସାରଙ୍ଗ—ପଦ୍ମ । ତାରା—ଆଖିର ପୁଅ, କନୀନିକା; କୋଟିଶୁଭଲକ୍ଷ୍ମଜଳଧିର—ଶୁଭଲକ୍ଷଣ ସମୂହ ଯାହାଠାରେ ଏକତ୍ର ମିଳିତ ହୋଇଅଛି । ପକ୍ଷ୍ମପାଳୀ—ଚକ୍ଷୁର ଲୋମ ପଙ୍‌କ୍ତି । ୯ । ଭିତ୍ତିଚିତ୍ର—କାନ୍ଥର ଚିତ୍ର,

ପକ୍ୱନାଗରଙ୍ଗ ତଥା ଚିବୁକ ଉଲ୍ଲସେ । ୧୦ । ଅନାଇ ଏହାର ଶ୍ରୁତି । ଏପରି ହୁଏ ପ୍ରତୀତି । ନେତ୍ରମୃଗ ଖସି ନ ଯିବାକୁ ପାଶି ରଖିଛି କେଳତିପତି । ୧୧ । କନକ କପୋତ ପୋତ । ତୁଳା ନୁହେ କଣ୍ଠରୁତ । ଅକାରଣଭବ ସକରୁଣରବ ଛିଣେ କଳକଣ୍ଠରୁତ । ୧୨ । ଆଜ୍ଞୁ ହେଲାଣି ସଞ୍ଚିତ । ଢେମାର କିଳକିଞ୍ଚିତ । ତ୍ରାସହାସ କାନ୍ଦ ସମକ୍ରୋଧ ମନ୍ଦସ୍ମିତ ମିଶ୍ରିତ କିଞ୍ଚିତ । ୧୩ । ସ୍ୱର୍ଣ୍ଣମୟ ସୁକୁମାର । ସ୍ୱର୍ଣ୍ଣଦୀମୃଣାଛ ସାର । ବିରଚିଲା ଆଣି ଯତ୍ନେ କୁଶପାଣି ବାହୁଯୁଗ ସୁଦୃଶାର । ୧୪ । କନକ କଳିତ ମହୀ । ବକ୍ଷକୁ ବିଚାରି ବିହି । ମେରୁ ମଞ୍ଜି ପୋତିଥିଲା ପରି ଦ୍ୟୁତି ସ୍ତନସ୍ଥାନ ଅଛି ବିହି । ୧୫ । ଶୋଣମଣି ମଧ ସୁନା । କଞ୍ଜପାଣିପାଦ ସିନା । ତ୍ରିଜଗତୀଯୋଷା ମଣ୍ଡନକୁ ଭୂଷା ହେବ ଏ କୁନ୍ଦଦଶନା । ୧୬ । ନଜର ଦିଅ ଉଦରେ । ମଜା ଏ କି ପ୍ରମୋଦରେ । ସ୍ୱଲାବଣ୍ୟ ଜଳପୁଟର କମଳ ନବଦଳଶୋଭା ଧରେ । ୧୭ । ନାଭିବିଳ ଆବରତ । ଛବିକି ଅନବରତ । ଦେଖି ସୁଖୀ ହେଲା ଆମ୍ଭ ନେତ୍ର ଭଲା ଆଚରିଥିଲା ବରତ । ୧୮ । କି ସୁନ୍ଦର ଉରୁଦ୍ୱୟ । ହେଲେ ଯଉବନୋଦୟ । ବିପରୀତ ସୁନା କଦଳୀର ଦଳି ଦେବ ଏ ଶୋଭା ନିଶ୍ଚୟ । ୧୯ । ଅନା ଜାନୁତଳଶିରୀ । କରେ ମନଧନ ଚୋରି । ଅଟେ ସ୍ମରରାଣୀ ପହୁଡ଼ିବା ମଣିଖଟସୁନାଖୁରାପରି । ୨୦ । ଇଦୃଶ ସୁଷମାସୀମା । ସେ ମହୀମହେନ୍ଦ୍ର ଢେମା । କ୍ରମେ ବିବର୍ଦ୍ଧିତ ହେଲା ଅବଦାତ ପକ୍ଷରେ ଯଥା ଚନ୍ଦ୍ରମା । ୨୧ । ଜଗତୀ ଲୋଚନ ବେଢ଼ି । ଉତ୍ତାନ ଶୟନ ଛାଡ଼ି । କେତେଦିନେ ପୁଣି ପ୍ରକାଶିଲା ଠାଣି ଉଦରମାଡ଼ି ପହୁଡ଼ି । ୨୨ । ଦିନୁଁଦିନ ସୁକୁମାରୀ । ବହିଲା ଅଦ୍ଭୁତ ଶିରୀ । ଅଣି ହେବା ଶୋଭା ଭଣିବାକୁ ପ୍ରଭୁ ଫଣୀଶ୍ୱର ଗଲେ ହାରି । ୨୩ । ଅବରୋଧତମ ଦୁଃଖ । ହରିଲା ଛବି ମୟୂଖ । ବିଶ୍ୱମନବାଣଲାଖ ସେ ମଣ୍ଡିଲା ପାଖ ଦାସୀଙ୍କର କାଖ । ୨୪ । ଦେବଙ୍କ ପ୍ରସାଦ ଧରି । ମଇତ୍ରୀ ଯଥା ଆଚରି । ଏକ କରତଳୁ ଆରେକ ନିଅନ୍ତି

---

ଢେମାଙ୍କ ଗଣ୍ଡଦେଶରୂପ ଦର୍ପଣଖଣ୍ଡରେ ପ୍ରତିବିମ୍ବିତ ହେଉଅଛି । ୧୦ । ଆଦରଶେ—ଦର୍ପଣରେ, ପ୍ରତିଫଳ—ପ୍ରତିବିମ୍ବ, ଯୋଗବଶୁଁ—ଦୈବାତ୍ । ୧୧ । କେଳତିପତି—କନ୍ଦର୍ପ, ପାଶି—ପାଶଯନ୍ତ୍ର, ଫାଶ (କାନକୁ ଫାସ ସଙ୍ଗେ ତୁଳନା କରାଯାଏ) । ୧୨ । କଳକଣ୍ଠରୁତ—କୋକିଳଧ୍ୱନି । ୧୩ । କିଳକିଞ୍ଚିତ—ନାୟକ ସମୀପରେ ହର୍ଷ ହେତୁରୁ ନାୟିକା ହାସତ୍ରାସ ପ୍ରଭୃତି ଯେଉଁସବୁ ଭାବ ଏକ ସମୟରେ ପ୍ରକାଶ କରେ । ୧୪ । ବିଧାତା ବକ୍ଷସ୍ଥଳକୁ ସ୍ୱର୍ଣ୍ଣଘଟିତ ପୃଥିବୀ ମନେ କରି ତହିଁରେ ମେରୁପର୍ବତର ବୀଜର ଜ୍ୟୋତିପରି ସ୍ତନସ୍ଥାନକୁ ନିର୍ମାଣ କରିଅଛି । ୧୫ । ଶୋଣମଣି ମଧସୁନା—ସୁନାଭିତରେ ରକ୍ତବର୍ଣ୍ଣ ମଣିପରି । କଞ୍ଜପାଣିପାଦ—ପଦ୍ମହସ୍ତ ଓ ପଦ୍ମପାଦ । ୧୭ । ନିଜ ଲାବଣ୍ୟରୂପ ଜଳରେ ପୁରଟକମଳ (ସ୍ୱର୍ଣ୍ଣପଦ୍ମ) ନୂତନପତ୍ରର ଶୋଭାକୁ ଧରିଅଛି । ୧୮ । ନାଭିବିଳଆବରତ— ନାଭିଗର୍ତ୍ତରୂପ ଆବର୍ତ୍ତ ବା ଭଉଁରୀ, ବରତ—ବ୍ରତ । ୨୧ । ଅବଦାତପକ୍ଷ—ଶୁକ୍ଳପକ୍ଷ । ୨୨ । ଜଗତୀଲୋଚନ ବେଢ଼ି— ଲୋକଚକ୍ଷୁର ବନ୍ଧନସ୍ୱରୂପା, ଉତ୍ତାନ ଶୟନ—ଚିତ୍ ହୋଇ ଶୋଇବା ବା ଉପରକୁ ମୁହଁ କରି ଶୋଇବା । ୨୩ । ଫଣୀଶ୍ୱର—ଅନନ୍ତନାଗ । ୨୪ ।

ଭିତରଭୂଷା ସୁନ୍ଦରୀ । ୨୫ । ସମ୍ଭବନ୍ତେ କୁତୂହଳ । ଗୋଳେ ବରଜିଲା କୋଳ । ଦେଖି ପୁର ମରକତ ବସୁଧାର ପୃଷ୍ଠେ ନିଜ ପ୍ରତିଫଳ । ୨୬ । ଭିଡ଼ିଧରି ତହୁଁ ପୁଣି । କେତେବେଳେ ଧାତ୍ରୀପାଣି । ଧରି ମନ୍ଦ ମନ୍ଦ ଚରଣାରବିନ୍ଦ ଯୁଗେ ମଣ୍ଡଇ ଧରଣୀ । ୨୭ । ସମ୍ଭାଳି ନ ପାରି ଉଭା । ଖସିପଡ଼େ ହେମପ୍ରଭା । ଖସିଗଲା କି ଆଭାସିଯାଏ ବିଶ୍ୱମଉଳି ଚମ୍ପକଗଭା । ୨୮ । ସେ ଧରାଧବ ଦୁଲାଳୀ । ସଂସର୍ଗ କୁତୁକଭଳି । କୁନ୍ଦଲତା ନାମ ସମବୟା ବାଳୀ ଜଣେ ହେଲା ପ୍ରିୟ ଆଳୀ । ୨୯ । ତାହା ବାହାରେ ବହୁତ । ଲଳିତା ବନିତା ମିତ । ବନିତା ତୁଲେ ତାମସୀଦିନ ସୁଖେ ନେବାରେ କଲେ କାମିତ । ୩୦ । ସଖୀଙ୍କି ମୋଦେ ଫୁଲାଇ । ରଚିଲା କେଳି ଗେଲାଇ । ଘେନି ଚାମୀକର ସିକତାନିକର ଭରତି ସୁନା କୁଲାର । ୩୧ । ଖେଳେ ବଳିବାକୁ ମତି । କରିଚି ତ ପ୍ରଜାପତି । ଜନମରୁ ପ୍ରତି ବାଳିକା ମୂରତିମାନଙ୍କୁ ସ୍ୱରୂପବତୀ । ୩୨ । ଘେନି ସହଚରୀ ରାଜି । ପରମ ହରଷ ଭଜି । ବାଳିକା ଦିଏ ପାଞ୍ଚାଳିକା ବିବାହ ମହୋତ୍ସବେ ମହାଭୋଜି । ୩୩ । ବଢ଼ାଇ କାନନାଉଳୀ । ପିନ୍ଧାଇ ଦେଲେ ବାଉଳୀ । ଦୁରବୋଧ ଗଲା ବୋଧ ବହ୍ନିଶିଖା ହାଉଳି ବାଜି ଝାଉଁଳି । ୩୪ । ଶୁଦ୍ଧାନ୍ତ ଦୁଃଖ କାଉଳି । ହୋଇ ହୋଇଲା ବାଉଳି । ବିଚାରିଲା ଏହା ଉଦୟରୁ ଆହା ଗଲି ଆଉଳି ପାଉଳି । ୩୫ । ଯଥା କଞ୍ଜକୋଷେ ବାସ । କରିଥାଏ ଆଗୁଁ ବାସ । ନିମିତ୍ତ କାରଣ ଅରୁଣକିରଣ ଛୁଇଁଲେ ଲଭେ ପ୍ରକାଶ । ୩୬ । ସେହି ରୂପେ ବିଦ୍ୟାଶାଳା । ବିଧିକି ମାତ୍ର ଦେଖିଲା । ସଜାଡ଼ିବା ବେଳୁ ଅଜାଡ଼ି ବିଧାତା ସକଳ ଗୁଣ ରଖିଲା । ୩୭ । ଅତିଶୟ ଲୋଳ ଛଟା । ଦୁରାପଦ୍ରବ୍ୟରୁ ହଟା । ଛାଡ଼ିଲା ଜାଣିଲା ବାଣୀ ଲାଳିତ୍ୟରେ କରିବାର ସଟାବଟା । ୩୮ । କଥା ସମଜିଲା ହେଲା । ମଥା ସଜ ଭରଜିଲା । ଯଥା ବତାଇଲେ ଗୁରୁଜନେ ଭଲେ ତଥା ପଥକୁ ଭଜିଲା । ୩୯ । ବିଡ଼ିଆ ମଣୋହି ରସେ । ବୁଢ଼ି

ଅନ୍ତଃପୁରର ଅନ୍ଧକାରରୂପ ଦୁଃଖକୁ ତାହାର କାନ୍ତିର କିରଣ ଦୂର କଲା । ୨୫ । ମଇତ୍ରୀ—ମିତ୍ରତା, ବନ୍ଧୁତ୍ୱ । ୨୬ । ଦେଖି ... ଅନ୍ତଃପୁରର ମରକତମଣିରେ ନିର୍ମିତ ଭୂପୃଷ୍ଠରେ ନିଜ ପ୍ରତିବିମ୍ବ ଦେଖି । ୨୮ । ହେମପ୍ରଭା— ସ୍ୱର୍ଣ୍ଣାଙ୍ଗୀ ଚନ୍ଦ୍ରକଳା, ବିଶ୍ୱମଉଳିଚମ୍ପକଗଭା— ସଂସାର ମସ୍ତକର ଚମ୍ପାଫୁଲର ଝରାପରି । ୩୦ । ତାମସୀଦିନ—ରାତି ଓ ଦିନ । କାମିତ— କାମନା । ୩୧ । ଚାମୀକର ସିକତାନିକର— ସୁନାର ଧୂଳିସମୂହ । ୩୩ । ପାଞ୍ଚାଳିକା—ପିତୁଳା, କୁଣ୍ଢାଇ । ୩୪ । କାନନାଉଳୀ—କର୍ଣ୍ଣବେଧବିଧି, ବାଉଳି—ଫାଶିଆ, ହାଉଳି—ହାଉଆ, ଝାସ, କର୍ଣ୍ଣବେଧ ଅଗ୍ନିଶିଖା ବାଜିବାରୁ ବାଲ୍ୟକାଳର ଅଜ୍ଞତା ଝାଉଁଳି ପଡ଼ିଲା । ୩୫ । ଶୁଦ୍ଧାନ୍ତ—ଅନ୍ତଃ-ପୁର, କାଉଳି—ଅସ୍ଥିର, କ୍ଷୁବ୍‌ଧ; ବାଉଳି— ବାତୁଳ, ଏହା ଉଦୟରୁ—ଚନ୍ଦ୍ରକଳାର ଜନ୍ମ ହେତୁରୁ; ଆଉଳିପାଉଳି—ଅତି ବ୍ୟାକୁଳ । ୩୬ । କଞ୍ଜକୋଷ—ପଦ୍ମକଢ଼ରେ, ବାସ—ସୁଗନ୍ଧ । ୩୮ । ଲୋଳଛଟା—ଚଞ୍ଚଳତା, ଦୁରାପଦ୍ରବ୍ୟରୁ ହଟା—ଦୁଷ୍ପ୍ରାପ୍ୟବସ୍ତୁ ପାଇବା ପାଇଁ ଅଳି କରିବା, ସଟାବଟା କରିବା—ଠକି ଦେବା । ୩୯ ।

ଯାମିନୀ ଦିବସେ । ତାମ୍ବୁଳକରଙ୍କ ବାହିନୀଙ୍କି ରଙ୍କ ପରାଏ ରଖିଲା ପାଶେ । ୪୦ । ତନୁନିର୍ଜିତ ରୋଚନା । ସେ ଶିଶୁ ମୃଗଲୋଚନା । ମଣ୍ଡିବା ଦଣ୍ଡିବା ଜାଣିଲା ମଣିଲା ଗୁଣ ଦୋଷ ବିବେଚନା । ୪୧ । ସଖୀମୁଖେ ଭଣାଇଲା । ଜନକକୁ ଜଣାଇଲା । ଦ୍ୱୀପାନ୍ତରୁ କୋଟିମୂଲ୍ୟ ଭୂଷାପେଟୀ ସଞ୍ଚୟକୁ ଅଣାଇଲା । ୪୨ । କଥା କର୍ଣ୍ଣେ ରସିଲା । ତା ମଜ୍ଜା ବୁଝି ହସିଲା । ମୁଖେ ଚେଳାଞ୍ଚଳ ଦେଇ ଅଚଞ୍ଚଳ ହୋଇ ଉସଙ୍ଗେ ବସିଲା । ୪୩ । ଧନୀ ତୀବ୍ରତା ବର୍ଜିଲା । ଅନୀତି ଦେଖି ତର୍ଜିଲା । ସୁନୀତି ନିମନ୍ତେ ସୁବାସିତ ସୂନବନୀ ତିଆରି ସର୍ଜିଲା । ୪୪ । ଅଭିଷେକରେ ନରେଶ । କଲେ ଶରଧା ବିଶେଷ । ବିରାଜିଲା ରାମା ଲାଗିହୋଇ ଜାମା ପଗଡ଼ି ସିପାହିବେଶ । ୪୫ । ଭୂରୁ ଯନ୍ତ୍ରଣା ଶିଖିଲା । ମୁରୁଜ ଚିତ୍ର ଲେଖିଲା । କୁରୁଜାତଦେହା ଗୁରୁଜାତ ଗିରେ ଉରୁ ଜାଗରୂକ ହେଲା । ୪୬ । ନାନାଜାତି ଫୁଲ ଭୂଷା । ବନାଇଲା ନୀଳକେଶା । ଖେଳିଲା ସେ ବେଳ ଜାଣି ନ୍ୟାୟବଳ ଶକଟା ଗଞ୍ଜପା ପଶା । ୪୭ । ଜନନୀଙ୍କି ଜଣାଇଲା । ବୀଣାଯନ୍ତ୍ର ଅଣାଇଲା । ତହିଁ ବିଶ୍ୱଜିଣା ହେବାକୁ ପ୍ରବୀଣା ଚଣ୍ଡୀସ୍ତବ ଗୁଣାଇଲା । ୪୮ । ପଢ଼ି ବିନୟ ଅରଜି । ତାରତମ ନ ବରଜି । ପ୍ରତିଲେଖ ଲେଖି ଜାଣିଲା ସୁମୁଖୀ ଶ୍ରିତମରଜି ଭରଜି । ୪୯ । ସମାନ ବୟସୀ ଆଳୀ । ଛାମୁରେ କଲେହେଁ ଅଳି । ଭାବ ନ ଥିବାର ଜାଣି ବରଜିଲା ଧାବ ନ ଥିବାର କେଳି । ୫୦ । ଅତରସୁବାସୀ ଭଲା । ଅତର୍କିତେ ବିଜେ କଲା । ତାଜି ମନ ଦେଲେ ସଜନୀ ଇଙ୍ଗିତେ ଲାଜିମ ତା ଜମା କଲା । ୫୧ । କାଳିକାକାନ୍ତ ଶ୍ରୀଧର । ପରଶୁମୁରଲୀଧର । ରାମଚନ୍ଦ୍ର ଛୋଟରାୟ ଭୂନାଥର ଅମନ୍ଦ ହରଣ କର । ୫୨ । ନେତ୍ରାଧିକ ପଞ୍ଚାଶତ । ପଦପୁଞ୍ଜରେ ନିର୍ମିତ । କୁମାରୀ ବିନୋଦରଞ୍ଜନ ଏ ଛାନ୍ଦ ଶୁଭେ ହେଲା ସମାପତ । ୫୩ ।



ମଥାସଜ—ମୁଣ୍ଡ ଘୋଡ଼ାଇବା । ୪୦ । ତାମ୍ବୁଳକରଙ୍କ ବାହିନୀ—ପାନବଟା ଧରିଥିବା ସ୍ତ୍ରୀ । ୪୧ । ରୋଚନା—ଗୋରୋଚନା । ୪୨ । କୋଟିମୂଲ୍ୟ ଭୂଷାପେଟୀ ସଞ୍ଚୟ—ବହୁମୂଲ୍ୟ ବେଶ ହେବା ପେଡ଼ୀ (toilet box) ସମୂହ । ୪୩ । କଥା କର୍ଣ୍ଣେ—କଥା ଶୁଣିବାରେ । ୪୪ । ଧନୀ—ସୌଭାଗ୍ୟବତୀ (ଚନ୍ଦ୍ରକଳା); ସୂନବନୀ—ଫୁଲବଗିଚା । ୪୬ । କୁରୁଜାତଦେହା —ସ୍ୱର୍ଣ୍ଣମୁଦ୍ରା (ଅଳଙ୍କାର) ପୂର୍ଣ୍ଣ ଦେହ ଯାହାର । ଗୁରୁଜାତଗିରେ—ଗୁରୁଜନଙ୍କ ବଚନରେ । ଉରୁଜାଗରୂକ—ଅତ୍ୟନ୍ତ ଜାଗ୍ରତ୍ । ୪୯ । ବିନୟ-ଅରଜି—ବିନୟପୂର୍ଣ୍ଣ ପ୍ରାର୍ଥନାପତ୍ର । ପ୍ରତିଲେଖ ଲେଖି—ପ୍ରତ୍ୟୁତ୍ତର ଲେଖି ଦେଇ । ଶ୍ରିତମରଜି— ଆଶ୍ରିତମାନଙ୍କର ହୃଦୟ । ୫୦ । ଭାବ ନ ଥିବାର ଜାଣି ... ପ୍ରକୃତ ଭାବ ନାହିଁ; ଅଥଚ ପ୍ରୟୋଜନସିଦ୍ଧି ନିମିତ୍ତ ଯେଉଁମାନେ ଦୌଡ଼ାଦୌଡ଼ି କରନ୍ତି ସେମାନଙ୍କୁ ତ୍ୟାଗ କଲା । ୫୧ । ତାଜି ମନ ଦେଲେ—ମନକୁ ଉତ୍ତେଜିତ କରିଦେଲେ । ଲାଜିମ ତା ଜମା କଲା—ତାକୁ ଲଜ୍ଜା ଦେଲା ।



# ସପ୍ତମ ଛାନ୍ଦ

## ରାଗ—କଲ୍ୟାଣଆହାରୀ

## କୁମାରୀ କଉତୁକ

ଅଥ ବିଚକ୍ଷଣେ ଘେନ ତ ଈକ୍ଷଣେ ପିଇବା ପରି ହେମାଶିରୀ । ସେ ମୃଦୁଜଳପମୋହନା ଅଳପ ହୋଇ ଆସିବାରୁ କିଶୋରୀ । ପ୍ରତିମା । ପ୍ରତିମୁହୂର୍ତ୍ତେ ଆନ ଆନ । ଯେଉଁ ରୂପେ ତପନୀୟ ଭଜେ ରୂପ ଦାହଦାହକେ ବାନ ବାନ । ୧ । ବିରଞ୍ଚି ବିଦ୍ଧାଣି ଦେଲା କି ରସାଣି ହାଟକ ହଟପିତୁଳାକୁ । ନ ଦେଖିଲେ ଜନେ ଜଗତେ ନୟନେ ତା ନଖାଗ୍ର କାନ୍ତି ତୁଳାକୁ । ମ୍ରଦିମା । ଘେନି ସେ ଉରୁବର୍ତ୍ତୁଳାକୁ । ଯୋଗ୍ୟ ନୋହେ ଘେନି ନ କଲେ ସଜନୀ ପାହାଡ଼ା ହଂସୁଲୀତୂଳାକୁ । ୨ । ଅମାନୀ ଗହନ ଗଜ ଅଭିମାନ ଛୁଇଁ ଆସିଲା ଗମନକୁ । ଶିଶୁ ସଖୀମାଳା ଆଚରିବା ଖେଳା ଯୋଗାଇଲା ନାହିଁ ମନକୁ । ଆନକୁ । ନିପଟ ନୋହିଲା ନଜର । ଅନାରତ ରସପ୍ରସଙ୍ଗେ ମାନସ ହୋଇ ଆସିଲା ଜରଜର । ୩ । ଦରସ୍ଫୁଟ ମଲ୍ଲୀହାସୀ ଭୂରୁବଲ୍ଲୀ ଖେଳିବା ଖୁରଳୀ ଶିଖିଲା । ଅସିତ ଭୁଜଙ୍ଗୀ ସୃଷ୍ଟି ଖେଳାଭଙ୍ଗୀ ଅହଙ୍କାର ସାର ଶୁଖିଲା । ଆଳାପ । ମଧ ମଧରେ ନାସାପୁଟ । ଫୁଲିଉଠିବାରୁ ବତାଇଲା ଗୁରୁ ହୋଇ ସ୍ମମଣ୍ଡନକୁ ନାଟ । ୪ । ହେମାକାନ୍ତି ଝଳି ଚାହିଁ ନ ସମ୍ଭାଳି ମନୁ ଜାତ ପ୍ରେମପ୍ରବାହ । ସଜନୀ କେବଳ ସଜ ନୀଳୋତ୍ପଳ ମଣ୍ଡିବାରେ କରି ଉତ୍ସାହ । କପୋଳ । ଚୁମ୍ବୀ ନୀଳୋତ୍ପଳ ଖୋସିଲା । ମୁକୁରେ କଦମ୍ବ କଳି ପ୍ରତିବିମ୍ବପରି ଦନ୍ତୁରିତ ଦିଶିଲା । ୫ । କହିବା ମାଧୁରୀ ବିଶେଷରୁ

---

### ସପ୍ତମ ଛାନ୍ଦ

୧ । ମୃଦୁଜଳପମୋହନା—କୋମଳ ଭାଷଣ ଯୋଗୁଁ ମନୋହରା । ଯେଉଁରୂପେ ... ସୁନା ଯେପରି ପ୍ରତି ପୋଡ଼ରେ ଭିନ୍ନ ଭିନ୍ନ ତେଜ ଧରେ । ୨ । ହାଟକହଟପିତୁଳାକୁ—କୌତୁକିଆ ସୁନାର ପ୍ରତିମୂର୍ତ୍ତିକୁ (ଚନ୍ଦ୍ରକଳାକୁ); ନ ଦେଖିଲେ ... ଲୋକେ ତା ନଖ ଅଗର କାନ୍ତିର ଶୋଭାକୁ ତୁଳନା କରିବାପାଇଁ ସଂସାରର କୌଣସି ପଦାର୍ଥ ଦେଖିଲେ ନାହିଁ । ମ୍ରଦିମା—ମୃଦୁତା, କୋମଳତା; ଉରୁବର୍ତ୍ତୁଳା —ସୁଗୋଲଜଘନବିଶିଷ୍ଟା, ପାହାଡ଼ାହଂସୁଲୀତୂଳାକୁ —ଯିବାପାଇଁ ବାଟରେ ପଡ଼ିବା ହଂସପରର ତୂଳାନିର୍ମିତ ଗଦିକୁ । ୩ । ଅମାନୀ ଗହନଗଜ— ଅମାନିଆ ବଣହାତୀ, ନଜର—ଦୃଷ୍ଟି, ଅମାନୀ ଗମନକୁ ... ଚନ୍ଦ୍ରକଳାର ଗତି ବଣୁଆ ମଉଗଜ ଗତିପରି ହେଲା । ଅନାରତ—ଅବିରତ, ସର୍ବଦା; ଜରଜର—ଜର୍ଜର, ମଜ୍ଜିତ; ୪ । ଖୁରଳୀ— ଅଭ୍ୟାସ, ଅସୀତଭୁଜଙ୍ଗୀ ... କଳାସର୍ପର

ଗୋରୀ ମୁଖସୁଧାକର କମ୍ପିଲା । ଝଲକା ମୁକୁତା ଝୁଲାକ୍ରମକୁ ତା ନୟନଖଞ୍ଜନ ଝାମ୍ପିଲା । ନିରେଖି । ପ୍ରବନ୍ଧ ପଟପଟଳୀକି । ଅନାଇଲା ହସି ସମାନବୟସୀ ମନ ଅନୁରୂପ ଆଳିକି । ୬ । ସେ କାଳେ କେ ଗୁରୁଜନ ଯେବେ ଦୂରୁ ଲୋଚନଗୋଚର ହୋଇଲା । ଉଦାସୀନ ଲୀଳା ପ୍ରବାହରେ ବାଳା ତା ଶଙ୍କାପଙ୍କକୁ ଧୋଇଲା । ନଜିକେ । ହେବ କି କୁସୁମଉତ୍ସବ । ଆଗୁଁ ରତିବର ଦେଲା ଅତି ବରତୁଳ କରି ହୃଦେ ଉଦ୍‌ବେଗ । ୭ । ଚୁମ୍ବିଲା ଡମରୁ ଡମ୍ବରକୁ ସରୁଶିରୀ ଧରି ମଧ୍ୟପ୍ରଦେଶ । ହେଲା ନିତମ୍ବରୁ ନିଧୁବନେ ଗୁରୁ ବିଜୟ ଡିଣ୍ଡିମ ଆଭାସ । ତାଦୃଶ । ସ୍ପଷ୍ଟ ନୋହିଲେହେଁ ତ୍ରିବଳି । ଭାବଗର୍ଭ ଦରହାସୀର ଉଦରଶୋଭା ସଂସାରୁ ଗଲା ବଳି । ୮ । ଦ୍ରବ୍ୟ ବିନା ଛାୟା ବିଳସିବା ମାୟା ଜେମା ଉଦରେ ଉଲ୍ଲସିଲା । ରୋମରାଜି ବ୍ୟାଜ କଳା ନାଗରାଜ ଶିଶୁପରି ଦିଶୁ ଦିଶିଲା । ଚାଲିବା । ବେଳ ଛାଇକି ଅନାଇଲା । ବେଶେ ହେବା ମନ ନ ପ୍ରକାଶି ଧନ କୁସୁମଭୂଷା ବନାଇଲା । ୯ । ବାଳାବର ଉରସ୍ଥଳ ପଞ୍ଚଶର ସାଧନ ଆଖେଟ ମହୀକି । ଦ୍ରୋଣତୁଲ୍ୟ ଗୁରୁ କରିବା ବିଚାରୁ ଅତି ଯତ୍ନେ ଆଣି ତହିଁକି । ଥାପିଲା । ଦ୍ରୋଣ ଭଇରବ ଦୁହିଙ୍କି । ଆଗୁଁ ପଡ଼ିଥିବା ମେରୁବୀଜ ଅବା ଅଙ୍କୁରିତ ହେଲା ନାହିଁ କି । ୧୦ । ଫିଟିଲେ ପ୍ରଲମ୍ବ କୁନ୍ତଳ ନିତମ୍ବ ଲଘି ଦିଶିଲା କି ବହଳ । ତା ଅଙ୍ଗ ଅମରଲତାର କି ମରକତମଣିମୟ ଓହଳ । ଲାବଣ୍ୟ । ରମାରକେତକୀ ପ୍ରଭାସେ । ଧୂଳି ବିନା ଦେଖି ସୁଖୀ ହୋଇ ଲାଖିଅଛି ଭୃଙ୍ଗାଳି ଏ ଆଭାସେ । ୧୧ । ତ୍ରିଧାଟୀ କିଙ୍କିଣୀ ବଦାବଦ ମଣି କଠାଉ ଲାଗି ଚାଲି ଚାକି ।

---

ଖେଳିବା ଭଙ୍ଗୀର ସୌନ୍ଦର୍ଯ୍ୟ ଗର୍ବ ନଷ୍ଟ ହୋଇଗଲା । ୬ । ଝଲକା—ଏକପ୍ରକାର କାନଫୁଲ, ଝୁଲାକ୍ରମ— ଝୁଲିବା ଭଙ୍ଗୀ, ପ୍ରବନ୍ଧପଟପଟଳୀକି—ପରସ୍ପର ସନ୍ନିବିଷ୍ଟ ରତି ଚିତ୍ରସମୂହକୁ, ଆଳି—ସଖୀ । ୭ । ସେକାଳରେ—ଚିତ୍ରଦର୍ଶନସମୟରେ, ଉଦାସୀନ ଲୀଳାପ୍ରବାହରେ—ନ ଜାଣିବାପରି ହୋଇ, ନଜିକେ—ନିକଟରେ, କୁସୁମଉତ୍ସବ—ପ୍ରଥମ ରଜୋଦର୍ଶନ, ହୃଦୟରେ—ଛାତିରେ, ଅତି ବର୍ତ୍ତୁଳ ଉଦ୍‌ବେଗ—ଗୋଲାକାର କୁଚରୂପ ଉତ୍‌କଣ୍ଠା । ୮ । ମଧ୍ୟପ୍ରଦେଶ—କଟିଦେଶ, ଡମରୁ ଡମ୍ବର—ଡମରୁର ଆଡ଼ମ୍ବର ବା ଶୋଭା, ସରୁଶିରୀ—କ୍ଷୀଣଶୋଭା, ନିତମ୍ବ—ପିଚା, ନିଧୁବନେ ଗୁରୁ—ରତି ବିଦ୍ୟାରେ ଶିକ୍ଷକ । ୯ । ଦ୍ରବ୍ୟବିନା ... ପଦାର୍ଥ ନ ଥିଲେ ଛାଇ ଯେପରି ଦେଖାଯାଏ ନାହିଁ, ସେହିପରି ଜେମାର ଉଦର ନ ଥିଲା ପରି ଜଣାଗଲା, ଅର୍ଥାତ୍ ଜେମା କ୍ଷୀଣୋଦରୀ (ସ୍ତ୍ରୀ ଉଦର କ୍ଷୀଣ ହେବା ସୌନ୍ଦର୍ଯ୍ୟର ପରିଚାୟକ) । ରୋମରାଜି ବ୍ୟାଜକଳା ନାଗରାଜଶିଶୁ ପରି ଦିଶୁ ଦିଶିଲା ... ଜେମାର ନାଭିତଳକୁ ଯାଇଥିବା ରୋମରେଖା ନକଲି କଳାନାଗଛୁଆ ପରି ଅଳ୍ପକେ ଦିଶିଲା । ୧୦ । ଉରସ୍ଥଳ—ଛାତି, ପଞ୍ଚଶରସାଧନଆଖେଟମହୀ— ମଦନର ବ୍ୟାୟାମ ସାଧନର ଆଖଡ଼ାଭୂଇଁ, ଦ୍ରୋଣ —କୌରବମାନଙ୍କ ଅସ୍ତ୍ରଗୁରୁ, ଦ୍ରୋଣ ଭଇରବ ଦୁହିଙ୍କି—ମାପଅଡ଼ା ଓ ଶିବମୂର୍ତ୍ତି (କୁଚଦ୍ୱୟ) । ମେରୁବୀଜ—ମେରୁପର୍ବତର ମଞ୍ଜି । ୧୧ । ତା ଅଙ୍ଗ ଅମରଲତାର—ତାହାର ଶରୀରରୂପ

ମାନିଲା ଜାଣିଲା ସ୍ନେହରେ ଦେହରେ ଜମାଇ ବୟସ୍ୟାଙ୍କୁ ଯାକି । ସୁନ୍ଦର । ଶିଶୁଙ୍କ ଗଣ୍ଡରେ ଚୁମ୍ବିଲା । ଚାହିଁଲା ସରାଗେ ଯେଉଁ ଅଙ୍ଗ ଲାଗେ ନିଜ ମୁଖ ପ୍ରତିବିମ୍ବିଲା । ୧୨ । ସୀତା ସୀତାଧବ ମାଳତୀମାଧବ ଭୀମଜା ତା ଧବ ଚରିତ । ରତି ପଞ୍ଚବାଣ ଘଟଣା ପୁରାଣ ଶ୍ରବଣେ ବଳାଇଲା ଚିତ୍ତ । ପୁଲକି । ଉଠିଲା ଶୁଣି ପରିରମ୍ଭ । ବିପ୍ରଯୋଗ ଶୁଣି ନେତ୍ରଯୁଗେ ପୁଣି କଲା ବିକଳେ ଅଶ୍ରୁଅମ୍ଭ । ୧୩ । ରହସଉଧର ମଧ୍ୟେ ପୟୋଧର ଅଙ୍କୁର ଚାହେଁ ହୃଷ୍ଟମନେ । ଶାଢ଼ୀ ପାଲଟିବା ଛଳେ ନବ ଜବାଧରା ଦୃଷ୍ଟି ଦିଏ ଜଘନେ । ବିପୁଳ । ଉରୁଯୁଗଳ ନେତ୍ର ଚୁମ୍ୱେ । ଫେରାଇ ବଦନ ପୁଣି ଦୁଃଖିଧନ ନଜର ଦିଅଇ ନିତମ୍ୱେ । ୧୪ । ତରୁଣୀକି କାନ୍ତକରଜାଗ୍ରକ୍ଷତ କି ମାନେ ଏହା ଭାବି ବାଳା । ଲେଖି କକ୍ଷାନ୍ତର ସ୍ଥଳରେ ସିନ୍ଦୂରଦ୍ରବରେ ଶିଶୁ ଶଶିକଳା । ପ୍ରମୋଦେ । ଚାହେଁ କାଞ୍ଚୁଳା ତଟ ଟେକି । ତହୁଁ କି ଆଭାସି ଯାଏ ଇଷି ଭାଷି ଉରୁଯୁଗଳ ଦିଏ ଯାକି । ୧୫ । ପଛୁଁକେ ସଜନୀ ଆସିଲା କି ଘେନି ଚମକି ସଂଯତ ହୋଇଲା । ଦକ୍ଷିଣ ଅଙ୍ଗ ଘୋଳି ହେଉଅଛି ରେ ଆଳି ବୋଲି ବେଳେ ବୋଇଲା । ବାଲିଶ । ତେଜି ଆଉଜିଲା ସହୀକି । ଜୃମ୍ଭାରମ୍ୟମୁଖୀ ତାଳେ ଲୟ ରଖି ଅଙ୍ଗୁଳି ଠୁକିଲା ମହୀକି । ୧୬ । ନିରକ୍ଷର ସଖୀ ଗିରେ ଚନ୍ଦ୍ରମୁଖୀ ନ ରଖିଲା ଲବେ ଖାତର । ସ୍ୱସମ ଅମଳତର ଗୁଣବୃନ୍ଦ କୁନ୍ଦଲତା ମୁଖେ ମାତର । ଆକୂତ । ତୁନ୍ଦିଳ ଦୃଷ୍ଟି ଖେଳାଇଲା । ଇତରଙ୍କ ତୁଲେ ଇତରଙ୍କୁ ଗେଲେ ଲଗାଇ ରସେ ଚଳାଇଲା । ୧୭ । ଅରୁଣ ଉଦୟ ସମୟୁ ସଦୟହୃଦୟା ପହୁଡ଼ ଭାଜିଲା । ଶାଟୀକି ପାଲଟି ଝଳି ଦନ୍ତପାଟି ହୀରାଙ୍କୁରରାଜି

---

କଜ୍ଜଳତାର, ମରକତମଣି—ଶାଗୁଆ ବର୍ଣ୍ଣର ମଣିବିଶେଷ । ଲାବଣ୍ୟ ଆଭାସେ—ଚନ୍ଦ୍ରକଳାର ଶରୀର ଲାବଣ୍ୟ ଲକ୍ଷ୍ମୀଙ୍କର କେତକୀପୁଷ୍ପ ବର୍ଣ୍ଣର କାନ୍ତି କି ? କେତକୀ ଫୁଲରେ ଧୂଳି ଥିବାରୁ ଭ୍ରମର ତା ପାଖକୁ ଯାଏ ନାହିଁ, ମାତ୍ର ଏଥିରେ ଧୂଳି ନ ଥିବାରୁ କେଶଗୁଚ୍ଛ ଛଳରେ ଭ୍ରମରମାନେ ଆସି ତହିଁରେ ଲାଗିଅଛନ୍ତି—ଏହିପରି ଆଭାସୁଛି । ୧୨ । ତ୍ରିଧାଟୀ ... ଚାକି—ବାରମ୍ବାର ବାଜୁଥିବା ତିନି ଧାଡ଼ି ମଣିଲଗା କଠାଉ ମାଡ଼ି ଚାଲିବାର ଭଙ୍ଗୀ, ବୟସ୍ୟା ... ସଙ୍ଗିନୀକୁ ଦେହରେ ସ୍ନେହରେ ଜମାଇ ଯାକି ଜାଣିଲା ଅର୍ଥାତ୍ ସଜନୀମାନଙ୍କୁ ସ୍ନେହରେ ଗାଢ଼ ଆଲିଙ୍ଗନ କରି ଶିଖିଲା । ୧୩ । ମାଳତୀମାଧବ—ମହାକବି ଭବଭୂତିଙ୍କ ପ୍ରଣୀତ ସଂସ୍କୃତ ନାଟକ । ଭୀମଜା—ଦମୟନ୍ତୀ, ପରିରମ୍ଭ—ଆଲିଙ୍ଗନ, ମିଳନ; ବିପ୍ରଯୋଗ— ବିରହ, ବିଚ୍ଛେଦ; ବିକଳେ ... ବିକଳରେ କାନ୍ଦିପକାଇଲା । ୧୪ । ରହସଉଧର ମଧ୍ୟେ— ନିର୍ଜନ ପକ୍‌କାଘର ଭିତରେ । ପୟୋଧରଅଙ୍କୁର —ଗଜରୁଥିବା କୁଚ । ଜଘନ—କଟିଦେଶର ସମ୍ମୁଖଭାଗର ନିମ୍ନଦେଶ । ୧୫ । କରଜାଗ୍ରକ୍ଷତ— ନଖକ୍ଷତ; କି ମାନେ—କିପରି ଶୋଭାପାଏ । କକ୍ଷାନ୍ତରସ୍ଥଳରେ—କାଖ ନିକଟରେ । ଶିଶୁଶଶି-କଳା—ଦ୍ୱିତୀୟାଚନ୍ଦ୍ରପରି ନଖକ୍ଷତସୂଚକ କ୍ଷୀଣରେଖା, କାଞ୍ଚୁଳାତଟ—ନିଜର ପିନ୍ଧିଥିବା କାଞ୍ଚୁଳାର ଧଡ଼ି । ୧୬ । ବାଲିଶ—ବାଲିଶ୍ ତକିଆ, ଜୃମ୍ଭାରମ୍ୟମୁଖୀ—ହାଇମାରିବା ଯୋଗୁଁ ସୁନ୍ଦର ଦେଖାଯିବା ମୁଖଯୁକ୍ତା । ୧୭ । ନିରକ୍ଷର—ମୂର୍ଖା ସଖୀମାନଙ୍କ କଥାରେ, ସ୍ୱସମଅମଳତର— ନିଜଭଳି ଅତି

ମାଜିଲା । ବାଜିଲା । କ୍ଷଣେ ପ୍ରଥମ ନାଡ଼ୀ ଖୁରୀ । ସାଜିଲା ମାଜଣାକୁ ସେ ବିଚକ୍ଷଣା ମାଜିଲା ମୁକୁରାସ୍ୟ ଶିରୀ । ୧୮ । ବହଳ ବିଚିତ୍ର ସୁପବିତ୍ର ଚିତ୍ର ଆସନେ ରାଜିଲା ଗେଲାଇ । ଚାହିଁ ଆଦରଣେ ଶ୍ରୁତିପାଶୀ ପାଶେ କଳମା କୁନ୍ତଳ ବୁଲାଇ । ଅଳିକେ । ମଣ୍ଡନ ତିଳକ ଘେନିଲା । କଞ୍ଜମଞ୍ଜିମାଳା ଜପ ସେ କମଳାସନାକୁ ଆହା କି ମାନିଲା । ୧୯ । କ୍ଷିତିଭୂଷାଟିକି କ୍ଷୀରୋଦ ଶାଟୀ କି ମାନିଲା ମାଜଣା ଶେଷରେ । କ୍ଷୀରୋଦସମ୍ଭବା ପ୍ରତିବିମ୍ବ ଅବା ବିରାଜିଲା ଜୀବନ୍ୟାସରେ । କିଶୋରୀ । ଦିଶିଗଲା ସେ ବିପରୀତ । ରସି ସମ୍ଭୋଦରେ କି ଜମ୍ବୁନଦରେ ମିଶିଗଲା ସୁରସରିତ । ୨୦ । ଜୟଦେବ କୃତି ଗଜେନ୍ଦ୍ର ବିପତ୍ତି ମୋକ୍ଷଣ ଗୋପାଙ୍ଗନା ଗୀତା । ପାଠକଲା ଆରୁମନ୍ଦାର ସେ ଚାରୁଚମରୀନୟନା ବନିତା । ତୁଳସୀ । ଗୁରୁ କପିଳାଧେନୁ ପୂଜା । ପ୍ଲକ୍ଷ ପ୍ରଦକ୍ଷିଣ ସାରି ସଦକ୍ଷିଣ ଦାନ ଦିଅଇ ନାରୀରାଜା । ୨୧ । ବଢ଼ିଲେ ଆଶିଷଗ୍ରହଣ କାଶୀଶସମାଧିଖଣ୍ଡନା ନିକଟେ । ଆଡ଼ଣୀ ଚାମର ଯୁଗଳୀ ମୟୂର ଝୁଲୀ ନିଯୋଗୀ ଜନ ଖଟେ । ଶ୍ରୀଭୁଜ । ପଇଠ ଧରି ପ୍ରିୟସହୀ । ଇଷ୍ଟଦେବ ଦରଶନକୁ ସୁନ୍ଦର ଚରଣକଞ୍ଜେ ମଣ୍ଡେ ମହୀ । ୨୨ । ସାରି ଦରଶନ ବିଧିକି ସେ ଜନ ନୟନମୃଗବନ୍ଦିପାଶୀ । ଲାବଣ୍ୟଖନି କି ରଙ୍ଗେ ଜନନୀଙ୍କି ଜୁହାରେ ପ୍ରତିଦିନ ଆସି । ଆଶିଷ । ତୁଲେ ଦେଲେ ଚୁମ୍ବଯୁଗଳୀ । ମଣୋହି କୋଠାକୁ ଅବଧାନ ତାକୁ ଦିଅନ୍ତି ଆସି ବିପ୍ରଆଳୀ । ୨୩ । ମାଏ ବେଳେ ବେଳେ କବଳେ କବଳେ ସବତେ ସବତେ ରୋପଣେ । ପୀୟୁଷକଳପ କବଳ ଅଳପ ଅଶନ କରାନ୍ତେ ଆପଣେ । ରୁଚିକି । ପ୍ରକଟ ନ କରି ଅତିଶେ ।

---

ଉତ୍କୃଷ୍ଟ ଗୁଣସମୂହ ଲାଭ କରିଥିବା କୁନ୍ଦଲତା ନାମକ ସଖୀ ଆଡ଼କୁ, ଆକୂତତ୍ରୁଦ୍ଧିକଦୃଷ୍ଟି ଅର୍ଥାତ୍ ଅଭିପ୍ରାୟଯୁକ୍ତ ସ୍ଥୂଳଚକ୍ଷୁରେ ଚାହିଁଲା । ୧୮ । ହୀରାଙ୍କୁରରାଜି—କ୍ଷୁଦ୍ର ହୀରାଖଣ୍ଡ ପରି ଉଜ୍ଜ୍ୱଳ ଦାନ୍ତମାନଙ୍କୁ, ନାଡ଼ିଖୁରୀ—ଦଣ୍ଡଜ୍ଞାପକ ଘଣ୍ଟା, ମାଜଣା—ସ୍ନାନ, ମୁକୁରାସ୍ୟଶିରୀ—ଦର୍ପଣତୁଲ୍ୟ ମୁଖର ଶୋଭା । ୧୯ । କଳମାକୁନ୍ତଳ— କାନପାଖରେ ବାହାରିଥିବା କ୍ଷୁଦ୍ର କ୍ଷୁଦ୍ର କେଶ, ଅଳିକେ—ଲଲାଟରେ, କଞ୍ଜମଞ୍ଜିମାଳା— ପଦ୍ମବୀଜର ମାଳି । ୨୦ । କ୍ଷୀରୋଦଶାଟୀ— କ୍ଷୀରୋଦ୍ରୀ ପାଟଶାଢ଼ୀ; କ୍ଷୀରୋଦସମ୍ଭବା—ଲକ୍ଷ୍ମୀ, ସମ୍ଭୋଦରେ—ନଦୀସଙ୍ଗମ ସ୍ଥଳରେ, ଜମ୍ବୁନଦ— ଯେଉଁ ନଦୀର ତୀରରୁ ସୁନା ଉତ୍ପନ୍ନ ହୁଏ (ହରିଦ୍ୱାର) । ସୁରସରିତ—ସ୍ୱର୍ଗଙ୍ଗା (ଶୁକ୍ଳାଭ) । ୨୧ । ଜୟଦେବକୃତି— ଗୀତଗୋବିନ୍ଦ, ଗଜେନ୍ଦ୍ର ବିପତ୍ତିମୋକ୍ଷଣ— ଗଜୋଦ୍ଧାରଣ ସ୍ତବ, ଗୋପାଙ୍ଗନାଗୀତା—ଭାଗବତ ରାସପଞ୍ଚାଧ୍ୟାୟୀର ପ୍ରସିଦ୍ଧ ଗୋପୀଗୀତା, ଆରୁମନ୍ଦାର—ଆରୁଆ (ତାମିଲ ଭାଷା)ରେ ଲେଖା ହୋଇଥିବା ସ୍ତୋତ୍ର ? କପିଳା ଧେନୁ—ହଳଦିଆ କଳାମିଶା ବର୍ଣ୍ଣର ଗାଈ, କୋଇଲା ଗାଈ, ପ୍ଲକ୍ଷ—ଅଶ୍ୱତ୍ଥ ବା ଓସ୍ତଗଛ । ବଢ଼ିଲେ—ସମାପ୍ତ ହେଲେ । ୨୨ । ଆଶିଷଗ୍ରହଣ —ବ୍ରାହ୍ମଣମାନଙ୍କଠାରୁ ଆଶୀର୍ବାଦ ଗ୍ରହଣବିଧି । କାଶୀଶସମାଧିଖଣ୍ଡନା—ଶିବଙ୍କର ଯୋଗ ଭାଙ୍ଗିବାରେ କ୍ଷମା । ଶ୍ରୀଭୁଜପଇଠ—ଚନ୍ଦ୍ରକଳାର କରତଳର ଭରା, ଭାର । ୨୩ । ଜନନୟନମୃଗବନ୍ଧୀପାଶୀ—ମନୁଷ୍ୟମାନଙ୍କର ନୟନରୂପ ମୃଗକୁ

ସୁରଭିତ ବନେ ଚିର ଆଚମନେ ରସେ ମଦଗଜଗତି ସେ । ୨୪ । ଜନୟିତ୍ରୀ ଲାଗି ଚେଲାଞ୍ଚଳେ ଯୋଗିମୋହନମୁଖୀ ମୁଖ ପୋଛେ । କର୍ପୂର ବିଡ଼ିଆ ବିଡ଼ିଆଳୀ ଆଳୀ ଘେନି ହାଜର ହୋଏ ପଛେ । ତାମ୍ବୁଳ । ଯୋଗାଣ ଫରମାସୀ ମାଏ । ଅନ୍ତର ହୁଅନ୍ତେ ଘେରନ୍ତି ସନ୍ତତେ ଖଟିବା ଖଟଣୀ ବାମାଏ । ୨୫ । ଦରସ୍ଫୁଟରସ ପ୍ରସଙ୍ଗ ସରସ ସମ୍ଭାଷଣେ କ୍ଷଣେ ବସଇ । କ୍ଷଣେ ପ୍ରାତରିନ୍ଦୀବରଶୋଭା ବନ୍ଦିବାସପରି ନେତ୍ର ଦିଶଇ । ଯହୁଁ ସେ । ଅପହୃତ୍ ହୁଏ କିଶୋରୀ । ଦ୍ୱିତୀୟ ମାଜଣା ଅବକାଶ ଜଣା ହୋଏ ଘେରନ୍ତି ପରିଚାରୀ । ୨୬ । ବ୍ୟୋମଲତାଫଳ ମାର୍ତ୍ତଣ୍ଡ ମଣ୍ଡଳ ବାସରାବସାନ କ୍ରମରେ । ପାଚି ପ୍ରତୀଚୀସମୁଦ୍ରେ ଝଡ଼ିପଡୁଁ କୁମୁଦେ ମାତନ୍ତେ ଭ୍ରମରେ । କିଶୋରୀ । ବଢ଼ାଇ ସନ୍ଧ୍ୟା ଦରଶନ । ସଂଗୀତସଭାକୁ ପୁଆଏ ଶୋଭାକୁ ଏହି ତା ନୀତି ନିତି ଦିନ । ୨୭ । ଯାହା ପାପଲ୍ଲବ ମହାପାପ ଲବ ନ ରଖେ ସ୍ମରଣକ୍ଷଣରେ । ଯାହା ଦରଚକ୍ର ଜନଦରଚକ୍ର ଚୂର୍ଣ୍ଣ କରନ୍ତି ବୀକ୍ଷଣରେ । ସେ ପ୍ରଭୁ । ଚରଣ-ପଙ୍କଜ ଯୁଗଳେ । ଜଳନ୍ତରଭୂପ ମାନସମଧୁପ ମରନ୍ଦପାନଲୋଭେ ମିଳେ । ୨୮ । ଉନତ୍ରିଂଶ ପଦ କଳିତ ଏ ଛାନ୍ଦ ନାମ କୁମାରୀ କଉତୁକ । କୁମାର ବଳୟ ହୃଦକୁବଳୟ ଅଖଣ୍ଡମଣ୍ଡଳ ମୃଗାଙ୍କ । ନୃପତି । ଯୁବତୀ ନିତି ଆଦରଶ । ମୂରୁଖ ତରୁଣୀଗଣ ହେବେ ଗୁଣି ମନେ କଲେ ଏହା ସରଶ । ୨୯ ।



---

ବାନ୍ଧିବା ଫାସସ୍ୱରୂପା (ଚନ୍ଦ୍ରକଳା) । ୨୪ । କବଳେ କବଳେ—ଗୁଣ୍ଡାଏ ଗୁଣ୍ଡାଏ । ସବତେ ସବତେ—ରାଣ ପକାଇ । ରୋପଣ—ଅର୍ପଣ, ପୀୟୁଷକଳ୍ପ—ଅମୃତତୁଲ୍ୟ । ଅତିଶେ—ଅତିଶୟରେ । ସୁରଭିତବନେ— ସୁବାସିତ ଜଳରେ । ୨୬ । ପ୍ରାତରିନ୍ଦୀବରଶୋଭା-ବନ୍ଦୀବାସ ପରି—ସକାଳ ଅର୍ଦ୍ଧମୁଦ୍ରିତ ନୀଳକଇଁ ପରି ଆଖି ଦିଶେ, ଅପହୃତ୍—ନିଦରୁ ଉଠିବା । ୨୭ । ବ୍ୟୋମଲତା ... ଝଡ଼ିପଡୁ— ସୂର୍ଯ୍ୟମଣ୍ଡଳ ଆକାଶରୂପ ଲତାର ଫଳସ୍ୱରୂପ, ସେ ଫଳ ଶେଷବେଳକୁ ପାଚି ଅର୍ଥାତ୍ ଲାଲବର୍ଣ୍ଣ ଧରି ପରିପକ୍ୱ ହୋଇ ପ୍ରତୀଚୀ ସମୁଦ୍ରରେ (ପଶ୍ଚିମ ଦିଗର ସମୁଦ୍ରରେ) ଝଡ଼ି ପଡ଼ନ୍ତେ ଅର୍ଥାତ୍ ସନ୍ଧ୍ୟା ହୁଅନ୍ତେ । ସଙ୍ଗୀତ ... ସଙ୍ଗୀତସଭାକୁ ଶୋଭିତ କରେ । ୨୮ । ପାପଲ୍ଲବ—ପାଦକିଶଳୟ, ଲବ—କ୍ଷୁଦ୍ରାଂଶ, ଦରଚକ୍ର—ଶଙ୍ଖ ଓ ଚକ୍ର ଏବଂ ଭୟସମୂହ । ୨୯ । କୁମାରବଳୟ ... ଯୁବକ-ମଣ୍ଡଳଙ୍କ ହୃଦୟ କୁମୁଦ ପକ୍ଷରେ ପରିପୂର୍ଣ୍ଣମଣ୍ଡଳ ମୃଗାଙ୍କ (ଚନ୍ଦ୍ରମା) ପରି; ନିତି ଆଦରଶ—ଦୈନିକ ଆଦର୍ଶ ।



# ଅଷ୍ଟମ ଛାନ୍ଦ

## ରାଗ—କେଦାର ଚକ୍ରକେଳି ବାଣୀ
## କୁସୁମୋଦ୍‌ଗମ

ଏଥୁ ଅନନ୍ତରେ ଶୁଣ ସରସେ । ବଇଶାଖ ମାସ ବିଧୁଦିବସେ । ଶୁକ୍ଳପଞ୍ଚମୀ ଧନିଷ୍ଠାଖ୍ୟ ଋକ୍ଷ । ଶୁଭଚନ୍ଦ୍ର କରଣ ଗଣ ମୁଖ୍ୟ । ୧ । ଯୋଗ ସମୂହ ରାଜ ଶୁଭଯୋଗ । କରିଥିଲା ସେ ଦିନଯାକ ଭୋଗ । ସାରି ମଣୋହି ତାମ୍ବୁଳ ଭୋଜନ । ଘେନି ସଂଗତେ ପ୍ରିୟସଖୀଗଣ । ୨ । ଫୁଲ ମଣ୍ଡପେ ଜେମା ଚନ୍ଦ୍ରକଳା । ନ୍ୟାୟବଳ କେଳିରେ ବିଜେ କଲା । ଖେଳୁ ଖେଳୁ ତା ମୃଦୁ ଅଙ୍ଗଦେଶେ । ବିଳସିଲା ଅଳସଭାବ ଲେଶେ । ୩ । ଜୃମ୍ଭାଜୃମ୍ଭିତ ମୁଖକଳାନିଧି । ଘେରି ଦେଲା ବାହୁପାଶ ପରିଧି । ସାୟନ୍ତନ ଶ୍ୟାମଳ କଞ୍ଜଶିରୀ । ଛୁଇଁ ଆସିଲା ନୟନଶଫରୀ । ୪ । ଜାଣି ସଖୀ ହୃଦେ ତ୍ୱରା ପାଇଲେ । ଦନ୍ତଛତ୍ର ପଲ୍ୟଙ୍କ ବିଛାଇଲେ । ତହିଁ କେଶରୀ ତୂଳିକି ସଜାଇ । ଚନ୍ଦ୍ରଚୂର୍ଣ୍ଣେ ମିଶାଇ ଦଳଜାଇ । ୫ । ସଜ ବକୁଳ ଗର୍ଭଗତ କିଆ । ଫୁଲ ବାଲିଶ ଆଦି ସବୁ ନୂଆ । ମୁଖ୍ୟ ମଖମଲ ସନ୍ଧି ମୁତୁଳୀ । ସ୍ଥାନ ଜାଣି ରଖିଲେ ପ୍ରିୟ ଆଳୀ । ୬ । ଗାଢ଼ା ଗୁଲାବ ଦ୍ରବ୍ୟ ସିଞ୍ଚା ଝୁନା । କଲେ ଆସ୍ତରଣ କେହି ନବୀନା । ଛୁରିଅନା ଫୁଲି ଜାଲି ପରଦା । ଟେକି ଧଇଲା କେଉଁ ବିଶାରଦା । ୭ । କୁନ୍ଦଲତା ଉପରେ ଭୁଜଭର । ଦେଇ ଉଭା ହୁଅନ୍ତେ ବାଳାବର । ଦାସୀମାନେ ରଖି ସେକାଳେ ଟାକ । ଦେଲେ ପହଣ୍ଡ ସାବଧାନ ଡାକ । ୮ । ନୀଳପାହାଡ଼ାରେ ପାଦଯୁଗଳୀ । ନ୍ୟାସ କରନ୍ତେ ସେ ବିଶ୍ୱସଙ୍ଖାଳି । ସୂରନନ୍ଦନା ସଲିଳପ୍ରବାହ । ମଣ୍ଡି ଦେଲା କି ଶୋଣ-ଜଳରୁହ । ୯ । ହରଉସଙ୍ଗେ

---

**ଅଷ୍ଟମ ଛାନ୍ଦ**

୧ । ବିଧୁଦିବସ—ସୋମବାର । ୪ । ଜୃମ୍ଭାଜୃମ୍ଭିତ—ହାଇ ଦ୍ୱାରା ପ୍ରକାଶିତ, ବାହୁପାଶ ପରିଧି—ବାହୁପାଶ ବେଷ୍ଟନ । ସାୟନ୍ତନ— ସନ୍ଧ୍ୟାକାଳୀନ, କଞ୍ଜଶିରୀ—ପଦ୍ମଶୋଭା । (ଆଖି ବୁଜି ହୋଇ ଆସିଲା) । ନୟନଶଫରୀ— ନେତ୍ରରୂପ ମୀନ । ୫ । ଦନ୍ତଛତ୍ର—ହାତୀଦାନ୍ତଦ୍ୱାରା ଆଚ୍ଛାଦିତ । କେଶରୀତୂଳି—ନାଗେଶ୍ୱର ଧୂଳିପୂର୍ଣ୍ଣ ତୂଳାଶେଯ । ଚନ୍ଦ୍ରଚୂର୍ଣ୍ଣେ—କର୍ପୂର ଚୂନାରେ, ଦଳଜାଇ—ଜାଇଫୁଲ ଦଳ ବା ପାଖୁଡ଼ା । ୭ । ଗୁଲାବଦ୍ରବ—ଗୋଲାପ ଅତର, ଝୁନା— ଏକପ୍ରକାର ସରୁ ଚାଦର । ଆସ୍ତରଣ— ଶଯ୍ୟା । ୮ । ଟାକ—ଅପେକ୍ଷା । ୯ । ସୂରନନ୍ଦନା

ଗିରିଜେମା ପରି । ଦନ୍ତପର୍ଯ୍ୟଙ୍କେ ପହୁଡ଼ିଲା ଗୋରୀ । ସିତ ଅସିତ ଚାମରଯୁଗଳୀ । ଧରି ଖଟିଲେ ନୀଳା ମୋତିମାଳୀ । ୧୦ । ଚମ୍ପା ମାଳୀ ଘେନି ଫୁଲ ଆଡ଼େଣୀ । ମନ୍ଦ ମନ୍ଦ ଚାଲିଲା ମନ ଜାଣି । ବସି ଆଶ୍ୱାସି କୁନ୍ଦନ ରତନ । କଲେ ପାଦ ସମ୍ବାହନ ଯତନ । ୧୧ । କେହି ଟାକି ଅପହୁଡ଼ ସମୟ । ଜାଗରୂକ ଅଛନ୍ତି ସଖୀଚୟ । ବାସପାଣି ଭରି ହେମମଞ୍ଜରୀ । ଜଗି ରହିଛି ଧରି ହେମଝରି । ୧୨ । କରେ ଧରି ଝୁନାକଷ ଚାଦର । ହେଲା ଲବଙ୍ଗକଳିକା ହାଜର । ହେମ ହଂସେ ବିଡ଼ିଆ ବିଡ଼ା ଭରି । ଗୁଣ ଜଳଧି ଅଛି ଅନୁସରି । ୧୩ । ଚିତ୍ରଲେଖା କନକ ପିକଦାନୀ । ଅତି ପ୍ରମୋଦେ ଅଛି କରେ ଘେନି । ଧରି କିଙ୍କିଣୀ ଝୁମୁକୀ କଠାଉ । ରସକଳା ଝଟକେ ଦାଉ ଦାଉ । ୧୪ । ଶୋଭାଲହରୀ ଘେନି ଗନ୍ଧସାର । ଚୂରି ମିଶାଇଅଛି ଘନସାର । ମୃଗମଦୁଁ ଭିନ୍ନ କରି ରୋଚନା । ଅତି ଯତ୍ନେ ଦଳୁଛି ସୁଲୋଚନା । ୧୫ । ନବ କୁଙ୍କୁମ କୁଙ୍କୁମ ଦଳୁଛି । ନବନୀତେ କି ସିନ୍ଦୂର ଗୋଳୁଛି । କିଆ କରଜେ କଷୁଛି ପାନିଆ । ଝରାମଣି ବନାଉଛି ମାନିଆଁ । ୧୬ । ଜାଇଗଭା ନିବାଡୁଛି ସେବତୀ । ଝରା ସଜାଡୁଅଛି ଲୀଳାବତୀ । ପ୍ରେମମଞ୍ଜୁଳା ମଣ୍ଡନ ଚାଙ୍ଗଡ଼ା । ରଖି ଧରି ବରାହକେଶ ବିଡ଼ା । ୧୭ । କରୁଅଛି ମାଜିବାକୁ ଆରମ୍ଭ । କେହି ହାଟକ ବାସବାରିକୁମ୍ଭ । ପୁଞ୍ଜି ପୁଞ୍ଜି କରି ରଖୁଅଛନ୍ତି । କେହି ଖାଡ଼ିକୁଞ୍ଚା ଶାଢ଼ୀ ବାଛନ୍ତି । ୧୮ । ମଲ୍ଲୀ ନିଆଳୀ କେତକୀ ସୁମନା । ଚାରି ପରିଚାରୀଏ ଏକମନା । ଭୟ ପ୍ରମୋଦେ ଜଳେ ଅବଗାହି । ମରକତ ଚଉକି ନେଇ ବହି । ୧୯ । ମଣିମକର ଚାନ୍ଦନୀ ମଣ୍ଡପେ । ଧୀରେ ଥୋଇ ଜଗିଲେ ତା ସମୀପେ । ହେଲା ତୁରୀୟ ଯାମ ସମାଗମ । ଶୁଦ୍ଧ କୁଳୀରଲଗ୍ନ ଭୋଗ କ୍ଷମ । ୨୦ । ବାଳା ପୁଲକେ ଦିଶିଲା ସୁନ୍ଦର । ଚମକିଲା ଫୁଲଧନୁମନ୍ଦିର । ମଧ ହୋଇଲା ବୁକୁ ଦମ ଦମ । ହୃଦେ ଛୁଇଁଲା କିଛି କମ୍ପକ୍ରମ । ୨୧ । ଅପହୁଡ଼ ସମୟ ହେଲା ଆସି । ଋତୁ ଲଭିଲା ଲଉଲୀ ବୟସୀ ।

---

—ସୂର୍ଯ୍ୟକନ୍ୟା ଯମୁନା, ଶୋଣଜଳରୁହ —ରକ୍ତପଦ୍ମ । ୧୦ । ନୀଳା ମୋତିମାଳୀ— ଦୁଇଜଣ ସଖୀଙ୍କ ନାମ । ୧୧ । ଚମ୍ପାମାଳୀ କୁନ୍ଦନରତନ—ସଖୀଙ୍କ ନାମ । ଫୁଲଆଡ଼େଣୀ— ଫୁଲରେ ତିଆରି ଡ୍ରାସ, ପାଦସମ୍ବାହନ—ଗୋଡ଼ ମୋଡ଼ିବା । ୧୨ । ହେମ ମଞ୍ଜରୀ—ସଖୀ, ହେମଝରି—ସୁନାର ସୁରେଇ । ୧୩ । ଝୁନାକଷ ଚାଦର—ପାତଳ ରଞ୍ଜିତ ଚାଦର । ହେମହଂସେ —ସୁନାରେ ତିଆରି ହଂସ ଆକୃତିବିଶିଷ୍ଟ ଡବା । ୧୫ । ଗନ୍ଧସାର—ଚନ୍ଦନ, ଘନସାର— କର୍ପୂର, ମୃଗମଦୁ—କସ୍ତୁରୀରୁ, ରୋଚନା—ଗୋରୋଚନା । ୧୬ । କୁଙ୍କୁମ—ସଖୀର ନାମ, ନବନୀତ—ଲହୁଣୀ, କିଆ—ସଖୀର ନାମ, କରଜ—ନଖ, କଷୁଛି—ପରୀକ୍ଷା କରୁଛି, ଝରାମଣି—ସଖୀ, ମାନିଆ—ଫୁଲଗଭା । ୧୭ । ଝରା—ଫୁଲତୋଡ଼ା, ବରାହବାଳବିଡ଼ାରେ ଅଳଙ୍କାର ପ୍ରଭୃତି ସଫା ହୁଏ । ୧୮ । ଖାଡ଼ିକୁଞ୍ଚା ଶାଢ଼ୀ—ସୂକ୍ଷ୍ମଭାବରେ କୁଞ୍ଚା ହୋଇଥିବା ଶାଢ଼ୀ । ୨୦ । ତୁରୀୟ ଯାମ—ଚତୁର୍ଥ ପ୍ରହର । କୁଳୀରଲଗ୍ନ—କକଡ଼ାଲଗ୍ନ । ଭୋଗକ୍ଷମ ହେଲା— ଭୋଗ କରିବାକୁ ପ୍ରବେଶ କଲା । ୨୧ । ପୁଲକେ—ରୋମାଞ୍ଚିତ ହୋଇ । ୨୨ ।

ଚାରିଶର ରଖି ରତିନାୟକ । ଏକା ବିନ୍ଧିଲା କଙ୍କେଳୀ ସାୟକ । ୨୨ । ଢେମା ମନ ଲକ୍ଷ୍ୟ ଫୁଟି ଫିଟିଲା । ନିଜ ସିଂହଦୁଆରେ କି ଛୁଟିଲା । ଜାଣିପାରି ସେ କିଶୋରୀ ଈଶ୍ୱରୀ । ଅବିଳମ୍ବେ ମହୀକି ଅବତରି । ୨୩ । ସଖୀ ସମୂହେ ନ ଦେଇ ଦୃଷ୍ଟିକି । କଳା ସ୍ଥଳଜଳରୁହ ବୃଷ୍ଟିକି । ମଣିପାଦୁକାରେ ନାହିଁ ନଜର । ଅତି ବିଜନେ ହୋଇଲା ହାଜର । ୨୪ । ବାସବତୀ କି ସଂକେତ ପାଇଲା । ଏକା ଗହଣେ ସେହି ଗୋଡ଼ାଇଲା । ବାତବକ୍ରନାଳ ନୂଆ କମଳ । ପରି ନୁଆଇଁ ଶ୍ରୀମୁଖମଣ୍ଡଳ । ୨୫ । ଉରୁସନ୍ଧି ବାସେ ନୂଆ ଛଇଳା । ଯହୁଁ ନେତ୍ରଖଞ୍ଜନ ଖେଳାଇଲା । ନବଗବୟ ଶୃଙ୍ଗଡାବି ଅନ୍ତେ । ହେଲା ପଦ୍ମରାଗ ପରି ପରତେ । ୨୬ । କାଚଭିଭିରେ କିବା ଆଡ଼ମ୍ବର । ଦିଶେ ବନ୍ଧୁଜୀବ ପ୍ରତିବିମ୍ବର । ନିଜ ଗୋପୁର ଚିତ୍ର ଅର୍ଥେ ଅବା । ରୂପାଥାଳୀରେ ପ୍ରସୂନଧନବା । ୨୭ । ଗଇରିକ ଗୋଳାଇ ଅଛି ରଖି । ଦେଖି ମଣିଲା ପୂର୍ଣ୍ଣଚନ୍ଦ୍ରମୁଖୀ । ରତି ଭାଳକରି ବିନ୍ଦୁ ସୁନ୍ଦର । ସେହି ବାସେ ପୋଛିଲା କି ସିନ୍ଦୂର । ୨୮ । ତହୁଁ ତଳକୁ ପୁଣି ଦେଉଁ ଦୃଷ୍ଟି । ତହିଁ ଦେଖିଲା ସେହି ଶୋଭା ବୃଷ୍ଟି । ହେମ ପ୍ରାସାଦରେ ବସି ଦର୍ପକ । ଦ୍ୱାରେ ଫିଙ୍ଗିଦେଲା କି ପାନପିକ । ୨୯ । ତାକୁ କୁସୁମପ୍ରିୟ ବୋଲି ଜାଣି । ଦ୍ରବମୟ କୁସୁମେ କୁଶପାଣି । ସଂତର୍ପଣ ବିଧିରେ ମନକରି । ସ୍ୱର୍ଣ୍ଣପାତ୍ରରେ ତହୁଁ କିଛି ଭରି । ୩୦ । ରଖିଅଛି କି ସବୁ କରି ଠୂଳ । ସିଞ୍ଚି ପୂଳକ ଇନ୍ଦ୍ରନୀଳ ତିଳ । ଜାଣି ଯଉବନ ରାଜା ବିଜୟ । ମନେ ହେବାରୁ ସଂଭ୍ରମ ଉଦୟ । ୩୧ । ସେ ସମୟେ ସୁଷମା କଳାବତୀ । ହେଉଁ ଅତି ତରଳତରମତି । ଅଲକତ ସଂଭବଦ୍ରବଛରା । ହେମପ୍ରାଙ୍ଗଣେ ପକାଇଲା ପରା । ୩୨ । ଜଗଜ୍ଜୟ ସଂକଳ୍ପେ କାମରାଜା । କଲା ତ୍ରିକୋଣ ହେମଯନ୍ତ୍ର ପୂଜା । ଉପହାର ନିମନ୍ତେ କରି ଅବା । ସମରପିଛି ଅଭିନବ ଜବା । ୩୩ । ନିଜ ମନ୍ଦିର

---

କଙ୍କେଳୀସାୟକ—ଅଶୋକ ଫୁଲର ବାଣ । ୨୩ । ଢେମାମନଲକ୍ଷ୍ୟଫୁଟି ଫିଟିଲା ... ସେ ଶର ଚନ୍ଦ୍ରକଳା ମନରୂପ ଲକ୍ଷ୍ୟକୁ ଫୁଟାଇ ବା ଭେଦକରି ନିଜ ସିଂହଦ୍ୱାରକୁ ଚାଲିଗଲା କି ? ୨୪ । କଳାସ୍ଥଳ ... ସ୍ଥଳପଦ୍ମକୁ ବର୍ଷିଲା ଅର୍ଥାତ୍ ତଳଆଡ଼କୁ ଆଖି ପକାଇଲା । ୨୫ । ବାତବକ୍ରନାଳ—ପବନରେ ଯାହାର ନାଡ଼ ବଙ୍କା ହୋଇଅଛି । ୨୬ । ନବଗବୟ ... ଗବୟ (ଗୋଜାତୀୟ ଜୀବ)ର ନୂଆ ଶିଙ୍ଗରେ ନିର୍ମିତ ପେଡ଼ୀଭିତରେ ପଦ୍ମରାଗମଣି ଥିଲା ପରି ଜଣାଗଲା । ୨୭ । କାଚଭିଭିରେ— କାଚକାନ୍ଥରେ । ବନ୍ଧୁଜୀବ ପ୍ରତିବିମ୍ବ—ବଧୂଳିଫୁଲର ଛାୟା । ଗୋପୁର—ବହିର୍ଦ୍ୱାର । ପ୍ରସୂନଧନବା— ପୁଷ୍ପଧନ୍ୱା କନ୍ଦର୍ପ । ୨୮ । ଗୈରିକ—ଗେରୁ । ରତି ... ରତିଦେବୀ ନିଜ ଲଲାଟରେ ସୁନ୍ଦର ବିନ୍ଦୁଟିଏ ରଚନା କରିସାରି ଚନ୍ଦ୍ରକଳାର ସେହି ଲୁଗାରେ ସିନ୍ଦୂରକୁ ପୋଛି ଦେଲା କି ? ୨୯ । ହେମପ୍ରାସାଦ—ସୁନାର କୋଠା (ଚନ୍ଦ୍ରକଳାର ଶରୀର) । ଦର୍ପକ—କନ୍ଦର୍ପ । ୩୦ । ତାକୁ— ଚନ୍ଦ୍ରକଳାକୁ । ଦ୍ରବମୟକୁସୁମେ—ତରଳ ରକ୍ତବର୍ଣ୍ଣ ଫୁଲରସରେ । କୁଶପାଣି—ବ୍ରହ୍ମା, ସ୍ରଷ୍ଟା । ୩୨ । ସୁଷମାକଳାବତୀ—ଶୋଭା ଓ ସୂକ୍ଷ୍ମକଳାର ନିଧାନ (ଚନ୍ଦ୍ରକଳା) । ଅଲକତଦ୍ରବସମ୍ଭବ ଛରା— ଅଳତାରସର ଛିଞ୍ଚା ବିନ୍ଦୁ । ହେମପ୍ରାଙ୍ଗଣ—ସୁନା ଅଗଣା । ୩୩ ।

ଦେହଳୀର ପାଶେ । ରତି ବସିଛି ପ୍ରିୟ ଅଙ୍କଦେଶେ । ତାହା ଲାଗି କୁସୁମ୍ଭ ଚେଳାଞ୍ଚଳ । ପଡ଼ି ଦେହଳୀ କରିଛି ମଞ୍ଜୁଳ । ୩୪ । କିବା ନବୀନ ଯଉବନରମା । ମଣ୍ଡିବାକୁ ଚିତ୍ରରେ ଭାଲସୀମା । ରଖି ପରିଣତତର ତାମ୍ବୂଳ । ତହିଁ ଦଳିଅଛି କିଛି ହିଙ୍ଗୁଳ । ୩୫ । ଚଳଦଳଛବି ପରିପଛୀକି । ଦେଇ ମନ୍ମଥମନ୍ଦିର ମଛିକି । ତାହା ଲୋହିତରେ ଚିତା ଘେନିଲା । ସେହିପରି ସେ ସମୟ ମାନିଲା । ୩୬ । ରସ ବରଷା ସମୟ ପ୍ରବେଶେ । ସ୍ୱର୍ଣ୍ଣ ଭୂମିରେ ଇନ୍ଦ୍ରଗୋପ କି ସେ । ଭାଜି ସନ୍ଦେହ ହୁଅନ୍ତେ ନିଶ୍ଚୟ । କରି ହୃଦୟ ରସାନନ୍ଦମୟ । ୩୭ । ଉଭା ହୁଅନ୍ତେ ହସି ମଥା ପୋତି । ପାଟ ବଢ଼ାଇ ଦେଲା ବାସବତୀ । ଲାଜମୋହ ମିଶ୍ରିତ କରି ମନ । କରି ମଣିଭିତ୍ତି ଦିଗେ ଗମନ । ୩୮ । ପ୍ରତିବିମ୍ବିତ ବାଳାଶୋଭା ଚାହିଁ । ଲଭି ଦ୍ୱିଗୁଣ ସୁଖ ଚାନ୍ଦମୁହାଁ । କୁସୁମିତ ଦୁକୂଳକୁ ପାଲଟି । ଲାଗି ହୁଅନ୍ତେ ଲାଲ ପାଟଶାଟୀ । ୩୯ । ହେମଲତା ପଲ୍ଲବମୟ ହେଲା । ପରି ଦିଶିଲା ସେ ବରମହିଳା । ତେଣେ ଆଳୀଏ ମଣି ଚମତ୍କାର । କଲେ ପରସ୍ପରେ ଏହି ବିଚାର । ୪୦ । କାଳ ବେଳ କେ ନ ଥିବାର ନିତି । ଦେଖାଗଲା ଏ କି ବିଚିତ୍ର ରୀତି । କିଛି ଊଣା ଏକାଦଶ ବରଷ । ଜେମାମଣିକି ହୋଇଲା ବୟସ । ୪୧ । ଆମ୍ଭେମାନେ ତା ଲାଗି ଲୁଗାପରି । ଶିଶୁକାଳରୁ ଥାଇ ଅନୁସରି । ନ ଥିବାରେ ଆମ୍ଭେ ତାହା ସାଥିରେ । ସ୍ୱପ୍ନେ ଏକାନ୍ତ କରି ନାହିଁ ଥରେ । ୪୨ । ଲବେ ନ ବିଚାରି ଅନୁରୋଧକୁ । ବିଜେ କଲାବେଳେ ଅବରୋଧକୁ । ବାସବତୀକି ନେତ୍ରେ ଠାରି ଦେଲା । ଆଜ ବିଜନରେ କି ବିଚାରିଲା । ୪୩ । ଆଉ ଆଶ୍ରିତେ କି କାଳ ହରିବା । ବୁଝି ଯେ ଯାହା ଉପାୟ କରିବା । ଶୁଣି ଜଣେ କହିଲା ଏ ବାଣୀକି । ଏହିପରି ସିନା ହେବ ଏଣିକି । ୪୪ । କହୁଥିଲେ ବୋଲୁଥିବା ମଣିମା । ମନକଥାଟି କେହି ନ ଜାଣିମା । ନିରନ୍ତରେ ଏଥର ଫୁଲବାଣ । ଜେମାଠାରେ କରିବ ମନ୍ତ୍ରୀପଣ । ୪୫ । ଜାଣି ତାର ଏ ସମୟ ମରଜି । କେତେ ଗଲେନି ସ୍ୱସ୍ଥାନ ବରଜି । ଗତିଜବ ଚରଣରୁ ନିରାଶ । ହୋଇ କଲାନି ନୟନେ ନିବାସ । ୪୬ । ଅବିବେକ ପୃଥୁଭାବ ପଳାଇ । ସ୍ଥାନ କଲା ନିତମ୍ବବିମ୍ବେ ଯାଇ । ରସ କୃଶତା ହୃଦୟରୁ ଖସି । ହୋଇଲାନି ମଧ୍ୟଦେଶନିବାସୀ । ୪୭ । ତେଜି କାର୍କଶ ମନ ନଗରୀକି । କଲା ଅବଲମ୍ବ ବକ୍ଷସରିକି ।

---

ନବଛବା—ନୂଆ ମନ୍ଦାର ଫୁଲ । ୩୪ । ଦେହଳୀ—ଏରୁଣ୍ଡିବନ୍ଧ; ତାହା ଲାଗି କୁସୁମ୍ଭଚେଳାଞ୍ଚଳ—ରତିର ପିନ୍ଧା ରଙ୍ଗଶାଢ଼ୀର ପଣନ୍ତ । ୩୫ । ପରିଣତତର ତାମ୍ବୂଳ—ଅତି ପାଚିଲା ପାନ । ୩୬ । ମନ୍ମଥମନ୍ଦିର (କର୍ଣ୍ଣ) ଚଳଦଳଛବି (ଅଶ୍ୱତ୍ଥପତ୍ର) ରୂପ ପରିପଛୀକି (ଶତ୍ରୁକୁ) ମଛି ଦେଇ ତା ରକ୍ତରେ ଚିତା ଘେନିଲା କି ? ୩୭ । ରସବରଷା ସମୟ—ଜଳବୃଷ୍ଟି କାଳ, ଇନ୍ଦ୍ରଗୋପ—ସାଧବ ବୋହୂ ପୋକ । ୪୦ । ହେମଲତା ... ସୁବର୍ଣ୍ଣର ଲତାରେ ପତ୍ର ଧଇଲା କି ? ୪୬ । ଗତିଜବ ... ସେ ବର୍ତ୍ତମାନ ଚଞ୍ଚଳଗତି ଛାଡ଼ି ଚଞ୍ଚଳନେତ୍ରୀ ହେଲାଣି । ୪୭ ।

ଦେଖୁ ନାହଁ କି ଏବେ ସେ ଦ୍ୟୁତିକି । ଜଗତ୍ତ୍ରୟ ନୟନସମ୍ପତ୍ତିକି । ୪୮ । ଏହି ସମୟେ ଚେଟୀ ରତ୍ନଚୂଡ଼ି । ଦୃଶ୍ୟ ହୋଇଲା ଘେନି ଲାଟଶାଢ଼ୀ । ସେ କି ସଂଚରିବା ହେମମଞ୍ଜରୀ । ଅଛି ସିତ କୁସୁମଗୁଚ୍ଛ ଧରି । ୪୯ । ସଉରଭ ଲୋଭରେ ଭୃଙ୍ଗରାଜି । ଚାରିପାଶେ ଘେରୁଅଛି ଗରଜି । ଅବା ଆଳୀଙ୍କ ସନ୍ଦେହ ଛିଡ଼ିଲା । ଅଳିଶ୍ରେଣୀ ଦମ୍ଭେ ବ୍ୟୋମେ ଉଡ଼ିଲା । ୫୦ । ଖେଳା ଚପଳ କଳହଂସୀ ପରି । ଅତି ହରଷେ ଧାଇଁ ସହଚରୀ । ଲଜ୍ଜାନମ୍ରମୁଖୀକି ପରିହାସେ । ଘେରି ରହି ଜଣାଇଲେ ଏ ରସେ । ୫୧ । ସଖୀ ଏଡ଼େ ନିର୍ମଳ ହୃଦପଟ । ଅର୍ଦ୍ଧଅଙ୍ଗେ ବହିଲା ତ କପଟ । କରିଥାଉ ଯେ ତେଡ଼େ ଅନୁରାଗ । ଆଉ କେଉଁ ଭାଗ୍ୟରୁ ଦେବୁ ଭାଗ । ୫୨ । ଲୁଚାଇଲେ କି ଲୁଚେ ଏହି ମାନ । ଫୁଲବାସନା ମାନଇଁ କି ଆନ । ଘନ ଆଛନ୍ନ କଲେ ଲୋକନେତ୍ର । ଘନେ ଆଛନ୍ନ ହୁଅଇ କି ମିତ୍ର । ୫୩ । ଦେଇ ଶିଖରେ କରକିଶଳୟ । ଜେମା ଲୁଚାଉଛୁ କି ସୁରାଳୟ । କର କ୍ରୋଡ଼େ କି ସମୁଦ୍ର ଲୁଚିବ । ସତ୍ୟ ହେଲେ ଏ କାହାକୁ ରୁଚିବ । ୫୪ । ଛାଇପରି କରି ତୋର ଭଜନ । ଏତେ ମାତ୍ରକୁ ନୋହିଲୁଁ ଭାଜନ । ଯେତେବେଳେ କୁରଙ୍ଗଶିଶୁଦୃଶା । ନେବୁ ରମଣଅଙ୍କେ ବସି ନିଶା । ୫୫ । ମଞ୍ଜୁ ମଞ୍ଜୀର ବାଚାଳ ରସନା । କିଛି କହିବେ ଏହି ଦୁହେଁ ସିନା । ତୁ ତ କହିବା ପରି ଦିଶୁ ନାହିଁ । ପଚାରିବାକୁ ଆମ୍ଭ ବଳ କାହିଁ । ୫୬ । ଶୁଣି ଲବଙ୍ଗକଳିକା ହସିଲା । ଛଳି ସଖୀଙ୍କି ଏ ବାଣୀ ଭାଷିଲା । ମନ ଧରି କହୁଅଛି ସହୀକି । କାଳଯାକ ସେବାଫଳ ଏହି କି । ୫୭ । ନେତ୍ରସମ୍ପତ୍ତି କିଛି ନ ଦେଖିବ । ଭିତ୍ତିତଟରେ କେ ପୁଣି ଲାଖିବ । ଦିନେ ହେଲେ କି ମରଦନ ବେଳେ । ସ୍ତନତଟକୁ ନ ଦେଖିବା ତୋଳେ । ୫୮ । ଶିଶୁଶଶୀ ତ ସବୁ ଦେବ କହି । ଆଉ ବଡ଼ ବଡ଼ଙ୍କ ଯାଏ କାହିଁ । ବାଳା ବୋଲିବ ଅବା ତହିଁ ବାସ । ଥିବ ନିବିଡ଼େ କାହିଁ ଅବକାଶ । ୫୯ । ବାସ ସିନା ସମସ୍ତ ପ୍ରକାଶିବ । ପୁଣି ରଦବାସ ତୁଳେ ମିଶିବ ।

---

ଅବିବେକ ... ବିବେକଶୂନ୍ୟତାରୂପ ସ୍ଥୂଳତା ପଳାଇ ନିତମ୍ବରେ ରହିଲା ଅର୍ଥାତ୍ ବିବେକ ବୃଦ୍ଧି ହେଲା ଓ ନିତମ୍ବ ସ୍ଥୂଳ ହେଲା । ରସକୃଶତା ... କ୍ଷୀଣରସଭାବ ହୃଦୟରୁ ଯାଇ ମଧ୍ୟଦେଶନିବାସୀ ହେଲାଣି (କଟୀଦେଶରେ ବାସ କଲାଣି) ଅର୍ଥାତ୍ ହୃଦୟ ରସପୂର୍ଣ୍ଣ ଓ କଟୀ କ୍ଷୀଣ ହେଲାଣି । ୪୮ । କର୍କଶତା ମନରୂପ ନଗରକୁ ଛାଡ଼ି ଏବେ ଏହାର ବକ୍ଷ ଦେଶରେ ବାସ କରିଛି (ଏହାର କୁଚଦ୍ୱୟ ଏବେ କର୍କଶ ହେଲାଣି) । ୪୯ । ଚେଟୀ—ଦାସୀ, ଲାଟଶାଢ଼ୀ—ପୁରୁଣା ପିନ୍ଧାଶାଢ଼ୀ, ସଞ୍ଚରିବା ହେମମଞ୍ଜରୀ—ଚାଲୁଥିବା ସ୍ୱର୍ଣ୍ଣବୃନ୍ତ କି ? ସିତକୁସୁମଗୁଚ୍ଛ—ଧଳା ଫୁଲପେଣ୍ଡା । ୫୦ । ଅଳିଶ୍ରେଣୀଦମ୍ଭରେ—ଭ୍ରମର ପଂକ୍ତି ବ୍ୟାଜରେ । ୫୩ । ଘନ—ମେଘ, ମିତ୍ର— ସୂର୍ଯ୍ୟ । ୫୪ । ଦେଇ ଶିଖରେ ... ଅଗ୍ରଭାଗରେ କରରୂପ ନୂଆ ପତ୍ରଟିଏ ଘୋଡ଼ାଇ ଜେମା (ଚନ୍ଦ୍ରକଳା) ସୁରାଳୟ (ମେରୁପର୍ବତ)କୁ ଲୁଚାଉଅଛି କି ? । ୫୫ । କୁରଙ୍ଗଶିଶୁଦୃଶା— ବାଳମୃଗାକ୍ଷୀ । ୫୬ । ମଞ୍ଜୁ ମଞ୍ଜୀର—ମନୋହର ନୂପୁର (ଚରଣ ଅଳଙ୍କାର), ରସନା—ଚନ୍ଦ୍ରହାର (ଅଣ୍ଟାର ଅଳଙ୍କାର) । ୫୮ । ଭିତ୍ତିତଟରେ—କାନ୍ଥ ପାଖରେ । ୫୯ । ଶିଶୁ ଶଶୀ—ବାଳଚନ୍ଦ୍ର (ନଖକ୍ଷତ),

ଦୁହେଁ ମିଶି କରିବେ ସବୁ ଜଣା । ଆହା କି କରିବଟି ସୁଲକ୍ଷଣା । ୬୦ । ଏବଂବିଧ ପରିହାସ ନ ସରୁ । ସରୁମଧା ଯାଇଁ ଜେମା ପାଶରୁ । ଜଣାଇଲା ଶ୍ରୀ ମହାଦେଈ ପାଶେ । ସେ ତ ଜେମା ଜନନୀ ଅତି ତୋଷେ । ୬୧ । ନିଜ କରରୋପିତ ସୁନାଲତା । ସତେ ହୋଇଲା ମଣି କୁସୁମିତା । ମୋଦ ଆଖେଟେ ଚିତ୍ତକୁ ସଧାଇ । ଦେଲେ ନିଜ ଅଙ୍ଗଭୂଷା ବଧାଇ । ୬୨ । ଏ ସମୟେ ଭେଟି ଅନ୍ୟ ବନିତା । ପାଟକଠିନୀକରରତ୍ନସୁତା । ଜେମା କୁସୁମୋତ୍ସବ ଯୋଗ ଧାଟୀ । ଲେଖି ବଢ଼ାଇଦେଲା ପତ୍ରିକାଟି । ୬୩ । ମହାଦେବୀ ତ ପରମ ବିଦୁଷୀ । ତହିଁ ଚାହିଁ ସୁଭାଗ୍ୟ ଯୋଗରାଶି । ଗଦ ଗଦ ସ୍ୱରେ ହୋଇ ସହାସ । କଲେ ଶରମନ୍ଦିର ଫରମାସ । ୬୪ । ଆଜ୍ଞା ପ୍ରମାଣେ ବାଳା ସହଚରୀ । ଘେନି ସଙ୍ଗତେ ସର୍ବପରିଚାରୀ । ରାମ ବିବାହଗୀତ ହୁଳହୁଳି । ନାଦେ ଭରତି କଲେ ମହୀସ୍ଥଳୀ । ୬୫ । ବୀଣା ରବା ପଖାଉଜ ମର୍ଦଳ । ଭେରୀ ଆରବୀ ତେଲିଙ୍ଗୀ କଂସାଳ । ଆଦ୍ୟ ବାଦ୍ୟ ନାଦେ ସେ ଭୂମଣ୍ଡଳୀ । ସିନ୍ଧୁ ତୁଲେ କି ଆରମ୍ଭିଲା କଳି । ୬୬ । ଅତିପ୍ରବଳ ହୋଇ ବାଜୁଁ ବାଜା । ଉଠିଆସି ସଭାରୁ ମହାରାଜା । ଦେବୀ ପ୍ରମୋଦ ଭେଟରୁ ଜାଣିଲେ । ଯତ୍ନ କର ବୋଲି ମୋଦେ ଭଣିଲେ । ୬୭ । ତହୁଁ ବାଳା ସଖୀ ସର୍ବ ବିଦ୍ୟୋଷୀ । ମାଷ ତଣ୍ଡୁଳେ ବନାଇଲେ କୋଷ୍ଠୀ । ଚାରିକୋଣେ-ପଞ୍ଚବର୍ଣ୍ଣ କୋଠୀର । ସ୍ଥିରତର ପୋତିଲେ ଚାରି ତୀର । ୬୮ । ଚାରି ପ୍ରହର କରିବାକୁ ରକ୍ଷା । ଚାରି ପ୍ରହାର ପୋତିଲେ କି ଦକ୍ଷା । ରସକଳା ହସି ବୋଲେ ତହିଁ କି । ବାଳା ସମ୍ଭାଳି ପାରିବ ନାହିଁ କି । ୬୯ । ଏକ ଅତନୁ ମାରର ଏ ଗୁଣ । ଏବେ ସତନୁ ଚାରି ମାରଗଣ । ଜଗିରହିଲେ ରଜନୀ ଦିବସ । ସୁକୁମାରୀ ନୋହିବ କି ବିବଶ । ୭୦ । ପୁଣି ଦେଲେ ଚାରୁ ଚେଳ ବେଢ଼ାଇ । ଦେଲା ଏହି ଉହକୁ ସେ ବଢ଼ାଇ । ହରି ଆଣି ତ୍ରିଲୋକ ସମ୍ପତ୍ତିକି । ତହିଁ ଲୁଚାଇବ ପ୍ରଜାପତିକି । ୭୧ । ଚାରିପାରୁଶେ ଶିଶୁରମ୍ଭାସ୍ତମ୍ଭ । ପାଖେ ରଖିଲେ ସୁନା ପୂର୍ଣ୍ଣକୁମ୍ଭ ।

---

ବାସ—ବସ୍ତ୍ର, ଅବକାଶ—ସ୍ଥାନ । ୬୦ । ରଦବାସ—ଅଧର । ୬୧ । ସରୁମଧା— ଜଣେ ସଖୀ, ମହାଦେଈ—ଚନ୍ଦ୍ରକଳାର ମା । ୬୨ । ମୋଦଆଖେଟେ ... ଆନନ୍ଦରୂପ ମୃଗୟାରେ ମନକୁ ସାଧନ କରି ଅର୍ଥାତ୍ ମନରେ ପ୍ରକୃତ ଆନନ୍ଦ ଅନୁଭବ କରି । ବଧାଇ—ପାରିତୋଷିକ, ଉପହାର । ୬୩ । ପାଟକଠିନୀକରରତ୍ନସୁତା—ପ୍ରଧାନ ଜ୍ୟୋତିଷୀ ଖଡ଼ୀରତ୍ନଙ୍କ ଝିଅ । କୁସୁମୋତ୍ସବଯୋଗଧାଟୀ—ଋତୁମତୀ ହେବା ଯୋଗନକ୍ଷତ୍ରାଦିର ଜ୍ୟୋତିଷ ଗଣନା । ୬୪ । ଶରମନ୍ଦିର—କ୍ଷତ୍ରିୟ କନ୍ୟାର ପ୍ରଥମ ଋତୁସ୍ନାନରେ କରାଯିବା ଉତ୍ସବ । (ପରେ ଏହି ଉତ୍ସବର ବର୍ଣ୍ଣନା ହେଉଛି) । ୬୮ । ମାଷ—ବିରୀ; ସ୍ଥିରତର—ଦୃଢ଼ଭାବରେ । ୭୦ । ଶରୀର ନ ଥିବା ଏକ ମାର (କନ୍ଦର୍ପ)ର ତ ଏତେ ଗୁଣ, ବର୍ତ୍ତମାନ ଶରୀର ଥିବା ଚାରିଗୋଟା ମାର୍ଗଣ (ଶର) ଦିନରାତି ଜଗି ରହିଲେ ଏ ବାଳିକା ବିବଶ (ଅସ୍ଥିର) ହୋଇ ପଡ଼ିବ ନାହିଁ କି ? । ୭୧ । ପୁଣି ଦେଲେ ... ତା ପରେ ସଖୀମାନେ

ପିକବଲ୍ଲଭପଲ୍ଲବ ମାଳିକା । କଲେ ତୋରଣ ତରୁଣ ବାଳିକା । ୭୨ । ଟାଣିଦେଲେ ବିଚିତ୍ର ଚନ୍ଦ୍ରାତପ । କୋଣେ ଲମ୍ୱାଇ ନୂଆ କୁଞ୍ଚ ଥୋପ । ଜେମାରୁଚି ଜିଣିଲା ସାତଦ୍ୱୀପ । ବୋଲି ସୂର୍ପେ ରଖିଲେ ସାତଦୀପ । ୭୩ । ତଦନନ୍ତର ତରୁଣୀବରଙ୍କୁ । ବିଜେ କରାଇ ଶରମନ୍ଦିରକୁ । ଝିଲୀ ଖଜା ଖଇରଚୁର ନାଡ଼ୀ । ଲଡୁ ବସନ୍ତ ଆରିଷା ପାପୁଡ଼ି । ୭୪ । ଜଗନ୍ନାଥବଲ୍ଲଭ ହଂସକେଳି । ମନୋହର ଡାଳିମ୍ବ ସରପୁଳୀ । ଖଜା ପେଡ଼ା ଦିବ୍ୟପୁରୀ ତ୍ରିପୁରୀ । ଖଣ୍ଡମଣ୍ଡା କାନ୍ତି ପୁର ଇଣ୍ଡୁରି । ୭୫ । ପାରିଜାତ ସରଖଇ ଖୁରୁମା । ସର ସରପାପୁଡ଼ି ଅନୁପମା । କ୍ଷୀରି କ୍ଷିରୀସା ବାସ ଅଟକାଳି । ବଡ଼ା ସୁପୁରୀ କାକରା ଶୁଆଳୀ । ୭୬ । ଦେବା ନେବା ଖାଇବା ରଖାଇବା । ବାସି ଗିରି ସଦୃଶ ପକାଇବା । ଏହିପରି ସେ ରାଜଧାନୀଯାକ । ପ୍ରତି ମନ୍ଦିରେ ଉତ୍ସବ ଅସ୍ତୋକ । ୭୭ । ସେ ନଗରେ ତ ଦୁର୍ଲ୍ଲଭ ଅରାତି । ସେହି ସାତ ଦିନ ହେଲା ଅ-ରାତି । ସାରି ଶରପୁରବସା ବିଧିକି । ତହୁଁ ଅବତାରି ଶୋଭାନିଧିକି । ୭୮ । ଶତହ୍ରଦା ଗୋରୀଏ ଏକମେଳେ । ସାତ ଶାତକୁମ୍ଭ କୁମ୍ଭମଙ୍ଗଳେ । କାହିଁ କୁଙ୍କୁମ କାହିଁ ଗନ୍ଧସାର । କାହିଁ ଭରି କୁରଙ୍ଗମଦସାର । ୭୯ । ଦଳି ଗୋଳି ସେ ସକଳ ଶୁଭାଙ୍ଗୀ । ପରସ୍ପରେ ହୋଇଲେ ଫିଙ୍ଗାଫିଙ୍ଗି । ଏକ ଉପରେ ପଡ଼ିଲେ ଆରକେ । ଦେଖା ନାହିଁ ସେ ଉତ୍ସବ ତ୍ରିଲୋକେ । ୮୦ । ନୀରେ ପନୀରେ ତଡ଼ ଉଛୁଳିଲେ । ସ୍ନାନ କରାଇ ନାନା ତୀର୍ଥଜଳେ । ଦିବ୍ୟ କଷାବାସରେ ଅଙ୍ଗ ପୋଛି । ଦେଲେ ପ୍ରଳମ୍ବ କେଶପାଶ ଉଞ୍ଛି । ୮୧ । ନୂଆବାସ ନବ ରତ୍ନାଭରଣ । କରି ଜଗତୀଭୂଷାକୁ ଶରଣ । ଧନ୍ୟ ମଣିଲେ ନିଜ ଜନମକୁ । ଘେନି ବାଳା ଅଙ୍ଗୀକାର କ୍ରମକୁ । ୮୨ । ଦେଲେ ଅଣାଇ ମୁଖ୍ୟ ଦ୍ୱିଜକୁଳ । ଧେନୁ ଧରା ହିରଣ୍ୟ ଅନ୍ନ ଚେଳ । ଦାନାନନ୍ତରେ କୁଶେ ତୀର୍ଥୋଦକ । ଘେନି ପୁରୋଧା କଲେ ଅଭିଷେକ । ୮୩ । ଇଷ୍ଟ ଦେବତା ତ୍ରିପୁରସୁନ୍ଦରୀ ।

---

ସେହି ଶରମନ୍ଦିରକୁ ଚାରୁଚେଳ (ସୁନ୍ଦର ବସ୍ତ୍ର) ଦ୍ୱାରା ଆବୃତ କରିଦେଲେ । ସେ ଆବରଣ ଏହି ଊହ (ଅନୁମାନ)କୁ ବଢ଼ାଇଦେଲା ଅର୍ଥାତ୍ ତହିଁରୁ ଏପରି ଅନୁମାନ ହେଲା—ବ୍ରହ୍ମ ତିନିଭୁବନର ସମ୍ପତ୍ତିକି ଚୋରାଇ ଆଣି ଏହିଠାରେ ଲୁଚାଇବ କି ? । ୭୨ । ପିକବଲ୍ଲଭ ... ଆମ୍ବଗଛର ନୂଆପତ୍ର । ୭୩ । ଟାଣିଦେଲେ ... "ସୁନ୍ଦର ଚାନ୍ଦୁଆ ଟାଣିଦେଇ ତା ଚାରିକୋଣରେ ନୂଆଲୁଗା କୁଞ୍ଚ ଥୋପ କରି ଓହଳାଇ ଦେଲେ । ସାତଦ୍ୱୀପ—ପ୍ରାଚୀନ ମତରେ ପୃଥିବୀ ସାତଗୋଟି ଦ୍ୱୀପର ସମଷ୍ଟି, ସୂର୍ପ—କୁଲା । ୭୭ । ଅସ୍ତୋକ ଉତ୍ସବ—ବଡ଼ ଉତ୍ସବ । ୭୮ । ଅରାତି—ଶତ୍ରୁ ଓ ରାତିର ଅଭାବ (ଦିବସ) । ଶରପୁରବସା ବିଧି—ଶରମନ୍ଦିରରେ ବସିବା ବିଧାନ । ୭୯ । ଶତହ୍ରଦା ଗୋରୀଏ—ବିଜୁଳି ପରି ଗୌରାଙ୍ଗୀମାନେ; ସାତ ଶାତକୁମ୍ଭ କୁମ୍ଭମଣ୍ଡଳେ—ସାତଗୋଟି ସୁନା ମାଠିଆରେ । କୁରଙ୍ଗ ମଦସାର—ଉତ୍କୃଷ୍ଟ କସ୍ତୁରୀ । ୮୦ । ଶୁଭାଙ୍ଗୀ—ସୁନ୍ଦରୀ ସ୍ତ୍ରୀ । ୮୧ । ପନୀର— ସୁବାସିତ ଜଳ, ତଡ଼—ପ୍ରାନ୍ତ (ସେହି ମନ୍ଦିରର), ଉଛୁଳିଲେ—ଉଛୁଳାଇ ଦେଲେ । କଷାବାସ— ରଞ୍ଜିତ ବସ୍ତ୍ର । ୮୩ । ଧେନୁ—ଗାଈ, ଧରା— ଭୂମି, ହିରଣ୍ୟ—ସୁନା, ଚେଳ—ବସ୍ତ୍ର,

ଦରଶନବିଜୟ ବେଳ ଶିରୀ । ଛାନ୍ଦ ବିସ୍ତାର ହେବା ଭୟେ ଦବି । ଆଉ ବର୍ଣ୍ଣନା କଲା ନାହିଁ କବି । ୮୪ । ଠାକୁରାଣୀଙ୍କ ଚଳନ୍ତି ପ୍ରତିମା । ପରି ବିରାଜିଲା ସେ ରାଜଜେମା । ଜୀବ ଅବା ପ୍ରତିବିମ୍ବେ ଘଟିଲା । ସେ କି ଜଗଜ୍ଜନନୀଙ୍କି ଭେଟିଲା । ୮୫ । ଖଞ୍ଜି ପ୍ରସାଦ ଫୁଲମାଳା ଗଳେ । ତହୁଁ ବିଜେ କରାଇଲେ ସଲୀଳେ । ଭେଟାଇବାକୁ ନେଉଁ ଜନନୀଙ୍କି । ବରବାରଣରାଜଗମନୀକି । ୮୬ । ଦ୍ୱାରେ ପ୍ରବେଶ ହେଲା କ୍ଷଣେ ବାଳା । ଦେବୀ ନିଦେଶୁଁ ଆସି ବାଳାମାଳା । ହୁଳହୁଳିମିଶା ଗୀତ ଗାଇଲେ । ଅନ୍ନ ଗୋମୟରେ ନିଉଁଛାଇଲେ । ୮୭ । ଚନ୍ଦ୍ରାନନାର ବନ୍ଦାପନା ବିଧି । ସାରି ସକଳ କାମକଳାନିଧି । ମୃଦୁ ସୁନ୍ଦର ଶ୍ରୀହସ୍ତେ ଜେମାର । ଦିଆଇଲେ ଅର୍ଘ୍ୟକୁ ଅର୍ଯ୍ୟମାର । ୮୮ । ଉଭାକଲେ ମାତାଙ୍କ ଆଗେ ନେଇ । ଦେଲେ ଯୋଡ଼ା ପାଟଶାଢ଼ୀ ବଢ଼ାଇ । ଗୁରୁତରମନ୍ଦାକ୍ଷେ ମନ୍ଦେ ହସି । ନିଉଁଛାଳି କରି ଶୋଭାସରସୀ । ୮୯ । ମହୀ ମଥାରେ ଛୁଇଁ ଜୁହାରିଲା । ରାମା ଉପମା ମଣ୍ଡଳୀ ସାରିଲା । ଟୋଳି ଜନନୀ ସ୍ନେହସ୍ରୋତେ ପଡ଼ି । ମୁଖଚନ୍ଦ୍ରରେ ଚୁମ୍ବି ଗାଢ଼େ ଭିଡ଼ି । ୯୦ । ଶିଶୁ ସମୟୁଁ ବଳିଆଇ ଗେଲେ । ଧରି ଚିବୁକ ଏ ଆଶିଷ ଦେଲେ । ଜେମା ହାତୀ ମୋ ନୟନସମ୍ପତ୍ତି । ବାବୁ ହୁଅ ପରମ ଭାଗ୍ୟବତୀ । ୯୧ । ଅନୁରୂପ ଚକ୍ରବର୍ତ୍ତୀ କୁମାର । କର ଗ୍ରହଣ କର ଧନ ମୋର । କାଳଯାକ ତୋ ପଦ ଅଲକତ । ନାଥ ମୁକୁଟ କରୁ ଆରକତ । ୯୨ । ଜୀଇ ଶଚୀର ପରି ଚିରକାଳ । ଗୁଣମଣ୍ଡଳେ ମଣ୍ଡ ଦୁଇ କୁଳ । କର ଧରାରେ ଧର୍ମକୁ ଅମନ୍ଦ । ହେଲା କୁସୁମୋଦ୍‌ଗମ ନାମ ଛାନ୍ଦ । ୯୩ । ନାଗାନ୍ତକ ଯାହାଙ୍କର ବାହନ । ଅରିଦରେ ଅରିଦର ଦହନ । ଦୁର୍ଗା ମାଧବ ପଦଯୁଗଦ୍ୱୟ । ଭଜେ ଶ୍ରୀରାମଚନ୍ଦ୍ର ଛୋଟରାୟ । ୯୪ ।



---

ପୁରୋଧା—ପୁରୋହିତ । ୮୫ । ପ୍ରତିବିମ୍ବ— ଛାୟା, ଜୀବ ... ଛାୟା ସଜୀବ ହୋଇ ଜଗଜ୍ଜନନୀ (ଦୁର୍ଗାଙ୍କୁ) ଭେଟିଲା କି ? ୮୬ । ସଲୀଳେ—କୌତୁକରେ । ୮୭ । ବାଳାମାଳା— ବାଳିକାସମୂହ । ନିଉଁଛାଇଲେ— ବନ୍ଦାଇଲେ । ୮୮ । ଅର୍ଯ୍ୟମା—ସୂର୍ଯ୍ୟ । ୮୯ । ଗୁରୁତର ମନ୍ଦାକ୍ଷେ—ଅତି ଲଜ୍ଜାରେ । ନିଉଛାଳି—ବନ୍ଦନା କରି, ଶୋଭାସରସୀ— ସୌନ୍ଦର୍ଯ୍ୟନିଧାନ (ଚନ୍ଦ୍ରକଳା) । ୯୨ । କାଳଯାକ ... ସବୁଦିନ ତୋ ପାଦ ଅଲକତ (ଅଳତା) ନାଥ ମୁକୁଟ (ସ୍ୱାମୀର ମୁକୁଟ)କୁ ଆରକ୍ତ କରୁ ଅର୍ଥାତ୍ ସବୁଦିନେ ସ୍ୱାମୀ ତୋର ପଦାନତ ହୋଇ ରହୁ । ୯୩ । ଗୁଣମଣ୍ଡଳେ— ଗୁଣସମୂହଦ୍ୱାରା । ଅମନ୍ଦ—ଉନ୍ନତ, ବଡ଼ । ୯୪ । ଅରିଦରେ—ଚକ୍ର ଓ ଶଙ୍ଖଦ୍ୱାରା, ଅରିଦର— ଶତ୍ରୁଭୟ । ନାଗାନ୍ତକ—ଗରୁଡ଼ ।



# ନବମ ଛାନ୍ଦ

## ରାଗ—ରସକୁଲ୍ୟା

### ନେପଥ୍ୟ ପଥ୍ୟ

ତଦନନ୍ତରେ ଶୁଣ ସହୃଦୟେ। ଦିନେ ଛେମା ଯାମତ୍ରୟ ସମୟେ। ପ୍ରିୟ ବୟସ୍ୟାଙ୍କୁ ଘେନି ସମୀପେ। ବିରାଜି ମୁକୁରମୟ ମଣ୍ଡପେ ସେ। ଲେଖିଲା ବିଚିତ୍ର ପଟ ଯେ। ଶୋଭାମୃତକୂପ ଜନନୀଙ୍କ ରୂପ ସେ ପଟେ କଲା ପ୍ରକଟ ହେ। ୧। ଉଣାମାତ୍ର ଚାଲି ଗିର ପଲକ। ବନାଇଲା ବାଳୀପ୍ରତିପ୍ରତୀକ। ସେହି ଶୋଭା ସେହି ମୃଦୁବୟସ। ଅକ୍ଷୀଣ ଦକ୍ଷିଣ ଦେଶର ବେଶ ସେ। ଲେଖିଲା ବାଳାରତନ ଯେ। ଦେଖି ଦେଖାଇବା ପ୍ରମୋଦ ଅମଳୁଁ ନୋହିଥିଲା ସାବଧାନ ଯେ। ୨। ଏହି ସମୟ ସଉଭାଗ୍ୟବଶେ। ସେ ପୁର ମଣିପ୍ରାଙ୍ଗଣ ପ୍ରଦେଶେ। ରଟିଲା କଠାଉଯୁତ କିଙ୍କିଣୀ। ଅତରକିତେ ବିଜେ କଲେ ରାଣୀ ତା। ଜାଣି ସେ ଜଗତୀଶୋଭା ଯେ। ଭିତ୍ତି ପ୍ରତିଫଳ ସଖୀଙ୍କ ମଣ୍ଡଳ ତୁଲେ ହେଲା ବେଗେ ଉଭା ଯେ। ୩। ଲଜ୍ଜା ଗଉରବ ମିଶ୍ରିତ ହାସ। ସୁଧାମୟ କରି ଦଶନବାସ। ବାସରେ କଲେ ହେଲେ ଅପ୍ରକଟ। ଝଟ ଝଟ ଦିଶିବାରୁ ସେ ପଟ ଯେ। ଛନ୍ନ କରି ନ ପାରିଲା ଯେ। ମେନାଙ୍କୁ ମୀନାଙ୍କପରନାରୀ ପରି ଜନନୀଙ୍କି ଜୁହାରିଲା ଯେ। ୪। ଆଶିଷପୂର୍ବକ ଅଶେଷ ଚୁମ୍ବେ। ଉଲ୍ଲସି ଘଞ୍ଚ ରୋମାଞ୍ଚକଦମ୍ବେ। ତନୁଜାକୁ ବିଜେ କରାଇ କୋଳେ। ତନୁ ଜାକୁ ଜାକୁ ପ୍ରଣୟବଳେ ସେ। ସେ ଚିତ୍ରେ ପଡ଼ିଲା ଦୃଷ୍ଟି ଯେ। ଚିନ୍ତିଲେ ପ୍ରପଞ୍ଚ ଜୟକୁ ବିରଞ୍ଚି କଲା କି ଏ ଚିତ୍ର ସୃଷ୍ଟି ଯେ। ୫। ପଟେ

---

**ନବମ ଛାନ୍ଦ**

୧। ପଟ—ଚିତ୍ରପଟ, ଶୋଭାମୃତକୂପ— ସୌନ୍ଦର୍ଯ୍ୟରୂପ ଅମୃତର ଆଧାର (ଜନନୀ)। ୨। ଉଣାମାତ୍ର—କେବଳ, ନ ଥିବା; ଚାଲି—ଗତି, ଗିର—କଥା, ପଲକ—ପକ୍ଷ୍ମପାତ, ପ୍ରତିପ୍ରତୀକ—ପ୍ରତ୍ୟେକ ଅଙ୍ଗ। ଅକ୍ଷୀଣ—ଯାହା କେବେହେଁ ମ୍ଳାନ ହୁଏ ନାହିଁ, ପ୍ରମୋଦ ଅମଳୁଁ—ଆନନ୍ଦଜନିତ ଉଦ୍‌ବେଗ ହେତୁରୁ। ୩। ଭିତ୍ତି ପ୍ରତିଫଳ ... ମା'ଙ୍କ ଆଖିରେ ଯେପରି ନ ପଡ଼ିବ ସେଥିପାଇଁ କାନ୍ଥରେ ଥିବା ଚିତ୍ର ଆଗରେ ସଖୀମାନଙ୍କ ସହିତ ଠିଆ ହୋଇଗଲା। ୪। ଦଶନବାସ—ଅଧର, ବାସରେ—ବସ୍ତ୍ରଦ୍ୱାରା। ଛନ୍ନ—ଆବୃତ, ଗୋପନ; ମେନା—ପାର୍ବତୀଙ୍କ ଜନନୀ, ମୀନାଙ୍କପରନାରୀ—କାମଶତ୍ରୁ ଶିବଙ୍କ ସ୍ତ୍ରୀ, ପାର୍ବତୀ। ୫। ତନୁଜା— କନ୍ୟା, ତନୁଜାକୁ ଜାକୁ—ଦେହକୁ କୁଣ୍ଢାଇ କୁଣ୍ଢାଇ,

ପଟୁତର ଚିତ୍ରରମାକୁ । ଉତ୍ସଙ୍ଗରେ ଚନ୍ଦ୍ରକଳା ଜେମାକୁ । ଭିତ୍ତି ପ୍ରତିଫଳ ସୁପ୍ରତିମାକୁ । ଚାହିଁ ନ କଳି ଲାବଣ୍ୟସୀମାକୁ ଯେ । ଗୁଣଗଣ ଅନବଦ୍ୟା ଯେ । ବାଳିକା ଆଳୀଙ୍କି ଚାହିଁ ପଚାରିଲେ କାହାର ଏ ଶିଳ୍ପବିଦ୍ୟା ଯେ । ୬ । ଏ ଗିରେ କର କରି କୋରକିତ । ଜଣାଇଲେ ଜଣେ ଜେମା ସଙ୍ଗାତ । ଜନ୍ମୁ ତ ତୁମ୍ଭର ଉତ୍ସଙ୍ଗ ଖେଳ । ଅଭ୍ୟସ୍ତ କରି ହରିଅଛି କାଳ ଯେ । ଏବେ ତ ଏ ଚନ୍ଦ୍ରମୁହୀଁ ଯେ । ତାରୁଣ୍ୟ ଜାତ ଲାଜରୁ ଶ୍ରୀଛାମୁରେ ଉଭା ହୋଇ ପାରୁ ନାହିଁ ଯେ । ୭ । ମୋ ସହୀ ନ ସହି ବିଶ୍ଳେଷ କ୍ଳେଶ । କରି ତୁମ୍ଭ ପ୍ରତିକୃତିବିନ୍ୟାସ । ପହୁଡ଼ିବାକାଳେ ଛତ୍ର ପଲ୍ୟଙ୍କେ । ଥିବା ପରି ଘେନି ତୁମ୍ଭର ଅଙ୍କେ ସେ । ସୁଖେ ନେବ କାଳ ପୁଣି ଯେ । ବାତ୍ସଲ୍ୟ ପ୍ରମୋଦ ରସଗଦଗଦ ଏହା ଶୁଣି ହେଲେ ରାଣୀ ଯେ । ୮ । ଚନ୍ଦ୍ରାନନ ଚାରୁ ଚିବୁକେ ପାଣି । ଦେଇ କହିଲେ ଏ ସପ୍ରେମବାଣୀ । ଆହା ମୁଁ ମରଇ ତ ପ୍ରାଣବନ୍ଧୁ । ମୋ ଦୁଃଖସଙ୍ଖାଳି ଲାବଣ୍ୟସିନ୍ଧୁ ତୁ । କାଲି ଖେଳୁଥିଲୁ ଧୂଳି ରେ । ଏବେ ଗୁଣବତୀ ପଣେ ତୋହ ତୁଲେ ନୋହେ ଭାରତୀକି ତୁଳି ରେ । ୯ । କାହୁଁ ଶିଖିଲୁ ରେ ଶିଖଣ୍ଡକେଶା । ମୋ କୁଳନିଳୟ ନୟନଭୂଷା । ଏଡ଼େ ମୃଦୁଳ ବୟସେ ଏମାନ । ଯହିଁ ରହୁ ନାହିଁ ମୋ ଅନୁମାନ ତୁ । ସ୍ନେହ କେତେ ଜାଣୁ ପୁଣି ରେ । ମୋ ଉତ୍ସଙ୍ଗସଙ୍ଗ ବିଚ୍ଛେଦ ଭୟୁଁ କି ଏ ଚିତ୍ର ଅଛୁ ନିର୍ମାଣି ରେ । ୧୦ । ତହୁଁ ଚାହିଁ ବାଳା ପ୍ରିୟ ଆଳୀକି । ବୋଇଲେ ଆଜ ମୋ ଗଳାମାଳୀକି । ଏହି ଦାକ୍ଷିଣାତ୍ୟ ବେଶରେ ସାଣି । ବିଜେ କରାଇ ମୋ ଛାମୁରେ ଆଣି ଯେ । ନେବ ଯେ ଯାହା ବଧାଇ ଲୋ । ଫରମାସି ଏହା ବିଜେକଲେ ମହାଦେଇ ଦୁଇ ଚୁମ୍ବ ଦେଇ ଯେ । ୧୧ । ତହୁଁ ପ୍ରମୋଦେ ବାଳା ସହଚରୀ । କେହି କାହାକୁ କିଛି ନ ପଚାରି । ଅଭିନବ ଚିତ୍ରାସନରେ ମଣ୍ଡି । ହଂସୁଲୀ ତୂଳି ଗର୍ଭ ଚଉଖଣ୍ଡି ସେ । ଜଣାଇଲେ ସହଚରୀ ଯେ । ଚତୁର୍ଦ୍ଦଶ ଲୋକ ମୋହମନ୍ତ୍ରଧାଟୀ ବିଜେହେଉ ସୁକୁମାରୀ ରେ । ୧୨ । ଜଣାଉ ଥାଉଁ ନିତି ଶତବାର । ନ କରୁ ଶିରୀଷାଙ୍ଗି ଅଙ୍ଗୀକାର । ଦିଆଇବୁ ବୋଲି ଆଳୀଙ୍କି ଜାଳି । ବାଳିକାରତନ ଥିଲୁ କି ଭାଳି ତୁ । କ୍ଷମାକର ଆମ୍ଭ ଦୋଷ ଗୋ । ତଇଲଙ୍ଗ ବେଶଭଙ୍ଗି ଅଙ୍ଗୀକାରେ ମଣ୍ଡନାବଳୀକି ତୋଷ ଗୋ ।୧୩। ଏତେ କହି ଧରୁଁ ଭୁଜ ପଇଠ ।

---

ପ୍ରପଞ୍ଚ—ସଂସାର, ବିରଞ୍ଚ—ବିଧାତା । ୬ । ଚିତ୍ରରମା—ଚିତ୍ରର ସୌନ୍ଦର୍ଯ୍ୟ, ଗୁଣଗଣ ଅନବଦ୍ୟା —ଅନିନ୍ଦନୀୟ ଗୁଣଗଣଯୁକ୍ତା । ୭ । କର କୋରକିତ କରି—ହାତ ଯୋଡ଼ି । ୮ । ବିଶ୍ଳେଷ କ୍ଳେଶ—ବିଚ୍ଛେଦ ଦୁଃଖ, ପ୍ରତିକୃତି—ଚିତ୍ର । ଛତ୍ରପଲଙ୍କେ—ହାତୀ ଦାନ୍ତରେ ଆଚ୍ଛାଦିତ ପଲ୍ୟଙ୍କରେ ବା ଉପର ଚାନ୍ଦୁଆଥିବା ପଲ୍ୟଙ୍କରେ । ଭାରତୀ—ସରସ୍ୱତୀ, ତୁଳିରେ—ମୁଁ ତୁଳନା କରେଁ । ୧୦ । ଶିଖଣ୍ଡକେଶା—ମୟୂରପୁଚ୍ଛ ପରି କେଶ ଯାହାର; ମୋ କୁଳ ... ମୋ ବଂଶ, ଗୃହ ଓ ଆଖିର ଭୂଷଣସ୍ୱରୂପା । ୧୧ । ସାଣି—ମାର୍ଜିତ ଭାବରେ ସଜାଇ । ୧୨ । ଅଭିନବ ... ହଂସପର ତୂଳାଗଦି ପଡ଼ିଥିବା ଚୌକିରେ ନୂଆ ଚିତ୍ରିତ ଆସନ ପକାଇ; ଚତୁର୍ଦ୍ଦଶ ଲୋକ ... ଚୌଦଭୁବନ ମୋହ କରିବାର

ହସିକରି ମୁଖଚନ୍ଦ୍ରକୁ ହେଠ । କରିବାକୁ ଚନ୍ଦ୍ର ଗର୍ବ କମ୍ପନ । ତା ଉଦୟ ଦିଶେ କରି ଲପନ ସେ । ସେ ଆସନେ ବିରାଜିଲା ଯେ । ବେଶମାନଙ୍କର ଅକୃତାର୍ଥ ଶଙ୍କା ସେଦିନଠାରୁ ଭାଜିଲା ଯେ । ୧୪ । ବାଳା ପ୍ରତିବିମ୍ବ ସୁନ୍ଦରପଣ । ସଙ୍ଗରୁ ହେବାକୁ ଅଦରପଣ । ଛାମୁରେ ଧରି କେ ସୁଦରପଣ । ଜଣାଇଲା ଏଣେ ନଜରପଣ । ନର୍ମଲୋଳ ଭର୍ମଲତା ରେ । କର୍ମବଳ ଦେଇ ବଢ଼ାଅ ଏହାର ଅତିଶୟ ନିର୍ମଳତା ରେ । ୧୫ । ଏ ଗିରେ ଅସ୍ଫୁଟ ମହାହରଷେ । ଉଲସାଇ ଗଣ୍ଡ ସବ୍ରୀଡ଼ ହାସ୍ୟେ । ଅଧ ଚାହାଣି କରି ଅବଲମ୍ବ । ଦେଖି ମୋହିନୀ ନିଜ ପ୍ରତିବିମ୍ବ ସେ । ମନେ କଲା ଏହି ଚିନ୍ତା ରେ । ଏହାଠାରେ ଜୀବ ନିବେଶି ପୁଂଭାବ ନ ଦେଲା ମୋତେ ବିଧାତା ଯେ । ୧୬ । ଶିଥିଳାଇ ନିଜ କେଶବଲ୍ଲରୀ । ଅଣ୍ଡାଇ କଣ୍ଡା ସେବତୀ ଫୁଲରୀ । ନ ଜାଣିଲା ପରି ଅତି ଆଦରେ । ପୋଛି ଅମଳାନ ଝିନାଚାଦରେ ସେ । କରେ କସି କଙ୍କତିକା ରେ । ଚିକ୍କଣ ଚାମର ଚଳି ମରୁ ବୋଲି ଚାଳିଲା କୁନ୍ଦଲତିକା ଯେ । ୧୭ । ସରଙ୍ଗ ପଟ୍ଟସୂତ୍ର ଜରି ଡୋରେ । ଅଟକି ରଖି ଭିଡ଼ି ନିବିଡ଼ରେ । ଚାମୀକର କିଆଦଳ ତଳକୁ । ରଖି ରୁଚିର ଚଉରୀ ଠୁଳକୁ ସେ । ପୁଞ୍ଜି ସୁନାଜରି ଫୁଲି ଯେ । ଜଗତୀଧୃତିକି ଝୁଲା ଶିଖାଇଲା ଆପଣେ କି ଝୁଲି ଝୁଲି ଯେ । ୧୮ । ବାମ ଦକ୍ଷିଣେ ସେ ଠୁଳ ମୂଳରେ । ନ ରଖି ଭେଦ ସୁଷମା ତୁଳରେ । ଖଞ୍ଜି କୁନ୍ଦନସୁନା ଦୃବବିଡ଼ି । ଅବଶେଷେ ଡୋରେ ନିବିଡ଼େ ଭିଡ଼ି ସେ । ଆରମ୍ଭିଲେ ଯହୁଁ ବେଣୀ ଯେ । ତର୍ଜିତ ହେଲା ପଞ୍ଚବାଣ କମାଣ ଗୁଣୀଭୂତ ଅଳିଶ୍ରେଣୀ ଯେ । ୧୯ । ବେଣୀ ନୁହଇ ସେ କି ଶିଶୁଶେଷ । କରି ସୁରାଳୟ ଧରା ପ୍ରବେଶ । ସେ ଘେନି ନ ଥିଲା ବିବେକ ଲେଶ । କଳା ପଡ଼ିଗଲା ନିଜ ଅଯଶ ସେ । ହେଲା ଏପରି ପ୍ରତୀତି ଯେ । କେଳିଲୋଳ କଳା କୁଣ୍ଡଳୀ ଛାର କି ଜୟେ ଯାହା

---

ମନ୍ତ୍ର ଧାଡ଼ିପରି । ୧୪ । ହେଠ—ନତ, ନମ୍ର; ତା ଉଦୟ ଦିଶେ—ଚନ୍ଦ୍ରୋଦୟର ଦିଗ ପୂର୍ବକୁ । ୧୫ । ଅଦର-ପଣ—ନିର୍ଭୟତା । ବାଳା ପ୍ରତିବିମ୍ବ ... ଚନ୍ଦ୍ରକଳାର ପ୍ରତିବିମ୍ବର ସୌନ୍ଦର୍ଯ୍ୟ ସଙ୍ଗରୁ ନିର୍ଭୟ ହେବାକୁ । ନଜରପଣ—ଦୃଷ୍ଟି ଦିଅ । ନର୍ମଲୋଳ ଭର୍ମଲତା—ହେ କ୍ରୀଡ଼ାଚଞ୍ଚଳ ସ୍ୱର୍ଣ୍ଣଲତିକା । ୧୬ । ଏହିଠାରେ ... ଏହି ପ୍ରତିବିମ୍ବରେ ଜୀବନ ଦେଇ (ସ୍ୱାଭାବରେ) ମୋତେ କାହିଁକି ବିଧାତା ପୁରୁଷତ୍ୱ ନ ଦେଲା ? । ୧୭ । କେଶବଲ୍ଲରୀ—କେଶଗୁଚ୍ଛ । ଅଣ୍ଡାଇ କଣ୍ଡା ... କଣ୍ଡା ସେବତୀ ଫୁଲର ଫୁଲରୀତେଲ ଯଥେଷ୍ଟ ଦେଇ । ଝିନାଚାଦରେ—ସୂକ୍ଷ୍ମ ଚାଦରରେ । ଅମଳାନ—ଅମ୍ଳାନ, ପରିଷ୍କୃତ; କଙ୍କତିକା—ପାନିଆଁ, ଚାମର—ଚଅଁର (କେଶସଙ୍ଗେ ତୁଳିତ) । ଚଳି ମରୁ—(କେଶଗୁଚ୍ଛଠାରୁ ଊଣା ବୋଲି) ବିରକ୍ତ ହୋଇ ନଷ୍ଟ ହେଉ । ୧୮ । ସରଙ୍ଗ ... ଜରି ଲାଗିଥିବା ଲାଲ ପାଟସୂତାରେ । ଚାମୀକର କିଆଦଳ—ସୁନାରକିଆପତ୍ରୀ (ଅଳଙ୍କାର ବିଶେଷ); ଜଗତୀ ... ଚଉଁରି ଜୁଡ଼ାତଳେ ସୁନା ଜରିଲଗା ଫୁଲିପୁଞ୍ଜିକୁ ଝୁଲାଇବାରୁ ଉତ୍ପ୍ରେକ୍ଷା କରାଯାଉଛି, ସେ ନିଜେ ଝୁଲି ଝୁଲି ଲୋକଙ୍କ ଧୈର୍ଯ୍ୟକୁ କମ୍ପନ ଶିଖାଇଲା କି ? । ୧୯ । ଠୁଳ ମୂଳରେ—ଚଉଁରିବନ୍ଧା ଜୁଡ଼ା ମୂଳରେ । ସୁଷମା ତୁଳରେ—ସୌନ୍ଦର୍ଯ୍ୟ

କଲେ ମତି ଯେ । ୨୦ । କ୍ରମରେ ସତାରସୁଧାଂଶୁରେଖା । ଖଞ୍ଜିଲେ ଯା ନାହିଁ ତ୍ରିଲୋକେ ଦେଖା । ଦରଶ କ୍ଷୟ ଭୟ ମୟ ଚିତ୍ତେ । ବେଣୀ କୁହୁ ପ୍ରବାହକୁ ନିରତେ ସେ । ସେବିଲେ କି ଶିଶୁ ଦିନୁ ରେ । ପ୍ରାନ୍ତେ ବଡ଼ ଚୂନୀ ଗୁଣ୍ଡିଫୁଲ ତିନିବିଧ ସାଜିଲେ ସୁତନୁ ଯେ । ୨୧ । ଲଲାଟପଟ ନିକଟକୁ ବୋଲି । ରହିଲା ମୋତିପୁଞ୍ଜୀ ଛକ ଜାଲି । ମଣିରାଗିଡ଼ି ଚନ୍ଦ୍ରମା ଅର୍ଯ୍ୟମା । କେଶ ଅମାରେ ହେବା ପରି ଜମା ସେ । ତାହିଁ ଚମତ୍କାର ଖଞ୍ଜା ଯେ । ଭଲ ମନ୍ଦ କିବା ଅଛି ଏ ବିଚାରେ ତାରା ହେଲେ ପୁଞ୍ଜା ପୁଞ୍ଜା ଯେ । ୨୨ । ବିନ୍ଦୁ ଝାଲରିଆ ଅଳକେ ଗୁନ୍ଥି । ଖଞ୍ଜି ଦିଅନ୍ତେ ମୁକୁତା ସୀମନ୍ତୀ । ତ୍ରିଜଗତୀ ଧୃତି ଦେବାକୁ ମନ୍ଥି । ଫିଟିଲା ହାତ ହରପରିପନ୍ଥୀ ସେ । ମଉଳିମଣି ଉଭାରୁ ଯେ । ନବରତ୍ନ ଚିତା ସପତ ମୁକୁତା ଝୁମ୍ପି ଦେଇ କଲେ ଚାରୁ ଯେ । ୨୩ । ସିତାଷ୍ଟମୀ ନିଶା ନାଥକୁ ହଟି । ଜିଣିଲା ତା ଭାଲପଟ ଯାହାଟି । ସପ୍ତ ମୁକୁତା ଛଳେ ସପ୍ତ ଋଷି । ସମାଧାନ ପାଇ ଅବଶ୍ୟ ଆସି ସେ । ଥରିଲେ କି ଭୟ ବହି ଯେ । ଯୋଡ଼ା ଗନ୍ଧସାର ପାଟୀ ତରୁଆର ଝିଙ୍କା ହେବା ସ୍ଥଳ ଚାହିଁ ଯେ । ୨୪ । ଶ୍ରିତ ବାଞ୍ଛିତ ଫଳ ନାନାଜାତି । ଦେବାରେ ତ ବାଳା ସୁରବ୍ରତତୀ । ମୋତି ସୀମନ୍ତୀ ତା କୁସୁମ କେରା । ମୂଳେ ଆଳି ଭାଳି ଖଞ୍ଜିଲେ ପରା ସେ । ଜାମ୍ବୁନଦ ଆମ୍ନକସି ଯେ । ପେଣ୍ଡି ପେଣ୍ଡି ହୋଇ ମଣ୍ଡିବାରୁ ସେ କି ବିରାଜିଲା ମଦାଳସୀ ଯେ । ୨୫ । ଗାଙ୍ଗେୟ ସଙ୍ଗ ସକାଶରୁ ଚାରୁ । ମଣିକର୍ଣ୍ଣିକା ସମ୍ପର୍କ ପ୍ରଚାରୁ । କବିମତିକି ଏମନ୍ତ ଆଭାସେ । ବାଳାବଦନ ବାରାଣସୀ କି

---

ତୁଳନାରେ । ପଞ୍ଚବାଣ କମାଣ ... କନ୍ଦର୍ପଧନୁରେ ଗୁଣ ହୋଇଥିବା ଭ୍ରମରମାନେ ତାକୁ ଦେଖି ଡରିଲେ ଅର୍ଥାତ୍ ତା ଅପେକ୍ଷା ସେ ବେଶୀ ଅଧିକ ସୁନ୍ଦର ହେଲା । ୨୦ । ଶିଶୁଶେଷ—ସର୍ପରାଜ ଶେଷଦେବଙ୍କ ସାନପିଲା । ସୁରାଳୟଧରା ... ମଦଖଟିରେ ପ୍ରବେଶ କରିବାରୁ ନିଜ ଅକୀର୍ତ୍ତି ହେତୁରୁ କଳା ପଡ଼ିଗଲା କି ? କେଳିଲୋକ ... କ୍ରୀଡ଼ାସକ୍ତ କଳା ସାପମାନେ ଯାହା ସେ ବେଣୀକୁ ଜୟ କରିବାକୁ ଇଚ୍ଛା କଲେ ତାହା କି ଛାର ! କି ସାମାନ୍ୟ । ୨୧ । ସତାରସୁଧାଂଶୁରେଖା —ତାରକା ସହିତ ଖଣ୍ଡଚନ୍ଦ୍ର, ଦରଶ—ଦର୍ଶ, ଅମାବାସ୍ୟା; କୁହୁ—ଅମାବାସ୍ୟା, ଅମାବାସ୍ୟା ତିଥି କ୍ଷୟ ହେଉଥିବାରୁ ଚନ୍ଦ୍ରତାରାମାନେ ଚନ୍ଦ୍ରକଳାର ବେଣୀରୂପ ଅମାବାସ୍ୟାର ବିସ୍ତାରକୁ ତା ପିଲାଦିନୁ ଆଶ୍ରୟ କଲେ କି ? ପ୍ରାନ୍ତେ—ବେଣୀଶେଷରେ, ତିନିବିଧ—ତିନିପ୍ରକାର । ୨୨ । ମଣିରାଗିଡ଼ି— ରତ୍ନରେ ନିର୍ମିତ ମସ୍ତକର ଅଳଙ୍କାରବିଶେଷ [ଚନ୍ଦ୍ର ଓ ଅର୍ଯ୍ୟମା (ସୂର୍ଯ୍ୟ) ରୂପ] କେଶରୂପ ଅମାବାସ୍ୟାରେ ଏକତ୍ର ଅଛନ୍ତି (ଅମାବାସ୍ୟାରେ ଚନ୍ଦ୍ର ସୂର୍ଯ୍ୟ ଏକ ରେଖାରେ ଅଛନ୍ତି), ମୋତିପୁଞ୍ଜ ଏଠାରେ ନକ୍ଷତ୍ର ସ୍ଥାନୀୟ । ୨୩ । ହରପରିପନ୍ଥୀ—କନ୍ଦର୍ପ, କନ୍ଦର୍ପ ହାତକୁ ମେଲିଲା କି ? ମଉଳିମଣିଉଭାରୁ—ମଥାମଣି ଆଗକୁ ରହିବାରୁ । ୨୪ । ସିତାଷ୍ଟମୀ ନିଶାନାଥ— ଶୁକ୍ଳପକ୍ଷର ଅଷ୍ଟମୀ ଚନ୍ଦ୍ର, ସମାଧାନ—ଆସ୍ଥାନ, ଯୋଡ଼ାଗନ୍ଧସାର ... ଦୁଇ ଭ୍ରୂଲତା ଉପରେ ଦିଆଯାଇଥିବା ଚନ୍ଦନପାଟିକୁ ଖଣ୍ଡା ବୋଲି ମନେ କରି ଭୟରେ ଥରିଲେ କି ? । ୨୫ । ଶ୍ରିତବାଞ୍ଛିତ —ଚନ୍ଦ୍ରକଳା ଆଶ୍ରିତମାନଙ୍କୁ ବାଞ୍ଛିତ ଫଳ ଦେବାରେ ସୁରବ୍ରତତୀ (କଳ୍ପଲତା) ତୁଲ୍ୟ, ମୋତିରେ ନିର୍ମିତ ସୀମନ୍ତି—ସିନ୍ଥୀ (ଅଳଙ୍କାର ବିଶେଷ) ସେ ଲତାର

ସେ ଯେ । କାହିଁ ନାହିଁ ସେ ମାଧୁରୀ ଯେ । ଗଣ୍ଡଯୁଗ ଚୁମ୍ବି ଭଲା ମାନିଲା ସେ କଲମାଯୁଗଳୀ ଶିରୀ ଯେ । ୨୬ । ଗଣ୍ଡେ ତ ମକରୀଲୀଳା ନିଳୟ । ଶ୍ରୀମୁଖ ଲାବଣ୍ୟ କମଳାଶୟ । ମାଜିଦେବା ମୃଦୁ ସମୀର ବାଜି । ଏକ ପ୍ରଦେଶେ କି ଗଲେ ଆଉଜି ଯେ । ଚୂର୍ଣ୍ଣକେଶଶଇବଳ ଯେ । ମନ୍ଦାକ୍ଷ ପ୍ରମୋଦ ରୋଚନ ଲୋଚନଯୁଗ ଯହିଁ ନୀଳୋତ୍ପଳ ଯେ । ୨୭ । ସୁନା ଭୁଜଙ୍ଗ ମଲ୍ଲୀ ଅବତଂସ । ଆରମ୍ଭିଲା ଭଲା ବିବେକ ଧ୍ୱଂସ । ହେଲେ ଲୋଚନ ଦୁଃଖୀ ଶିଳାଟଙ୍କ । ବେଣ୍ଟୁଲାଫୁଲ ଝଲକା ତାଟଙ୍କ ସେ । ଅଂସଲମ୍ବୀ ଚାରୁ ଝୁମ୍ପା ଯେ । ଗହବ ସିନ୍ଧୁବାର ମୋତିମାଳିକା ଦୁହେଁ ହେଲେ ଦରକମ୍ପା ଯେ । ୨୮ । ହାଟକରୁଚି ଜିଣିବାକୁ ଯାହା । ହଟ କରୁଅଛି ସେ ଝକ ଦେହା । ସୁବର୍ଣ୍ଣାବଳି କେଳିନିକେତନ । ସୁବର୍ଣ୍ଣପ୍ରଭୁଜା ତା ଅପଘନ ଯେ । ଏଣୁ ବିଚାରି ଶରଣ ଯେ । ସୁବର୍ଣ୍ଣାବଳୀ ଭୂଷଣଗଣ ଆସି କଲେ କି ଅନୁସରଣ ଯେ । ୨୯ । ଝୁଲା କିପରି ମାନିବ ଏ ଭାବେ । ବୁଲାକି ଖଞ୍ଜିଦେଲେ ଗଉରବେ । ବେଢ଼ ତ ପଚାକୁରୁବିନ୍ଦ ଅନ୍ତେ । ଅନ୍ତ ମୁକୁତାରୁ ହୋଏ ପରତେ ସେ । ଚଞ୍ଚୁପୁଟେ ସୁନା କୀର ଯେ । ସ୍ଥୂଳ ଲବଳୀଫଳ ଦୋଳା କରୁଛି ବିମୋହକୁ ପିନାକୀର ଯେ । ୩୦ । ଅଥ ରଜନୀନାଥମୁଖୀ ନାସା । ନଥର ଯୋଗେ ମଣ୍ଡିଲା କେ ଯୋଷା । ନ ଥର ବୋଲି ଦେଲେହେଁ ଖାତରସା ପତର ହେଲେ ସେ ସଚରାଚର ଯେ । ନଥର ଥରିଲା ହେଲା ଯେ । ପଥରମ୍ୟକାରୀ ବାଳା ପଦକଞ୍ଜ ବଶ ମୁଁ ବୋଲି ଚିନ୍ତିଲା ଯେ । ୩୧ । ଉରୋଜସ୍ୱୟମ୍ଭୂ ଶମ୍ଭୁଯୁଗଳୀ । ସେବାରେ ହାଜର ହେବାକୁ ଭାଳି । ଖଞ୍ଜିଲେ ନାନାବିଧ ମାଳିମାନ । କ୍ରମରେ ଜଗିଲେ

---

କୁସୁମଗୁଚ୍ଛ । ଜାମ୍ବୁନଦ ଆୟକସି-ସୁନା ଆୟକସି (ଅଳଙ୍କାର ବିଶେଷ) ।୨୬ । ଗାଙ୍ଗେୟ—ସୁନା ଓ ଗଙ୍ଗା ସମ୍ବନ୍ଧୀୟ, ମଣିକର୍ଣ୍ଣିକା—ମଣିରେ ନିର୍ମିତ କର୍ଣ୍ଣଭୂଷଣ ଓ କାଶୀର ପ୍ରଧାନ ତୀର୍ଥ, କଲମା ଯୁଗଳଶିରୀ—କର୍ଣ୍ଣ ନିକଟବର୍ତ୍ତୀ ବକ୍ରାକାର କ୍ଷୁଦ୍ର କେଶ ଭଙ୍ଗୀର ଶୋଭା । ୨୭ । ମକରୀ—ଗଣ୍ଡରେ ଚିତ୍ରିତ ମକରାକୃତି ଚିତ୍ର ଓ ସ୍ତ୍ରୀମଗର, ଲାବଣ୍ୟ କମଳାଶୟ—ଲାବଣ୍ୟ ଲକ୍ଷ୍ମୀଙ୍କର ସ୍ଥାନ ଏବଂ ଲାବଣ୍ୟ ରୂପ ଜଳାଶୟ, ମାଜିଦେବା— ଘଷିଦେବା, ଚୂର୍ଣ୍ଣକେଶରୂପ ଶୈବଳ (ଶିଉଳୀ), ମନ୍ଦାକ୍ଷ—ଲଜ୍ଜା, ପ୍ରମୋଦ—ଆନନ୍ଦ, ରୋଚନ —ପ୍ରୀତିପ୍ରଦାନ । ୨୮ । ସୁନାଭୁଜଙ୍ଗ (ସର୍ପ) ଲଗାମଲ୍ଲୀକାବତଂସ (ମଲିକଢ଼ୀନାମକ) କର୍ଣ୍ଣ-ଭୂଷଣ, ହେଲେ ... ତାହାର ଚକ୍ଷୁ ଦୁଃଖୀ ଅର୍ଥାତ୍ ବିରହୀ ପକ୍ଷରେ ଶିଳାଟଙ୍କ (ପଥରକଟା ଟାଙ୍ଗିଆ ଅସ୍ତ୍ର) ସ୍ୱରୂପ ହେଲେ । ତାଟଙ୍କ—କାପ, ଅଂସଲମ୍ବୀ—କାନ୍ଧଯାଏ ଲମ୍ବିଥିବା, ଗହବ— ଗହଳିଆ, ସିନ୍ଧୁବାରମୋତି—ସମୁଦ୍ରଜାତ ମୋତି । ୨୯ । ହାଟକ ରୁଚି—ସୁନାର କାନ୍ତି, ସୁବର୍ଣ୍ଣାବଳି—ସୁନ୍ଦର ଅକ୍ଷର ସମୂହ ବା ବିଦ୍ୟାସମୂହ, ସୁବର୍ଣ୍ଣପ୍ରଭୁଜା ... ଉତ୍କୃଷ୍ଟ ଜାତୀୟ ରାଜାଙ୍କଠାରୁ ଜନ୍ମ ଯାହାର, ସୁବର୍ଣ୍ଣାବଳୀ— ସୁନ୍ଦର ରୂପସମୂହ ଥିବା । ୩୦ । ବୁଲାକି— ଏକପ୍ରକାର ଦଣ୍ଡି, ବେଢ଼—ଚାରିପାଖରେ ବେଷ୍ଟନ; ପଚାକୁରୁବିନ୍ଦ—ଏକପ୍ରକାର ପଦ୍ମରାଗମଣି; ଚଞ୍ଚୁପୁଟ—ଥଣ୍ଟ; ସୁନାକୀର—ସୁନାଶୁଆ; ଲବଳୀଫଳ—ନରକୋଳି; ପିନାକୀ—ଶିବ । ୩୧। ରଜନୀନାଥମୁଖୀ—ଚନ୍ଦ୍ରମୁଖୀ, ନଥ—ନୋଥ (ନାକର ଅଳଙ୍କାର ବିଶେଷ); ନ ଥର—କମ୍ପ ନାହିଁ ଓ

ଯେ ଯାହା ସ୍ଥାନ ସେ । ବାଳାକଣ୍ଠକମ୍ବୁ ଘେନି ଯେ । ଯୋଡ଼ି ଯୋଡ଼ି କରଯୁଗ ନିରନ୍ତର କି ଭାବେ ରହିଲେ ମାନି ଯେ । ୩୨ । ନାୟିକାମଣି ବାହୁମୂଳ ସ୍ତନ । ରାଇକା ପାଇ କାନ୍ତିରେ ଶୋଭନ । ଛରି ବୁଟା କଞ୍ଚ କସିଦା ପଡ଼ି । କୁସୁମ୍ଭାଦ୍ରବେ ଯାଇ ଅଛି ଢଡ଼ି ସେ । ଦିଶିଲା ଏମନ୍ତ ତୋରା ଯେ । ପ୍ରଳୟ କାଳ କ୍ରୋଧାରୁଣ ଶମ୍ବର ମସ୍ତକ ଟକିଆ ପରା ଯେ । ୩୩ । ସୁଗ୍ରୀବାଡ଼ମ୍ବର ସମୀପେ ଚାହିଁ । ଅଙ୍ଗଦ ଶରଣ ନ ଲଭି କାହିଁ । ବାଳୀର ବାହୁଛାୟାକୁ ଭଜିଲା । ଭଜିଲା ନାହିଁ ତ ଭଲା ମଜିଲା ସେ । ମଣି ଥିବାରୁ ବହୁତ ଯେ । ତାରାସୁତର ସାନ୍ନିଧବଶୁଁ ତାର ଗୁଣ ତ ଅପରିମିତ ଯେ । ୩୪ । ହେମାମଣି ମଣିବନ୍ଧରେ ଆଳୀ । ଖଞ୍ଜିଲେ ତିଗା କଞ୍ଚି କଡ଼ିଆଳୀ । ସମୀପେ ସିଆକାଟୁ ଦେଲେ ପାଞ୍ଚ । ନବରତନ ସେବତୀ ପହଞ୍ଚି ସେ । ହେଲା ଶୋଭା ଅସଂକୋଚ ଯେ । ପଞ୍ଚସଂଖ୍ୟକରେ ଖଞ୍ଜିଲେ ସୁସଞ୍ଚଇନ୍ଦ୍ରନୀଳମଣି କାଚ ଯେ । ୩୫ । ଭାବିନୀଭୁଜ ଭାରି ହେବା ଡରୁ । ଭୂରିଭୂଷଣ ନ ଖଞ୍ଜିଲେ ଭୀରୁ । କୁଞ୍ଜରଗମନା କେବଳ ବଳେ । କଞ୍ଜ ମଞ୍ଜୁର ଗୁଞ୍ଜାର ଯୁଗଳେ ସେ । ମଣ୍ଡିଲା କାଚ ଅନ୍ତିକ ଯେ । କାନ୍ଦିଶୀକ ନୋହି ବନ୍ଦୀ ହେଲା ତହିଁ ସଉନ୍ଦର୍ଯ୍ୟସାରଯାକ ଯେ । ୩୬ । ଅଙ୍ଗୁଳି କଳିକା ନଖାଗ୍ର ଶିରୀ । ସୁନ୍ଦର ଭାବ ଶୁଚିରସ ଝରି । ଦଶଧାର ହୋଇ ପଡ଼ିବ ବହି । ଏହି ଶଙ୍କାରେ କେହି ପ୍ରିୟସହି ଯେ । ମୁଦି ଦେଲା ଯତ୍ନ କରି ଯେ । ହେଲା କୁସୁମିତ ପଞ୍ଚଶାଖାଯୁତ ମନ୍ଦାରପଲ୍ଲବ ପରି ଯେ । ୩୭ । ଯା ନିକଟେ ହଂସ କରୁଛି ଲୀଳା । ସେ ଚରଣ ଶୋଣକଞ୍ଜେ କେ ବାଳା । ମଞ୍ଜୁରବ ଶୁଣି ହେବାକୁ ସୁଖୀ । ମଞ୍ଜୀରଯୋଗେ ପୂତ କରି ଆଖି ଯେ । ରଚିଲା ବଙ୍କିଆ ଲାଗି ଯେ । ସୁରମହୀମଳୟଜ ଲତାମୂଳ ଭଜିଲା କି ରାଜଭୋଗୀ ଯେ । ୩୮ । ତ୍ରିଗୁଣ କିଙ୍କିଣୀ ଖଞ୍ଜି ପଉଞ୍ଜୀ । ଦେଇ ସେ କଞ୍ଜରୀଟନେତ୍ରା ଖଞ୍ଜି । ଝୁଣ୍ଟିଆ ପ୍ରମୁଖ

---

୯ ଥର, ଖାତର ଦେଲେ—ଦମ୍ଭ ଦେଲେହେଁ; ପଥରମ୍ୟକାରୀ ... ବାଟକୁ ସୁନ୍ଦର କରୁଥିବା ତାହାର ପାଦପଦ୍ମର ମୁଁ ଅଧୀନ ଅର୍ଥାତ୍ ସେ ଚାଲିଲେ ମୁଁ ହଲିବି । ୩୨ । ଉରୋଜ—କୁଚ, ସ୍ୱୟମ୍ଭୂଶମ୍ଭୁ—ସ୍ୱଭାବଜାତ ଶିବ, ମାଳି—ହାର ଓ ମାଳୀଜାତୀୟ ସେବକ, କଣ୍ଠକମ୍ବୁ—କଣ୍ଠରୂପ ଶଙ୍ଖ । ୩୩ । ରାଇକା—କାଞ୍ଚୁଲା, କୁସୁମ୍ଭାଦ୍ରବ— କୁସୁମ ଫୁଲ ବର୍ଣ୍ଣର ତରଳ ରଙ୍ଗ । ୩୪ । ସୁଗ୍ରୀବାଡମ୍ବର—ସୁନ୍ଦର ଗ୍ରୀବାଦେଶର ଶୋଭା, କପିରାଜ ସୁଗ୍ରୀବର ଐଶ୍ୱର୍ଯ୍ୟ; ଅଙ୍ଗଦ—ବଳୟ ଓ ତାରାପୁତ୍ର, ବାଳୀ—ଚନ୍ଦ୍ରକଳା ଓ କପିରାଜ ବାଳୀ, ତାରାସୁତ—ଅଙ୍ଗଦ । ୩୫ । ମଣିବନ୍ଧ—କଟଟୀ, ତିଗା, କଡ଼ିଆଳୀ, ସିଆକାଟୁ ନବରତ୍ନ ନିର୍ମିତ ସେବତୀ ଫୁଲ ପରି ପହଞ୍ଚି (ପଇଞ୍ଚଖଡୁ)— ଏଗୁଡ଼ିକ ହସ୍ତାଳଙ୍କାର; ସୁସଞ୍ଚ—ସୁନ୍ଦର । ୩୬ । ଭାବିନୀ—ଯୁବତୀ (ଚନ୍ଦ୍ରକଳା), ଭୂରିଭୂଷଣ— ବହୁ ଅଳଙ୍କାର, ବଳେ—ନିଜ ଇଚ୍ଛାରେ, କଞ୍ଜମଞ୍ଜୁଳ—ପଦ୍ମପରି ସୁନ୍ଦର, ଗୁଞ୍ଜାର ଯୁଗଳ— ଗୁଞ୍ଜାର ଖଡୁ ଦିଓଟି, କାନ୍ଦିଶୀକ—ଭୟରେ ପଳାୟିତ । ୩୮ । ହଂସ—ହଂସକ, ମଲ; ଚରଣଶୋଣକଞ୍ଜେ—ପାଦରୂପ ରକ୍ତପଦ୍ମରେ, ମଞ୍ଜୀର—ନୂପୁର, ବଙ୍କିଆ—ପାଦାଳଙ୍କାର ବିଶେଷ,

ଅଙ୍ଗୁଳିଭୂଷା । ଖଞ୍ଜ ମନେ କଲେ ଏହି ପ୍ରଶଂସା ଯେ । ଜଙ୍ଗମ ହେମ ନଳିନ ଯେ । ନିଜ ଜାତି ବ୍ରଜ ଜିଣିମାରୁ ଆଜ ଲଭିଲା କନକସ୍ଥାନ ଯେ । ୩୯ । ପଙ୍କଜାକୃତି ହେମପାତ୍ରେ ଦଳି । ଯାବକ ରଖିଥିଲା ଯେଉଁ ବାଳୀ । ସ୍ୱକର ମଣ୍ଡି ବାମା ବାମ ପାଦେ । ଦକ୍ଷିଣ ଚରଣ ଚାହେଁ ପ୍ରମୋଦେ ଯେ । ଲଭି ସେ ଭାଜନ ଭ୍ରାନ୍ତି ଯେ । ଆଲେଖ୍ୟଶଳାକା ଚାଳନ୍ତେ ବାଳିକା ହସିଦେଲା ମଥା ପୋତି ଯେ । ୪୦ । ଆଳୀ ହସି କରତାଳିକି ଘେନି । ଜଣାଇଲେ ଆରେ ବରବର୍ଣ୍ଣିନି । ସମ୍ପାଦିଛୁ ଭଲା ଲାବଣ୍ୟଭୃତି । ଭରମି ନ ଯିବ କାହାର ମତି ଯେ । ଏହାର କି ଦୋଷ ହେଲା ଯେ । କାହାର କରିବ କଞ୍ଜସୂତ ତତେ ଯାହାର ସୁକୃତ ଭଲା ରେ । ୪୧ । ଏ କଉତୁକ ରସ ବରଷାରେ । ପଡ଼ି କେ କାହା ଉପରେ ରସାରେ । ପଡ଼ି ସତ୍ୟ ଲାକ୍ଷା ପାତ୍ରୀ ରସରେ । ଚିତ୍ର ଚାତୁର୍ଯ୍ୟଭର ପ୍ରକାଶରେ । ସାଜିଲେ ପାଦଯୁଗଳୀ ଯେ । ସୁନାବଲ୍ଲରୀ ପଲ୍ଲବ ରଚିଲା କି ସୁରଭି ଶିରୀମଣ୍ଡଳି ଯେ । ୪୨ । ଶାଢ଼ୀଲାଗିକି ସଜାଡ଼ି ସମ୍ଭାର । ଉଭାକଲେ ଧରି ଶୁଭାଙ୍ଗୀକର । ବ୍ରୀଡ଼ା ଲୋଳନେତ୍ର କ୍ରୀଡ଼ାରୁ ଜାଣି । ଦୂର ହେଲେ କେତେ କୁରଙ୍ଗେକ୍ଷଣୀ ଯେ । ଲାଗି ହେଲା ମେଘାମ୍ବର ଯେ । ସୁମ ଲତିକାରେ ମିନା ଫୁଙ୍କିଲା କି କଉତୁକୀ ବେଦବର ଯେ । ୪୩ । ନୀରନ୍ଧ୍ର ଆନ୍ଧ୍ର ଉଉଲରେ ପିନ୍ଧି । ପୁରୁଷାୟିତ ବେଶ ନୀବୀ ବାନ୍ଧି । ପଦାଞ୍ଚଳଚୁମ୍ବୀ ଅଞ୍ଚଳ କୁଞ୍ଚ । ଚଞ୍ଚଳାକ୍ଷୀ କରେ ଭିଡ଼ି ସୁସଞ୍ଚ ଯେ । ଖଞ୍ଜିଲେ କମରପଟା ଯେ । କମର ସୁଷମା ଅମରପୁଙ୍ଗବ ସ୍ତୋମର ଧଇର୍ଯ୍ୟଫଟା ଯେ । ୪୪ । ବାର ଷୋଳସୋରା ଜାଲି ମଞ୍ଜୁଳ । ତ୍ରିଗୁଣ ହେମକିଙ୍କଣୀ ବାଚାଳ । ରସନାଦାମ ତହୁଁ ଦେଲେ ବାନ୍ଧି । ଏହି ଉପମାନ ରହିଲା ରୁନ୍ଧି ସେ । ନୁହଇ ନିତମ୍ବବିମ୍ବ

---

ସୁରମହୀ—ସ୍ୱର୍ଗ, ମଳୟଜଲତା— ଚନ୍ଦନଲତା, ରାଜଭୋଗୀ—ସର୍ପରାଜ ବାସୁକି । ୩୯ । ତ୍ରିଗୁଣକିଙ୍କିଣୀ—ତିନିଗୁଣିଆଁ ଘାଗୁଡ଼ିଲଗା ଅଣ୍ଟାର ଅଳଙ୍କାର, ପଉଞ୍ଚୀ—ପଇଞ୍ଚ ନାମକ ଅଳଙ୍କାର, ଜଙ୍ଗମହେମନଳିନ—ଚଳନ୍ତା ସ୍ୱର୍ଣ୍ଣପଦ୍ମ (ଚନ୍ଦ୍ରକଳାର ପାଦ) । ୪୦ । ଯେଉଁ ସଖୀ ପଦ୍ମାକୃତି ସୁନା ପାତ୍ରରେ ଅଳତା ରସ ରଖିଥିଲା, ସେ ବାମ ପାଦରେ ଅଳତା ଦେଇସାରି ଦକ୍ଷିଣ ପାଦକୁ ଭ୍ରମରେ ସୁନା ଅଳତାପାତ୍ର ଭାବି ତହିଁରେ ଆଲେଖ୍ୟଶଳାକା (ଚିତ୍ର କରୁଥିବା ବା ଅଳତା ଦେଉ ଥିବା କାଠି ବା ତୂଳୀ)କୁ ବୁଡ଼ାଇବାକୁ ଚେଷ୍ଟା କରିବାରୁ ଚନ୍ଦ୍ରକଳା ମୁଣ୍ଡପୋତି ହସିଦେଲା ।୪୧ । ଲାବଣ୍ୟଭୃତି—ସୌନ୍ଦର୍ଯ୍ୟସମ୍ପତ୍ତି, କଞ୍ଜସୂତ—ବ୍ରହ୍ମା, ପ୍ରଜାପତି । ୪୨ । ଏ କୌତୁକରୂପ ରସ (ଜଳ) ବର୍ଷାରେ, ରସା—ପୃଥିବୀ, ସୁନାବଲ୍ଲରୀ— ସ୍ୱର୍ଣ୍ଣଲତା (ଚନ୍ଦ୍ରକଳାର ଦେହ,) ପଲ୍ଲବ— (ରକ୍ତବର୍ଣ୍ଣ) ନୂପଥାପତ୍ର. ସୁରଭିଶିରୀମଣ୍ଡଳୀ —ବସନ୍ତ ଶୋଭାରାଶି । ୪୩ । ସମ୍ଭାର— ଆୟୋଜନ, ଶୁଭାଙ୍ଗୀ—ସୁନ୍ଦରୀ, ବ୍ରୀଡ଼ା—ଲଜ୍ଜା, ମେଘାମ୍ବର—ଏକପ୍ରକାର ଶାଢ଼ୀ, ସୁମଲତିକା ... କୌତୁକୀ ବିଧାତା ସୁନାଲତାର ମିନା ଫୁଙ୍କିଲା ଅର୍ଥାତ୍ ରତ୍ନ ବସାଇବା ରୂପ ଶିଳ୍ପଚାତୁରୀ ଦେଖାଇଲା କି ? । ୪୪ । ନୀରନ୍ଧ୍ରଆନ୍ଧ୍ରଉଉଲରେ —ଠିକ ତେଲଙ୍ଗ ଢଙ୍ଗରେ । ପୁରୁଷାୟିତ— ବିପରୀତରତି, ନୀବୀ—କଟିବସ୍ତ୍ରର ଗଣ୍ଠି, ସୁସଞ୍ଚ —ଯତ୍ନରେ, କମର—କଟି, ଅମର-ପୁଙ୍ଗବସ୍ତୋମର—ବଡ଼ ବଡ଼

ଯେ । ମଦନବିଜୟଡିଣ୍ଡିମଯୁଗଳୀ ହେଲା ମଣ୍ଡନାବଲମ୍ବ ଯେ । ୪୫ । ଯାହା ଲାବଣ୍ୟ ସ୍ୱାଦସୁଧା ଆଶେ । ଦଇବ ଖଞ୍ଜିଛି ରସନାପାଶେ । ସୂକ୍ଷ୍ମ ନେତ୍ରେ ତହିଁ ଚ୍ଛଗି ଥିବାର । ଘେନିଲେ ହେଲା କେଉଁ ଚମତ୍କାର ସେ । ତହୁଁ ସେ ଆସନେ ନେଇ ଯେ । ବିଜେ କରାଇଲେ ସେ ମୃଗଲୋଚନା ତିଳକ ରଚନା ପାଇଁ ଯେ । ୪୬ । ମଞ୍ଜୁଳନୟନ ଖଞ୍ଜନ ଯୁଗେ । ଲାଞ୍ଚୀ ମନୋହର ଅଞ୍ଜନ ଯୋଗେ । ତା ଡୋଳାମସୀର ମୟୂଖରେଖା । କର୍ଣ୍ଣାକାଶ ତୁଲେ ହେଲା କି ସଖା ସେ । କି ତା ନେତ୍ର ଦୀର୍ଘ ଭାବ ଯେ । ଲାଞ୍ଚୀବ୍ୟାଜନୀଳ ଦଣ୍ଡରେ ମାପିଲା ସରସୀରୁହସମ୍ଭବ ଯେ । ୪୭ । ବିଶିଷ୍ଟାଦ୍ୱୟିତ ମତାନୁସାରୀ । ଚଳନ୍ତେ ସୁନ୍ଦର ସିନ୍ଦୂରଶିରୀ । ସ୍ୱର୍ଭାନୁରଦ ବ୍ରଣରେଖା ପାଇ । ଦରେ ପୂର୍ଣ୍ଣ ସୁଧାକର ପଳାଇ ସେ । କେଶ ଜଳଦ ଗହନେ ଯେ । ହେବାକୁ ପ୍ରବେଶ ଅର୍ଦ୍ଧଅଙ୍ଗ ଦେଶ ଦିଶେ କି ପ୍ରତୀତ ମନେ ଯେ । ୪୮ । ନିର୍ମାଣିଲେ ବିନ୍ଦୁ କସ୍ତୂରୀ ବୋଳେ । ଚନ୍ଦନ ନିତି ମଲ୍ଲୀ ତାହା ତୁଲେ । ଲେଖିଲେ କୁରଙ୍ଗମଦ ଆଖିଆ । ଦେଖିବା ଜନ ବିବେଚନାଖିଆ ସେ । ରଦବାସେ ମସୀମାଛି ଯେ । ଚିବୁକେ ମକରୀ ରୂପକ ମକରୀ ଯୋଗାଡ଼ିଲେ ହାର ବାଛି ଯେ । ୪୯ । ସ୍ଥୂଳ ମୁକୁତା ଘନସାରମାଳୀ । ଗହବ ଗୁଛା ଛିଟ ପୁଷ୍ପପାଳୀ । ଚନ୍ଦ୍ରହାରା ତୁଲେ ରାଜନ୍ତେ ମିଶି । ତ୍ରିଗୁଣମୟୀ ଅବିଦ୍ୟା ସଦୃଶୀ ଯେ । ବିଦ୍ୟାନିଧି ଆଭାସିଲା ଯେ । ଅଂସ ଚୁମ୍ବିବାର ଇଟଳା ଗଭାର ମଧ୍ୟେ କେ ଝରା ଖୋସିଲା ଯେ । ୫୦ । ଗଭା ନୋହେ କି ସେ ବାଳା କଟାକ୍ଷ । ପୃଥୁଳ ମୃଦୁଳ ପ୍ରଥମ ଲକ୍ଷ । ତହିଁ ଖୂରଳୀ ଯେବେ ହେଉଥିବ । ସୂକ୍ଷ୍ମ କର୍କଶ ଲକ୍ଷ୍ୟ ନ ଭେଦିବ । ବିଧି ବିଚାର

---

ଦେବତାସମୂହର । ୪୫ । ବାଚାଳ—ଶବ୍ଦାୟମାନ ରସନାଦାମ—ଚନ୍ଦ୍ରହାର, ବିଜୟଡିଣ୍ଡିମ—ଜୟ ଢକ୍କା । ୪୬ । ଯାହା ଲାବଣ୍ୟ ... ଯେଉଁ ଗୁପ୍ତଅଙ୍ଗର ସ୍ୱାଦରୂପ ଅମୃତ ଆଶାରେ ବିଧାତା ରସନା (ଚନ୍ଦ୍ରହାର ଓ ଜିହ୍ୱା)କୁ ତା ନିକଟରେ ଖଞ୍ଜିଛି, ସୂକ୍ଷ୍ମନେତ୍ର—ତୀକ୍ଷ୍ଣ ଚକ୍ଷୁ ଅଥଚ ସରୁ ବସ୍ତ୍ରଖଣ୍ଡ । ୪୭ । ଡୋଳାମସୀର ମୟୂଖରେଖା —ଆଖିଡୋଳାର କାଳିମାର ଜ୍ୟୋତିରେଖା; ଲାଞ୍ଚୀବ୍ୟାଜନୀଳଦଣ୍ଡ—ଲାଞ୍ଚୀରୂପ କପଟନୀଳଯଷ୍ଟି, ସରସୀରୁହସମ୍ଭବ—ବ୍ରହ୍ମା । ୪୮ । ବିଶିଷ୍ଟଦ୍ୱୈତମତାନୁସାରୀ—ବେଦାନ୍ତବାଦୀ ଶ୍ରୀ ବୈଷ୍ଣବଙ୍କପରି (ଶ୍ରୀ ବୈଷ୍ଣବମାନେ ଭାଲଦେଶରେ ସିନ୍ଦୂର ତିଳକ କରନ୍ତି) । ସ୍ୱର୍ଭାନୁରଦ ... ରାହୁଦନ୍ତର ଆଘାତଜନିତ ରକ୍ତବର୍ଣ୍ଣ ଗାର ଦେଖି ପୂର୍ଣ୍ଣଚନ୍ଦ୍ର ପଳାଇ ଯାଇ କେଶରୂପ ମେଘଗହନରେ ପଶିଗଲା କି ? ମସ୍ତକରେ ଘେନିଥିବା ଅର୍ଦ୍ଧଚନ୍ଦ୍ରାକୃତି ସ୍ୱର୍ଣ୍ଣାଳଙ୍କାର ସେହି ଲୁଚିଥିବା ଚନ୍ଦ୍ରର ଅର୍ଦ୍ଧଅଙ୍ଗ ପରା । ୪୯ । କସ୍ତୂରୀବୋଳେ—କସ୍ତୂରୀରସରେ, ଚନ୍ଦନ ... ତା ସଙ୍ଗରେ ଚନ୍ଦନବିନ୍ଦୁ ଓ ନିତି ମଲ୍ଲୀବିନ୍ଦୁ ଦେଲେ । କୁରଙ୍ଗମଦ—ମୃଗମଦ ବା କସ୍ତୂରୀ, ଆଖିଆ—ଅର୍ଦ୍ଧଚନ୍ଦ୍ରାକୃତିରେଖା, ରଦବାସ— ଅଧର, ମସୀମାଛି—କସ୍ତୂରୀରେ ମହୁମାଛି । ମକରୀ ରୂପକ ମକରୀ—ମାଈ ମଗର ପରି ମକରିକା ଚିତ୍ର । ୫୦ । ଘନସାରମାଳୀ— କର୍ପୂରମାଳା, ଛିଟପୁଷ୍ପପାଳୀ—ଚିତ୍ରିତ ଫୁଲମାଳ, ତ୍ରିଗୁଣମୟୀ ... ସତ୍ତ୍ୱ, ରଜ ଓ ତମୋଗୁଣମୟୀ ଅବିଦ୍ୟା (ମାୟା)

କି ଏହା ଯେ । ତୂଳିତ ଶଙ୍କର ଯତୀଶ୍ୱରଙ୍କର ବତାଇଲା ରକ୍ଷା ରାହା ଯେ । ୫୧ । ମୋହନବେଶ ନିବିଡ଼ିବା ଚାହିଁ । ତାମ୍ବୂଳକରଙ୍କବାହିନୀ କେହି । କର୍ପୂର ବିଡ଼ିଆ ବିଡ଼ି ଖଟିଲା । ଅନ୍ତର କାନ୍ତି ବାହ୍ୟକୁ ଫୁଟିଲା ଯେ । ଲାଗିଲା ମସାଲ ଯୋଡ଼ି ଯେ । ଚାମର ମୟୂର ଝୁଲ ଆଦି ଜମା ହେଲା ନାନାରାଜଛଡ଼ି ଯେ । ୫୨ । ସାୟନ୍ତନ ଦୀପ କଳିକାଯାକ । ହୋଇଥିଲେ ଯେ ଭୂଲୋକେ ଅନେକ । ଅଦ୍ୱିତୀୟ ମୂର୍ତ୍ତି ହୋଇ କି ମିଶି । ଚଳିଷ୍ଣୁ ହେଲା ସହୀରୂପେ ଦିଶି ଯେ । ଜନନୀ ପୁରକୁ ଗଲା ଯେ । ଘନ ନୀଳକେଶୀଠାରେ କା ନୟନ ମନ ନିମଗ୍ନ ନୋହିଲା ଯେ । ୫୩ । ନରକଚ୍ଛେଦୀ ଶିରୀ କଣ୍ଠଭୂଷ । ବିଭୂତ୍ୟବଲେପ ବିଭୋ ଧରେଶ । ପନ୍ନଗାଶନଲାଞ୍ଛନ ଶୋଭନ । ପନ୍ନଗଶୟ ପନ୍ନଗମଣ୍ଡନ ହେ । ଦୁହିଙ୍କ ପଦାରବିନ୍ଦ ଯେ । ଭଜି ରାମଚନ୍ଦ୍ର ଦେବ ଗଣେ ଏହା ନେପଥ୍ୟପଥ୍ୟ ଏ ଛାନ୍ଦ ଯେ । ୫୪ । କାଞ୍ଚନଦେହାଙ୍କ ମନୋରଞ୍ଜନ । ବଞ୍ଚାଇବ ଯୁବ ନିବହ ଦିନ । ସଞ୍ଚାର କରିବ ଏ ଯାହା ହୃଦେ । ପଞ୍ଚାଶପଞ୍ଚ ପରିମିତ ପଦେ ଯେ । ଘୁଞ୍ଚାଇବ ତା କଦନ ଯେ । ମଞ୍ଚରେ ଭାରତୀ ଦେବୀ ଲାଗିବାସ ଅଞ୍ଚଳ ବୋଲି ଏ ଘେନ ହେ । ୫୫ ।



---

ପରି । ଅଂସ—କାନ୍ଧ, ଇଟଳାଗଭା—ଅଁଳାଫୁଲ ସଦୃଶ କୂଡ଼ା ଯାହାର, ଝରା—ଫୁଲତୋଡ଼ା । ୫୧ । ଖୁରଳୀ— ଅସ୍ତ୍ରକ୍ଷେପଣ ଶିକ୍ଷାର ଅଭ୍ୟାସ । ୫୩ । ସାୟନ୍ତନଦୀପ ... ସନ୍ଧ୍ୟାବେଳେ ପୃଥିବୀରେ ଜାତ ହୋଇଥିବା କଳିକାକୃତି ଦୀପଶିଖାମାନେ ଏକରୂପରେ ମିଳିତ ହୋଇ ଚନ୍ଦ୍ରକଳାର ସଖୀରୂପ ଧରି ଚଳିଷ୍ଣୁ (ଗତିଶୀଳ) ହେଲେ କି ? । ୫୪ । ନରକଚ୍ଛେଦୀ—ନରକାସୁରବିନାଶନ, ଶିରୀକଣ୍ଠଭୂଷ—ଲକ୍ଷ୍ମୀଦେବୀ ଯାହାଙ୍କର କଣ୍ଠର ଭୂଷଣସ୍ୱରୂପ (ବିଷ୍ଣୁ,) ବିଭୂତ୍ୟବଲେପ— ବିଭୂତିଭୂଷଣ, ଧରେଶ—ଗିରୀଶ (ଶିବ), ପନ୍ନଗାଶନଲାଞ୍ଛନ—ଗରୁଡ଼ଧ୍ୱଜ, ପନ୍ନଗଶୟ— ଶେଷଶଯ୍ୟାଶାୟୀ (ବିଷ୍ଣୁ), ପନ୍ନଗମଣ୍ଡନ—ସର୍ପଭୂଷଣ (ଶିବ), ନେପଥ୍ୟପଥ୍ୟ—ବେଶର ହିତକର ।



# ଦଶମ ଛାନ୍ଦ

## ରାଗ—ବସନ୍ତ

## (ବନବିହାର)

ଅଥ ବିଚକ୍ଷଣେ କ୍ଷଣେ ସାବଧାନେ ଘେନ । କୁସୁମ ସମୟମୟ ହୋଇଲା ଭୁବନ । ହେଲା କ୍ଷଣପ୍ରଭାପ୍ରଭାପରି କ୍ଷଣେ କ୍ଷଣେ । ଶ୍ରୀଅଙ୍ଗ ଢେମାର ମାରମାରଗଣ ଗଣେ ଯେ । ୧ । ତହୁଁ ସେ ପରମରମଣୀୟାଙ୍ଗୀ ରାମାଳି । ଏଥିକି ଯତନ ତ ନ କଲେ ନୋହେ ଭାଳି । କହିଲେ ରେ କର କର ବୀଜଦନ୍ତି କର । ଧ୍ୱନି ଶୁଣୁଛୁ ତ ଚୂତଶିଖେ ପିକଙ୍କର । ୨ । ଚନ୍ଦନ ପବନ ବନ କଲା ସକମ୍ପନ । ପରାଗଧୂସର ସରଣୀରେ ଚଳେ ଜନ । ଅଶେଷ ରୋଲମ୍ବ ଲମ୍ବ କରି ନିଜ ଶ୍ରେଣୀ । କଲେନି ଗର୍ଜନ ଜନଧୃତିହୃତି ଜାଣି । ୩ । ବିକଚ ବକୁଳ କୁଳ ସଙ୍ଗେ ମନ ଝାଳି । ବାସ ପ୍ରସାରୁଚି ରୁଚିଦାୟିନୀ ନିଆଳୀ । ଏକାଳ ଭ୍ରମଣ ମଣ ଶ୍ରୀଅଙ୍ଗକୁ ପଥ୍ୟ । ଶୁଣି ବାଳାମଣି ମଣି ମନେ ମହାତଥ୍ୟ । ୪ । ରଖି ପ୍ରମୋଦରେ ଦରେ ରଦବାସେ ହାସ । ଲୋଚନ ଅଞ୍ଚଳ ଚଳେ କଲା ଫରମାସ । ଜାଣି ପରିବାରୀ ବାରିଜାକ୍ଷୀ ମନୋରଥ । କଲେ ପରିଷ୍କୃତ କୃତକୃତ୍ୟ ହୋଇ ପଥ । ୫ । ବିଜେ ବଡ଼ଭୀରୁ ଭୀରୁ କେଳିବନ ସରି । ସିଞ୍ଚିଲେ ପନୀର ନିରତରେ ବିନ୍ଦୁ କରି । ବିଞ୍ଚିଗଲେ ଘନ ଘନସାର ସାରରଜ । ବିଛାଇଲେ ନବନବମାଳୀ ଦଳବ୍ରଜ । ୬ । ଆଦ୍ୟ ପ୍ରାନ୍ତ କରି କରିଦନ୍ତସ୍ତମ୍ଭ ପୋତି । ଟାଣି ଚନ୍ଦ୍ରାତପ ତପନରୁ ଛାଡ଼ି ଭୀତି । ଆଡ଼ଣୀ ଚାମର ମରକତ ପିକଦାନୀ । ମୁଠାରେ ଭରମରମଣୀୟ ମୁଠା

---

**ଦଶମ ଛାନ୍ଦ**

୧ । କ୍ଷଣପ୍ରଭା—ବିଜୁଳିତେଜ, ମାରମାର୍ଗଣଗଣେ—କନ୍ଦର୍ପର ଶରସମୂହ ଦ୍ୱାରା । ୨ । ରାମାଳି—ସ୍ତ୍ରୀମାନେ, ଏଥିକି ଭାଳି ... ଏହା ଚିନ୍ତା କରି ଯତ୍ନ ଯେ ନ କଲେ ତା ନୁହେଁ ଅର୍ଥାତ୍ ଯତ୍ନ କଲେ । କରକ—ଡାଳିମ୍ବ, କର—(କଳ, ରଳୟୋରଭେଦଃ) ମଧୁରଧ୍ୱନି । ୩ । ରୋଲମ୍ବ—ଭ୍ରମର, ଜନଧୃତିହୃତି ଜାଣି—ମନୁଷ୍ୟଙ୍କର ଧୈର୍ଯ୍ୟ ଚୋରି ହୋଇଥିବା ଜାଣି । ୪ । ବିକଚ—ପ୍ରସ୍ଫୁଟିତ, ରୁଚିଦାୟିନୀ—ପ୍ରୀତିପ୍ରଦାୟିନୀ, ପଥ୍ୟ— ହିତକର । ୫ । ଲୋଚନଅଞ୍ଚଳ—କଟାକ୍ଷ, ଚଳେ—ଚାଳନାରେ, କୃତକୃତ୍ୟ—କୃତାର୍ଥ । ୬ । ବିଜେବଡ଼ଭୀରୁ—ଚନ୍ଦ୍ରକଳା ଥିବା କୋଠାରୁ, ସରି—ପର୍ଯ୍ୟନ୍ତ, ଘନ ଘନସାର ସାରରଜ— ବହଳ

ଘେନି । ୭ । ଅମୂଲ୍ୟ ଶୁକସଙ୍କାଶ ମୁଖବାସ ଝରୀ । ପ୍ରମୋଦବଶରୁ ସରୁ ମର୍ଦ୍ଦଳ ଖଞ୍ଜରୀ । ତାହାର ଶ୍ରୀକର କରବାଳ ଗଣ୍ଡାଢାଲ । ବିଭାବରୀକର କରମାଳିଆ ଚିରାଳ । ୮ । ରତ୍ନଅବିକଳ କଳଧୌତ ଛଡ଼ି ଧରିସା ଭେଟିଲେ କିଙ୍କରୀ କରିଗମନାକୁ ଘେରି । ଚାହିଁ ସଖୀ ଲେଖା ଲେଖାକନ୍ୟା ସ୍ୱରୂପାର । ସାଜିଲେ ଗୁଲାଲ ଲାଲ ରଜର ସମ୍ଭାର । ୯ । ଭିଡ଼ି ଅବଲଗ୍ନ ଲଗ୍ନ ଚାରୁ ଚେଲାଞ୍ଚଳେ । ବାନ୍ଧିଲେ ଅବୀର ବୀରବେଶା କୁତୂହଳେ । ଛାଡ଼ି ଭୁଜଭର ଭରମାଙ୍ଗୀ ବୟୋମଦେ । ହସି ଉଭା ହେଲା ହେଲା ପ୍ରକାଶି ପ୍ରମୋଦେ । ୧୦ । ମହୀଦୁଃଖାପହ ପହଣ୍ଡରେ ରଖି ଟାକ । ଗଲା ଆହା ବିଜେ ବିଜେ ମଣିମା ଏ ଡାକ । ଶ୍ରୀହସ୍ତ ସିତାର ତାର ଧଇଲା କେ ସହୀ । ବିବାଦକୁ ଡାକି ଡାକି ବଜାଇଲେ କେହି । ୧୧ । ଧଇଲା ଖଞ୍ଜରୀ ଜରୀ ତକିଆମଣ୍ଡିତା । ନରେନ୍ଦ୍ରତନୟା ନୟାଗମ ସୁପଣ୍ଡିତା । ଆନନ୍ଦଅମଳ ମଲ୍ଲବେଶାକୁ ଘାରିଲା । ମଦଦ୍ୱିରଦର ଦର ରଖି ବାହାରିଲା । ୧୨ । ଅଳଙ୍କୃତ ଝଣ ଝଣ ନାଦେ ପଥ ଭରି । ବିଜେ କଲା ରଣରଣ ସମରକୁ ପରି । ସରସ ସାହସ ହସ ପ୍ରକାଶି ଜଗତ । କଲା ବିଶାରଦା ରଦାଂଶୁରେ ଧବଳିତ । ୧୩ । କରି ପରବେଶ ବେଶବତୀ ହୃଷ୍ଟ ମନେ । ଚାହିଁ ମଧୁରମାର ମାଧୁର୍ଯ୍ୟ କେଳି ବନେ । କୁସୁମଲବନେ ବନେ ବିହରିବା ଚିନ୍ତି । ବିହିଲାଗିଁ ସାରା ସାରା ମଣ୍ଡଳ ବିଭୂତି । ୧୪ । ହୃଦୟ ଆକୂତକୁ ତରଳାକ୍ଷୀର ଜାଣି । ତୋଳିଲେ କୁସୁମ ସୁମଧୁରା ଧରା ଶ୍ରେଣୀ । ଢେମାସଖୀବ୍ରଜ ବ୍ରଜଦେବୀଙ୍କ ଉଭଲେ । ପରିହାସ ରସର ସଞ୍ଚାର କରାଇଲେ । ୧୫ । ପୁନ୍ନାଗଭୂରୁହରୁ ହରିଣନେତ୍ରା ଜଣେ ।

---

କର୍ପୂରସାରର ଧୂଳି, ନବ ... ନୂଆ ନିଆଳୀ ଫୁଲର ପାଖୁଡ଼ାସବୁ । ୭ । କରୀଦନ୍ତସ୍ତମ୍ଭ—ହାତୀଦାନ୍ତର ଖୁମ୍ବ, ଭର୍ମ ରମଣୀୟ—ସୁନାଦ୍ୱାରା ସୁନ୍ଦର, ମୁଠା—ଏକପ୍ରକାର ଚାମର । ୮ । ଶୁକସଙ୍କାଶ—ଶୁଆଆକୃତିବିଶିଷ୍ଟ, ଖଞ୍ଜରୀ— ଖଞ୍ଜଣୀ, ତାହାର ଶ୍ରୀକର ... ତାହାର ନିଜ ବ୍ୟବହୃତ କରବାଳ (ଖଣ୍ଡା), ଗଣ୍ଡାଚମରେ ତିଆରି ଢାଲ, ବିଭାବରୀକରକରମାଳିଆ—ଚନ୍ଦ୍ରକିରଣ ପରି ଶୁକ୍ଳ, ଚିରାଳ—ପତାକା । ୯ । ରତ୍ନଅବିକଳ —ଅବିକୃତ ରତ୍ନରେ ଗଢ଼ା, କଳଧୌତଛଡ଼ି— ସୁନା ବାଡ଼ି, ଲେଖାକନ୍ୟାସ୍ୱରୂପାର ଲେଖା ଚାହିଁ—ଦେବକନ୍ୟାରୂପିଣୀଙ୍କ ପଂକ୍ତିକୁ ଦେଖି, ଗୁଲାଲ—ଫଗୁ । ୧୦ । ଅବଲଗ୍ନ—କଟିଦେଶ, ଅଣ୍ଟା; ଭିଡ଼ି—ଦୃଢ଼ଭାବରେ, ଚେଲାଞ୍ଚଳେ—ଲୁଗାପଣତ କାନିରେ, ଭରମାଙ୍ଗୀ—ସ୍ୱର୍ଣ୍ଣବର୍ଣ୍ଣା, ବୟୋମଦେ—ଯୌବନଗର୍ବରେ । ୧୧ । ମହୀଦୁଃଖାପହ—ପୃଥିବୀର ଦୁଃଖଦୂରକାରୀ (ପହଣ୍ଡ), ତାର (ଚନ୍ଦ୍ରକଳାର) ଶ୍ରୀହସ୍ତ ସିତାରକୁ କେ ଧଇଲା । ୧୨ । ଜରୀତକିଆ ... ଜରୀଲଗା ଗଦି ଥିବା ଖଞ୍ଜଣୀ, ନୟାଗମସୁପଣ୍ଡିତା—ନୀତିଶାସ୍ତ୍ରପଣ୍ଡିତା, ଆନନ୍ଦଅମଳ—ଆନନ୍ଦରୂପ ନିଶା, ମଦଦ୍ୱିରଦର ଦର ରଖି—ମତ୍ତହସ୍ତୀର ଭୟ ଜାତ କରାଇ । ୧୩ । ଅଳଙ୍କୃତ—ଅଳଙ୍କାର, ରଣରଣସମର—କନ୍ଦର୍ପସହ ଯୁଦ୍ଧ, ରଦାଂଶୁ—ଦନ୍ତର କିରଣ । ୧୪ । ମଧୁ ରମାର—ବସନ୍ତ ଲକ୍ଷ୍ମୀର, କୁସୁମଲବନ—ଫୁଲ ତୋଳିବା, ସାରାମଣ୍ଡଳବିଭୂତି—ସମଗ୍ର ପୃଥିବୀର ଐଶ୍ୱର୍ଯ୍ୟ, ସାରା ବିହିଲେ—ଶ୍ରେଷ୍ଠ କର୍ମ ବିଧାନ କଲେ । ୧୫ । ହୃଦୟଆକୂତ—ମନର ଭାବ । ସୁମଧୁରାଧରା—ମନୋହର ଅଧରଧାରିଣୀ,

ତୋଳନ୍ତେ ପ୍ରସୂନ ସୁନୟନା କେହି ଭଣେ । ପୁରୁଷ ଏ ତରୁ ତରୁଣୀ ରେ ତତେ ଜଣା । ଫୁଟିଛି ଏ ଘେନି ଘେନିଲୁ କି ମନେ ଊଣା । ୧୬ । ଯେତ୍ତେ ଲାଟ ସାର ସାର ହେଲେହେଁ ତାହାର । ପୁନ୍ନାଗେ ଭରସି ରସିବାର ଅସୁନ୍ଦର । ସେ ବୋଲେ ରେ ସହି ସହି ପାରିବି ନାହିଁଟି । ପାଖେ ଛୁରିଅନା ଅନା କଣ୍ଟୀରବକଟୀ । ୧୭ । ତହୁଁ ସୁଧୀରା କେ ରାକେଶ୍ୱରମୁଖୀ କହେ । ତୁ ଜଗତୀଭୂଷା ଭୂଷା ଚମତ୍କାର ନୋହେ । କେହି ପୁଣି କର କରବୀରକୁ ବଢ଼ାନ୍ତେ । କେ ବରାରୋହା ସହାସେ ରସି ବୋଲେ ଏତେ । ୧୮ । କଲୁ ତ ନିକର କର ବୀରେ ଖେଳିବାର । ମଧ୍ୟରେ ଅବୀର ବିରଚିବା କି ପ୍ରକାର । ତୋଳନ୍ତେ କଂକେଳି କେଳିରତା କେ ଛଇଳା । ତାର ସମୁକୁଳକୁଳଶାଖାକୁ ଧଇଲା । ୧୯ । ପଛରୁ କେ ଯାଇ ଜାଇମୃଦୁଦେହା ଗେଲେ । ଭିଡ଼ିଲା ତା କୁଚକୁ ଚତୁରୀ ଛାତି ତୁଲେ । ସେ ଭାଷିଲା ଆଳି ଆଲିଙ୍ଗନୁ ଦିଅ ଛାଡ଼ି । ମୁକୁଳବତୀ ରତିରସରେ ଅଛି ବୁଡ଼ି । ୨୦ । ମୃଦୁବାତେ ମଧୁ ମଧୁ ଅଙ୍ଗେ ପକାଇଲା । ଚମକି କେ ବଧୂ ବଧୂଲିକି ତକାଇଲା । କେ ବାମାବର ସେ ରସେ ବୋଇଲା ତହିଁକି । ମୋର ପ୍ରାଣବନ୍ଧୁ ବନ୍ଧୁକରେ ପଡ଼ିଲୁ କି । ୨୧ । ସୁମନ୍ଦାରରାଜି ରାଜି କରି କେ ନାଗରୀ । ଜଳପିଲା ମଦେ ମଦେଭେନ୍ଦ୍ରଗତି କରି । ଦେଖ ଭୋଗ କରେଁ କରେ ସୁବରଜବାଳୀ । କୃଷ୍ଣଟି ମୁଁ ମାନ ମାନବୀଏ ଧର୍ମପାଳି । ୨୨ । ଧରି ସିନ୍ଧୁବାରବାର କରୋଦରେ ଗେଲେ । ଜିଣିଲି କୁମ୍ଭଜ ଭଜ ମୋତେ ଲୋକେ ବୋଲେ । ନାଗିଣୀ ପାଖରେ ଖରେ ଚାହିଁ ବିଚକିଳ । ବିହିଲା କେ ମଲ୍ଲୀ ମଲି ବୋଲି କୋଳାହଳ । ୨୩ । ଘେନି ନାଗେଶ୍ୱର

---

ବ୍ରଜଦେବୀଙ୍କ ଡଉଲେ—ଗୋପୀମାନଙ୍କ ପରି । ୧୬ । ପୁନ୍ନାଗଭୂରୁହ—ପୋଲାଙ୍ଗଗଛ ଓ ପୁରୁଷଶ୍ରେଷ୍ଠ, ପୁରୁଷ ... ପୁରୁଷରୂପ ପୋଲାଙ୍ଗଗଛ ଫୁଟିଛି ଅର୍ଥାତ୍ 'ପୁଷ୍ପବତୀ' ହୋଇଛି, ଏହା ଦେଖି ତୋ ମନ ଊଣା ହେଲା କି ? । ୧୭ । ଯେତେ ଲାଟ ... ତାହାର ପୁଷ୍ପ ଯେତେ ଉତ୍କୃଷ୍ଟ ହେଲେହେଁ, ପୁନ୍ନାଗ—ପୋଲାଙ୍ଗ ଓ ପୁରୁଷ ହାତୀ । ୧୮ । ରାକେଶ୍ୱର ମୁଖୀ—ପୂର୍ଣ୍ଣଚନ୍ଦ୍ରବଦନା, କରବୀର— ଏକପ୍ରକାର ପେଣ୍ଡାଫୁଲ (କନିଅର ନୁହେଁ) । ୧୯ । କଲୁ ତ—ବୀରସଙ୍ଗେ ଖେଳିବାକୁ ନିକର (ନିଶ୍ଚୟ), କର କଲୁ (ହାତ ଦେଲୁ), ଅବୀର—ଫଗୁ, ଯେ ବୀର ନୁହେ । କଂକେଳି—ଅଶୋକ, ସମୁକୁଳକୁଳଶାଖା—କଢ଼ ହୋଇଥିବା ନିକଟବର୍ତ୍ତୀ ଡାଳ । ୨୦ । ଜାଇ ମୃଦୁଦେହା—ଜାଇଫୁଲ ପରି କୋମଳ ଦେହ ଯାହାର । ମୁକୁଳବତୀ—କ୍ଷୁଦ୍ର କୁଚଯୁକ୍ତା, ତେଣୁ ପୁଷ୍ପବତୀ ହୋଇ ନ ଥିଲେହେଁ ରତିନିପୁଣା ଅଟେ, ଅଥଚ ଫୁଲ ନ ଧରି ଅଶୋକ ମୁକୁଳ ଧରି ଥିଲେହେଁ ଖେଳି ଜାଣେ । ୨୧ । ମଧୁ—ବସନ୍ତକାଳ, ମଧୁ—ପୁଷ୍ପରସ, ବଧୂଲି— ବନ୍ଧୁକ ଫୁଲ, ସାତଘଡ଼ିଆ ଫୁଲ; ରସେ— କୌତୁକରେ, ପ୍ରାଣବନ୍ଧୁ—(ସଂବୋଧନ), ବନ୍ଧୁକରେ—ମୋ ସ୍ୱାମୀ ହାତରେ ଅଥଚ ବନ୍ଧୁକ (ବଧୂଲି) ଫୁଲରେ । ୨୨ । ସୁମନ୍ଦାରରାଜି— ସୁନ୍ଦର ମନ୍ଦାର ଫୁଲମାନଙ୍କୁ; ରାଜି କରି—ତୋଳି, ମଦେଭେନ୍ଦ୍ର—ମତ୍ତହସ୍ତୀ, ସୁବରଜବାଳୀ— ସତ୍ୟଭାମା, କରେ—ସୁଖରେ (ସତ୍ୟଭାମାଙ୍କ ପାଇଁ କୃଷ୍ଣ ସ୍ୱର୍ଗରୁ ମନ୍ଦାରଫୁଲ ଆଣିଥିଲେ) । ୨୩ । ସିନ୍ଧୁବାର—ବେଗୁନିଆ ଫୁଲ, ବାର—ସମୂହ, କରୋଦରେ—ହାତମୁଠା ଭିତରେ, କୁମ୍ଭଜ—ଅଗସ୍ତ୍ୟ ଋଷି [ଅଗସ୍ତ୍ୟ ଗୋଟିଏ

ସ୍ୱର ରଚି କେ ସେପରି । କାଳୀଦଳନର ନରତନୁକୁ ଆଚରି । ବୋଲେ ମତେ ବହୁ ବହୁମାନ କରି ରଖ । ମୁଁ ଜାଙ୍ଗଳିକଟି କଟୀ ଭାଙ୍ଗି ନାଚେଁ ଦେଖ । ୨୪ । ଜାଣେ ଆଶୀବିଷ ବିଷହର ନାମ ଗଦ । ରବିସୁତାସର ସରସିଜ ତୋଳା ପଦ । ତୋଳୁଁ କଢ଼ାକୁନ୍ଦ କୁନ୍ଦନାଙ୍ଗୀ କେହୁ ସ୍ନେହେ । କେଉଁ କଳାବତୀ ବତିଶାର୍ଦ୍ଧବୟା କହେ । ୨୫ । କିରେ ସଖି ଆଜ ଆଜନମ ସ୍ନେହତିଳେ । ମାନସେ ନ କଳି କଳି ଲୋଡୁଚୁ ତ ବଳେ । ଧରୁ କେ ଶୁଭାଙ୍ଗୀ ଭାଙ୍ଗି ସେବତୀରୁ ଡାଳେ । ହସି କେ ଅବଳା ବଳାହକକେଶା ଛଳେ । ୨୬ । ଏ ପାରିବାପଣ ପଣସଂଖ୍ୟ ଜନେ ଥିବ । ଅଛି କି ସନ୍ଧାନେ ଧାନେ ଉପାୟ ବିଭବ । ତୋଳନ୍ତେ ପାଟଳୀ ଟଳି ଭାଷେ କେ କୁତୁକେ । ତତେ କର୍ଣ୍ଣସମ ସମଜନ୍ତି ପରା ଲୋକେ । ୨୭ । ଅର୍ଥୀରେ ଉତ୍ତମ ତ ମହତ୍ତ୍ୱ ରଖାଇଲୁ । ସହଜ ନାମର ମରଜି ଯା ଦେଖାଇଲୁ । ବୋଇଲା ରଙ୍ଗଣୀ ଗଣି ଗଣି କେଉଁ ବାମା । ନାହିଁ ଧୀରାଗଣ ଗଣନାରେ ମୋ ଉପମା । ୨୮ । କିଶୋରୀ ଏପରି ପରିହାସରସେ ହଟି । ଅଟ୍ଟହାସାଧରୀ ଧରିତ୍ରୀରେ ଯାଏ ଲୋଟି । ତଦନନ୍ତର ସେ ରସେଙ୍ଗିତଜ୍ଞାରଜାକୁ । କାଞ୍ଚନପରୁଆରୂଆ ପୀନ ଉରଜାକୁ । ୨୯ । କୁଚଜିତାଚଳା ଚଳାପାଙ୍ଗୀ ସୁଷମାକୁ । ସକଳ ଭୁବନ ବନ ସୁରଭିରମାକୁ । ସଖୀଏ ବିଚାରି ଚାରି ପାଞ୍ଚଗେଲେ ଗେଲେ । ମନୋହର ବାସ ବାସନ୍ତିକ ବେଶ କଲେ । ୩୦ । କଲେ ଯେ ଯାହାର ହାର ଆଦି ଫୁଲ ଭୂଷା । ପ୍ରଫୁଲ୍ଲ ବ୍ରତତୀତତି ପରି ହେଲେ ଯୋଷା । ନବୀନ ପ୍ରବାଳ ବାଳ ଅରୁଣୋଷ୍ଠୀଗଣ । କଲେ ଶ୍ରୁତିପାଶ ପାଶ ପରି ବିଭୂଷଣ । ୩୧ । ହସି ବାଳାବର

---

ସମୁଦ୍ରକୁ ଚଳୁ କରିଥିଲେ, ମାତ୍ର ମୁଁ ବାର ବାର (ଦ୍ୱାଦଶସଂଖ୍ୟକ) ସିନ୍ଧୁକୁ ହାତମୁଠାରେ ଧରିଲି] । ନାଗିଣୀ—ଏକଜାତୀୟ ମଲ୍ଲୀଫୁଲ, ବିଚକିଲ—ଅନ୍ୟ ଜାତୀୟ ମଲ୍ଲୀଫୁଲ, ମଲ୍ଲୀମଲ୍ଲୀ —ମଲ୍ଲୀଫୁଲ, ମଲ୍ଲୀଫୁଲ ଅଥଚ ମରିଗଲି ମରିଗଲି । ୨୪ । ନାଗେଶ୍ୱର—ନାଗେଶ୍ୱର ଫୁଲ ଓ ସାପୁଆଙ୍କ ବାଜା, ନରତନ—ନର୍ତ୍ତନ, ନୃତ୍ୟ; ଜାଙ୍ଗଳିକ—ସାପୁଆକେଳା । ୨୫ । ଆଶୀବିଷ— ସର୍ପ, ବିଷହର ନାମକ ଗଦ । ରବିସୁତାସର —ଯମୁନା ନଦୀ, ସରସିଜତୋଳାପଦ— ପଦ୍ମତୋଳା ପଦ, କଢ଼ାକୁନ୍ଦ—କୁନ୍ଦଫୁଲର କଢ଼କୁ, ବତିଶାର୍ଦ୍ଧବୟା—ଷୋଳବୟସୀ । ୨୬ । କଳି— କଳିକା ବା କଢ଼ ଅଥଚ କଳହ । ବଳାହକକେଶା—ଘନକେଶା । ୨୭ । ପାଟଳୀ—ପାଟଳୀଫୁଲ, ଟଳି—ହଲି ହଲି, ହେ ପାଟଳି ! ତୋତେ ଲୋକେ କର୍ଣ୍ଣସମ (କାନପରି, ପାଟଳୀ ଫୁଲ ସଙ୍ଗେ କାନର ତୁଳନା ହୁଏ ଅଥଚ ଦାତାକର୍ଣ୍ଣ ଭଳି) ବୁଝନ୍ତି ପରା । ୨୮ । ଅର୍ଥୀରେ ଉତ୍ତମ କର୍ଣ୍ଣ—ଯାଚକମାନଙ୍କ ପ୍ରତି ଉତ୍ତମ ଥିଲେ । ୨୯ । ରସେଙ୍ଗିତଜ୍ଞାରଜାକୁ—ଯେଉଁମାନେ ରସର ଇଙ୍ଗିତ (ମନୋଗତ ଭାବ) ବୁଝି ପାରନ୍ତି, ସେମାନଙ୍କ ମଧ୍ୟରେ ଶ୍ରେଷ୍ଠା । କାଞ୍ଚନପରୁଆରୂଆ —ସୁନା ପରୁଆ ପରି ଉଠିଥିବା, ପୀନ—ସ୍ଥୂଳ । ୩୦ । କୁଚଜିତାଚଳା—କୁଚଦ୍ୱାରା ପର୍ବତକୁ ଜୟକରିଛି । ସକଳ ... ସମଗ୍ର ବ୍ରହ୍ମାଣ୍ଡର ଅରଣ୍ୟର ବସନ୍ତଲକ୍ଷ୍ମୀକୁ । ମନୋହର-ବାସ ବାସନ୍ତିକ— ମନୋହର ସୌରଭଯୁକ୍ତ ବାସନ୍ତିକ ପୁଷ୍ପରେ ବେଶ କଲେ । ୩୧ । ପ୍ରଫୁଲ୍ଲବ୍ରତତୀତତି—ପ୍ରସ୍ଫୁଟିତ ଲତାସମୂହ । ପ୍ରବାଳ—ନୂଆପତ୍ର, ବାଳଅରୁଣୋଷ୍ଠ —ବାଳଅରୁଣ (ସକାଳଅରୁଣ) ପରି (ରକ୍ତବର୍ଣ୍ଣ) ଓଷ୍ଠ

ବରଷିଲା ଫଗୁମୁଷ୍ଟି । ଆହା ରସାଳସା ଲସାଇଲା ଶୋଭାସୃଷ୍ଟି । ଯଥାଟି ମଧୁପୀ ଧୂପି ପିଅଇ ମରନ୍ଦ । ଫେରେ ଲଭି ତାପ ତା ପରାଗେ ହୋଇ ଅନ୍ଧ । ୩୨ । ମାଣିକ୍ୟଖଣିରୁ ନିରୂପମ ଶିଳ୍ପ କରି । କଲା କି ସେ ଜାତ ଯାତ ଚାରିମୁଖଧାରୀ । ହିଙ୍ଗୁଳଦ୍ୱୀପର ପର ଦେବତାମଣ୍ଡଳୀ । ଆସି ସେ ବନୀକି ନିକି ଆରମ୍ଭିଲେ କେଳି । ୩୩ । ଅନୁରାଗ ରସର ସଂକୋଚ ନ ଥିବାରୁ । ଅଛନ୍ତି କି ବହି ବହିରନ୍ତରେ ରମ୍ଭୋରୁ । ଗାଇବା ହେତୁରୁ ଋତୁରାଜ ହୋରୀଗୀତ । ତେଜିଲେ କୂଜିତ ଜିତ ହେଲେ ପରଭୃତ । ୩୪ । ଜେମା ହାତୀ ମାର ମାର ବୋଲି ଏହା ଡରେ । ବୋଲି କେ କାହାର ହାର ଆଡ଼ିଆ ଧଇଲେ । ଜିଣଇ ଚପଳା ପଳାଇବା ବେଳେ କହି । ଆଣେ କେ ଅବଳା ବଳାକ୍ରାରେ ଧରି ବହି । ୩୫ । ଦକ୍ଷିଣ ମରୁତରୁ ତ ଚେଳ ଉଡ଼େ ଦେଖି । ଫିଙ୍ଗେ ଲାଲରଙ୍ଗ ରଜନୀଶବିମ୍ବମୁଖୀ । ଭିଡ଼ନ୍ତେ ଦୁକୂଳକୁ ଲଜ୍ଜାରେ ସେ ସୁନ୍ଦରୀ । ମାରଇ ମୁଖକୁ ଖ-କୁ ଉଡ଼ାଇଲା ପରି । ୩୬ । ହୋଇ ସବିନୟ ନୟନରେ ଦେଉ ପାଣି । ଫିଙ୍ଗିଲା ତଳକୁ ଲକୁଚକୁଚା ତରୁଣୀ । ସଖୀ ନୀବୀପାଶ ପାଶ ଗଲା ତାର ଦିଶି । ଅନଙ୍ଗନିକେତେ କେତେ ରଙ୍ଗ ଗଲା ମିଶି । ୩୭ । ବରଜ ବରଜ ରଜବତୀଟାକୁ ବୋଲି । ଖେଳନ ସାହସୀ ହସି କରେ ଦିଏ ପେଲି । ଫଗୁଖେଳ ସରୁ ସରୁମଧମା ଛଇଳା । ଅତର ପନୀର ନୀର ଖେଳେ ମନ ଦେଲା । ୩୮ । ବିବିଧ ଅତର ତ ରମଣୀମଣି ତୁଲେ । ସୁନାକଲଶୀରେ ଶିରେ ଦାସୀ ବହିଥିଲେ । ମଣିମୟ କମ କମନୀୟ ବାଛି ଦେଖି ।

---

ଯାହାଙ୍କର । ଶ୍ରୁତିପାଶ—ସୁନ୍ଦର କର୍ଣ୍ଣଦ୍ୱୟକୁ ପାଶ ପରି (କର୍ଣ୍ଣକୁ ପାଶ ସଙ୍ଗେ ତୁଳନା କରାଯାଏ) । ୩୨ । ବାଳାବର—ଏଠାରେ ଚନ୍ଦ୍ରକଳା, ଲସାଇଲା—ଦବାଇଲା, ପରାସ୍ତ କଲା; ମଧୁପୀ—ଭ୍ରମରୀ, ଧୂପି—ଧାଇଁ ଯାଇଁ, ମରନ୍ଦ—ମକରନ୍ଦ, ତାପ—ଦୁଃଖ । ତା ପରାଗରେ—ତା ରେଣୁରେ । ୩୩ । ନିରୂପମ —ଉପମାରହିତ । ମାଣିକ୍ୟଖଣି—ରକ୍ତବର୍ଣ୍ଣର ଖଣି, ସେ ଯାତ୍ରାକୁ ଜାତ କଲା କି ? ଚାରିମୁଖଧାରୀ—ବିଧାତା । ହିଙ୍ଗୁଳଦ୍ୱୀପ— ହଂସପାଦ ନାମକ ଗାଢ଼ ରକ୍ତବର୍ଣ୍ଣବିଶିଷ୍ଟ ଦ୍ୱୀପ । ପରଦେବତା ମଣ୍ଡଳୀ—ଉତ୍କୃଷ୍ଟ ଦେବୀମାନେ, ବନୀ—ଉପବନ । ୩୪ । ଅନୁରାଗରସ— ସ୍ନେହରସ (ସ୍ନେହ ରକ୍ତ ବର୍ଣ୍ଣ ବୋଲି କବିମାନେ ବର୍ଣ୍ଣନା କରନ୍ତି) । ଅଛନ୍ତି କି ... ରମ୍ଭୋରୁ— ସଖୀମାନେ ଭିତରେ ଓ ବାହାରେ ରକ୍ତବର୍ଣ୍ଣ ହୋଇଅଛନ୍ତି କି ? କୂଜିତ—ପକ୍ଷୀଙ୍କର ମଧୁର ଶବ୍ଦ । ପରଭୃତ—କୋକିଳ । ୩୫ । ଆଡ଼ିଆ— ହାତୀ ପ୍ରଭୃତି ବନ୍ୟଜନ୍ତୁଙ୍କ ନିବାରଣ ପାଇଁ କରାଯିବା ଯଷ୍ଟି ପ୍ରଭୃତିକୁ ଆଡ଼ିଆ କହନ୍ତି । (ଏଠାରେ ଚନ୍ଦ୍ରକଳା ରୂପ ହାତୁଣୀ ଫଗୁ ମାରୁଥିବାରୁ ତାକୁ ନିବାରଣ କରିବାପାଇଁ ହାରରୂପ ଆଡ଼ିଆକୁ ଧରିଲେ) । ଚପଳା—ବିଜୁଳି । ୩୬ । ମରୁତରୁ—ପବନ ହେତୁରୁ । ଲାଲରଙ୍ଗ—ଫଗୁ, ରଜନୀଶବିମ୍ବମୁଖୀ—ଚନ୍ଦ୍ରମୁଖୀ । ଖ-କୁ— ଆକାଶକୁ । ୩୭ । ଲକୁଚ—ଜେଉଟ ଫଳ, ନୀବୀପାଶପାଶ—ପିନ୍ଧାଲୁଗାର ଅଣ୍ଟାପାଖ, ଖୋସଣୀ ପାଖ । ଅନଙ୍ଗନିକେତ—ଗୁପ୍ତଅଙ୍ଗ । ୩୮ । ରଜବତୀ—ପୁଷ୍ପବତୀ । ସରୁମଧମା— କ୍ଷୀଣକଟି । ୩୯ । ନଳି—ପିଚକାରୀ । ୪୦ ।

କରେ ଦେଲା ନଳି ନଳିନାକ୍ଷୀର କେ ସଖୀ । ୩୯ । ଖେଳିଲା ଅଖଞ୍ଜ ଖଞ୍ଜନାକ୍ଷୀ ନାରୀରାଜା । ମଣ୍ଡନଶିଞ୍ଜିତଜିତ ହେଲା ଘନ ବାଜା । ବହିଲା ଅତରତରଙ୍ଗିଣୀ ସ୍ରୋତ ପରି । ଘେରିଲେ ଭ୍ରମର ମରକତଗୋଳ ସରି । ୪୦ । ଉପବନ ତଳ ତ ଲସଇ ଚନ୍ଦ୍ରୋପଳ । କୁସୁମରଜରେ ଜରେ ଅତରକଲ୍ଲୋଳ । କାର ଏକପାଖ ପା ଖସିଲେ କେ ହସିଲା । ଦୁଇପଦ ତାର ତାରତମ୍ୟରେ ଖସିଲା । ୪୧ । ପରାଗଜମ୍ବାଳ ବାଳମୃଗାକ୍ଷୀ କେ ଧରି । ଆଲିଙ୍ଗି କ୍ଷେପି ଲେପିଲେ ହସଇ କିଶୋରୀ । କେ କାହା ଉପରେ ପରେ ଭର ଦେଇ ପଡ଼େ । ଧରି କରତାଳ ତାଳସ୍ତନା ହସି ପଡ଼େ । ୪୨ । ନିଜ ପ୍ରତିବିମ୍ବ ବିମ୍ବଅଧରୀ କେ ଲେଖି । କହେ ଭ୍ରମେ ଅନା ଅନାୟତ୍ତ ହେଲା ସଖୀ । ତୋଳି ଧରିବା କି ବାକି ରହିଯିବ ସିନା । ନୋହେ ଆମ୍ଭ ସମ ସମରଥା ଏ ନୂତନା । ୪୩ । କିରୂପେ ଗୋ ସହ ସହଚରୀ ଏ କି ପ୍ରୀତି । ଶୁଣି ଏ ଭାରତୀ ରତିତୁଲ୍ୟାଏ ହସନ୍ତି । ତିନିଯାମ୍ଭଁ ବଳି ବଳିଶୋଭିନୀ ଖେଳିଲା । ଅତି ମୃଦୁତନୁ ତ ନୂତନା ଶ୍ରାନ୍ତ ହେଲା । ୪୪ । କୃଶ ମଧ୍ୟମ ତ ମତ୍ତଗଜଗମନାର । ଚାମୀକରଘଟ ଘଟନୀୟ ପୟୋଧର । ଅଙ୍ଗକୁ ଶିରୀଷର ସମତା ନାହିଁ ଯାର । ସେ ହେଲେ ଆଶ୍ରମୀ ଶ୍ରମରତ ଚମତ୍କାର । ୪୫ । କଳା ସୁସଂଯତ ଯତନରେ ଲାଗି ବାସ । ହୋଇଲା ଜବନ ବନରୁହବାସ ଶ୍ୱାସ । ନୟନ ଅଞ୍ଜନ ଜନମୋହନାର ଭଲା । ସ୍ୱେଦରେ ଗାଧୋଇ ଧୋଇ ହୋଇ କି ଛଇଲା । ୪୬ । କଞ୍ଜଜୟ ଦୟଦକ୍ଷକରକୁ ବୁଲାଇ । ଢେମାଦେଇ ଦେଇ ଆଳି ଅଂସରେ ଗେଲାଇ । ମଧ୍ୟେ ଦେଇ ବାମ ବାମକର ହେଲା ଉର୍ଭା । କେ କରିବ ଶେଷ ସେ ସମୟେ ତାର ଶୋଭା । ୪୭ । ମଜ୍ଜାଇ ଚାଦର ଦରକଣ୍ଠୀ କେ ପନୀରେ । ପୋଛିଲା ସୁନ୍ଦର ଦରପଣମୁଖୀ ଧୀରେ । ଆତପ ସକଳ କଳକଣ୍ଠବାଣୀ ଦେହେ । ନ ବାଧିଲା ପରି

---

ଅଖଞ୍ଜଖଞ୍ଜନାକ୍ଷୀ—ନିର୍ଦୋଷଖଞ୍ଜନପକ୍ଷୀ ପରି ଚଞ୍ଚଳ ଆଖି ଯାହାର, ମଣ୍ଡନଶିଞ୍ଜିତ—ଅଳଙ୍କାରଧ୍ୱନି, ଘନବାଜା—ଉଚ୍ଚ ସ୍ୱରରେ ବାଜୁଥିବା ବାଦ୍ୟ, ଅତରତରଙ୍ଗିଣୀ—ଅତରର ନଈ, ମରକତଗୋଳ ସରି—ମରକତମଣିର ଗୋଲି ପରି । ୪୧ । ଉପବନ ... ଚନ୍ଦ୍ରକାନ୍ତମଣିରେ ତିଆରି ହୋଇଥିବା ବଗିଚାର ତଳଦେଶ ଲସଇ (ତଳକୁ ଦବିଗଲା) । ୪୨ । ପରାଗଜମ୍ବାଳ— ପଗୁକାଦୁଅ, କ୍ଷେପି—ପୋପାଡ଼ି, ପରେ—ଅନ୍ୟ ଉପରେ । ୪୩ । ନିଜ ପ୍ରତିବିମ୍ବ—ଚନ୍ଦ୍ରକଳାର ସ୍ୱପ୍ରତିକୃତି, ସଖି (ଚନ୍ଦ୍ରକଳା) ଅନାୟତ୍ତ (କ୍ଳାନ୍ତ) ହେଲା । ୪୪ । ମଧ୍ୟମ—କଟିଦେଶ, ଚାମୀକରଘଟ ଘଟନୀୟ—ସୁନା ମାଠିଆ ପରିସୁନ୍ଦର, ଶିରୀଷର ସମତା—କୋମଳ ଶିରୀଷ ଫୁଲର ସାମ୍ୟ, ଶ୍ରମରତ—ପରିଶ୍ରମକ୍ଳାନ୍ତ, ଆଶ୍ରମୀ ହେଲେ—ଆଶ୍ରମ ମଣ୍ଡପରେ ବସିଲେ । ୪୬ । .ହୋଇଲା ... ପଦ୍ମଗନ୍ଧବିଶିଷ୍ଟ ନିଶ୍ୱାସ ଶୀଘ୍ର ଶୀଘ୍ର ବହିଲା । କି ଛଇଲା—କି ସୁନ୍ଦର । ୪୭ । କଞ୍ଜଜୟ—ପଦ୍ମ ଅପେକ୍ଷା ସୁନ୍ଦର । ଦୟଦକ୍ଷକର—ଦୟାପୂର୍ଣ୍ଣ ଦକ୍ଷିଣ ହସ୍ତ, ଅଂସ—କାନ୍ଧ, ମଧ୍ୟ ଦେଇ ... ଅଣ୍ଟାରେ ବାମ (ସୁନ୍ଦର) ବାମକର ଦେଇ । ୪୮ । ଦରକଣ୍ଠି—କମ୍ବୁକଣ୍ଠୀ,

ପରିପାଳିବାକୁ ସ୍ନେହେ । ୪୮ । ଧଇଲା କେ ବିଧୁ ବିଧୂନନହାସଦ୍ୟୁତି । ବିଶାଳ ପେଷଳ ସଲକ୍ଷଣ ଫୁଲଛତି । ମୃଦୁଳ ପବନେ ବନେ ଏପରି ବିହରୁ । କଳା ସୁତରଙ୍ଗ ରଙ୍ଗରସେ ମନେ ଭୀରୁ । ୪୯ । ପଞ୍ଚାଶତ ଏକ ଏ କବୀଶ ପଦେ ଛାନ୍ଦ । ବନବିହାର ସରସ ଜାଣିବେ କୋବିଦ । ହେଲେ ରସବଶ ବସନ୍ତରେ ପାଠ ହେବ । ଉତ୍ତରେ ସଲିଳ ଲୀଳାରସ ବରଷିବ । ୫୦ । ପ୍ରପନ୍ନ ଜନର ନରକାଦି ମହାଦୁଃଖ । ଯେଉଁ ପ୍ରଭୁ ହରେ ହରେ ଉଚାରନ୍ତେ ମୁଖ । ତାଙ୍କ ସନ୍ନିଧିରେ ଧୀରେ ଜଳନ୍ତରପତି । ସଗରିମାଦର ଦରଶନ କଲେ ନିତି । ୫୧ ।



ଆତପ—ଖରା, କଳକଣ୍ଠବାଣୀ—କୋକିଳଭାଷିଣୀ । ୪୯ । ବିଧୁବିଧୂନନହାସଦ୍ୟୁତି—ଯାହାର ହାସ୍ୟର ଶୋଭା ଚନ୍ଦ୍ରକୁ କମ୍ପାଇ ଦିଏ, ପେଷଳ—ସୁନ୍ଦର, ସଲକ୍ଷଣ—ଶୁଭଚିହ୍ନଯୁକ୍ତ, ସୁତରଙ୍ଗରଙ୍ଗରସେ— ସୁନ୍ଦର ଲହରୀ ଥିବା ପୁଷ୍କରିଣୀ କ୍ରୀଡ଼ାରେ । ୫୦ । କବୀଶପଦେ—ବଡ଼ ବଡ଼ କବିଙ୍କଦ୍ୱାରା ପ୍ରଯୁକ୍ତ ପଦରେ । ୫୧ । ହରେ—ହେ ହରି ! ସଗରିମାଦର—ଗୌରବ ଓ ଆଦର ସହିତ । ପ୍ରପନ୍ନ—ଶରଣାଗତ ।



# ଏକାଦଶ ଛାନ୍ଦ

## ରାଗ—ସିନ୍ଧୁଡ଼ା

### (ଜଳବିହାର)

ଶୁଣ ହେ ସୁଜନ ମଧୁ କାଳ ବନ-ବିହାର କୁସୁମ ତୋଳା । କୂତୁକ ଶେଷରେ ଶ୍ରୀଅଙ୍ଗ ଦେଶରେ ଅଳସ ଲଭିଲା ବାଳା ସେ । ମହାରାଜକୁମାରୀ । ନବ ଶିରୀଷରୁ ସୁକୁମାରୀ ସେ । ଚିତ୍ତେ ଚିନ୍ତିଲା ସୁଶୀତ ବାରି ସେ । ୧ । ମନ ଜାଣି ପ୍ରାଣ ସହଚରୀଗଣ କୁସୁମ ତରାସ ଟେକି । ଧୀରେ ଧୀରେ ଗେଲେ ବିଜେ କରାଇଲେ ସତରଙ୍ଗ ସରସୀକି ଯେ । ଧରା ଚମ୍ପକଗଭା । ତିନି ଭୁବନ ଇନ୍ଦିରା ଶୋଭା ସେ । ସରତୀରେ ଯାଇ ହେଲା ଉଭା ସେ । ୨ । ସଲୀଳ ଲହରୀ କଞ୍ଜ ମଦୁଝରି ସଙ୍ଗ ଶୀତଳ ମରୁତ । ମୃଦୁ ମୃଦୁତର ସ୍ପରଶରୁ ତାର ତନୁ କଲା ଆପ୍ୟାୟିତ ସେ । ସେହି ସମୟ ଟାକି । ରଖି ମର୍ଦ୍ଦନ ମଣିଚଉକି । ବିଜେ କରାଇ ନେଲେ ତହିଁକି ଯେ । ୩ । ସଂଯତ ରସନା ହୋଇ ସୁଦଶନାମଣ୍ଡଳୀ ବାଳାକୁ ଘେରି । ତା ଶୋଭାସଦନ ଅଙ୍ଗେ ମରଦନ କଲେ କେତକୀ ଫୁଲରୀ ଯେ । ଦିବ୍ୟ ଝୁନା ଚାଦରେ । ଅତି ଯତ୍ନେ ପୋଛିଲେ ଆଦରେ । ଅନୁରାଗରୁ ଅବିବାଦରେ ଯେ । ୪ । ପଟୀର ସୁବାସ ଘଟୀକି ସେ କୃଶକଟୀ ଅଙ୍ଗୁଟିରେ ବୋଳି । ଗ୍ରନ୍ଥିଳ ତ୍ରିଯାମା ପଙ୍କ ତୁଲେ ବାମା କୁଙ୍କୁମକୁ ଥିଲେ ଦଳି ଯେ । ବୋଳିଦେଇ ବହଳେ । ଉତାରିଲେ ହେମବଂଶ ଦଳେ ଯେ । ତନୁକାନ୍ତି କୁନ୍ଦନକୁ ଛଳେ ସେ । ୫ । ବିଚାରିଲା କବି ଢେମା ଅଙ୍ଗଛବି ସମାନ ନୋହିବା ଘେନି । ରଜନୀ କାଶ୍ମୀର ଶ୍ରୀଅଙ୍ଗରେ ତାର ନ ରଖି ପ୍ରିୟସଜନୀ ସେ । ଡରେ ବୋଇଲେ ଛି

---

**ଏକାଦଶ ଛାନ୍ଦ**

୨ । ସତରଙ୍ଗ—ତରଙ୍ଗଯୁକ୍ତ । ତିନିଭୁବନର ଇନ୍ଦିରା—ଲକ୍ଷ୍ମୀଙ୍କ ପରି ସୁନ୍ଦରୀ । ୩ । ସଲୀଳଲହରୀ ... ଖେଳୁଥିବା ତରଙ୍ଗ ଉପରେ ଥିବା ପଦ୍ମମାନଙ୍କର ମଧୁ (ମକରନ୍ଦ) ଝରି (ପ୍ରବାହ) ସଙ୍ଗ ହେତୁରୁ ଶୀତଳ; ଆପ୍ୟାୟିତ— ସନ୍ତୋଷିତ, ମର୍ଦ୍ଦନମଣିଚଉକି—ରତ୍ନନିର୍ମିତ ଯେଉଁ ଚୌକିରେ ବସି ତୈଳ ମର୍ଦ୍ଦନ କରାଯାଏ । ୪ । ସଂଯତ ରସନା—ଆଠ ସରିଆ କାଞ୍ଚୀଦାମକୁ ଢାକି ଦେଇ, କେତକୀଫୁଲରୀ—କେତକୀଫୁଲର ଅତର, ଝୁନା—ପାତଳ । ୫ । ପଟୀର—ଚନ୍ଦନ, ପଟୀର ... ବାସଚନ୍ଦନର ଅର୍କ ଥିବା ପାତ୍ରକୁ । ଗ୍ରନ୍ଥିଳ ତ୍ରିଯାମାପଙ୍କ ତୁଲେ—ଗଣ୍ଠିହଳଦୀ ବଟା

ଛି । ଅଙ୍ଗତୁଲ୍ୟ ନୋହିବାରୁ କିଛି ଯେ । ସେହିକ୍ଷଣେ ପକାଇଲେ ପୋଛି ଯେ । ୬ । କି ଅବା ଅବଳାମଣିଦ୍ୟୁତିତୁଳା ଲଭିବା ବାଞ୍ଛାରେ ରସି । ତା ଶରୀର ସୁରତରଙ୍ଗିଣୀପୁର ମଧରେ ମୁହୂର୍ତ୍ତେ ଝାସି ସେ । ହେଲେ ଯହୁଁ ତା ସଙ୍ଗୀ । ପାପ ପଙ୍କଯାକ ଦେଲେ ଫିଙ୍ଗି ଯେ । ଧନ୍ୟ କାମଦାୟିନୀ ଶୁଭାଙ୍ଗୀ ସେ । ୭ । କୁନ୍ଦନଖୋପୀ ନୀଳ ମୃଗ ଚଉଁରୀ ଯତନେ ରଖି ଖସାଇ । କମ୍ବୁକଣ୍ଠୀର କଣ୍ଠୀରବମଧ୍ୟାଏ କବରୀକି ଲହସାଇ ଯେ । ସେହି ସହୀ ତାହାର । କରି ଜାଣନ୍ତି ଶୋଭା ବାହାର ସେ । ତୁଙ୍ଗ ଉରଜକୁ ଯଥା ହାର ଯେ । ୮ । ପୁଣି ଲାଗି ଶାଢ଼ୀ ଅଞ୍ଚଳ ନିବାଡ଼ି ଭିଡ଼ି ଛାଡ଼ିଦେଲେ ଫେର । ବାନା କି ସେ ଡାକି ମୃଗେନ୍ଦ୍ରକଟୀକି ଜେମା ମଧ ଜିଣିବାର ଯେ । କାଞ୍ଚୀ ତାହା ତଳରେ । କହେ କିଙ୍କିଣୀ ଧ୍ୱନି ଛଳରେ ସେ । ଧନ ସାବଧାନଟି ଜଳରେ । ୯ । ସ୍ତବକାବନତା ତପନୀୟଲତା ସଞ୍ଚାରିଣୀ ହେଲା ପରି । ତମାଳ ତଳ କୁରୁବିନ୍ଦ ଚାନ୍ଦନୀ ଉପରେ ଭ୍ରମୁ କିଶୋରୀ ଯେ । ତାହା ଛାମୁରେ ରହି । କେଉଁ ପରିଣତ ଚନ୍ଦ୍ରମୁହାଁ ଯେ । ସରଶୋଭା ଘେନାଇଲା କହି ସେ । ୧୦ । ଚାହାଁରେ ଚିତ୍ର ଦରଶନ ଚକିତଚମରୀଚାରୁନୟନା । ତୋ ଅଙ୍ଗ ଆଲିଙ୍ଗନ ଲୋଭେ ତଡ଼ାଗ ବେଶେ ହୋଇଛି ଅଙ୍ଗନା ସେ । ଚଳାଚଳ ଶଫରୀ । ଲୀଳାଲୋଳ ବାଳ ନେତ୍ର ପରି ସେ । ଅରବିନ୍ଦ ତ ବଦନ ସରି ସେ । ୧୧ । ଜଳଜସନ୍ତତିବୃନ୍ତ ଗ୍ରୀବାକାନ୍ତି ଚୋରିକଲା ପରି ଦିଶେ । ଆଲିଙ୍ଗିତ ଅଙ୍ଗ ପୃଥୁଳ ରଥାଙ୍ଗମିଥୁନ ସ୍ତନ ସଦୃଶେ ଗୋ । ସତେ କେଡ଼େ ସୁଗମ । ଜଳନୀଳୀ ରୋମରାଜି ସମ ଗୋ । ଜଳଭ୍ରମି ନାଭିହ୍ରଦୋପମ ଗୋ । ୧୨ । ହେମସୋପାନଆବଳି ତ୍ରିବଳିରୁ ବଳିଛି କଳନା କର । ଏହା ଲହରୀକି ଭୂରୁବଲ୍ଲରୀକି ତୁଳିଦେଲେ ବରାବର ଗୋ । ରସେ ରହିଛି ପୂରି । କୋକନଦ ପାଣି ପାଦ ପରି ରେ । କୂର୍ମଜଘନା ଏ ବରନାରୀ

ସାଙ୍ଗରେ, ହେମବଂଶଦଳେ—ସୁନା ବାଉଁଶ ପତ୍ରରେ, କୁନ୍ଦନ—ସୁନା । ୬ । ରଜନୀକାଶ୍ମୀର—ହଳଦୀ ଓ କୁଙ୍କୁମ । ୭ । ଦ୍ୟୁତିତୁଳା—କାନ୍ତିର ତୁଳନା; ତା ଶରୀର ସୁରତରଙ୍ଗିଣୀପୁରମଧରେ—ଚନ୍ଦ୍ରକଳାର ଶରୀରରୂପ ସ୍ୱର୍ଗଗଙ୍ଗାପ୍ରବାହରେ, କାମଦାୟିନୀ—ଅଭିଳାଷ ପୂରଣକାରିଣୀ । ଶୁଭାଙ୍ଗୀସୁନ୍ଦରୀ (ଚନ୍ଦ୍ରକଳା) । ୮ । କୁନ୍ଦନଖୋପୀ —ସୁନା ଚଉଁରୀଭୁଣ୍ଡିରେ ଲାଗିଥିବା, କବରୀ—ବେଣୀ ବା ଜୁଡ଼ା, ଲହସାଇଦେଲେ— ହୁଗୁଳା କରିଦେଲେ ବା ଫିଟାଇ ଦେଲେ । ୯ । ବାନା କି ସେ—ସେ ଫେର ଜେମାର କଟିଦେଶ ଡାକି (ଡମରୁ) ଓ ମୃଗେନ୍ଦ୍ରକଟୀ (ସିଂହକଟି)କୁ ଯେ ଜିଣିଅଛି ତାହାର ଜୟପତାକା କି ? କାଞ୍ଚୀ— କଟିମେଖଳା । ୧୦ । ସ୍ତବକାବନତା—ଫୁଲପେଣ୍ଡା ହେତୁରୁ ନଇଁ ପଡ଼ିଥିବା ତପନୀୟ ଲତା— ସ୍ୱର୍ଣ୍ଣଲତା, କୁରୁବିନ୍ଦ—ପଦ୍ମରାଗମଣି । ୧୧ । ଚିତ୍ରଦର୍ଶନ—ବିଚିତ୍ର ଶୋଭା, ପୋଖରୀ ସ୍ତ୍ରୀ ବେଶ ଧାରଣ କରିଅଛି । ଚଳାଚଳ ଶଫରୀ—ଚଞ୍ଚଳ କେରାଣ୍ଡି ମାଛ, ଅରବିନ୍ଦ—ପଦ୍ମ । ୧୨ । ଜଳଜସନ୍ତତିବୃନ୍ତ—ପଦ୍ମସମୂହର ଡେମ୍ଫ; ଆଲିଙ୍ଗିତ ... ପରସ୍ପର ଜକାଜକି ହୋଇ ରହିଥିବା ସ୍ଥୂଳ ଚକ୍ରବାକ ଚକ୍ରବାକୀ; ଜଳନୀଳୀ—ଶୈବାଳ, ଶିଉଳି; ଜଳଭ୍ରମି—ପାଣିଭଉଁରୀ; ନାଭିହ୍ରଦୋପମ

ରେ । ୧୩ । କେ ବୋଲେ ରେ ଭୀରୁ ବଇଜୟନ୍ତୀରୁ ମୁକୁରଭିତ୍ତିଶକଳ । ଖସି ପଡ଼ି କେହି ସରଦମ୍ଭେ ରହି ମଣ୍ଡିଛି ମହୀମଣ୍ଡଳ ସେ । ଦିବି ଅମରୀକୁଳ । ଚାହିଁବାରୁ ମୁଖ ପ୍ରତିଫଳ ସେ । ପଦ୍ମବ୍ୟାଜେ ହୋଇ ଦିଶେ ଠୁଳ ସେ । ୧୪ । ରମଣୀର ମଣିରମଣୀୟ ମୁଖ ପୁରୁଷ ଚୁମ୍ବିଲା ପରି । ସାରସ ସାରସ ସାର ଷଟପଦମାନେ ନେଉଛନ୍ତି ହରି ରେ । ବାତ ବାଜି ବାରିଜ । ଆନ୍ଦୋଳିତ ହୋଇବାର ବ୍ୟାଜ ଗୋ । ନାହିଁ ନାହିଁ ବୋଲି କରେ ଲାଜ ଗୋ । ୧୫ । ହୀରା ଇନ୍ଦ୍ରନୀଳ ଗୋମେଦ ପ୍ରବାଳ କପୋତକ ପାରାବତ । ବରୁଣ ବିମାନସମ ଦ୍ୱୀପଦଣ୍ଡି ମଣ୍ଡିଅଛନ୍ତି କେମନ୍ତ ଗୋ । ଦେଖ ଶିଖରିଦନ୍ତି ! ଏ କି କୃତ୍ରିମ ପରି ଦିଶନ୍ତି ଗୋ । ଜୀବ ଥିଲା ପରି ହେବ ଭ୍ରାନ୍ତି ଗୋ । ୧୬ । ସକୁଳଶକୁଳସଂକୁଳ ଏ ସର ନ କର ନ କର ଭୀତି । ରସରେ ରସରେ ରସ ରେ ଏହାର ବାରଣବାରଣଗତି ଗୋ । ପୁଷ୍ପାବଚୟ ଶ୍ରମ । ଜଳକେଳିରୁ ଲଭୁ ବିରାମ ଗୋ । ସୁଶୀଳା ଶୀତଳ ସରେ ରମ ଗୋ । ୧୭ । କ୍ଷଣାଣ ଶେଷର ସମୟେ ସେ ସର-ସରସିଜନେତ୍ରାଞ୍ଚଳେ । ଅଧର କାମୋଡ଼ି ହେଲେ ଭିଡ଼ାଭିଡ଼ି ଆପଣା ଦୁକୂଳାଞ୍ଚଳେ ଯେ । ଚାହିଁ ହସୁଛି ଜେମା । ଜମା ହେବାର ସକଳ ବାମା ସେ । ରୂପେ ସମସ୍ତେ ଉର୍ବଶୀସମା ସେ । ୧୮ । ଚନ୍ଦ୍ରକଳାକର ଘେନି କୁମୁଦିନୀ ହେଲା ପରି ପ୍ରମୁଦିତ । ବାଳାକର ଧରି ଜଳେ ସେ ସୁନ୍ଦରୀ ପ୍ରକାଶିଲେ ସେହି ମତ ସେ । କିବା ନିର୍ମଳ ଘନେ । ଲୋଳେ

---

—ଗଭୀର ନାଭି ସଦୃଶ । ୧୩ । ହେମସୋପାନଆବଳି—ସୁନାର ପାହାଚସବୁ । ଭୂରୁବଲ୍ଲରୀ—ଭ୍ରୂଲତା (ଲହରୀସଙ୍ଗେ ତୁଳିତ, ରସ) ଜଳ ଓ ଶୃଙ୍ଗାରଭାବ, କୋକନଦ—ରକ୍ତପଦ୍ମ, କୂର୍ମଜଘନା—ବଡ଼ କଇଁଛ ପରି ଜଘନ ଯାହାର । ୧୪ । ବୈଜୟନ୍ତୀ—ଇନ୍ଦ୍ରପୁରୀ, ମୁକୁରଭିତ୍ତିଶକଳ—ଦର୍ପଣ କାଚଖଣ୍ଡ, ସରଦମ୍ଭେ —ପୋଖରୀ ବ୍ୟାଜରେ, ଦିବି—ସ୍ୱର୍ଗରେ । ୧୫ । ମଣି ରମଣୀୟମୁଖ—ମଣି ପରି ସୁନ୍ଦର ମୁଖ, ସାରସ—ସରରେ ଜାତ, ସାରସ—ପଦ୍ମ, ସାର—ମକରନ୍ଦାଦି ନିର୍ଯ୍ୟାସ, ଷଟ୍‌ପଦ—ଭ୍ରମର, ବାତବାଜି ... ପବନ ବାଜି ପଦ୍ମ କମ୍ପୁ ନାହିଁ ଯେ, ଭ୍ରମର (ପୁରୁଷ) ପୁଷ୍କରିଣୀ (ରମଣୀ)ର ପଦ୍ମ (ମୁଖ) ଚୁମ୍ବିବାରୁ ସେ ଲାଜରେ ନାହିଁ କରି ମୁହଁ ହଲାଉ ଅଛି । ୧୬ । ହୀରା—ଶୁକ୍ଳବର୍ଣ୍ଣ ରତ୍ନ, ଗୋମେଦ—ପୀତବର୍ଣ୍ଣର ରତ୍ନ; ଶୁକ୍ଳାଦି ଚତୁର୍ବିଧ ବର୍ଣ୍ଣ ରତ୍ନରେ ନିର୍ମିତ କପୋତ ଓ ପାରାମାନେ ବରୁଣଙ୍କ ବିମାନ ପରି ଦିଶୁଥିବା ଦ୍ୱୀପଦଣ୍ଡିରେ କି ସୁନ୍ଦର ଦିଶୁଅଛନ୍ତି । ହେ ଶିଖରିଦନ୍ତି—ହେ ସୂକ୍ଷ୍ମାଗ୍ରଦନ୍ତଧାରିଣି, ଏମାନେ ଆଉ ନିର୍ଜୀବ କୃତ୍ରିମ ପିତୁଳା ପରି ଦିଶୁ ନାହାନ୍ତି, ପ୍ରାଣ ଥିବାପରି ଭ୍ରମ ହେବ । ୧୭ । ସକୁଳଶକୁଳସଂକୁଳ—ସ୍ୱଜାତୀୟ ଅନ୍ୟ ମାଛଙ୍କ ସହିତ ଶକୁଳ (ଶେଉଳ) ମାଛମାନଙ୍କରେ ଏ ସର ସଂକୁଳ (ପୂର୍ଣ୍ଣ) ହୋଇଅଛି, ନକର(ନକ୍ର), କୁମ୍ଭୀର— ଏଥିରେ କୁମ୍ଭୀର ଅଛି ବୋଲି ଭୟ କରନା, ରେ ବାରଣ-ବାରଣଗତି—ରେ ଗଜଗତି ପରାଜୟକାରିଣି ! ଏହାର ରସରେ (ଜଳରେ), ରସରେ (ଆନନ୍ଦରେ) ରସ (କ୍ରୀଡ଼ାକର), ପୁଷ୍ପାବଚୟ—ଫୁଲତୋଳା, ସୁଶୀଳା—ହେ ସୁସ୍ୱଭାବା (ଚନ୍ଦ୍ରକଳା) । ୧୮ । ସେ ସର ସରସିଜନେତ୍ରାଞ୍ଚଳେ—ସେ ପୁଷ୍କରିଣୀର ପଦ୍ମମାନଙ୍କ ପରି

ଝଳିଲେ ଚପଳାମାନେ ଯେ । ବାଳା ଖେଳିଲେ ଅତି ଶୋଭନେ ଯେ । ୧୯ । ସ୍ରହଚରୀ ପରି ଲହରୀରେଖାର ପହଁରିଲେ ହରିଣାକ୍ଷୀ । କଳହଂସକୁଳ ହୋଇଲେ ନିଶ୍ଚଳ ବାଳାବଳୀ ଖେଳ ଦେଖି ସେ । କେହି ନୟନ ବୁଜି । ସଖୀ ନ ଚାହୁଁ ରହେ ନିମଜ୍ଜି ସେ । ଆର ସଖୀ ମଜ୍ଜିଯାଏ ଖୋଜି ଯେ । ୨୦ । କେ କାହାର ଜଳନିମଗ୍ନ ବିପୁଳ ଉରୁଯୁଗ ତଳେ ବୁଡ଼େ । ଚମକି ସେ ଡରେ ଭୁଜେ ନିବିଡ଼ରେ ସମୀପ ସହୀକି ଭିଡ଼େ ଯେ । ଜାଣି ହସି ହରଷେ । ତାର ସୁନ୍ଦର ମୁଖସାରସେ ଯେ । କରାଞ୍ଜଳିରେ ଜଳ ବରଷେ ଯେ । ୨୧ । କେ ବାଳା କାହାର ଶିଥିଳାଇ ଫେର ନିତମ୍ବ ନିକଟ ହେଜି । ନଖ ଚଳାଇ ଚମକାଇ ପଳାଇ ସଲୀଳେ ସଲିଳେ ମଜ୍ଜି ଯେ । ଦୂରେ ଯାଇ ବାହାରି । ଅଟ୍ଟହାସ କଲା ମନୋହାରୀ ଯେ । କେହି କାହାକୁ ଖେଳେ ନ ହାରି ଯେ । ୨୨ । କେ ଗେଲେ ଗୁହାରି କହଇ ଜୁହାରି ଜେମା ସନ୍ନିଧିରେ ହସି । ଦେଖୁଅଛୁ ପରା ପ୍ରଭୁ ତୁ ତ ଧରାମଣ୍ଡନା ତମାଳକେଶି ରେ । କାହିଁପାଇଁ ଏ ମୋର ବକ୍ଷସ୍ଥଳ କଲା ଦିଗମ୍ବର ଗୋ । ଲଜ୍ଜା ରଖିଲା ସିନା ଶମ୍ବର ଗୋ । ୨୩ । ବାଳା ଶୁଣି କହେ ଅତଥ୍ୟ ଏ ନୋହେ ଏହାରି ଏ ହାରି ହେବ । ପୁରୁଷେ ପାଣିରେ ରହିବାରୁ ସିନା ବଞ୍ଚାଇଲୁ ଅବୟବ ରେ । ଆନ ସହାୟ ବଳେ । ବଞ୍ଚି ପାରନ୍ତୁ କି ଜଳଖେଳେ ରେ । ବୁଝାଯିବ ବେହରଣ ବେଳେ ରେ । ୨୪ । ଜେମାର ବିପୁଳ ଜଘନକୁ ଜଳ ଯହୁଁ କଲା ଆଲିଙ୍ଗନ । ଯୁବରାଜ ପାଣିଲାଗି ପରି ମଣି ପୁଲକନ୍ତେ ଅପଘନ ଯେ । ହସି କେଉଁ ମହିଳା । ଛଳି ଆନକୁ ଚାହିଁ କହିଲା ଯେ । କାଳ କଳି ହେଲେ କି ନୋହିଲା ଗୋ । ୨୫ । ପରକୁ ଯେ ଯାହା କରିଥାଇ ତାହା ଅନୁଭବ କରେ ଆପେ । ସବୁ ପ୍ରାଣୀଙ୍କର ଘରବୁଡ଼ା ମାରଘର ବୁଡ଼ିଗଲା ଆପେ ଗୋ । ଶୁଣି ଲାଜେ କିଶୋରୀ । ନେତ୍ର ଅନ୍ତରେ ମିଶାଇ କରି ଯେ ।

---

ନେତ୍ରପ୍ରଦେଶ ଯେଉଁମାନଙ୍କର ସେହି ସଖୀମାନେ । ୧୯ । ଚନ୍ଦ୍ରକଳାକର— ଚନ୍ଦ୍ରଲେଖାର କିରଣ, ଲୋଳେ—ଚଞ୍ଚଳ ହୋଇ, ଚପଳାମାନେ—ବିଜୁଳିସବୁ । ୨୦ । ଲହରୀରେଖାର ସହଚରୀପରି—ଲହରୀ ସମାନ ହୋଇ, ବାଳାବଳୀ—ଯୁବତୀସମୂହ । ୨୧ । ଜଳନିମଗ୍ନ ବିପୁଳ ଉରୁ ଯୁଗଳେ—ପାଣିରେ ବୁଡ଼ିଥିବା ବଡ଼ ଜଙ୍ଘଦ୍ୱୟ ତଳରେ, ମୁଖସାରସେ—ମୁଖପଦ୍ମରେ, କରାଞ୍ଜଳିରେ —ହାତ ଆଞ୍ଜୁଳାରେ । ୨୨ । ଫେର—ଜଙ୍ଘ ନିକଟରେ ଥିବା ଲୁଗା, ନିତମ୍ବନିକଟ ହେଜି— ପିଚାପାଖ ଜାଣି ପାରି, ସଲୀଳେ—କୌତୁକରେ, ସଲିଳେ—ପାଣିରେ । ୨୩ । ତମାଳକେଶୀ— ତମାଳ ଗଛର ପତ୍ର ପରି କେଶ ଯାହାର, ଦିଗମ୍ବର—ବସ୍ତ୍ରଶୂନ୍ୟ, ଶମ୍ବର—ଜଳ । ୨୪ । ବାଳା—ଏଠାରେ ଚନ୍ଦ୍ରକଳା, ଅତଥ୍ୟ—ମିଥ୍ୟା, ଏହାରି—ଏ ସଖୀର, ଏ ହାରି ହେବ—ଏଥିରେ ପରାଜୟ ହେବ, ପୁରୁଷେ ପାଣିରେ—ଏକପୁରୁଷ ପରିମିତ ପାଣି ଭିତରେ ଅଥବା ପୁରୁଷର ପାଣି ବା ହାତରେ । ବେହରଣବେଳେ—ସଭା ବୈଠକ ସମୟରେ । ୨୫ । ଜେମାର ବିପୁଳ ... ଜେମା ଯେତେବେଳେ ଜଙ୍ଘେ ପାଣିରେ ପଶିଲା, ରାଜପୁତ୍ରର ହାତ ଲାଗିଲା

ଉଣ୍ଠାଇଲା ନୀଳକଞ୍ଜ ଧରି ସେ । ୨୬ । ଦେଖି ଅତି ବେଳ ହେଲା ଜଳଖେଳ ଢେମାର ସଇରିନ୍ଧ୍ରୀକା । ଆଳୀନିକରକୁ ତିଆରି ଗିରକୁ କହିଲା ଏ କି ଜୀବିକା ଗୋ । ଦେଖ ପ୍ରତୀଚୀ ଦିଗ । ବହିଲାନି ଅଲକତରାଗ ଗୋ । ଶୁଣି ଲଭିବେ ଦେବୀ ଉଦ୍‌ବେଗ ଗୋ । ୨୭ । ଶରମ ତାର ଶ୍ରୀଅଙ୍ଗୁଜନ୍ମାଇବ ଅତିଶୟ 'ସରମତା' । ବିପରୀତ ଶେଷ ବିଧିମୁଖ କରେ ଦିଅ ଧରୁ ଭୂପସୁତା ଗୋ । ଶୁଣି ଢେମା ସହାସେ । ସଇରିନ୍ଧ୍ରୀକି କହେ ହରଷେ ସେ । ଅଛି ବିଶେଷ ଲୋଡ଼ା ନାହିଁ ସେ ଗୋ । ୨୮ । ଅଲୋମ ବିଲୋମ ଆଦ୍ୟ ପ୍ରାନ୍ତ କ୍ରମ ଅନ୍ତ ଆଦ୍ୟ କର ରୁଣ୍ଡ । ଉଭୟ ବହିର୍ଲିପିକାରେ ହୋଇବ ତ୍ରିଶଙ୍କୁ ନୃପତି ଦଣ୍ଡ ଗୋ । ପ୍ରଶ୍ନ ବର୍ଣ୍ଣଯୁଗଳୀ । ରଙ୍ଗେ ତହୁଁ ପଢ଼ୁଥିବ ଗଳି ଗୋ । ତହିଁ ଥିବ ସେ ଉଭୟ କେଳି ଗୋ । ୨୯ । ଅର୍ଦ୍ଧ ଅଲୋମ ବିଲୋମରେ ହୋଇବ ସସିରସିହସିରୁସି । କଳପୁଥିଲେ ସେ ବର୍ଣ୍ଣ ଧାଟି ହେବ କଳପଲତା ସଦୃଶୀ ଗୋ । ମୋତେ ଦିଅ ସେ ଫୁଲ । ପୁଣି ନୃପ ଆଦେଶକୁ ବୋଲ ଗୋ । ତଦନନ୍ତର ପ୍ରଶ୍ନ ତ ଭଲ ଗୋ । ୩୦ । ନ ସହି କଳି ଆରମ୍ଭିଲା ଲୋକକୁ କି ବୋଲନ୍ତି ବୁଧ ନରେ । ନିବାସ ମାଗିବା ଲୋକକୁ ତା ଦେଇ କି ବୋଲନ୍ତି ବଚନରେ ସେ । ଆଦ୍ୟେ ବିନ୍ଦୁକୁ ପାଇ । କେଉଁ ଦ୍ୱିବର୍ଣ୍ଣ ଗଜ ଦଳଇ ସେ । କୃଷାଣକୁ ପ୍ରାବୃଷିକି କହି ସେ । ୩୧ । ଶୁଚିରସମିତ୍ର କେ, ସଖୀ ସଖୀକି କି ଶିଖାଏ ପ୍ରିୟ ହୋଇ । ବିଦ୍ୟାର୍ଥୀକି ନିରକ୍ଷରେ ସେ କି ବୋଲି ସରସ ହୃଦେ କି ଥାଇ ସେ । ଶୁଣି ସେ ତ ଚତୁରୀ । ବାଳା ଚିବୁକକୁ ସ୍ନେହେ ଧରି ସେ । ଗଲା ପ୍ରମୋଦ ପୁଲକେ ପୂରି ସେ । ୩୨ । ଜଣାଇଲା ଆରେ ପଣ୍ଡିତାମଣ୍ଡଳୀମଉଳୀରତନଭୂଷା । ପରିପାଳିଲୁ ତ ମୋହରି ବଚନ ଆନ ହେଲା ସିନା ଭାଷା ଗୋ । ତୁ ତ ଈଶ୍ୱରୀ ମୋର । ତେଣୁ ବଳିଲା ଏକ ଅକ୍ଷର ଗୋ । ସେବ୍ୟ ସେବକେ କେତେ ଅନ୍ତର ଗୋ । ୩୩ । କ୍ଷିତିପତିକନ୍ୟା ଆଗେ କେ ମଣ୍ଡିଲା ଚିତି

---

ପରି ଅନୁଭବ କରି ଶରୀରର ରୋମ ଟାଙ୍କୁରି ଉଠିଲା, କହିବାକୁ ହେବାରୁ କଅଣ ନ ହେଲା ? । ୨୬ । ମାର (କନ୍ଦର୍ପ) ସମସ୍ତଙ୍କର ଘର ବୁଡ଼ାଏ ଅର୍ଥାତ୍ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରେ, ଏବେ ମାରଘର (ଢେମାର ଗୁପ୍ତ ଅଙ୍ଗ) ନିଜେ ପାଣିରେ ବୁଡ଼ିଗଲା । ୨୭ । ସଇରିନ୍ଧ୍ରୀକା—ବେଶକାରିଣୀ ସ୍ତ୍ରୀ, ପ୍ରତୀଚୀଦିଗ ... ପଶ୍ଚିମ ଦିଗରେ ଅଳତା ରାଗ ହେଲାଣି ଅର୍ଥାତ୍ ସନ୍ଧ୍ୟା ନିକଟବର୍ତ୍ତୀ, ତିଆରି—ଶାସନ କରି, ଗିର—କଥା, ଦେବୀ—ଢେମାଙ୍କ ମା ପାଟରାଣୀ । ୨୮ । ଶରମ—ପରିଶ୍ରମ ବା କ୍ଳାନ୍ତି, ଅତିଶୟ ସରମତା—ଅତ୍ୟନ୍ତ ସୁଖଭାବ, ଅତ୍ୟନ୍ତ ସୁକୁମାରୀ ହେତୁରୁ ବେଶି ଖେଳିଲେ ସେ କ୍ଳାନ୍ତ ହୋଇ ପଡ଼ିବ, ବିଧିମୁଖ—ଚାରି, 'ସରମତା' ଶବ୍ଦର ... ବିପରୀତ 'ତାମରସ' ହୁଏ, ଅତଏବ ତା ହାତରେ କ୍ଳାନ୍ତି ଦୂର କରିବା ପାଇଁ ତାମରସ (ପଦ୍ମ) ଦିଅ । ୨୯-୩୩ । ସରସିରୁହ ଶବ୍ଦର ପ୍ରତ୍ୟେକ ଅକ୍ଷରକୁ ଓଲଟ ପାଲଟ କରିଦେଲେ ଏହି ପାଞ୍ଚପଦର ଅର୍ଥ ବାହାରିବ; କୃଷାଣ—କୃଷକ, ପ୍ରାବୃଷି—ବର୍ଷାକାଳରେ,

ପହଁରାରେ ଅମ୍ବୁ । ପାଶୀ ସ୍ୱର୍ଗକୁ ଯିବାକୁ ପଡ଼ିଲା କି କାଶୀଆରିଜରୀ ତମ୍ବୁ ଯେ । ଆଭାସିଲା ସେପରି । ତାର ଉନ୍ନତ ଉରଜଶିରୀ ଯେ । ମାର ହୃଦୟକୁ ଦିଏ ଘାରି ଯେ । ୩୪ । ଏକାବେଳେ ଜଳେ ବୁଡ଼ିଲେ ସକଳେ ଭାସିଲା ଊର୍ଦ୍ଧେ କେବଳ । ଇନ୍ଦ୍ରନୀଳ ଛାୟା ଚାମର ନିଚୟ ପ୍ରଲମ୍ବ କୁନ୍ତଳକୁଳ ଯେ । ସରୁଁ ଏକ ପ୍ରଦେଶ । ଧଇଲା କି ସୂରସୁତା ବେଶ ଗୋ । ଅବା ତମାଳଛାୟା ପ୍ରବେଶ ଯେ । ୩୫ । ସ୍ଫୁରିବାରୁ କଚ ସୁବାସ ବିକଚ କୁସୁମ ବନ ଉପେକ୍ଷି । ଅଗଣିତ ଭୃଙ୍ଗରାଜି ତହିଁ ଅଙ୍ଗ ଜମାଇ ରହିଲେ ଲାଖି ସେ । କେ ସେ ଭ୍ରମରାବଳୀ । କେ ସେ କିଶୋରୀଙ୍କ କେଶପାଳୀ । ହେଲା କେବଳ ଧ୍ୱନିରୁ କଳି ଯେ । ୩୬ । ସେ କେଳିମନ୍ଦିର ହୋଇବାରୁ କ୍ଷୀରସାଗର ଉଦରଗତ । ବାଳା ବୃନ୍ଦ ତୁଲେ ସମ୍ଭବି ଲଭିଲେ ଦ୍ରବିଣ ଅପରିମିତ ଯେ । ଅଇରାବଣଗତି । ମଣିସନ୍ତତି ମଣି ସନ୍ତତି ଯେ । ଗିରେ ହୋଇଲା ସୁଧା ପ୍ରତୀତି ଯେ । ୩୭ । ନିଜ ଅଙ୍ଗ ହରିଚନ୍ଦନବଲ୍ଲରୀ କଟାକ୍ଷ କଳାଗରଳ । ବଦନ ନିକର ପରିଣତତର ହରିଣଧରମଣ୍ଡଳ ଯେ । ପୁଣି ହେଲା ଉପମା । ପଦ୍ମସୁବାସିତଅଙ୍ଗୀ ବାମା ଯେ । ଲୀଳାପଦ୍ମ ଧରିବାରୁ ରମା ସେ । ୩୮ । ମନ୍ଦହାସୀଚୟ ଯେ ଯାହା ସିଚୟ ଫେରାଇ ହୋଇ ହାଜର । କେତକୀଦଳୁ ହିମକୁ ପରି ଛାପିଦେଲେ ତା ଶ୍ରୀଅଙ୍ଗ ନୀର ଯେ । ଉରୁ ନିତମ୍ବ ସ୍ତନ । ଭେଦିଥିଲା ସୁଝିନ ବସନ ଯେ । ତାର ଶୋଭାଦୃଷ୍ଟି ନେଲା ଆନ ଯେ । ୩୯ । ଛାର ନୀଳମଣି ଚାମର ନୀରଦ ସମ କରିବାର ଜାଣି । ଜଳବିନ୍ଦୁ ଛଳେ ଅଶ୍ରୁ ମୁଞ୍ଚୁଥିଲା ଜେମାର କୁନ୍ତଳଶ୍ରେଣୀ ଯେ । ତାକୁ ବୋଧିଲା ପରି । ମୃଦୁ ଆଶ୍ୱାସନେ ଯତ୍ନେ ଧରି ସେ । ଛାପିଦେଲେ ପ୍ରିୟ ସହଚରୀ ଯେ । ୪୦ । ବୋଧିବା

---

ଶୁଚିରସ—ଶୃଙ୍ଗାର ରସ । ୩୪ । ପାଶୀ—ବରୁଣ, କାଶୀଆରିଜରୀତମ୍ବୁ—ଜରୀଲଗା ଦୁଇଗମ୍ବୁଜ ଥିବା ବନାରସୀ ତମ୍ବୁ । ୩୫ । ଇନ୍ଦ୍ରନୀଳ ... ଇନ୍ଦ୍ରନୀଳମଣିର କାନ୍ତିଯୁକ୍ତ ନୀଳଚଅଁର ପରି ଲମ୍ବ କେଶଗୁଚ୍ଛ; ସରୁ ... ସେ ପୋଖରୀରୁ ଏକ ଅଂଶ ସୂରସୁତା (ଯମୁନା) ନଦୀ ବେଶ (ଯମୁନାର ଜଳ ନୀଳବର୍ଣ୍ଣ) ଧଇଲା କି ? ଅବା ପୋଖରୀର ସେ ଅଂଶରେ ତମାଳ ବୃକ୍ଷର ଛାୟା ପ୍ରବେଶ କଲା କି ? । ୩୬ । କଚ—କେଶ, କେଶର ସୁବାସ ବାହାରିବାରୁ ଅସଂଖ୍ୟ ଭ୍ରମର ବିକଚ (ପ୍ରସ୍ଫୁଟିତ) ପୁଷ୍ପବନ ଛାଡ଼ି ସେ ସବୁ କେଶରେ ଦେହକୁ ଲୀନ କରି ଲାଖିଗଲେ, କେଶପାଳୀ—କେଶସମୂହ । ୩୭ । ସେମାନଙ୍କ କେଳି ମନ୍ଦିର ପର୍ବତ ପରି, ପୋଖରୀ କ୍ଷୀରସାଗର ପରି, ଦ୍ରବିଣ—ଧନ, ଐରାବଣ—ଐରାବତ ହାତୀ, ମଣିସନ୍ତତି— ମଣିସମୂହ । ୩୮ । ସମୁଦ୍ରମନ୍ଥନରୁ ହରିଚନ୍ଦନ ଲତା ପ୍ରଭୃତି ଜାତ ହୋଇଥିଲେ, ଏଠାରେ ଚନ୍ଦ୍ରକଳା ପ୍ରଭୃତିଙ୍କର ଅଙ୍ଗ ହରିଚନ୍ଦନଲତା ପରି, କଟାକ୍ଷ କଳାଗରଳ (ବାଳକୂଟ) ପରି, ମୁଖସମୂହ ପରିଣତତର (ପୂର୍ଣ୍ଣ) ହରିଣଧରମଣ୍ଡଳ (ଚନ୍ଦ୍ରମଣ୍ଡଳ) ପରି ପଦ୍ମପରି ସୁଗନ୍ଧ ଶରୀରଧାରିଣୀ ଚନ୍ଦ୍ରକଳା ହସ୍ତରେ ଲୀଳାପଦ୍ମ ଧରିବାରୁ ରମା (ଲକ୍ଷ୍ମୀ)ଙ୍କ ସଙ୍ଗେ ତୁଳିତ ହେଲା । ୩୯ । ସିଚୟ—ବସ୍ତ୍ର, ଫେରାଇ ହୋଇ—ବଦଳାଇ ହୋଇ, କେତକୀ ପାଖୁଡ଼ାରୁ କାକର ପୋଛି ଦେଲା ପରି । ୪୦ । ଛାର—ତୁଚ୍ଛ, ନୀଳମଣି, ଚାମର ଓ ନୀରଦ

ବେଳେ ମୁଦିବା ପରି ଦେଇ ବଦନରେ କରପୁଟୀ । କାନ୍ତାରତନର କୁନ୍ତଳ ପ୍ରାନ୍ତରେ ପକାଇଲେ କୁଶବେଣ୍ଟୀ ସେ । ପେଣ୍ଡାଯାଏ ମଣ୍ଡିଲା । ନେତ୍ର କଦନ ଧନ ତଣ୍ଡିଲା ସେ । ଶିଖିକଳାପମଦ ଖଣ୍ଡିଲା ସେ । ୪୧ । ଚଳଦଳ ହେମରମ୍ଭାସ୍ତମ୍ଭ କାମରଥ ଚକ୍ରତୁଲେ ବାଦେ । ବାଳାର କେହି ଗୁପତ ଅଙ୍ଗମାନେ ଦିବ୍ୟବିଧି ଚିନ୍ତି ହୃଦେ ଯେ । ଜଳେ ନିମଜ୍ଜିଥିଲେ । ଜିଣି ବିଳମ୍ବେ ଯା ବାହାରିଲେ ଯେ । ପ୍ରଭୁପଣ ପ୍ରକାଶିଲା ଭଲେ ଯେ । ୪୨ । ହରଗଉରୀ ଜରୀ ଜାଲୀ କୁସୁମବୁଟା ଧଡ଼ି ପଡ଼ି ଶାଢ଼ୀ । ତିନିକି ମୁନିଙ୍କ ଧଇର୍ଯ୍ୟ ଧ୍ୱଂସିନୀ ବାନ୍ଧିଲା ଶାଢ଼ୀ ନିବାଡ଼ି ଯେ । ବହୁମାନର ଶେଷେ । ପ୍ରଶଂସିଲେ ସଜନୀ ବିଶେଷେ ଯେ । ତାର ସ୍ତନ ଘଟିବ ବା ଶେଷେ ଯେ । ୪୩ । ସ୍ତନଯୁଗ ପୁଣି ପୁଆଇଲା ଜିଣି ମଣିସାନୁ ମନେ ଦକା । ସୁନା ଜରୀ ମଲ୍ଲୀକସିଦା ମତଲ୍ଲୀ କୁସୁମ୍ଭା ରଙ୍ଗ ରାଇକା ଯେ । ଦେଲା ତାହାଙ୍କୁ ବାଳା । ତଦୁପରି ଦିବ୍ୟ ମୋତିମାଳା ଯେ । ମୃଦୁ ବୟସେ କେଡ଼େ ବହଳା ଯେ । ୪୪ । ତଦନନ୍ତରେ ଅନ୍ତରଙ୍ଗ ତରଙ୍ଗଚଳନେତ୍ରା ଜଣେ ଲୋକେ । ବିଜେବେଳ ଜାଣି ଖଟାଇଲା ମଣି କଠାଉ ଚରଣତଳେ ଯେ । ଧନ୍ୟ ସେ ରାଜଜେମା । ଜଗନ୍ନୟନ ଭାଗ୍ୟପ୍ରତିମା ସେ । ଆହା କି ମଣ୍ଡିଲା ମହୀସୀମା ଯେ । ୪୫ । ମୋ ନାଦ ଶୁଣିଲେ ମଦନ ଅମଳେ ଯୁବାଙ୍କ ହୃଦୟ ଝୁମୁ । ଜଗତୀ ଧୃତି

---

(ମେଘ) ଏମାନେ ଜେମାର କେଶଗୁଚ୍ଛ ସଙ୍ଗେ ତୁଳିତ ହେବାରୁ ତାହା ଯେପରି ବିନ୍ଦୁ ବିନ୍ଦୁ ଜଳପାତ ଛଳରେ କାନ୍ଦୁଥିଲା । ୪୧ । କେହି କାନ୍ଦୁଥିଲେ ଯେପରି ତାକୁ ବୁଝାଇ ତା ମୁହଁରେ କରପୁଟୀ (ହାତପାପୁଲି) ଦିଅନ୍ତି, ସେହିପରି ସେ କେଶଗୁଚ୍ଛକୁ ଧୀରେ ଧୀରେ ପୋଛି ଦେଇ ତହିଁ ଅଗରେ କୁଶଗଣ୍ଠି ପକାଇ ଦେଲେ, ନେତ୍ରକଦନ ... ସେ କେଶଗୁଚ୍ଛ ନେତ୍ର କଦନ ଅର୍ଥାତ୍ କେଶରୂପ ଧନକୁ ତଣ୍ଡିଲା ଅର୍ଥାତ୍ କ୍ଳେଶ ଦୂର କଲା । ଶିଖିକଳାପ ... ମୟୂର ପୁଚ୍ଛର ଗର୍ବ ଧ୍ୱଂସ କଲା । ୪୨ । ଚଳଦଳ—ଅଶ୍ୱତ୍ଥପତ୍ର (ଗୁପ୍ତ ଅଙ୍ଗ ସଙ୍ଗେ ତୁଳିତ), ହେମରମ୍ଭାସ୍ତମ୍ଭ—ସୁନା କଦଳୀଗଛ (ଊରୁ ସଙ୍ଗେ ତୁଳିତ); କାମରଥଚକ୍ର —କନ୍ଦର୍ପରଥର ଚକ (ନିତମ୍ବ ସଙ୍ଗେ ତୁଳିତ) । ଦିବ୍ୟ ବିଧି—ଶପଥ ବିଧି; ଜେମାର ସେହି ତିନିଅଙ୍ଗ ଉପମିତ ଅଶ୍ୱତ୍ଥ ପତ୍ର, ସୁନା କଦଳୀଗଛ ଓ କାମରଥ ଚକକୁ ଜିଣିବା ଇଚ୍ଛାରେ ବହୁକ୍ଷଣ ପାଣିରେ ବୁଡ଼ିରହି ସେମାନଙ୍କୁ ଜିଣିଲେ (ଆଗେ ଅନ୍ୟକୁ ଜିଣିବାପାଇଁ ଏହିପରି ଜଳଦିବ୍ୟବିଧି ଚଳୁଥିଲା, ଯେ ବହୁକ୍ଷଣ ଜଳରେ ବୁଡ଼ିରହି ପାରୁଥିଲା ସେ ଜୟୀ ବୋଲି ବିବେଚିତ ହେଉଥିଲା) । ୪୩ । ହରଗଉରୀଜରୀ (ଧଳା ଓ ହଳଦିଆ ରଙ୍ଗର ଜରୀ)ରେ ଜାଲି ପଡ଼ିଥିବା ଓ କୁସୁମବୁଟାଧଡ଼ି (ଫୁଲବୁଟା ପଡ଼ିଥିବା ଧଡ଼ି) ଶାଢ଼ୀଦ୍ୱାରା ସେ ତିନିଙ୍କୁ ମୁନିଧୈର୍ଯ୍ୟନାଶିନୀ ଚନ୍ଦ୍ରକଳା (ଦୃଢ଼ରୂପେ ବାନ୍ଧିଲା) । ୪୪ । ସେହି ସ୍ତନଦ୍ୱୟ ମଣିସାନୁ (ମେରୁ ପର୍ବତକୁ ଜିଣି) ପୁଣି ତା ମନରେ ଦକା ପୁଆଇଲା (ଭୟ ଦେଲା) ଅର୍ଥାତ୍ ଅତି ଉନ୍ନତ ଦିଶିଲା, ତେଣୁ ଚନ୍ଦ୍ରକଳା ସେ ଦୁହିଙ୍କ ପ୍ରତି ଅତି ଦୟାର୍ଦ୍ର ହୋଇ ସୁନାଜରୀ ଲାଗିଥିବା ମତଲ୍ଲୀ (ଅତ୍ୟୁତ୍କୃଷ୍ଟ) କୁସୁମ୍ଭାରଙ୍ଗ (ଲାଲବର୍ଣ୍ଣର) ରାଇକା (କାଞ୍ଚଲା) ତାଙ୍କୁ ଦେଲା ଅର୍ଥାତ୍ ସୁନାଜରୀଲଗା ମଲ୍ଲୀଫୁଲ ପଡ଼ିଥିବା ଗୋଟାଏ ନାଲି କାଞ୍ଚଲା ସ୍ତନ ଦ୍ୱୟ ଉପରେ ପିନ୍ଧିଲା ଇତ୍ୟାଦି । ୪୫ ।

ହରଣରେ ମୁଁ ଠକ ବୋଲି କହେ ଧ୍ୱନି କ୍ରମୁ ଯେ । ଭଲା ତା ଜନ୍ମ ଲୋକେ । ନାହିଁ ତା ଭାଗ୍ୟ ଶକ୍ରମସ୍ତକେ ଯେ । ଦୁଃଖ ପାସୋରାଏ ଅବଲୋକେ ଯେ । ୪୬ । ହରପୂରପୂଜା ସରପଣା ସ୍ୱାଦୁତର ପଥ୍ୟ ଭାଷୀ ବାଳା । ନରପତିଜେମାବର ପଙ୍କେରୁହ କର ପଈଠ ଧଇଲା ଯେ । ବିଜେ ମଣିମା ଡାକ । ଶୁଣି ବିଚାରିଲେ ସଖୀଯାକ ଯେ । ଧିକ ବାକି ତ୍ରୟୋଦଶଲୋକ ଯେ । ୪୭ । ଅର୍ଦ୍ଧପଦ୍ଧତିରେ ଦୁଇ ଦାସୀ ଆସି ମିଶିଲେ ମସାଲ ଜାଳି । ଗୁରୁଶୁକ୍ରପାଶେ ପୂର୍ଣ୍ଣ ବିଧୁ ପରି ବିଜେ କରିଗଲା ବାଳୀ ଯେ । ଇଷ୍ଟଦେବୀଙ୍କି ଦେଖି । ଘେନି ପ୍ରସାଦ ମାଲ୍ୟ ସୁମୁଖୀ ଯେ । ଭେଟି ଜନନୀଙ୍କି କଲା ସୁଖୀ ଯେ । ୪୮ । ସେଠାରୁ ନିଜ ମନ୍ଦିରକୁ ସୁନ୍ଦରୀବର କରିଗଲା ବିଜେ । କେଶକୁ ଅଙ୍ଗନା ଧୂପ ଦେଲେ ଜନାର୍ଦ୍ଦନ କୃଷ୍ଣାଗୁରୁ ରଜେ ଯେ । ହେଲା କବିମାନସେ । ଧୂମ ନୁହଇ ନବଘନ ସେ ଯେ । ହାରି ଶୋଭାକୁ ଶରଣ ପଶେ ଯେ । ୪୯ । ଭାଲ ଖାଲିଥିବା ଭଲ ନୁହେ ବୋଲି ଦଳି ଦିବ୍ୟ ଗୋରଚନା । ଭୂରୁ ମଧେ ଇନ୍ଦୁବରତୁଳ ବିନ୍ଦୁ ରଚିଲେ ମୃଗଲୋଚନା ଯେ । ହେଲା ଚିତ୍ର ବିଛଣା । ମାଳବର କାଳ ହେଲା ଜଣା ଯେ । ଫରମାସିଲା ମର୍ଦ୍ଦଳ ବୀଣା ଯେ । ୫୦ । ଦୁଇ ପଞ୍ଚାଶତ ପଦ ପରିମିତ ଲୋକେ ମୋଦ ମହୋଦୟ । ଅଳକସୁନ୍ଦର ଚନ୍ଦ୍ରବଦନାର ଜଳକେଳି ରସମୟ ଯେ । କର୍ଣ୍ଣମନ ମୋହନ । ଯୁବାମାନସ ମୃଗ ଗହନ ଯେ । ଦୁଃଖ ଇନ୍ଧନ ଦାହ-ଦହନ ଯେ । ୫୧ । ହରି ବନ୍ଦନୀୟ ସଭୋଗି-ବଳୟ ବିରାଜିତ ରାଜବଳ । ସଦାଶିବ ରାମ ରଙ୍ଗ ଧାମ ରାମଚନ୍ଦ୍ର ଦେବ ହୃଦସ୍ଥଳ ଯେ । ଶେଷ ହେଲା ଏ ଛାନ୍ଦ । ଜଳବିହାର ରସିକାନନ୍ଦ ଯେ । ମହୀ-ଶଶିକାନ୍ତକୁ ଏ ଚାନ୍ଦ ଯେ । ୫୨ ।



ଅନ୍ତରଙ୍ଗ—ଆତ୍ମୀୟା; ତରଙ୍ଗନେତ୍ରା—ଚଞ୍ଚଳନୟନା । ୪୬ । ମଣିକଠାଉ ନାଦ ଛଳରେ କହିଲା ... ମଦନ ଅମଳେ (କାମନିଶାରେ) ଯୁବକମାନଙ୍କ ମନ ଝୁମୁ (ଘାରି ହେଉ) । ୪୭ । ହରପର ... କନ୍ଦର୍ପପୂଜାର ସରପଣା ଅପେକ୍ଷା ଅଧିକତର ସ୍ୱାଦୁ ଓ ହିତକର ବାଣୀ ଯାହାର ଏପରି ରାଜକନ୍ୟାର, ପଙ୍କେରୁହକରପଇଠ —ପଦ୍ମହସ୍ତର ଭାର । ବାକି ତ୍ରୟୋଦଶଲୋକକୁ ଧିକ୍—ଚତୁର୍ଦ୍ଦଶ ଭୁବନ ମଧରୁ ଏ ମର୍ତ୍ତ୍ୟ ଲୋକକୁ ଛାଡ଼ି (କାରଣ ଏଠାରେ ଚନ୍ଦ୍ରକଳାର ଜନ୍ମ) ବାକି ୧୩ଟାକୁ ଧିକ୍ । ୪୮ । ଅର୍ଦ୍ଧପଦ୍ଧତି—ଅଧବାଟ । ୪୯ । ଜନାର୍ଦ୍ଦନ କୃଷ୍ଣାଗୁରୁରଜ—ଏକପ୍ରକାର ସୁଗନ୍ଧ ଧୂପ ମସଲାଚୂର୍ଣ୍ଣ, ନବଘନ—ନୂଆ ମେଘ । ୫୦ । ଇନ୍ଦୁବର୍ତ୍ତୁଳବିନ୍ଦୁ—ଚନ୍ଦ୍ରପରି ଗୋଲ ଗୋରଚନା ଟୋପା, ମାଳବର କାଳ—ସଙ୍ଗୀତର ପ୍ରଥମ ରାଗର ସୁସମୟ । ୫୧ । ଏ ଛାନ୍ଦ ଯୁବକ ମନମୃଗ ପକ୍ଷରେ ଅରଣ୍ୟ ପରି, ଦୁଃଖରୂପ ଇନ୍ଧନ (ଜାଳଣିକାଠ)କୁ ପୋଡ଼ିଦେବା ବିଷୟରେ ଦହନ (ଅଗ୍ନି) ପରି । ୫୨ । ହରି—ବିଷ୍ଣୁ ଓ କପିରାଜ ସୁଗ୍ରୀବ, ସଭୋଗିବଳୟ—ସର୍ପବଳୟଧାରୀ (ଶିବ), ରାଜମଣ୍ଡଳ ସହିତ (ରାମ) ବିରାଜିତରାଜବଳ—ଚନ୍ଦ୍ରଖଣ୍ଡଶୋଭିତ (ଶିବ) ଓ ଇନ୍ଦ୍ରଙ୍କ ସୈନ୍ୟଦ୍ୱାରା ପରିବେଷ୍ଟିତ (ଲଙ୍କା ଯୁଦ୍ଧରେ); ରଙ୍ଗଧାମ—କ୍ରୀଡ଼ାସ୍ଥାନ, ମହୀଶଶିକାନ୍ତ —ପୃଥିବୀରୂପ ଚନ୍ଦ୍ରକାନ୍ତମଣି ପକ୍ଷରେ ।



# ଦ୍ୱାଦଶ ଛାନ୍ଦ

## ରାଗ—ରାମକେରୀ

## (ପରିଣୟ ମନ୍ତ୍ରାନନ୍ଦନ)

ମସୀକେଶାରସ ରସିକେ ଶୁଣ ଏ ରସ ସ୍ନେହେ । ମଣିମଞ୍ଜୁଳେଶ ମନ୍ତ୍ରୀକି ଆଣି ଏକାନ୍ତେ କହେ । ୧ । ସୁତାପରିଣୟସୁତାପ ଶୀର୍ଣ୍ଣ କଲା ମୋ ଦେହ । କି ବୁଦ୍ଧି ଏଥିକି ସୁବୁଦ୍ଧି ବଳେ ବିଚାରି କହ । ୨ । ସଚିବ ତହିଁକି ବିରଚି ବହୁ ବିଚାର ଭାଷେ । କହିବାର ମୋର ମହୀବାସବ ଘେନ ମାନସେ । ୩ । ନାକରେ ଭୂଲୋକ ଯାକରେ ନାଗେ ଦେଲିନି ମନ । ବରତମାନରେ ବର ତ ନାହିଁ ଜେମା ସମାନ । ୪ । ଶାରଙ୍ଗଧରଙ୍କୁ ତ ରଙ୍କୁନେତ୍ରା ବୋଲିବା ନାହିଁ । ବରିବ କରିବଦନଙ୍କ ଜନକଙ୍କୁ ସେ କେହି । ୫ । ଚାରିବଦନଙ୍କୁ ପାରିବ ନାହିଁ ଭୀତିରୁ ବରି । ନତନୁ ତନୁବିହୀନ ତ ସେ କି କିଶୋରୀ ସରି । ୬ । ବାସବ ତାହାର ଦାସବତହିଁ ହୋଇବେ ନିକି । ଅସିତପକ୍ଷରେ ଶଶୀ ତ କ୍ଷୟ ଲଭେ କଳଙ୍କୀ । ୭ । ପାଶୀକି ସୁକୁନ୍ଦହାସୀକି ମନେ ହସି ନ ଦେବ । ଧନଦଙ୍କୁ କାହୁଁ ବନଦକେଶା ମନ ବଳିବ । ୮ । କୁବେର ତ ନଳକୁବର ତହିଁ କ୍ଷମତା କାହିଁ । ସୁରଭିତଦେହା ସୁରଭିଷଜେ ରସିବ ନାହିଁ । ୯ । ମାରତଣ୍ଡରେ ଜେମା ରତମନା କେବେ ନୋହିବ । ଜ୍ୱଳନେ ସୁଷମା କଳନେ ମତେ ନ ସ୍ମରେ ଲବ । ୧୦ । ଶିଖିବାହନେ ସୁମୁଖୀ ବା ଭଜି ଲଭନ୍ତି ସୁଖ । ପଞ୍ଚମରୁ ବଳେ ପ୍ରପଞ୍ଚ ବଳେ ତାହାଙ୍କ

---

### ଦ୍ୱାଦଶ ଛାନ୍ଦ

୧ । ମସୀକେଶା—କୃଷ୍ଣକେଶଯୁକ୍ତା ରମଣୀ । ୨ । ସୁତା ପରିଣୟ ସୁତାପ—କନ୍ୟାବିବାହର କଷ୍ଟ । ୩ । ମହୀବାସବ— ପୃଥିବୀର ଇନ୍ଦ୍ର ବା ମହୀନ୍ଦ୍ର । ୪ । ନାକରେ—ସ୍ୱର୍ଗରେ, ନାଗେ—ନାଗଲୋକରେ, ପାତାଳରେ । ୫ । ଶାରଙ୍ଗଧରଙ୍କୁ—ଶୃଙ୍ଗନିର୍ମିତ ଧନୁକୁ ଧରିଥିବା ବିଷ୍ଣୁଙ୍କୁ, ରଙ୍କୁନେତ୍ରା—ମୃଗନୟନା, ଚନ୍ଦ୍ରକଳା; କରିବଦନଜନକ—ହାତୀମୁହାଁ ଗଣେଶଙ୍କ ପିତା ଶିବ । ୬ । ଚାରିବଦନ—ବ୍ରହ୍ମା, ନତନୁ ତନୁବିହୀନ—କନ୍ଦର୍ପର ତ ଶରୀର ନାହିଁ । ୭ । ବାସବ—ଇନ୍ଦ୍ର, ଦାସବତ—ଭୃତ୍ୟପରି; ଅସିତପକ୍ଷର ଶଶୀ—କୃଷ୍ଣପକ୍ଷର ଚନ୍ଦ୍ର । ୮ । ପାଶୀ—ବରୁଣ, ଧନଦ—କୁବେର, ବନଦକେଶା —ଘନକେଶା । ୯ । ନଳକୁବର—କୁବେରପୁତ୍ର, କୁବେର—କୁତ୍ସିତ ରୂପଧାରୀ, ସୁରଭିଷଜେ— ଦୈବବୈଦ୍ୟ ଅଶ୍ୱିନୀକୁମାରଙ୍କଠାରେ । ୧୦ ।

ମୁଖ । ୧୧ । ସମରେ ଇତର ଅମରେ ପର କେହି ନ ଦିଶେ । ପକ୍ଷରେ ଚିନ୍ତିବା ପକ୍ଷରେ ହାସ ସ୍ଫୁରେ ମାନସେ । ୧୨ । ଅନ୍ଧର ପ୍ରକାରେ ଗନ୍ଧରବରେ ତାକୁ କେ ଦେବ । ଭିନ୍ନରେ ଭାବିଲେ କିନ୍ନରେ ବର କାହୁଁ ଆସିବ । ୧୩ । ଗ୍ରହରେ ଯେବେ ଆଗ୍ରହରେ ଖୋଜି ବସିବା ବର । ଧିଷଣ କିଛି ଅଭୀଷଣ ଆଉ ନାହିଁ ସୁନ୍ଦର । ୧୪ । ନାଗରେ କେ ଅବା ନାଗରେ ଥିବେ ନ ଥାଇ ଜାଣି । ଭୋଗରେ ସେ ଅଧୋଭାଗରେ ବଡ଼ ଦାରୁଣ ପୁଣି । ୧୫ । ରସାରେ ତ ମୋତେ ସୁସାରେ ନୃପତନୟ କେହି । ରାଜନନ୍ଦନାର ଭାଜନ ହୋଇ ଦିଶଇ ନାହିଁ । ୧୬ । ଆନରେ ତ ଅନୁମାନରେ ତାହାର ଅନୁରୂପେ । ନ ଦିଶେ ସୁଷମା ନ ଦିଶେ ଭୂଷା ସପତଦ୍ୱୀପେ । ୧୭ । କବନବିଦ୍ୟାରେ ଭବନନ୍ଦନଠାରୁ ବଳିବ । ସରସଗୁଣେ ଶ୍ରୀହରଷ ଲଭୁଥିବ ଲାଘବ । ୧୮ । ଖଣ୍ଡିତ ନୋହିବା ପଣ୍ଡିତପଣେ ଶେଷକୁ ଜିଣି । ନାରଦଠାରୁ ବିଶାରଦ ହେବ ସଙ୍ଗୀତ ପୁଣି । ୧୯ । ବିଗ୍ରହ ଥାଇ ରବିଗ୍ରହ ପରି ପ୍ରତାପୀ ହେବ । ଜେମାର ସଦୃଶ ଯେ ମାର କରଗ୍ରହ କରିବ ।୨୦ । ଶିବକୁ ପ୍ରତ୍ୟହ ଶିବଙ୍କୁ ମନାଇଛି କେ ଯୁବା । କାଶୀରେ ଗିରିଜେମା ଶିରେ ଦେଇ ଅସଂଖ୍ୟ ଜବା । ୨୧ । ଗଙ୍ଗାତୀରଙ୍କର ସଂଗାତିଶୟ ପାବନବନେ । କରିଚି କେ ତପ ଧରି ଚିନ୍ମୟ ଦେହ ଭୁବନେ । ୨୨ । କଳପାନ୍ତ ଯାଏ ଜଳପାନ ହିଁ ଦେଇ ବରଜି । ଶ୍ୱସନମାତ୍ରକ ଅଶନ କରି ହରିଙ୍କି ଭଜି । ୨୩ । ଜଳପ ତେଜି ସଂକଳପ କରି ଗରିଷ୍ଠ ଫଳ । ତଳପ କରି ଅନଳପ କାଳ ଧରିତ୍ରୀ ତଳ । ୨୪ । ଘରକୁ ପାସୋରି ଧରକୂଟର ଉଟଜେ ବସି । ଶୟନ ନ ଭଜି ନୟନ ନାସା ଅଗ୍ରେ ନିବେଶି । ୨୫ । ଯେ ଜପିଥିବ ତ ଶେଯପୀଠରେ ଶତବରଷ । ସେ ସିନା ଧରିବ ଏ ସୁନାଗୋରୀ କରସାରସ । ୨୬ । ଚରମାଦ୍ରିଯାଏ ଚରମାନଙ୍କୁ ପେଷିବା ଶିବେ ।

---

ମାର୍ତ୍ତଣ୍ଡ—ସୂର୍ଯ୍ୟ, ରତମନା—ଅନୁରକ୍ତ ଚିତ୍ତ, ତ୍ରିଭୁବନେ ସୁଷମା କଳନେ—ଅଶ୍ୱିଙ୍କଠାରେ ସୌନ୍ଦର୍ଯ୍ୟ ଥିବା ବିଷୟରେ । ୧୧ । ଶିଖିବାହନ—କାର୍ତ୍ତିକେୟ, ପଞ୍ଚମରୁ ... ତାଙ୍କର ମୁହଁ ପାଞ୍ଚରୁ ଅଧିକ ଛଅଟି, ଏ କଥା ସଂସାରରୁ ବ୍ୟାହାର । ୧୨ । ସମରେ—ସମାନତାରେ, ପର—ଉତ୍କୃଷ୍ଟ । ୧୩ । ଅନ୍ଧର ପ୍ରକାରେ— ଅନ୍ଧଭାବରେ । ୧୪ । ଧିଷଣ କିଛି ଅଭୀଷଣ— ବୃହସ୍ପତି କେତେକ ପରିମାଣରେ ଅଭୟଙ୍କର ।୧୫ । ନାଗରେ—ନାଗଲୋକରେ ଏବଂ ନାଗରମାନେ; ଭୋଗରେ—ଫଣାରେ, ଅଧୋଭାଗରେ— ନିମ୍ନଦେଶ ପାତାଳରେ । ୧୮ । କବନ ବିଦ୍ୟାରେ—କବିତ୍ୱ ସ୍ଫୁରଣରେ, ଭବନନ୍ଦନ— ଗଣେଶ, ଶ୍ରୀହର୍ଷ—ନୈଷଧ କାବ୍ୟ ପ୍ରଣେତା କବି । ୧୯ । ଶେଷ—ଶେଷଦେବ, ଫଣୀଶ୍ୱର । ୨୦ । ବିଗ୍ରହ—ଶରୀର, ମାର—କନ୍ଦର୍ପ । ୨୧ । ଶିବ—ମହାଦେବ, ଶିବଙ୍କୁ—ନିରନ୍ତର ମଙ୍ଗଳ ନିମିତ୍ତ । ଗିରିଜେମା—ପାର୍ବତୀ, ଅନ୍ନପୂର୍ଣ୍ଣା; ଜବା—ମନ୍ଦାରଫୁଲ । ୨୩ । ଜଳପାନହିଁ—ପାଣି ପିଇବା ମଧ, ଶ୍ୱସନ—ପବନ, ଅଶନ—ଭୋଜନ । ୨୪ । ଜଳପ—ଜଳ୍ପ, କଥା । ୨୫ । ଧରକୂଟରଉଟଜେ—ପର୍ବତଶୃଙ୍ଗସ୍ଥ କୁଡ଼ିଆରେ ।୨୬ ।

ନିଦେଶମାପିକେ ବିଦେଶଯାକ ବୁଝି ଆସିବେ । ୨୭ । ବାଳୀବର ବର ଭାବେ ଯା ଛବି ହେବ ପ୍ରକଟ । ରଙ୍ଗାଜୀବେ ଯିବେ ଆସିବେ ଲେଖି ତା ରୂପପଟ । ୨୮ । ମାୟାନର ନରତନୟେ ଜାଣନ୍ତି ଇନ୍ଦ୍ରଜାଲେ । ଆଜ୍ଞା ଦେବ ଦେବ ସେ ଯିବେ ଦେଶ ହେଜିବେ ଭଲେ । ୨୯ । ଧୀରପଣେ ପଣେ ଅମରଗୁରୁ ଯିବେ ଓହରି । ପୃଥିବୀରେ ବୀରେ ନ ଥିବେ ଯାହା କଳାକୁ ସରି । ୩୦ । ସମ୍ପଦରେ ଦରେ ଶଙ୍କିବେ ଯାକୁ କୁଳିଶପାଣି । ବଳି କର୍ଣ୍ଣ କର୍ଣ୍ଣ ଯା ଦାନ ଯଶ ନଥିବ ଶୁଣି । ୩୧ । ଗୁଣରୂପରୁ ପୁରୁଷତା ଭାସ ମାତ୍ରକ ଥିବ । ଅବଧାନ ଧାନ ପ୍ରମାଣେ ଯାହାଠାରେ ହୋଇବ । ୩୨ । ସେହି ହେବ ଦେବ ସୁମତିମଣ୍ଡଳୀସଂକ୍ରନ୍ଦନ । ଢେମାମଣି ମଣି ସଂଯୋଗବିଧାନରେ କୁନ୍ଦନ । ୩୩ । ସ୍ୱୟମ୍ବର ବରବର୍ଣ୍ଣନା ମନେ ବାଛିବ ଅବା । ମନୋରଥ ରଥସଞ୍ଚାର ପଥ କ୍ରମେ ଜାଣିବା । ୩୪ । ଏ ବିଧିରେ ଧୀରେ କହନ୍ତି କନ୍ୟାରତନ ଛବି । ତାହାର ସେ ରସେ ବଳିବା ଚିତ୍ତ ପ୍ରଧାନ ଭାବି । ୩୫ । ଜନନୀର ନିରବଧିକ ଧନେ ବଳେ ଯେ ମତି । ଜାଣି ତାତ ତା ତରଳତା ଲୋଡ଼େ ସୁଗୁଣଖ୍ୟାତି । ୩୬ । ବନ୍ଧୁ କୁଳକୁ ଲଜ୍ଜା ନୋହେ କୁଳ ହେଲେ ନିର୍ମଳ । ଚାକରଙ୍କ ରଙ୍କ ପଣରୁ ଭୋଗି କରନ୍ତି ମୂଳ । ୩୭ । ମହତ୍ତ୍ୱ ମହତ୍ତମମାନେ ପ୍ରବଳାଇ କରନ୍ତି । ଆନନ ଆନ ନର ନିନ୍ଦା ସ୍ତବ କରେ ଭରତି । ୩୮ । ତଥାପି ତଥାପି ହୋଇବ ଦେବ ଦୁଃଖ ବିଚାର । ମନୁଜ ମନୁଜନ୍ୟପୀଡ଼ା ନ ରଖନ୍ତୁ ଈଶ୍ୱର । ୩୯ । ତରୁଣୀ ତ ରଣୀ କରିଛି ତପେ ଦେବଙ୍କୁ ପୂର୍ବେ । ଦେବ କି ଦେବ କିଶୋରୀକି ଦୁଃଖ ନ ସୁଝି ଏବେ । ୪୦ । ସଚିବ ଶଚିବର ତୁଲ୍ୟ ନୃପ ଦୁହେଁ ଏପରି । ମାନସମାନ ସମାଧାନ କରି ନେଲେ ଶର୍ବରୀ । ୪୧ । ପ୍ରଭାତପ୍ରଭା ତରଣିଙ୍କ ସୂତ କଲେ ପ୍ରକାଶ । ବାସବ-ବାସବତୀ ଦିଗ ହେଲା ଯୋଗିନୀ ବେଶ । ୪୨ । ଅମ୍ବର

---

କରସାରସ—କରପଦ୍ମ । ୨୭ । ଚରମାଦ୍ରି—ଚରମାଚଳ, ପଶ୍ଚିମସୀମା ଶେଷ; ଶିବେ—ଶୁଭମୁହୂର୍ତ୍ତରେ । ୨୮ । ରଙ୍ଗାଜୀବେ—ଚିତ୍ରକରମାନେ । ୩୦ । ପଣେ ଅମରଗୁରୁ—ଅଣ୍ଟୀ ଜଣ ବୃହସ୍ପତି, ଓହରିଯିବେ— ପରାସ୍ତ ହେବେ । ୩୧ । କୁଳିଶପାଣି—ଇନ୍ଦ୍ର; ବଳି କର୍ଣ୍ଣ—ପ୍ରସିଦ୍ଧ ଦାତା ଦୁଇ ଜଣ, କର୍ଣ୍ଣ—କାନ । ୩୨ । ପୁରୁଷତାଭାସ—ପୌରୁଷର ସୂଚନା ବା ସଙ୍କେତ । ଅବଧାନ—ଚିତ୍ତର ଏକାଗ୍ରତା, ଧାନ ପ୍ରମାଣେ—ଅତି ଅଳ୍ପ ମାତ୍ରାରେ । ୩୩ । ସୁମତୀମଣ୍ଡଳୀସଂକ୍ରନ୍ଦନ— ପଣ୍ଡିତସମୂହର ଇନ୍ଦ୍ର, ଅର୍ଥାତ୍ ଶ୍ରେଷ୍ଠ ପଣ୍ଡିତ, କୁନ୍ଦନ—ସୁବର୍ଣ୍ଣ । ୩୪ । ମନୋରଥରଥ ସଞ୍ଚାରପଥ—ଅଭିଳାଷରୂପ ରଥର ଗତିପଥ ଅର୍ଥାତ୍ ଯେଉଁ ଦିଗରେ ଇଚ୍ଛା ତାହା । ୩୬ । ନିରବଧିକ ଧନେ—ପ୍ରଚୁର ସମ୍ପତ୍ତିରେ (ମା ଧନ ଖୋଜେ), ତା ତରଳତା—ଧନର ଅସ୍ଥିରତା, ସୁଗୁଣ ଖ୍ୟାତି—ଜ୍ଞାନର ପ୍ରଶଂସା । ୩୯ । ମନୁଜ ମନୁଜନ୍ୟପୀଡ଼ା—ମନୁଷ୍ୟର ମାନସିକ ସନ୍ତାପ । ୪୧ । ସଚିବ—ମନ୍ତ୍ରୀ; ଶଚିବର— ଇନ୍ଦ୍ର । ୪୨ । ତରଣିଙ୍କ ସୂତ—ସୂର୍ଯ୍ୟ ସାରଥି ଅରୁଣ; ବାସବବାସବତୀଦିଗ—ଇନ୍ଦ୍ରଙ୍କ ଅଧିଷ୍ଠିତ ପୂର୍ବଦିଗ; ଯୋଗିନୀବେଶ—ତାପସୀ ବେଶ;

ଅମ୍ବର କଷାୟ ପିନ୍ଧିବାରେ ରସିଲା । ଦଣ୍ଡକ ଦଣ୍ଡକମଣ୍ଡଳୁ ଘେନି ସମୁଲ୍ଲାସିଲା । ୪୩ । ହରଷେ ହରସେବନରେ ମାଳୀ ହେଲେ ବାହାର । ସାରସସାର ଷଟପଦେ ପିଇ କଲେ ଝଙ୍କାର । ୪୪ । କାରଣ ହେଲା ସେ ସମୟ କୋକଲୋକ ମୋଦର । ଦରରୁ ଉଲୂକେ ନୋହିଲେ କୋରଡ଼ରୁ ବାହାର । ୪୫ । ହାର ନୀହାରପରି ହେଲା ସ୍ତନେ ଅଭିରାମାର । ମାରମାରଗଣ ବରଷା କିଛି ହେଲା ଓହର । ୪୬ । ହରଣ କୁଳଟା ନୀବୀର କରୁଥିଲେ ଯେ ବିଟ । ବିଟପିଚ୍ଛାୟାରେ ଛପିଲେ ଛାଡ଼ି ବହଳ ଖଟ । ୪୭ । ଖଟଣୀ ଲୋକେ ଫିଟାଇଲେ ନୃପଦ୍ୱାର କବାଟ । ବାଟଜଗାଙ୍କୁ ଅଭିସାରୀ ଦେଲେ ଭୂଷଣ ପାଟ । ୪୮ । ପାଟବ ତମିସ୍ରପୁଞ୍ଜର ରବି କଲେ ବିପାଟ । ପାଟଚ୍ଚରେ ତ୍ରାସେ ଆଶ୍ରୟ କଲେ ଅଚଳକୂଟ । ୪୯ । କୂଟଯୋଧୀ ଦନୁଜଙ୍କର ଯେଉଁ ରାମ ମାରଣ । ରଣମୁଖେ ସେ ଛୋଟରାୟ ନୃପତିର ଶରଣ । ୫୦ । ପରିଣୟମନ୍ତ୍ରାନନ୍ଦନ ଜାଣ ଏ ଛାନ୍ଦ ନାମ । ଏକ ପଞ୍ଚାଶତ ସଂଖ୍ୟକ ପଦେ ହେଲା ବିରାମ । ୫୧ ।



ଅମ୍ବର ... ଗୈରିକବସ୍ତ୍ରରୂପ ରକ୍ତବର୍ଣ୍ଣ ଆକାଶ । ୪୩ । ସାରସସାର—ପଦ୍ମର ମଧୁ ବା ମକରନ୍ଦ । ୪୫ । କୋକଲୋକ—ଚକ୍ରବାକ ରାଜ୍ୟ; ଉଲୂକ—ପେଚା । ୪୬ । ନୀହାରପରି—ତୁଷାର ପରି (ଶୀତଳ) । ମାରମାରଗଣ— କନ୍ଦର୍ପଶର; ଓହର—କ୍ଷୀଣ, ଅଳ୍ପ । ୪୭ । କୁଳଟା—ଅସତୀ ନାରୀ, ନୀବୀ—ସ୍ତ୍ରୀମାନଙ୍କ ଲୁଗାର ଅଣ୍ଟାଗଣ୍ଠି, ବିଟପିଚ୍ଛାୟା—ଗଛଛାଇ ।୪୮ । ଅଭିସାରୀ—ଅଭିସାରିକା ନାୟିକା । ୪୯ । ପାଟବ ତମିସ୍ରପୁଞ୍ଜର—ଘନ ଅନ୍ଧକାରସମୂହର, ବିପାଟ—ବିଦାରଣ, ପାଟଚ୍ଚର—ଚୋର, ଅଚଳକୂଟ— ପର୍ବତ ଶିଖର । ୫୦ । କୂଟଯୋଧୀ—ମାୟା ଯୁଦ୍ଧକାରୀ । ୫୧ । ପରିଣୟ ମନ୍ତ୍ରାନନ୍ଦନ— ଆନନ୍ଦପ୍ରଦ ବିବାହ ମନ୍ତ୍ରଣା ।



# ତ୍ରୟୋଦଶ ଛାନ୍ଦ

## ରାଗ—ଚୋଖି

## (କୁମାର ମୋହନ)

ଶୁଣ ହେ ସୁହୃଦ ଜନେ ନବ ଯୁବରାଜ ଦିନେ ପୁର ବାହ୍ୟ ଉପବନ ମଣ୍ଡପେ ବସି । ରାଜବଲ୍ଲଭ ପ୍ରମୁଖ ସଖାନିବହକୁ ସୁଖ ଦେଉଥିଲା ମୁଖ୍ୟ ଅକ୍ଷଲୀଳାରେ ରସି । ଖଟଣି ସାମନ୍ତ କିଶୋରେ । ଖଟିଥିଲେ ସାବଧାନ ହୋଇ ପାଶରେ । ୧ । ଏ ସମୟେ କୁଞ୍ଜଦ୍ୱାରପାଳ ବେତ୍ରଲତାଧର ଧରଣୀ ହୃଦୟ ଶିରସ୍ପରଶ କରି । ଜଣାଇଲା ଦିବ୍ୟ ଅବଧାନକୁ ଆସୁ ହେ ଦେବ ନଟ ଅଶେଷ ବିଭବ ବେଶସଞ୍ଚାରୀ । ମାୟାମୟ ବିଦ୍ୟାକୁଶଳ । ତବ ପାଦମୂଳ ଦରଶନରେ ଲୋଳ । ୨ । କସାଇଛି କ୍ରମେ କ୍ରମେଳକ ତୁରଙ୍ଗ ଚରମେ ଦାମାମା ନାଗରା ଭୂରା ଅଛି ଅନେକ । ବୁହାଇଛି ମତ୍ତଗଜ ସମଜରେ କରି ସଜ ଜାମ୍ବୁନଦ ଜରୀତମ୍ବୁ ନେପଥ୍ୟ ଯାକ । ଅତି ପଟୁ ଟଟ୍ଟୁପଟଳୀ । ମହୋନ୍ନତ ବଳୀବର୍ଦ୍ଦ ନୁହଇ କଳି । ୩ । ସିଂହସହନନ ସାରମେୟ ଅଛନ୍ତି ଅପାର ମେଖବୁହା ଗଧ ଅଧଶତ ସମେତେ । ପାଟୀର ଚର୍ଚ୍ଚିତସ୍ତନ ଘଟୀ କଞ୍ଚୁକ ଶୋଭନ ନଟୀ ଦଶ ଗୋଟି ସିଂହକଟୀ ସମସ୍ତେ । ଗାନ ନରତନ ରୀତିରେ । ଆନ ନର ତ ନ ଥିବେ ପୁଣି କ୍ଷିତିରେ । ୪ । ଶୁଣି ଗୋତ୍ରାଧିପ ପୁତ୍ର ମିତ୍ର ସମ୍ମତିରେ ନେତ୍ରକୋଣକୁ କମ୍ପାଇ ଆସୁ ବୋଲି ସୂଚିଲା । ଅବକାଶେ ଭେଟି ନଟ ଯୋଡ଼ି ରହି କରପୁଟ ଜୟ ପୂର୍ବ ସ୍ତବ ଭାଟ

---

**ତ୍ରୟୋଦଶ ଛାନ୍ଦ**

୧ । ମୁଖ୍ୟ ଅକ୍ଷଲୀଳା—ପ୍ରଧାନ ପଶାଖେଳ । ୨ । କୁଞ୍ଜଦ୍ୱାରପାଳ—କୁଞ୍ଜଦ୍ୱାରର ଦ୍ୱାରୀ; ଧରଣୀହୃଦୟ ଶିର ସ୍ପରଶ କରି— ମାଟିରେ ବକ୍ଷ ଓ ମସ୍ତକ ଲଗାଇ ଅର୍ଥାତ୍ ସାଷ୍ଟାଙ୍ଗ ପ୍ରଣାମ କରି । ୩ । କସାଇଛି—ଦୃଢ଼ରୂପେ ବାନ୍ଧିଛି; କ୍ରମେଳକ—ଓଟ, ତୁରଙ୍ଗ—ଘୋଡ଼ା, ଚରମେ—ପିଠିରେ, ଦାମାମା ନାଗରାଭୂରା—ବାଦ୍ୟବିଶେଷ, ମତ୍ତଗଜସମଜରେ—ବଡ଼ ବଡ଼ ହାତୀସମୂହଦ୍ୱାରା; ଜାମ୍ବୁନଦ ... ସୁନାଜରି ପଡ଼ିଥିବା ତମ୍ବୁ ଏବଂ ନେପଥ୍ୟ (ବେଶ) ସବୁ । ଟଟ୍ଟୁପଟଳୀ—ଛୋଟ ଘୋଡ଼ାସବୁ । ୪ । ସିଂହସଂହନନ ସାରମେୟ—ସିଂହପରି ଶରୀରବିଶିଷ୍ଟ କୁକୁର, ମେଖ—କୀଳା (ତମ୍ବୁ ଟାଣିବାପାଇଁ), ପାଟୀର—ଚନ୍ଦନ, କଞ୍ଚୁକ—କାଞ୍ଚଲା, ଗାନ

ପରି ରଚିଲା । କଳପିଲା ହଟ କପଟ । କଦଳୀତରୁ ତୋରଣ କନକପୁଟ । ୫ । ଯୁବରାଜ ସଭା ଛାଡ଼ି ଯେତକ ନଟୀ ଅଛାଡ଼ି ହେଲେ ନାଟ ଦେଖିବାକୁ ମଣ୍ଡଳୀ ଘେରି । ହୋଇ ତାଙ୍କ ନୀବୀ ଭ୍ରଂଶ ଜାତ ହେଲେ ରାଜହଂସ ତା ଦେଖି ଯେ ହସିଲା ତାଠାରୁ ସେପରି । ତହୁଁ ପୁଣି ଆକାଶେ ଚାହିଁ । ଡାକିଲା ରେ କାମଚଣ୍ଡି ରହିଲୁ କାହିଁ । ୬ । ତହୁଁ ଆକାଶରୁ କାଶମିଶା ବୃଦ୍ଧା ଅଟ୍ଟହାସ ସହିତେ ଶୁଭିଲା ଘୋର ଘର୍ଘରସ୍ୱରେ । ସୁରତ ବିନା ନିମିଷ ହୋଇଛି ମତେ ବରଷ କର ରେ ମୋର ସନ୍ତୋଷ ନବକିଶୋରେ । ଏତେ କହି ପଡ଼ିଲା ଖସି । କାଳରାତ୍ରି ମୂର୍ତ୍ତି ତାଳତରୁ ସଦୃଶୀ । ୭ । ଧବଳ ଝାଞ୍ଜରକେଶା ତହିଁ ପୁଣି ଲୋକହସା କ୍ରମୁକ ସଦୃଶ ଖୋସା ସଧ କରିଛି । କାକ ବକ ପକ୍ଷଝରା ଦୃଷ୍ଟ ବିଦ ଚାରିସୋରା ବେଢ଼ରେ ବସନ୍ତ ତୋରା ଫୁଲ ଘେରିଛି । ନେତ୍ର ତରୁକ୍ରୋଟର ପରା । ଗୋଟାକରେ ଅଛି ମାତ୍ର ସଫେଦ ତାରା । ୮ । ପୀନସଗଦ ବିକୃତ ନାସାବିଳ ବିନିର୍ଗତ ଲୋମ ନିକୁରମ୍ବ ଚୁମ୍ୱେ ଲମ୍ବ ଚିବୁକ । କଞ୍ଚୁକ ହୁଗୁଳି ଗଳିବଳି ଢଳି କୁକ୍ଷିସ୍ଥଳୀ ଲୁଲି ହେଉଛି ଆନ୍ଦୋଳି ଯାହାର ବୁକ । ଶଙ୍ଖ ମଣିମାଳା ଅନେକ । ମଣ୍ଡିଛି ସେ ଚଣ୍ଡୀ ଗଳଗଣ୍ଡିଆ ବେକ । ୯ । ତିନ୍ଦୁକ ଇନ୍ଧନ ଗୋରା ଦେହା ପୃଥୁଳପଞ୍ଜରା ଜରାଶୁଷ୍କଲାଙ୍ଗଳୀ କପୋଳ ନିତମ୍ବ । ଘୋଡ଼ାଉଁ କାଷାୟ ବାସେ ଅଧ ଅଧମାଙ୍ଗେ ଦିଶେ କାସୀସ ଓଷ୍ଠୀର ଶ୍ୱେତ ଲୋମକଦମ୍ବ । ତରୁଣଙ୍କୁ ଚାହିଁ ସଂକୋଚେ । ରସନା କାମୋଡ଼ି ହସି ଅଳପ ନାଚେ । ୧୦ । ପାଶେ ମିଳି ଯିବା ଯୁବାଚନଙ୍କୁ ସୂନଧନବା ବିକାର ଆତୁରେ କମ୍ପି ଭିଡ଼ଇ ଭୁଜେ । ରଦବିହୀନବଦନା କରି ରସ ଆସ୍ୱାଦନା ଇଷି ଇଷି ଭାଷି ଶୋଷି ନୟନ ବୁଜେ । ତା ବିକୃତ ଅନ୍ତରହିତ । ହସାଇ ହସାଇ ହେଲା ଅନ୍ତରହିତ । ୧୧ । ପୁଣି ମାୟା ନାଗ ନାକ ନଗରୀ ନାଗରୀଯାକ ଜମା ହୋଇ

---

ନରତନରୀତିରେ—ଗାଇବା ଓ ନାଚିବାରେ । ୫ । ଗୋତ୍ରାଧିପପୁତ୍ର—ରାଜପୁତ୍ର, କଳପିଲା ହଟକପଟ—ମାୟାପୂର୍ଣ୍ଣ ଇନ୍ଦ୍ରଜାଲ କଳ୍ପନା କଲା, କନକପୁଟ—ସୁନାପୁଟଦିଆ । ୬ । ନଟୀ—ବେଶ୍ୟା, ହୋଇ ତାଙ୍କ ନୀବିଭ୍ରଂଶ—ଖୋସଣୀ ଫିଟିଯାଇ । ୭ । କାଶମିଶା—କାଶରୋଗଯୁକ୍ତା, ନିମିଷ—କ୍ଷଣକାଳ । ୮ । ଧବଳଝାଞ୍ଜରକେଶା— ଯାହାର କେଶ ଧଳା ଓ ପାତଳ, କ୍ରମୁକସଦୃଶ— ଗୁଆ ପରି କ୍ଷୁଦ୍ର, ସଧ କରିଛି—କୌତୁକରେ ବାନ୍ଧିଛି, କାକବକପକ୍ଷଝରା—କୁଆ ଓ ବଗ ପକ୍ଷୀ ଖୋସାରେ ଖୋସିଛି, ଦୃଷ୍ଟ ବିଦ ଚାରିସୋରା— ଦେଖାଯାଉଥିବା ଚାରିସରି ବିଦ, ବସନ୍ତତୋରା— ହଳଦିଆ ବର୍ଣ୍ଣର ସୁନ୍ଦର (ଫୁଲ), ତରୁକ୍ରୋଟର—ଗଛଖୋଲ । ୯ ପୀନସଗଦବିକୃତ—ପୀନସ ରୋଗଦ୍ୱାରା ବିକାର ପ୍ରାପ୍ତ, ନିକୁରମ୍ବ—ସମୂହ, କୁକ୍ଷିସ୍ଥଳୀ—ଉଦରଦେଶ, ବୁକ—ବକ୍ଷସ୍ଥଳ (ସ୍ତନ), ଗଳଗଣ୍ଡିଆ ବେକ—ଗଳଗଣ୍ଡ ରୋଗଯୁକ୍ତ ସ୍ଥୂଳ ବେକ । ୧୦ । ତିନ୍ଦୁକଇନ୍ଧନ—କେନ୍ଦୁକାଠ, ଜରା—ବାର୍ଦ୍ଧକ୍ୟ, ଶୁଷ୍କଲାଙ୍ଗଳୀ - କପୋଳନିତମ୍ବ—ଗଣ୍ଡଦେଶ ଓ ନିତମ୍ବ ଶୁଖିଲା ନଡ଼ିଆ ଭଳି, କାଷାୟବାସ—ଗେରୁଆ ଲୁଗା, କାସୀସଓଷ୍ଠୀ—ଯାହାର ଓଷ୍ଠର ବର୍ଣ୍ଣ ହୀରାକସ ବର୍ଣ୍ଣ ପରି ଛେତା ବା ପୀତାଭ, ଲୋମକଦମ୍ବ—ରୋମସବୁ । ୧୧ ।

ଜନ୍ମାଇଲେ ଦିବ୍ୟ ସଙ୍ଗୀତ । ମିଶାଇ ଶଙ୍କରତପଭଞ୍ଜନଭଙ୍ଗୀ କଳାପ ମନ୍ଦମନ୍ଦହାସ ପରିହାସ ଇଙ୍ଗିତ । ମେରୁଧୀର ନୃପକୁମାର । ତେବେ ହେଲେ ନ ଛାଡ଼ିଲା ଧଇର୍ଯ୍ୟ ସାର । ୧୨ । ଏ ସମୟେ ଘନସାର-କସ୍ତୁରୀ-କୁଙ୍କୁମସାର-ଚନ୍ଦନସୁବାସୀ ମନ୍ଦବାତ ବହିଲା । କେବଳ ମାତ୍ର ସେ ଜନାଧିନାଥନନ୍ଦନ ବିନା ଇତର ନରଙ୍କୁ କିଛି ଦୃଶ୍ୟ ନୋହିଲା । ହେଲା ଦିବ୍ୟ ପୁଷ୍ପବରଷା । ହେଲା ସୁରଧରାପରା ସେ ରଙ୍ଗରସା । ୧୩ । ଶୁଭିଲା ମଣିମା ଡାକ ଅଧିପଲାଞ୍ଛନଯାକ ମଧେ ଦିଶିଲା କନକମୟ ପାଲିଙ୍କି । ଜାମ୍ବୁନଦ ଚନ୍ଦ୍ର ପ୍ରଭାକର ପରଦାର ପ୍ରଭାବବଶରୁଁ ପଡୁଥିଲା ପ୍ରଭା ଝଲକି । ମଣ୍ଡପ ନିକଟ ଚତ୍ୱରେ । ଅବତରନ୍ତେ ସେ ଯାନବର ସତ୍ୱରେ । ୧୪ । ଉପବନକୁ ପବନ କେହି କମ୍ପାଉଛି ବନରୁହ ସୁଲୋଚନା ଅନା ବୋଲି କେ ବାଳା । ପରଦା ଧରନ୍ତେ ଟେକି ମଣ୍ଡିଲା ସେ ଧରିତ୍ରୀକି ସଖୀ ଅଂସେ ଦେଇ ଭୁଜ ଚମ୍ପକମାଳା । ଝଟ କରି ପଡ଼ନ୍ତେ ଦୃଷ୍ଟି । ସରିଗଲା କୁମାରର ବିବେକ ସୃଷ୍ଟି । ୧୫ । ନବସ୍ନେହ ବିଶାରଦ ନୃପାତ୍ମଜ ସେ ଶାରଦସୁଧାମୟୂଖମୁଖୀର ଶୋଭା ବୀକ୍ଷଣେ । ମକରଧ୍ୱଜ ମୋହନ ସୂନଶିଳୀମୁଖ ମୁନ ବାଜି ବିଗତଚେତନ ହୋଇଲା କ୍ଷଣେ । ମୋହନାବସାନେ ଅନାଇ । ଭାବିଲା ଏ ସୁଷମା ତ ଦେଖିଲା ନାହିଁ । ୧୬ । ନୂତନ ତମାଳମାଳ ନୀଳ ଶଇବଳ ବଳ ଦଳିତକଜ୍ଜ୍ୱଳ ଜଳଧର ସଙ୍ଘାତ । ଏ ସବୁ ଛବି ପାତଳ ଏହାର କୁନ୍ତଳତଳ ଚାମର ମରକତରୁ ନୋହେ ତ ଜାତ । ଭ୍ରମରେ କେ ହେଲେ ଭ୍ରମରେ । ବିଚାରିବ ଅଛି କିଛି ଏହା ସମରେ । ୧୭ । ଲମ୍ବ କୁଞ୍ଚିତ କୋମଳ, ସଜଳଜ ପରିମଳ ନୋହେ ତ ମହେନ୍ଦ୍ରନୀଳ ତହିଁକି ତୁଳା । ତମ ତମୋନୁଦଙ୍କର କରଣର ଭୟଙ୍କର ଏ ତ ମଣ୍ଡିଅଛି ଭୀରୁ ହେମପିତୁଳା । ଏହା ଦ୍ୟୁତି ଆନରେ ନାହିଁ । କଳାପୀର କଳାପେ ତ କଳାଏ ନାହିଁ । ୧୮ । ଏକା ଏ କାମିନୀ ଧନ୍ୟ ଭଲା ଲଲାଟ ଲାବଣ୍ୟ ସୁନାମୟ କେତକେ ତ

---

ସୂନଧନବା—ପୁଷ୍ପଧନ୍ୱା, କନ୍ଦର୍ପ; ବିକୃତ— ସ୍ୱଭାବର ଅନ୍ୟଥା ଭାବ, ବିକୃତି; ଅନ୍ତରହିତ—ଅନନ୍ତ, ପ୍ରଚୁର; ଅନ୍ତରହିତ— ଅନ୍ତର୍ହିତ, ଅଦୃଶ୍ୟ । ୧୨ । ନାଗନାକନଗରୀ-ନାଗରୀଯାକ—ପାତାଳ ଓ ସ୍ୱର୍ଗର ନଗରମାନଙ୍କର ଯୁବତୀମାନେ; ମେରୁଧୀର—ଦୃଢ଼ଚିତ୍ତ । ୧୩ । ଘନସାର—କର୍ପୂର; ସୁରଧରା—ସ୍ୱର୍ଗ; ରଙ୍ଗରସା—କ୍ରୀଡ଼ାମଞ୍ଚ । ୧୪ । ଅଧିପଲାଞ୍ଛନ—ରାଜଚିହ୍ନ; ଜାମ୍ବୁନଦ—ସୁବର୍ଣ୍ଣ, ପ୍ରଭାକର—ସୂର୍ଯ୍ୟ; ପରଦାର ପ୍ରଭାବବଶରୁ—କନାଟିଏ ଆଡ଼ ଆଗରେ ଥିବାରୁ, ଚତ୍ୱର—ଅଗଣା; ଯାନବର—ଶ୍ରେଷ୍ଠଯାନ, ପାଲିଙ୍କି । ୧୫ । ବନରୁହସୁଲୋଚନା— ପଦ୍ମନେତ୍ରା, ଅଂସେ—କାନ୍ଧରେ । ୧୬ । ମକରଧ୍ୱଜ ... କନ୍ଦର୍ପର ମୋହଜନକ ଫୁଲଶରର ମୁନ ବାଜି କ୍ଷଣକ ମଧ୍ୟରେ ଅଜ୍ଞାନ ହୋଇଗଲା, ସୁଷମା—ପରମଶୋଭା । ୧୭ । ଶଇବଳ— ଶିଉଳି, ବଳ—ଶକ୍ତି; ଜଳଧରସଙ୍ଘାତ— ମେଘସମୂହ, ଭ୍ରମରେ—ଭଅଁରଠାରେ, ଭ୍ରମରେ —ଭୁଲରେ । ୧୮ । ସଜଳଜପରିମଳ— ପଦ୍ମଗନ୍ଧଯୁକ୍ତ, ମହେନ୍ଦ୍ରନୀଳ—ଇନ୍ଦ୍ରନୀଳମଣି, ତମ—ରାହୁ ବା ଅନ୍ଧକାର,

ନାହିଁ ଏ ଶିରୀ । ବଳକ୍ଷପକ୍ଷ ଅଷ୍ଟମୀ ସୁଧାଂଶୁ ଖେ ଭ୍ରମି ଭ୍ରମି ଶ୍ରମୁଁ ରହିଛି କି ଜମି ଦିଶେ ଏପରି । କି ଚିକ୍କଣ କି ଝଳିମନ୍ତ । ଦେଖା ନାହିଁ ଲେଖା ଲେଖାପୁରେ ଏମନ୍ତ । ୧୯ । ବିମଳ ସୁନ୍ଦର ଦରପଣ ସହୋଦର ଦରହାସୀର ଭାସୁର ସୁରଞ୍ଜନ କପୋଳ । କେଡ଼େ ମନୋହର ହରମୋହନ ରୁଚି ରୁଚିର କେଳି କଳନ ମନ୍ଦିର ଏ ଗଣ୍ଡସ୍ଥଳ । ଥରେ ଏଥି ଚୁମ୍ବିଲେ ରସେ । ବୋଲାଇବ ନିଖିଳ ତରୁଣେଶ୍ୱର ସେ । ୨୦ । ଆହା ଏ ହେମନିଭାଙ୍ଗୀ ଭ୍ରୂଯୁଗ ଭଙ୍ଗ ଭାଙ୍ଗି ଦେଉଛି ନୀଳଭୁଜଙ୍ଗୀ ଗର୍ବକୁ ଖେଳେ । କମ୍ପାଇବ ମନ ମନସିଜ ଶରାସନ ସନକଙ୍କର ଚେତନ ତ ନ ରହିବ ତିଳେ । ଯୁବ ମର୍ମକଟା କତୁରୀ । ସମ୍ପାଦି କି କମ୍ପାଉଛି ଗୋରୀ ଚତୁରୀ । ୨୧ । ସୁଧାରସ ହଳାହଳ ମିଶାମିଶି ଚଳାଚଳ ଯତିଧୃତିବଳାବଳ ବିଚାରଶୀଳ । ଚିତ୍ରାଲୋକସସମ୍ଭ୍ରମ ଚମୂରୁ ଚକ୍ଷୁଚାତ୍ରିମ ମଦବିମର୍ଦ୍ଦନକ୍ଷମ ନେତ୍ରଯୁଗଳ । ଲାଞ୍ଜ ମଞ୍ଜୁତର ଅଞ୍ଜନ । ଯୋଗୁଁ ଖଞ୍ଜରୀଟପୁଞ୍ଜ ଗର୍ବଗଞ୍ଜନ । ୨୨ । ନୀଳ ଇନ୍ଦୀବରବର ସୁରଭିବାସର ସରସିଜ ବିଲୋଳ ଶଫର ଏ ଆଦି ଯେତେ । ଶିଖିଲେ ହେଁ ବାରବାର ଏ ନେତ୍ର ଶୋଭାର ଭାର ବହି ମହୀ ମୋହି ପାରିବ କି କିଞ୍ଚିତେ । କି ଆନୀଳ ତରଳତାରା । ମସାରନିର୍ମିତ ଖେଳା ମିଳିନ୍ଦ ପରା । ୨୩ । ମାର ମାରଗଣ ଗଣ ରଖିବାକୁ ତିଳତୂଣ ବିରଞ୍ଚି ରଚିଛି ଯୋଷା ନାସା କପଟେ । କୀର କି ରହିଛି ଲୁଚି କରକର ବୀଜାବଳିରଦର ଦମ୍ଭେ ଥିବାରୁ ବିମ୍ବ ନିକଟେ । ନୂଆ ଯଉବନ ଗୁମାନ । ପୂଟ ଉଲ୍ଲାସରୁ ସ୍ଫୁଟ କରିଛି ଧନ । ୨୪ । ଏ ଶ୍ରୁତି ଦ୍ୟୁତିପଟଳୀ ଚାହିଁ କେ ନ ଯିବ ଟଳି କେ ବୋଲେ ହିରଣ୍ୟ ଦଳି ଗଢ଼ିବା ପାଶି । କଞ୍ଜାସନ ରୂପମାନଙ୍କରେ ଏହା ଉପମାନ ରଖି ପାରି ନାହିଁ ହୋଇ

---

ତମୋନୁଦ—ସୂର୍ଯ୍ୟ ବା ଚନ୍ଦ୍ର; କରଣ—ଶରୀର, କଳାପୀ—ମୟୂର, କଳାପ—ମୟୂରପୁଚ୍ଛ । ୧୯ । ସୁନାମୟକେତକ— ସ୍ୱର୍ଣ୍ଣନିର୍ମିତ କେତକୀଫୁଲ ପାଖୁଡ଼ା; ବଳକ୍ଷପକ୍ଷ— ଶୁକ୍ଳପକ୍ଷ, ସୁଧାଂଶୁ—ଚନ୍ଦ୍ର, ଖେ—ଆକାଶରେ, ଝଳିମନ୍ତ—କାନ୍ତିଯୁକ୍ତ, ଲେଖା—ଚିତ୍ର, ଲେଖାପୁରେ—ସ୍ୱର୍ଗରେ । ୨୦ । ଦରପଣ-ସହୋଦର—ଦର୍ପଣତୁଲ୍ୟ, ଭାସୁର—ଉଜ୍ଜ୍ୱଳ । ୨୧ । ହେମନିଭାଙ୍ଗୀ—ସୁବର୍ଣ୍ଣତୁଲ୍ୟ ଅଙ୍ଗ ଯାହାର, ମନସିଜଶରାସନ—କାମଧେନୁ, ସନକ—ପ୍ରସିଦ୍ଧ ସଂଯମୀ ଋଷି । ୨୨ । ସୁଧାରସ—ଅମୃତ, ହଳାହଳ—ବିଷ, ଚିତ୍ରାଲୋକ ସସଂଭ୍ରମ— ଅଦ୍‌ଭୁତ ଦର୍ଶନରେ ଉଦ୍‌ବିଗ୍ନ, ଚମୂରୁଚକ୍ଷୁ ... ତାହାର ନେତ୍ରଦ୍ୱୟ ଚଞ୍ଚଳ ଉଦ୍‌ବିଗ୍ନ ଚମୂରୁମୃଗର ଚକ୍ଷୁ ଗର୍ବ ଧ୍ୱଂସ କରିବାରେ ପାରଗ । ୨୩ । ସୁରଭିବାସରସରସିଜ—ବସନ୍ତକାଳରେ ଫୁଟିଥିବା ପଦ୍ମ, ବିଲୋଳଶଫର—ଚଞ୍ଚଳ ଦଣ୍ଡିକିରି ବା କେରାଣ୍ଡି ମାଛ, ଆନୀଳ—ଈଷତ୍ ନୀଳ, ତରଳ ତାରା—ଚକ୍ଷୁର ଗୋଲକ, ମସାର— ଇନ୍ଦ୍ରନୀଳମଣି, ମିଳିନ୍ଦ—ଭ୍ରମର । ୨୪ । ତିଳତୂଣ—ରାଶିଫୁଲରେ ନିର୍ମିତ ଶରମୁଣା, କୀର—ଶୁଆ (ନାସାସହିତ ଉପମିତ), କରକ—ଡାଳିମ୍ବ, ରଦର ଦମ୍ଭେ—ଦନ୍ତବ୍ୟାଜରେ

ମହାଆୟାସୀ । ଲଜ୍ଜାଲବବିହୀନ ମନେ । ଶଷ୍କୁଳୀ ବୋଲନ୍ତି ଅତି ଦୁଷ୍କୁଳୀ ଜନେ । ୨୫ । ବାଳାର ଦଶନାମ୍ବର ଜିଣିଛି ପକ୍ୱ ବିମ୍ବର ସଉଭାଗ୍ୟ ଆଡ଼ମ୍ବରକୁ ଶୋଣଗୁଣେ । ସିନ୍ଦୂର ମନ୍ଦାର ନବ କିଶଳୟ ବନ୍ଧୁଜୀବ କୁରୁବିନ୍ଦବୃନ୍ଦକୁ ତ ହେଳାରେ ଜିଣେ । ଲେଖିଛି କା ଭାଲେ ଦଇବ । ଏଥୁ ସୁଧାକୁ ବସୁଧା ଲୋକେ ପିଇବ । ୨୬ । ସ୍ୱରୂପ ସରୁଚୂମ୍ବନେ ଥିଲେ ହେଁ ବିଲଜ୍ଜ ମନେ ରୁଚିର ଚିବୁକର ହୁଅନ୍ତା ସଦୃଶ । ତାହାର ନାହିଁ ମୂରତି ଏହାର ନାହିଁ ଜଗତୀତଳେ ତିଳେ ଉପମିତି ଏଣୁ ଲୋକେଶ । ଅତୁଲ୍ୟ ଏ ବୋଲି ଜଗତେ । ଅଙ୍ଗୁଳିଅଗ୍ରରେ ଚିହ୍ନ ଦେଇଛି ଅନ୍ତେ । ୨୭ । ବିଭାବରୀବର ତୁଳ ଶ୍ରୀମୁଖ କି ବରତୁଳ ମୋ ନେତ୍ର କି ବରତୂ ଲଭିଲା ଲୋକନ । ଏହାର ସୁ-ଆଦରଶ ଲଭୁଥିଲେ ଆଦରଶମଣ୍ଡଳରେ ଆଦର ସମ୍ଭବ କେ ଜନ । କଳାକୁ କି ତୁଲ୍ୟ ଏହାର । ମଳିନ ପଙ୍କସଙ୍କର ନଳିନ ଛାର । ୨୮ । ବାଣୀ ବାଣୀଙ୍କର କରବିପଞ୍ଚୀ ପଞ୍ଚମ ତାରସ୍ୱର ସ୍ୱର ଢୂର କରିଅଛି କି ସତେ । ମଧୁମଧୁ ଝରି ଝରି ନ ଧରିବ ଏ ମାଧୁରୀଧୁରୀଣତାକୁ ଏପରି ହୋଏ ପରତେ । ମୁଖପେୟ ପୀୟୁଷରସ । ଏ ତ ଶ୍ରୁତିପଥେ ପିଉ ପୀୟୁଷରସ । ୨୯ । ଭୃଙ୍ଗୀ ଶୁକ ପିକରବ ସୁଭଗରବ ଗରବ ରବାର ବଡ଼ାଇ କରି ଦେଇଛି ଦୂର । ବର୍ଣ୍ଣ ବର୍ଣ୍ଣକରେ କରେ କରେ ମହେନ୍ଦ୍ରଲୋକରେ ନ ମିଳିବା ଶିରୀ ଶିରୀଷାଙ୍ଗୀର ଗିର । ଏହି ଗିରେ ସ୍ନେହ ଆଳାପ । ବାଜିବ ଯା କର୍ଣ୍ଣେ ତାର ପୁଣ୍ୟ ଅମାପ । ୩୦ । ଅପୋତ ଶୁଦ୍ଧ କାଞ୍ଚନ କପୋତ କାନ୍ତି ବଞ୍ଚନ ଗଳାର ଲାବଣ୍ୟ ଧନ୍ୟ ଧନ୍ୟ ଏହାର । କମ୍ବୁ ଶମ୍ବୁଙ୍କ କଳପ ଦର ବୋଇଲେ ଅଳପ ଅର୍ଥାନ୍ତରୁ ଭୟ ରୂପ

---

(ଡାଳିମ୍ବବୀଜ ଦନ୍ତ ସଙ୍ଗେ ଉପମିତ), ବିମ୍ବ—ବିମ୍ବଫଳ (ଅଧର ସଙ୍ଗେ ଉପମିତ); ପୁଟଉଲ୍ଲାସ—ନାକପୁଡ଼ାର ଫୁଲିବା । ୨୫ । ଶ୍ରୁତି—କର୍ଣ୍ଣ, ଦ୍ୟୁତି—ଶୋଭା, ହିରଣ୍ୟ— ସୁବର୍ଣ୍ଣ, ପାଶି—ଫାଶ, କଞ୍ଜାସନ—ବିଧାତା, ବ୍ରହ୍ମା; ମହାଆୟାସୀ—ଅତ୍ୟନ୍ତ ଯତ୍ନଶୀଳ । ଶଷ୍କୁଳୀ—ଚକୁଳିପିଠା (କର୍ଣ୍ଣ ସଙ୍ଗେ ଉପମିତ), ଦୁଷ୍କୁଳୀଜନେ—ନୀଚଜାତୀୟ ଲୋକମାନେ ।୨୬ । ଦଶନାମ୍ବର—ଅଧର, ଶୋଣଗୁଣେ—ରକ୍ତିମାରେ, ବସୁଧାଲୋକେ—ମର୍ତ୍ତ୍ୟରେ । ୨୭ । ସରୁଚୂମ୍ବନ— କ୍ଷୀଣଚୂମ୍ବନ (ଆକୃତିବିହୀନ), ଉପମିତି—ଉପମାନ, ଲୋକେଶ—ବ୍ରହ୍ମା । ୨୮ । ବିଭାବରୀବର—ଚନ୍ଦ୍ର, ବରତୁଳ—ବର୍ତ୍ତୁଳ, ଗୋଲ; ବରତୂ—ବ୍ରତରୁ, ସୁଆଦରଶ—ସୁଖମୟ ଦର୍ଶନ, ଆଦରଶମଣ୍ଡଳ—ଦର୍ପଣମଣ୍ଡଳ, ମଳିନପଙ୍କସଙ୍କର—ଅବିଶୁଦ୍ଧ ପଙ୍କ ମିଶ୍ରଣରୁ ଉତ୍ପନ୍ନ, ନଳିନ—ପଦ୍ମ । ୨୯ । ବାଣୀ—କଥା ଓ ସରସ୍ୱତୀ; କରବିପଞ୍ଚୀ—ହାତରେ ଥିବା ବୀଣା; ଢୂର କରିବା—ନଷ୍ଟ କରିବା; ପୀୟୁଷରସ—ଅମୃତ ରସ, ମଧୁମଧୁ—ବସନ୍ତର ପୁଷ୍ପରସ, ମାଧୁରୀଧୁରୀଣତା—ମାଧୁର୍ଯ୍ୟର ଶ୍ରେଷ୍ଠତା, ମୁଖପେୟ—ମୁହଁରେ ପାନର ଯୋଗ୍ୟ, ଶ୍ରୁତିପଥେ—କାନବାଟେ । ୩୦ । ସୁଭଗରବଗରବ —ଧ୍ୱନି ଗର୍ବଜନିତ ସୌଭାଗ୍ୟ, ରବା—ଏକପ୍ରକାର ବୀଣା, ବଡ଼ାଇ—ବଡ଼ିମା, ବର୍ଣ୍ଣବର୍ଣ୍ଣକରେ—ପ୍ରତି ଅକ୍ଷରରେ, କରେ—ବ୍ରହ୍ମଲୋକରେ, ମହେନ୍ଦ୍ର ଲୋକରେ—ସ୍ୱର୍ଗରେ,

ହୋଏ ଏହାର । କିଶୋରୀକଣ୍ଠର ଶିରୀକି । କନକ କଲଶ ଗ୍ରୀବା ହେଲେ ସରି କି । ୩୧ । ଅଂସ ଦରନତ ବରସମ୍ପଦ ରମା ରୂପର ପରମ ମୃଦୁଳ ମୂଳ ଗଜଶୁଣ୍ଡାର । ନିଲୋମ କୋମଳ କକ୍ଷ ହେବ କେଉଁ ଧନ୍ୟ ତିକ୍ଷକରଜମୂନର ମୁଖ୍ୟସୁଖ ଭଣ୍ଡାର । କେଉଁ ପୁଣ୍ୟେ ଏ ମୃଦୁବାହା । କାହାର ହାରସଙ୍ଗିନୀ ହେବଟି ଆହା । ୩୨ । ଏ ବାହୁଯୁଗଳଗଳ ପ୍ରଦେଶରେ ସମୁଜ୍ଜ୍ୱଳ ମୃଦୁଅଳଙ୍କୃତିଫଳ ଦେବ ଯାହାର । ମୃଣାଳଲହରୀବଲ୍ଲୀ ପାଶ ଚମ୍ପାମାଳା ବୋଲି ତାହାର ବଦନୁ ହୋଇବ କି ବାହାର । ଦେବଲତା ନବ ପଲ୍ଲବେ । ଦେବ କେ ଏ ପଞ୍ଚଶାଖେ ସ୍ୱରୂପ ଲବେ । ୩୩ । ଅଙ୍ଗୁଳି କଳିକାବଳି ଦେଇଅଛି କି କବଳି ନବ କିଶଳୟାବଳି ମୃଦୁଳତାକୁ । ଅନ୍ଧ ନୋହି କେହି ହେଲେ ଗନ୍ଧଫଳିରେ ତୁଳିଲେ ବନ୍ଧନରେ ରୁନ୍ଧିବର ଉଚିତ ତାକୁ । ଧନ୍ୟ ହୀରାଙ୍କୁ ରକରଜା । ତ୍ରିଜଗତୀ ଯୁବତୀକଦମ୍ବଙ୍କ ରଜା । ୩୪ । ଚରମ ଚାରୁ ନିର୍ମଳ ପରମ ରମ୍ୟ କୋମଳ ଭରମକଦଳୀଦଳଠାରୁ ବଳିବ । ଧରମରେ ଧୂରନ୍ଧର କରମବନ୍ତଜନର ନରମ ସମୟେ କରତଳେ ଖେଳିବ । ଏ କି ଦିବ୍ୟ କାଞ୍ଚନ ମହୀ । ବେଣୀ କଳାଫଣୀ ଚାଲି ଲାଞ୍ଛନ ଯିହିଁ । ୩୫ । କୁଚକୁ ଚକ୍ର ଯୁଗଳ କନକନଗ ଶ୍ରୀଫଳ ତୁମ୍ବୀ କୁମ୍ଭିକୁମ୍ଭଥଳ ଏତେ ଉପମା । ବାଳାର ଏ ପୟୋଧର ସୁଧାସମ୍ପୁଟସୋଦର କଳି ନୋହେ ମହତ୍ତର ଲାବଣ୍ୟ ସୀମା । ଏ ଯୋଗ କି ମୋତେ ହୋଇବ । ଛଇଳା ଏ ସ୍ତନେ ମୋ ଛାତିକ ଛୁଇଁବ । ୩୬ । ପେଟ ଥିଲେ ପଟୁପୁଟପାକ ପ୍ରସିଦ୍ଧ ପୁରଟ ବଟଦଳ ପ୍ରତିଭଟ ଅବା ବୋଲନ୍ତି । ସ୍ତନ ମନସିଜ କେଳି-ବଡ଼ଭୀସୋପାନାବଳିକ୍ରୟରୁ ସିନା ପ୍ରଜ୍ୱଳି ରହିଛି କାନ୍ତି । ନବ ରୋମରାଜି କପଟ । ଏକି ବଡ଼ଭୀକି ନୀଳ ରତନ ବାଟ । ୩୭ । ବାଳା

ଗିର—କଥା, ଅମାପ—ପ୍ରଚୁର । ୩୧ । ଅପୋତ—ପ୍ରୌଢ଼, କମ୍ବୁ—ଶଙ୍ଖ, ଶମ୍ଭୁଙ୍କ କଳପ—ଶିବସଦୃଶ, ଦର—ଶଙ୍ଖ ଓ ଭୟ; ଶିରୀ—ସୌନ୍ଦର୍ଯ୍ୟ, କନକ କଳଶଗ୍ରୀବା—ସୁନାମାଠିଆର ବେକ । ୩୨ । ଅଂସ—କାନ୍ଧ, ଦରନତ—ଅଳ୍ପ ଅବନତ, ଗଜଶୁଣ୍ଡା—ହାତୀଶୁଣ୍ଡ, କକ୍ଷ—କାଖ, ତୀକ୍ଷ—ତୀକ୍ଷ୍ଣ, କରଜମୂନ— ନଖମୂନ, ମୁଖ୍ୟସୁଖ—ପ୍ରଧାନ ସୁଖ । ୩୩ । ଅଳଂକୃତି—ଅଳଙ୍କାର, ମୃଣାଳ—ପଦ୍ମନାଡ଼, ବଲ୍ଲରୀ—ଲତା (ଏଗୁଡ଼ିକ ବାହୁର ଉପମା ହୁଏ), ଦେବଲତାନବପଲ୍ଲବେ—କଳ୍ପଲତାର ନୂତନ ପତ୍ରରେ, ପଞ୍ଚଶାଖେ—(ପଞ୍ଚମାଙ୍ଗୁଳିରୂପ ଶାଖା ଥିବାରୁ) କରରେ । ୩୪ । ଅଙ୍ଗୁଳିକଳିକାବଳି— ଆଙ୍ଗୁଳିରୂପ ପୁଷ୍ପକଢ଼ସବୁ । କବଳି ଦେଇଛି—ଗ୍ରାସ କରି ଦେଇଛି, ପରାସ୍ତ କରି ଦେଇଛି; ମୃଦୁଳତା—କୋମଳତା, ଗନ୍ଧଫଳି—ଚମ୍ପାକଢ଼ି, ହୀରାଙ୍କୁର କରଜା—ହୀରାର ଅଙ୍କୁର ପରି ନଖ ଯାହାର; ଯୁବତୀକଦମ୍ବ—ଯୁବତୀସମୂହ । ୩୫ । ଚରମ—ପୃଷ୍ଠଦେଶ; ଭରମକଦଳୀଦଳ—ସୁନା କଦଳୀପତ୍ର; ନରମ ସମୟେ—କ୍ରୀଡ଼ାବେଳେ, ବେଣୀକଳାଫଣୀ—ବେଣୀରୂପ କଳା ସାପ, ଲାଞ୍ଛନ—କଳଙ୍କ ବା ଚିହ୍ନ । ୩୬ । ଚକ୍ରଯୁଗଳ—ଚକୁଆଚକୋଇ ପକ୍ଷୀ ଦୁହେଁ, କନକନଗ—ମେରୁ ପର୍ବତ, ଶ୍ରୀଫଳ—ନଡ଼ିଆ, ତୁମ୍ବୀ—ଲାଉ, କୁମ୍ଭିକୁମ୍ଭ—ହାତୀର ଗଣ୍ଡସ୍ଥଳ, ସୁଧାସଂପୁଟସୋଦର —ଅମୃତପୂର୍ଣ୍ଣ ଫରୁଆ ପରି । ୩୭ ।

ଉରୋଜଯୁଗଳ ବ୍ୟାଜ ରଜନୀ-କମଳ ଚୁମ୍ବ ଲୋଭେ ନାଭିବିଳ ଗର୍ଭରୁ ଧାଇଁ । ଅଛି କି ମିଳିନ୍ଦଶ୍ରେଣୀ କି ମରକତନିଃଶ୍ରେଣୀ ବକ୍ଷୋଜ ସୁଷମା ରାମା ସଞ୍ଚାର ପାଇଁ । କିବା ମାର କରିଛି ମାୟା । ନିଜ ଝଣ୍ଡା ନ ଦିଶି ଦିଶୁଛି ତା ଛାୟା । ୩୮ । ନବୀନ ବିଳାସବତୀ ତନୁ ତ ନୂତନଦ୍ୟୁତି ତରଙ୍ଗିଣୀ ଏ ତ୍ରିବଳୀ ତାର ଲହରୀ । ନବ ରୋମରାଜି ନୀଳ ଦୀର୍ଘ ସୂକ୍ଷ୍ମ ଶଇବଳ ଗଭୀର ନାଭି ବିମଳତର ଭଉଁରୀ । ଏଥି ଯେବେ ତରୁଣ ଚିତ୍ତ । ପଡ଼ିଯିବ ବଞ୍ଚିବାକୁ ନାହିଁ ଆୟତ୍ତ । ୩୯ । ପାଟୀର ଚହଟୀକଟୀ ହଟିଛି ଯୁବକରଟି ରିପୁ ମଧ୍ୟ ପରିପାଟୀ ଲୁଟି ନେବାରେ । ସମସ୍ତେ ପଦାନ୍ତେ ନିତି ବିସର୍ଗ କରୁଛି ସ୍ଥିତ ଡାକି ଡାକି ଡାକି ମରେ ନିଶି ଦିବାରେ । ଏହା ଶୋଭା ଭୁବନେ ନାହିଁ । ଅଧର ନିର୍ମିତ ବେଦୀ ମଧ୍ୟରେ କାହିଁ । ୪୦ । ବରବର୍ଣ୍ଣିନୀର ନିରନ୍ତରେ ମନ୍ମଥରଥର ଚକ୍ରଚାରୁ ନିତମ୍ବକୁ ଘେନିଲେ ଚିତ୍ତେ । ଜାମ୍ବୁନଦ ତୁମ୍ବୀ ଶିରୀ ଅବଲମ୍ବୀ ଫରି ପରି ହେଉଛି ପରତେ ରତେ କି ହେବ ସତେ । ବିପରୀତେ ରହିଛି ପରା । ମନସିଜ ରାଜାର ବିଜୟ ନାଗରା । ୪୧ । ନେତ୍ର ହେଉଛି ଆଚ୍ଛନ୍ନ ନେତ୍ରେ ନୋହେ ବିଲୋକନ କନକମୟ ପୁଳିନ ଘନ ଜଘନ । କି ଅବା ମୀନକେତନ ଅଭିଷେକ ସିଂହାସନ କରନ୍ତା ମୋତେ ବସନ ପଙ୍କଜାସନ । ଆସ୍ତରଣ ହୁଅନ୍ତି ସୁଖେ । ନ କରି ନଜର ମନୋଜର ବିଶିଖେ । ୪୨ । ପ୍ରତୀତି ହୁଅଇ ପ୍ରତି ପ୍ରତୀକ କାନ୍ତି ସନ୍ତତି ଅନୁରୂପବନ୍ତ ଅତ ମନୋଜ୍ଞବାସ । ନବ ନବନୀତ ନିତି ସାରସ୍ୱର୍ଣ୍ଣ ପରିଣତି ବହଳ ତାମ୍ବୁଳେ ଥିବ ସରୋଜବାସ । ନବ ଲୋମସ୍ତୋମ ହରଷ । ଇନ୍ଦ୍ରଗୋପପୃଷ୍ଠ ସମ

---

ପୁରଟବେଟଦଳ—ସୁନା ତିଆରି ବରପତ୍ର, ପ୍ରତିଭଟ—ସମକକ୍ଷ, କେଳିବଡ଼ଭୀ—କ୍ରୀଡ଼ା ଅଟ୍ଟାଳିକା, ନୀଳରତନବାଟ—ଇନ୍ଦ୍ରନୀଳମଣିରେ ନିର୍ମିତ ପାହାଚ । ୩୮ । ରଜନୀ-କମଳ— ମୁଦ୍ରିତପଦ୍ମ (ରାତ୍ରିରେ ପଦ୍ମ ମୁଦ୍ରିତ ଥାଏ) । ମିଳିନ୍ଦଶ୍ରେଣୀ—ଭ୍ରମରଦଳ (ରୋମାବଳିରୂପ), ମରକତନିଃଶ୍ରେଣୀ—ମରକତମଣିରେ ନିର୍ମିତ ନିଶୁଣୀ, ଝଣ୍ଡା—ପତାକା । ୩୯ । ତନୁ— ଶରୀର, ନୂତନ ଦ୍ୟୁତିତରଙ୍ଗିଣୀ—ନୂତନ ଶୋଭାର ନଦୀ । ୪୦ । ପାଟୀର ଚହଟୀକଟି— ଚନ୍ଦନସୁବାସିନୀର କଟିଦେଶ, ହଟିଛି—ବଳାତ୍କାର କରିଛି, ଯୁବ—ଯୁବକ, କରଟୀ—ହାତୀ, ଯୁବକରଟିରିପୁ ମଧ ପରିପାଟୀ—ଯୁବକସିଂହର କଟିର ସୌଷ୍ଠବକୁ । ପଦାନ୍ତେ—ବିଭକ୍ତିଯୁକ୍ତ ଶବ୍ଦ ଶେଷରେ ଓ ପାଦତଳେ, ବିସର୍ଗ—'ଃ' ଏହି ବିସର୍ଗ ଚିହ୍ନ (କଟୀ ସଙ୍ଗେ ଏହା ଉପମିତ ହୁଏ), ଡାକି—ଡମରୁ, ଡାକି ଡାକି—ଶବ୍ଦ କରି କରି । ଅଧର ନିର୍ମିତ ... ଯଜ୍ଞ ବେଦୀର ମଧ୍ୟଭାଗରେ ସ୍ୱଳ୍ପ ନାହିଁ (ସ୍ତ୍ରୀମାନଙ୍କୁ ବେଦୀବିଲଗ୍ନମଧ୍ୟା କୁହାଯାଏ) । ୪୧ । ନିରନ୍ତର—ସାନ୍ଦ୍ର, ନିବିଡ଼ । ଜାମ୍ବୁନଦ ... ସୁନା ଲାଉ ପରି ସୁନ୍ଦର; ଫରି ପରି—ଢାଲ ପରି । ୪୨ । କନକମୟପୁଳିନ—ସ୍ୱର୍ଣ୍ଣମୟ ତୀରଭୂମି, ଘନଜଘନ—ନିବିଡ଼ ଜଙ୍ଘ, ବସନ—ଆଚ୍ଛାଦନ ବସ୍ତ୍ର, ପଙ୍କଜାସନ—ବ୍ରହ୍ମା, ଆସ୍ତରଣ—ଆଚ୍ଛାଦନ ବସ୍ତ୍ର, ନଜର—ଦୃଷ୍ଟି, ମନୋଜର

ସୁଖସ୍ମରଶ । ୪୩ । ଏ ଊରୁ  ଶୋଭା ସମ୍ଭାର ନାହିଁ ତ ହେବ ରମ୍ଭାର ଏହା ତୁଳାକୁ କି କରଭର ଭରସା । କଳଭ ଲଭିବ ନାସା ଦଣ୍ଡେ କି ଏହା ପ୍ରଶଂସା ରସାଳସା ରସାଶୟ ସଦୃଶଦୃଶା । କି ଭାଗ୍ୟ ଏ ନୟନ ପଥ । ମଣ୍ଡିଲା ପୂର୍ଣ୍ଣ କରିବି କି ମନୋରଥ । ୪୪ । ଜଙ୍ଘାତ ହାଟକସ୍ତମ୍ଭ ସଙ୍ଘାତ ଗରବାରମ୍ଭ ସଙ୍ଘାତ ଘାତବିଧିରେ ଅଧ୍ୱରଯୂପ । ଚରଣଯୁଗଳ ଛବି ବରନି ନ ପାରି ଦବି ରହିଛି ପୂର୍ବରୁ ଭାବି ଶ୍ରୀହସ୍ତରୂପ । ଶଶୀକି ନ ଜିଣିଲା ମୁଖ । ଦାରା ତାରାଭୟେ ଭଜି ହେଲେ କି ନଖ । ୪୫ । ଗମନ ମତମାତଙ୍ଗରାଜ ରଥଚରଣାଙ୍ଗ ଗରବ ଗରିମ ଭଙ୍ଗ ପଟୁତ୍ୱସୀମା । ଶିରୀଷମାଳ ମାଳତୀ ନବୀନ ଲହୁଣୀ ପ୍ରତିଭଟ ସିନା ଘଟସ୍ତନା ତନୁମ୍ରଦିମା । କି ହେବଟି ସେବିଲେ ପାଶେ । ବିକଚ କମଳବନୀ ପରାୟେ ବାସେ । ୪୬ । ଏପରି ନାଗରମଣୀ ସେବିତ ନାଗରୀମଣି ପ୍ରୀତି ବିନା ଗର ମଣି ତେଡ଼େ ବିଭବ । ମଦନଦରଦନ୍ତୀର ଦଶାରେ ଦିବସାନ୍ତର ହୁଅନ୍ତେ ନଟପ୍ରକଟ କଲା ପ୍ରଭାବ । ଦିନ ଥାଉ ହେଲା ତ୍ରିଯାମା । ପିନ୍ଧିଲା ବ୍ୟୋମ ଅନ୍ଧାର ସୁନୀଳଜାମା । ୪୭ । ନ ଦିଶିଲେ ସଖା ଆଳୀ ଜିଣିଲା ପ୍ରଦୀପାବଳୀ ଜଳି ଲଳିତଉଦରୀ ତନୁ କମ୍ପିଲା । ମିଶିଗଲା ଚାରିନେତ୍ର ଦିଶିଗଲା ଦୁଇଗାତ୍ର ସପୁଲକ ହୋଇ ସ୍ମରଶରେ କମ୍ପିଲା । ଊରୁ ଊରୁ କରଚିବୁକେ । ଜନ୍ମିଲା ବେପଥୁ ଦୁଇ ଶ୍ରୀଅଙ୍ଗ ଯାକେ । ୪୮ । ଧନରେ ମୁଁ

---

ବିଶିଖ—କନ୍ଦର୍ପବାଣ । ୪୩ । ପ୍ରତିପ୍ରତୀକ ... ପ୍ରତି ଇନ୍ଦ୍ରିୟର ଲାବଣ୍ୟସମୂହର ଅନୁରୂପ, ମନୋଜବାସ—କାମଗୃହ, ସ୍ୱୀଚିହ୍ନ । ସାରସ୍ୱର୍ଣ୍ଣ ପରିଣତି—ଉତ୍କୃଷ୍ଟ ସୁବର୍ଣ୍ଣର ଅବସ୍ଥାନ୍ତର ପ୍ରାପ୍ତି, ସ୍ତୋମ—ସମୂହ । ଇନ୍ଦ୍ରଗୋପପୃଷ୍ଠ— ସାଧବାଣୀପୋକର ପିଠିପରି । ୪୪ । ଶୋଭାସମ୍ଭାର—ସୌନ୍ଦର୍ଯ୍ୟସଂଗ୍ରହ, ହେମରମ୍ଭା— ସୁବର୍ଣ୍ଣ କଦଳୀ, କରଭ—ମଣିବନ୍ଧଠାରୁ କାଣୀ ଆଙ୍ଗୁଠି ଶେଷ ପର୍ଯ୍ୟନ୍ତ କରତଳର ବହିର୍ଭାଗ (ଊରୁ ସଙ୍ଗେ ଉପମିତ), କଳଭ—ହାତୀଛୁଆ, ନାସାଦଣ୍ଡ—ଶୁଣ୍ଢ । ରସାଳସା—ରସମୁଗ୍ଧା, ରସାଶୟ ସଦୃଶଦୃଶା—ରସର ଆଧାର ସ୍ୱରୂପ ଚକ୍ଷୁ ଯାହାର । ୪୫ । ହାଟକସ୍ତମ୍ଭ—ସୁନା ଖମ୍ବ, ଗରବାରମ୍ଭ ସଂଘାତ—ଅହଙ୍କାର ସମୂହର, ଘାତ ବିଧିରେ—ହତ୍ୟା ବ୍ୟାପାରରେ, ଅଧ୍ୱରଯୂପ— ଯଜ୍ଞସ୍ତମ୍ଭ (ଯଜ୍ଞରେ ପଶୁକୁ ଯୂପରେ ବାନ୍ଧି ହତ୍ୟା କରାଯାଏ) । ଶ୍ରୀହସ୍ତରୂପ—ସରସ୍ୱତୀଙ୍କର ହସ୍ତର ରୂପ, ଦାରାତାରା—ତାରକାରୂପ ସ୍ତ୍ରୀମାନେ (ତାରାମାନେ ଚନ୍ଦ୍ରଙ୍କ ସ୍ତ୍ରୀରୂପେ କଳ୍ପିତ) । ୪୬ । ଏ ସ୍ତ୍ରୀର ଗତି ମତ୍ତମାତଙ୍ଗରାଜ (ମତ୍ତହସ୍ତୀ ଶ୍ରେଷ୍ଠ)ର, ରଥଚରଣାଙ୍ଗ—(ରଥଚକ୍ର)ର ଗର୍ବ ଧ୍ୱଂସ କରିବାରେ ନିପୁଣ, ପ୍ରତିଭଟ—ପ୍ରତିଯୋଦ୍ଧା, ସମକକ୍ଷ; ତନୁମ୍ରଦିମା—ଶରୀରର ମୃଦୁତା; ବିକଚକମଳବନୀ—ପ୍ରସ୍ଫୁଟିତ ପଦ୍ମବନ । ୪୭ । ନାଗରମଣି ସେବିତ ... ନାଗକନ୍ୟାମାନେ ଯାହାକୁ ସେବା କରୁଥିଲେ । ନାଗରୀମଣି ପ୍ରୀତିକି ... ସେହି ନାଗରୀଶ୍ରେଷ୍ଠାର ପ୍ରୀତିତୁଳନାରେ ପ୍ରଚୁର ବିଭବକୁ ଗର ମଣି (ବିଷ ଜ୍ଞାନ କରି), ମଦନଦର-ଦନ୍ତୀ—କାମଭୟରୂପ ହସ୍ତୀ; ଦିବସାନ୍ତର— ଦିବାବସାନ, ନଟ—ଐନ୍ଦ୍ରଜାଲିକ, ତ୍ରିଯାମା— ରାତ୍ରି । ୪୮ । ଉପସ୍ଥିତ ସଖା ଓ ସଖୀମାନଙ୍କୁ ଦେଖାଗଲା ନାହିଁ । ଜଳି—ଚକ୍‌ଚକ୍

ମହାଗଜଘୋଷ ମହେନ୍ଦ୍ର ତନୁଜ ଧନହେ ମୁଁ ସରସିଜକୁଳଦୁଲାଳୀ । ଏତେ ମାତ୍ର ସାଳାପରେ ପ୍ରସୂନଚାପ-ରୋପରେ ଗଳା ଗୁଛାପରି ଦୁଇ ଶରୀର ଝାଳି । ପରସ୍ପର ରଦନବାସ । ନିବିଡ଼େ ପୀଡ଼ି ପିଇଲେ ତହୁଁ ପୀୟୂଷ । ୪୯ । ଗର୍ଭକେତକୀ ପାଖୁଡ଼ୀ ଗୋରୀ ସ୍ନେହେ ଦେଲା ଭିଡ଼ି ଚରମରେ ବୁଡ଼ି ବୁଡି ସଞ୍ଚା ରହିଲା । ଦୁହିଙ୍କ ତାମ୍ବୁଳବୋଳ ମଣ୍ଡି ଦୁଇ ଓଷ୍ଠଦଳ ତହିଁ ଦନ୍ତକ୍ଷତଲକ୍ଷ୍ମୀ ସଞ୍ଚାର ହେଲା । ସୁଖ ବ୍ରହ୍ମାନନ୍ଦ ଅମଳେ । କିଶୋର କିଶୋରୀ ଦୁହେଁ ଅଚେଷ୍ଟ ହେଲେ । ୫୦ । ଏକାଳେ ମୋହନ ଡାକି ବଜାଇ ସେ ନଟଟେକି ଶାବରମନ୍ତ୍ରରେ କି କି ଗାଇଲା ଗୀତ । ମାୟା ଜେମା ଆଦି ନଟ ବିଧି ହେଲା ଅପ୍ରକଟ କ୍ରମେ ଆପେ ହେଲା ପୁଣି ଅନ୍ତରହିତ । ଦିବସ ବିବଶ ହୋଇଲା । ରବିକର ମାୟାନିଶାମସୀ ଧୋଇଲା । ୫୧ । ସେ ଦିନ ସେହି ସମୟେ ଚନ୍ଦ୍ରକଳା ସ୍ୱନିଳୟେ ପ୍ରମୋଦମୋଦହୃଦୟେ ପହୁଡ଼ି ଥିଲା । ତ୍ରିପୁରସୁନ୍ଦରୀ ପରସାଦୁଁ ଅନଙ୍ଗସୁନ୍ଦର ସମ୍ଭୋଗ ସୁମନୋହର ସ୍ୱପନ ହେଲା । ମାୟା ସ୍ୱପନଭଙ୍ଗେ ସେ ଦୁହେଁ । ଭାଜି ହୋଇଲେ ବିରହ ଅନଳଦାହେ । ୫୨ । ତଥାପି ଭୂପୁରନ୍ଦର ସୁତ ଅନଙ୍ଗସୁନ୍ଦର ମରଜି ଧୈର୍ଯ୍ୟମନ୍ଦର ପରି ଉଭାରି । ମଦନାଗ୍ନି ନରନ୍ତର ଦହିଲେହେଁ ହୃଦନ୍ତର ପ୍ରକାଶ ନକରି ରଖୁଥାଏ ଉଭାରି । କ୍ରମେ କ୍ରମେ ମାତ୍ର ଇଙ୍ଗିତେ । ରାଜବଲ୍ଲଭକୁ ଜଣା କରାଏ କେତେ । ୫୩ । ଜୀମୂତ ତମାଳକାନ୍ତ ଚନ୍ଦ୍ରମୁକୁଟ ଭୂଷିତ ଅଚଳାଙ୍ଗ ଭବାନାଥ ଶିବ ଶ୍ରୀରାମ । ରାମଚନ୍ଦ୍ରଦେବ କ୍ଷିତିପୁରନ୍ଦର ହୃଦେ ନିତି କରିବେ କି ନିଜ ତେଜ ପ୍ରକାଶ ଧାମ । କୁମାର ମୋହନ ଏ ଛାନ୍ଦ । ବେଦାଧିକ ପଞ୍ଚାଶତସଂଖ୍ୟକ ପଦ । ୫୪ ।



---

ହୋଇ, ଲଳିତାଉଦରୀ—ଲଳିତ ଉଦରଯୁକ୍ତା (ମାୟା ଯୁବତୀ), ସପୁଲକ—ରୋମାଞ୍ଚିତ, ବେପଥୁ— କମ୍ପ । ୪୯ । ପ୍ରସୂନଚାପରୋପରେ— କନ୍ଦର୍ପବାଣରେ, ଗୁଛା ପରି—ଗୁଚ୍ଛା ହେଲା ପରି । ଝାଳିଗଲା—ପରସ୍ପର ମିଶିଗଲା, ରଦନବାସ— ଅଧର । ୫୦ । ଚରମରେ—ପିଠିରେ, ସଞ୍ଚା— ଚିହ୍ନ, ଦନ୍ତକ୍ଷତଲକ୍ଷ୍ମୀ—ଦନ୍ତାଘାତଜନିତ ଶୋଭା, ଅଚେଷ୍ଟ—ଅଜ୍ଞାନ । ୫୧ । ମୋହନଡାକି— ବିମୋହନ ଡମ୍ବରୁ, ରବିକର ... ସୂର୍ଯ୍ୟରଶ୍ମି ଦ୍ୱାରା ମାୟାରାତ୍ରିର କାଳିମା ଧୋଇ ହୋଇଗଲା, ଅର୍ଥାତ୍ ମାୟାରାତ୍ରି ଉଭେଇଗଲା; ସୂର୍ଯ୍ୟ କିରଣ ଦିଶିଲା । ୫୨ । ତ୍ରିପୁରସୁନ୍ଦରୀ—ଚନ୍ଦ୍ରକଳାର ଇଷ୍ଟଦେବୀ । ୫୩ । ମରଜି—ହୃଦୟରେ, ଉଭାରି—ଦଣ୍ଡାୟମାନ ହୋଇ, ଉଭାରି— ଘୋଡ଼ାଇ । ୫୪ । ଜୀମୂତତମାଳକାନ୍ତ—ମେଘ ଓ ତମାଳବୃକ୍ଷ ପରି କମନୀୟ (ଶ୍ରୀରାମ), ଅଚଳାଙ୍ଗଭବାନାଥ—ପାର୍ବତୀପତି (ଶିବ), ସୀତାପତି (ଶ୍ରୀରାମ) ।



# ଚତୁର୍ଦ୍ଦଶ ଛାନ୍ଦ

## ରାଗ——ଶଙ୍କରାଭରଣ

## (ସ୍ୱପନସମ୍ଭୋଗ)

ଦିବସ ତୃତୀୟଯାମ ସମୟରେ ଦିନେ । ପହୁଡ଼ିଥିଲା କିଶୋରୀରତନ ଭବନେ । ଦେବୀ କଲେ କି କରୁଣା । ସ୍ୱପନେ କି ଭୋଗ ହେଲା ତାହାକୁ ସେ ଜଣା । ୧ । କାତରେ ତରଳତରନେତ୍ରା ନିଦ୍ରା ତେଜି । ଘନାଙ୍କେ ଚଞ୍ଚଳାପରି ଶେଯରେ ବିରାଜି । ଦୃଷ୍ଟି ନ୍ୟାସ କରି ଅଙ୍ଗେ । ଖେଳାଇଲା ଦୁଇ ଭୁଜବଲ୍ଲରୀ ପଲଙ୍କେ । ୨ । ଅପାତଳ ତଳପ ତ କରେ ଦେଇ ଟାଣି । ତୋଳି ତୂଳି ତକିଆତଳକୁ ଚାହିଁ ପୁଣି । କୁଚ କାଞ୍ଚୁଲା ଫେଡ଼ିଲା । ଉଭାରି ଉରଉପର ଅମ୍ବର ଝାଡ଼ିଲା । ୩ । ପୁଣି ଅଂସ ଅବତଂସ ଖୋସା ଶିଥିଳାଇ । ବଉଳ ଚଉଁରୀଗର୍ଭେ ଅଙ୍ଗୁଳି ଗଳାଇ । ଫେରାଇଲା କର୍ଣ୍ଣଭୂଷା । ହୋଇଲା ବିଗତା ଶ୍ୱାସ ଛାଡ଼ି ମୃଗଦୃଶା । ୪ । କମ୍ପାଇ ବନ୍ଧୁକବନ୍ଧୁ ରଦନଛଦନ । ବିକଳେ ଏପରି ଧୀରେ ରଚିଲା ରୋଦନ । ହା ମୋ ପ୍ରାଣ ସହଚର । କି ଦୋଷୁଁ ନୋହୁଛ ମୋରେ ଲୋଚନଗୋଚର । ୫ । କିଶୋରକିରୀଟ ଅହେତୁକ ଦୟାଳୁ ହେ । ମୁଁ ଯେବେ ତୁମ୍ଭର ଦରଶନ ଯୋଗ୍ୟ ନୁହେଁ । କାହିଁ ପାଇଁ ଦେଲ ଦେଖା । ରଖାଇ ମୋ କରରେ ଶଚୀର ଭାଗ୍ୟ ରେଖା । ୬ । ଦରଶନ ହେବାଭଳି ନୋହେ ଯେଉଁ ଛାର । କରି କି ତାହାରେ ଆଲିଙ୍ଗନ ଅଙ୍ଗୀକାର । ଆହେ ବିବେକଜଳଧି । ଛଡ଼ାଇ ନେଇ କି ରଙ୍କଅଙ୍କେ ଦେବା ନିଧି । ୭ । ଧରି ଅଙ୍ଗରାଗ ପରି ଜମାଇ ଦେହରେ । ପିଆଇ ଦଶନବାସୁଁ ପୀୟୁଷ ସ୍ନେହରେ । କେଉଁ ଅପରାଧୁ ପୁଣି । ଅପ୍ରକଟ ହେଲ ହେ ସୁନ୍ଦରଶିରୋମଣି । ୮ । ଅକିଞ୍ଚନ ଆଗେ ମଣିମଞ୍ଜୁଷ ପିଟାଇ । ଅନାଇବା କାଳେ ଦେଲ ନୟନ ଫୁଟାଇ । ଏ କି ହୋଇଲା ଉଚିତ । ଏବେ ଦୀନଦୟାରେ ଉଦ୍ୟତ ହେଉ ଚିତ୍ତ । ୯ । ବନ୍ଧୁ ହେ ଅନ୍ଧକୁ

---

**ଚତୁର୍ଦ୍ଦଶ ଛାନ୍ଦ**

୨ । ଘନାଙ୍କେ ଚଞ୍ଚଳା ପରି——ମେଘ କୋଡ଼ରେ ବିଜୁଳି ପରି । ୩ । ଅପାତଳ ତଳ୍ପ——ଗଦି ପ୍ରଭୃତି ମୋଟା ଶେଯ, ତୂଳି——ରେଜେଇ, ଉଭାରି——ଠିଆ ହୋଇ, ଅମ୍ବର——ଲୁଗା । ୪ । ଅଂସ——କାନ୍ଧ, ଅବତଂସ ——ଭୂଷଣ, ବିଗତା——ନିଶ୍ୱାସ । ୫ । ବନ୍ଧୁକବନ୍ଧୁ——ବନ୍ଧୁକପୁଷ୍ପ ସଦୃଶ, ରଦନଛଦନ ——ଅଧର । ୮ । ଦଶନବାସୁଁ——ଅଧରରୁ । ୯ । ମଣିମଞ୍ଜୁଷ——ରତ୍ନପୂର୍ଣ୍ଣ

ଦେଲ ଚକ୍ଷୁଲାଭ ସୁଖ । ଲବମାତ୍ରେ ନବନେତ୍ରେ ମାରିଦେଲ ନଖ । ନୋହେ ଏତ ପ୍ରଭୁରୀତି । ଆଉ କି ମସ୍ତକେ ଶେଷ ବହିବେ ଜଗତୀ । ୧୦ । ନ କଲେ ପହିଲୁ ନ କରି ସେ ଅଙ୍ଗୀକାର । ଅଙ୍ଗୀକାର କରି ପରିତ୍ୟାଗ କରିବାର । ନ୍ୟାୟପଥରୁ ଫିଟିଲା । ଶରଣପ୍ରପନ୍ନ ଜନ ଭରସା ତୁଟିଲା । ୧୧ । କ୍ଷଣେ ଖଟି ନାହିଁ ରଙ୍ଗରାଜୀବ ପା ତଳ । ବିନା ଅପରାଧେ ହେଲା ସେ ସ୍ନେହ ପାତଳ । ମନ୍ଦଭାଗିନୀ ତ ମୁହିଁ । ଅପରାଧ ହେବା ସେବା ଭଳି କାଳ କାହିଁ । ୧୨ । ଅକାଳ ଜନଦମୁକ୍ତ ସଲିଳଶୀକର । ପଡ଼ିବା ସମୟେ ଚଞ୍ଚୁପୁଟେ ଚାତକର । କାହିଁ ବହି ପବମାନ । ଭାଙ୍ଗିଲା ଚାତକ ଆଶାତରୁ ପବମାନ । ୧୩ । ଧନରେ ମୁଁ ମହାଗଜଘୋଷ ନୃପସୁତ । ଏହି ମନ୍ତେ ମନ୍ତି ହଳାହଳ କି ଅମୃତ । ଦନ୍ତଚେଲୁ ପିଆଇଲ । ଚୋରାଇ ଚେତନା ନାରୀ ବୋଲି ଜୀଆଇଲ । ୧୪ । ସେ ଅମଳ ସମୟେ କି ଦେଲି ଗାଢ଼େ ଭିଡ଼ି । ଲଗାଇ ମାଣିକ୍ୟମଣିକରକଣ ଚୂଡ଼ୀ । ମୃଦୁ ତନୁକୁ ବାଧିଲା । ତହୁଁ ଦିବ୍ୟଚିତ୍ତ କି କ୍ରୋଧକୁ ଆରାଧିଲା । ୧୫ । ଆହେ ପଣ୍ଡିତମଣ୍ଡଳି-ମଣ୍ଡଳୀମଣ୍ଡନ । ଅଜ୍ଞାତ ଦୋଷକୁ ରୋଷ ଆହୁରି କି ଘେନ । ଆହେ କ୍ଷମାଗୁଣସୀମା । ଦୋଷ କରିଥିଲେ ତିନିବାର କରି କ୍ଷମା । ୧୬ । ଜଗତୀଭୂଷଣ ହେ କୁସୁମାୟୁଧରୁଚି । ଅଞ୍ଚଳ ପ୍ରସାରି ଦନ୍ତେ ମୁଁ ତୃଣ ଧରୁଚି । କରୁଅଛି ଦଣ୍ଡବତ । ଶୁଣାଅ ସୁମଧୁର ଭାରତୀ ଖଣ୍ଡବତ । ୧୭ । ବହିବି ଲାଗି କଠାଉ ସରବଦା ଶିରେ । ରହିବି ମୁଁ ଜଣେ ହୋଇ ସରବ ଦାସୀରେ । ଆହେ ଶରଦିନ୍ଦୁମୁଖ । ତାହାଙ୍କ ଚରମାଚରୀ କରି ହେଲେ ରଖ । ୧୮ । ଭଜିଥିବି ନିଦ୍ରାହାର ବିହାର ବରଜି । ହେଉଥିବ ଯେଉଁ ସେବା ଘେନିବା ମରଜି । ମୁଁ କି ନ କରିବି ରାଜି । ଏକା ମୋ ନୟନପଥେ ଥିବ କି ବିରାଜି । ୧୯ । ଦରଶନସୁଖ ଶତମଖଭୂତି-ଦାନେ । ନ ରଖିବ ଯେବେ ପଦକଞ୍ଜ ସନ୍ନିଧାନେ । ନାରୀ ନାଶ ଦୋଷ ପାଇ । ଭୁବନଭୂଷଣଦୋଷ ଦେଲଟି ବୁଡ଼ାଇ । ୨୦ । ତୁମ୍ଭ ନାମେ ପିଇବି ଅବଶ୍ୟ କାଳକୂଟ । ଗଳେ ଭିଡ଼ିହେବି ଅବା ଲାଗି ଶେଷ ପଟ । ଲୀଳାବାପୀଗର୍ଭେ ଅବା । ପଡ଼ି ପ୍ରାଣ ଛାଡ଼ିବି ହେ ତରୁଣମଘବା । ୨୧ । ଆହା କି ସୁନ୍ଦର ସୁକୁମାର ପ୍ରତିଅଙ୍ଗ । କି ନବୀନ ଯଉବନ କି ଲୋଳ ଅପାଙ୍ଗ । କି ମୃଦୁଳ ମନ୍ଦହାସ । ସୁଧାରୁ ଧାରକେ ତୁଲ୍ୟ ସ୍ୱାଦୁ

---

ପେଡ଼ି । ୧୦ । ଶେଷ—ସର୍ପରାଜ, ଶେଷଦେବ । ୧୨ । ରଙ୍ଗରାଜୀବପା'ତଳ—ରକ୍ତପଦ୍ମରୂପ ପାଦର ତଳ; ପାତଳ—କ୍ଷୀଣ । ୧୩ । ସଲିଳଶୀକର— ଜଳବିନ୍ଦୁ, ପବମାନ—ପବନ, ଆଶାତରୁ ପବମାନ—ଆଶାରୂପ ବୃକ୍ଷର ସବୁ ଗଣ୍ଡି । ୧୪ । ଦନ୍ତଚେଲୁ—ଅଧରରୁ । ୧୬ । କୁସୁମାୟୁଧରୁଚି —କନ୍ଦର୍ପସୁନ୍ଦର; ଅଞ୍ଚଳ—କାନି ପଣତ । ୧୮ । ତାହାଙ୍କ ଚରମାଚରୀ—ଦାସୀଙ୍କ ପଛରେ ରହିବା ଚାକରାଣୀ ବା ହୀନା ଦାସୀ । ୨୦ । ଦରଶନସୁଖ ... ଦର୍ଶନସୁଖରୂପ ଇନ୍ଦ୍ର ସମ୍ପତ୍ତି ଦେବାରେ । ୨୧ । କାଳକୂଟ—ବିଷ, ଲୀଳାବାପୀ—କ୍ରୀଡ଼ା ପୁଷ୍କରିଣୀ । ୨୩ । ସମ୍ଭାର

ରଦବାସ । ୨୨ । କି ସରସ ଗଭୀର ସମ୍ଭାର ଭାଷାଭଙ୍ଗୀ । କି ପଟୁନାଟଲମ୍ପଟ ଭ୍ରୂବଲ୍ଲୀ ଭୁଜଙ୍ଗୀ । କେଡ଼େ ସୁବାସିତ ତନୁ । ବଳିଥିବ ବାସନ୍ତିକ ଅରବିନ୍ଦ ବନୁଁ । ୨୩ । ପିଇ ନ ପାଇଲି ଯାହା ବଞ୍ଚିବିଟି କେହି । ଜୀବିତକୁ ଛାଡ଼ି ଦେହୀ ପାରିବ କି ରହି । ଉପାୟ ତ ଦିଶୁନାହିଁ । କି କରିବି କାହିଁ ଯିବି ରହିବିଟି କାହିଁ । ୨୪ । ଦଣ୍ଡକର ବିରହ ତ ହେଲା କଳ୍ପ ପରି । ଚିର ହେଲେ କି ରହି ପାରିବି ଦେହ ଧରି । ମନେ ପଡ଼ିଲେ ତ ଶଶୀ । ମାର୍ତ୍ତଣ୍ଡମଣ୍ଡଳ ପରି ଗଲାନି ଆଭାସି । ୨୫ । ପ୍ରଳୟ କାଳ ଅନଳ ଜ୍ୱାଳାରୁ ତ ମୋତେ । ମଳୟବନ ପବନ ହେଲାନି ପରତେ । ମଳୟଜ ଘନସାର । ଗୋଳା ହଳାହଳଠାରୁ ହେଲାନି ଅସାର । ୨୬ । ଲାଗିବାସ ଆସି ଆଶୀବିଷରୁ ବଳିଲା । କରପ୍ରାପ୍ୟ ସୁରତରୁ ଉପଳ ଫଳିଲା । ଭଲା ଭଲା ରେ ଲଲାଟ । ଛୁଇଁବା ବିଶୁଦ୍ଧ ହେମ ହେଲା ଆରକୂଟ । ୨୭ । ଧିକ ଧିକ ଅବିବେକ ହେ କମଳାସନ । ଭୋଖି କରେ ଦେଇ ସୁଧା ସଦୃଶ ଅଶନ । ପୁଣି ନେବାର ଛଡ଼ାଇ । ଘେନ ତ ଏ କେଉଁ ବଡ଼ଲୋକର ବଡ଼ାଇ । ୨୮ । ପିତାମହ ହେବାରୁ କି ପରିହାସ କରି । ଛପାଇ ରଖିଛ ମୋର ସଉଭାଗ୍ୟଶିରୀ । ଏବେ ଅଣ୍ଟିଲା ନାହିଁ କି । ନାରୀ ମରିଯିବାଯାଏ କୁଗ୍ରହ କାହିଁକି । ୨୯ । ତୁମ୍ଭେ ସତ୍ୟ ଲୋକନାଥ ପରା ଚତୁର୍ମୁଖ । ମିଥ୍ୟା କର ମୁଁ ସାକ୍ଷାତ ଭୋଗ କଲା ସୁଖ । ଜନନିନ୍ଦାରୁ ନ ଡର । ପ୍ରଭୁ ହେଲେ ହେଲେ ନିକି ଏଡ଼େ ଅବିଚାର । ୩୦ । ଅଧୀରହିଁ ହେଲେ କରେ ପର ଉପକାର । ବଧିରହିଁ ହେଲେ ଶୁଣେ ଅତି ଉଚ୍ଚସ୍ୱର । ଶ୍ରୁତିମୟ ଗୋଟିଯାକ । ହୋଇ ତ ନ ଶୁଣ ପରମାର୍ତ୍ତ ଜନ ଡାକ । ୩୧ । ଏପରି ସେ ପରିଣତ ଶରଦିନ୍ଦୁମୁଖୀ । ବିକଳ ହୁଅନ୍ତେ ଚେତି କୁନ୍ଦଲତା ସଖୀ । ମୁଖ ପୋଛି କୋଳେ ଧରି । ପଚାରିଲା କିସ ରେ ଆଶ୍ରିତ ଜୀବେଶ୍ୱରୀ । ୩୨ । ପୁନଃ ପୁଚ୍ଛୁ ସ୍ୱପ୍ନରେ କି ଦେଖିଲୁ କି କହ । କପଟ ନ କର ମୋରେ ଅଛି ଯେବେ ସ୍ନେହ । ମୋ ଶିରର ସବତଟି । କହ କହ ରେ ତରୁଣ କଣ୍ଠୀରବକଟି । ୩୩ । ପ୍ରାଣସଖୀ ରାଣ ଶୁଣି ବିଳମ୍ବ ନ ସହି । ଦେଖାଇ ସମ୍ଭୋଗ ଚିହ୍ନ ସ୍ୱପ୍ନରୀତି କହି । କହିଲା ରେ ସ୍ନେହଶୀଳା । ରଖ ମୋତେ ହୋଇ ଦୁଃଖତରଙ୍ଗିଣୀଭେଳା । ୩୪ । ଶୁଣି

---

—ପରିପୂର୍ଣ୍ଣତା (ଯୁକ୍ତ) । ୨୫ । ଚିର— ଦୀର୍ଘକାଳସ୍ଥାୟୀ । ୨୬ । ମଳୟଜ—ଚନ୍ଦନ, ଘନସାର—କର୍ପୂର, ହାଳାହଳ—ବିଷ । ୨୭ । ଆଶୀବିଷ—ସାପ, ସୁରତରୁ—କଳ୍ପଲତା, ଉପଳ—ପଥର, ହେମ—ସୁନା, ଆରକୂଟ— ପିତ୍ତଳ । ୨୮ । କମଳାସନ—ବିଧାତା, ବ୍ରହ୍ମା; ଅଶନ—ଭୋଜନ । ୨୯ । ପିତାମହ—ବ୍ରହ୍ମା ଓ (ପରିହାସପ୍ରିୟ) ପିତାଙ୍କ ପିତା, କୁଗ୍ରହ—କୋପ । ୩୧ । ଅଧୀର—ମୂର୍ଖ, ବଧିର—କାଲ, ଶ୍ରୁତିମୟ—ବେଦଜ୍ଞ ଅଥଚ ବହୁକର୍ଣ୍ଣଯୁକ୍ତ, ପରମାର୍ତ୍ତ—ଅତିଦୁଃଖିତ । ୩୩ । ମୋ ଶିରର ସବତଟି—ମୋ ମୁଣ୍ଡ ରାଣ । ୩୫ । ବିନା—ଅଭାବ । ୩୮ । ଧନଞ୍ଜୟ—ଅର୍ଜୁନ ବା ଅଗ୍ନି । ୩୯ । ବୀରସେନସୁତ—ନଳରାଜା,

ତା ଚିବୁକ ଧରି ଜଣାଇଲା ସଖୀ । ଚିତ୍ତରୁ ଚିନ୍ତାକୁ ତେଜ ଆଜନମସୁଖି । ଧାତା ଅଛି ଅନୁକୂଳ । ବିକାଶକୁ ଅଛି ମାତ୍ର ତୋ ଭାଗ୍ୟମୁକୁଳ । ୩୫ । ରଜକୀ ନାପିତୀ ଗୋପୀ ମାଳାକାରନାରୀ । ଏମାନଙ୍କଠାରୁ ମୁଁ ଶୁଣିଲି ତଥ୍ୟ କରି । ତାତ ମହାରାଜ ପୁଣି । ତୋର ପରିଣୟ ମଙ୍ଗଳକୁ ହୃଦେ ଗୁଣି । ୩୬ । ଆଜ୍ଞୁ ବରଷକ ତଳୁ ଭାଳି ମନ୍ତ୍ରୀ ତୁଲେ । ନଟରାଜ ନାମ ମାୟାବୀକି ଡକାଇଲେ । କଲେ ଏହି ଫରମାସ । ବୁଲିବୁ ତୁ ନିଜବିଦ୍ୟା ଘେନି ସବୁ ଦେଶ । ୩୭ । ନୃପକୁଳେନ୍ଦ୍ରର ଯେଟି ପ୍ରଥମ ତନୁଜ । ରୂପରୁ ଯାହାର ଊଣା ହେବ ମନସିଜ । ବାହୁଯୁଗଳୀର ବଳେ । ଜୟକରି ଯିବ ଧନଞ୍ଜୟକୁ ଯେ ହେଳେ । ୩୮ । ବୀରସେନସୁତ ହାରି ଯା ସାଦୀପଣରୁ । ବିରସେ ନ ବାହାରିବେ କୁଟ୍ଟିମକୋଣରୁ । ଜାଣି ପଉଗଣ୍ଡ ଶେଷ । ହୋଇଥିବ ଯାର କିଶୋରତା ପରବେଶ । ୩୯ । ସର୍ପରାଜଦର୍ପ ଯାହା ବିଦ୍ୟା ହରିଥିବ । ବିତରଣଶାଳିଗୁଣେ ଇତର ନ ଥିବ । ଊଣା ହେବେ କର୍ଣ୍ଣ ବଳି । କ୍ଷମାଗୁଣେ କ୍ଷମାରୁ ଯେ ପଡୁଥିବ ବଳି । ୪୦ । ରବିଛବି କରୁଥିବ ପ୍ରତାପ ଯାହାର । ସମାନ ଶୀତଳ ଗୁଣେ ଯାହାର ନୀହାର । ମନ୍ତ୍ରେ ଜୀବପ୍ରତିଭଟ । ଯେହିଟି ଧାର୍ମିକ ସାଧୁ ସଂସର୍ଗଲମ୍ପଟ । ୪୧ । ଅନୀତି ଲୋଲୁପ ପରଦାରାଧନରତ । ଦୁଷ୍କୁଳସମ୍ଭବ ମିଥ୍ୟାବାଦୀ ଅପଣ୍ଡିତ । ଯାହା ସଭାରେ ନ ଥିବେ । ଯା ହାସ ଅଧରୁ ବଳୁ ନ ଥିବଟି ଲବେ । ୪୨ । ଦେବ କ୍ଷିତିଦେବ ଗୁରୁ ବଇଷ୍ଣବ ଜନ । ସେବନରେ ଶକ୍ତ ହୋଇଥିବ ଯାର ମନ । କର୍ଣ୍ଣପ୍ରିୟ ମୃଦୁଭାଷା । ଯାହା ମୁଖ ରଚୁଥିବ ପୀୟୂଷବରଷା । ୪୩ । ସଙ୍ଗୀତେ ଗନ୍ଧର୍ବ ଗର୍ବ ଦେଉଥିବ ଚୂରି । ଯାହା ଧୃତି ହୋଇଥିବ ମଣିସାନୁ ସରି । ହୋଇଥିବ ମହୋଦ୍ୟମ । ଅମ୍ଭୋଧିରୁ ବଳିଥିବ ଗଭୀରତା ପୁଣ । ୪୪ । ଅସଂଖ୍ୟକ ହୟ ଗଜ ଫଉଜ ଯାହାର । ରମାରତିବନ୍ଧୁ ନାମ କଦମ୍ବ ଯାହାର । ଷଟ ପଞ୍ଚାଶତ ଦେଶ । ଲିପିଭାଷା ଜାଣିବାରେ ଯେଟି ଅସଦୃଶ । ୪୫ । କେଉଁ ଦେଶେ ଥିବ ଏହି ବରାବର ବର । ତାହା ଆଗେ ପ୍ରକାଶ ତୋ ସମୟା ଶାବର । ମାୟା ଜେମା ତୁଲେ ତାକୁ । ଭେଟ କରାଇବୁ ଦୃଶ୍ୟ ନୋହିବ କାହାକୁ । ୪୬ । ତହୁଁ

---

ସାଦୀପଣ—ଅଶ୍ୱାରୋହଣ, ବିରସେ—ଦୁଃଖରେ, କୁଟ୍ଟିମକୋଣ—କୁଡ଼ିଆ ଘରର କୋଣ, ପଉଗଣ୍ଡ—ଦଶମବର୍ଷ ପର୍ଯ୍ୟନ୍ତ ଅବସ୍ଥାକୁ ପୌଗଣ୍ଡ କହନ୍ତି । ୪୦ । ବିତରଣଶାଳିଗୁଣ—ଦାନୀପଣିଆ । ୪୧ । ନୀହାର—ତୁଷାର, ମନ୍ତ୍ରେ ଜୀବପ୍ରତିଭଟ —ମନ୍ତ୍ରବିଦ୍ୟାରେ ବୃହସ୍ପତିଙ୍କ ସମାନସ୍କନ୍ଧ । ୪୩ । କ୍ଷିତିଦେବ—ବ୍ରାହ୍ମଣ, ସେବନରେ—ସେବା କାର୍ଯ୍ୟରେ । ୪୪ । ଧୃତି—ଧୈର୍ଯ୍ୟ, ମଣିସାନୁ—ସୁମେରୁ ପର୍ବତ, ଅମ୍ଭୋଧି—ସମୁଦ୍ର । ୪୫ । ରମାରତି ... ବିଷ୍ଣୁ ଓ କନ୍ଦର୍ପଙ୍କ ନାମସମୂହ ମଧ୍ୟରୁ ଯାହାର ଗୋଟିଏ ନାମ ହୋଇଥିବ । ୪୬ । ସମୟା ଶାବର—କର୍ତ୍ତବ୍ୟ, ଇନ୍ଦ୍ରଜାଲ ବିଦ୍ୟା । ୪୮ । ବ୍ୟାଜବିଦ୍ୟା—କପଟବିଦ୍ୟା, ଇନ୍ଦ୍ରଜାଲ । ୫୦ । ହଂସଧ୍ୱଜ—ବ୍ରହ୍ମା । ୫୧ । ଦିଲାସା—ସାନ୍ତ୍ୱନା, ଆଶା; ଲାଲ ରଦାମ୍ବର—ରକ୍ତବର୍ଣ୍ଣ ଅଧର । ୫୩ । ଆନ—ରାଣ । ୫୪ । ନିର୍ବାହ

ଆମ୍ଭ ଆଗେ ତାହା କରିବୁ ପ୍ରକଟ । ନବ ଯୁବରାଜ ବ୍ୟାଜରୂପ ରମ୍ୟନାଟ । ପରମାସି ଏହିପରି । ପେଷିଥିଲେ ପୁଣି ତୋ ଜନକ ଦଣ୍ଡଧାରୀ । ୪୭ । ସେ ସେହିପ୍ରକାରେ ଯାଇ ମହାଗଜଘୋଷ । କରିଥିବ ନିଜ ବ୍ୟାଜ ବିଦ୍ୟାର ପ୍ରକାଶ । ସ୍ୱପ୍ନଭୋଗ ପରି ତୋର । ଲଭିଥିବ ତୋ ସଙ୍ଗତି ସେ ରାଜକୁମାର । ୪୮ । ମାୟାଶେଷେ ତୋ ବିରହାନଳ ଝାସ ବାଜି । ରାଜସୂନୁ ତନୁ ହୋଇ ଯାଇଥିବ ଭାଜି । ତାହା ଜାଣି କୃପା କରି । ଦୁଇକୁଳ ଇଷ୍ଟଦେବୀ ତ୍ରିପୁରସୁନ୍ଦରୀ । ୪୯ । ସ୍ୱପନ ସଙ୍ଗମ ମହୋତ୍ସବବୀଜନିଶା । କଳ୍ପିଥିବେ ସେ ତ କଳ୍ପବଲ୍ଲରୀ ସଦୃଶା । ଧନ ମନୁ ତାପ ତେଜ । ଅବଶ୍ୟ ହୋଇବେ ଅନୁକୂଳ ହଂସଧ୍ୱଜ । ୫୦ । ହେମାମଣି ଶୁଣି ସଖୀ ଦେବାର ଦିଲାସା । ଧୃତିବୀଜ ନିଜ ଜୀବିତରୁ ଛାଡ଼ି ଆଶା । କମ୍ପି ଲାଲରଦାମ୍ବର । ଅଶ୍ରୁବିନ୍ଦୁ ତିନ୍ତାଇଲା ଉରୋଜଅମ୍ବର । ୫୧ । ବାଳା ଦୁଃଖ ଦେଖି ସଖୀ ଦୁଃଖିତା ହୋଇଲା । ଶୀତବାସ ଜଳେ ତାର ଶ୍ରୀମୁଖ ଧୋଇଲା । ପଚାରିଲା ରେ ତରୁଣୀ । ସୁଖକାଳେ ଦୁଃଖ କାହିଁ ଶୁଣା ଅଛି ପୁଣି । ୫୨ । ମୋ ଆନଟି ସୁଧାଘଟୀତୁଲ୍ୟସ୍ତନା କହ । ଇଣାଣରେ ମୋର କିଛି ହେଲା କି ସନ୍ଦେହ । କାହିଁପାଇଁ ନେତ୍ରକଞ୍ଜ । ବରଷେ ଅଞ୍ଜନନୀଳ ଅଶ୍ରୁବିନ୍ଦୁପୁଞ୍ଜ । ୫୩ । ନ ସହି ସହୀ ଶପଥ ଭାଷିଲା କିଶୋରୀ । ନିର୍ବାହ ସରିକି ନିକି ନ ଯିବି ମୁଁ ସରି । ଜଳେ ଭାସିଲାନି ପ୍ରାଣୀ । ତରୀ କରିବାକୁ ବାଞ୍ଛା କରୁଛି ବିନ୍ଧାଣି । ୫୪ । ଅଙ୍ଗୀକୃତି ଭଙ୍ଗୀ ସନ୍ଦେଶରେ ପୂରିଥିବ । ଦୂରେ ଥାଉ ହର ଦରଶନ ମହୋତ୍ସବ । ନ ଦେଖିଲେ ପ୍ରିୟ ଲେଖ । ସ୍ୱପନକୁ ସତ ମଣି ଲଭିବ କେ ସୁଖ । ୫୫ । ଶୁଣି କୁନ୍ଦଲତା ଜଣାଇଲା କର ଯୋଡ଼ି । ମାନସରୁ ସରୁମଧ୍ୟା ଦିଅ ଚିନ୍ତା ଛାଡ଼ି । ଗୁପ୍ତେ ଜଣାଣ ଲେଖିବା । ଅଭୀଷ୍ଟ ଶ୍ରୀହସ୍ତ ଲେଖା ଚିଟାଉ ଦେଖିବା । ୫୬ । ଶିରୀଷାଙ୍ଗୀ ଅଙ୍ଗୀକାର କଲା ଏ ବିଚାର । ବିଚାରି ଚତୁରତର ସବିଶ୍ୱାସ ଚାର । ଚାହିଁ ସ୍ୱର୍ଣ୍ଣ ପୂର୍ଣ୍ଣକୁମ୍ଭ । କଲେ ସବିନୟ ଶୁଭ ଚିଟାଉ ଆରମ୍ଭ । ୫୭ । ଏ ଛାନ୍ଦରେ ଅଷ୍ଟୋତ୍ତର ପଞ୍ଚାଶତ ପଦ । ସ୍ୱପନସମ୍ଭୋଗ ନାମ ଘେନିବ କୋବିଦ । ଜଳନ୍ତର ସଂକ୍ରନ୍ଦନ । ଶ୍ରୀରାମଚନ୍ଦ୍ର ଚରଣେ ରଚିଲେ ବନ୍ଦନ । ୫୮ ।



ସରିକି—ସମ୍ପାଦନ ଯାଏ (ବିବାହ ଯାଏ), ତରୀ କରିବାକୁ—ନୌକା ନିର୍ମାଣ କରିବାକୁ, ବିନ୍ଧାଣି—କାରିଗର । ୫୭ । ସବିଶ୍ୱାସ—ବିଶ୍ୱସ୍ତ, ଚାର—ଦୂତ । ୫୮ । କୋବିଦ—ପଣ୍ଡିତ, ସଂକ୍ରନ୍ଦନ—ଇନ୍ଦ୍ର ।



# ପଞ୍ଚଦଶ ଛାନ୍ଦ

## ରାଗ—ଚିନ୍ତାକେଦାର

## (ଯୁବସନ୍ଦେଶାମୃତ)

ରାଧାମୋହନ ଚାରୁ ଚରଣ । ଶୋଣ ପଙ୍କଜଯୁଗ ଶରଣ । ନାଗରୀ ସକଳ ସମ୍ପଦର ପଦ କୁନ୍ଦଲତା ଶିର ଆଭରଣ ହେ । ନାଗର । ୧ । ଅଖଣ୍ଡିତ ଧରାଯୁବରାଜ । ସରସ୍ୱତୀସଙ୍ଗୀତସମାଜ— ରସିକନିକରଶିରୋମଣିକରଦୀପନୀରାଜିତଦାମ୍ବୁଜ ହେ । ନାଗର । ୨ । ଇଷ୍ଟଦେବ ଚନ୍ଦ୍ରକୁବଳୟ । ବାହୁବଳଜିତ ଭୂବଳୟ । ଅମନ୍ଦ ଗୁଣଗଣମଣି ମଞ୍ଜୁଷ ଶୋଭାଇନ୍ଦୀରାବନ୍ଦିନିଳୟ ହେ । ନାଗର । ୩ । ଦେଖି ତୁମ୍ଭର ଗଭୀର ଭାବ । ବାଦ କଲା ଯା କ୍ଷୀର ଅର୍ଣ୍ଣବ । ପେଷି ମନ୍ଦରକୁ ତାହା ମନ୍ଦିରକୁ ତହୁଁ ଲୁଟାଇ ନେଲା ଦଇବ ହେ । ନାଗର । ୪ । ଯଶତୁଲ୍ୟ ହେବି ବୋଲି ଶଶୀ । ମନେ ମନେ ଯା ହେଲା ସାହସୀ । ବୁଲୁଛି ପ୍ରତି ରାତି ମୃଗକପଟେ ଘେନି ଧାତା ଦେବା ଦାଗମସୀ ହେ । ନାଗର । ୫ । ରବି କରି ପ୍ରତାପକୁ ଲୋଡ଼ା । ପାଇ ରଶ୍ମିଚୟ ଭିଡ଼ା ପୀଡ଼ା । ହେବାକୁ ନିର୍ଦ୍ଦୋଷ କରୁଛି ପ୍ରଦୋଷ କାଳେ ପ୍ରତୀଚୀ ସମୁଦ୍ରେ ବୁଡ଼ା ହେ । ନାଗର । ୬ । କରି ମନେ ଅନେକ ଉଦ୍ୟମ । ରୂପସମ ନୋହିବାରୁ କାମ । ଦେହ ଦେଖାଇବା ଲାଜେ

---

**ପଞ୍ଚଦଶ ଛାନ୍ଦ**

୧ । ନାଗରୀସକଳସମ୍ପଦର ପଦ— ନାଗରୀର ସମସ୍ତ ସୁଖର ସ୍ଥାନ; କୁନ୍ଦଲତା (ଚନ୍ଦ୍ରକଳାର ସଖୀ—ଏ ପତ୍ରର ଲେଖିକା)ର ମସ୍ତକର ଅଳଙ୍କାରସ୍ୱରୂପା । ୨ । ଅଖଣ୍ଡିତ ଧରା—ସମଗ୍ର ପୃଥିବୀ; ସରସ୍ୱତୀଙ୍କ ସଙ୍ଗୀତସଭାର ଯେଉଁମାନେ ରସିକସମୂହ ସେମାନଙ୍କ ମସ୍ତକସ୍ଥ ମଣିର କର (କିରଣ)ଦ୍ୱାରା ନୀରାଜିତ (ଆରାଧିତ, ବନ୍ଦିତ) ହେଉଅଛି ପାଦପଦ୍ମ ଯାହାଙ୍କର । ୩ । କୁବଳୟ—ନୀଳକଇଁ । ପ୍ରାକୃତିକ ପ୍ରେମରେ ଆବଦ୍ଧ ଚନ୍ଦ୍ରକୁବଳୟ ତୁମ୍ଭର ଇଷ୍ଟଦେବତା ଅଟନ୍ତି । ତୁମ୍ଭେ ବାହୁବଳରେ ଭୂବଳୟ (ଭୂମଣ୍ଡଳ) ଜୟ କରିଅଛ । ଅମନ୍ଦଗୁଣଗଣମଣି ମଞ୍ଜୁଷ—ସୁନ୍ଦରଗୁଣସମୂହର ମଞ୍ଜୁଷ (ପେଡ଼ି, ଆଧାର); ଶୋଭାଇନ୍ଦୀରାବନ୍ଦିନିଳୟ—ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କର ବନ୍ଧନାଗାର । ୪ । ସମୁଦ୍ର ଅପେକ୍ଷା ତୁମ୍ଭର ହୃଦୟଭାବ ଆହୁରି ଗଭୀର । ଯଶ ଶୁକ୍ଳବର୍ଣ୍ଣ ବୋଲି ବର୍ଣ୍ଣିତ ହୁଏ । ଚନ୍ଦ୍ର (କଳଙ୍କରୂପୀ) ମୃଗ ବ୍ୟାଜରେ ବିଧାତା ଦେଇଥିବା ମସୀ (କଳା) ଦାଗ ଧରି ପ୍ରତି ରାତିରେ ବୁଲୁଛି । ୬ । ସୂର୍ଯ୍ୟ ତୁମ୍ଭ ପରି ପ୍ରତାପୀ ହେବାକୁ ଇଚ୍ଛା କରି ରଶ୍ମି (କିରଣ ଓ

ଦଗ୍‌ଧ ହୋଇ ଏକା ଶ୍ରୁତିଗତ କଲା ନାମ ହେ । ନାଗର । ୭ । ବାଦ ବାଛି ତୁମ୍ଭ ସ୍ୱରତୁଲେ । ମଦେ କିନ୍ନରେ ଯେତେ ମାତିଲେ । କଉତୁକୀ ଦେବ କମଳସମ୍ଭବ ଅଶ୍ୱମୁହାଁ ବୋଲୁ ବୋଲୁ ହେଲେ ହେ । ନାଗର । ୮ । କଳ୍ପଜୀବୀ ଯେବେ ଜୀବ ହେବେ । ଅଳ୍ପ କରିବା କୀର୍ତ୍ତି କହିବେ । କହୁଁ କହୁଁ ପୀତ ବର୍ଣ୍ଣ ଛାଡ଼ି ଶ୍ୱେତ ହୋଇଯିବାକୁ ଅବା ଶଙ୍କିବେ ହେ । ନାଗର । ୯ । ରିପୁ ବିଜୟେ କରିରାଜିକି । ରଖ ସେନାନ୍ତେ କରି ରାଜିକି । ରୋଦସୀ ମିଶା ସାଗରଗଣ ରସା ହେଲେ ନଅଣ୍ଟେ ଯାହା ବାଜୀକି ହେ । ନାଗର । ୧୦ । ଦେଖି କରି କରେ କରବାଳ । ହୋଇ ପରସ୍ପରେ କଳିଲୋଳ । ସକଳ ସୁରସୁନ୍ଦରୀ ସଜାଡ଼ନ୍ତି ହରିଚନ୍ଦନ କୁସୁମମାଳ ହେ । ନାଗର । ୧୧ । ତୂଣେ ମାର୍ଗଣଚୟ ଉଦୟେ । ହେଲେ କର ଯେବେ ଉଚ୍ଚ ହୋଏ । କୁଳପାଳୀ କାଳି ଛାତିତୁଲେ ମିଳି ହେମ ଅଚଳ କମ୍ପଇ ଭୟେ ହେ । ନାଗର । ୧୨ । ଦେବ ଇଦୃଶ ପ୍ରଭୁସରିକି । ଲେଖ ଲେଖି ପାରେ କିଶୋରୀ କି । ଲୂତାତନ୍ତୁ ପରା ବିତାନବାଗୁରା ଧରି ଲୋଡ଼ୁଅଛି କେଶରୀ କି ହେ । ନାଗର । ୧୩ । ଆହେ ଯୁବତୀ ଜୀବନଧନ । ଜନ୍ମବେଳରୁ ଯେଚି ବାମନ । କଳାକରକଳା କରେ ଧରି ଖେଳା କରିବାକୁ ସେ ବଳାଏ ମନ ହେ । ନାଗର । ୧୪ ।

---

ଦଉଡ଼ି) ସମୂହର ଭିଡ଼ାରୁ ପୀଡ଼ା ... । ୭ । କାମ—କନ୍ଦର୍ପ (ମହାଦେବଙ୍କ ଚକ୍ଷୁର ଅଗ୍ନିରେ ପୋଡ଼ି ଯାଇଥିଲା) ଏକା ... ତାହାର ନାମ ମାତ୍ର କାନରେ ଶୁଣାଯାଏ । ୮ । କିନ୍ନର— ଦେବତାମାନଙ୍କ ଗାୟକ, କଉତୁକୀ ଦେବକମଳ ସମ୍ଭବ—କୌତୁକପ୍ରିୟ ବ୍ରହ୍ମା; ଅଶ୍ୱମୁହାଁ— ଘୋଡ଼ାପରି ମୁହଁ ଯେଉଁମାନଙ୍କର (କିନ୍ନରମାନଙ୍କର ମୁହଁ ଘୋଡ଼ାପରି) । ୯ । କଳ୍ପଜୀବୀ—ଦୀର୍ଘଜୀବୀ, କହୁ କହୁ ... ଯେଉଁ ଲୋକର ବର୍ଣ୍ଣ ଗୌର ସେ ତୁମ୍ଭ ଯଶ ବର୍ଣ୍ଣନା କରୁ କରୁ ଧଳା ହୋଇ ଯିବାପାଇଁ ଭୟ କରିବେ (ଯଶ ଶୁକ୍ଳ ବୋଲି ବର୍ଣ୍ଣିତ ହୁଏ) । ୧୦ । କରିରାଜିକି—ହସ୍ତୀମାନଙ୍କୁ, ସେନାନ୍ତେ—ସେନାଦଳ ଶେଷରେ, ରାଜିକି କରି—ଧାଡ଼ି ଧାଡ଼ି କରି, ରୋଦସୀ—ସ୍ୱର୍ଗ ଓ ପୃଥିବୀ, ସାଗରଗଣ—ସବୁ ସମୁଦ୍ର, ରସା—ପୃଥିବୀ, ବାଜୀ—ଘୋଡ଼ା । ୧୧ । କରବାଳ—ଖଡ଼୍‌ଗ, ଯୁଦ୍ଧରେ ମରିବା ଲୋକ ସାଙ୍ଗେ ସାଙ୍ଗେ ସ୍ୱର୍ଗକୁ ଯାଏ, ତୁମ୍ଭେ ହାତରେ ଖଣ୍ଡା ଧରିବା ମାତ୍ରେ ସ୍ୱର୍ଗର ଦେବୀମାନେ ମନେ କରନ୍ତି ନିଶ୍ଚୟ ଅନେକ ବୀର ଯୁଦ୍ଧରେ ମରି ସ୍ୱର୍ଗକୁ ଆସିବେ; ତେଣୁ ସେମାନେ ସେହି ମୃତ ବୀରମାନଙ୍କୁ ଅଭ୍ୟର୍ଥନା କରିବାପାଇଁ ପରସ୍ପର କଳି କରି ଆଗରୁ ସ୍ୱର୍ଗର ହରିଚନ୍ଦନ (ଦେବତରୁ) ଗଛର ଫୁଲରେ ବରଣମାଳା ପ୍ରସ୍ତୁତ କରି ରଖନ୍ତି । ୧୨ । ତୂଣ—ତୂଣୀର, ଶର ରଖିବା ମୁଣା; ମାର୍ଗଣଚୟ—ଶରସମୂହ, ଉଦୟେ—ପ୍ରକାଶରେ, ବାହାର କରିବାରେ । ତୂଣୀରରୁ ବାଣ ବାହାର କରିବାପାଇଁ ତୁମ୍ଭ ହାତ ଯେତେବେଳେ ଉପରକୁ ଉଠେ, ସେତେବେଳେ (ସ୍ୱାମୀମାନଙ୍କର ମୃତ୍ୟୁ ଭୟରେ) କୁଳପାଳୀ (ତୁମ ଶତ୍ରୁଙ୍କ କୁଳକାମିନୀ)ମାନଙ୍କର କଳା ପଡ଼ିଯିବା ଛାତି ସାଙ୍ଗେ ବକ୍ଷସ୍ଥିତ ହେମଅଚଳ (ସ୍ୱର୍ଣ୍ଣପର୍ବତ ତୁଲ୍ୟ କୁଚ) ଭୟରେ ଥରେ । ୧୩ । ହେ ଦେବ, ଏପରି ପ୍ରଭୁଙ୍କ ନିକଟକୁ କିଶୋରୀ (ଅଳ୍ପବୟସ୍କା ଯୁବତୀ) କୌଣସି ଲେଖ (ପତ୍ର) ଲେଖି ପାରେ କି ? ଲୂତାତନ୍ତୁ—ବୁଢ଼ିଆଣୀଜାଲ, ବିତାନ—ବିସ୍ତାର, ବାଗୁରା—ଜାଲ, କେଶରୀ—ସିଂହ । ୧୪ ।

ପୁଣି ଏ ଆଶା ଅତି ବିଚିତ୍ର । ଦେଖି ଲୋଡ଼େ ଯା ଶ୍ରୀହସ୍ତ ପତ୍ର । କ୍ଷୁଦ୍ର ଖଦ୍ୟୋତ କୀଟ କରେ ସାହସ ରବିତୁଲେ ହୋଇବାକୁ ମିତ୍ର ହେ । ନାଗର । ୧୫ । କରି ସଙ୍ଖାଳି ସ୍ୱପ୍ନ ପ୍ରସାଦ । ଆମ୍ଭ ଭରସା ଅତି ପ୍ରମାଦ । ଚକ୍ଷୁବିହୀନ ଭିକ୍ଷୁଜନ ଲୋଡ଼ଇ ଲଭିବାକୁ ସହସ୍ରାକ୍ଷପଦ ହେ । ନାଗର । ୧୬ । ଯତ୍ନ କଲେ ଦୋଷ ନ ବୋଲାଇ । ଲୋକ ଭାଗ୍ୟ ସିନା ଲୋଡୁଥାଇ । ବିଧିଅନୁକୂଳ ହେବାରୁ ହୋଇଲା ପକ୍ଷୀ ଚକୋର ଚନ୍ଦ୍ରିକାପାୟୀ ହେ । ନାଗର । ୧୭ । ଧାତାକୃପା ହେବାରୁ ଅମନ୍ଦ । ଭୋଗ ନ କଲା କି ମକରନ୍ଦ । ତିନ୍ଦୁକ ଇନ୍ଧନଅଙ୍ଗାରଶକଳ କଳା ବିକଟ କୀଟ ମିଳିନ୍ଦ ହେ । ନାଗର । ୧୮ । ଗୋପୀଜନ ମିତ୍ରସୁତାକୂଳେ । ରଖିବାରୁ ବିଶ୍ୱାସ ନିଶ୍ଚଳେ । ଶ୍ରୀକୃଷ୍ଣଚନ୍ଦ୍ର ଚରଣସରସିଜସେବାଯୋଗ୍ୟ ନୋହିଲେ କି କାଳେ ହେ । ନାଗର । ୧୯ । ଅହେତୁକ ସ୍ନେହୀ ପ୍ରଭୁମାନେ । ତାରତମ୍ୟ ଥିଲେ ହେଲେ ମନେ । ଋମାଧବଙ୍କୁ ଭୂ-ଜେମାଧବ ପରି ଅନୁକମ୍ପନ୍ତି ସମବିଧାନେ ହେ । ନାଗର । ୨୦ । ଶ୍ରିତଜନେ ବହିଲେ କରୁଣା । ନ ଦିଶଇ ପ୍ରଭୁପଣ ଊଣା । ଶଶ ଶଶଧର ଗର ଗଙ୍ଗାଧର ଯୋଗ ଥିବନି ପୁରାଣେ ଶୁଣା ହେ । ନାଗର । ୨୧ । ପୂର୍ବେ ମୋତେ ତୁମ୍ଭ କ୍ଷୀରଧାତ୍ରୀ । କରିଥିବା ଘେନି ଧର୍ମପୁତ୍ରୀ । ପୁତ୍ରୀନିର୍ବିଶେଷ କରି ସ୍ନେହେ ପରିପାଳିଥିଲେ ଜନୟିତ୍ରୀ ହେ । ନାଗର । ୨୨ । କନ୍ୟା ହୋଇଥିଲି ବା ରୋହିଣୀ । ମତେ କେଉଁ ଦେବୀ ଏଥି ଆଣି । ବାଳା ପ୍ରାଣପ୍ରିୟ ସଖୀ କରାଇଲା ବାଲ୍ୟ ସକାଶୁଁ ମୁଁ ନାହିଁ ଜାଣି ହେ । ନାଗର । ୨୩ । ଏଣୁ ଜଣାଣ ଲେଖଇ ରସି । କିଛି ନ ଜାଣେ ଅରାଳକେଶୀ । ହେଲେ ହେଲେ ଅନୁଚିତ ଅବଧାନୁ ଘେନ

---

କଳାକରକଳା—ଚନ୍ଦ୍ରକଳା । ୧୫ । ଖଦ୍ୟୋତକୀଟ —ଜୁଳୁଜୁଳିଆପୋକ, ରବି ତୁଲେ—ସୂର୍ଯ୍ୟଙ୍କ ସାଙ୍ଗରେ । ୧୬ । ସ୍ୱପ୍ନପ୍ରସାଦ—ସ୍ୱପ୍ନରେ ଦର୍ଶନଲାଭରୂପ ଅନୁଗ୍ରହ, ଚକ୍ଷୁବିହୀନ ଭିକ୍ଷୁଜନ—ଅନ୍ଧ ଭିଖାରୀ, ସହସ୍ରାକ୍ଷ—ସହସ୍ର ଚକ୍ଷୁଧାରୀ ଇନ୍ଦ୍ର । ୧୭ । ଚନ୍ଦ୍ରିକାପାୟୀ— ଚନ୍ଦ୍ରକିରଣ ପାନକାରୀ । ୧୮ । ଅମନ୍ଦ—ବହୁ, ପ୍ରଚୁର; ମକରନ୍ଦ—ପୁଷ୍ପମଧୁ, ତିନ୍ଦୁକ— କେନ୍ଦୁକାଠ, ଇନ୍ଧନ—ଜାଳଣୀକାଠ, ଶକଳ— ଖଣ୍ଡ, ପୋଡ଼ା କେନ୍ଦୁକାଠର ଅଙ୍ଗାରଖଣ୍ଡ ପରି କଳା; ବିକୃତ କୀଟ—ଅସୁନ୍ଦର ପୋକ, ମିଳିନ୍ଦ—ଭ୍ରମର, ବିଧାତାଙ୍କ କୃପାବଳରେ କେନ୍ଦୁକାଠଅଙ୍ଗାର ପରି କଳା ଅସୁନ୍ଦର ଭ୍ରମର ସିନା ମକରନ୍ଦ ପାନ କରେ । ୧୯ । ମିତ୍ରସୁତାକୂଳେ —ଯମୁନାତୀରରେ । ୨୦ । ଅହେତୁକ ସ୍ନେହୀ— କାରଣ ନ ଥାଇ ଯେଉଁମାନେ ସ୍ନେହ କରନ୍ତି । ପ୍ରଭୁମାନେ—ଦେବତାମାନେ, ଋମାଧବ— ସୁଗ୍ରୀବ, ଭୂ-ଜେମାଧବ—ପୃଥିବୀର କନ୍ୟା ସୀତାଙ୍କ ସ୍ୱାମୀ ରାମଚନ୍ଦ୍ର । ୨୧ । ଶଶ ... ଶଶଧର (ଚନ୍ଦ୍ର) ଶଶ (ଠେକୁଆ)କୁ, ଗଙ୍ଗାଧର (ଶିବ) ଗରକୁ (ବିଷକୁ) ଆଶ୍ରିତଜନଙ୍କଠାରେ କରୁଣା କରି ଧାରଣ କରିଅଛନ୍ତି । ୨୨ । କ୍ଷୀରଧାତ୍ରୀ—ସ୍ତନ୍ୟପାନ କରାଇଥିବା ଧାଇ ମା; ପୁତ୍ରୀନିର୍ବିଶେଷ କରି—ନିଜ କନ୍ୟା ପରି, ଜନୟିତ୍ରୀ—ମା, ଜନନୀ । ୨୩ । କନ୍ୟା— ଦଶବର୍ଷ ବୟସ୍କା ବାଳିକା, ରୋହିଣୀ—ନଅବର୍ଷ ବୟସ୍କା ବାଳିକା (ଅଷ୍ଟବର୍ଷା ଭବେତ୍ ଗୌରୀ,

କରୁଣାସୁଧା ବରଷି ହେ । ନାଗର । ୨୪ । ଢେମା ଲାଜେ ସିନା କହୁ ନାହିଁ । ତାର ଶ୍ରୀଅଙ୍ଗବେଦନା ଚାହିଁ । ହେଲାନି ପରତେ ମଦନ କରତେ ନିଶ୍ଚେ ସରିଯିବ ଚାନ୍ଦମୁହାଁ ହେ । ନାଗର । ୨୫ । ଦୁଃଖେ ଯେବେ ରାମା ଜୀବ ଯିବ । ତୁମ୍ଭ ପରା ପ୍ରଭୁ ନିନ୍ଦ୍ୟ ହେବ । ଚାତକ କଣ୍ଠ ଶୋଷଣେ ନାଶଗଲେ ଘନ ବିନା କାହାର ଲାଘବ ହେ । ନାଗର । ୨୬ । ଜୀବ ଯିବା ଚିନ୍ତା ନାହିଁ ତାର । ତୁମ୍ଭ ଶ୍ରୀଅଙ୍ଗ ଯେ ସୁକୁମାର । ମାର ମାରୁଛି ଯେଉଁ ହୃଦେ ନିରତେ ତହିଁ କାହିଁକି କଲ ଅଗାର ହେ । ନାଗର । ୨୭ । ଯେଉଁ ଅଙ୍ଗ ମାର୍ଦ୍ଦବ ସୁମରି । ବାଳା ଶିରୀଷରୁ ସୁକୁମାରୀ । ହେଲେହେଁ ତୁମ୍ଭ ହୃଦକୁ ନ ଛୁଇଁଲା କଦାଚିତ ବାଧିବାକୁ ଡରି ହେ । ନାଗର । ୨୮ । ଚଣ୍ଡ କୁସୁମ କୋଦଣ୍ଡଧାରୀ । ତୁମ୍ଭ ନେତ୍ରାନ୍ତ ନିଦେଶକାରୀ । ତୁମ୍ଭଙ୍କୁ ସିନା ନ ବାଧିବ ତା ରୋଷୁଁ କେହି ବଞ୍ଚିବ ନୃପକୁମାରୀ ହେ । ନାଗର । ୨୯ । ପ୍ରତିପଦାବିଭାବରୀଧବ । ଏବେ ଢେମାଠାରୁ ସ୍ଥୂଳ ହେବ । ଡରୁଛୁଁ ଶ୍ୱାସବାସଲୋଭୀ ରୋଲମ୍ବ ପକ୍ଷବାତେ ଅବା ଉଡ଼ିଯିବ ହେ । ନାଗର । ୩୦ । ପୂର୍ବ ପୁଣ୍ୟପୁଞ୍ଜ ହେଲେ ଲୁଣ୍ଡ । ତୁମ୍ଭ ଚୁମ୍ବଯୋଗ୍ୟ ଯେଉଁ ଗଣ୍ଡ । ତାହାକୁ ଛାର ପାଣ୍ଡୁ ଭାବ ଚୁମ୍ବିଛି ଏଥୁଁ ନେତ୍ରକୁ ଯେ ବଡ଼ ଦଣ୍ଡ ହେ । ନାଗର । ୩୧ । ବିଷ ହେଲାନି ଦିବ୍ୟ ଅଶନ । ବାଜି ତପ୍ତ ନିଃଶ୍ୱାସ ଶ୍ୱସନ । ଧରାରେ ଜଡ଼ି ମଉଳିଯିବା

---

ନବବର୍ଷା ଚ ରୋହିଣୀ, ଦଶବର୍ଷା ଭବେତ୍ କନ୍ୟା ...) । ବାଲ୍ୟ ସକାଶୁ—ମୁଁ ବାଳିକା ହୋଇଥିବାରୁ । ୨୪ । ଅରାଳକେଶୀ— କୁଟିଳକୁନ୍ତଳା; ଅନୁଚିତ ଅବଧାନୁ—ଉଚିତ ସାବଧାନତା ଅଭାବରୁ । ୨୫ । ମଦନ କରତେ—କନ୍ଦର୍ପର କରତନାମକ ଶସ୍ତ୍ରଦ୍ୱାରା । ୨୬ । କଣ୍ଠ ଶୋଷଣେ—କଣ୍ଠ ଶୁଖିଯିବାରୁ । ଲାଘବ—ନୀଚତା । ୨୭ । ଅଗାର—ଗୃହ, ବାସ । ତାର ମରିବାରେ ଚିନ୍ତା ନାହିଁ, ମାତ୍ର ତୁମ୍ଭେ ସର୍ବଦା ତା ହୃଦୟରେ ବାସ କରିବାରୁ କାଳେ ତା ଶରୀର ନାଶ ହେଲେ ତା ମଧ୍ୟରେ ରହିଥିବା ତୁମ୍ଭର ସୁକୁମାର ଶରୀର ଆଘାତ ପାଇବ, ଏଥିପାଇଁ ତାହାର ଭୟ । ୨୮ । ଶିରୀଷ ପୁଷ୍ପପରି କୋମଳାଙ୍ଗୀ ହେଲେହେଁ ତୁମ୍ଭ ଶରୀରର ମାର୍ଦ୍ଦବ (କୋମଳତା) ସ୍ମରଣ କରି କାଳେ ତୁମ୍ଭଙ୍କୁ ବାଧିବ ଏଥିପାଇଁ ତୁମ୍ଭ ହୃଦୟରେ ରହିବାକୁ ସାହସ କରୁ ନାହିଁ; ଅର୍ଥାତ୍ ତୁମ୍ଭେ ଚନ୍ଦ୍ରକଳାକୁ ସବୁବେଳେ ମନରେ ସ୍ଥାନ ଦିଅ ବୋଲି କହିବାକୁ ସାହସ କରୁ ନାହିଁ । ୨୯ । ଚଣ୍ଡ କୁସୁମ କୋଦଣ୍ଡଧାରୀ—ପ୍ରଚଣ୍ଡ ଫୁଲଧନୁ ଧାରଣକାରୀ (କନ୍ଦର୍ପ); ତୁମ୍ଭ ନେତ୍ରାନ୍ତ ନିଦେଶକାରୀ—(ବୀରତ୍ୱାଦି ବିଷୟରେ) ତୁମ୍ଭଠାରୁ ଊଣା ହେବାରୁ ତୁମ୍ଭ ଚକ୍ଷୁକୋଣର ଆଦେଶ ଅର୍ଥାତ୍ ଇଙ୍ଗିତ ଅନୁସାରେ କାର୍ଯ୍ୟ କରେ । କେହି—କିପରି । ଦୁଷ୍ଟ ମଦନ ତୁମ୍ଭର କିଙ୍କର ଥିବାରୁ ତା ଆଘାତ ତୁମ୍ଭଙ୍କୁ ସିନା ବାଧିବ ନାହିଁ, କିନ୍ତୁ ସେ ଦୁଷ୍ଟର କ୍ରୋଧକୁ ଚନ୍ଦ୍ରକଳା ସମ୍ଭାଳି ନ ପାରି ମରିଯିବ । ୩୦ । ପ୍ରତିପଦାବିଭାବରୀଧବ— ପ୍ରତିପଦ୍ ତିଥିର କ୍ଷୀଣ ଚନ୍ଦ୍ର, ଶ୍ୱାସବାସଲୋଭୀ —(ପଦ୍ମିନୀନାୟିକା ଚନ୍ଦ୍ରକଳାର ନିଃଶ୍ୱାସ ପଦ୍ମଫୁଲ ଗନ୍ଧବିଶିଷ୍ଟ ହୋଇଥିବାରୁ) ତା ନିଃଶ୍ୱାସ ପବନଦ୍ୱାରା ଆକୃଷ୍ଟ ହୋଇ ପାଖରେ ଉଡୁଥିବା, ରୋଲମ୍ବ ପକ୍ଷବାତେ—ଭ୍ରମରର ଡେଣା ପବନରେ । ୩୧ । ପାଣ୍ଡୁଭାବ—ପାଣ୍ଡୁତା, ରକ୍ତହୀନତା ଯୋଗୁଁ ଶେତା ପଡ଼ିଯିବା । ୩୨ ।

ଜବା ପରି ହେଲାନି ଦନ୍ତବସନ ହେ । ନାଗର । ୩୨ । କେଳି କୁତକୀ କାମଦୁଘାଟି । ମଣେ ପଲ୍ଲବ ଶଯ୍ୟାକୁ ଘାଟୀ । ଛାଟିଲୁଁ ଡରରେ ପାଟୀର ପଙ୍କରେ ଦକ୍ଷିଣ ଜଳା କବାଟୀ ହେ । ନାଗର । ୩୩ । ସହଜେ ତ ମଧ ଅତି କୃଶ । ଏଣୁ କଲାନି ଅତି ଅବଶ । ଝାଉଁଳି ଯିବା ହେମଲତାଅଙ୍ଗୀକି ମହାଦୁର୍ବହ କୁଚକଳଶ ହେ । ନାଗର । ୩୪ । ବାଳା ହୋଇବାରୁ ଲୀଳା ତୁଟ । ଦିନେ ଦିନେ ହୋଇଛି ପ୍ରକଟ । ଅପାଙ୍ଗ ନିଜାଙ୍ଗଣେ ଭ୍ରମି ହେଲାନି ଖଞ୍ଜ ତାହା ନେତ୍ରଖଞ୍ଜରୀଟ ହେ । ନାଗର । ୩୫ । ତୁମ୍ଭେ ଚମତ୍କାର ଚନ୍ଦ୍ରବତ । ବାଳାଚିତ୍ର-ଚିତ୍ର-ଚନ୍ଦ୍ରକାନ୍ତ । କର ସ୍ପରଶ ବିନା ସିନା ଏ ଘେନି ହୋଇଗଲା ଏତେ ଦ୍ରବୀଭୂତ ହେ । ନାଗର । ୩୬ । ଏଣୁ ମଣେଁ ହେ ସୁନ୍ଦରବର । କର ସମ୍ପର୍କ ହେଲେ ତୁମ୍ଭର । ଦ୍ରବରୁ ଯେବେ ଦ୍ରବ ଜାତ ହୋଇବ ହୃଦ କି ହୋଇବଟି ତେମାର ହେ । ନାଗର । ୩୭ । ଦିନେ ଦିନେ ଉନମାଦବଶେ । ଘେନି ତୁମ୍ଭେ ଥିଲା ପରି ପାଶେ । ରୁଷି ବସି ପୁଣି ତୁମ୍ଭ ଚାଟୁବାଣୀ ଶୁଣି ବୋଧହେଲା ପରି ଦିଶେ ହେ । ନାଗର । ୩୮ । ଏକୁଁ ଆରକେ ହୋଇ ନିପୁଣ । କେତେ ନ ଥିଲେ ନରେଶଗଣ । ବୀରସେନରାଜସୁତରେ ଭୀମଜା ମଜ୍ଜା ମଜ୍ଜାଇବାର ତ ଜାଣ ହେ । ନାଗର । ୩୯ । ଆପେ ହରି ପେଷିଥିଲେ ଦୂତ । କେତେ ବୋଧିଲେ ଗିରି ସାମନ୍ତ । ଚନ୍ଦ୍ରଶକଳମଉଳି ବିନା ନିକି ଆନେ ରସିଲା ଗଉରୀଚିତ୍ତ ହେ । ନାଗର । ୪୦ । ମତ୍ତ ବିଧିନିଶ୍ଚିତ ମନକୁ । ନତସ୍ଥଳାଭିମୁଖ ବନକୁ । ଫେରାଇ ହୁଅଇ ନି କି ବୁଦ୍ଧିବଳେ କଲେ ହେଲେ ନାନା

---

ଅଶନ—ଖାଦ୍ୟ, ଜବା— ମନ୍ଦାରଫୁଲ, ଦନ୍ତବସନ—ଅଧର, ଓଷ୍ଠ । ୩୩ । କାମଦୁଘା—କାମଧେନୁ ପରି ଅଭୀଷ୍ଟଦାୟିନୀ, ପଲ୍ଲବଶଯ୍ୟା—କୋମଳ ନୂଆପତ୍ର ବିଛଣା, ଘାଟୀ—ଉଚ୍ଚ ସ୍ଥାନ, ପାଟୀର ପଙ୍କରେ— ଚନ୍ଦନରୂପ ପଙ୍କରେ, ଦକ୍ଷିଣର ମଳୟ ପବନ ବିରହିଣୀଙ୍କ ପକ୍ଷରେ ଯନ୍ତ୍ରଣାପ୍ରଦ ହୁଏ, ଏଥିପାଇଁ ତା ଦେହରେ ଦକ୍ଷିଣା ପବନ ନ ଲାଗିବ ବୋଲି ଝରକାରେ ବଟାଚନ୍ଦନ ଛାଟି ବାୟୁନିର୍ଗମ ମାର୍ଗ ଆମେ ବନ୍ଦ କରୁଛୁଁ । ୩୪ । ମଧ—କଟିଦେଶ, ଅତିକୃଶ—ଅତିକ୍ଷୀଣ । ୩୫ । ଲୀଳାତୁଟ— ସୌନ୍ଦର୍ଯ୍ୟହୀନ, ଦିନେ ଦିନେ ... ଚନ୍ଦ୍ରକଳାର ଆଖି ଖଞ୍ଜରୀଟ ବା ଖଞ୍ଜନ ପକ୍ଷୀପରି ତାହା ଅପାଙ୍ଗ (ନେତ୍ରପ୍ରାନ୍ତ) ରୂପ ନିଜ ଅଗଣାରେ ଭ୍ରମଣ କରୁଥିଲା, ଏବେ ସେ ସେଠାରେ ବୁଲିବାକୁ ସ୍ଥାନ ନ ପାଇ ଖଞ୍ଜ (ଛୋଟା) ହୋଇ ଗଲାଣି, ଅର୍ଥାତ୍ ଏବେ ଚନ୍ଦ୍ରକଳାର ନେତ୍ରବିଳାସ ଲୋପ ହେଲାଣି । ୩୬ । ତୁମ୍ଭେ ବିଚିତ୍ର ଚନ୍ଦ୍ରପରି, ଚନ୍ଦ୍ରକଳାର ଚିତ୍ତ ମଧ ବିଚିତ୍ର ଚନ୍ଦ୍ରକାନ୍ତମଣି ପରି; କର—କିରଣ, ହାତ; ସାଧାରଣତଃ ଚନ୍ଦ୍ରର କିରଣରେ ଚନ୍ଦ୍ରକାନ୍ତମଣି ତରଳିଯାଏ, ମାତ୍ର ତୁମ୍ଭର କରସ୍ପର୍ଶ ବିନା ତାହାର ଚିତ୍ତ ଦ୍ରବି ଯାଉଅଛି, ତେଣୁ ଦୁହେଁ ବିଚିତ୍ର । ୩୭ । ଯେତେବେଳେ ପ୍ରକୃତରେ ଚନ୍ଦ୍ରକାନ୍ତମଣି ରୂପ ତା ଦେହରେ ତୁମ୍ଭ କର (ହାତ) ବାଜିବ, ସେତେବେଳେ ସେହି ତରଳ ବସ୍ତୁରୁ ପୁଣି ଯେବେ ତରଳ ବସ୍ତୁ ବାହାରିବ, ତେବେ ବାଳାର ହୃଦୟ କଅଣ ହେବଟି ? । ୩୯ । ବୀରସେନ-ରାଜସୁତ—ନଳ, ଭୀମଜା—ଦମୟନ୍ତୀ, ମଜ୍ଜା—ଅନ୍ତଃକରଣ, ମନ । ୪୦ । ବୋଧିଲେ— ବୁଝାଇଲେ, ଗିରିସାମନ୍ତ—ହିମାଳୟ,

ଯତନକୁ ହେ । ନାଗର । ୪୧ । ପ୍ରତିବନ୍ଧକ ଏଥି ଯେ ହେବ । ତାକୁ ଏ ମହୀ କେହି ସହିବ । ଚପଳା ଘନକୁ ମଣି କୁନ୍ଦନକୁ ଯୋଗେ ଘଟାଇଅଛି ଦଇବ ହେ । ନାଗର । ୪୨ । ନିଶ୍ଚେ କଲା ବିଧାତା ଆଗ୍ରହ । ପୁଣି ତୁମ୍ଭେ ମଧୁର ବିଗ୍ରହ । ଢେମାଭୁବନଭୂଷଣସରୋଜିନୀ ଆଉ ଏ ବିଧିରେ କି ସନ୍ଦେହ ହେ । ନାଗର । ୪୩ । ଦୂରେ ଥାଉ ଆନ ଭାଗ୍ୟମାନ । କ୍ରମେ ହୋଏ ସିନା ଏ ବିଧାନ । କିରୂପେ ହେଲେ ମୋ ସଖୀ ପ୍ରାଣ ରଖି ଦେଇ ଦରଶନରସାୟନ ହେ । ନାଗର । ୪୪ । ଆଗେ ଆସୁଛି ମାସ ମାଧବ । ତହିଁ ବଳକ୍ଷ ପକ୍ଷରେ ହେବ । ବସନ୍ତ ମାଧବରୂପୀ ରମାଧବ ଦେବଙ୍କର ଯାତ୍ରା ମହୋତ୍ସବ ହେ । ନାଗର । ୪୫ । ବହୁ ନୃପେ ନ ଥିବେ ସାଥିରେ । ନେତ୍ରରଞ୍ଜନପୁରୀ ପଥରେ । ନୃପାମ୍ବିକାରେ କୃପାରେ ବିଜେ ହେବେ କାମକଳାନଗରୀକି ଥରେ ହେ । ନାଗର । ୪୬ । ମନସିଜ ମୃଗୟୁ ପୁଙ୍ଗବ । ପ୍ରକାଶିବ ତା ବିଦ୍ୟାପ୍ରଭାବ । କନକମଞ୍ଜରୀ ଖେଳାଖଞ୍ଜରୀଟ ପଞ୍ଜରୀରେ ସେଠାରେ ପଡ଼ିବ ହେ । ନାଗର । ୪୭ । ଚିତ୍ତ ନୋହିଲେ ଏଥକୁ ରାଜି । ଏଡ଼େ ଯଶଶୋଭା ଯିବ ଭାଜି । ରାଜୀବନେତ୍ରାନାଶକ ବୋଲି ଲୋକେ ନିଶ୍ଚେ ଗଲାଟି ଡିଣ୍ଡିମ ବାଜି ହେ । ନାଗର । ୪୮ । ତୁମ୍ଭ ପଣ୍ଡିତପଣ ଅଗାଧ । ତହିଁ ବିସ୍ତର ଲେଖା ନିଷେଧ । ବ୍ୟାସଙ୍କୁ ବର୍ଣ୍ଣ ବିନ୍ୟାସ ପଚାରିବା ପରି ହେବ ସିନା ଅପରାଧ ହେ । ନାଗର । ୪୯ । ପଲ୍ଲବାଏ ଏ ଶିଶିରେ ବନ । ବୃଦ୍ଧ ଦେହେ ରଖେ ଯଉବନ । ଯୁବସନ୍ଦେଶାମୃତ ନାମ ଏ ଛାନ୍ଦ କବିଦୋଷକୁ ନ ଘେନି ଘେନ ହେ । ନାଗର । ୫୦ । ରାମକୃଷ୍ଣ ଚନ୍ଦ୍ରକାନ୍ତମୟ । ଯେଚି ସୁରେଶାଧିକ ପ୍ରଣୟ । ତାହାଙ୍କ ଚରଣସରୋଜ ଶରଣ ନୃପ ରାମଚନ୍ଦ୍ର ଛୋଟରାୟ ହେ । ନାଗର । ୫୧ ।



ଚନ୍ଦ୍ରଶକଳମଉଳି—ଚନ୍ଦ୍ରଖଣ୍ଡଧାରୀଶିବ । ୪୧ । ମତ୍ତ—ଭାବରେ ଉନ୍ମତ୍ତ, ବିଧିନିଶ୍ଚିତ—ନିୟମାନୁସାରେ ସ୍ଥିରସଂକଳ୍ପ, ନତସ୍ଥଳାଭିମୁଖ— ନିମ୍ନଦେଶଗାମୀ, ବନ—ଜଳ (ତୁଳନା କର : କୁମାର ସମ୍ଭବ—କଇପ୍ସିତାର୍ଥସ୍ଥିରନିଶ୍ଚୟଂ ମନଃ ପୟଶ୍ଚନିମ୍ନାଭିମୁଖଂ ପ୍ରତୀପୟେତ୍) । ୪୨ । ଚପଳା—ବିଜୁଳି; ମଣି—ରତ୍ନ; କୁନ୍ଦନ—ସୁନା । ୪୩ । ମଧୁର ବିଗ୍ରହ—ସୁନ୍ଦର ଶରୀରଧାରୀ ଓ ମଧୁକାଳୀନ ବା ବସନ୍ତକାଳୀନ ସୂର୍ଯ୍ୟ, ସରୋଜିନୀ —ପଦ୍ମିନୀ । ୪୪ । ଦରଶନରସାୟନ—ଦର୍ଶନ-ଦାନରୂପ ଜୀବନରକ୍ଷକ ରସୌଷଧ । ୪୫ । ମାଧବ ମାସ—ବୈଶାଖମାସ, ବଳକ୍ଷପକ୍ଷ—ଶୁକ୍ଳପକ୍ଷ, ବସନ୍ତମାଧବରୂପୀ—ବସନ୍ତଲକ୍ଷ୍ମୀଙ୍କର ସ୍ୱାମୀରୂପୀ, ରମାଧବ—ବିଷ୍ଣୁ । ୪୬ । ନେତ୍ରରଞ୍ଜନପୁରୀ-ପଥରେ—ଚକ୍ଷୁର ଆନନ୍ଦପ୍ରଦ ଏ ନଗରୀର ପଥରେ । ୪୭ । ମନମିଜ ମୃଗୟୁ ପୁଙ୍ଗବ—କନ୍ଦର୍ପରୂପ ଶ୍ରେଷ୍ଠ ଶିକାରୀ । କନକ ... ଚନ୍ଦ୍ରକଳାର ସୁବର୍ଣ୍ଣମଞ୍ଜରୀରୂପ ନେତ୍ରପ୍ରାନ୍ତରେ ଖେଳୁଥିବା ଖଞ୍ଜରୀଟ ପକ୍ଷୀ ସେହିଠାରେ ପଞ୍ଜୁରୀରେ ପଡ଼ିବ ଅର୍ଥାତ୍ ଚନ୍ଦ୍ରକଳା ସେହିଠାରେ ତୁମ୍ଭଙ୍କୁ ଦେଖିବ । ୪୯ । ବର୍ଣ୍ଣବିନ୍ୟାସ—ଅକ୍ଷରସ୍ଥାପନ ରୀତି । ୫୦ । ଏ ଛାନ୍ଦ ଶୀତକାଳରେ ମଧ ବନକୁ ନବପଲ୍ଲବଯୁକ୍ତ କରାଏ ।



# ଷୋଡ଼ଶ ଛାନ୍ଦ

## ରାଗ—କାମୋଦୀ

### ମହିଳାସ୍ତବରାଜ

ନୃପତନୟ ନୟ ନୟନ ସବିନୟ ପ୍ରିୟ ବୟସ୍ୟ ସଙ୍ଗେ ରସି । ଏକାନ୍ତେ ବସି ବଶିମନୋରଞ୍ଜନା ବଶୀକରଣ ଗୁଣ କହେ ହସି ହେ । ପ୍ରାଣପ୍ରିୟ । ବାରିଜସମ୍ଭବ ସେ ଭଲା । ନାରୀ ଜଗତେ ଯେ ରଚିଲା । ତରୁଣେକ୍ଷଣେ କ୍ଷଣ ଦେବାରେ ବିଚକ୍ଷଣ ଶୁଭଲକ୍ଷଣ ପୂର୍ଣ୍ଣ କଲା ସେ । ୧ । ଏକାକୀ ନୟନର ନରମ ସ୍ଥଳୀ ନ ରକଇ କି ସମ୍ପତ୍ତି ସୁଖର । ମେରୁଶିଖର ଖର ତଟିନୀ ଜଳେ ଖରଚଇ ଯେ ଶରୀର ଆଖର ହେ । ପ୍ରାଣପ୍ରିୟ । ଅନେକ ଜବାଳୀ କାଶୀରେ । ଚଢ଼ାଇ ଯେ କାଳିକା ଶିରେ । ଚମ୍ପା ତାହାଙ୍କ ବର ବରାଙ୍ଗେ ଦେଲେ ବର ବୋଲାଏ ରସିକରାଶିରେ ହେ । ୨ । ଯେ ତପର୍ତ୍ତୁରେ ତପ ଚରି ପଞ୍ଚାଗ୍ନି ତପତିରେ ବା ହୋଇଥାଏ ଭାଜି । ସେ ସିନା ତଳ୍ପେ ରାଜି ରାଜିବାକ୍ଷୀକି ରାଜି କରାଇ କରେ ମଦନାଜି ହେ । ପ୍ରାଣପ୍ରିୟ । ଆଜୀବ ଯାର ଚନ୍ଦ୍ରମୁଖୀ । ତା ଜୀବ ସିନା ଜୀବେ ଲେଖି । ପାଜି ବେଭାର ତାର ଆଜୀବେଶ୍ୱରି ଗିର ଯା ଜିଭେ ନାହିଁ ଧାତା ରେଖି ହେ । ୩ । ସମଧୁ ମଧୁରସା ରସାଳରସମିଶା ସରଶାକର ରସାକର । ଧରେନ୍ଦ୍ରଜା ଅଧରେ ଧରେ ଅନୁରୋଧରେ ଧୀରେ ଯେ ନିବେଦିତ କରେ ହେ । ପ୍ରାଣପ୍ରିୟ । ମଧୁଲୀ ମଧୁଲିଟ ପରି । ବଧୂ ଅଧରୁ ମଧୁଝରୀ । ପିଏ ସେହି ତରୁଣ

---

**ଷୋଡ଼ଶ ଛାନ୍ଦ**

୧ । ନୟନୟନ—ଶାସ୍ତ୍ରଚକ୍ଷୁ, ନୀତିନିପୁଣ; ପ୍ରିୟବୟସ୍ୟ—ପ୍ରିୟସଖା, ବଶିମନୋରଞ୍ଜନା—ମୁନିମନୋମୋହିନୀ, ବାରିଜସମ୍ଭବ—ବ୍ରହ୍ମା, ତରୁଣେକ୍ଷଣେକ୍ଷଣ ... ଯୁବକମାନଙ୍କ ଚକ୍ଷୁରେ କ୍ଷଣ ଆନନ୍ଦ ଦେବାରେ ନିପୁଣ ଶୁଭଲକ୍ଷଣଦ୍ୱାରା ପୂର୍ଣ୍ଣ କଲା । ୨ । ଏକାକୀ ନୟନର ନରମସ୍ଥଳୀ—(ସ୍ତ୍ରୀ) ଚକ୍ଷୁର ଏକମାତ୍ର ନର୍ମ (କ୍ରୀଡ଼ା) ସ୍ଥାନ, ମେରୁଶିଖର—ମେରୁପର୍ବତର ଶୃଙ୍ଗ; ଖରତଟିନୀ—ପ୍ରବଳ ସ୍ରୋତସ୍ୱତୀ (ଏଠାରେ ସ୍ୱର୍ଗଗଙ୍ଗା); ଖରଚେ—ବ୍ୟୟ କରେ, ଆଖର—ଶେଷରେ, ଜବାଳି—ଜବା ବା ମନ୍ଦାର ଫୁଲସବୁ, ତାହାଙ୍କ ବର—କାଳିକାଙ୍କ ସ୍ୱାମୀ ବିଶ୍ୱେଶ୍ୱର ଶିବ; ବରାଙ୍ଗେ—ସୁନ୍ଦର ଶରୀରରେ, ବର—ଶ୍ରେଷ୍ଠ । ୩ । ତପର୍ତ୍ତୁ—ଗ୍ରୀଷ୍ମଋତୁ, ଚରି—ଆଚରଣ କରି, ପଞ୍ଚାଗ୍ନି ତପତିରେ—ଚାରିପାଖର ଚାରିଅଗ୍ନି ଓ ମୁଣ୍ଡ ଉପରେ ସୂର୍ଯ୍ୟ, ଏହି ପଞ୍ଚାଗ୍ନି

ରଣରଣକ ରଣ ରସଲହରୀରେ ପହଁରି ହେ । ୪ । ଯେ ପୂରୁବରେ ବରେ ଲଭି ଥାଇ ଶ୍ରୀବରେ ଚଢ଼ାଇ ତୁଳସୀମଞ୍ଜରୀ । ସେ ସିନା ସୁନାଗରୀ ତପତ ସୁନାଗୋରୀ ନୟନ ଖଞ୍ଜନପଞ୍ଜରୀ ହେ । ପ୍ରାଣପ୍ରିୟ । ତରୁଣୀ ଚିତ୍ତର ଭିତର । ତରକି ନ ପାରେ ଇତର । ତାରତରଳତର ତରଙ୍ଗ ନେତ୍ରାନ୍ତର ଇତରରେ ନୁହଇ ଖାତର ହେ । ୫ । ପରାନନ୍ଦ କନ୍ଦଳୀ ଦଳି ମାନସସ୍ଥଳୀ ମହୀକି ହେବାକୁ ବାହାର । ଅବଳାବଳା ବଳାହକନିନଦୁଁ ବଳାତିଶୟ ନ ଲଭେ ଯାହାର ହେ । ପ୍ରାଣପ୍ରିୟ । ସେ ନିକି ଜମା ପୂରୁଷରେ । ସରେ ସେ ପୂର୍ବ କଲୁଷରେ । ସରେ ଯେ ବିଶେଷରେ ମଧୁମାସ ଶେଷରେ ନ ଖେଳେ ବିବାସ ବେଶରେ ହେ । ୬ । ବରାରୋହାର ହାରଲତା କରି ବାହାର ବାହାରେ ଯେ ଭିଡ଼େ ନିବିଡ଼େ । ବରତୁଳ ଲକୁଚବରତୁଳତା କୁଚଯୁଗ ସନ୍ଧିରେ ଧୀରେ ଜଡ଼େ ହେ । ପ୍ରାଣପ୍ରିୟ । କି ଭାଗ୍ୟ ସତେ ସେ ଯୁବାର । ବାରଦ୍ୱିଲୋକେ ତା ସେବାର । ବାରତା ବହିବାରେ ନ ଥିବ କେହି ବାରେ କେ ହେବ ତାହା ପରିବାର ହେ । ୭ । ଧନଦାନୁଜ ଛଳି ମୋଡ଼ି ମୁଣ୍ଡ ମଣ୍ଡଳୀ କୁଣ୍ଡପିଚିଣ୍ଡେ ପକାଇଲା । ଜିଣି ଜଗତୀ ଗତି କରି ନାରୀ ସନ୍ତତି ସୁଖେ ସମୟ ବଞ୍ଚାଇଲା ହେ । ପ୍ରାଣପ୍ରିୟ । ଜଗଜ୍ଜନନୀଙ୍କି ନିରୋଧି । ହୋଇଲା ସିନା ଅପରାଧୀ । ହେଲେ ରସଲମ୍ପଟପଟଳୀ ଶିରଃପଟ ପରିତ ରଖିଗଲା ସିଦ୍ଧି

---

ଉତ୍ତାପରେ; ତଳ୍ପେ—ବିଛଣାରେ, ଶଯ୍ୟାରେ; ରାଜି—ଶୋଭା ପାଇ, ରାଜୀବାକ୍ଷୀ—ପଦ୍ମନେତ୍ରା, ରାଜି କରାଇ —ସମ୍ମତ କରାଇ, ମଦନାଜି—କାମଯୁଦ୍ଧ, ଆଜୀବ—ଜୀବିକା ବା ଆଶ୍ରୟ, ପାଜିବେଭାର —ଦୁଷ୍ଟ ବ୍ୟବହାର, ଆଜୀବେଶ୍ୱରି ! —ହେ ପ୍ରାଣପ୍ରିୟେ ! ଆସ, ରେଖି—ଲେଖି । ୪ । ସମଧୁ—ମହୁ ସହିତ, ମଧୁରସା—ଦ୍ରାକ୍ଷା, ରସାଳରସ—ଆମ୍ବରସ, ସର—ଦୁଧସର, ଶାକର—ନବାତ, ରସାକର—ନାନା ରସପୂର୍ଣ୍ଣ ଅମୃତକୁଣ୍ଡ, ଧରେନ୍ଦ୍ରଜା—ପାର୍ବତୀ, ବଧୁଳୀ ... ବଧୁଲି ଫୁଲକୁ ମଧୁଲିଟ (ଭ୍ରମର) ପରି, ମଧୁଝରୀ—ମଧୁପୂର୍ଣ୍ଣ ପାତ୍ର, ରଣରଣକରଣ— କାମଯୁଦ୍ଧ, କାମକ୍ରୀଡ଼ା । ୫ । ବରେ—ବରକୁ, ଶ୍ରୀବରେ—ବିଷ୍ଣୁଙ୍କଠାରେ, ସେ ସିନା ... ସେ ସିନା ଆଉଟା ସୁନାପରି କାନ୍ତିବିଶିଷ୍ଟା ସୁନ୍ଦରୀ ସ୍ତ୍ରୀର ଚକ୍ଷୁ ରୂପ ଖଞ୍ଜନ ପକ୍ଷୀର ପଞ୍ଜରାସ୍ୱରୂପ ହୁଏ, ଅର୍ଥାତ୍ ସୁନାଗରୀର ଦୃଷ୍ଟି ସେ ବ୍ୟକ୍ତିଠାରେ ଆବଦ୍ଧ ରହେ, ଇତର—ଦୁର୍ଗା ଓ ଶ୍ରୀକୃଷ୍ଣଙ୍କ ଭକ୍ତ ଭିନ୍ନ ଅନ୍ୟ ବ୍ୟକ୍ତି, ତାରତରଳତର—ଚଞ୍ଚଳ ନେତ୍ରର ତାରକାଯୁକ୍ତ, ତରଙ୍ଗ ନେତ୍ରାନ୍ତର—ତଳତଳ ନୟନଭଙ୍ଗୀ । ୬ । ପରାନନ୍ଦକନ୍ଦଳୀ— ପରମାନନ୍ଦର ଅଙ୍କୁର, ଅବଳାବଳାବଳାହକନିନଦୁଁ —ସ୍ତ୍ରୀର ବଳା (ବଳୟ) ରୂପ ବଳାହକ (ମେଘ) ନିନଦୁଁ (ଧ୍ୱନିରୁ), ବଳାତିଶୟ—ଅତ୍ୟନ୍ତ ସାମର୍ଥ୍ୟ, କଲୁଷ—ପାପ, ସରେ ଯେ ବିଶେଷରେ ... ପୋଖରୀରେ ବସନ୍ତକାଳ ଶେଷରେ ଯେ ବିବାସ ବେଶରେ (ବସ୍ତ୍ରହୀନ ବା ନଗ୍ନ ହୋଇ) ନ ଖେଳେ, ସେ କି ପୁରୁଷରେ ଜମା (ଗଣା) । ୭ । ବରାରୋହା (ବର—ବଡ଼, ଆରୋହ—ନିତମ୍ବ ଯାହାର) ସୁନ୍ଦରୀ, ନିତମ୍ବବତୀ ସ୍ତ୍ରୀ; ବରତୁଳ—ଗୋଲ, ଲକୁଚବରତୁଳ—ସୁନ୍ଦର ଢେଉଟଫଳ ପରି, ବାରଦ୍ୱିଲୋକ—ଚଉଦ ଭୁବନ, ସେବାରବାର୍ତ୍ତା ବହିବାରେ—ଆରାଧନାର ସମ୍ବାଦ ବହନ

ହେ । ୮ । ତରୁନିଚୟ ବନେ ତରୁଣୀ ଲୟ ମନେ ଧରୁଁ ନିରତେ ତା ନ ସହି । ତାଙ୍କ ସଙ୍ଗକୁ ବିହି ବିହିଲା କୃପା ବହି ପହିଲୁ ସୁନାରୀକି ତହିଁ ହେ । ପ୍ରାଣପ୍ରିୟ । ତେଡ଼େ ବିବେକୀ ପୁରୁହୂତ । ମୁନିଦାରକେ ଦେଲେ ଚିତ୍ତ । ସଂଯମୀ ସମୂହର ମୁକୁଟହୀର ହର ଅର୍ଦ୍ଧ ଦେହରେ ଶୋଭା ଚିନ୍ତ ହେ । ୯ । ଜଡ଼କୁ ଜଡ଼ୀ ଜଡ଼ି ଗଡ଼କୁ ସିନା ଗଡ଼ୀ ଜଟାକୁ ଜଟୀ ଅଛି ଜଟି । ଲଟା ମଧରେ ଲଟୀ ହୋଇଛି ଜଟା ଜଟି ଏହା ନ ମଣ ବଟାବଟି ହେ । ପ୍ରାଣପ୍ରିୟ । ଦ୍ରୁମରେ ବୋଲାଏ ଯେ ମୁନି । ତା ଅଙ୍ଗେ ତାମ୍ବୁଳୀ କାମିନୀ । ଗତି ବାରିବାହକୁ ଚପଳା ଭୂରୁହକୁ ବଲ୍ଲରୀ ସିନ୍ଧୁକୁ ତଟିନୀ ହେ । ୧୦ । ଘଟକୁ ଘଟୀ ପଟୀ ପଟକୁ ତଥା ନଦୀ ତଟକୁ ତଟୀ ଘଟିଅଛି । ଶକଟକୁ ଶକଟୀ ଯୁବାକୁ କୃଶକଟୀ ବାହାରେ ସାହା ନାହିଁ କିଛି ହେ ! ପ୍ରାଣପ୍ରିୟ । ପୁରୁଷ ପ୍ରକୃତିର କୃତି । ଏରୂପେ ଏ ବିଶ୍ୱ ପ୍ରକୃତି । ସୁକୃତିଜନ ବିନା ଆନ ଜନ ନବୀନା ନ ଥାଇ ଲଭିଥାଏ ସ୍ଥିତି ହେ । ୧୧ । ନାଗର ଯଉବନ ବନସ୍ଥଳୀମଣ୍ଡନ ମଧୁ ଶ୍ରୀବନଜନୟନା । ପୁରୁଷ ଜନ୍ମ ଲୋହା ଶିରୀଷ ସରି ଦେହା ପରଶୁ ମଣି ପରି ସିନା ହେ । ପ୍ରାଣପ୍ରିୟ । ସ୍ପରଶ ହେବା କ୍ଷଣେ ତାର । ସୁବର୍ଣ୍ଣ ବଳି ଦିଶେ ତାର । ସଂଗତି ଅବଶେଷେ ପ୍ରସରଇ ବିଶେଷେ ସୁବର୍ଣ୍ଣ ପାଟଳୀ ପ୍ରଚାର ହେ । ୧୨ । ଆକାରବନ୍ତ ପଣେ ରମାଙ୍କୁ ଏହି ଗୁଣେ ଅଧିକା ବୋଲି ହେଲା ରାମା । ପୂର୍ବେ ଦୀର୍ଘ ଯତ୍ନରେ ଦ୍ୱିତୀୟା ମିଳେ ଗିରେ କହିଲେ ମିଳନ୍ତି ପ୍ରଥମା ହେ ।

---

କାର୍ଯ୍ୟରେ, ପରିବାର—ପରିଜନ, ଆତ୍ମୀୟ । ୮ । ଧନଦାନୁଜ—କୁବେରଙ୍କ ସାନଭାଇ, ରାବଣ; ଛଳି—ଅଭିସନ୍ଧି ପୂର୍ବକ, କୁଣ୍ଡପିଚିଣ୍ଡେ—ହୋମ - କୁଣ୍ଡର ଗର୍ଭମଧରେ, ଜଗତୀ—ପୃଥିବୀକୁ, ଗତିକରିନାରୀସନ୍ତତି— ସ୍ତ୍ରୀମାନଙ୍କୁ ଜଗତଜୀବନ ମନେକରି, ଜଗଜ୍ଜନନୀ —ଜଗତୀର ମାତୃସ୍ଥାନୀୟା, ସୀତାଦେବୀ; ନିରୋଧି—ବନ୍ଦ କରି, ହେଳେ ... ଏପରି କଲେ ସୁଦ୍ଧା ରସିକସମୂହର ଶିରୋଭୂଷଣ ବସ୍ତ୍ରର ସିଦ୍ଧି ରଖିଗଲା ଅର୍ଥାତ୍ ରସିକଶ୍ରେଷ୍ଠ ବୋଲି ଶାଢ଼ୀ ବାନ୍ଧିଗଲା । ୯ । ତରୁନିଚୟ ... ବୃକ୍ଷମାନେ ଅରଣ୍ୟମଧରେ ସର୍ବଦା ଯୁବତୀ ଲୟ (ପ୍ରଣୟ) ହୃଦୟରେ ଧାରଣ କରିବାରୁ, ସୁନାରୀ— ଏକପ୍ରକାର ବୃକ୍ଷ ଓ ସୁନ୍ଦରୀ ନାରୀ ପୁରୁହୂତ—ଇନ୍ଦ୍ର; ମୁନିଦାରକେ—ମୁନିଦାରା ଅହଲ୍ୟାଙ୍କଠାରେ, ଅର୍ଦ୍ଧଦେହରେ—ଅର୍ଦ୍ଧନାରୀଶ୍ୱର ରୂପରେ । ୧୦ । ଜଡ଼, ଜଡ଼ୀ, ଗଡ଼, ଗଡ଼ୀ, ଜଟ, ଜଟୀ ପ୍ରଭୃତି ପୁରୁଷ ଓ ସ୍ତ୍ରୀବାଚକ ଶବ୍ଦ ଏକତ୍ର ବ୍ୟବହୃତ ହୁଏ । ଜଟାଜଟି—ପରସ୍ପର ସଂଶ୍ଳିଷ୍ଟ, ବଟାବଟି—ମିଥ୍ୟା, ଠକାଠକି; ଦ୍ରୁମରେ ... ଅଗସ୍ତି ଦ୍ରୁମ ତାମ୍ବୁଳୀ—ପାନଲତା; ବାରିବାହ—ମେଘ, ଚପଳା—ବିଜୁଳି, ଭୂରୁହ—ବୃକ୍ଷ, ବଲ୍ଲରୀ—ଲତା । ୧୧ । ଘଟ—ମାଠିଆ, ଘଟୀ—କ୍ଷୁଦ୍ରଘଟ, ଘଡ଼ି; ପଟୀ—ଶାଢ଼ୀ, ପଟ—ବସ୍ତ୍ର, ତଟ—କୂଳ, ତୀର; ତଟୀ—ତୀରଭୂମି, ଶକଟ—ଶଗଡ଼, ଶକଟୀ—କ୍ଷୁଦ୍ର ଗାଡ଼ି, କୃଶକଟୀ—କ୍ଷୀଣମଧା ଯୁବତୀ, ପୁରୁଷ ... ଏ ବିଶ୍ୱପ୍ରକୃତି— ପ୍ରକୃତିପୁରୁଷଙ୍କ ସଂଯୋଗରୁ ଉତ୍ପନ୍ନ, କୃତି—କାର୍ଯ୍ୟ, ସୁକୃତିଜନ ... ପୁଣ୍ୟାତ୍ମାଲୋକ ଭିନ୍ନ ଅନ୍ୟ କେହି ସ୍ତ୍ରୀ ସହିତ ସୁଖଭୋଗ କରେ ନାହିଁ । ୧୨ । ରସିକଲୋକର ଯୌବନ ବନସ୍ଥଳୀ ସ୍ୱରୂପ, ବନସ୍ଥଳୀ ଯେପରି ମଧୁଶ୍ରୀ (ବସନ୍ତଲକ୍ଷ୍ମୀ)

ପ୍ରାଣପ୍ରିୟ । ଅଜନମୋହିନୀ କମଳା । ଜନମୋହିନୀ ପ୍ରେମଶୀଳା । ଶିଳାଲିଖିତାକ୍ଷର ମଧ୍ୟେ କର ବକ୍ଷର ସଂସାରସାରଶିରୀବାଳା ହେ । ୧୩ । ଅଙ୍କେ ଶଙ୍କରଙ୍କର ଧୃତିଦଳନାବର ପଙ୍କେରୁହାକ୍ଷୀ ଥିଲେ ଜମି । ସ୍ୱର୍ଗେ ବିହରି ହରିହୟପଦବୀ ହରି ହରିଚନ୍ଦନ ବନେ ଭ୍ରମି ହେ । ପ୍ରାଣପ୍ରିୟ । କି ଭାଗ୍ୟ ଭୁଞ୍ଜିବ ମାନବ । ନବବୟସୀ ସେ ତ୍ରିଦିବ । ଦିବସବିବସନ ସୁଷମା ଶିବସନମତି ନ ଥିଲେ କେ ଦେଖିବ ହେ । ୧୪ । ରତିପତିର ତୀର ତିରସ୍କାରଭୀତିର ନିବାରଣ ବାରଣଗତି । ଯା ହୃଦୟେ ଭରମ ରମଣୀୟ ବରମ ପରି ହୋଇବପ୍ରତି ରାତି ହେ । ପ୍ରାଣପ୍ରିୟ । ବିନା ନବୀନା ଅବଲୋକେ । ସେ ଲୋକ ବସି ବ୍ରହ୍ମଲୋକେ । ଲୋକେଶପଦ ପାଦନତ ହେଲେହେଁ ପଦ ବିପୂର୍ବ ହେବ ତ ଅସ୍ତୋକେ ହେ । ୧୫ । ଥାଉ ରମଣୀମଣି ମୁଖଚନ୍ଦ୍ର କି ମଣି ମଣିଶିଖରାଳୟମାନେ । କେଉଁ ରସଲାଭକୁ ଭକୁଳବୃଷଭକୁ ମୋଦେ ପିଅନ୍ତି ପ୍ରତିଦିନେ ହେ । ପ୍ରାଣପ୍ରିୟ । ବିବୁଧଙ୍କର ବୁଧପଣ । ଏହି ବୋଧରୁ ଏକା ଜାଣ । ସୁରତଟିନୀତଟ ନିକଟେ ଥାଇ ଘଟ ଜଳୁଁ ଲଭନ୍ତି ସନ୍ତର୍ପଣ ହେ । ୧୬ । ମୃଦୁଳାଙ୍ଗୀର ଗିର ବକ୍ରଭାବ ଭଙ୍ଗିର ସମୀପେ ଯାର ଶ୍ରୁତି ଥିବ । ମହତୀ କଳାବତୀ କଛପୀର ରବେ ପ୍ରୀତି ଲବେ ତ ତାହାର ନୋହିବ ହେ । ପ୍ରାଣପ୍ରିୟ । ଶୁକ ପଠନ ଶବଦର । ପିକ ପଞ୍ଚମ ନିନଦର ।

---

ଦ୍ୱାରା ଶୋଭିତ ହୁଏ ପଦ୍ମନେତ୍ରା ସ୍ତ୍ରୀଦ୍ୱାରା ସେହିପରି ରସିକର ଯୌବନ ମଣ୍ଡିତ ହୁଏ । ପୁରୁଷଜନ୍ମ ଲୁହା ପରି କଠିନ, ଶିରୀଷଫୁଲ ସଦୃଶ କୋମଳାଙ୍ଗୀ ସ୍ତ୍ରୀ ସ୍ୱର୍ଣ୍ଣମଣି ପରି, ସ୍ତ୍ରୀ ସଂସର୍ଗରେ ପୁରୁଷ ସୁନାଠାରୁ ବଳି ତାର (ଉଜ୍ଜ୍ୱଳ) ଦିଶେ, ସଙ୍ଗତି—ସଙ୍ଗମ, ସୁବର୍ଣ୍ଣପାଟଳୀ ... ରୂପଶ୍ରୀ ସୁନ୍ଦର କରିଦିଏ । ୧୩ । ଆକାରବନ୍ତପଣେ —ଆକୃତି ସୌଷ୍ଠବରେ ଓ 'ଆ' ଅକ୍ଷର ଅଧିକ ଥିବାରୁ, ରମା—ଲକ୍ଷ୍ମୀ, ରାମା—ସ୍ତ୍ରୀ, ଦ୍ୱିତୀୟା—(ଏଠାରେ) ରାମା, ଗିରେ କହିଲେ—କଥାରେ କହିଲେ ବା ମାଗିଲେ, ପ୍ରଥମା—(ଏଠାରେ) ଲକ୍ଷ୍ମୀ, ଅଜନମୋହିନୀ— ଜନ୍ମ ରହିତ ବିଷ୍ଣୁଙ୍କ ସନ୍ତୋଷଦାୟିନୀ, ଶିଳାଲିଖିତାକ୍ଷର ... ପଥରରେ ଲେଖା ଅକ୍ଷର ପରି ହୃଦୟ ମଧ୍ୟରେ ଲେଖି ରଖ ଯେ, ବାଳା (ସ୍ତ୍ରୀ) ସଂସାରର ସାରଶ୍ରୀ (ସର୍ବୋତ୍କୃଷ୍ଟ ଶୋଭା । ୧୪ । ଯେବେ କୋଳରେ ଶିବମୋହିନୀ ଅର୍ଥାତ୍ ରୂପବତୀ ଯୁବତୀ ସ୍ତ୍ରୀ ଥାଏ, ତେବେ ସ୍ୱର୍ଗରେ ବିହାର କରି ହରିହୟ ପଦବୀ (ଇନ୍ଦ୍ରପଦ) ଲାଭ କରି ହରିଚନ୍ଦନବନ (ନନ୍ଦନକାନନ)ରେ ବୁଲିଲେ ମନୁଷ୍ୟ ତହିଁରୁ କଅଣ ଅଧିକ ସୁଖ ପାଇବ ? ତ୍ରିଦିବ—ସ୍ୱର୍ଗ, ଦିବସବିବସନସୁଷମା—ଦିନରେ ନଗ୍ନଶୋଭା, ଶିବ ସନମତି—ଶିବଙ୍କର ଅନୁଗ୍ରହ । ୧୫ । ରତିପତି—କନ୍ଦର୍ପ, ତୀରତିରସ୍କାରଭୀତି—ଶର ଆଘାତ ଭୟ, ଭରମରମଣୀୟ—ସ୍ୱର୍ଣ୍ଣ ପରି ସୁନ୍ଦର, ବର୍ମ—ସାଞ୍ଜୁ, ଲୋକେଶପଦ—ବ୍ରହ୍ମପଦ, ବିପୂର୍ବ ହେବ—''ପଦ'' ଶବ୍ଦ ''ବି'' ପୂର୍ବ ହେବ ଅର୍ଥାତ୍ ବିପଦ ହେବ, ଅସ୍ତୋକେ—ବହୁ ପରିମାଣରେ । ୧୬ । କି ମଣି—କଅଣ ମନେ କରି, ମଣିଶିଖରାଳୟମାନେ—ଦେବତାମାନେ, ଭକୁଳବୃଷଭ—ନକ୍ଷତ୍ରପତି ଅର୍ଥାତ୍ ଚନ୍ଦ୍ର, (ପୁରାଣରେ ଅଛି ଦେବତାମାନେ ପ୍ରତ୍ୟହ ଚନ୍ଦ୍ରଙ୍କ କଳା ପାନ କରନ୍ତି) । ବିବୁଧ—ଦେବତା, ବୁଧପଣ—ପାଣ୍ଡିତ୍ୟ, ବୋଧ—ବୁଦ୍ଧି, ସୁରତଟିନୀ

ଶ୍ରବଣରେ ତରସ ରସସଙ୍ଗୀ ହରଷ ଜନ୍ମି କି ହୋଇବ ହୃଦର ହେ । ୧୭ । ପରମାଦର ଦରପଣବିମ୍ବ ସୋଦର ଗଣ୍ଡମଣ୍ଡଳଠାରେ ଥିଲେ । ଇଷ୍ଟ ଦେବର ବର ଲବ୍ଧ ଗଉରବର ଭାଜନ ସେହି ହୁଏ ଭଲେ ହେ । ପ୍ରାଣପ୍ରିୟ । ତାହା ସମାନ ନାହିଁ ଧନ । ତାହା ସମାନ ସମ୍ମୋହନ । ଯାହା ସମାନ ମନ୍ଦ ଲାଲ ଲପନ ଚାନ୍ଦ ପ୍ରମୋଦ ସନ୍ଦୋହ ଦହନ ହେ । ୧୮ । ତୁଷାର ବାସ ବାସରହିତ କୃତ୍ତିବାସପରସଙ୍ଗରାନ୍ତ ନିଃଶ୍ୱାସ । ଯେ ଭୋଗ କରି କରିଗତି ଗଣ୍ଡମକରୀ ସ୍ୱେଦର ରଚିବ ନିରାସ ହେ । ପ୍ରାଣପ୍ରିୟ । ମଳୟବନୀ ମଧ୍ୟଚର । ମନ୍ଦ ଚନ୍ଦନଗନ୍ଧଚୋର । କେହି ସେ ପ୍ରଭଞ୍ଜନ ହେବ ତାର ରଞ୍ଜନ ଯାହାର ସ୍ୱଭାବ ଖଚର ହେ । ୧୯ । ଚରଣତାମରସ ରସନିଧିର ରସବଶରେ ଧରି ମୁହୁର୍ମୁହୁ । ରଚି ଚୁମ୍ବନ ବନରୁହ ପ୍ରସୂନ ବନ ରତାଳି ନିନ୍ଦା କହୁ କହୁ ହେ । ପ୍ରାଣପ୍ରିୟ । ଅଲକ୍ତ ଚିତ୍ରିତ କରିବ । ସୁଖେ ଯେ ସମୟ ହରିବ । ଧ୍ରୁବ ଧାମରୁ ମରୁଦଧିପ ଆଶ୍ରମରୁ ତହୁଁ ଅଧିକ କି ଲଭିବ ହେ । ୨୦ । ରସବତୀରଜ୍ଞାକୁ ନିବିଡ଼େ ଯାକୁ ଯାକୁ ଯାକୁ ମିଳିବ ଦେହାନ୍ତର । ତା ନାମ ଲେଖା ଲେଖା ଲେଖା ପ୍ରଥମେ ଲେଖା ହୋଇଲା ଅବଶ୍ୟ ବିଚାର ହେ । ପ୍ରାଣପ୍ରିୟ । ନବ ବୟସ ବିଭୂଷଣ । ଶଣଗଉରୀଦେହା ଜାଣ । ତାଠାରୁ ପୁରୁଷର ସରେ ଭାଗ୍ୟବିସର ତା ସମ ନାହିଁ ସେହି ପ୍ରାଣ ହେ । ୨୧ । ଚଟୁଳତର ଚାଟୁ ରସପ୍ରସରପଟୁ ମୃଦୁଳ ବଚନ ବିଭବ । ତୁଲେ କାବ୍ୟ ନାଟକ ଅଳଙ୍କୃତି କଟକ ପରି ହୃଦୟ ହେଉଥିବ ହେ । ପ୍ରାଣପ୍ରିୟ । ଅନିଶ ଥିବ ଅନୁସରି । ଅଖଣ୍ଡ ଧରାଧିପଶିରୀ । ସ୍ୱରୂପେ ଶିରୀସଙ୍ଗୀ ଶିରୀଷଅଙ୍ଗୀ ଅଙ୍ଗୀକାର ନ ଥିଲେ ବୃଥା

---

—ସ୍ୱର୍ଗଗଙ୍ଗା, ସନ୍ତର୍ପଣ—ସନ୍ତୋଷ, ତୃପ୍ତି । ୧୭ । ମହତୀ—ନାରଦଙ୍କ ବୀଣା, କଳାବତୀ—ତୁମ୍ବୁରୁ ଗନ୍ଧର୍ବଙ୍କ ବୀଣା, କଚ୍ଛପୀ—ସରସ୍ୱତୀଙ୍କ ବୀଣା, ତରସରସସଙ୍ଗୀ—ଶୀଘ୍ର ରସ ଉନ୍ମେଷକାରୀ । ୧୮ । ଦରପଣ ବିମ୍ବ ... ଦର୍ପଣ ବିମ୍ବ ସୋଦର (ସଦୃଶ) ସ୍ୱଚ୍ଛ ଗଣ୍ଡଦେଶ ଯାହାର, ଗୌରବର ଭାଜନ—ଗୌରବ ବା ପ୍ରଶଂସା ଲାଭ କରିବାର ଅଧିକାରୀ, ଲପନ—ମୁଖ, ପ୍ରମୋଦସନ୍ଦୋହଦହନ —ଆନନ୍ଦସମୂହର ଧ୍ୱଂସକାରୀ । ୧୯ । ତୁଷାରବାସ—ଶୀତଳ ଗୃହରେ, ବାସରହିତ— ନଗ୍ନ ଅବସ୍ଥାରେ, କୃତ୍ତିବାସପରସଙ୍ଗରାନ୍ତ ନିଃଶ୍ୱାସ—କାମଯୁଦ୍ଧ ଶେଷ ନିଃଶ୍ୱାସ, କରିଗତି ... ଗଜଗମନା ସ୍ତ୍ରୀର ଗଣ୍ଡସ୍ଥଳରେ ଅଙ୍କିତ ମକରୀ ଚିତ୍ରର ସ୍ୱେଦ (ଝାଳ)କୁ ନିରାସ (ଦୂରୀକରଣ) କରିବ, ମଳୟ ବନୀମଧ୍ୟଚର—ମଳୟପର୍ବତସ୍ଥ ଅରଣ୍ୟ ମଧ୍ୟରେ ବିଚରଣ କରୁଥିବା, ମନ୍ଦ—ଧୀର ଓ ଅନ୍ୟ ଅର୍ଥ ନୀଚ, କେହି—କାହୁଁ, ପ୍ରଭଞ୍ଜନ—ପବନ, ରଞ୍ଜନ—ପ୍ରୀତିଯୁକ୍ତ, ଖଚର —ଆକାଶଚାରୀ ଅନ୍ୟ ଅର୍ଥ ଖେଚଡ଼ା ବା ବଜ୍ଜାତ୍ । ୨୦ । ଚରଣତାମରସ—ପାଦପଦ୍ମ, ବନରୁହପ୍ରସୂନବନ ରତାଳି—ପ୍ରସ୍ଫୁଟିତ ପଦ୍ମବନରେ ଆସକ୍ତ ଭ୍ରମର, ଅଲକ୍ତ—ଅଳତା, ଧ୍ରୁବଧାମ—ସର୍ବୋଚ୍ଚ ଧ୍ରୁବଲୋକ, ମରୁଦଧିପ ଆଶ୍ରମ—ସ୍ୱର୍ଗପୁର । ୨୧ । ରସବତୀ ରଜ୍ଞା—ରସବତୀଙ୍କ ମଧ୍ୟରେ ଶ୍ରେଷ୍ଠା, ଲେଖା—ଦେବତା, ଲେଖା ଲେଖା ଲେଖା ... ଦେବତାମାନଙ୍କ ମଧ୍ୟରେ ପ୍ରଥମେ ଲେଖନୀୟ ହୋଇ ଲେଖା ହୁଏ । ଶଣଗଉରୀଦେହା—ଛଣପଟ

ପରି ହେ । ୨୨ । କନକଧରାଧରାଧିକାରୀ ପୟୋଧରା ଧରାଉଥିବ ପତଦ୍‌ଗ୍ରହ । ଧନଦ ସମ୍ପଦରେ ଦରେ ହେଲେ ଆଦରେ କାହିଁକି ହୋଇବ ଆଗ୍ରହ ହେ । ପ୍ରାଣପ୍ରିୟ । ବଢ଼ାଉଥିବ ଲାଗି ବାସ । ବାସବପଦେ କାହିଁ ଆଶ । ଆସରପର ପରସାଦ ପରତାପର ବଶୁଁ କେ ନୋହିବ ତା ବଶ ହେ । ୨୩ । ଛାତିରେ ଆଉଜାଇ ଜାଇଦଳ ଶେଯାଇ ଥିବା ଶେଯରେ ସମଜାଇ । ରସରଙ୍ଗେ ମଜାଇ ସ୍ମରକୁ ଡରଜାଇ ନଖାଗ୍ର ଜଘନେ ବଜାଇ ହେ । ପ୍ରାଣପ୍ରିୟ । ତା ଈଷଦ୍ଧାସଯୁତ ମୁଖ । ଚାହିଁ ପାସୋରି ସବୁ ଦୁଃଖ । ହରେ ଯେ ଏକ ପରା ପରାଣ ଏକପରା କରି ସେ ମର୍ତ୍ତ୍ୟ ଶତମୁଖ ହେ । ୨୪ । ନରେନ୍ଦ୍ରନନ୍ଦନର ନରମ ବଚନର ଶେଷେ ସଚିବ ପୁତ୍ର ମୋଦେ । ତା ଭାବ ଅନୁମାନ ମାନସେ କରି ମାନନାରେ ବୋଧିଲା ପ୍ରତିପଦେ ହେ । ପ୍ରାଣପ୍ରିୟ । ଚନ୍ଦ୍ରିକା ଅନୁସରେ ଯଥା । ତୁମ୍ଭ କାମିତ ଶିରୀ ତଥା । ଲବେ ନାହିଁ ଅନ୍ୟଥା ରସେ ନୁଆଇଁ ମଥା ହରିବା ଯଥା ହୋଇ ବ୍ୟଥା ହେ । ୨୬ । ପ୍ରଚୁର ଅନୁଚର ପ୍ରତ୍ୟକ୍ଷେ ନ ଆଚର କର ମାନସଚର ଚର । ତାହାକୁ ଚରାଚରଘିତ ଉଚ୍ଚ ନୀଚର ଜଣା ହୁଅଇ ସୁବିଚାର ହେ । ପ୍ରାଣପ୍ରିୟ । କୁନ୍ଦନଅର୍ଥେ ସିନା ମଣି । ରଖିଛି ଦଇବ ନିର୍ମାଣି । ଇଷ୍ଟଦେବର ବର ପ୍ରସାଦପ୍ରଭାବର ସ୍ୱରୂପ ଅଛ ଦେବ ପୁଣି ହେ । ୨୫ । ରସାମୃତ ନିର୍ଝରୀ ନିରତେ ଝରି ଝରି ମୃଦୁଳ ହେବା ହୃଦୟକୁ । କବିତା ଦେବୀ ପରିରମ୍ଭେ ତୋଷିଲା ପରି ହରିଣଲକ୍ଷ୍ମ ଉଦୟକୁ ହେ । ପ୍ରାଣପ୍ରିୟ । ଚନ୍ଦ୍ରିକା ଅନୁସାରେ ଯଥା । ତୁମ୍ଭ କାମିତ ଶିରୀ ତଥା । ଲବେ ନାହିଁ ଅନ୍ୟଥା ରସେ ନୁଆଁଇ ମଥା ହରିବ ଯଥା ବ୍ୟଥା ହେ । ୨୬ । ପ୍ରଚୁର ଅନୁଚର ପ୍ରତ୍ୟକ୍ଷେ ନ ଆଚର କର ମାନସଚର ଚର । ତାହାକୁ ଚରାଚରଘିତ ଉଚ୍ଚ ନୀଚର ଜଣା ହୁଅଇ ସୁବିଚାର ହେ । ପ୍ରାଣପ୍ରିୟ । ପୃଥୁଳ ସ୍ଥିରତର କୁଚର । ଯେ ବୀର ଚିରସହଚର । ତାହାକୁ ତା ରୁଚିର ସଂସର୍ଗଜଣା ଚୋର ଉପପତିକି କି ଗୋଚର ହେ । ୨୭ । ଯେତେ

---

ଫୁଲ ପରି ଗୌରବର୍ଣ୍ଣ ଦେହ ଯାହାର, ଭାଗ୍ୟବିସର—ସୌଭାଗ୍ୟରାଶି । ୨୨ । କଟକ—ସ୍ଥାନ, ରାଜଧାନୀ; ଅନିଶ—ସର୍ବଦା, ଅଖଣ୍ଡ ଧରାଧିପଶିରୀ—ସଂପୂର୍ଣ୍ଣ ରାଜଲକ୍ଷ୍ମୀ ସ୍ୱରୂପେ, ଶ୍ରୀସଙ୍ଗୀ—ପ୍ରତ୍ୟକ୍ଷଲକ୍ଷ୍ମୀଙ୍କର ସହଚର । ୨୩ । କନକଧରାଧରାଧିକାରୀ ପୟୋଧରା— ମେରୁ ପର୍ବତ ପରି ସ୍ତନର ଅଧିକାରୀ ଅର୍ଥାତ୍ ବିଶାଳ କୁଚଯୁକ୍ତା । ପତଦ୍‌ଗ୍ରହ—ପିକଦାନୀ, ଦରେ—ଅଳ୍ପ, ଟିକିଏ; ଆସରପର—ରାକ୍ଷସଶତ୍ରୁ, ଶମ୍ବରାରି, କନ୍ଦର୍ପ; ପରସାଦ ପରତାପ— ଅନୁଗ୍ରହରୁ ଜାତ ଦାରୁଣ ଯନ୍ତ୍ରଣା । ୨୪ । ସମଜାଇ—ରାଜି ହୋଇ, ଏକପରା—ଏକ ପ୍ରହର, ପରାଣ ଏକପରା କରି—ପ୍ରାଣ ଏକାପରି କରି, ଶତମୁଖ—ଇନ୍ଦ୍ର । ୨୫ । ନରମ ବଚନ— କୋମଳ କଥା, ମାନନାରେ—ସମ୍ମାନ ସହିତ, କୁନ୍ଦନ—ସୁନା, ମଣି—ରତ୍ନ । ୨୬ । ପରିରମ୍ଭ —ଆଲିଙ୍ଗନ, ହରିଣଲକ୍ଷ୍ମ—ଚନ୍ଦ୍ର, ଚନ୍ଦ୍ରିକା— ଜ୍ୟୋତ୍ସ୍ନା, କାମିତ ଶିରୀ—ଅଭିଳଷିତ ସମ୍ପଦ । ୨୭ । ପ୍ରଚୁର ଅନୁଚର ... ପ୍ରତ୍ୟକ୍ଷରେ ବହୁଭୃତ୍ୟ ସେଠାକୁ ନ ପଠାଅ । ମାନସଚର—ହଂସ, ଚର—ବାର୍ତ୍ତାବହ,

ତରୁଣଗଣ ଗଣନାରେ ନିପୁଣ ଲେଖନ୍ତି ଜଣ ଜଣ କରି । ତାଙ୍କ ସୁନ୍ଦରପଣ ପଣନ୍ତେ ପଣ ପଣ କରି ବାନ୍ଧିଛି ତୁମ୍ଭ ଶିରୀ ହେ । ପ୍ରାଣପ୍ରିୟ । ତଦନୁରୂପ ମନୋରଥ । ପୂର୍ଣ୍ଣ କରିବେ ଉମାନାଥ । ସେ ରସେ ଜରଜର କରି ଆମ୍ଭ ନଜର ପଥ ମଣ୍ଡିବ ମନମତ ହେ । ୨୮ । କିଶୋରବରଚକ୍ର ଚକ୍ରବର୍ତ୍ତୀଙ୍କ ଶକ୍ର ମଣ୍ଡିଅଛ ଏ ବସୁମତୀ । ବାଞ୍ଛାତୀତ ସମ୍ପଦ ପଦ କିପରି ହୃଦସ୍ଥଳେ ହୋଇବ ମୂର୍ତ୍ତିମତୀ ହେ । ପ୍ରାଣପ୍ରିୟ । ତୁମ୍ଭ ସୁଭାଗ୍ୟ ପୂର୍ଣ୍ଣଚାନ୍ଦ । କରିବ ଜଗତୀ ଆନନ୍ଦ । ସମ୍ପୂର୍ଣ୍ଣ ହେଲା ହେ ଲାବଣ୍ୟସିନ୍ଧୁ ମହିଳା ସ୍ତବରାଜ ନାମ ଏ ଛାନ୍ଦ ହେ । ୨୯ । ସୁରଭୀନିସୂଦନ ସୁରଭିଚୟାବନ ସୁରଭିମାଲ୍ୟ ଆଭରଣ । ସୁରଭିତରସ୍ଥିତ ସୁରଭିମିତତାତ ଅପୂର୍ବ ସୁରଭୀ କାରଣ ହେ । ମହାପ୍ରଭୁ । ପୁରଭିଦ୍ରଚିତଚରଣ । ସୁରଭି କର ଆଚରଣ । କର ଭୀଷଣଭରହରଣ ଜଳନ୍ତରମହୀମହେନ୍ଦ୍ରର ଶରଣ ହେ । ୩୦ ।



ସ୍ପିତ—ପିତା, ଚୀର—ବସ୍ତ୍ର, ଚୋର ଉପପତି—ଜାରପୁରୁଷ । ୨୮ । ତୁମ୍ଭର ଶୋଭା ଅନ୍ୟ ସମସ୍ତ ରୂପବାନ ଯୁବକଙ୍କର ଅସଂଖ୍ୟ ଶୋଭାକୁ ନିଜ ପଣନ୍ତ କାନିରେ ବାନ୍ଧିଛି, ଅର୍ଥାତ୍ ପୃଥିବୀର ସମସ୍ତ ଯୁବକଙ୍କ ମଧ୍ୟରେ ତୁମ୍ଭେ ସୁନ୍ଦରତମ, ନଜରପଥ—ଦୃଷ୍ଟିପଥ । ୨୯ । କିଶୋରବର ... ଶ୍ରେଷ୍ଠ ଯୁବକମାନଙ୍କ ମଧ୍ୟରେ ଯେଉଁମାନେ ପ୍ରଧାନ ତୁମ୍ଭେ ତାଙ୍କର ଇନ୍ଦ୍ରସଦୃଶ । ୩୦ । ହେ ସୁରଭୀନିସୂଦନ—ହେ ଦେବତାଙ୍କର ଭୟବିନାଶକ, ସୁରଭିଚୟାବନ—ଗାଭୀସମୂହର ରକ୍ଷକ, ଗୋପାଳ; ସୁରଭିମାଲ୍ୟଆଭରଣ—ସୁବାସ ଫୁଲମାଳାଦ୍ୱାରା ଶୋଭମାନ, ସୁରଭିତର ସ୍ଥିତ—ଦେବତାଙ୍କ ମଧ୍ୟରେ ଅବସ୍ଥିତ, ସୁରଭିମିତତାତ—ବସନ୍ତର ମିତ କନ୍ଦର୍ପର ପିତା କୃଷ୍ଣ, ଅ-ପୂର୍ବ ସୁରଭୀକାରଣ—'ଅ-ପୂର୍ବ ସୁର' ଅର୍ଥାତ୍ ଅସୁର ସେମାନଙ୍କର ଭୟର କାରଣ, ପୁରଭିଦ୍‌ରଚିତ ଚରଣ—ଶିବଙ୍କଦ୍ୱାରା ପୂଜିତ ଚରଣ ଯାହାଙ୍କର । ସୁରଭି କର ଆଚରଣ—ମଙ୍ଗଳବିଧାନ କର, ଭୀଷଣଭରହରଣ—ପୃଥିବୀର ଭୀଷଣ ଭାର ହରଣକାରୀ ।



# ସପ୍ତଦଶ ଛାନ୍ଦ

## ରାଗ—କନଡ଼ା

## (ଚନ୍ଦ୍ରକଳାକୁ ଅନଙ୍ଗସୁନ୍ଦରର ଚିଟାଉ)

କୁନ୍ଦଲତା ବିନା କେହି ସେ ନବୀନା ପାଶେ ନ ଥିବାର ବେଳେ। ଖେଳି ହଂସାବତଂସ ମୋଦ ଜଳେ। ଚନ୍ଦନ ମୁଦ ଚିଟାଉ ଦୃଶ କରୁ ଧରି ଚାରୁଚଞ୍ଚୁ ଦଳେ ସେ। ମଞ୍ଜୁଳା। ସ୍ତମ୍ଭ ସମ୍ଭବୁଁ ସାତ୍ତ୍ୱିକ ପ୍ରସରି। ଭ୍ରମେ ବିଚାରିଲା ନବକିଶୋରୀ। ମୂର୍ତ୍ତିମନ୍ତ ନବପଲ୍ଲବ ଶବଦ ପ୍ରାନ୍ତର ବିସର୍ଗ ପରି ସେ। ୧। ଚାମୀକରପୃଷ୍ଠ ପଦ୍ମରାଗ ପୀଠ କର ଉପରେ କରି ସ୍ଥିତ। କଲା ବଳୟନିନଦେ ସ୍ୱାଗତ। କରଜ ମୁଦ୍ରିକା ମଣିମୟୂଖରେ ପାଦ୍ୟ ଦେଲା ବିଧିମତ ସେ। ମଞ୍ଜୁଳା। ପ୍ରମୋଦରେ ଦରେ ଯାହା ହସିଲା। ଦରେ ଅର୍ଘ୍ୟଦାନ କରି ତୋଷିଲା। ଅମନ୍ଦ ପ୍ରଣୟ ପ୍ରବାହ ଉଦୟ ଆଚମନ ପ୍ରକାଶିଲା ସେ। ମଞ୍ଜୁଳା। ୨। ଢାଳି ନୟନଇନ୍ଦୀବରଯୁଗଳୀ ଆନନ୍ଦ ଅଶ୍ରୁବିନ୍ଦୁଛଳେ। ଘନ କୁସୁମ ବରଷାର ବେଳେ। ଡିଣ୍ଡିଯିବା ମଳୟଜ ମୁଦ୍ରାଜାଲ ଶିଥିଳାଇ କୁତୂହଳେ ସେ। ମଞ୍ଜୁଳା। ସ୍ୱର ସାତ୍ତ୍ୱିକ ବିକାର ପାଇଲା। ଚମ୍ପାକଳୀ ଅଙ୍ଗୁଳୀ କମ୍ପାଇଲା। ତରୁଣ ସ୍ନେହ ସନ୍ଦେହ ଗଣ୍ଠିତୁଲେ ଚିଟାଉଟି ଫିଟାଇଲା ସେ। ୩। ଶିରେ ଲଗାଇବା ସମୟେ ଖସାଇ କରୁ ଅନାୟତ୍ତ ଦମ୍ଭରେ। ଭିଡ଼ି ଲଗାଇ ଉରଜକୁମ୍ଭରେ।

---

**ସପ୍ତଦଶ ଛାନ୍ଦ**

୧। ହଂସାବତଂସ—ଗୋଟିଏ ରାଜହଂସ, ମୋଦଜଳେ—ଆନନ୍ଦଜନକ ଜଳରେ, ଦୃଶ କରୁଁ—ଦେଖାଉଁ। ମୂର୍ତ୍ତିମନ୍ତ ... ହଂସର ଚଞ୍ଚୁ (ଥଣ୍ଟ) ସାକ୍ଷାତ୍ ରକ୍ତବର୍ଣ୍ଣ ନୂଆପଲ୍ଲବ ପରି, ଚିଟାଉ (ପତ୍ର) ଖଣ୍ଡ ସେହି ପଲ୍ଲବ ଶବ୍ଦର ଶେଷରେ ଲାଗିଥିବା ବିସର୍ଗ(ଃ) ପରି ଆକୃତିବିଶିଷ୍ଟ। ଏହା ଦେଖି ଚନ୍ଦ୍ରକଳା ପ୍ରଥମେ ସ୍ତବ୍ଧ ହୋଇଗଲା, ପରେ ତାହାର ଅନ୍ୟ ସାତ୍ତ୍ୱିକଭାବ (ସତ୍ତ୍ୱଗୁଣାଶ୍ରିତସାଧୁଭାବ ସ୍ନେହ ରୋମାଞ୍ଚ ପ୍ରଭୃତି) ପ୍ରସାରିତ ହେଲା। ୨। ଚାମୀକର—ସୁବର୍ଣ୍ଣ, ପୃଷ୍ଠ—ପାପୁଲିର ପଛପଟ, ପାପୁଲି ପଦ୍ମରାଗମଣିର ପୀଠ ପରି, ବଳୟ (ହାତର ବଳା) ନିନଦେ (ଶବ୍ଦରେ) ସେ (ସେ ଚିଟାଉକୁ) ସ୍ୱାଗତ କଲା, କରଜ (ଆଙ୍ଗୁଠି) ମୁଦିମାନଙ୍କ କିରଣରେ ପାଦ୍ୟ (ପାଦ ଧୋଇବା ପାଣି) ଦେଲା, ପ୍ରମୋଦରେ ଦରେ (ଅଳ୍ପ କରି) ଯାହା ହସିଲା, ତାହା ଦରେ (ଶଙ୍ଖରେ) ଅର୍ଘ୍ୟ (ପୂଜାପାଣି) ଦେଲା ପରି ହେଲା; ପ୍ରଣୟପ୍ରବାହ ଏଠାରେ ଆଚମନ ପରି। ୩।

ଓଷ୍ଠପୁଟତଟେ ଧଇଲା କପଟେ ସ୍ନେହତ୍ରୟ ଆରମ୍ଭରେ ସେ। ମଞ୍ଜୁଳା। ମନେ ସ୍ୱପୁଣ୍ୟକୁ ଧନ୍ୟ ବୋଇଲା। ମଧଦୃଷ୍ଟି କରି ପୁଣି ଧଇଲା। ଅନାଇଲା ଯତ୍ନେ ବନାଇବା ନବଲେଖ ପତ୍ରିକା ଛଇଲା ସେ। ୪। ଯୁବରାଜ ଅଙ୍ଗୁ ଅଙ୍ଗରାଗସଙ୍ଗୁ କନକ ପାଟ ପରି ଦିଶେ। ମିନା ଲେଖା ଅବା ବର୍ଣ୍ଣଧାଟୀ ସେ। ମଣିଲା ରାମଣୀୟକ ଜଳନିଧି ରମଣୀମଣି ସନ୍ତୋଷେ ସେ। ମଞ୍ଜୁଳା। ରେଖା ରେଖାକେ ଲେଖାଧିପଶିରୀ। ପଦତଳେ କରୁଛି ନଉକରି। ବର୍ଣ୍ଣ ବର୍ଣ୍ଣକରୁ ବଳି ଅର୍ଣ୍ଣବରୁ ପିଇଲା ସୁଧାନିର୍ଝରୀ ସେ। ୫। ଗୁଣ ରୀତି ରସ ଶ୍ଳେଷ ଅନୁପ୍ରାସ ଯମକ ତୁନ୍ଦିଳ ରଚନ। ଧୃତିଧ୍ୱଂସୀ ଏକ ଏକ ବଚନ। ଲୋଚନ ଆଦି ନିଖିଳ ଇନ୍ଦ୍ରିୟରେ ମଣିଲା ସୁଧାସେଚନ ସେ। ମଞ୍ଜୁଳା। ''ଆରେ ବାଳା ମହାରାଜକୁମାରୀ। ନବନୀତ ଶିରୀଷ ସୁକୁମାରୀ। ଧରାମଉଳି ଜଙ୍ଗମ ହେମଚମ୍ପାଝରା ବିଶ୍ୱମନୋହରୀ ରେ। ୬। ବିପ୍ରଯୋଗୀଙ୍କର ସହାୟ ଶଙ୍କର ଏହା ଜାଣିଲେ ହେଲେ ଭଲେ। ତାଙ୍କ ନାମ ନ ଲେଖିଲି ପହିଲେ। ସରିଯାନ୍ତି ଧ୍ୟାନ କରୁ କରୁ ଜ୍ଞାନ ଚନ୍ଦ୍ରଚୂଳ ଜାଳିଦେଲେ ରେ। ମଞ୍ଜୁଳା। ଧୃତି ନ ରଖେ ଯା ଏକ କିରଣ। ପ୍ରାଣତୁଲେ ନ କରେ ସେ କି ରଣ। ଏ ଘେନି ବିଚାରେ ସମସ୍ତ ପ୍ରକାରେ ତୁହି ଏକା ମୋ ଶରଣ ରେ। ୭। ମୋହନ କଳା ମୂର୍ତ୍ତିମନ୍ତ ମନ୍ତର କାରିକା ତାରକେଶାନନା। ସୁଧାପୂର୍ଣ୍ଣ ସୁବର୍ଣ୍ଣଘଟସ୍ତନା। ପରିଜନ ପରିପାଳନେ ଯାହାର ଉଦ୍ରେ ଦୟାଳୁତାବାନା ରେ। ମଞ୍ଜୁଳା। ତୋର ନିସର୍ଗ ଚଞ୍ଚଳ ନୟନ। କର୍ଣ୍ଣେ ଜପ ହେବାରୁ ପ୍ରତିଦିନ। ବନ ଭିତରେ ଭୀତରେ ଅନାରତେ ମୀନଶ୍ରେଣୀ ହେଲା ଲୀନ ରେ। ୮। ନିଖିଳ

---

ମଳୟଜମୁଦ୍ରାଜାଲ— ଚନ୍ଦନରେ ଦିଆଯାଇଥିବା ମୋହର ରୂପ ଆବରଣକୁ ଶିଥିଳାଇ (ହୁଗୁଳା କରି) ତରୁଣ (ଅନଙ୍ଗ ସୁନ୍ଦର)ର ସନ୍ଦେହଗ୍ରନ୍ଥି ତୁଳେ (ସାଙ୍ଗରେ) ଚିଟାଉକୁ ଫିଟାଇଲା ଅର୍ଥାତ୍ ଚିଟାଉ ଫିଟାଇବାରୁ ତରୁଣର ସନ୍ଦେହ ଦୂର ହେଲା। ୪। କରୁ—କରରୁ, ଅନାୟତ୍ତ ଦମ୍ଭରେ—ଧୈର୍ଯ୍ୟ ସମ୍ଭାଳି ନ ପାରି। ୫। ଯୁବରାଜ—ଅନଙ୍ଗସୁନ୍ଦର, ଅଙ୍ଗରାଗସଙ୍ଗୁ—ଜାଫ୍ରାନ୍‌କେଶର ପ୍ରଭୃତି ଅଙ୍ଗରାଗ ଲାଗିଥିବାରୁ; କନକପାଟ—ହଳଦିଆ ପାଟ, ମିନାଲେଖା—ସୁନାରେ ମିନାକାମ ପରି ସେ ବର୍ଣ୍ଣଧାଟୀ (ଅକ୍ଷର ଧାଡ଼ି) ଦିଶୁଅଛି, ରାମଣୀୟକ—ଶୋଭା, ଜଳନିଧି—ସାଗର, ରେଖା ... ପ୍ରତିଗାର ଲେଖାଧିପ (ଇନ୍ଦ୍ର) ଐଶ୍ୱର୍ଯ୍ୟକୁ ତୁଚ୍ଛ କରୁଛି। ବର୍ଣ୍ଣବର୍ଣ୍ଣକରୁ—ଅକ୍ଷର ଚିତ୍ରରଙ୍ଗରୁ, ବଳି ଅର୍ଣ୍ଣବରୁ—ସମୁଦ୍ରଠାରୁ ଅଧିକ। ୬। ତୁନ୍ଦିଳ—ପରିପୂର୍ଣ୍ଣ, ରଚନ—ରଚନା, ଧରାମଉଳି ଇତ୍ୟାଦି—ପୃଥିବୀ ମସ୍ତକର ଗତିଶୀଳ ସୁନାଚମ୍ପା ପୁଷ୍ପଗୁଚ୍ଛସ୍ୱରୂପା। ୭। ବିପ୍ରଯୋଗୀ—ବିରହୀ, (ଶିବ କାମକୁ ଭସ୍ମ କରିଥିବାରୁ) ସେ କାମକ୍ଲିଷ୍ଟ ବିରହୀଙ୍କ ସହାୟ। ଚନ୍ଦ୍ରଚୂଳ—ମସ୍ତକରେ ଥିବା ଚନ୍ଦ୍ରରେଖା, ଧୃତି ନ ରଖେ ... ଯେଉଁ ଚନ୍ଦ୍ରର ଷୋଳକଳାରୁ ଏକ କଳାର କିରଣ (ଶିବଙ୍କ ମୁଣ୍ଡରେ ଥିବା) ଧୈର୍ଯ୍ୟ ନଷ୍ଟ କରି ଦିଏ, ତାହାର ସମଗ୍ର କିରଣ ଜୀବନ ନେବାକୁ ଯୁଦ୍ଧ କରେ ନାହିଁ କି? (ଚନ୍ଦ୍ରକିରଣ ବିରହୀଙ୍କ ପକ୍ଷରେ ଅସହ୍ୟ)। ୮।

ଗୁଣଗଣବତୀ ଯୁବତୀ ସୀମନ୍ତମଣୀ ସାମନ୍ତାଣୀ । କଳକଣ୍ଠ କୂଜନଠାଣି ବାଣୀ । ତୋ ସଙ୍ଗୀତବିଦ୍ୟା ତେଡ଼େ ବିଶାରଦା ଶାରଦା ନ ଥିବେ ଜାଣି ରେ । ମଞ୍ଜୁଳା । ତୁ ଯେ ବିବେକୀଙ୍କ ଶିରୋଭୂଷା । ଶେଷଦେବ ହୋଇବେ ଲୋକହସା । ଏକ ସହସ୍ରବଦନେ ଆରମ୍ଭିବେ ଯେବେ ତୋହର ପ୍ରଶଂସାରେ । ୯ । ମଣୁଅଛି ବ୍ରହ୍ମପଦ ତୋର ପଦତଳେ ପଶିଅଛି ଶରଣ । ହଂସଭୂଷଣ ହଂସସଞ୍ଚରଣ । ରଜୋଗୁଣରାଗ ଜାଗରୂକ ହୋଇ ଦିଶେ ଅତ୍ୟନ୍ତ ଅରୁଣ ରେ । ମଞ୍ଜୁଳା । ଜନ୍ମ ଆକର ଆକାର ଧରିଛି । ନଖକାନ୍ତି ମକରନ୍ଦ ଝରୁଛି । ଚୁମ୍ବନଲାଳସ ହୋଇ ମୋ ମାନସମିଳିନ୍ଦ ଅନୁସରିଛି ରେ । ୧୦ । ଭଜିଛି ତୋ ଊରୁଯୁଗକୁ ଅଖଣ୍ଡ ଲକ୍ଷ୍ମୀ ଆଖଣ୍ଡଳ ପଦବୀ । ରମ୍ଭାରୁଚି ଯହିଁରେ ଅଛି ସେବି । ପୁଲକେ ରୋମଜାଳମୂଳେ ଯାହାର ଭଜେ ଶତକୋଟି ଛବି ରେ । ମଞ୍ଜୁଳା । ନେତ୍ର ସହସ୍ର ଅର୍ଥେ କିଣା ଯାର । ଲୀଳା ଐରାବତ କର ସଞ୍ଚାର । ଲେଖାମାନଙ୍କେ ପ୍ରଶଂସାଯୋଗ୍ୟ ରୂପ ଯାହା ସମୀପ ଶଚୀର ରେ । ୧୧ । ପତିତ ନେତ୍ରକୁ ଅଦୃଶ୍ୟ ହେବାରୁ ଉଦର ତୋର ବିଷ୍ଣୁପଦ । ପାଶେ ନାଭି ବିରଜାନାମ ହ୍ରଦ । ତାହା ମଧ ବିକଶିତ ସରୋଜରୁ ପ୍ରସରିବାରୁ ଆମୋଦ ରେ । ମଞ୍ଜୁଳା । ଧାଇଁଅଛି ରୋମାଳି ଭୃଙ୍ଗରାଜି । କୃଷ୍ଣ ଶ୍ରୀଅଙ୍ଗ କଳାକାନ୍ତି ବାଜି । ଶେଷଦେବ ଅବା ଅଛନ୍ତି ମଘବାମଣି ନୀଳିମାକୁ ଭଜି ରେ । ୧୨ । ନବୋଦ୍ଭବସୁଧାମଧୁରାଧରା ତୋ କୁଚକୁମ୍ଭ ଶମ୍ଭୁଯୁଗଳ । ଶିବଲୋକ ଏଣୁ ତୋ ବକ୍ଷସ୍ଥଳ । ପଡ଼ିଛି ତହିଁକି ନିଃଶ୍ରେଣୀ ସୋପାନ ରୂପରେ ମାହେନ୍ଦ୍ରନୀଳ ରେ । ମଞ୍ଜୁଳା ।

---

ମୋହନ ... କାରିକା—ତୁ ବିମୋହନ ମନ୍ତ୍ରଧାଡ଼ି ପରି, ତାରକେଶାନନା—ଚନ୍ଦ୍ରବଦନା, ବନଭିତରେ—ପାଣି ମଧରେ, ଭୀତରେ— ଭୟରେ, ଅନାରତେ—ସର୍ବଦା । ୯ । ବିଶାରଦା—ପଣ୍ଡିତା, ଶାରଦା—ସରସ୍ୱତୀ, ଶେଷଦେବ—(ସହସ୍ରମୁଖ) ଅନନ୍ତଦେବ । ୧୦ । ବ୍ରହ୍ମପଦ—ବ୍ରହ୍ମାଙ୍କ ଐଶ୍ୱର୍ଯ୍ୟ, ହଂସଭୂଷଣ—ହଂସ (ପରମ ବ୍ରହ୍ମ) ଭୂଷଣ (ହୃଦୟାରାଧ) ଯାହାଙ୍କର, ହଂସ (ନୂପୁର) ଭୂଷଣ (ଅଳଙ୍କାର) ଯାହାର । ହଂସସଞ୍ଚରଣ—ହଂସବାହନ ଓ ହଂସ ପରି ଧୀରଗମନ; ରଜୋଗୁଣ ... ବ୍ରହ୍ମା ରଜୋଗୁଣ ବଶବର୍ତ୍ତୀ ହୋଇ ସୃଷ୍ଟି କରନ୍ତି, ତୋ ଚରଣ କୁଙ୍କୁମକେଶରାଦିର ଧୂଳିଦ୍ୱାରା ରକ୍ତବର୍ଣ୍ଣ, ଜନ୍ମଆକର ... ବ୍ରହ୍ମାଙ୍କ ଜନ୍ମସ୍ଥାନ ପଦ୍ମ, ତୋ ଆକୃତି ପଦ୍ମ ପରି ହେବାରୁ ତହିଁରୁ ନଖଶୋଭାରୂପ ମକରନ୍ଦ ଝରୁଛି, ମାନସ ମିଳିନ୍ଦ—ମନରୂପ ଭ୍ରମର । ୧୧ । ତୋ ଜଙ୍ଘ ଦୁହିଙ୍କୁ ଅନନ୍ତ ଶୋଭାପୂର୍ଣ୍ଣ ଇନ୍ଦ୍ରପଦ ଆଶ୍ରୟ କରିଛି । ରମ୍ଭାରୁଚି—କଦଳୀ ଗଛପରି ମନୋହର ଓ ରମ୍ଭା ନାମକ ସ୍ୱର୍ବେଶ୍ୟାଦ୍ୱାରା ମନୋହର, ପୁଲକେ— ରୋମାଞ୍ଚବେଳେ, ରୋମଜାଳମୂଳେ— ରୋମମାନଙ୍କ ମୂଳରେ, ଶତକୋଟି—ବଜ୍ର ଓ ବହୁସଂଖ୍ୟକ, ଛବି—ଶୋଭା, ନେତ୍ରସହସ୍ର ଅର୍ଥେ—ସହସ୍ରନେତ୍ର ଇନ୍ଦ୍ରଙ୍କ ପାଇଁ ଏବଂ ଅସଂଖ୍ୟ ଚକ୍ଷୁରୂପ ଧନଦ୍ୱାରା, ଲୀଳା ... ଇନ୍ଦ୍ରତ୍ୱରେ ଐରାବତ ହସ୍ତୀର ଶୁଣ୍ଢ ସଞ୍ଚାଳନ ଶୋଭାପାଏ, ତୋର ଊରୁ ଐରାବତର ଶୁଣ୍ଢାଦଣ୍ଡ ଭଳି, ଲେଖା—ଦେବତା ଓ ଚିତ୍ର ଇନ୍ଦ୍ରତ୍ୱ ଶଚୀଙ୍କ ସମୀପରେ ଥାଏ ଓ ତୋ ଊରୁର ଚିତ୍ର ଶଚୀଙ୍କ ପ୍ରଶଂସନୀୟ । ୧୨ । ପତିତ—ପାପୀ, ଅପୁଣ୍ୟବାନ୍; ବିଷ୍ଣୁପଦ—ବିଷ୍ଣୁଙ୍କ ପାଦ,

ଚିରନ୍ତନ ପୁଣ୍ୟରୁ ନାହିଁ ଲେଶ । ତେବେ ଆରୋହୀ ତହିଁ ମୋ ମାନସ । ଶଙ୍କର ସାଯୁଜ୍ୟ ଲକ୍ଷ୍ମୀ ଲାଭପାଇଁ କରିଛି ମହା ସାହସ ରେ । ୧୩ । ଯେବେ ମୋର ପୂର୍ବ ତପ ଅତି ଖର୍ବ ଘେନ ସୁକୁନ୍ଦବରଦନ୍ତି । ଏ ଢଣାଣଯୋଗ୍ୟ ଯେବେ ନୁହନ୍ତି । କର୍ମବଳ ଥିଲେ ସିନା ପରବଳେ ଶୁଭାଶୁଭେ ଲୋକ ମତି ରେ । ମଞ୍ଜୁଳା । ଯେବେ ମୋହର କର୍ମବଳ ନାହିଁ । କୃପାନିଧି ରେ ପୂର୍ଣ୍ଣଚନ୍ଦ୍ରମୁହିଁ । ସଞ୍ଚିବାକୁ ଧର୍ମ ମୋର ଶୁଭକର୍ମଦାୟିନୀ ହୋଇବୁ ତୁହି ରେ । ୧୪ । ଯେ ଧନୀ ତାକୁ ଧାତା ଧନୀ କରିଛି ପ୍ରଭୁ କରିବ ଆଉ କିସ । ଯାର ପ୍ରତିଦିବସେ ଉପବାସ । ତାହାକୁ ଧନୀ କଲେ ସିନା ପ୍ରସରେ ଭୁବନମଣ୍ଡଳେ ଯଶ ରେ । ମଞ୍ଜୁଳା । ଶସ୍ୟକେଦାର ଉପକାର ସରେ । ବୃଷ୍ଟିକଲେ ଘନ କୀର୍ତ୍ତି ପ୍ରସରେ । ଜଳଧିରେ ବରଷିଲେ କାହିଁ ଭାଗ୍ୟ ତାହାର ଯେ ଯଶ ଲେଶରେ । ୧୫ । ତୁ ବିଶ୍ୱମ୍ଭରାଚକ୍ରବର୍ତ୍ତିକୁମାରୀ ନ ଜାଣୁ ରବିଦରଶନ । ଦରଶନକୁ ତହିଁ ମୋର ମନ । ସୁରଶାଖିଶିଖାଶାଖାରୁ କୁସୁମ ତୋଳି ଲୋଡୁଛି ବାମନ ରେ । ମଞ୍ଜୁଳା । ପ୍ରତି ଜନ୍ମାନ୍ତରେ ହୋଇ ବିମୁଖ । ହର ଉଚ୍ଚାରି ନାହିଁ ଯାହା ମୁଖ । ସେ ପୁଣି କାମନା କରେ ଲଭିବାକୁ ଗୀର୍ବାଣଗଣନା ସୁଖ ରେ । ୧୬ । ଜଗତୀ ଭିତରେ ମୋ ବିନା ଇତରେ ଏପରି ନ ଥିବ ଦୁର୍ବୋଧ । ଏଥି ହୁଅନ୍ତା ମହା ଅପରାଧ । ଜାଣୁ ଶିରୋମଣି ତୁ ତ ଜାଣି ଜାଣି ନ ଚିନ୍ତିବୁ ଦାସ ବାଧ ରେ । ମଞ୍ଜୁଳା । ମୋର କରୁଣା ଥିବା ଘେନି ଏକା । ଚିରେ ହେବାରୁ ମୋ ବିନାଶ ଦକା । ଟେକାଇଲୁ କ୍ଷମାଚକ୍ରବାଳେ କ୍ଷମାଜଳଧି ନାମେ ପତାକା ରେ । ୧୭ । ଏଡ଼େ ପ୍ରଭୁପଣ ଦେଖାଇବା ଗୁଣ ଶୁଝିବା ଯୋଗ୍ୟ ଯେ ନୋହିଲି । ମୁଁ ତୋ ଚାକର ବୋଲି ନ କହିଲି । ରାତିଏ ହେଲେ ମୋ ଛାତିକି ସୁପାତି କରି ତତେ ନ

ନାଭିବିରଜା—ତୀର୍ଥବିଶେଷ ଓ ବିରଜା (ମଳିନତାଶୂନ୍ୟ) ନାଭିଦେଶ, ରୋମାଳି (ନାଭିନିମ୍ନସ୍ଥ ରୋମରେଖା) ରୂପ ଭ୍ରମରସମୂହ ଧାଇଁଛି କି ? ଅଥବା ଶେଷଦେବ (କୃଷ୍ଣଙ୍କ ଶଯ୍ୟା) କୃଷ୍ଣଙ୍କ ଶରୀର କାଳିମା ଲାଗିବାରୁ କଳା ହୋଇ ରୋମ ରେଖାରୂପରେ ମଘବାମଣି—ନୀଳିମା (ଇନ୍ଦ୍ରନୀଳମଣିର କୃଷ୍ଣତ୍ୱ)କୁ ପାଇଲେ କି ? । ୧୩ । ନବୋଦ୍ଭବ ... ନୂତନ ଜାତ ହୋଇଥିବା ଅମୃତଦ୍ୱାରା ମଧୁର ହୋଇଅଛି ଅଧର ଯାହାର, ଶିବଲୋକକୁ ଯିବାପାଇଁ ସେହି ରୋମରେଖାରୂପରେ ଇନ୍ଦ୍ରନୀଳମଣିରେ ତିଆରି ନିଶୁଣି (ପାହାଚ) ପଡ଼ିଛି । ଶଙ୍କରସାଯୁଜ୍ୟଲକ୍ଷ୍ମୀ —ଶିବଙ୍କ ସଙ୍ଗେ ଏକ ହୋଇ ମିଳିଯିବା ସୌଭାଗ୍ୟ । ୧୪ । ଅତିଖର୍ବ—ଅତ୍ୟଳ୍ପ, ସୁକୁନ୍ଦବରଦନ୍ତି—ହେ ସୁନ୍ଦର କୁନ୍ଦପୁଷ୍ପଦଶନା, କର୍ମବଳ ଥିଲେ ଲୋକର ଶୁଭ ବା ଅଶୁଭ କର୍ମରେ ମତି ପ୍ରବଳ ହୁଏ ସିନା । ୧୫ । ପ୍ରଭୁ—ସ୍ୱାମୀ ବା ରାଜା, ଶସ୍ୟକେଦାରେ—ଧାନକିଆରୀରେ, ଉପକାରସରେ—ଉପକାର କରୁଥିବା ପୋଖରୀରେ । ୧୬ । ବିଶ୍ୱମ୍ଭରା ... ପୃଥିବୀର ଶ୍ରେଷ୍ଠ ରାଜାଙ୍କ କନ୍ୟା, ନ ଜାଣୁ ରବିଦରଶନ—ଅନ୍ତଃପୁରସ୍ଥା ରାଜଯୋଷାଙ୍କୁ ଅସୂର୍ଯ୍ୟମ୍ପଶ୍ୟା କୁହାଯାଏ ଅର୍ଥାତ୍ ସେମାନେ ସୂର୍ଯ୍ୟଙ୍କୁ ସୁଦ୍ଧା ଦେଖନ୍ତି ନାହିଁ । ସୁରଶାଖିଶିଖାଶାଖାରୁ—କଳ୍ପବୃକ୍ଷର ଅଗରେ ଥିବା ଡାଳରୁ, ଗୀର୍ବାଣଗଣନାସୁଖ—ଦେବତାଙ୍କର ପ୍ରାପ୍ୟ ସୁଖ । ୧୭ । ଦାସବାଧ—ଭୃତ୍ୟର ଅମଙ୍ଗଳ,

ବହିଲି ରେ । ମଞ୍ଜୁଳା । ମାରି ବୋଲାଉଛି ଯେ ବାହାଦୂର । ଦୂର କରି ସେ ରତିନାହାଦର । ହେଲି ନାହିଁ ଯେ ତୋ ଜଳଜଜିତ୍ୱର ପାଦର ପୋଛା ଚାଦର ରେ । ୧୮ । ଜଗତୀ ବାହୁଡ଼ା ସମୟେ ପାହାଡ଼ା ହୁଅନ୍ତି ତୋ ଚରଣତଳେ । ଅବା ଜମି ରହନ୍ତି ଲାକ୍ଷାବୋଳେ । ହୁଅନ୍ତି ଅବା ଅକପଟେ ମୁଁ ପଟେ ମଣିକଠାଉ ଯୁଗଳେ ରେ । ମଞ୍ଜୁଳା । ଦାସୀସମୂହେ ଜଣେ ହୋଇ ଅବା । କରୁଥାନ୍ତି ତୋ ଶ୍ରୀ ଛାମୁରେ ସେବା । ହେମପିକଦାନୀ ଦାନୀ ହୋଇ ମୋର କରେ କରନ୍ତୁ ମଘବା ରେ । ୧୯ । ହେବା କ୍ଷଣି ଜଣା ଶ୍ରୀଅଙ୍ଗ ମାଜଣା ସରିବା ସମୟ ପ୍ରବେଶ । ସିଞ୍ଚ୍ ଅତର ଉଞ୍ଚା କୁଞ୍ଚା ବାସ । ହାଜର ହୋଇବା ଚାହିଁ ପ୍ରକାଶନ୍ତେ ଓଷ୍ଠ ଭିଡ଼ା ମନ୍ଦହାସ ରେ । ମଞ୍ଜୁଳା । ଲୀଳାଦର କମ୍ପି ଗଣ୍ଡମଣ୍ଡଳ । ମଣ୍ଡି ଝଲକା ମୋତି ପ୍ରତିଫଳ । ଚଳାଚଳ ଡୋଳା ଇନ୍ଦୀବରମାଳା ଦୋଳାପରି ହେଉ ଲୋଳ ରେ । ୨୦ । ଚତୁର୍ଦ୍ଦଶ ଲୋକ ସଉନ୍ଦର୍ଯ୍ୟଯାକ ସେକାଳେ ଶ୍ରୀମୁଖରେ ଦେଖି । କୃତକୃତ୍ୟ ହୁଅନ୍ତା ବେନି ଆକ୍ଷି । ଆଉ ଅବା କେଉଁ ଭାଗ୍ୟ ନ ଦିଅନ୍ତା ତୋ ସେବା କଳପଶାଖୀ ରେ । ମଞ୍ଜୁଳା । ପୀଠ କରି କଞ୍ଜ-ଦଳ ତଳପ । ନିତି କରନ୍ତି ବାଳାମନ୍ତ୍ର ଜପ । ରସିକରାଜ୍ୟେ ଅଭିଷିକ୍ତ ହୋଇବା ପାଇଁ କରି ସଂକଳପ ରେ । ୨୧ । ଲାବଣ୍ୟସରସୀମଧ ବିଳସିତ ସରସୀରୂହମୁଖ ତୋର । ତହିଁ ଖେଳିବାର ନେତ୍ର ମନ୍ଦିର । ହୋଇବ ସୁଯୋଗେ ନୟନ ଅୟନ ଅତିଥି ପୁଣି ମୋହର ରେ । ମଞ୍ଜୁଳା । ବେଣୀଫଣୀ ଝୁମ୍ପା ଫଣା ଶ୍ରୀହରି । ଟେକାଇଲେ ମୋ ଶିରେ ଛତ୍ର କରି । ସେହିଦିନ ମୋର ଅଂସ ଅବତଂସ ହେବ ଯୁବରାଜଶିରୀ ରେ । ୨୨ । ତୋ ଅଙ୍ଗଦେଶ ସହଜେ ଅଙ୍ଗଦେଶ କାଶ୍ମୀର ତୋ କୁଚଯୁଗଳେ । ଅଛି କୁନ୍ତଳ କୁଟିଳ କୁନ୍ତଳେ । କାମରୂପ ପ୍ରତି ଅଙ୍ଗରେ ବସତି କରିଅଛି ସବୁକାଳେ ରେ । ମଞ୍ଜୁଳା । ଭୂପାଳରୁ ତୁ

---

କ୍ଷମାଚକ୍ରବାଳ—ପୃଥିବୀମଣ୍ଡଳ, କ୍ଷମାଜଳଧି—କ୍ଷମାସାଗର, କ୍ଷମାବତୀ । ୧୮ । ସୁପାତି—ଶଯ୍ୟା, ବାହାଦୂର—ସାହସୀ ବୀର, ଜଳଜଜିତ୍ୱର ପାଦର—ଯେଉଁ ପାଦପଦ୍ମକୁ ଜିଣିଅଛି । ୧୯ । ଜଗତୀବାହୁଡ଼ା ସମୟେ ପାହାଡ଼ା—କୋଠାକୁ ଫେରିବାବେଳେ ବାଟରେ ପଡ଼ିଥିବା ବସ୍ତ୍ର, ଲାକ୍ଷାବୋଳେ—ଅଳତାରସରେ, ହେମପିକଦାନୀ ... ମୋତେ—ସୁନା ପିକଦାନୀ ମୋ ହାତରେ ଦେଇ ଅବା ମୋତେ ମଘବା (ଇନ୍ଦ୍ର) କରନ୍ତୁ । ୨୦ । ମାଜଣା—ସ୍ନାନ, ଉଞ୍ଚା କୁଞ୍ଚାବାସ—ସମାନ ଭାବରେ କୁଞ୍ଚା ହୋଇଥିବା ଲୁଗା, ଲୀଳାଦର ... ସକୌତୁକ ସ୍ନେହରେ କମ୍ପୁଥିବା ଗଣ୍ଡଦେଶକୁ ଝଲକା (କାନର ଏକପ୍ରକାର ଭୂଷଣ)ର ମୋତିର ପ୍ରତିବିମ୍ବଦ୍ୱାରା ମଣ୍ଡିତ କରି, ତୋର ଚଳାଚଳ ଡୋଳା ଇନ୍ଦୀବର (ନୀଳପଦ୍ମ) ମାଳାର ଦୋଳା (ଆନ୍ଦୋଳନ) ପରି ହୁଅନ୍ତେ । ୨୧ । ତୋ ସେବାରୂପ କଳ୍ପବୃକ୍ଷ, ପୀଠ—ଉଚ୍ଚାସନ, କଞ୍ଜଦଳତଳ୍ପ—ପଦ୍ମପତ୍ର ଆସନୀ । ୨୨ । ଲାବଣ୍ୟ ... ତୋର ପଦ୍ମରୂପ ମୁଖ ଲାବଣ୍ୟରୂପ ପୋଖରୀ ମଧରେ କ୍ରୀଡ଼ା କରୁଛି । ଚକ୍ଷୁ ଦୁଇଟି ତହିଁରେ ମନ୍ଦିର ପରି । ମୋ ନୟନ ସେ ମନ୍ଦିରରେ ପୁଣି କେବେ ସୁଯୋଗରେ ଅୟନଅତିଥି (ବାଟୋଇ କୁଳୁଆଁ) ହେବ,

ଲଭିଛୁ ଜନମ । କଣ୍ଠେ ଅଛି ମାଳବର ସଙ୍ଗମ । ନିଚୋଳ ପ୍ରତିଦିନ ଲାଗି ହେଉଛୁ କାଞ୍ଚୀରେ ମଧ ସୁଷମ ରେ । ୨୩ । ତୋ ବିନା ଭବନ ବନ ଘେନି ମନ ଦେଶାଟନେ କଲେ ପ୍ରବେଶ । ଦୁଃଖପାସୋରା ଚାତୁରୀ ପ୍ରକାଶ । ହୋଏ ବୋଲି ବିଚାରିଲେ ତୋ ତନୁରେ ଅଛନ୍ତି ନିଖିଳ ଦେଶ ରେ । ମଞ୍ଜୁଳା । ତାହା ବିନା ଗଲେ ଆନ ଦେଶକୁ । ଆଉ ପାଇବି କି ସୁଖ ଲେଶକୁ । ସକଳ ଦେଶ ଚତୁର ଭାବ ହେବ ଭଜିଥିଲେ ତୋ ପାଶକୁ ରେ । ୨୪ । ଭାଗୀରଥୀଧାର ଉର ମୁକ୍ତାହାର ଯମୁନା ନୀଳ ରୋମରାଜି । କଣ୍ଠେ ସରସ୍ୱତୀ ଅଛି ବିରାଜି । ନର୍ମଦା ଲକ୍ଷଣଯାକ ପ୍ରତିପଦେ ତତେ ସିନା ଅଛି ଭଜିରେ । ମଞ୍ଜୁଳା । ଓଷ୍ଠ ମାଣିକ୍ୟ ତାରା ଇନ୍ଦ୍ରନୀଳ । ନଖ ହୀରକ ଦନ୍ତ ମୋତିଫଳ । ରତ୍ନାକର ତୁହି ଏ ଘେନି ନିଖିଳ ତୀର୍ଥ ତୋ ତନୁରେ ଠୁଳ ରେ । ୨୫ । ମକରଧ୍ୱଜତାପପାପନାଶିନୀ ଯୋଗ କେଉଁକାଳେ ଘଟିବ । ମୋର ମଜ୍ଜନେ କଳୁଷ ତୁଟିବ । ଏପରି କରୁଣା କରିବେ କେବେ ତୋ ପୟୋଧରେଶ୍ୱର ଶିବ ରେ । ମଞ୍ଜୁଳା । ତାଙ୍କ ସମୀପେ ଗୋଦାନ କରିବି । କରଯୋଡ଼ି କି ସନ୍ତୋଷେ ଭରିବି । ସଂସାର ଗୁରୁ ଯାତନାଯାକ ବିନା ଆୟାସରେ ପାସୋରିବି ରେ । ୨୬ । ଗମନେ ତୋହର ଅଛି ନାଗେଶ୍ୱର ଅବଲୋକନରେ ଅଶୋକ । ଶ୍ରୀଛାମୁରେ ଦାସୀ ଛନ୍ତି ଅନେକ । ମୁଖପଙ୍କେରୁହ ଶ୍ରବଣ ପାଟଳୀ ଅଧର ଜୀବ ସ୍ତବକ ରେ । ମଞ୍ଜୁଳା । ନବ ପଲ୍ଲବ ଚାରୁ ପାଣିପାଦ । କଳପଞ୍ଚମାଳାପ କଣ୍ଠନାଦ । ଭୃଙ୍ଗଧ୍ୱନି କିଛି ଅରାଜି କରିବା ସମୟ ଉହୁଁ ଶବଦ ରେ । ୨୭ । କନ୍ଦୁକ କେଳି ଅବସାନେ ସୁମନ୍ଦ ନିଃଶ୍ୱାସ ଚନ୍ଦନ ପବନ ; ଧନ ତୋ ତନୁ ବାସନ୍ତିକ ବନ । ତହିଁ ଯେ ବିହାର କରୁଅଛି ହରବିରୋଧୀ ତୁଲେ ମୋ ମନ

---

ଅର୍ଥାତ୍ ସତେ ସୁଯୋଗରେ ତୋର ମୋର ଚକ୍ଷୁ ମିଳିତ ହେବ ? ବେଣୀଫଣୀ ... ଭଗବାନ ତୋ ବେଣୀରୂପ ସର୍ପୀର ଝୁମ୍ପା (ଫୁଲି) ରୂପ ଫଣାକୁ ମୋ ମୁଣ୍ଡରେ ଛତ୍ରପରି ଟେକାଇଲେ । ସେ ଦିନ ଯୁବରାଜଲକ୍ଷ୍ମୀ ମୋ ଅଂସ ଅବତଂସ (କାନ୍ଧର ଅଳଙ୍କାର) ହେବେ । ଅର୍ଥାତ୍ ମୁଁ ସେ ଦିନ ଯୁବରାଜଶ୍ରୀ କାନ୍ଧରେ ବହିବି । (ଭଗବାନ ମଧ ଫଣୀପଣାକୁ ନିଜ ମୁଣ୍ଡ ଉପରେ ଛତ୍ର ପରି କରିଅଛନ୍ତି) । ୨୩ । କାଶ୍ମୀର—ଦେଶବିଶେଷ ଓ ଜାଫ୍ରାନକେଶର, କୁନ୍ତଳ—ଦେଶବିଶେଷ ଓ କେଶ, କାମରୂପ—ଦେଶବିଶେଷ ଓ କନ୍ଦର୍ପର ସୌନ୍ଦର୍ଯ୍ୟ, ଭୂପାଳ—ଦେଶବିଶେଷ ଓ ରାଜା, ମାଳବର—ରାଜ୍ୟବିଶେଷର ଓ ଶ୍ରେଷ୍ଠମାଳା, ନିଚୋଳ—ଚୋଳରାଜ୍ୟ ଓ ଉତ୍ତରୀୟ ବସ୍ତ୍ର, କାଞ୍ଚି—ରାଜ୍ୟଖଣ୍ଡ ଓ କଟିଭୂଷଣ ମେଖଳା । ୨୫ । ନର୍ମଦା—ନଦୀ ଓ ସୁଖପ୍ରଦ, ରତ୍ନାକର—ସମୁଦ୍ର ଓ ନାନା ରତ୍ନର ଆଧାର, ମକରଧ୍ୱଜତାପପାପନାଶିନୀ ଯୋଗ—କନ୍ଦର୍ପ ତାପରୂପ ପାପନାଶିନୀ ଯୋଗ ଓ ତାପ ପାପନାଶିନୀ ସମୁଦ୍ର ସ୍ନାନଯୋଗ, ଗୋଦାନ—ଗୋରୁଦାନ ଓ ଚକ୍ଷୁଦାନ ଅର୍ଥାତ୍ ଆଖିରେ ଦେଖିବା । ୨୭ । ନାଗେଶ୍ୱର— ହସ୍ତିଶ୍ରେଷ୍ଠ ଓ ନାଗେଶ୍ୱର ଫୁଲ, ଅଶୋକ—ଦୁଃଖର ଅଭାବ ଓ ଅଶୋକ ଫୁଲ, ଦାସୀ—ଭୃତ୍ୟା ଓ ଦାସକେରଣ୍ଡା ଫୁଲ, ପଙ୍କେରୁହ—ପଦ୍ମ, ପାଟଳୀ—ପାଟଳୀ ଫୁଲ, ଜୀବସ୍ତବକ—ବଧୁଲିଫୁଲପେଣ୍ଡା, ଅରାଜି କରିବା

ରେ । ମଞ୍ଜୁଳା । ସେ ତ ପ୍ରଧାନ ପାଟଚ୍ଚର କର—ଅପହାରକ ବିରହୀ ରଙ୍କର । ଧରିଛି ମୋ ମନ ତୋ ରୁଚି ରତନ ତହିଁକି ଉପାୟ କର ରେ । ୨୮ । ଦିବସ ରଜନୀ କରି ଇନ୍ଦ୍ରଜାଲ ମାୟାବୀ ଭେଟାଇବା ଦିନ । ଯେଉଁ ଶୋଭା ଦେଖିଅଛି ନୟନ । ଯେତେ ସୁଭାଗ୍ୟ ଦେଉଛି କେତେ ଜନ୍ମେ ପାସୋରି ପାରିବ ମନ ରେ । ମଞ୍ଜୁଳା । କଲୁ ମୋଠାରେ ଯେତେ ଅନୁଗ୍ରହ । ତହିଁ ପ୍ରମାଣ ଏକା ଅବିଗ୍ରହ । ସେ ପୁଣି ଅଦୃଶ୍ୟ ହୋଇଲା ରହିଲା କେଡ଼େ ନିରାଟ ମୋ ଦେହ ରେ । ୨୯ । ମୂନେ ଗରଳ ପୁଙ୍ଖରେ ସୁଧା ଦେଇ ବିନ୍ଧିଲୁ ନେତ୍ର କଳମ୍ବରେ । ମୋଡ଼ି ଦେଲୁ ଯା ଲଜ୍ଜା ଆଡ଼ମ୍ବରେ । ଗର୍ଭରେ ବୁଡ଼ି ପତ୍ରୀ ଭାଜି ରହିଲା ମୋର ମରମ ଶମ୍ବରେ ରେ । ମଞ୍ଜୁଳା । ଲକ୍ଷା ଛାଡ଼ି ନଥିଲା ମୋ ମୁଣ୍ଡରୁ । ସ୍ନେହଚୁମ୍ବ ପାନବୋଳ ଗଣ୍ଡରୁ । ଅଧର ବନ୍ଧୁଲୀ ମଧୁର ମାଧୁର୍ଯ୍ୟ ଛାଡ଼ି ନଥିଲା ତୁଣ୍ଡରୁ ରେ । ୩୦ । କୁଚକଳଶୀ କୁଙ୍କୁମ ସଉରଭ ସମ୍ପତ୍ତି ଉରେ ଥିଲା ପୂରି । ଶ୍ରୁତିଯୁଗେ ବାଣୀ ସୁଧାନିର୍ଝରୀ । ହୃଦୟନଦରେ ପ୍ରସରି ଗଲା ତୋ ପରମ ରସଲହରୀ ରେ । ମଞ୍ଜୁଳା । ଏ କି କହିବାର କଥା ଇତରେ । କେ ବା ସତ୍ୟ କରିବ ଜଗତରେ । ତ୍ରିଲୋକ ସମ୍ପଦଯାକ ଜମା ହୋଇଅଛି ନୟନ ଭିତରେ ରେ । ୩୧ । ଇନ୍ଦ୍ରନୀଳଚୂଡ଼ୀ ସଞ୍ଚାର ସୁଷମା ସଞ୍ଚାର କରାଇ ଚରମେ । ମଜ୍ଜାଇଲୁ ବ୍ରହ୍ମାନନ୍ଦ ଶରମେ । ମାୟା ଅବସାନ ଦଣ୍ଡେ ପୁଣି ଏଡ଼େ ଦଣ୍ଡ ଥିଲା ଏ କରମେ ରେ । ମଞ୍ଜୁଳା । ଏବେ ନ କଲେ ଏ ସୁଖ ସାକ୍ଷାତ । ହେବ ନାହିଁ ଏ ଜୀବନ ରକ୍ଷା ତ । ଦୀନାନୁକମ୍ପନହୀନା ବୋଲି ହେବ

---

—ଅନିଚ୍ଛା ପ୍ରକାଶ କରିବା । ୨୮ । କନ୍ଦୁକକେଳି —ପେଣ୍ଡୁଖେଳ, ବାସନ୍ତିକବନ—ନିଆଳୀଫୁଲ ବଗିଚା, ହରବିରୋଧୀ—କନ୍ଦର୍ପ, ପାଟଚ୍ଚର— ଚୋର, କରଅପହାରକ—ହାତରୁ ଯେ ଚୋରିକରି ନେଇଯାଏ, ରୁଚିରତନ—ସୌନ୍ଦର୍ଯ୍ୟରୂପ ରତ୍ନ । ହେ ଧନ, ତୋ ଶରୀର ରୂପ ନିଆଳୀବନରେ କନ୍ଦର୍ପ ସଙ୍ଗେ ମୋ ମନ ବୁଲୁଅଛି, ପେଣ୍ଡୁଖେଳ ଶେଷରେ ତୋର ଧୀର ନିଃଶ୍ୱାସରୂପ ଚନ୍ଦନ ପବନ; ହାତରୁ ଘେନି ପଳାଇଯିବା ଗୋଟାଏ ବଡ଼ ଚୋରପରି, ମୁଁ ରଙ୍କ (ଦରିଦ୍ର ବିରହୀ) ଅଟେ, ମନରେ ତୋର ଯେଉଁ ସୌନ୍ଦର୍ଯ୍ୟ ରୂପ ରତ୍ନକୁ ଧରିଛି ତାକୁ ସେ ଘେନି ପଳାଇ ଯିବଟି, ସେଥିପାଇଁ ଉପାୟ କର । ୨୯ । ଇନ୍ଦ୍ରଜାଲମାୟାବୀ (ଐନ୍ଦ୍ରଜାଲିକ) ଦିନକୁ ରାତି କରି ଦେଇ ଯେଉଁଦିନ ତୋତେ ମୋତେ ଏକତ୍ର ମିଳାଇ ଦେଇଥିଲା ସେଦିନ ମୋ ଆଖି ଯେଉଁ ଶୋଭା ଦେଖିଛି, ସେ ଶୋଭା ମୋତେ ଯେତେ ସୌଭାଗ୍ୟ ଦେଉଛି, ଅଶେଷ ଜନ୍ମରେ ମୁଁ ତାହା ଭୁଲିଯିବି କି ? ଅବିଗ୍ରହ—ଅତନୁ, କନ୍ଦର୍ପ (ଏଠାରେ ମନ ?), ନିରାଟ—ନିଷ୍ଠୁର । ୩୦ । ନେତ୍ରକଳମ୍ବ—ଚକ୍ଷୁରୂପ ଶର, ତାହାର ମୂନରେ ବିଷ ଓ ପୁଙ୍ଖ ଅର୍ଥାତ୍ (ବାଣର ପକ୍ଷ ଲାଗିଥିବା) ମୂଳ ଅଂଶରେ ଅମୃତ ଦେଇ ମୋତେ ବିନ୍ଧିଲୁ । ଲଜ୍ଜାର ଆଡ଼ମ୍ବରରେ (ଶୋଭାରେ) ନେତ୍ର ମୋଡ଼ି ଦେଲୁ, ଅର୍ଥାତ୍ ବୁଲାଇ ନେଲୁ । ସେ ପତ୍ରୀ (ଶର) ମୋ ମର୍ମରୂପ ଶମ୍ବର (ମୃଗର) ଗର୍ଭରେ ପଶିଯାଇ ଭାଜି ରହିଗଲା । ତୋ ପାଦରେ ମୋ ଶିର ଲଗାଇଥିବାରୁ ଲାକ୍ଷା (ତୋ ପାଦର ଅଳତାରଙ୍ଗ) ମୋ ମୁଣ୍ଡରୁ ଛାଡ଼ି ନ ଥିଲା । ୩୧ । ଶ୍ରୁତିଯୁଗେ (ଦୁଇ କାନରେ) ବଚନରୂପ ଅମୃତର

ଅଯଶ ତୋହର ଖ୍ୟାତ ରେ । ୩୨ । ବିଚକ୍ଷଣ ଗୁଣନିଧି ଛାମୁକୁ କି ଅଧିକ ମୁଁ ଲେଖି ପାରିବି । ଚିଟା ଚିଟାଉରେ ଯେବେ କରିବି । ଆୟାସ ଲେଶ ତୋ ଦିବ୍ୟ ଅବଧାନେ ହେଲେ ସଂସାରୁ ସରିବି ରେ । ମଞ୍ଜୁଳା । ଏଣୁ ହୃଦୟ ହେବାରୁ କାତର । କଲି ନାହିଁ ଜଣାଣକୁ ବିସ୍ତାର । ବଞ୍ଚାଇ ଘେନିବୁ ଉଚିତାନୁଚିତ ବିଧି ତୁ ସେ ସମସ୍ତର ରେ । ୩୩ । ତାଦୃଶ ସୁକୁମାରତର ଶ୍ରୀହସ୍ତ ହୃଦୟ ନୟନ ଯୁଗଳୀ । ଧରି ଘେନି ଅନାଇଁ ହେଲେ ଘୋଳି । ଏ ଅପରାଧ ମୋର କ୍ଷମା କରିବୁ କ୍ଷମାନିଧି ମୋ ସଙ୍ଖାଳି ରେ । ମଞ୍ଜୁଳା । ମୁଁ ତୋ ଚରଣେ ଅଳତା ବୋଳୁଛି । ପ୍ରିୟସଖୀମାନଙ୍କୁ ସଂଖୋଳୁଛି । ତୋ ବେଶ ଅର୍ଥେ ତାହାଙ୍କ ତୁଳେ ଫୁଲବାଟୀରୁ ଫୁଲ ତୋଳୁଛି ରେ । ୩୪ । ଝରାମାନିଆ ଶ୍ରବଣ ଅବତଂସ ସରୁ ପାଖୁଡ଼ି ଚନ୍ଦ୍ରହାରା । ଫୁଲପହଞ୍ଚି ଫୁଲ ମୋତିଝରା । ପଚାପତ୍ରୀ ପରା ଚୁନିକି ବସାଇ ଅଙ୍ଗଦ କରୁଛି ତୋରା ରେ । ମଞ୍ଜୁଳା । ରାମ ସୁମିତ୍ରାନନ୍ଦବରଧନ । ତାଙ୍କ ଅନୁଜହିଁ ସେହି ସମାନ । ରାମଚନ୍ଦ୍ର ଛୋଟରାୟ ଭୂନାଥର ସେ ଦୁହେଁ ଜୀବନଧନ ହେ ସୁଜନେ ।'' । ୩୫ ।



---

ଝର ପୂରି ରହିଥିଲା । ୩୨ । ଇନ୍ଦ୍ରନୀଳମଣିରେ ନିର୍ମିତ ଚୁଡ଼ିର ସଞ୍ଚା (ଚିହ୍ନ)ର ସୁଷମା (ଶୋଭା)କୁ ମୋ ଚରମେ (ପିଠିରେ) ସଂଚାର କରାଇ (ରଖାଇ) (ଆଲିଙ୍ଗନଦ୍ୱାରା) ବ୍ରହ୍ମାନନ୍ଦ ଶର୍ମରେ (ବ୍ରହ୍ମପ୍ରାପ୍ତିଜନିତ ଆନନ୍ଦମୟ ସୁଖରେ) ମଜାଇ ଦେଲୁ, (ବୁଡ଼ାଇ ଦେଲୁ,), ମାୟା ଅବସାନଦଣ୍ଡେ—ଇନ୍ଦ୍ରଜାଲ ଶେଷରେ, ଦୀନାନୁକମ୍ପନହୀନା—ଦରିଦ୍ରକୁ ଦୟା କରିବାରେ ଅକ୍ଷମା । ୩୩ । ଚିଟା—ବିରକ୍ତ, ଆୟାସଲେଶ —ସାମାନ୍ୟ କଷ୍ଟ । ୩୪ । ଝରାମାନିଆ—ଏକପ୍ରକାର ଝରା ଲମ୍ବିଥିବା ଫୁଲତୋଡ଼ା, ଶ୍ରବଣଅବତଂସ—କାନଫୁଲ, ଫୁଲପହଞ୍ଚି— ଫୁଲରେ ତିଆରି ପଇଞ୍ଚ ଖଡୁ, ଚୁନି—ପଦ୍ମରାଗମଣି, ଅଙ୍ଗଦ—ବାହୁଭୂଷଣ । ୩୫ । ସୁମିତ୍ରାନନ୍ଦବରଧନ ତାଙ୍କ ଅନୁଜ— ସୁମିତ୍ରାଙ୍କର ଆନନ୍ଦବର୍ଦ୍ଧକ ତାଙ୍କ ସାନ ଭାଇ ଲକ୍ଷ୍ମଣ ।



# ଅଷ୍ଟାଦଶ ଛାନ୍ଦ

## ରାଗ—ଆଷାଢ଼ଶୁକ୍ଳ
## (ବସନ୍ତ ବର୍ଣ୍ଣନା)

ପରବେଶ ହେଲା ସୁରଭିକାଳ । ବରବେଶ ହେଲେ ଭୂରୁହକୁଳ । ଗରବେ ପ୍ରବଳ ହେଲା ମଦନ । ଭରବେ ଜାର ହେଲେ ଯୋଗୀଜନ । ପରବେଶ ଚାହିଁ । ସରବେ ଭାଳିଲେ ବଞ୍ଚିବା କେହି । ୧ । ପଲ୍ଲବ ପାଟଳ ଦିଶିଲା ବନୀ । କେଶରଧୂସର ହେଲା ଅବନୀ । ଫୁଟିଲେ ବିବିଧ କୁସୁମବୃନ୍ଦ । ଛୁଟିଲା ବିନ୍ଦୁ ବିନ୍ଦୁ ମକରନ୍ଦ । ରସାଳ ମୁକୁଳ । ଚାହିଁ ଶ୍ଳଥ ହେଲା ବାମା ଦୁକୂଳ । ୨ । ସୁରତିଶ୍ରାନ୍ତ କାମିନୀକୁଚର । ସ୍ୱେଦବିନ୍ଦୁ ବୃନ୍ଦ ମୁକୁତା ଚୋର । ଲତା ବନିତା ନରତନଗୁରୁ । ପ୍ରସରିଲା ମିତ୍ରପୁତ୍ର ଦିଗରୁ । ଚନ୍ଦନ ପବନ । ପୁଟବାସିତ କଲା ଉପବନ । ୩ । ମଳୟବନୀ ଭୁଜଙ୍ଗ ସଙ୍ଗରେ । ହରିବାର କାଳ ଗିରିଶୃଙ୍ଗରେ । କଳନା କଲେହେଁ ନାନା ଆଗମ । ମାନ୍ୟ ଲକ୍ଷଣ ତ୍ୟାଗେ ନୋହି କ୍ଷମ । ଡରେ ନ କମ୍ପିଲା । କେ ପୁଷ୍ପିତା ବନିତାକୁ ଝାମ୍ପିଲା । ୪ । ଦେଖି ଶାଖୀଙ୍କ ପରସ୍ପର କଳି । ଝଙ୍କାର ହୁଙ୍କାରେ ମଧରେ ମିଳି । ଭଲା ଭଙ୍ଗାଇ ଦେଲେ ଭୃଙ୍ଗମାନେ । ଫୁଟି ବାସିଲେ ସେ ଯେ ଯାହା ସ୍ଥାନେ । ଥିଲେ ଭଲ ଲୋକ । ନୁହଇ କି ସମ

---

**ଅଷ୍ଟାଦଶ ଛାନ୍ଦ**

୧ । ସୁରଭିକାଳ—ବସନ୍ତ ସମୟ, ଭୂରୁହକୁଳ—ବୃକ୍ଷମାନେ, ବରବେଶ ହେଲେ—ବିବାହୋଚିତ ସୁନ୍ଦର ବେଶରେ ମଣ୍ଡିତ ହେଲେ, ଭରବେ—ଭ୍ରମର ଧ୍ୱନି ଶୁଣି, ଜାର—କାମୁକ । ୨ । ପଲ୍ଲବପାଟଳ—ନବପତ୍ରଦ୍ୱାରା ପାଟଳବର୍ଣ୍ଣ, ବନୀ—ଅରଣ୍ୟଭୂମି, କେଶରଧୂସର—ପୁଷ୍ପପରାଗରେ ଧୂଳିମୟ, ରସାଳମୁକୁଳ—ଆମ୍ବ ବଉଳ, ଶ୍ଳଥ—ଢିଲା, ବାମାଦୁକୂଳ—ସ୍ତ୍ରୀମାନଙ୍କର ପିନ୍ଧା ପାଟଶାଢ଼ୀ । ୩ । ଲତା—ବନିତା— ନରତନଗୁରୁ—ଲତାରୂପ ସ୍ତ୍ରୀମାନଙ୍କୁ ନଚାଇବାରେ ଗୁରୁସ୍ଥାନୀୟ । ମିତ୍ରପୁତ୍ରଦିଗରୁ—ସୂର୍ଯ୍ୟଙ୍କ ପୁତ୍ର ଯମଙ୍କ ଦିଗରୁ ଅର୍ଥାତ୍ ଦକ୍ଷିଣ ଦିଗରୁ । ପୁଟବାସିତ କଲା ଉପବନ—ବଗିଚାମାନଙ୍କୁ ସ୍ଥାୟୀ ସୌରଭମୟ କଲା । ୪ । ମଳୟବନୀ ଭୁଜଙ୍ଗ ସଙ୍ଗରେ—ମଳୟବନର ସାପ ସଙ୍ଗରେ, କଳନା କଲେହେଁ—ଜାଣିଥିଲେହେଁ, ଆଗମ—ଶାସ୍ତ୍ର,

ବିଷମଯାକ । ୫ । ହେଲା ପଳାଶମୁକୁଳ ପ୍ରକାଶ । ସଲୋହିତ ସିଂହନଖ ସଦୃଶ । ତହୁଁ ପଛଘୁଞ୍ଚା ଦେଇ କୁଞ୍ଜରେ । ଲୁଚିବାର ଆନ କୁଞ୍ଜପୁଞ୍ଜରେ । ତାହା ଚାହିଁକରି । ହସିଲା ନବମାଳିକା ବଲ୍ଲରୀ । ୬ । ଶାଖାମାନଙ୍କେ ରଖି ପଦକ୍ରମ । ବିଯୋଗି ବିଧ୍ୱଂସ ଅଥର୍ବୋପମ । ପଞ୍ଚମସ୍ୱରେ କଳକଣ୍ଠ ଦ୍ୱିଜ । ପକ୍ଷପାତ କଲେ ଅନଙ୍ଗ ଓଜ । ଏକାକୀ ଡରିଲେ । ଦମ୍ପତି ସୁଖେ ବନେ ବିହରିଲେ । ୭ । କାଳକଳତ୍ର ଦିଗେ ଯାହା ପ୍ରୀତି । କଳି ଆରମ୍ଭରୁ ଯାହା ଉପୃତ୍ତି । ଯେ ପ୍ରସରନ୍ତେ ଛାତିକାହିଁ ନାହିଁ । ସୁନାରୀ ପୁଷ୍ପିତ ହୋଇଲା ତହିଁ । ବିଟପ ମଧୁପେ । ଉନ୍ମତ୍ତ ହେଲେ ତା ଦେଖି ସମୀପେ । ୮ । ଇତର ତରୁଭାଗ୍ୟ ଦେଖି ପାଶେ । ଅଳିସଙ୍ଗ ଭୋଗ ଲଭିବା ଆଶେ । ସୁନ୍ଦର ଗନ୍ଧଫଳିବୃନ୍ଦମିଷେ । ସ୍ୱଶାଖା ଅଙ୍ଗ ସକଳ ପ୍ରଦେଶେ । ଜାଳି ଦୀପଚୟ । ଚମ୍ପାଲତା କଲା ବ୍ରତୋପଚୟ । ୯ । ଆଳୀଙ୍କି ଘେନି ଯୁବତୀନିଚୟ । ରସେ ରଚିଲେ କୁସୁମାବଚୟ । ନିମଗ୍ନ ହୋଇ ପରମ ହରଷେ । ବିହିଲେ ସଂଳାପ ବିବିଧ ରସେ । କେ ବୋଲେ ସହୀକି । ପୁରୁଷେ ଏଡ଼େ ବିଶ୍ୱାସ କାହିଁକି । ୧୦ । ଆଉ କେ କହେ କାହିଁକି ନୋହିବ । ଅଶୋକ ତ ତତେ କଲା ଦଇବ । ମୁଖେ ରଖିଅଛୁ ମଲ୍ଲିକା ହାସ । କାହିଁକି ନ କରିବୁ ପରିହାସ । କେ ପୁଣି

---

ପୁଷ୍ପିତା ବନିତା—ପବନ ଫୁଲ ଫୁଟିଥିବା ଲତାରୂପ ସ୍ତ୍ରୀକୁ ଆକ୍ରମଣ କଲା । ୫ । ଶାଖୀ—ବୃକ୍ଷ, ନୁହଇ କି ସମ ବିଷମଯାକ—ପରସ୍ପର ବିରୁଦ୍ଧ ଭାବ ସମତାପ୍ରାପ୍ତ ହୁଏ ନାହିଁ କି ? । ୬ । ସଲୋହିତ ... ସିଂହର ଲାଲ ନଖ ପରି, କୁଞ୍ଜରେ— ହାତୀମାନେ, ଆନ କୁଞ୍ଜପୁଞ୍ଜରେ—ପଳାଶ ଭିନ୍ନ ଅନ୍ୟ ବୃକ୍ଷକୁଞ୍ଜମାନଙ୍କରେ, ନବମାଳିକାବଲ୍ଲରୀ— ନିଆଳୀଫୁଲ ଲତା । ୭ । ଶାଖା—ଡାଳ ଓ ବେଦର ବିଭିନ୍ନ ଶାଖା, ପଦକ୍ରମ—ପଦବିକ୍ଷେପ ଓ ବିଭକ୍ତିଯୁକ୍ତ ଶବ୍ଦର କ୍ରମ, ବିଯୋଗିଧ୍ୱଂସଅଥର୍ବୋପମ —ବିରହୀମାନଙ୍କୁ ମାରିବାରେ ଅଥର୍ବବେଦୋକ୍ତ ମାରଣ ମନ୍ତ୍ର ସଦୃଶ, କଳକଣ୍ଠ ଦ୍ୱିଜ— କୋକିଳରୂପ ବ୍ରାହ୍ମଣ, ଅନଙ୍ଗଓଜ—କାମଶକ୍ତି (ପ୍ରତି), ପଞ୍ଚମସ୍ୱରେ ପକ୍ଷପାତ କଲେ, (ବ୍ରାହ୍ମଣ ପକ୍ଷରେ) ସୁକଣ୍ଠରେ ବେଦମନ୍ତ୍ରପାଠ କରି କନ୍ଦର୍ପର ପକ୍ଷ ଗ୍ରହଣ କଲେ; (କୋକିଳ ପକ୍ଷରେ) ପଞ୍ଚମସ୍ୱରରେ ଗୀତ ଗାଇ ବୁଲିଲେ । ୮ । କାଳକଳତ୍ରଦିଗେ—ଦକ୍ଷିଣ ଦିଗରେ, କଳି ଆରମ୍ଭରୁ—ଫୁଲରେ କଢ଼ ହେବା ଦିନରୁ, ଯେ—ଯେଉଁ ମଳୟପବନ ଛାତିକାହିଁ ନାହିଁ ... ମାଳତୀଫୁଲ ମଧ ଫୁଟେ ନାହିଁ (ମାଳତୀ ବସନ୍ତରେ ଫୁଟେ ନାହିଁ), ସୁନାରୀ—ଏକପ୍ରକାର ଅରଣ୍ୟ ବୃକ୍ଷ, ବିଟପେ—ଡାଳ, ମଧୁପେ—ଭ୍ରମରମାନେ । ୯ । ଚମ୍ପାଲତା ଭ୍ରମରଙ୍କୁ ଆକର୍ଷଣ କରିବାପାଇଁ ଗନ୍ଧଫଳିବୃନ୍ଦମିଷେ (ଚମ୍ପାକଢ଼ ସମୂହ ବ୍ୟାଜରେ) ନିଜ ସର୍ବ ଶରୀରରେ ଦୀପ ଜାଳି ବ୍ରତଜନିତ ପୁଣ୍ୟର ଉପଚୟ (ବୃଦ୍ଧି) କଲା । ୧୦ । କୁସୁମାବଚୟ— ଫୁଲତୋଳା । ୧୧ । ମୋ

ବୋଇଲା । ମୋ କରେ ଛୁରୀଅନା ରେ ଛଇଳା । ୧୧ । ପୁନ୍ନାଗମୟ ହେବାରୁ କେ ବାଳା । ବହି କେ ଅଂସରେ କେଶରମାଳା । ମାରି ତା ଉରୋଜକୁମ୍ଭେ କରଜ । ସିନ୍ଧୁବାର କଳି ମାଳିକାବ୍ରଜ । ମୁକୁତା ବିଞ୍ଚିଲା । ବାରଣଦାରଣଲୀଳା ବାଞ୍ଛିଲା । ୧୨ । ମିଳିନ୍ଦେ ଯୂଥିକଳି ମୁଖେ ଧରି । ରବବ୍ୟାଜେ ବଜାଇଲେ ମଧୁରୀ । ଭୃଙ୍ଗୀ ଆରମ୍ଭିଲେ ମଙ୍ଗଳ ଗୀତ । କଳକଣ୍ଠଯାକ ହୋଇ ସଂଘାତ । ହୋଇ ମଦଲୋଳ । ଉଲୁଲୁ ପୂର୍ଣ୍ଣ କଲେ ଜଳସ୍ଥଳ । ୧୩ । ତରୁ କରୁଛନ୍ତି ସେବା ପ୍ରକଟ । କେ ହୋଏ ଫଳ ଫୁଲ ଧରି ଭେଟ । ନବ କିଶଳୟ ପାଟ ଆଲଟ । ଘେନି କେ ବିଜନେ ହେଲା ଲମ୍ପଟ । କେଉଁ ଶାଖୀ ନଟ । ଉଡ଼ାଇଲା ବ୍ୟୋମ ପରାଗପାଟ । ୧୪ । କରକ ଘେନିଲା ସ୍ୱଫଳ ଘଟ । ପର୍ଣ୍ଣ ସରିକି ହେବାରୁ ଦୁର୍ଘଟ । ମୋଠାରେ କେ କଲା ବୋଲି କପଟ । କରୀର ମନେ ହେଲା ଛଟପଟ । ଅଳି-ଯୋଗକୂଟ । କେଉଁ ବଲ୍ଲରୀ ଚାହେଁ ମଟ ମଟ । ୧୫ । ହୋଇ ଅନିଳସୂତ୍ରଧାର ଚାଟ । ପୁଷ୍ପଭୂଷଣେ ହୋଇ ଝଟ ଝଟ । ଉଗାଳି ମଦନଭୂପତି ବାଟ । କେଉଁ ଲତିକା ଆରମ୍ଭିଲା ନାଟ । କେଉଁ ତରୁଭାଟ । ପକ୍ଷିରବେ ସ୍ତୁତି କଲା ନିରାଟ । ୧୬ । ଫଳକରେ କରୀ ହୋଇ ବିକଟ । କେତେ ବିଟପୀ ବେଶେ ହେଲେ ଭଟ । ବିରହୀନିନ୍ଦା ଶସ୍ତ୍ରକୁ ଅକାଟ । ଜିଣିମାରେ କି ସେ ସମର୍ଥ ଥାଟ । କି ରସିକ ହାଟ । ସବୁରି ପ୍ରୀତି କିଣିବାରେ ହଟ । ୧୭ । ନିକୁଞ୍ଜ ସଞ୍ଚାରେ ନାହିଁ ଆକଟ । ନାନାବିଧ ସୁଖ ଅତି ନିକଟ । ଦମ୍ପତିଭରେ ରଟେ କଟ କଟ । ପ୍ରତି ସଙ୍କେତ ଲତା

---

କରେ ଛୁରୀଅନା— ମୋ ହାତରେ ଛୁରୀ ଅଛି ଦେଖ, ମୋ ହାତରେ ଛୁରୀଅନା ଫୁଲ । ୧୨ । ପୁନ୍ନାଗମୟ—ନାଗେଶ୍ୱର ପୁଷ୍ପମଣ୍ଡିତ, ପୁନ୍ନାଗ—ନାଗେଶ୍ୱର, ଅଣ୍ଡିରାହାତୀ; ଅଂସରେ—କାନ୍ଧରେ, କେଶରମାଳା— ନାଗେଶ୍ୱରଫୁଲ ମାଳା ଓ ସିଂହର ସଟାସମୂହ, ଉରୋଜକୁମ୍ଭେ—ସ୍ତନରୂପ କୁମ୍ଭସ୍ଥଳରେ, କରଜ— ନଖ, ସିନ୍ଧୁବାରକଳିମାଳିକାବ୍ରଜ—ବେଗୁନିଆକଢ଼ିର ମାଳସବୁ, ବାରଣଦାରଣଲୀଳା—ସିଂହର ହାତୀ ମାରିବା କ୍ରୀଡ଼ା । ୧୩ । ମିଳିନ୍ଦେ—ଭ୍ରମରମାନେ, ଯୂଥିକଳି—ଯୂଇଫୁଲ କଢ଼, ମଧୁରୀ—ମହୁରୀ, କଳକଣ୍ଠ—କୋକିଳ, ସଂଘାତ—ମିଳିତ, ଉଲୁଲୁ—ହୁଳହୁଳି ଧ୍ୱନି । ୧୪ । ଉଡ଼ାଇଲା ... କେଉଁ ବୃକ୍ଷ ନଟ ହୋଇ ଆକାଶରେ ପରାଗ (ପୁଷ୍ପଧୂଳି) ରୂପ ପାଟ ଉଡ଼ାଇଲା । ୧୫ । କରକ—ଡାଳିମ୍ବ, ପର୍ଣ୍ଣସରିକି ହେବାରୁ ଦୁର୍ଘଟ—ବାଉଁଶ କରଡ଼ିରେ ପତ୍ର ପର୍ଯ୍ୟନ୍ତ ନ ଥିବାରୁ, କରୀର—ଗଜାବାଉଁଶ ବା କରଡ଼ୀ, ଅଳିଯୋଗକୂଟ—ଭ୍ରମରମିଳନରୂପ କପଟ (ପ୍ରକୃତି ପୁରୁଷ ମିଳନ) । ୧୬ । ଅନିଳସୂତ୍ରଧରଚାଟ— ପବନରୂପ ପ୍ରଧାନ ନଟର ଶିଷ୍ୟ । ୧୭ । ଫଳକରେ କରୀ ହୋଇ ବିକଟ—ଡାଳରେ ପ୍ରଚୁର ଫଳ

ଚାହେ ଖଟ । ସରିଗଲା ଲଟ । ଚଳି ଯୋଗୀଏ ଛିଣ୍ଡାଇଲେ ଜଟ । ୧୮ । କେ ବାସ କରି କେଳିବାପୀ ତଟ । ପାସୋରି ଦେଲେ ପିନ୍ଧିବାର ପଟ । ରଖିଲେ ମାତ୍ରକ ପ୍ରଚ୍ଛଦପଟ । ରସ ଅବଶ ହୋଇଲେ ନିପଟ । ଯାଠାରେ କପଟ । ଧାତା ଖେଳିଛି ତାହାରି ଅପଟ । ୧୯ । ନ ମାନି ଭବ ଶାର୍ଦ୍ଦୂଳ ଝପଟ । ଯେ ଜନେ ବାନ୍ଧିଥିଲେ ଯୋଗପଟ । ବାଜିବାରୁ ମନମଥ ଚପେଟ । ନ କଲେ କେ କାହାକୁ ଉଚ୍ଚପେଟ । ତାଙ୍କ ପହପଟ । ହେଲା ସବୁରି ତଳପରେ ସ୍ଫୁଟ । ୨୦ । ହେବାରୁ ହୃଦ ଅନଙ୍ଗ ଆଖେଟ । ଧଇର୍ଯ୍ୟଶିଳାଘଟିତ କବାଟ । ଅତରକିତେ ହୁଅନ୍ତେ ବିପାଟ । ବିରହିଣୀ ଏକାନ୍ତ ଚିତ୍ରପଟ । କରି ସ୍ନେହଘୋଟ । ମଣ୍ଡିଲେ ନିଜ ବକ୍ଷୋଜସଂପୁଟ । ୨୧ । କାହା ଛାର ମଦ ହୋଇବ ମୋଟ । ହୋଇଲା ହରଧୃତି ଯହିଁ ଛୋଟ । ଜନମୁ ଆମ୍ଭେ ନୋହୁ ବୋଲି ବିଟ । ଯେଉଁମାନେ ବାନ୍ଧିଥିଲେ ମୁକୁଟ । ରଟନ୍ତେ କୁକ୍‌କୁଟ । ଜୀବ ହେଲା ତାକୁ ଶତ ଶକଟ । ୨୨ । ବିରହେ ବନ୍ଧା ହେବାରୁ ଜକଟ । ସଂଖାଳି ହେବାରୁ ନୀରଜକଟ । କରି ନ ପାରି କ୍ରୋଧ ଅପ୍ରକଟ । କେ କାହାକୁ ବୋଲେ ରେ ଶରକଟ । ମନକୁ ଚକଟ । ଆମ୍ଭଙ୍କୁ ତ ତହୁ ନାହିଁ ବକଟ । ୨୩ । ଭଲ ହୋଇ ଅସ୍ତ ନୋହୁ ପତଙ୍ଗ । ଅଭିସାରିକା ହେଲେ ଚଙ୍ଗଚଙ୍ଗ । ପିକ ନୟନ ଦିଶିଲା ତ ରଙ୍ଗ । ସପୁଷ୍କରଜ ଅନିଳ ତରଙ୍ଗ । ବାଜି ଯୁବଅଙ୍ଗ । ଚମକି ଲୋଡ଼ିଲେ ତରୁଣୀସଙ୍ଗ । ୨୪ । ଶୂନ୍ୟ ପୂର୍ଣ୍ଣ ହେଲା ସ୍ମରନିଷଙ୍ଗ । ସବୁଠାରେ ତାହାର ପରସଙ୍ଗ । ଫିଙ୍ଗି ରତଅଭିଳାଷୀ ଅପାଙ୍ଗ । ଠାରିଲେ ହେଲେ ଯା

---

ଧରିବାରୁ ଫଳକଧାରୀ ହାତୀ ପରି ଭୟଙ୍କର ହୋଇ, ବିଟପୀ—ଗଛ, ଭଟ—ଯୋଦ୍ଧା, ଥାଟ—ସୈନ୍ୟଦଳ, ହଟ—ଜିଦ୍ ବା କୌତୁକ । ୧୮ । ଲଟ—କୌତୁକ, ଚଳି—ବିରକ୍ତ ହୋଇ । ୧୯ । କେଳିବାପୀ—କ୍ରୀଡ଼ାପୁଷ୍କରିଣୀ, ପାସୋରିଦେଲେ ... ସବୁବେଳେ ନଗ୍ନ ହୋଇ ଜଳକ୍ରୀଡ଼ା କରିବାରୁ ପିନ୍ଧାଲୁଗାକୁ ମଧ୍ୟ ଭୁଲିଗଲେ; ପ୍ରଚ୍ଛଦପଟ—ଘୋଡ଼ିହେବା ଚାଦର, ଯାଠାରେ କପଟ ... ବିଧାତା ଯାହା ପ୍ରତି ବିମୁଖ (ଯେ ପଦ୍ମୀଶୂନ୍ୟ) ତାହାରି ଏକା ଦୁଃଖ । ୨୦ । ଭବଶାର୍ଦ୍ଦୂଳଝପଟ ... ସଂସାରରୂପ ବ୍ୟାଘ୍ର ଆକ୍ରମଣ ନ ମାନି ଯେଉଁମାନେ ଯୋଗୀ ହୋଇଥିଲେ । ମନମଥ ଚପେଟ—କନ୍ଦର୍ପର ଚାପୁଡ଼ା ବା ଆଘାତ, ଉଚ୍ଚପେଟ—ଗର୍ଭବତୀ, ତଳପ—ତଳ୍ପ, ଶଯ୍ୟା । ୨୧ । ଅନଙ୍ଗଆଖେଟ—କନ୍ଦର୍ପର କ୍ରୀଡ଼ାଭୂମି, ବିପାଟ—ଉନ୍ମୁକ୍ତ, ବକ୍ଷୋଜସଂପୁଟ—କୁଚରୂପ ପେଡ଼ି । ୨୨ । ଯେଉଁଠାରେ ଶିବଙ୍କର ଧୈର୍ଯ୍ୟ ଛୋଟ (କ୍ଷୁଦ୍ର) ହେଲା ଅର୍ଥାତ୍ ଶିବଙ୍କ ଧୈର୍ଯ୍ୟ ସୁଦ୍ଧା ନଷ୍ଟ ହେଲା, ସେଠାରେ ଅନ୍ୟ କାହାରି ଗର୍ବ ରହି ପାରିଲା କି ? ବିଟ—ଜାର, ଜୀବ ହେଲା ... ଜୀବନ ଭାରାକ୍ରାନ୍ତ ବୋଧ ହେଲା । ୨୩ । ଜକଟ—ଦୃଢ଼ ରୂପେ, ନୀରଜକଟ —ପଦ୍ମପତ୍ରର ଶଯ୍ୟା, ଶରକଟ—ଦୁର୍ବଳ । ୨୪ । ପତଙ୍ଗ—ସୂର୍ଯ୍ୟ, ସପୁଷ୍କରଜ ଅନିଳ

ନ ଘେନି ଖଙ୍ଗ । ମଣ୍ଡିଲେ ଉପଙ୍ଗ । ଯହିଁ ଅପରିଚିତାର ଏ ଢଙ୍ଗ । ୨୫ । ଲତାବଳୀ ଗୁଚ୍ଛେ ଖେଳନ୍ତେ ଭୃଙ୍ଗ । ମଣି ତାହାକୁ ଲୀଳା ଭ୍ରୂଭଙ୍ଗ । ସଂଯମୀକି ପୀଡ଼ା ଦେଲା ଅନଙ୍ଗ । ଚଳି ନ ପାରି ହେଲେ ଥଙ୍ଗ ଥଙ୍ଗ । ଯେ ଜାତି ଭୁଜଙ୍ଗ । ସେ ନାରୀ ସଙ୍ଗେ ନ କଲେ କି ରଙ୍ଗ । ୨୬ । ସେ ଋତୁ ନବ ଋତୁମତୀ ହେଲା । ନେତ୍ରକୁ ନବକୁସୁମେ ମଣ୍ଡିଲା । ପ୍ରତିଦିନ ଗତି ହୋଇଲା ମନ୍ଦ । ରସ ବରଷିଲା ନୋହେ ମରନ୍ଦ । କୁନ୍ଦବିକସନ । ମନ୍ଦାର ଅଧର ମନ୍ଦ ହସନ । ୨୭ । ନାନା କିଶଳୟ ଚିତ୍ର ବସନ । ଯୁବା ବିହାର ସୁରତ ବ୍ୟସନ । ଦକ୍ଷିଣ ବାତ ସୁରଭି ଶ୍ୱସନ । ଚାହାଣୀ ଚଞ୍ଚଳ ମରନ୍ଦାଶନ । ମଲ୍ଲିକା ଦଶନ । ବହଳ ପୁଷ୍ପଧୂଳି ତା ଆସନ । ୨୮ । ନିଜ ସଉରଭ ଅଧିବାସନ । ପଙ୍କଜପାନକ ପାନବାସନ । ଯୁବରଞ୍ଜନ ଯାହା ଦରଶନ । କେତକୀତନୁ କେଢ଼େ ପରସନ । ବିବେକନାଶନ । ଗିର ତାହାର କଳକଣ୍ଠସ୍ୱନ । ୨୯ । ଏପରି ଦେଖି ସେ ଋତୁଲକ୍ଷଣ । କୋଟିସଂଖ୍ୟକ ଯୁଗ ହେଲା କ୍ଷଣ । ଅନଙ୍ଗସୁନ୍ଦର ସୁବିଚକ୍ଷଣ । ଭ୍ରମାଇଲା ପ୍ରତି ଦିଗେ ଈକ୍ଷଣ । ନ କଲା ବୀକ୍ଷଣ । ହରିଣାକ୍ଷୀ ବିନା ଆନ ରକ୍ଷଣ । ୩୦ । ଚିଟାଉ ସଙ୍କେତ ସମୟ ଆସି । ହେବାରୁ ହୃଦୟସ୍ଥଳବିଳାସୀ । ହେଲା ସେ ଧୃତିଧରାଧରଶମ୍ବ । ଦିଶିଲା ନାହିଁ କାହିଁ ଅବଲମ୍ବ । ମୋହ ଅନ୍ଧକାର । କଲା ଚେତନା-ଚନ୍ଦ୍ରକୁ ଧିକ୍କାର । ୩୧ । ଚାହିଁ ତା ତାହା ପ୍ରିୟ ସହଚର । ଶୂନ୍ୟ ମଣି ବିଶ୍ୱ ସଚରାଚର । କୃଷ୍ଣପ୍ରତିପଦା ରଜନୀମୁଖେ । ଅଙ୍କେ ଧଇଲା କି ସୁଧାମୟୂଖେ । ସେହିପରି କୋଳେ । ଧଇଲା ଯୁବରାଜକୁ ବିକଳେ । ୩୨ । ନ ଲଭି ତା ମୃଦୁ ବଦନବାତ । ଶ୍ରବଣେ କେ ଦେଲା ବଦନବାତ । ଘନସାରମିଶା ପନୀର ପାଣି । ନୟନ ଯୁଗରେ ଲଗାଇ ପୁଣି ।

---

ତରଙ୍ଗ— ଫୁଲପରାଗଯୁକ୍ତ ପବନର ଲହରୀ । ୨୫ । କାମନିଷଙ୍ଗ—କନ୍ଦର୍ପର ଶରମୁଣା, ଶୂନ୍ୟ ପୂର୍ଣ୍ଣ ହେଲା—ଶୂନ୍ୟଦ୍ୱାରା ପୂର୍ଣ୍ଣ ହେଲା ଅର୍ଥାତ୍ ସମ୍ପୂର୍ଣ୍ଣରୂପେ ଶୂନ୍ୟ ହୋଇଗଲା (ସବୁବେଳେ ଶର ମାରିବା ହେତୁରୁ) । ପରସଙ୍ଗ—ପ୍ରସଙ୍ଗ, ଖଙ୍ଗ—ଅସୁଖ । ୨୬ । ଜାତିଭୁଜଙ୍ଗ—ସ୍ୱଭାବତଃ ବିଟ । ୨୭ । ମରନ୍ଦ—ମକରନ୍ଦ । ୨୮ । ଦକ୍ଷିଣବାତ ... ମଳୟ ପବନ ସୁଗନ୍ଧଯୁକ୍ତ ନିଃଶ୍ୱାସ ପରି ହେଲା । ଚାହାଣୀ ଚଞ୍ଚଳ ମରନ୍ଦାଶନ —ମରନ୍ଦାଶନ (ଭ୍ରମର) ଚଞ୍ଚଳ ଚାହାଣୀ ହେଲା । ୨୯ । ଅଧିବାସନ—ଗନ୍ଧମାଲ୍ୟାଦିଦ୍ୱାରା ସଂସ୍କାର, ପଙ୍କଜପାନକ ... ପଦ୍ମରୂପ ପାନପାତ୍ର, ପାନ ବାସନ (ପାନ ରଖିବା ଡବା) ହେଲା । ୩୦ । କ୍ଷଣକ କୋଟି ସଂଖ୍ୟକ ଯୁଗ ପରି ହେଲା । ଅନଙ୍ଗସୁନ୍ଦର—ଯୁବରାଜଙ୍କ ନାମ, ଈକ୍ଷଣ—ଆଖି, ବୀକ୍ଷଣ—ଦର୍ଶନ । ୩୧ । ସେ ଧୃତିଧରାଧରଶମ୍ବ ହେଲା—ଚନ୍ଦ୍ରକଳାଠାରୁ ପାଇଥିବା ପତ୍ର ଧୈର୍ଯ୍ୟପର୍ବତ ନାଶ ପକ୍ଷରେ ଶମ୍ବ (ବଜ୍ର) ହେଲା । ୩୩ । ଶ୍ରବଣେ କେ ଦେଲା ବଦନ ବାତ—କିଏ କାନ

ଲପନେ ସିଞ୍ଚିଲା । କରକମଳ ବ୍ୟଜନେ ବିଞ୍ଚିଲା । ୩୩ । ପୁଣି କେ କରି ଧମନୀ ପରୀକ୍ଷା । ବୋଇଲା ଜଗଦୀଶ କର ରକ୍ଷା । ଶ୍ରୁତି ସମୀପେ ଡାକିଲା ଏ ଗିର । ଅଖଣ୍ଡ ଧରାଖଣ୍ଡଳ କୁମାର—ବୀର ଅଧୀଶ୍ୱର । ନବ କୋଟି ବାହାରୋହପ୍ରବର । ୩୪ । ଚତୁରୀ ଚକ୍ଷୁ ଚକୋର ଚନ୍ଦ୍ରମା । ଭାରତୀ ସାରକେଳି କଳାସୀମା । ଯାଚକ ମନୋରଥ କଳ୍ପଶାଖୀ । ଦେଉ ମହାଦେଈ ଦୁହିଙ୍କ ଆଖି । ନବ ଯୁବରାଜ । ଶ୍ରୀଅଙ୍ଗ କି ଲାଗୁଅଛି କି ଆଜ । ୩୫ । ସେ ପୁରେ ସେପରି ଚହଳ ଜାଣି । ପ୍ରତାପ କଣ୍ଠୀରବ ନୃପମଣି । ଅଗଦଙ୍କାରରାଜକୁ ଅଣାଇଁ । ପୁଛନ୍ତେ ସେ ଜଣାଇଲେ ମଣାଇ । ତାହାଙ୍କ ମନକୁ । ଦେବ ଆସୁ ଦିବ୍ୟ ଅବଧାନକୁ । ୩୬ । ଶ୍ରୀହସ୍ତ ଦେଖି ବିଚାରିଲୁଁ ଦେବ । ବିଷମ ପ୍ରହର ପର୍ଯ୍ୟନ୍ତେ ହେବ । ଚନ୍ଦ୍ରକଳା କର ପଡ଼ିଲେ ରାତି । ଶାନ୍ତ ହେବ ସେ ଅତନୁତପତି । ମଣି ନରପତି । ଚିନ୍ତାରେ ନିମଜ୍ଜାଇ ଦେଲେ ମତି । ୩୭ । ଅରୁଣ ଉଦୟେ ସେ ଦିନ ନିଶି । ସ୍ୱପ୍ନେ ଧରଣୀସୁର ଜଣେ ଆସି । ଆଶିଷ ଦେଇ ସେ ନରପତିକି । ପ୍ରବୋଧି କହିଲେ ଗିର ଏତିକି । ଶୁଣ କ୍ଷମାଧବ । ମହାମହିମବସନ୍ତମାଧବ । ୩୮ । କାମକଳାରେ ବିଜେ କରିଛନ୍ତି । କାମକଳାପ କଳାପ ମୂରତି । ତାହାଙ୍କ ରଙ୍ଗ ରାଜୀବ ଚରଣ । ବିଲୋକେ ତୋ ପୁତ୍ର ଅପମରଣ । କେବଳ ବଞ୍ଚିବ । ଅନ୍ୟଥା ରଖି ନ ପାରନ୍ତି ଶିବ । ୩୯ । ଏହା କହି ହେଉ ଅନ୍ତରହିତ । ହୋଇଲା ପ୍ରଭାତିକ ନଉବତ । ଶୁଭିଲା ବନ୍ଦିବୃନ୍ଦ ସ୍ତୁତିବାଦ । ଶୁଦ୍ଧାନ୍ତକାନ୍ତାଜନଭୂଷାନାଦ । ଧରି ହରିନାମ । ଅପହୃତ ହେଲେ ନୃପସତ୍ତମ । ୪୦ । ହୋଇଲା କାଠିଲାଗି ଅବକାଶ । ମନ୍ତ୍ରିବରଙ୍କୁ କଲେ ପରମାସ । ମାଧବମାସ ବଳକ୍ଷ ପକ୍ଷରେ । କାମକଳାଖ୍ୟ ନଗରୀ ମୁଖ୍ୟରେ । ଶ୍ରୀ ମାଧବଙ୍କର ।

---

ଫୁକିଲା । ଘନସାର—କର୍ପୂର, ଲପନ—ମୁଖ । ୩୪ । ଧମନୀ—ନାଡ଼ି, ବାହାରୋହପ୍ରବର—କ୍ଷତ୍ରିୟବଂଶଜାତ । ୩୫ । ଭାରତୀ ସାରକେଳିକଳାସୀମା—ହେ ସରସ୍ୱତୀଙ୍କ ସଙ୍ଗୀତ ବିଦ୍ୟାରେ ପରମପ୍ରବୀଣ, ଦେଉ—ରାଜା, ମହାଦେଈ—ରାଣୀ । ୩୬ । ପ୍ରତାପୀ କଣ୍ଠୀରବ ନୃପମଣି—ପ୍ରତାପସିଂହ ରାଜା, ଅଗଦଙ୍କାରରାଜ —ବୈଦ୍ୟରାଜ । ୩୭ । ବିଷମ ପ୍ରହର ପର୍ଯ୍ୟନ୍ତେ ହେବ—କ୍ଳେଶକର ଅବସ୍ଥା ପ୍ରହରକାଳ ହେବ । ଚନ୍ଦ୍ରକଳା କର—ଚନ୍ଦ୍ରଙ୍କ କଳାର କିରଣ ଓ ଚନ୍ଦ୍ରକଳା ନାୟିକାର ହସ୍ତ । ଅତନୁତପତି—ଶୂନ୍ୟ, ତାତି ଓ କନ୍ଦର୍ପ ଜ୍ୱାଳା । ୩୮ । ଧରଣୀସୁର— ବ୍ରାହ୍ମଣ, କ୍ଷମାଧବ—ରାଜା, ବସନ୍ତମାଧବ— ଦେବତା ବିଶେଷ । ୩୯ । କାମକଳା—ନଗରୀର ନାମ, କାମକଳାପ କଳାପ ମୂରତି—କମନୀୟ ମୟୂରପୁଚ୍ଛରେ ବିଚିତ୍ର ବର୍ଣ୍ଣ ମୂର୍ତ୍ତି ଯାହାଙ୍କର । ଅପମରଣ—ଅପମୃତ୍ୟୁ । ୪୦ । ନଉବତ— ନହବତ ବାଜା, ବନ୍ଦିବୃନ୍ଦ—ଭାଟ ସମୂହ,

ହେବ ବାସନ୍ତିକ ଯାତ୍ରା ପ୍ରବର । ୪୧ । ମୋ କୁଳନିଳୟ ନେତ୍ରସମ୍ପଦ । ନ ଲଭିବାକୁ ମହାମୋହପଦ । ଦରଶନକୁ ଯିବ ଯୁବରାଜ । ତହିଁ ସମୁଚିତ ସମ୍ଭାର ସଜ । ଏ ନିଦେଶ ଗିର । ଉଷ୍ଣୀଷ କଲା ସଚିବପ୍ରବର । ୪୨ । ଶେଷବିଳାସରୁ ଲଭି ବିରାମ । ଅଶେଷ-ବିଳାସୀ ଯେଉଁ ଶ୍ରୀରାମ । ଏକ ରଥାଙ୍ଗ ପରିତ୍ୟାଗ କଲେ । ଦଶରଥାଙ୍ଗରୁ ସମ୍ଭୂତ ହେଲେ । ରଚଇ ପ୍ରଣତି । ତାଙ୍କ ଚରଣେ ଜଳନ୍ତର ପତି । ୪୩ ।

●

(ଅସଂପୂର୍ଣ୍ଣ)

---

ଶୁଦ୍ଧାନ୍ତକାନ୍ତାଜନ—ଅନ୍ତଃପୁରସ୍ଥ ସ୍ତ୍ରୀମାନଙ୍କର । ୪୧ । କାଠିଲାଗି ଅବକାଶ—ଦାନ୍ତ ଘଷିବା ବେଳ । ମାଧବ ମାସ—ବୈଶାଖ ମାସ, ବଳକ୍ଷ ପକ୍ଷରେ—ଶୁକ୍ଳପକ୍ଷରେ । ୪୨ । ମହାମୋହପଦ—ମୂର୍ଚ୍ଛାପ୍ରାପ୍ତି, ଉଷ୍ଣୀଷ—ପଗଡ଼ି, ଶିରୋଧାର୍ଯ୍ୟ । ୪୩ । ଶେଷ ବିଳାସ—ସର୍ପରାଜ ଶେଷଦେବଙ୍କ ଉପରେ ଶୋଇବାରୂପ ବ୍ୟସନ । ଏକ ରଥାଙ୍ଗ ପରିତ୍ୟାଗ କଲେ—ଏକ ଚକ୍ର ମଧ୍ୟ ସଙ୍ଗରେ ରଖି ନ ଥିଲେ । ଦଶରଥାଙ୍ଗ— ଦଶରଥଙ୍କ ଶରୀରରୁ ।

●

## ( ୧ )

## ଜଗତେ କେବଳ

### ରାଗ—ଆଷାଢ଼ଶୁକ୍ଳ

ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ । ଘୋଷା ।
ଜଟିଳ କରି ସ୍କନ୍ଧ ରୋମରାଜି । ଶିଖରିଦରୀରେ ମରୁ ଗରଜି ।
କୁଟିଳ କରି ଭ୍ରୁକୁଟୀକୁ ଚାହୁଁ । ସରମା କଣ୍ଠୀରବ ହେବ କାହୁଁ । ୧ ।
ଅଳକତଦ୍ରବ ନୟନେ ବୋଳି । ରସାଳ ଗହଳ ଶାଖାରେ ଖେଳି ।
କବଳ କରୁ ତା କଳିକଳାପ । କାକ କି କରିବ ପଞ୍ଚମାଳାପ । ୨ ।
ବରଜୀବ-ରସେ ଦେଇ ମାନସ । ବରଜି ବରଷେ ଅମେଧ ଗ୍ରାସ ।
ଦେହେ ମନ୍ଦାକିନୀ ରଜ ଲଗାଇ । ଗ୍ରାମ ଶୂକର କି ହୋଇବ ଗାଈ । ୩ ।
ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ । ନିଜ ତୁଣ୍ଡେ ମଣ୍ଡି ଖଣ୍ଡ-ମୃଣାଳ ।
ଚାଲୁଁ ପୂର୍ବ ଅଙ୍ଗ ବୁଲାଇ ବକୀ । ତେବେ ସେ ମରାଳୀ ବୋଲାଇବ କି ।୪।
ରଞ୍ଜି ନାୟକ ରଙ୍ଗେ ଚୋପଦାର । ଖଞ୍ଜିଲେ ହେଲେ ଚାବୁକ ସବାର ।
ଖିଲାଇଲେ ହେଲେ ନାନା ମସଲା । ତୁରଙ୍ଗ ହୁଏ କି ରାସଭ ପିଲା । ୫ ।
ବଦରିକା ବନେ ନିତ୍ୟ ନିବାସ । କରି ଆଚରି ବ୍ରତ ଉପବାସ ।
ପ୍ରଯତ୍ନ କଲେହେଁ ନାନାପ୍ରକାର । ଖଦ୍ୟୋତ ହୋଇବ କି ପ୍ରଭାକର । ୬ ।
ଯାହାକୁ ଯାହା କରିଛି ଦଇବ । ତହୁଁ ନିକି ସେ ଅନ୍ୟଥା ହୋଇବ ।
ଘେନିଲେ ହେଲେ ଯତ୍ନେ କୋଟି ପୁଟ । ପିତ୍ତଳୁଟି କେହି ହେବ ପୁରଟ । ୭ ।
ଦେବ ଉପବନେ ହୋଇ ଜନିତା । ସ୍ୱବାସ-ମଦରୁ ଜବସଲତା ।
ତୁଳସୀ ତୁଲେ ହେଲେ ମିଶାମିଶି । ତାହାକୁ ଯେବେ ବୋଲିବା ତୁଳସୀ ।୮।

---

୧ । ଟୀକା—ଶିଖରିଦରୀ—ପର୍ବତଗୁମ୍ଫା, ସରମା—କୁକ୍କୁର, କଣ୍ଠୀରବ—ସିଂହ, ଅଳକତଦ୍ରବ—ଅଳତାରସ, ରସାଳ—ଆମ୍ବ, କବଳ କରୁ—ଗ୍ରାସ କରୁ ବା ଖାଉ, ବରଜୀବରସେ—ଗୋରୁଦୁଧରେ, ଅମେଧ—ବିଷ୍ଠା, ମନ୍ଦାକିନୀରଜ—ଗଙ୍ଗାଧୂଳି, ଚଞ୍ଚୁ—ଥଣ୍ଟ, ଖଣ୍ଡମୃଣାଳ—ପଦ୍ମନାଡ଼ଖଣ୍ଡ, ବକୀ—ବଗୁଲି; ମରାଳୀ—ରାଜହଂସୀ; ଚୋପଦାର—ଅଗ୍ରଗାମୀ ସିପାହୀ, ତୁରଙ୍ଗ—ଘୋଡ଼ା, ରାସଭ—ଗଧ, ବଦରିକା ବନ—ବରକୋଳି ବଣ ଓ ତୀର୍ଥ ବିଶେଷ, ଖଦ୍ୟୋତ—ଜୁଳୁଜୁଳିଆ ପୋକ, ପ୍ରଭାକର—ସୂର୍ଯ୍ୟ । ପୁରଟ—ସ୍ୱର୍ଣ୍ଣ, ଜବସଲତା—ଦୁବଘାସ,

ସମଜଇ ନାହିଁ ସ୍ୱଜାତି ଭାଷା । କହିଲେ ଯେ ହୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜନ୍ମି ନିର୍ବେଦ । ଷଡ଼ଦର୍ଶୀ ତୁଲେ କଲେ ବିବାଦ । ୯ ।
ଦେହରେ ବାଜିଲେ ପର ନିଃଶ୍ୱାସ । ସମ୍ଭାଳିବାକୁ ନ ଥାଇ ବିଶ୍ୱାସ ।
ନିର୍ଲ୍ଲଜ ଅଭିମାନେ ଡେରି ଛାତି । ହାତୀ ଲଢ଼ାଇକି ବାନ୍ଧିଲେ କାତି । ୧୦ ।
କରମରେ ତ ହୋଇଅଛି ଲେଖା । କରମର୍ଦ୍ଦକ ଯୋଗ୍ୟ ତୋର ଶିଖା ।
ହରମଉଳିଯୋଗ୍ୟ ଚମ୍ପକକୁ । ଭରମରେ ବୃଥା ପଡ଼ି ଯା ଟାକୁ । ୧୧ ।
ଚାରୁଚନ୍ଦ୍ରୋଦୟା ମଶାଲ ପାଖେ । ବହ୍ନି ଜାଳିବ ଯେବେ ଦିଶା ମୁଖେ ।
ଧାତା ତ କରି ନାହିଁ ତାନୀକାଶ । କି ରୂପେ ହେବ ସେପରି ପ୍ରକାଶ ।୧୨।
ବୋଲି ହୋଇ ଭୂତି ଧରି ପରାଶୁ । ବଳୀବର୍ଦ୍ଧବର ଚରମେ ବସୁ ।
ଗଉରୀ-ପ୍ରାଣନାଥ ଅନୁଭାବ । ଠଉରି ପାରିବ ନାହିଁ ତା ଲବ । ୧୩ ।
ସରପର୍ପଟି ଯାହାକୁ ମିଳଇ । ସେ ସୁଖେ ତା ଭୋଜନେ ପ୍ରବଳଇ ।
ସଢ଼ାଇବାକୁ ତା ବଢ଼ାଇ ବସି । ଦୁର୍ମତି ଯେବେ ଚୋବାଇବ ଘଷି । ୧୪ ।
ଚିର ତପବଳୁ କେଉଁ ପୁରୁଷ । ସମ୍ପାଦି ଯୋଗ୍ୟ ଗୁଣ ପଉରୁଷ ।
କରିଷେ ସଞ୍ଚରିବା ନ ସହିବ । କରୀଷକଟେ ଯେବେ ଆରୋହିବ । ୧୫ ।
ଗଙ୍ଗାର ପ୍ରବାହେ ଅଳପେ ବୁଡ଼ି । ଅଙ୍ଗାର କି ନିଜ ବର୍ଣ୍ଣ ଛାଡ଼ି ।
ବଳାହିତ ରତ୍ନ ପରି ଦିଶିବ । ବାଳା ପୟୋଧର ହାରେ ମିଶିବ । ୧୬ ।
ସତର ବୟସୀ ସତତ ମନ । କରଇ ଯାହାକୁ ଅନୁଗମନ ।
ଛବି - ଶୂନ୍ୟ, ଷଣ୍ଢ ବୃଦ୍ଧତା ତୁଲେ । ଅବିବେକବଶୁ ବିବାଦୀ ହେଲେ । ୧୭ ।
ଗୁଞ୍ଜାର କେଉଁ ପୁଣ୍ୟବଳୁ ସିନା । ସଙ୍ଗକୁ ଅଙ୍ଗୀକାର କଲା ସୁନା ।
ହୋଇଲି ତ ବୋଲି କନକ ତୁଲ୍ୟ । ଲୋଡ଼ିବ ଯେବେ ତାହା ତୁଲ୍ୟ ମୂଲ୍ୟ ।୧୮।
ଗଜପତି କୁମ୍ଭସ୍ଥଳ ବିଦାରି । ସଜ ପଲଳ ଭୁଞ୍ଜିବାରୁ ହରି ।
ଦୃଷ୍ଟି ନ ଦେଲା ବୋଲି ଅନ୍ୟ ଶବେ । ଜମ୍ବୁକେ ଯଶସ୍ୱୀ ବୋଲିବା ଯେବେ ।୧୯।

ସ୍ୱବାସମଦରୁ—ନିଜ ଜନ୍ମସ୍ଥାନ ଗର୍ବରୁ, ନିର୍ବେଦ—ବୈରାଗ୍ୟ, ଷଡ଼ଦର୍ଶୀ—ଦର୍ଶନଶାସ୍ତ୍ରଜ୍ଞ ପଣ୍ଡିତ, କାତି—ଛୋଟ କଟୁରୀ, କରମର୍ଦ୍ଦକ—କରଞ୍ଜଫଳ, ଶିଖା—ମସ୍ତକ, ହରମଉଳି—ଶିବଙ୍କ ମସ୍ତକ, ଟାକୁ—ଅପେକ୍ଷା କରୁ, ଚାରୁଚନ୍ଦ୍ରୋଦୟ—ମନୋହର ଚନ୍ଦ୍ରଉଦିଆ ବଳିତା, ଦିଶାମୁଖେ—ଚାରିଆଡ଼େ, ତାନୀକାଶ—ତତ୍‌ସଦୃଶ, ଭୂତି—ପାଉଁଶ, ପରଶୁ—ଶସ୍ତ୍ରବିଶେଷ, ବଳୀବର୍ଦ୍ଧବର—ଷଣ୍ଢ, ଚରମ—ପିଠି, ଗଉରୀପ୍ରାଣନାଥ—ଶିବ, ଅନୁଭାବ—ତେଜ, ସରପର୍ପଟି—ଦୁଧସରରେ ତିଆରି ଏକପ୍ରକାର ମିଷ୍ଟାନ୍ନ, ବଢ଼ାଇ—ଗର୍ବ, ଘଷି—ଶୁଖିଲା ଗୋବର, କରିଷେ—ବିନ୍ଦୁମାତ୍ର, ଅତି ସାମାନ୍ୟ; ସଞ୍ଚରିବା—ପାଦରେ ଚାଲିବା, କରୀଷକଟ—ଘଷିବୁହା ପଟା, ବଳାହିତ ରତ୍ନ—ଇନ୍ଦ୍ରନୀଳମଣି । ଛବିଶୂନ୍ୟ—କୁରୂପ, ଷଣ୍ଢ—ନପୁଂସକ, ଗୁଞ୍ଜା—କାଇଁଚ, ପଲଳ—ମାଂସ, ହରି—ସିଂହ, ଜମ୍ବୁକ—ବିଲୁଆ, ସୁଧର୍ମାତୁଲ୍ୟ ସଭାକବି—ଦେବସଭା ତୁଲ୍ୟ

ମାନୋଦ୍ଧାରଣ ଶରଣପଞ୍ଜର । ବଘେଲ ବାଦଶା ନୃପକୁଞ୍ଜର ।
ରାଜା ଜଗଦ୍ଦେବ ହରିଚନ୍ଦନ । ଲଙ୍ଘିଲେ ତାଙ୍କୁ ନ କରି ବନ୍ଦନ । ୨୦ ।
ତାଙ୍କ ସୁଧର୍ମା ତୁଲ୍ୟ ସଭା କବି । ଭଣିଲେ ରାୟଗୁରୁ କବିରବି ।
ଶ୍ରବଣ - ସର୍ବାବୟବୀ ମାନବ । ସହସ୍ରାକ୍ଷ ସାମ୍ୟ ଯେବେ ଲୋଡ଼ିବ ।
ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ । ୨୧ ।



## ( ୨ )
## କାହାକୁ ଅଡ଼ିବା
### ରାଗ—ଆଷାଢ଼ଶୁକ୍ଳ

କାହାକୁ ଅଡ଼ିବା, କପାଳରେ ସିନା କର ତାଡ଼ିବା । ଘୋଷା ।
ଭଜିଥିବ ଭାବି କଳପଲତା, କାଳେ ସେ ହୋଇଲେ ଅପରାଜିତା,
କରି ଗୋଦାବରୀ ନିକଟେ ବସା, କାଳଦେବତା ଯେବେ ହେବ ତୃଷା । ୧ ।
ନଥର ପରୀକ୍ଷିତ ହୀରାମଣି, ପଥରୁ ଯେବେ ହେବ ଊଣା ପୁଣି,
କର ହାଜର ଥିବ ପଦ୍ମନିଧି, ଜମନିବ ଯେବେ ଯାଚକ ବୁଦ୍ଧି । ୨ ।
ପିନ୍ଧିଥିବ ଜାମାନିମାଗୁଡ଼ିକି, ଗୁପତ ଅଙ୍ଗ ଦିଶିଲେ ଝଲକି,
ହରିଭଜନମାଳା ଥିବ କରେ, ଧରି ନେବେ ଯେବେ ଯମ କିଙ୍କରେ । ୩ ।
ଶୟନକୁ ଥିବ ହଂସୁଲିତୂଳି, ନିଜ ଅଙ୍ଗରୁ ଜନମିଲେ ଧୂଳି,
ମାଧୂର୍ଯ୍ୟ ଲୋଭରେ ଖାଇଲେ ସିତା, କଣ୍ଠ ଉପକଣ୍ଠ ଲାଗିଲେ ପିତା । ୪ ।
ଜୀଇଁବା ପାଇଁ ପିଇବା ପୀୟୂଷ, ପରିପାକେ ଯେବେ ହେବ ସେ ବିଷ,
କୁନ୍ଦନ ଯେବେ ପାଲଟିବ ରଙ୍ଗ, କଟିସୂତ୍ର ଯେବେ ହେବ ଭୁଜଙ୍ଗ । ୫ ।
କେତକୀରୁ ସମ୍ଭବିଲେ ଦୁର୍ବାସ, ଶିରଗଭାରୁ ଜନ୍ମିଲେ କୁଳିଶ,
ନିଜ ନିଶ୍ୱାସରେ ପଡ଼ିଲେ ଢଳି, ଜଠରାନଳେ ଦେହ ଗଲେ ଜଳି । ୬ ।

---

ତାଙ୍କ ସଭାର କବି, ସହସ୍ରାକ୍ଷ—ଇନ୍ଦ୍ର, ଶ୍ରବଣସର୍ବାବୟବୀ ମାନବ—ଯେଉଁ ଲୋକର ସମଗ୍ର ଶରୀରରେ ଶ୍ରବଣ ପରି ଚିହ୍ନ ଥାଏ ।

୨ । ଟୀକା—ନଥ—ନୋଥ, ପଦ୍ମନିଧି—ଅତି ମୂଲ୍ୟବାନ ରତ୍ନବିଶେଷ, ଜାମାନିମାଗୁଡ଼ି—ପାଇଜାମା ପ୍ରଭୃତି, ହଂସୁଲିତୂଳୀ—କୋମଳ ତୂଳାଶେଯ, ସିତା—ନବାତ, କୁନ୍ଦନ—ସ୍ୱର୍ଣ୍ଣ ବା ରତ୍ନ, ରଙ୍ଗ—ଟିଣ, ଘନସାର—କର୍ପୂର, ଆନ୍ଧ୍ୟ—ଅନ୍ଧଭାବ, ଦୁରିତବ୍ୟୂହ—ପାପସମୂହ, ଡୁଣ୍ଡୁଭ—ଧଣ୍ଡସାପ, ହରିଦରୀ—ସିଂହ ରହିବା ଗୁମ୍ଫା,

ସକଳ ସଉଭାଗ୍ୟ ଅଭିଳାଷେ, ଅନୁସରି ସୁରସୁରଭି ପାଶେ,
ଦୋହନକାଳେ ଦୁଧରୁ ତାହାର, ଧରାପରାଗ ହୋଇଲେ ବାହାର । ୭ ।
ପିଞ୍ଜରମଣ୍ଡନ ପଢ଼ା ଶାରିକା, ପଢ଼ା ଛାଡ଼ି କଲେ ମଣ୍ଡୂକଡକା,
କପିତ୍ଥ ଫଳିଲେ ରସାଳଲତା, ଅଶୁଭ ପାଞ୍ଚିଲେ ଇଷ୍ଟଦେବତା । ୮ ।
ଜ୍ୟୋତିଷନ୍ତ ତାର ନୟନେ ଥିବ, ସମୀପ ଦୀପ ଯେବେ ନ ଦିଶିବ,
ଘନସାର ସାର ସଙ୍ଗମ କ୍ଷଣେ, ଆନ୍ଧ୍ୟ ଯେବେ ଜନମିବ ଇକ୍ଷଣେ । ୯ ।
ଦୂର ହୋଇବାକୁ ଦୁରିତ ବ୍ୟୂହ, ଗଙ୍ଗାପ୍ରବାହେ କରି ଅବଗାହ,
ନିତ୍ୟ ନିବାସ କରିଥିବ କାଶୀ, ଆସି ଗ୍ରାସି ଦେଲେ ପାତକରାଶି । ୧୦ ।
ହାତୀ ବିତରଣ କରି ଯାଚକେ, ଜାତି କୃପଣ ବୋଲାଇଲେ ଲୋକେ,
ପାତିତ୍ୟଧ୍ୱଂସୀ ଶ୍ରୀମହାପ୍ରସାଦେ, ଜାତିବିଧ୍ୱଂସ ହେଲେ ପରମାଦେ । ୧୧ ।
ଅବଲମ୍ବ କରି ଗରୁଡ ନିଡ଼, ଡୁଣ୍ଡୁଭରୁ ହେଲେ ଭୟ ନିବାଡ଼,
ହରିଦରୀମଧ କରି ଶରଣ, ଶଶ ସକାଶୁଁ ଲଭିଲେ ମରଣ । ୧୨ ।
ସିନ୍ଧୁରେ ପଶି ନ ତିନ୍ତିଲେ ପାଦ, ସାଯୁଜ୍ୟ ମୋକ୍ଷରେ ଥିଲେ ବିପଦ,
ମାଜି ନିର୍ମଳ ମୁକୁରକୁ ଚାହିଁ, ପ୍ରତିବିମ୍ବ ଯେବେ ଦିଶିବ ନାହିଁ । ୧୩ ।
ଦ୍ରବ୍ୟରୁ ଯେବେ ଗୁଣର ବିଚ୍ଛେଦ, କାମକାଣ୍ଡରେ ହେଲେ ଶିରଚ୍ଛେଦ,
ସେବିବା ସଂଜୀବନୀ ମହୌଷଧ, ନୋହିବ ଯେବେ ଆମୟ-ନିଷେଧ । ୧୪ ।
ହିମଗିରିଦରୀ କରି ଆଶ୍ରୟ, ହେଲେ ନିଦାଘ ଭୟ ଅତିଶୟ,
ପଣ୍ଡିତମଣ୍ଡଳୀରେ କରି ସ୍ଥିତି, ଜଣା ନୋହିଲେ ବଚନ ସଙ୍ଗତି । ୧୫ ।
ଜାଣି ବେଦବିଦ୍ୟା ତତ୍ତ୍ୱସାରକୁ, ମୂରୁଖ ବୋଲାଇଲେ ଆଖରକୁ,
ପରଶୁରାମଙ୍କୁ କରିବା ଗୁରୁ, ପଳାଇବା ଯେବେ ଅରି ଆଗରୁ । ୧୬ ।
ବୀଣାବାଦ୍ୟ ଶିକ୍ଷା ଦେଇ ଅଶେଷେ, ଅତାଳଜ୍ଞାନୀ ବୋଲାଇଲେ ଶେଷେ,
ଧରଣୀଦେବଙ୍କ ଚରଣରଜ, ଶିରେ ଘେନିବା ଯେବେ ହେବ ଲାଜ । ୧୭ ।
ଶରୀର ଖେଦ ହୋଇବାକୁ ଶାନ୍ତ, ଚାଳିବା ମନ୍ଦ ମନ୍ଦ ତାଳବୃନ୍ତ,
ତହୁଁ ନ ଜନମି ମୃଦୁ ଅନିଳ, ସମ୍ଭବିବ ଯେବେ ପ୍ରଳୟାନଳ । ୧୮ ।
କହଇ ଜଳନ୍ତର ପୁରନ୍ଦର, ଶୋଭା ନିମନ୍ତେ ବହି ଅଳଙ୍କାର,
ତହୁଁ ସୁନ୍ଦରଭାବ ନ ଦିଶିବ, ପିଶାଚ ପରି ଯେବେ ଆଭାସିବ ।
କାହାକୁ ଅଡ଼ିବା କପାଳରେ ସିନା କର ତାଡ଼ିବା । ୧୯ ।

●

---

ସାଯୁଜ୍ୟମୋକ୍ଷ—ଆତ୍ମା ଓ ପରମାତ୍ମାର ପୂର୍ଣ୍ଣ ମିଳନ, ଆମୟ—ରୋଗ, ଧରଣୀଦେବ—ବ୍ରାହ୍ମଣ, ତାଳବୃନ୍ତ—ବିଞ୍ଚଣା ।

# (୩)
# ଶିଖଣ୍ଡ ମୁକୁଟ
## ରାଗ—ଆଷାଢ଼ଶୁକ୍ଳ

ଶିଖଣ୍ଡ ମୁକୁଟ, ଶିଖିଛ ଭଲା ଆଜନମ୍ମ କୂଟ । ଘୋଷା ।
ହେଲା ଯେ ସକଳ ଗୁଣ ପ୍ରକଟ, ପୁରୁଷ ଜାତି ତୁମ୍ଭେ ମଧୁଲିଟ,
ନିରପରାଧେ ଅନୁରୋଧ ତୁଟ, କଞ୍ଜରୁ ତେଇଁ କୁଟଜକୁ ଚାଟ । ୧ ।
ପ୍ରତି ନିକୁଞ୍ଜେ ତାଳ ପହପଟ, ଅବଶେଷକୁ ସାକ୍ଷୀ ନଦୀତଟ ।
ବ୍ରଜବଜାରେ ବସେ ଏହି ହାଟ, ପୁଣି ସାହସେ ନିୟମକୁ ହଟ । ୨ ।
କି ମନ୍ତ୍ରେ କରାଇ ମନ ଉଚ୍ଚାଟ, ଚାଟୁ କହୁ କହୁ ତୋଟିକି କାଟ ।
ବଚନ ସୁଧାସାର ପ୍ରତିଭଟ, ପେଟୁଟିଯାକ ନିପଟ କପଟ । ୩ ।
ପ୍ରିୟାକୁ ପିନ୍ଧାଇ ସ୍ୱ ପୀତପଟ, ଆପେ ପିନ୍ଧିବା ତାହାଲାଗି ପଟ ।
ଆହା ଏ ଗୁଣ କରିବାକୁ ସ୍ଫୁଟ, ଜଗତେ ଘଟିବେ ନାହିଁ ଯେ ଭାଟ । ୪ ।
ହୋଇଗଲ କେଡ଼େ ଅକଲ ଛୋଟ, ଚନ୍ଦ୍ରକେ ଲାକ୍ଷା ଲାଗି ହେଲା ଛିଟ ।
ଏରୂପେ ଯେବେ ସକଳ ପାଲଟ, ମନମଥ ପେଷି ଥିଲା କି ଥାଟ । ୫ ।
ବୋଲାଅ ପରା ପ୍ରଣୟଲମ୍ପଟ, ଯେ କରେ ବିଶ୍ୱାସ ତାହାକୁ ଢଟ ।
ଏ ରୀତିରୁ କେ ନ ବହିବ ରୁଟ, ଗଷି ତ ହେଲେ ଛିଣ୍ଡାଇବେ ଜଟ । ୬ ।
ତୁମ୍ଭ ବୁଦ୍ଧିବଳ ପରା ନିରାଟ, ଜାଇ ପିଙ୍ଗିଦେଇ ତୋଳ ତରାଟ ।
ମାଳା କରିବାକୁ ସଞ୍ଚ ବରାଟ, ପିଙ୍ଗିଲ ମଞ୍ଜୁଷୁ ହୀରକରାଟ । ୭ ।
ନୀପ ନିକୁଞ୍ଜ ଅବା କେତେ ବାଟ, ଶ୍ରମ ହୋଇଥିବ ବୋଲି ଉକ୍ତଟ ।
ଶ୍ରୀହସ୍ତେ ଚାଳି କୁସୁମ ଆଲଟ, କର ପରା ଉରଃ ସ୍ଥଳକୁ ଖଟ । ୮ ।

---

୩ । ଟୀକା—ମଧୁଲିଟ—ଭ୍ରମର, କଞ୍ଜ—ପଦ୍ମ, କୁଟଜ—ବଣମଲ୍ଲୀ, କୂଟ—କପଟ, ଲାଗିପଟ—ପିନ୍ଧା ଲୁଗା, ପ୍ରତିଭଟ—ପ୍ରତିପକ୍ଷ ଯୋଦ୍ଧା, ଚନ୍ଦ୍ରକ—ମୟୂରପୁଚ୍ଛ, ଛିଟ—ଚିତ୍ରିତ, ଢଟ—ଠକାଅ, ରୁଟ—ଦୁଃଖ ବା ରୋଷ, ବରାଟ—କଉଡ଼ି, ମଞ୍ଜୁଷ—ପେଡ଼ିରୁ, ହୀରକରାଟ—ଶ୍ରେଷ୍ଠ ହୀରା, ଉରଃସ୍ଥଳ—ବକ୍ଷୋଦେଶ ବା ଛାତି, ସ୍ତନସଂପୁଟ—ସ୍ତନରୂପ ଫରୁଆ, ସେ ଶେଯେ କରି କଞ୍ଜଦଳକୂଟ—ସେ ଶଯ୍ୟାରେ ପଦ୍ମପତ୍ରକୂଟ କରି ଅର୍ଥାତ୍ ଜମା କରି, କାଳକୂଟ—ବିଷ, ଘଟ ଛାଡ଼ିବା—ପ୍ରାଣ ତ୍ୟାଗ କରିବା, ଶୁକଟ—ଦୁର୍ଦ୍ଦଶା, କନ୍ୟାଟ—ସ୍ତ୍ରୀମାନଙ୍କ ରହିବା ଘର, କରଜର ମୁନେ ... ତୁମ୍ଭ ନାଟ—ଯେଉଁ ସ୍ତ୍ରୀ ତୁମ୍ଭକୁ ଦେଖି ଆନନ୍ଦିତ ହୁଏ, ସେ ଦୁଃଖରେ ନଖମୁନରେ ସ୍ୱୀୟ ରହିବା ଘରକୁ ଚିରେ, ଛାଟ—ଆଘାତ କରିବାର ଦଣ୍ଡ,

ହୃଦରେ ଲଦି ଯା ସ୍ତନ-ସମ୍ପୁଟ, ପିଅ ଯାହା ସ୍ୱାଦୁ ଅଧରପୁଟ ।
ସେ ଶେଯେ କରି କଞ୍ଜଦଳକୂଟ, ବସିଛି ଗିଳିବାକୁ କାଳକୂଟ । ୯ ।
ଆଉ ଯେ ହୁଅଇ ନାହିଁ ସେ ଲଟ, କିସ ହୋଇବ ହେଲେ ଛଟପଟ ।
ଏତିକି ମୋ ପ୍ରାଣସଖୀର ଭେଟ, କାଳକୁ ହୋଇଲାଣି ଅନିକଟ । ୧୦ ।
ହେବାରୁ ତୁମ୍ଭ ସ୍ନେହେ ଲଟପଟ, ଉତ୍ତମ ପକ୍ଷ ଛାଡ଼ିବାର ଘଟ ।
ଯାହାର ଥିବ ତେଡ଼ିକି ଆକଟ, ଦେଖିବ ତୁମ୍ଭେ ତାହାରି ଶୂକଟ । ୧୧ ।
କରଜର ମୂନେ ଚିରି କନ୍ୟାଟ, ଯେ ଦେଖି ଫୁଲୁଥାଏ ତୁମ୍ଭ ନାଟ ।
ଯେ ତୁମ୍ଭ ଦରଶନ ଚିତ୍ରପଟ, ତା ସୁଖ ମୁଖେ ଛୁଟାଇଲ ଛାଟ । ୧୨ ।
ଜାଣି ଯେ ଯିବାର ଯମୁନାଘାଟ, ଦେଖିବାକୁ ତାକୁ ଆଗେ ଝପଟ ।
ବହ ଯାହାକୁ ରଚି ବାହାପଟ, କହ କି ଦୋଷୁ ନୁହ ତାହା ପଟ । ୧୩ ।
ନିଶିତମ ହୋଇଥାଏ ବିକଟ, ଆସି ନଖେ ଠୁଙ୍କ ଯାହା କବାଟ ।
ଯେ ତୁମ୍ଭ ସ୍ନେହବିଦ୍ୟା ବଡ଼ଚାଟ, କରି ଟିକି ତାକୁ ଏଡ଼େ କପଟ । ୧୪ ।
ଜଳଦ ହୋଇଥାଏ ସର୍ବଘୋଟ, ଚପଳା ଖେଳୁଥାଇ ଝଟ ଝଟ ।
ଦୂରୁ ଡାକୁଥାନ୍ତି ଯାମିକ ଭଟ, ଆସି ପରା ତୁମ୍ଭେ ତା ସେବା ଖଟ । ୧୫ ।
କର ଆହୁରି ତୁମ୍ଭେ ସର୍ପଘଟ, କୁଞ୍ଜ ଖବର କହୁଛି କରଟ ।
କ୍ଷଣେ ଯତନେ କଲେହେଁ ଆପଟ, ନ ବାସିଯାଏ କି ଚମ୍ପକପୁଟ । ୧୬ ।
ଦେଖାଇ ମାମୁ ବୋଲି ଦ୍ୱିଜରାଟ, କାଲି ଦେଉଥିଲୁଁ ଯା ନେତ୍ରେ ଅଟ ।
ତୁମ୍ଭେ ତ ସେହି ଶ୍ୟାମବନ୍ଧୁ ଅଟ, ଶିକ୍ଷା କଲ କାହୁଁ ଏତେ କପଟ । ୧୭ ।
କାହିଁକି ଦେଲ ଏ ପ୍ରାଣ ସଙ୍କଟ, ନୋହୁଁ ବଳୀ ବକ କେଶି ଶକଟ ।
କି ହେବ ଆଉ ହୋଇ ଭଟ ଭଟ, କର୍ମକୁ ଭର୍ମ ହେଲା ଆରକୁଟ । ୧୮ ।
ଶୁଣି ଭଣିଲେ ହସି ନବ ନଟ, ଆନ ସଙ୍ଗ ମୋର ହଟଚମଟ ।
ଏକା ତୋ ସଖୀ ଜୀବନ ମୁଁ ଘଟ, ତା ଜାଣେ ଅଷ୍ଟଦୁର୍ଗ ତୁରାସାଟ ।
ଶିଖଣ୍ଡ ମୁକୁଟ, ଶିଖିଛ ଭଲା ଆଜନମୁଁ କୂଟ । ୧୯ ।



ବାହାପଟ—ବାହୁବଳ, ପଟ—ପକ୍ଷ, ଯାମିକଭଟ—ପ୍ରହରୀ, ଚୌକିଦାର; କରଟ—କୁଆ, ଆପଟ—ନିରୁଦ୍ଧ, ଚମ୍ପକପୁଟ—ଚମ୍ପାଫୁଲର ଆବରଣ, ଦ୍ୱିଜରାଟ—ଚନ୍ଦ୍ର, ଅଟ—କଜ୍ଜଳ, ଭର୍ମ—ସୁନା, ଆରକୂଟ—ପିତଳ, ତୁରାସାଟ୍—ଇନ୍ଦ୍ର ।

# (୪)

# ଚାହିଁଲା ତ ନାହିଁ

## ରାଗ—ଆଷାଢ଼ଶୁକ୍ଳ

ଚାହିଁଲା ତ ନାହିଁ, ଚକ୍ଷୁକୋଣେ ଚାରୁଚନ୍ଦ୍ରମାମୁହାଁ । ଘୋଷା ।
ଚାମରକୁନ୍ତଳା ବସନ୍ତେ ରୁଷି, ଚିନ୍ତାଜଳେ କେଉଁ ତରୁଣ ଭାସି ।
ଚତୁରା ସହଚରୀ ଆଗେ ବୋଲେ, ଚିତ୍ତରେ କି ଘେନି ଟିକିଏ ହେଲେ । ୧ ।
ଚରମ ଆଡ଼େ ଡରି ଉଭା ହେଲି, ଚାକର ଛାମୁରେ ଭେଟୁଛି ବୋଲି ।
ଚାଟୁ ଚାତୁରୀ ଚଟୁଳବଚନ, ଚାରିଶ ପଦ କଲି ନିବେଦନ । ୨ ।
ଚିବୁକ କମ୍ପାଇ ହୋଇ ବିକଳ, ଚିରିଲା ଚରଣନଖେ ଭୂତଳ ।
ଚିର ଅରଜିତ ସ୍ନେହସମ୍ପଦେ, ଚଡ଼କ ପକାଇ ନିର୍ଦ୍ଦୟେ ହୃଦେ । ୩ ।
ଚିନାଏ ଅପରାଧ ନାହିଁ ବୋଲି, ଚେଳ ଅଞ୍ଚଳ ପ୍ରସାରି କହିଲି ।
ଚଣ୍ଡ ମୂରତି ଧଇଲା କା ବୋଲେ, ଚରଣପଙ୍କଜ ଧଇଲେ ହେଲେ । ୪ ।
ଚମ୍ପକଗଉରାଙ୍ଗୀ ପ୍ରଭୁପଣେ, ଚେଟୀଙ୍କ ତୁଲେ ମୁଁ ହୋଇଲି ଜଣେ ।
ଚେର ଦେବା କାଳେ ମୋ ଭାଗ୍ୟବଲ୍ଲୀ, ଚଳି ଉପୁଡ଼ାଇ ଦେଲା କି ବୋଲି ।
ଚଢ଼ାଇ ଉନ୍ନତ ସୁଖପାଦପେ, ଚକିଆଇ ମୂଳୁଁ କାଟିଲେ କୋପେ ।
ଚିକ୍‌କଣ ନୁହଁଇ ବୋଲି ନ ଜାଣି, ଚିଟା ହେଲା ମୋରେ କାହୁଁକି ଶୁଣି । ୬ ।
ଚଣ୍ଡାଳ ଦୁର୍ଯ୍ୟୋଗରୁ ହୋଇ ଦୋଷୀ, ଚିହ୍ନ ଯେବେ ମୋରେ ରହିଛି ଗ୍ରାସି ।
ଚନ୍ଦି ଥରେ ଆଗ ପଛେ ନବୀନା, ଚତୁର୍ଥ ଉପାୟ କରନ୍ତା ସିନା । ୭ ।
ଚାତୁର୍ଯ୍ୟବତୀ ନଉକରି କରି, ଚାଲି ନ ଜାଣେ ମୁଁ ଗରବେ ପୂରି ।
ଚିରାଳ ଯୁବାଗଣେ ବାନ୍ଧିଥାଇ, ଚୂନା କରି ମୋର ତେଡ଼େ ବଢ଼ାଇ । ୮ ।
ଚାରୁବେଶାର ମୁହିଁ ଅନ୍ତରଙ୍ଗ, ଚଉପଦୀ ଗୀତ ରଚନା ସଙ୍ଗ ।
ଚଉଠେ ନ ରଖିଲା ସେ ସ୍ନେହରୁ, ଚପଳେ ଛଡ଼ାଇ ଦେଇ ଦେହରୁ । ୯ ।
ଚାମୀକରସାରଦେହା ଦେହରେ, ଚୀନବାସ ପରି ଦିନ ଯେ ହରେ ।
ଚଉକେ ଅନ୍ତର ନୁହଇ କେବେ, ଚୋର ହେଲି ତାହା ଛାମୁକୁ ଏବେ । ୧୦ ।
ଚିହ୍ନିଥାଇ ଯାକୁ କାଳକେ ଦିନେ, ଚେତି ତ ପୁଣି ସେ ପଡ଼େ ନୟନେ ।
ଚାଦରଧରାକୁ ଏହା କି କରି, ଚତୁରକ୍ଷ କେବେ ନ ହେଲା ପରି । ୧୧ ।
ଚଣ୍ଡମୟୂଖମଣ୍ଡଳ ସମାନ, ଚାହୁଁ ଚାହୁଁ ଯହୁଁ କଲା ବଦନ ।
ଚାବୁକ ବାଜିଲା ପରି ମୁଁ ଡରେ, ଚିହିଁକି ପଡ଼ଇ ପହିଲୁ ଥରେ । ୧୨ ।

---

୪ । ଟୀକା—ଚେଟୀ—ଦାସୀ, ଭାଗ୍ୟବଲ୍ଲୀଚେର ଦେବାବେଳେ—ମୋ ଭାଗ୍ୟରୂପ ଲତାରୁ ଚେର ବାହାରିବା ବେଳରେ, ଚନ୍ଦି—ଗାଳି ଦେଇ, ଚତୁର୍ଥ ଉପାୟ—ଭେଦ ବା ବିଚ୍ଛେଦ, ଚିରାଳ—ପତାକା (?), ଚାମୀକର—ସୁବର୍ଣ୍ଣ, ଚୀନବାସ—ସୂକ୍ଷ୍ମ ବସ୍ତ୍ର । ଚକାମୁହାଁ—ଗୋଲାକାର

ଚମରୀନେତ୍ରା କି ସୁଖ ପାଦରେ, ଚକଟି ପକାଇଲା ଅନାଦରେ ।
ଚଖାଇ ସୁଧା ଯା କଲା ଅନ୍ୟଥା, ଚମତ୍କାର ଲାଗୁଛି ଏହି କଥା । ୧୩ ।
ଚିରନ୍ତନ ଜନ୍ମ ସୁକୃତରାଶି, ଚନ୍ଦ୍ରଚୂଳପାଦ ପ୍ରସାଦେ ମିଶି ।
ଚାଣ୍ଡେ ଦେଇଥିଲା ବାଳାମଣିକି, ଚିପୁଡ଼ି ଦେଲା ସେ ଭାବ ଏଣିକି । ୧୪ ।
ଚେତ ମୋ ଯେବେ ନ ବଳେ ଅନ୍ନକୁ, ଚକାମୁଆଁ ସହେ ଦେବୀମାନଙ୍କୁ ।
ଚଳୁଆ ସ୍ବର ଶାର୍ଦ୍ଦୂଳକୁ ଯେବେ, ଚର୍ବଣ କର ବୋଲି ଦେଲା ଏବେ । ୧୫ ।
ଚିକିତ୍ସାଭଙ୍ଗୀ ମୋ ଅଙ୍ଗରେ ହେଜି, ଚଣ୍ଡିକା ସ୍ତୋତ୍ର ପଣ୍ଡିତାଙ୍କୁ ଖୋଜି ।
ଚନ୍ଦ୍ରଚନ୍ଦନ ବୋଳାଇ ମୋଦରେ, ଚାପସରି କାଢି ଦିଏ ଆଦରେ । ୧୬ ।
ଚାଳଇ ଯେବେ ମୁଁ ଶୁଭ ସନ୍ଦେଶ, ଚିଟାଉରେ ଲେଖି ରହି ବିଦେଶ ।
ଚାଙ୍ଗଡ଼ାଘର ଜୁରେ ଫରମାସେ, ଚରଚା କରେ ଚାରକୁ ହରଷେ । ୧୭ ।
ଚନ୍ଦ୍ରକୁ ଚନ୍ଦ୍ରିକା ପିଇବା ଆଶେ, ଚକୋର ପରି ଅନୁସରି ପାଶେ ।
ଚିନ୍ତୁଥାଇ ଅସାଧାରଣ ଫଳ, ଚହକିଲା କାଳେ ସମ୍ପତ୍ତିମୂଳ । ୧୮ ।
ଚିକୁରପାଶରେ ଦନ୍ତପତ୍ରିକା, ଚଳାଇବାକୁ ହେବାରୁ ମୋ ଦକା ।
ଚାକୁରେ କରଜ ଚିରୁଣୀ ପରି, ଚିରି ସଜଡ଼ାଇ ଆଶ୍ୱାସି କରି । ୧୯ ।
ଚେତା ବିହୁନେ ପହୁଡ଼ିବା କାଳେ, ଚିତ୍ରଇ - ଚରଣ ଅଳତାବୋଳେ ।
ଚେତିଲେ ଯାହା ବୋଲେ ଲଭି ଲାଜ, ଚେତାଉ ନାହିଁ ସେ ରସକୁ ଆଜ ।।
ଚନ୍ଦ୍ରିକାବିହୀନ ରଜନୀକାଳେ, ଚାନ୍ଦନୀସୋପାନ ଉଠିବାବେଳେ ।
ଚନ୍ଦ୍ରଦୀପ ତା ଛାମୁରେ ନ ଥିଲେ, ଚେତନା ମୋ ଦେହେ ନ ଥାଇ ଭଲେ ।।
ଚାନ୍ଦୁଆ ଅବନ୍ଧା ମନ୍ଦିର ତଳେ, ଚାଳଇ ଯେବେ କେବେ କୁତୂହଳେ ।
ଚଉପହରା ଦାସୀଙ୍କ ଉପରେ, ଚାପଡ଼ ଫରମାସଇ କୋପରେ । ୨୨ ।
ଚାକଚକ୍ୟବନ୍ତ ସୁନ୍ଦର ଗାଲେ, ଚୁମ୍ବଇ ଯେବେ ମୁଁ କାମଅମଳେ ।
ଚମକିବ ଭୀରୁ ବୋଲି ଏ ଡରେ, ଚୁମୁତ୍କାର ରବ ନ କରେ ଥରେ । ୨୩ ।
ଚଉଦରୁ ବଳି ବୟସ ହେଲା, ଚଞ୍ଚଳ କ୍ରମ ତା କେବେ ନ ଗଲା ।
ଚାକିରୀ କଲେ କରୁଥାଏ ହଟ, ଚଉଡ଼ାଇ ଦେଇ କି ସ୍ନେହ ଘଟ । ୨୪ ।
ଚୁହାଁଚୁହିଁ ନାହିଁ ଆନରେ ବୋଲି, ଚକାରେ ନିୟମ ଯେତେ ମୁଁ କଲି ।
ଚଉବିଂଶ ପଦୁଁ ବଳେ ଗଣିଲେ, ଚତୁର ଶ୍ରୀ ଛୋଟରାୟ ଭଣିଲେ ।
ଚାହିଁଲା ତ ନାହିଁ, ଚକ୍ଷୁକୋଣେ ଚାରୁଚନ୍ଦ୍ରମାମୁହିଁ । ୨୫ ।



ମୁଆଁ ନାମକ ମିଷ୍ଟାନ୍ନ, ଚିକିତ୍ସାଭଙ୍ଗୀ—ସ୍ୱାସ୍ଥ୍ୟଭଙ୍ଗ, ଚନ୍ଦ୍ର—କର୍ପୂର, ଚାଙ୍ଗଡ଼ାଘର—ଗନ୍ତାଘର ବା ସରଘର, ଦନ୍ତପତ୍ରିକା—(ଏଠାରେ) ପାନିଆ, ଚାନ୍ଦନୀସୋପାନ—ମଣ୍ଡପର ପାହାଚ, ଚଣ୍ଡମୟୂଖ— ସୂର୍ଯ୍ୟ, ଚଉଡ଼ାଇ ଦେଇ—ଚଡ଼କାଇ ଦେଇ ବା ଫଟାଇ ଦେଇ ।

# (୫)

# ସେ ପୀରତି ସତେ

## ରାଗ—ଆଷାଢ଼ଶୁକ୍ଳ

ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ । ଘୋଷା ।
ଶାରଦା ନୁହେ କରେ ବାବଦୂକ, ଅମଳ ନୋହେ ଅତି ଉନ୍ମାଦକ,
ହୋଇ ହୃଦୟ ଅଦୃଶ୍ୟ ପଦକ, ହଜାଇ ଦିଅଇ ବିବେକଯାକ । ୧ ।
ସୁମ ନୋହି କରେ ଦିବ୍ୟ ସୁଗନ୍ଧ, ସମଜଇ ନାହିଁ ନୁହଇ କନ୍ଧ,
ପଟଳ ନୋହି ଚକ୍ଷୁ କରେ ଅନ୍ଧ, ଶୃଙ୍ଖଳ ନୋହେ ଦୃଢେ କରେ ବନ୍ଧ । ୨ ।
ନୋହେ ବଇରାଗ୍ୟ ତେବେ ସେ ଦେହେ, ତାହା ବିନା ଯତ୍ନ ଲବେ ନ ରହେ
ଅଜ୍ଞାନ କରେ ମୂର୍ଖପଣ ନୋହେ, ଅନ୍ନ ନୋହି ଶୀର୍ଣ୍ଣ କରେ ବିରହେ । ୩ ।
ନୋହେ ଚନ୍ଦ୍ରକର କରେ ଆହ୍ଲାଦ, ଅମୃତ ନୁହେଁ ସେ ତହୁଁ ସୁଆଦ,
ଚିନ୍ତା ନୁହେଁ ଜାତ କରେ ବିଷାଦ, ବଢ଼ାଏ ଗରବ ନୁହେଁ ସମ୍ପଦ । ୪ ।
ନୁହଇ ଶରୀରରଖା ମନ୍ତର, ଦର ହେତୁରୁ ନ ଜନ୍ମାଏ ଦର,
ହୁଏ ନିଦାନଭୂତ ବିନାଦର, ପଲ୍ଲବାଏ ଅସଦୃଶେ ଆଦର । ୫ ।
ନୋହେ ଘୂକନେତ୍ରଗୋଳା କଜ୍ଜଳ, ଦୃଶ୍ୟ କରାଏ ଗାଢ଼ତମ ସ୍ଥଳ,
ଲଘାଏ ଦୁର୍ଗ ନୋହେ ଜଘାବଳ, ବୁଡ଼ାଇ ଦିଅଇ ନୁହଇ ଜଳ । ୬ ।
ଅତି ଚମତ୍କାରତର ତା ଲୀଳା, ନାହିଁ ଦେହ ନୁହେଁ ଚିତ୍ରକୁଶଳା,
ଲେଖଇ ସଂସାରେ ନ ରଖି ତୁଳା, ପ୍ରତି ଦିଗେ ପ୍ରିୟଜନ ପିତୁଳା । ୭ ।
ଅଭିପ୍ରେତ ଗଲେ ନୟନେ ପଡ଼ି, ଅଟକଇ ପଦ ନୁହଇ ହଡ଼ି,
ନ ଥାଏ ଭୁଜ ରହିଥାଏ ଭିଡ଼ି, ନୁହଇ ପରାଣ ନୁହଇ ଛାଡ଼ି । ୮ ।
ପୁତ୍ର କଳତ୍ର ସମ୍ପତ୍ତି ଆବାସେ, ରୁଚି ବିନା ବିଷ ପରି ଆଭାସେ,
ଚିନ୍ତା ଜନ୍ମାଇ ଦିଅଇ ମାନସେ, ଆହା କି ବିଚିତ୍ର ରସନଦୀ ସେ । ୯ ।
ବିଚ୍ଛେଦ କ୍ଷଣ କରଇ ବରଷେ, ସଙ୍ଗମେ ଅଶେଷ ସୁଖ ବରଷେ,
ବର ଆକର ସବୁ ଭାବର ସେ, ଅତି ବିଷମ ହୁଏ ନବ ରସେ । ୧୦ ।
ସନ୍ତପ୍ତ କରେ ନୁହଇ ତପନ, ଅନ୍ତକ ନୁହେ ହରଇ ଜୀବନ,
ମନୁ ଜନମେ ନୁହଇ ମଦନ, ଦନୁଜ ନୋହେ ସେ ପିଶିତାଶନ । ୧୧ ।

୫ । ଟୀକା—ଶାରଦା—ସରସ୍ୱତୀ, ବାବଦୂକ—ବାଚାଳ, ପଦକ—ହାର ମଧ୍ୟବର୍ତ୍ତୀ ଅଳଙ୍କାରବିଶେଷ, ସୁମ—ଫୁଲ, କନ୍ଧ—ଅରଣ୍ୟଜାତୀୟ ଲୋକ, ଘୂକ—ପେଚା, ଜଘାବଳ—ବେଗଗାମୀ ଦୂତ, ହଡ଼ି—ହରିକାଠ, ପ୍ରତିବନ୍ଧକ; ପିଶିତାଶନ—ମାଂସଭକ୍ଷକ,

ନୁହଇ ପରଶୁ କେଦାର ପରି, ପାରଇ ଫଣୀ-ଫଣାମଣି ହରି,
ମନୋରଥ ପଥେ ନ ଥିବା ଶିରୀ, ହେଲେ ଦିଅଇ କରଗତ କରି । ୧୨ ।
ନୋହେ ବହଳ ଉପାନହ ଯୋଡ଼ି, କଣ୍ଟକେ କଟାକ୍ଷ ନ କରେ ଅଡ଼ି,
ବୃଷ୍ଟିବାରଣ ଛତ୍ର ନ ପକଡ଼ି, ନ ମାନେ ନଭମାସ ନିଶା ଝଡ଼ି । ୧୩ ।
ନୁହଇ ପାଷାଣ ମୂଷା ସମାନ, ନ ମାନେ ରାଢ଼ପଣେ ଦାଢ଼ ମୂନ,
ନୁହଇ ଖେଚର ସିଦ୍ଧସାଧନ, ଧନଦାଳୟକୁ ପେଷଇ ମନ । ୧୪ ।
ଫଳେ ନାନାଫଳ ନୋହେ ବ୍ରତତୀ, ସ୍ମର ସହଚରୀ ନୁହେ କେଳତି,
ମର୍ମରେ ଭେଦଇ ନୁହଇ କାତି, ମଦିରା ନୋହି ଯା ହରଇ ଜାତି । ୧୫ ।
ଅତ୍ରି ମୁନିଙ୍କର ଗୋତ୍ର ସମ୍ଭବୀ, ଭୂଦେବ ରାୟଗୁରୁ କବିରବି,*
ସଂଶୟ ଧ୍ୱଂସ ନୋହିବାରୁ କିଛି, ବିଚାରି ମାନସେ ପଚାରୁଅଛି ।
ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ । ୧୬ ।



## (୬)
## ଛୋଟ ଝୁମ୍ପା

ତୋ ଚାରୁ ଚାହାଣି ଚାହିଁ, ମରି ତୁ ଆବୁର ସାରି ପକା ପଛେ, ମୋ ନିଆଳୀ, ମୋ ଦେହ ତ ସହୁ ନାହିଁ । ୧ । ଦିଅ ଯେତେ ଇଚ୍ଛା ଦଣ୍ଡ, ଝୁମି କାମ ସଙ୍ଗେ ଝୁଣି ଦେବି ସିନା, ମୋ ନିଆଳୀ, ଝଳି ଝଳମଲ ଗଣ୍ଡ ।। ହେବୁଟି କି ଶିରଗଭା, କାଳ ସହୁନାହିଁ ବାଳମୃଗଦୃଶା, ମୋ ନିଆଳୀ, ନୂଆ ବିକଶିତ ଶୋଭା । ୩ । ତୋହ ପରି ତୁହି ସିନା, ବିଜେ କଲା ପୁରେ ପୁରି ରହୁଥାଏ ମୋ ନିଆଳୀ, ବନଜ - ବନ - ବାସନା । ୪ । ଅଛି ଯେବେ ଅନୁକମ୍ପା, କାତି ଝିଙ୍କି ପଛେ ଛାତିରେ ପ୍ରହାର, ମୋ ନିଆଳୀ, ହୀରା ବୁଲାକି ନ କମ୍ପା । ପାସୋର ବାସର ଲାଜ, ପଛକୁ ପକାଇ ନ ଦେଲେ ନ ଚଳେ, ମୋ ନିଆଳୀ, ବିଧି ନିଷେଧକୁ ଆଜ । ୬ । ତୋ କୁଚ ତ କରକଶ, ସବୁ ଗୁମାନ ଆଉ କେତେବେଳକୁ, ମୋ ନିଆଳୀ, ଥରେ ମୋହ କରେ କଷ । ୭ । ତୁମ୍ଭେ କଲେ ଶରଧା, ଚରଣଠାରୁ କବରୀଯାଏ ତୋର, ମୋ ନିଆଳୀ, କାହିଁ ପୂରି ନାହିଁ ସୁଧା । ୮ । ଚତୁରଦଶ ଭୁବନେ, ରସବତୀ ଚକ୍ର ଚୂଡ଼ାମଣି ବୋଲି, ମୋ ନିଆଳୀ,

---

ପରଶୁକେଦାର—ଏକପ୍ରକାର ଗଦ, ଏହାର ଗନ୍ଧରେ ସାପ ମୁଣ୍ଡ ନୁଆଁଇ ପଡ଼ି ରହେ । ଉପାନହ—ଯୋତା, ନଭମାସ—ଶ୍ରାବଣମାସ ।

୬ । ଟୀକା—ବନଜବନବାସନା—ପଦ୍ମବନର ସୁବାସ, ହୀରାବୁଲାକି—ହୀରାର ଦଣ୍ଡୀ ।

* ପାଠାନ୍ତର—ଶ୍ରୀଛୋଟରାୟଦେବ ସଭା କବି ପ୍ରସିଦ୍ଧ ବଳଦେବ କବିରବି ।

ତୋ ବିନା ଆନେ ନ ମାନେ । ୯ । କାହିଁକି ଚାଲୁ ତୁ ତଳେ, ଘାଣ୍ଟି ହେଉଅଛି କଣ୍ଠୀରବମଧ୍ୟା, ମୋ ନିଆଳୀ, ମୋ ମନଯାକ ବିକଳେ । ୧୦ । ଆନ ନାହିଁ ତୋହ ବିନା, ଅଷ୍ଟଦୁର୍ଗଧରାବର ଆରେ ଧୀରା, ମୋ ନିଆଳୀ, ତୋହର ଅଧୀନ ସିନା । ୧୧ ।



## (୭)
## ଜାଇଫୁଲ ଚୁମ୍ବା ଚଉତିଶା

କରୀଗତି ଚାନ୍ଦମୁହିଁ, କରି ଗତି ରତେ ରଜନୀ ପୁହାଏ, ଜାଇଫୁଲ ରେ, ତୋ ରୂପ ଲାବଣ୍ୟ ଚାହିଁ । ୧ । ଖରପରଶୁମୋହନା, ଖଣ୍ଡପରସା ବଚନକୁ କହ, ଜାଇଫୁଲ ରେ, ଖଣ୍ଡ ହୃଦୟ ବେଦନା । ୨ । ଗିରୀଷମ କାଳେ ଧନ, ଗିରିସମ କୁଚେ ଲେପି ଚନ୍ଦନ, ଜାଇଫୁଲ ରେ, କରୁଥାଉ ଆଲିଙ୍ଗନ । ୩ । ଘନସାର ମୋ ହୃଦରୁ, ଘନସାରକେଶୀ ଝାଡ଼ି ଦେଇ କରି, ଜାଇଫୁଲରେ, ଗାଢ଼େ ଆଲିଙ୍ଗନ କରୁ । ୪ । ନାଗରମଣିକି ତତେ, ନାଗମଣିକୁମ୍ଭସ୍ତନା ସମାନ ରେ, ଜାଇଫୁଲ ରେ, ହୋଇବେ ନୋହେ ପରତେ । ୫ । ଚନ୍ଦ୍ରମୁହାଁ ପ୍ରାଣଧନ, ଚନ୍ଦ୍ର ମୁହିଁ ଚାଳି ରତି କଲା କାଳେ, ଜାଇଫୁଲ ରେ, ଶୀତ୍କାରେ ଭଜୁ ଅଞ୍ଜାନ । ୬ । ଛାଇ ବିପରୀତ ମୋର, ଛାଇଟି ପରାଏ ଦେହକୁ ନ ଛାଡ଼େ, ଜାଇଫୁଲ ରେ, ସେରୂପେ ଥିବି ପାଶର । ୭ । ଜାତୀକରଜା ସୁକେଶୀ, ଜାତିକର ଦିବ୍ୟହୀରକ ସୁଦନ୍ତୀ, ଜାଇଫୁଲ ରେ, ଚନ୍ଦ୍ରଚନ୍ଦ୍ରମା ସୁହାସୀ । ୮ । ଝଳି ସୁନାଅଙ୍ଗୀ ରତେ, ଝଳି ସୁନା ପରି ଗାଢ଼େ ଭିଡ଼ି କରି, ଜାଇଫୁଲ ରେ, ନ ଦେଉ କି ସୁଖ ମତେ । ୯ । ନିଶାରେ ସିତକରଜା, ନିଶାରେ ଶୀତରେ ଆଦର ନ କରି, ଜାଇଫୁଲ ରେ, ଅଙ୍ଗସଙ୍ଗେ ଦେଉ ମଜା । ୧୦ । ଟିକାଏ ବିକଳ ନୋହି, ଟୀକା ଏବେ କାମରଜାର ଭାଙ୍ଗିବି, ଜାଇଫୁଲ ରେ, ତୋ ସାହାରେ ପ୍ରାଣସହି । ୧୧ । ଠଉରିବି ନାହିଁ ବୋଲି, ଠଉରି ବିରାଗ ପାଇଣ ମଦନ, ଜାଇଫୁଲ ରେ, ପଳାଏ ରତେ ଛଇଳି । ୧୨ । ଡାକି କରିଗତି ତୋତେ, ଡାକି କରିଅଛି ଡାକମଝା ସରି, ଜାଇଫୁଲ ରେ, ନୁହଇ ମୁଁ କଦାଚିତେ । ୧୩ । ଢାଳି ସୁଧାକର - ମୁଖ, ଢାଳି ସୁଧା କି ଭଙ୍ଗୀରେ ଚାହୁଁ ଥାଉ, ଜାଇଫୁଲ ରେ, ଉପୁଜାଇ କେତେ

୭ । ଟୀକା—ଖଣ୍ଡପରଶୁମୋହନା—ଶିବଚିତ୍ତହାରିଣୀ, ଘନସାର—କର୍ପୂର ବା ଚନ୍ଦନ, ଘନସାରକେଶୀ—କଜ୍ଜଳକୁନ୍ତଳା, ନାଗରମଣୀ—ପାତାଳପୁରବାସିନୀ, ନାଗମଣିକୁମ୍ଭ—ବଡ଼ ହାତୀର କୁମ୍ଭସ୍ଥଳ, ଛାଇ ବିପରୀତ—ଇଚ୍ଛା, ଜାତିକର—ଉତ୍କୃଷ୍ଟ, ଚନ୍ଦ୍ର—କର୍ପୂର, ସିତକରଜା—ଶୁକ୍ଳବର୍ଣ୍ଣ

ସୁଖ । ୧୪ । ଅବଧରି ତୋ ଆଜ୍ଞାକୁ, ଅବଧ ରିପୁ କାମକୁ ଦଣ୍ଡ ଦେବି, ଢାଇଫୁଲ ରେ, ସେବାରେ ଘେନି ମନକୁ । ୧୫ । ତାରତମ କଲେ ସହି, ତାର ତ ମଧରେ କଳଙ୍କ ମୁଖକୁ, ଢାଇଫୁଲ ରେ, ଇନ୍ଦ୍ରସମ ହେବ କେହି । ୧୬ । ଥର ଥରକେ ମୋ ଅଙ୍ଗ, ଥରଥର ହୁଏ କାମଶରଘାତେ, ଢାଇଫୁଲ ରେ, ରତୁରେ ନ ପାଏ ସଙ୍ଗ । ୧୭ । ଦରଶନକମୋହିନୀ, ଦରଶନ ବିନା ତୋହର କାମକୁ, ଢାଇଫୁଲ ରେ, ନୋହିଲେ ଥାଏ ନ ମାନି । ୧୮ । ଧରମ ନ କରି ନିକି, ଧର ମନରେ ପାଇଛି ମୁହିଁ ହେମ, ଢାଇଫୁଲ ରେ, ଚମ୍ପକସୁବରନୀକି । ୧୯ । ନରବର -ସୁତା ଘେନ, ନରବରଙ୍କେ ସମାନ ସତେ ନାହିଁ, ଢାଇଫୁଲ ରେ, ପାଇ ତୋ ପ୍ରେମରତନ । ୨୦ । ପରମଦାବଚ ସହି; ପରମ ଦାରୁଣ ଫୁଲଧନୁ ପାଦେ, ଢାଇଫୁଲ ରେ, ଅନୁସରି ଅଛି ମୁହିଁ । ୨୧ । ଫୁଲୁଥାଏ ଯେବେ ନାସା, ଫୁଲୁଥାଏ କାମ ମନ ସାହା ପାଇ, ଢାଇଫୁଲ ରେ, କରିଣ ତୋତେ ଭରସା । ୨୨ । ବରଷ ଶହେ ତପରେ, ବଚ ସଂଶୟେ ଛାଡ଼ି ପୂର୍ବେ ପାଇଛି, ଢାଇଫୁଲ ରେ, ଶିବଙ୍କୁ ମନାଇ ବାରେ । ୨୩ । ଭାରତୀକି ଶୁଣି ତୋର, ଭାରତୀ କି ପାଞ୍ଚୁ ବୀଣା ଫିଙ୍ଗି ଦେବେ, ଢାଇଫୁଲ ରେ, ଲଜ୍ଜାରେ ହୋଇ କାତର । ୨୪ । ମନମଥ ନାମ ଯାର, ମନମଥନୀ ତୁ ଅଟୁ ତାହାର, ଢାଇଫୁଲ ରେ, ଶଶିହାସୀ ରାମାବର । ୨୫ । ଜୀବନଜବଦନାକୁ, ଜୀବନ ଯତନେ ବିକି ଦେଇଅଛି, ଢାଇଫୁଲ ରେ, କି ଡର କାମ ଛାରକୁ । ୨୬ । ରତିକର ତୁଳା ତୋର, ରତି କରକରଦନା ଉଣାହେବ, ଢାଇଫୁଲ ରେ, ସମ କେ ଅଛି ସଂସାରେ । ୨୭ । ଲକ୍ଷ ଦେବୀ ସେବା କରି, ଲକ୍ଷ୍ୟ ଦେବି ତୋତେ ବିଚାରି କବିଏ, ଢାଇଫୁଲ ରେ, ନ ପାଇଲେ ତିନି ପୁରୀ । ୨୮ । ବଳିଆଇ କହ ଧନ, ବଳିଆଇ ଶୂର ରଖି ଜୀବନରେ, ଢାଇଫୁଲରେ, ତୋ ଅଧର ସୁଧାପାନ । ୨୯ । ସାରସଗତି ମହିଳା, ସାରସଙ୍ଗତ ପାଇ ମୁହିଁ ନିରତେ, ଢାଇଫୁଲ ରେ, ଭାବେ ହେଉଥାଏ ଭୋଳା । ୩୦ । ସୁବରନକୁ ତୋହର, ସୁବରନ ସରି ନୋହିଣ ଅନଳେ, ଢାଇଫୁଲ ରେ, ଦହୁଅଛି ତା ଶରୀର । ୩୧ । ସୁରମଣୀ ପାଶେ ଥିଲେ, ସୁରମଣି ପଦ ବଳାତ୍କାରେ ମୋର, ଢାଇଫୁଲ ରେ, ପଡ଼ିଥାଏ ପାଦ ତଳେ । ୩୨ । ହରବର ପାଇ କେତେ, ହର ବର ପାଇ ପାଇଲି ତତେ, ଢାଇଫୁଲ ରେ, ନ ଥିଲା ମନେ ପରତେ । ୩୩ । କ୍ଷିତି ପହଞ୍ଚିବା ଭାବ, କ୍ଷିତିପ ହରିଚନ୍ଦନ କହେ ତତେ, ଢାଇଫୁଲ ରେ, ଦେଖି ଦିବକୁ ତେଜିବ । ୩୪ ।



ନଖ ଯାହାର, ନିଶାରେ—ଅନୁରାଗାଧିକ୍ୟରେ, ନିଶାରେ—ରାତିରେ, ଟୀକା—ଟେକ, ବଡ଼ିମା; ଅବଧ ରିପୁ—ଦୁର୍ଜୟ ଶତ୍ରୁ, ନରବରସୁତା—ରାଜକନ୍ୟା, ନରବରଙ୍କ—ନରଶ୍ରେଷ୍ଠ, ଭାରତୀ—କଥା ଓ ସରସ୍ୱତୀ, ଜୀବନଜବଦନା—ପଦ୍ମମୁଖୀ, ରତିକର ତୁଳା—ଅତି ସାମାନ୍ୟ ଓଜନରେ, ସୁରମଣି—ଇନ୍ଦ୍ରମଣି ।

## (୮)

# କାମଦୁହା ଚଉତିଶା

### ରାଗ—ପୂରବୀ

କିଶୋରୀଙ୍କ ବର ଯଦୁପତି, କରି ଚିର ପରବାସେ ସ୍ଥିତି ।
କୁନ୍ଦକଇରବହାସୀଙ୍କ ପୂରୁବ ରସବଶ ହୋଇ ଜଳପନ୍ତି ।
ଆରେ କଳଭାଷି । କୃଶୋଦରୀ କମନୀୟ ମୁଖଶଶୀ ।
କଳାକଲ୍ଲୋଳିନୀ କେଳିକଳହଂସୀ, କାମ ମଦିରା ମହତ୍ତ୍ୱ ସମୁଲ୍ଲାସୀ । ୧
ଖଟଣି କିଙ୍କରଙ୍କର ମେଳେ, ଖଟିଥିବ ଯେ ତୋ ଖଟତଳେ ।
ଖମଣିମଣ୍ଡଳ ଜିଣି ଯିବା ଫଳ ଲୁଟିଯିବ ତା ଚରଣ ମୂଳେ ।
ଆରେ ଖେଳାଲୋଳା, ଖଞ୍ଜରୀଟରୁ ବଳେ ତୋ ନେତ୍ରଲୀଳା ।
ଖୁରିଅର୍ଦ୍ଧ ନ ଥାଇ ସ୍ନେହରେ ହେଲା, ଖଣ୍ଡପରଶୁ ମନମୋହନଶୀଳା । ୨ ।
ଗତିରେ ବିବିଧ ଭଙ୍ଗୀ ଭରୁ, ଗଜେନ୍ଦ୍ର ଗରବ ହେଲେ ହରୁ ।
ଗଗନ ସଲୀଳଚାରୀ ହଂସକୁଳ ଦିନଯାଏ ଡରି ମରୁ ମରୁ ।
ଆରେ ଗଣ୍ଡିଧନ, ଗୁଣବତୀ ମୁଁ ଚାତକ ନବଘନ ।
ଗତରସ ହେଲା କେତେ ସୁଖମାନ, ଗର ଗିଳିବାକୁ ହେଉଅଛି ମନ । ୩ ।
ଘଟପୀନସ୍ତନା ଚାରୁ ବେଣୀ, ଘେନାଘେନି କେତେ ଜାଣୁ ପୁଣି,
ଘୋରତର ସ୍ମରପ୍ରତାପ ସାଗର ମଧ୍ୟରୁ ତୁ ମୋର ଉଦ୍ଧାରିଣୀ ।
ଆରେ ଘନକେଶା, ଘନଜଘନା ମହାମଣ୍ଡନ - ବେଶା ।
ଘୋରା ଶ୍ରୀଖଣ୍ଡବାସିନୀ ବରଯୋଷା, ଘାରି ପକାଇଛି ତୋ ବିଚ୍ଛେଦଦଶା । ୪ ।
ନ ପାରେ ମା ବୋଲି ଅଡୁଥାଉ, ନମ୍ରେ କରଯୁଗ ଯୋଡୁଥାଉ,
ନିଶ ପରି ଗେଲେ ମୋଡୁଥାଉ, ହସି ନତନୁ ଲଢ଼ାଇ ଲୋଡୁଥାଉ ।
ଆରେ ନତ ଅଙ୍ଗୀ, ନୂଆ ବୟସୀ ନର୍ମଚଞ୍ଚଳାପାଙ୍ଗୀ ।
ନେତ୍ର ବରଛି ତୁ ଏକା ଜାଣୁ ପିଙ୍ଗି, ନାହିଁ କରିବାରେ ଥାଏ କେତେ ଭଙ୍ଗୀ । ୫ ।
ଚରଣୁ ଚିକୁର ଯାଏ ତୋର, ଚୁମ୍ବିବାରେ ଚିତ୍ତ ଥାଏ ମୋର,
ଚେତା ବିହୀନେ ପହୁଡ଼ିଥାଉ, ଚେଳ ଚୋରାଇ ମୁଁ କରେ ଦିଗମ୍ବର ।

---

୮ । ଟୀକା—କୁନ୍ଦକୈରବହାସୀ—କୁନ୍ଦଫୁଲ ଓ କଇଁଫୁଲପରି ହାସ ଯାହାର, ଖଟଣୀ—ସେବା, ଖୁରିଅର୍ଦ୍ଧ—ମୁହୂର୍ତ୍ତମାତ୍ର, ଗର—ବିଷ, ଘୋରା ଶ୍ରୀଖଣ୍ଡବାସିନୀ—ଘୋରା ହୋଇଥିବା ଚନ୍ଦନ ପରି ଯାହାର ଦେହ ବାସେ, ନର୍ମ—ପରିହାସ, ଚିକୁର—କେଶ, ଚେଳ—ବସ୍ତ୍ର; ଦିଗମ୍ବର—ବସ୍ତ୍ରଶୂନ୍ୟ,

ଆରେ ଚନ୍ଦ୍ରମୁଖୀ, ଚେତି ଚମକି କି ଲାଜେ ବୁଜୁ ଆଖି ।
ଚେଳ କରୁ ମୋତେ ମୋ ଅଙ୍ଗରେ ଲାଖି, ଚକ୍ଷୁଇଷ୍ଟଅଙ୍ଗ ନ ପାରଇ ଦେଖି । ୬ ।
ଛଣା ପୀୟୂଷ ସଦୃଶ ରସେ, ଛପିଥାଏ ଲାଜ କି ବିଳାସେ,
ଛ ଚାରିଦିଗ ସୁନ୍ଦର ଦିଶୁଥାଏ, ଛଇଳା ଲାବଣ୍ୟ ପରକାଶେ ।
ଆରେ ଛବିନିଧି, ଛାମୁ ଛାଡ଼ିବାକୁ କଲା ମନ୍ଦ ବିଧି ।
ଛେଚି ହୋଇବାକୁ ଜାତ ହୁଏ ବୁଦ୍ଧି, ଛେଲ ମାରି ହେବି ରହିଥାଉ ସିଦ୍ଧି । ୭ ।
ଜପାମାଳା ତୁ ମୋ ସ୍ୱନିବାସୁ, ଯେତେବେଳେ ନିକୁଞ୍ଜକୁ ଆସୁ,
ଜଙ୍ଗମ ହେବାର ଜମ୍ବୁନଦ ସାର ଜଗତଜୀବା ତୁ ପରି ଦିଶୁ ।
ଆରେ ଜବାଧରା, ଜମ୍ଭାରାତି ମଣି ନୀଳତର ତାରା ।
ଜମ୍ବୁନଦ ଧରାଧର ପୟୋଧରା, ଜକାଜକି କଉତୁକ ଧୂରନ୍ଧରା । ୮ ।
ଝୁଲି ଝୁଲି ଚାଲୁ ମୋଦ ମଦେ, ଝୁମୁ ଝୁମୁ ତୋ ଝୁଣ୍ଟିଆ ନାଦେ ।
ଝଟତି ନିର୍ଜରପ୍ରଭୁ - ଶିରୀ ଶିର ଝରାକୁ ମୁଁ ଝୁଣ୍ଟିଯାଏ ପାଦେ ।
ଆରେ ଝଳି ଗୋରୀ, ଝୁଲି ଜାଣୁ ଭଲା ହେଲେ ମୋହ ପରି,
ଝଲକଇ ଝାଳବ୍ୟାଜ ସୁଧା ଝରି, ଝଟ ଝଟ ହେଉଥାଏ ଭୂଷା ଶିରୀ । ୯ ।
ନମ୍ରମୁଖେ ମଣିସାନୁ ଥାଏ, ନିକଟେ ପୀୟୂଷଭାନୁ ଥାଏ,
ନଥ ତୁଲେ ନାଟ ବାଦେ କରି ହଟ ବୁଲାକି ଝୁଲା କି ମାନୁଥାଏ ।
ଆରେ ନାରୀବର, ନୃତ୍ୟ କରୁଥାଏ ପୟୋଧରେ ହାର ।
ନେତ୍ରଦ୍ୱୟ ଏକା ସିନା ସାକ୍ଷୀ ମୋର, ନାଦେ ତୋଷୁଥାଏ ମଧ ଅଳଙ୍କାର । ୧୦ ।
ଟୋପି ଟୋପି ଝାଳ ଚୂର୍ଣ୍ଣ କେଶେ, ଟିକି ଟିକି ମୋତି ପରି ଦିଶେ,
ଟେକି ଟେକି ଘେନି ଯାଉଥାଉ ସ୍ୱର୍ଗସୁଖ ବଡ଼ଭୀକି ବଡ଼ ରସେ ।
ଆରେ ଟଭାସ୍ତନା, ଟଳି ପଡୁଥାଏ ମୋର ବିବେଚନା ।
ଟାଣି ଘେନିଯାଉ ହେଲେ ମୋ ବେଦନା, ଟିକାୟିତ ତୁ ରସିକାଚକ୍ରେ ସିନା ।୧୧।
ଠ - ବର୍ତ୍ତୁଳ ମୁଖ ସୁଧାଧାମ, ଠାଣି ତ ତ୍ରିଲୋକେ ନିରୁପମ,
ଠୁଳ ହେଉଥାଏ ଥରେ ଥରେ ନେତ୍ର ନୀଳକୁଞ୍ଜ ବୁଜା ଶୋଭାସ୍ତୋମ ।
ଆରେ ଠିକହାସି, ଠକପଣ ପୁଣି କିଛି ଥାଏ ମିଶି ।
ଠଉରାଇବ କେ ତୋ ବିଭ୍ରମରାଶି, ଠାର ନେତ୍ରାନ୍ତ ମନେମୋହନପାଶୀ ।୧୨।

ଜମ୍ବୁନଦଧରାଧର—ମେରୁପର୍ବତ, ନିର୍ଜର ପ୍ରଭୁ—ଇନ୍ଦ୍ର, ମଣିସାନୁ—(ଏଠାରେ) ତତ୍ ସଦୃଶ କୂଟ, ବଡ଼ଭୀ—ଚନ୍ଦ୍ରଶାଳା, ରସିକାଚକ୍ରେ—ରସିକାସମୂହରେ, ଟିକାୟିତ—ସମ୍ଭ୍ରାନ୍ତ, ଶୋଭାସ୍ତୋମ—ଶୋଭାସମୂହ, ଟିଲ୍ଲୀ—ଭ୍ରୂଲତା, ଶୋଭାଧର—ରକ୍ତବର୍ଣ୍ଣ ଓଷ୍ଠ, ଅସିତ—କୃଷ୍ଣ,

ତରୁଆଟି ପରି ଟେକି ଚିଲ୍ଲୀ, ତେରି କର୍ଣ୍ଣପାଶ ନ ଚହ୍ଲି ।
ତାକିଲେଣି ସଖୀ ଦେଉଅଛି ରଖି ଏବୁକୁ ଏତିକି ହେଉ ବୋଲି ।
ଆରେ ତାକିକଟି, ତିଆଁ ମାରି ଯିବାକୁ ବସନ୍ତେ ହଟି ।
ତକା କରଇ ମୁଁ ବନ୍ଧୁ ସରିଲିଟି, ତୋଳା କରାଉ ଅପାଙ୍ଗତଟି ନଟୀ । ୧୩ ।
ଢାଳି ଅନୁକମ୍ପା ରସଝର, ଢୁକାଇ ମୋ ଉରେ ପୟୋଧର ।
ଢୋକେ ଢୋକେ କରି ପିଆଉ ନାଗରୀମଣି ଅତି ସ୍ୱାଦୁ ଶୋଣାଧର ।
ଆରେ ଢଳାଢୋଳା, ଢାଙ୍କି ପକ୍ଷ୍ମ ଫେଡ଼ି ପୁଣି ରଚୁ ଖେଳା ।
ଢକ୍‌କା ସ୍ମରଣେ ତୋ କିଙ୍କିଣୀମାଳା, ଢମ ଢମାଳୀ ଶ୍ରବଣେ ଅନୁକୂଳା ।୧୪।
ଅସିତ ତିଳକ ଲଲାଟରେ, ଅଳିକି ଅନାଇ ଅଳୀକରେ,
ଅମ୍ଳାନ ଶ୍ରୀମୁଖସରୋଜରେ ମୋତେ ଅଳି କର ବୋଲି ଅଳୀକରେ ।
ଆରେ ଅନିନ୍ଦିତା, ଅଙ୍ଗୀକାର କରୁ ହୋଇ ଆନନ୍ଦିତା ।
ଅନର୍ଗଳ ଅଧିକାର ପରିଚିତା, ଅନଳ୍ପ ସୁଖଦାନ କଳ୍ପଲତା । ୧୫ ।
ତୁଙ୍ଗସ୍ତନେ ମୋତେ କରଭୋରୁ, ତରଳ ମସାର ନିତି କରୁ,
ତରଣିଜାତଟ ତାପିଞ୍ଛ ବିଟପ ତଳେ ନ ସଞ୍ଚରୁ ନିନ୍ଦା ଡରୁ ।
ଆରେ ତନୂଦରି, ତାକ ତରକ ତୁ ଜାଣୁ କେତେ ପରି ।
ତୁଳା ତିଳକେ ତ୍ରିଲୋକେ ନାହିଁ ସରି । ତାପତମକୁ ତପନକର ଶିରୀ । ୧୬ ।
ଥାଏ ତ ରତେ ନିରତେ ମନ, ଥରେ ମୁଁ ସ୍ମରେ ପକାନ୍ତେ ଆନ,
ଥରୁଟିକୁ ଆଉ ଅଧିକ ନାହିଁଟି ଭାଷି ହସି କରୁ ଆଲିଙ୍ଗନ ।
ଆରେ ଥିରମତି, ଥାନ ବାକି ନ ରଖେ ମୋ ଚୂମ୍ବତତି ।
ଥୋକେ ହେଲେ ଜିଣଇ କି ରତିପତି, ଥରି ଥରି ଭିଡୁ ମୋତେ କୁନ୍ଦଦନ୍ତୀ । ୧୭ ।
ଦୃଷ୍ଟିକୋଣ କରି ଅପଲକ, ଦେହବଲ୍ଲୀ କରି ସପୁଲକ
ଦୃଢ଼େ ମୋ ମଧ୍ୟକୁ ଉରୁଯୁଗେ ଭିଡୁ ପଦଭୂଷା କରି ବାବଦୂକ ।
ଆରେ ଦୁଃଖିଧନ, ଦୟାଜଳଧି-ମୀନ ମୁଁ ତୁ ଜୀବନ ।
ଦୂର ହୋଇଅଛି କେତେ ସୁଖମାନ, ଦୁଷ୍ଟ ଦଇବ କରିଛି ସିନା ଆନ । ୧୮ ।
ଧରିତ୍ରୀମଣ୍ଡଳିଜଚମ୍ପାଗଭା, ଧରି ତ୍ରିଲୋକମୋହନ ଶୋଭା,
ଧୃତିକୁ ତୁ ସିନା ଧମକାଇ ଜାଣୁ, ଧୂର୍ଜଟିପରବଲ୍ଲଭାନିଭା,

ଅଳିକି—ଭ୍ରମରକୁ, ଅଳି କର—ପ୍ରାର୍ଥନା କର, ଅଳୀକରେ—ମିଛରେ, ତରଳ ମସାର—ହାର ମଧ୍ୟରେ ନୀଳମଣି, ତନୂଦରି—ହେ କ୍ଷୁଦ୍ର ଉଦରଧାରିଣୀ, ଆନ—ଗୁଣ, ଜୀବନ—ଜଳ, ଧୂର୍ଜଟିପରବଲ୍ଲଭାନିଭା—ରତିସଦୃଶୀ, ଦୁର୍ଦ୍ଧର—କର୍କଶ, ଧାରାଧରନୀଳଚେଳ—ମେଘପରି

ଆରେ ଧୀରାବର, ଧୀରାଧରି କଲେ ରମ୍ୟ ପୟୋଧର,
ଧରାଧର ପରି ଲାଗେ କି ଦୁର୍ଦ୍ଧର, ଧାରାଧରନୀଳଚେଳ କି ସୁନ୍ଦର । ୧୯ ।
ନାନାବନ୍ଧେ ରସୁ ମୋର ଚିତ୍ତ, ନିଶ୍ଚେଁ ଯେବେ ବୋଲେ ମୋ ଶପତ,
ନଖି ନଖି ଦେଖ ବୋଲି ମୋର ସୁଖ ବରଧନା ହେଉ କି ସଂଯତ,
ଆରେ ନଳିନାକ୍ଷି, ନେତ୍ର ମନ ଦୁହେଁ ସେ ସମୟ ସାକ୍ଷୀ,
ନିତି ମାତି ମତେ କରୁ ଯେଡ଼େ ସୁଖୀ, ନିରନ୍ତରେ ତା ମାନସେ ଅଛି ରଖି ।୨୦।
ପ୍ରଣୟର ପର୍ଯ୍ୟାଲୋଚନାରେ, ପୂରିଥାଏ କୃପା ଲୋଚନରେ,
ପସନ୍ଦ ପଡ଼ିବ ବୋଲି ସିନା ମାତ୍ର ପରଦା ବନ୍ଧାଉ ବଚନରେ ।
ଆରେ ପ୍ରେମଶୀଳା, ପ୍ରିୟମ୍ବଦା ତୁହି ମୋ ନେତ୍ରପିତୁଳା ।
ପୁଷ୍ପହାସୀ ତୁହି ଜାଣୁ ପ୍ରୀତିତୁଳା, ପୁଷ୍ପଦଳ ଉପୃଳ ତୋ ତନୁ ତୁଳା । ୨୧ ।
ଫଟା କପାଳେ ତ ଅଛି ଲେଖା, ଫେରିଯାଇ ନୋହିବାକୁ ଦେଖା,
ଫେର ଲାଗି ଚେଳଗ୍ରନ୍ଥି କାହୁଁ କୋଳ କରିବି ନାହିଁ ଏ ଶୁଭ ଲେଖା,
ଆରେ ଫନ୍ଦାଧନ ଫରୁଆରୁ ଫିଙ୍ଗିଦେଲି ମୁଁ କାଞ୍ଚନ ।
ଫୁଲବନବିହାରିଣୀ ମୋ ଜୀବନ, ଫେରି ଚାହିଁବା ଚାହାଣୀ କି ମୋହନ । ୨୨ ।
ବକୁଳବଲ୍ଲୀ ନିଳୟ ବନେ, ବେଢ଼ିଥିଲେ ସହଚରୀମାନେ,
ବାସନ୍ତିକ ଦଳ ବହଳ ବିଛଣା ବିଛେ ବେଳ ଜାଣି ଅନୁମାନେ ।
ଆରେ ବିଧୁମୁଖି, ବେଣ ଫେରାଇଥିଲି ତ ଦୂରୁଁ ଦେଖି ।
ବଡ଼ ବାଳିଶ ପଛେ ରହିଲି ଲାଖି, ବୀଣା ଦେଲା ତୋ ଶ୍ରୀହସ୍ତେ ଏକ ସଖୀ ।୨୩।
ଭର୍ମଦେହା ସରସିଜବ୍ରଜ, ଭ୍ରମରବର ମୋହନରାଜ,
ଭଣି ଗୀତେ ଏତେ ଆଳାପନ୍ତେ ମତେ ଭୂଷିଦେଲା ଭାଲେ ଝସଧ୍ୱଜ ।
ଆରେ ଭୀରୁବର, ଭୁକ୍ଷୁଡ଼ାଇ ଦେଇ ଫୁଲ ଅପସର ।
ଭୁଜେ ଭିଡ଼ି ଚୁମ୍ବିଲି ସହସ୍ର ଥର, ଭାଜିଗଲା ସେ ସଙ୍ଗୀତ ଆଡ଼ମ୍ବର । ୨୪ ।
ମହାରାଜ ଉପଚାର ଖଟି, ମାତିଥିଲେ ଯେତେ କୃଶକଟୀ,
ମୁଦିର ଶେଷରୁ ହଂସୀ ମାନସରୁ ହେଲା ପରି ହେଲେ ଗୋଟି ଗୋଟି ।
ଆରେ ମଦାଳସୀ, ମଜ୍ଜି ଲାଜେ ମୋ ତନୁରେ ଗଲୁ ମିଶି ।
ମନରଥ ରଣେ ହାରିଗଲା ଖସି, ମହୀ ଚୁମ୍ବିଦେଲା ଶେଫାଳିକା ଖସି । ୨୫ ।

---

କୁଷବସ୍ତ୍ର, ବାଳିଶ—ତକିଆ, ଭର୍ମଦେହା—ସ୍ୱର୍ଣ୍ଣବର୍ଣ୍ଣ ଗୌରାଙ୍ଗୀ, ମୁଦିର—ବର୍ଷାକାଳ, ମାନସରୁ—ମାନସରୋବରରୁ, ଯମକ—ପୁନରାବୃତ୍ତି ଛନ୍ଦ, ରଥାଙ୍ଗ—ଚକ, ଲାସିକା—ନୃତ୍ୟକାରିଣୀ, ରସି—ଦଉଡ଼ି, ଲଗଡ଼—ଦୃଢ଼ସଂଲଗ୍ନ, ରଦମୋତି—ଦାନ୍ତରୂପ ମୋତିକୁ ରସନାରେ ରଖି ଅର୍ଥାତ୍ ଜିଭ କାମୁଡ଼ି ଦେଇ, ସ୍ମରହେତି—କନ୍ଦର୍ପଅସ୍ତ୍ର, ଶିରୋଗର୍ଭକ—କେଶ,

ଯୁକ୍ତିପଣ୍ଡିତାରେ ରତିପତି, ଯାନଜିତ ରାଜହଂସଗତି ।
ଯମକ ଶୃଙ୍ଗାର ରସ ବିଭବର ତୁହି ବୋଲି ହୁଏ ମୋ ପ୍ରତୀତି ।
ଆରେ ଯୋଷାବର, ଯତିମୋହନ ବର୍ତ୍ତୁଳ ପୟୋଧର ।
ଯତ୍ନ କରି ସାଜିଥାଉ ଉରେ ହାର, ଯଥାର୍ଥରେ ସୁଖଦାତା ଅଟୁ ମୋର । ୨୬ ।
ରତିଶେଷ କାଳ ଚାଲି ଶିରୀ, ରହିଛି ମୋ ନେତ୍ରଯୁଗେ ପୂରି,
ରସପ୍ରସଙ୍ଗରୁ ଉଠାଙ୍ଗଭଙ୍ଗରୁ ମନ୍ଥର ମନ୍ମଥରଥ ପରି ।
ଆରେ ରସିକାଟି, ରଙ୍ଗସ୍ଥଳୀ ମୋ ମନ ତୁ ଲାସିକାଟି ।
ରମ୍ଭା ରତି ଦ୍ୟୁତି ପରହାସିକାଟି, ରୋଷେ କେ ଦେଲା ମୋ ଆଶାରସି କାଟି ।୨୭।
ଲୁଗାଲାଗିକାଳେ ଦିନେ ମୋଦେ, ଲୁଚି ଦେଖୁଥିଲି ଅପ୍ରମାଦେ,
ଲଗଡ଼ ଉରୋଜ ବିଲୋକେ ସ୍ୱୟମ୍ଭୂ ଶମ୍ଭୁ ସ୍ତବ ପଢ଼ିଦେଲି ପଦେ ।
ଆରେ ଲୀଳାବତୀ, ଲାଜେ ରସନାରେ ରଖି ରଦମୋତି,
ଲୋଳେ ପଳାଇବାକୁ ବଳାନ୍ତେ ମତି, ଲୋଭେ ଭିଡ଼ି କରାଇଲି ଅଙ୍କେ ସ୍ଥିତି ।୨୮।
ବୋଇଲି ବସ ରେ ରସବତି, ବସନ ତ ପିନ୍ଧୁଥାଉ ନିତି,
ବିବସନ ଶିରୀ ଦିବସେ ଏପରି ଦେଖିଲେ ନ କାଟେ ସ୍ମରହେତି ।
ଆରେ ବିମ୍ବାଧରା, ବିଶ୍ୱ ଲାବଣ୍ୟସାରସମ୍ଭାର - କାରା ।
ବରଷିଲୁ ଶୁଣି ସ୍ମିତ ସୁଧାଧାରା, ବକ୍ଷେ ଜମାଇଲୁ ତହୁଁ ଫେଉ ହାରା । ୨୯ ।
ଶୃଙ୍ଗାରକୁ ତ ମୁଁ ରଙ୍ଗ ପରି, ଶଶଧରକୁ ସୁରଙ୍ଗ ପରି,
ଶିରୋଗର୍ଭ କରୁ ଶୋଣକଞ୍ଜନିଭ ଚରଣ ଯାଏ ଚୁମ୍ବିଲି ଧରି ।
ଆରେ ଶଶିହାସି, ଶୀତପ୍ରବାହେ ଗଲାଇଁ ଦୁହେଁ ଭାସି ।
ଶିରୀ ମଘବାର ହୋଇଗଲା ଦାସୀ, ଶର୍ମ ଏପରି ସ୍ୱପ୍ନ ହୋଇଲା ଆସି । ୩୦ ।
ଷଟ୍‌ପଦଚୁମ୍ବିତ ପୁଷ୍ପପୁଞ୍ଜେ, ଷଟରତୁ ରମାପୂର୍ଣ୍ଣ କୁଞ୍ଜେ,
ଷଡ଼ାନନତାତ ପରିପଛି - ରଣେ ଚୁମ୍ବିବି ନିକି ତୋ ମୁଖକଞ୍ଜେ ।
ଆରେ ଷୋଳବୟା, ଷଷ୍ଟି ଦଣ୍ଡ ହୋଇବି ତୋ ତନୁଛାୟା
ସରୁ ପାୟେ ହେବୁ କୃତ ପରିଚୟା, ଷଟ ଦୁଇ ଶ୍ରୁତି କରିବେ କି ଦୟା । ୩୧ ।
ସୁନ୍ଦରୀ ଚକ୍ରବର୍ତ୍ତିନୀ ବାନା, ସଂସାରେ ସୁନ୍ଦର ତତେ ସିନା
ସୁରସୀମନ୍ତିନୀ ଗୁଡ଼ାକ ତ ଅନିମିଷ ଦୋଷୁ ନେତ୍ରଲୀଳାହୀନା
ଆରେ ସୃଷ୍ଟିଶୋଭା, ସରେ ଉପମା ତୁ ହୋଇଥିଲେ ଉଭା ।
ସରୁ ମଧମା ତ୍ରିଲୋକୀ ଶିରଗଭା, ସରସ୍ୱତୀଙ୍କର ତୁ ସଙ୍ଗୀତ ସଭା । ୩୨ ।

ଶୋଣକଞ୍ଜନିଭ—ରକ୍ତପଦ୍ମ ସଦୃଶ, ଶାତ—ସୁଖ, ଶିରୀମଘବାର—ଇନ୍ଦ୍ରସମ୍ପତ୍ତି, ଶର୍ମ—ସୁଖ,

ହସି ମାତି ହୋଇ ରସଲୋଳ, ହରିବା ପୁରୁବ ପରି କାଳ ।
ହରିତାଳଗୋରୀ ଶ୍ରୀଅଙ୍ଗରୁ ମୁହିଁ ହରିବି କି ସତେ ନୀଳଚେଳ ।
ଆରେ ହାତୀଗତି, ହତକପାଳ ଦେବ କି ଏ ସମ୍ପତ୍ତି ।
ହାରସ୍ଥଳେ ରଖୁଥିବି ତତେ ନିତି, ହଜିଯିବ ମାନସରୁ ଏ ବିପତ୍ତି । ୩୩ ।
କ୍ଷୋଭ ଲେଶକୁ ନ ରଖି ମନେ, କ୍ଷଣେ ହେଲେ ଅତି ସାବଧାନେ,
କ୍ଷିତୀନ୍ଦ୍ର ବାଲୁକେଶ୍ୱର ଦେବ ଲୋକେ ବଞ୍ଚିବ କି ତୋ ଚରଣ ଧ୍ୟାନେ ।
ଆରେ କ୍ଷିତିଭୂଷା, କ୍ଷମାମୟୂଖବଦନା ବରଯୋଷା ।
କ୍ଷତି ହୋଇଯାଉଛି ମୋ ପ୍ରତି ଆଶା, କ୍ଷୁଣ୍ଣ ନୋହି ପୂରିଲା ଏ ଚଉତିଶା ।୩୪।



## (୯)
## ସର୍ପ ଜଣାଣ
### ରାଗ—କାମୋଦୀ

ବାଧିଲା ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ଦିଅ ଟାଳି । ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ଭରତି କରି ଦେବି ଗାଳି ହେ କୃପାନିଧି । କରୁଣାସିନ୍ଧୁ ବୋଲି କରି, କହନ୍ତି ବୁଧେ ଡରି ମରି । କାଳସର୍ପ ଆପଣ, କବଳ କର ପ୍ରାଣ - ପବନମାନଙ୍କୁ ସବୁରି ହେ କୃପାନିଧି । ୧ । ଜଳଧିଅନ୍ତେ ନିଜ, ଘର ଦେବାଧିରାଜ, ବୁଡ଼ାଇ ଦେଇଛ ଆପଣ । ତୁମ୍ଭରି ସିନା ଘେନ, ଆଶ୍ଚର୍ଯ୍ୟ ନୁହେଁ ଆନ, ଜନର ଘରବୁଡ଼ାପଣ ହେ କୃପାନିଧି । ଭୁଜଙ୍ଗ ସାମ୍ୟ ଅାମ୍ଭ ତୁଲେ, ବତାଅ ବୋଲି ଆଜ୍ଞା ହେଲେ, ମୁଁ ନୁହେଁ ଘରବୁଡ଼ା, ବତାଇବାକୁ ଛିଡ଼ା ହୋଇଛି ବତାଇବି ଭଲେ ହେ କୃପାନିଧି । ୨ । ତାହାକୁ ବୋଲି ଚକ୍ରୀ, ଚକ୍ରଥିବାରୁ ଚକ୍ରୀ, ତୁମ୍ଭେ ତ ବୋଲାଅ ମଣ୍ଡଳେ । ବୋଲାଇ କୁଣ୍ଡଳୀ ସେ ଆପଣ ତ ବିଶେଷେ ଭୂଷିତ ମକର କୁଣ୍ଡଳେ ହେ କୃପାନିଧି । ଅଦୃଶ୍ୟ ହେବାରୁ ତ ପାଦ, ତାହାକୁ ବୋଲି ଗୂଢ଼ପଦ । ଆପଣା ଚରଣ ତ ବିରଞ୍ଚିକୁ ଗୁପତ କାହିଁ ତାଠାରୁ ତୁମ୍ଭ ଭେଦ ହେ କୃପାନିଧି । ୩ । ହେବ ବା ଅବଧାନେ, ତାହାକୁ ତ୍ରିଭୁବନେ, ବୋଲନ୍ତି କାକୋଦର ନରେ । ଏ ତ୍ରିପିଷ୍ଟପଯାକ ମଧ୍ୟେ ଗୋଟିଏ

ଷଷ୍ଟିଦଣ୍ଡ—ସମଗ୍ର ଦିବା ଓ ରାତି, ଷଟ୍ ଶ୍ରୁତି—ବ୍ରହ୍ମା, ସୁରସୀମନ୍ତିନୀ ... ଲୀଳାହୀନା—ଦେବ ଲୋକରେ ସ୍ତ୍ରୀମାନଙ୍କର ଚକ୍ଷୁରେ ନିମେଷ ପାତ ହୁଏ ନାହିଁ, କ୍ଷପାମୟୂଖ—ଚନ୍ଦ୍ର ।

୯ । ଟୀକା—କବଳ କର ପ୍ରାଣପବନମାନଙ୍କୁ ସବୁରି—ସମସ୍ତଙ୍କର ପ୍ରାଣରୂପ ପବନକୁ

କାକ ନାହିଁ କି ତୁମ୍ଭରି ଉଦରେ ହେ କୃପାନିଧି । ବିବରେ ସେ ଅତି ଲମ୍ପଟ, ବିବର ବିହଙ୍ଗମ ରାଟ, ବିଧିରେ ସେ ଲମ୍ପଟ, ଆପଣ ସେ ତ ପଟପଟଳେ ହୋଇଅଛ ସ୍ଫୁଟ ହେ ମହାପ୍ରଭୁ । ୪ । କାନ ନ ଥାଇ ଆଖି, ଭୁଜଙ୍ଗଠାରେ ଦେଖି, ନୟନାଶ୍ରବା ବୋଲି ତାକୁ । କହ କମଳାନନ କାହିଁଛି ତୁମ୍ଭ କାନ, ସର୍ପ ବୋଇଲେ ଚଳିବାକୁ ହେ କୃପାନିଧି । ଫଣିକାୟାକୁ ବୋଲି ଭୋଗ, ଥିବାରୁ ସେ ଦୁଇ ସଂଯୋଗ, ତାହାକୁ ବୋଲି ଭୋଗୀ ତୁମ୍ଭେ କି ନୁହଁ ଭୋଗୀ କରୁ ଯା ଅଛ ମହାଭୋଗ, ହେ କୃପାନିଧି । ୫ । ଯେବେ ଭୁଜଙ୍ଗ ନୁହ, କାଳିୟଠାରେ ଦ୍ରୋହ କଲ କାହିଁକି ଏଡ଼େ କରି । କେତେ ନ ଥିଲେ ଗୋପେ, ତୁମ୍ଭେ କାହିଁକି କୋପେ, ତାହାକୁ ଦେଲ ପ୍ରାଣେ ମାରି ହେ କୃପାନିଧି । ତାହାରି ନାମେ ତୁମ୍ଭ ନାମ, ଅଦ୍ୟାପି ହୋଇଛି ଜନମ, ଯେବେ ସ୍ୱଗୋତ୍ର ଦ୍ରୋହ, ନ ଥାନ୍ତା ନାଥ କହ କିପାଇଁ ହୁଅନ୍ତା ଏ କ୍ରମ ହେ ମହାପ୍ରଭୁ । ୬ । ଜାଣି ବାଳୁତକାଳୁ, ଲବଣୀ ହାଣ୍ଡିତଳୁ, ଧରି ପାଶରେ ଦୃଢେ ଭିଡ଼ି । ଦୟା ନ କରି ତିଳେ, ଯାମଳା ତରୁତଳେ ଜନନୀ ନେଇ ଦେଲେ ଛାଡ଼ି ହେ କୃପାନିଧି । ଯେତେକ ଥିଲା ଗର୍ଭେ ପଡ଼ି, ଜୀର୍ଣ୍ଣ ହେବାକୁ ହେଲ ଭିଡ଼ି, ତିନି ଜଗତ ଯାକେ, ଜାଣି ତ ଥିବେ ଲୋକେ ସେ ତରୁ ଯିବାର ଉପୁଡ଼ି, ହେ କୃପାନିଧି । ୭ । ବ୍ରହ୍ମା ଶଙ୍କର ମୁଖ୍ୟ, ଦେବଙ୍କଠାରୁ ମୋକ୍ଷପ୍ରଧାନ ଧନ ଗୁଡା କଲ । ପତିତକୁ ନ ପୋଷି,-ବାରୁ କ୍ରମରେ ଆଶୀ-ବିଷ ପରାଏ ଆଭାସିଲ ହେ କୃପାନିଧି । ଅସାବଧାନେ ଗଲେ ମିଳି, ଗୋଟିକୁ ଗିଳଇ କୁଣ୍ଡଳୀ, ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡିମଣ୍ଡଳୀ ଋଣ୍ଡ କରି ଆପଣ ଅଛ ଗିଳି ହେ କୃପାନିଧି । ୮ । ଅହି ତ ବୋଲାଏ ସେ, ଏକ ଅକ୍ଷର କୋଷେ, 'ଅ' ହିତ ବୋଲାଅ ନିପୁଣ । କଂସ ପ୍ରମୁଖାସୁର ବିପକ୍ଷମାନଙ୍କର ଅହିତ ହୋଇଛ ଆପଣ ହେ କୃପାନିଧି । ଜଗତେ ଧରି ଯେବେ ଅହି, ଘଟ ଗୋଟିକେ ନେଇ ଥୋଇ, ଅଛ ଯାବତ ଘଟେ, ବଞ୍ଚାଅ ଯେ କପଟେ, ମୋର ହାବୁଡୁ ଯିବ କାହିଁ, ହେ କୃପାନିଧି । ୯ । କେଉଁ ଶିଶୁ କାମିନୀ ସ୍ତନ୍ୟପାନରୁ ଘେନି ଜୀବନ ଯାଇଛି ଜଗତେ । ଶୋଷି ପୂତନା ପ୍ରାଣ, ଘେନିବାର ଜୀବନ, ନାହିଁକି ତୁମ୍ଭ ଦିବ୍ୟ ଚିତ୍ତେ, ହେ କୃପାନିଧି । ସକଳ କଥା ମୋର ଦେଖୁ, ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ, ବ୍ରଜେ ଭୁଜଙ୍ଗ ଚାଲି, କରି ମୁଁ ନାହିଁ ବୋଲି, ଛୁଅଁ ତ ଥରେ ଚକାଆକ୍ଷି ହେ କୃପାନିଧି । ୧୦ । ନୁହେ ଆବାସ ଘର, ମାନସ ସରୋବର ଶୁଭିଲା ନାଗେଶ୍ୱର ରବ । କ୍ଷଣେ ନ ରହି

---

ନେଇଯାଅ । (ସର୍ପ ପକ୍ଷରେ—ସର୍ପ କେବଳ ପବନ ଖାଇ ବଞ୍ଚେ ।) କାକୋଦର—(କାକବକ୍ରଗାମୀ ଉଦର ଯାହାର) ସର୍ପ, ଶ୍ଳେଷାର୍ଥ ହେଲେ—କାକ—କୁଆ ଉଦରରେ ଯାହାର, ବିବର—ଗାତ, ଅନ୍ୟତ୍ର ବି ଅର୍ଥାତ୍ ପକ୍ଷୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗରୁଡ଼, ପଟ—ଚ୍ଛିଦ୍ର ଓ ସାପକାତି, ପଟଳ—ସମୂହ । ଗୁଡା କଲ—ଏକଚାଟିଆ କଲ । ଅ—ବିଷ୍ଣୁ, ଅହିତ—ଶତ୍ରୁ, ଭୁଜଙ୍ଗ—ସର୍ପ ଓ

ଧାଇଁଗଲଟି କାହିଁପାଇଁ, ଆଉ ନ ଥିଲେ କେତେ ଦେବ ହେ କୃପାନିଧି । ମନ୍ତ୍ର ଜାଣିବା ଲୋକେ ବଶ, ହୁଅନ୍ତି ସବୁ ଆଶୀବିଷ, ମନ୍ତ୍ରାଧୀନ ତ ତୁମ୍ଭେ, ବଞ୍ଚାଉଅଛ ଦମ୍ଭେ, ଭୁଜଙ୍ଗ ନୁହ ଆଉ କିସ, ହେ କୃପାନିଧି । ୧୧ । କହଇ କବିସୂର୍ଯ୍ୟ ନାଥ ନୁହ ଅଧୈର୍ଯ୍ୟ ଏଣିକି ମହତ ନ ଯାଉ । ମୁଁ ତୁମ୍ଭ ପରିଚାର, ଜାଣିଲେ କି ବିଚାର ଇତରେ ନ ଜାଣନ୍ତୁ ଆଉ, ହେ କୃପାନିଧି । ଯେତେବେଳେ ମୋ ଅନ୍ତ ହେବ, ଏତିକି ମାତ୍ର ମୋତେ ଦେବ, ପରେତରାଟଦ୍ୱାର-ସୀମାରୁ ପରିହାର କରାଇ ଯହିଁ ତହିଁ ନେବ ହେ କୃପାନିଧି । ୧୨ ।



# (୧୦)

## ଜଗନ୍ନାଥ ଜଣାଣ

### ରାଗ—ତୋଡ଼ିପରଜ

କ୍ଷୀରମୟ ସିନ୍ଧୁ-ଜୈମାଜାବଂବନ୍ଧୁ, ତୁମ୍ଭେ ତ ଜଗତପତି । ଟେକି ସମ-ଦୃଷ୍ଟିପତାକାକୁ ପୁଣି ଏ କି ପକ୍ଷପାତ ରୀତି ହେ ମହାପ୍ରଭୁ । କେ କି କଲା ମୁଁ ନ କଲି । କେ କି ଦେଲା ଅବା ମୁଁ ଅବା ନ-ଦେବା ଘେନି ଏତେ ସରି ହେଲି ହେ ମହାପ୍ରଭୁ । ୧ । ମୃଗ ଯୁବତୀକି ରଖିଲ ଯେ ନାଶି ମୃଗୟୁ ବିଦ୍ୱେଷ ଦାଉ । ଚରଣପଙ୍କଜ ସ୍ମରଣ ବିନା ସେ କିସ କରିଥିଲା ଆଉ ହେ ମହାପ୍ରଭୁ । କୁମ୍ଭୀର ଗ୍ରାସନ୍ତେ ଗାତ୍ର । ଜନେ କହିବାରେ ଅନେକପ-ରଜା ମନେ କଲା ସିନା ମାତ୍ର ହେ ମହାପ୍ରଭୁ । ୨ । ନୃପସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ ସୁତା ଆବର । ଧ୍ୟାନରୁ ତ ଆନ କିଛି କରିବାର କାନ ଶୁଣି ନାହିଁ ମୋର ହେ ମହାପ୍ରଭୁ । ହିତେ ଯେ ଥାଅ ନିରତେ । ଲାଞ୍ଚ ଦେଇଥିଲେ କାଞ୍ଚନ କେତେ କି ପାଞ୍ଚ ପଣ୍ଡୁରାଜ ସୁତେ ହେ ମହାପ୍ରଭୁ । ୩ । ରୂପରେ କେଳତି ଉପରେ ପତାକା ଦିଆଇଲ ଯେ କୁଜୀକି । ଯାହା ହୋଇଥିଲା ଯାହା ହେଲା ତୁମ୍ଭ ପ୍ରସାଦବଶୁଁ ରଜକୀ ହେ ମହାପ୍ରଭୁ । ଜଗତେ ତ ତାହା ଜଣା । ଅନ୍ଧକୁ ନେତ୍ର ମିଳିବାରୁ ହୋଇଛି ଯଶ ଡିଣ୍ଡିମ ବାଜଣା ହେ ମହାପ୍ରଭୁ । ୪ । ନଳକୁବରଙ୍କ ଚରିତକୁ ବୁଧେ ବଳକୁ ଅଛନ୍ତି ଏବେ । ପ୍ରହ୍ଲାଦକୁ ମହା ଆହ୍ଲାଦ ଆପଣ କରିଛ ପରା ପୁରୁବେ ହେ ମହାପ୍ରଭୁ । ମୁନିଙ୍କ ଆଶ୍ରମ ଶିଳା । ତୁମ୍ଭଙ୍କୁ କି ଉପକାର କରି ରୂପବତୀ ହୋଇ

---

ବିଟପୂରୁଷ, ନାଗେଶ୍ୱର—ହସ୍ତିଶ୍ରେଷ୍ଠ ଓ ସାପୁଆକେଳାର ବାଦ୍ୟଯନ୍ତ୍ର, ପରେତରାଟ—ଯମ ।

୧୦ । ଟୀକା—ମୃଗୟୁ—ଶିକାରୀ, ବାଣୁଆ; ଅନେକପ - ରଜା—ଗଜରାଜ, ଦେବର୍ଷି

ବିଳସିଲା ହେ ମହାପ୍ରଭୁ । ୫ । କେବଳ ସୁଦାମା ଦ୍ୱିଜ ନିଜ ଶକ୍ତି ଅନୁରୂପ ଆଚରିଲେ । ଗଳିତାଏ ଖୁଦ ନଜର ଦେବାରୁ ଫଳ ତାଦୃଶ ଲଭିଲେ ହେ ମହାପ୍ରଭୁ । ଆଉ କେ କି କଲା କହ । କାହା କାମକୁମ୍ଭ ପୂରି ନାହିଁ ତୁମ୍ଭ ଅହେତୁକ ଅନୁଗ୍ରହ ହେ ମହାପ୍ରଭୁ । ୬ । ଅନନୁଗତ ତୋ ମନ ନୋହେ ବୋଲି ଆଜ୍ଞା ହେବ ଅବା ମୋତେ । ନାମ ସ୍ୱସୁତର ଡାକିବାରୁ ଦିବ୍ୟଧାମ ଲଭିଲେ କେମନ୍ତେ ହେ ମହାପ୍ରଭୁ । ଅଜାମିଳ ମହୀସୁର । କେଉଁ ସାବଧାନ ହୋଇ ନାମଗାନ କରିଥିଲେ ସେ ତୁମ୍ଭର ହେ, ମହାପ୍ରଭୁ । ୭ । କବିରବି ରାୟଗୁରୁ ଯୋଡ଼ି 'କରଯୁଗକୁ ଛାମୁରେ କହେ, ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେଁ ହେ ମହାପ୍ରଭୁ । ସବୁ ତୁମ୍ଭ ଇଚ୍ଛା ସିନା, ରଖ ବା ନ ରଖ ମୋହରି ଗତି ତ ପତିତପାବନବାନା ହେ ମହାପ୍ରଭୁ । ୮ ।



## (୧୧)

# ମହାବାହୁ ଜଣାଣ ଚଉତିଶା

### ରାଗ—କାମୋଦୀ

କମଳବାସିନୀପ୍ରାଣବାନ୍ଧବ ହେ ଆର୍ତ୍ତତ୍ରାଣ କମନୀୟ କଳାମୁଖଚନ୍ଦ୍ର । କମ୍ବୁମଧ୍ୟପୁରୀ ନୀଳବସୁନ୍ଧରାଧରାଚୂଳ ଗୃହାଗୃହ ବିହାରୀ ପାରିନ୍ଦ୍ର ହେ । ମହାବାହୁ । କଉଣପକୁଳକ୍ଷୟଦକ୍ଷ, କୃପଣକାମିତ କଳ୍ପବୃକ୍ଷ, କହି ନୋହିବା କଦନ, ସିନ୍ଧୁ ନିମଜ୍ଜନଜନ କର୍ଣ୍ଣଧାରବର ରକ୍ଷ ରକ୍ଷ ହେ । ୧ । ଖଣ୍ଡପରଶୁ ବନ୍ଦନ, ମୁରଲୀସୁସାବଧାନ ଖମଣିମଣ୍ଡଳମଧ୍ୟବାସୀ । ଖଗାଧିପଧ୍ୱଜ ବ୍ରଜ, ଖଞ୍ଜନନେତ୍ରାସମାଜ, ଚଞ୍ଚଳା କୌତୁକ ଅଭିଳାଷୀ ହେ । ମହାବାହୁ । କ୍ଷୀଣଜନଙ୍କର ଅନ୍ତଃସାର, ଖଣ୍ଡିତ ମେଦିନୀ ଭୟଭାର, ଖରମୟୁଖର ପୁତ୍ର ଚରକର କରପତ୍ର ଦରନିବାରଣ ଦୟା କର ହେ । ୨ । ଗହନେ ଗର୍ଭିଣୀ ଏଣୀ, ଗରିଷ୍ଠ ବିପଦ ପୁଣି, ଗୁହାରି ଗର୍ଭକ ସ୍ତୁତି କଲା । ଗୋତ୍ର ଅମିତ୍ରଙ୍କୁ ଫରମାସିବା ମାତ୍ରକେ ତାର କେଡ଼େ ବଡ଼ ଦର ଦୂର ହେଲା ହେ ।

---

ନାରଦଙ୍କ ଶାପରେ ନଳକୁବର ଯାମଳାର୍ଜ୍ଜୁନ ରୂପରେ ଜନ୍ମିଥିଲେ; କୃଷ୍ଣାବତାରରେ ଭଗବାନ୍ ତାହାଙ୍କୁ ଉଦ୍ଧାର କରିଥିଲେ—ଭାଗବତ କଥା; ଗଳିତାଏ—ପୋଷେ, ନଜର—ଭେଟି ।

୧୧ । ଟୀକା—କମଳବାସିନୀ—ଲକ୍ଷ୍ମୀ, କମ୍ବୁମଧ୍ୟପୁରୀ—ଶଙ୍ଖକ୍ଷେତ୍ର, ପାରୀନ୍ଦ୍ର—ସିଂହ, କୌଣପକୁଳ—ଅସୁରବଂଶ, କୃପଣକାମିତ କଳ୍ପବୃକ୍ଷ—ଦରିଦ୍ରଲୋକର ପ୍ରାର୍ଥନାପୂର୍ଣ୍ଣ କରିବାରେ କଳ୍ପବୃକ୍ଷ ସଦୃଶ, ଖଣ୍ଡପରଶୁ ବନ୍ଦନ—ଶିବଙ୍କ ପୂଜ୍ୟ, ଖମଣିମଣ୍ଡଳ—ସୂର୍ଯ୍ୟମଣ୍ଡଳ, ଖଗାଧିପଧ୍ୱଜ—ହେ ଗରୁଡ଼ଧ୍ୱଜ, କ୍ଷୀଣଜନ—ତପସ୍ୱୀ, ଖରମୟୂଖପୁତ୍ର—ସୂର୍ଯ୍ୟପୁତ୍ର ଯମ,

ମହାବାହୁ । ଗୋପେ ଗୋବତ୍ସା ଗୋପିକା ଗୋପ, ଗ୍ରାସି ଦେଉଥିଲା ଶକ୍ର କୋପ, ଗୋବର୍ଦ୍ଧନ ଗିରିଛତ୍ର, ଟେକି ଟେକି ପଦ୍ମନେତ୍ର ବିହିଲ ସେ ଉପତାପ ଲୋପ ହେ । ୩ । ଘନା ଘନଘଟା ଘୋର, ନୃଶଂସ ହିରଣ୍ୟାସୁର ବାଛି ନିଜ ତନୁଜର ବଧ । ଘର୍ମାକ୍ତ ତୀବ୍ର କୋପରେ, ଘଟାଇଲା ତା ଉପରେ, ବହ୍ୱାଧିକ ଅନେକ ଆୟୁଧ ହେ । ମହାବାହୁ । ଘେନି ଯୁବାସିଂହ ଅବତାର, ଘାତ-ମାତ୍ରକରେ କରଜର, ଘଟୀ ଅର୍ଦ୍ଧକରେ ଭକ୍ତ ପ୍ରହ୍ଲାଦର ଭୟମୁକ୍ତ, କଲ ପରା ତୁମ୍ଭେ ଚକ୍ରାୟୁଧ ହେ । ୪ । ନାଗନାଥକୁ ସଲିଳେ, ନକ୍ର ଆକର୍ଷିଲା କାଳେ, ଲକ୍ଷ୍ମୀ ଅକ୍ଷ ଖେଳେ ଥିଲ ମାତି । ନିରେଖି ସାରକୁ ଭଲେ, ନିମେଷ ମଧ୍ୟେ ଦେଖିଲେ, ନାଗାରି ହେବାର ଖର ଶ୍ୱାସୀ ହେ । ମହାବାହୁ । ନକ୍ର କର୍ତ୍ତନରୁ ଚକ୍ରଧାର, ନିନ୍ଦୁଥିଲା ବନ୍ଧୁକ ପ୍ରକର, ନିଖିଳ ଲୋକେ ଏ ଯଶ ନାଚୁଛି ହେ ଜଗଦୀଶ, ନୋହିଲାଟି କେଉଁ ଖ୍ୟାତି କର ହେ । ୫ । ଚତୁର୍ଦ୍ଦଶ ଲୋକେ ଯେଉଁ, ଚକ୍ରପରାକ୍ରମ ଗାଉଅଛନ୍ତି ଅଭୟ ପାଇ ନିତି । ଚକାନୟନ ହେ ସେହି ଚକ୍ରକୁ ଶ୍ରୀକରେ ବହି, ଚାହୁଁଛ ତ ମୋହର ବିପତ୍ତ ହେ, ମହାବାହୁ । ଚରାଚରେ ଚିତ୍ର ଅତି ହେଲା, ଚକୋର କି ଚକ୍ର ନ ପାଇଲା, ଚିନ୍ତୁଛି ମୁଁ ଚିରନ୍ତନ ହେବାରୁ ତାର୍କ୍ଷ୍ୟକେତନ, ଚିରାଳ କି ଚିରା ହୋଇଗଲା ହେ । ୬ । ଛଳଯତି ବେଶ ଧରି, ଛଦନ ଶାଳାରୁ ହରି ନେଲା ଯେ ଦେବୀକୁ ସୁରାମିତ୍ର । ଛେଦି ତାହାକୁ ମାର୍ଗଣେ, ଛିଦ୍ର କୁହା ବିଭୀଷଣେ, ଟେକାଇଲ ଆପଣେ ତ ଛତ୍ର ହେ, ମହାବାହୁ । ଛାର ଦୁଃଖ କେତେ ଅବା ମୋର; ଛାୟାନାଥ ତୁମ୍ଭେ ସେ ଅନ୍ଧାର, ଛଦ୍ମେ ବଳିଦ୍ୱାର ଖର୍ବ ଦ୍ୱିଜେନ୍ଦ୍ର ବେଶେ ତା ପର୍ବ ଛଡ଼ାଇଲ ପରମଈଶ୍ୱର ହେ । ୭ । ଜଗତେ ଜାଣନ୍ତି ଜନ, ଯାହା କଲା ଦୁଃଶାସନ, ଦ୍ରୁପଦ ଜେମାକୁ ସଭାତଳେ, ଜଳଜ ଚରଣେ ସ୍ତୁତି କହିବାରୁ ମହାସତୀ, ପ୍ରତିଷ୍ଠା ତୁଟିଲା ନାହିଁ ତିଳେ ହେ, ମହାବାହୁ । ଜମା ହୋଇଥିଲେ ଯେତେ ଜନ, ଜଣେ ଦେଖି ନାହିଁ ଅପଘନ, ଜୟରବେ ଜଗତ୍ତ୍ରୟ ଜଠର ପୂରିଲା ଭୟ ନିବାରଣ ଜଳଧିଶୟନ ହେ । ୮ । ଝଞ୍ଜାନିଳେ ଝାଡ଼ଦଳ ଝଡ଼ିଗଲାପରି ଜଳ, ଝରିଗଲା ପରି ଫଟା ଘଟୁ । ଝାଙ୍କି ମନସ୍ତାପ ଭୟ ଅମଳେ ମୋ ଆୟୁକ୍ଷୟ, ହୋଇଲାଟି ଦୀନଦୟାପଟୁ ହେ, ମହାବାହୁ । ଝଟତି

---

ଚରକର—ଦୂତ ହାତରେ ଧରିଥିବା, କରପତ୍ର—କରତ, ଦର—ଭୟ, ଗୋତ୍ରଅମିତ୍ର—ଇନ୍ଦ୍ର, ଉପଦାପ—ଅମଙ୍ଗଳ, କରଜ—ନଖ, ନାଗନାଥ—ଗଜରାଜ, ନକ୍ର—କୁମ୍ଭୀର, ଅକ୍ଷଖେଳ—ପଶାଖେଳ, ନାଗାରି—ଗରୁଡ଼, ବନ୍ଧୁକ ପ୍ରକର—ବଧୁଲି ଫୁଲର ରକ୍ତବର୍ଣ୍ଣ ସ୍ତବକ, ତାର୍କ୍ଷ୍ୟକେତନ—ଗରୁଡ଼ଧ୍ୱଜ, ଚିରନ୍ତନ—ପୁରୁଣା, ଚିରାଳ—ପତାକା, ଛଦନଶାଳା—ପତ୍ର କୁଡ଼ିଆ, ସୁରାମିତ୍ର—ଦେବଶତ୍ରୁ ରାବଣ, ମାର୍ଗଣ—ବାଣ, ଛାୟାନାଥ—ସୂର୍ଯ୍ୟ, ଜଳଜଚରଣେ—ପଦ୍ମପାଦରେ, ଅପଘନ—ଶରୀର, ଜଠର—ଉଦର, ଗର୍ଭ; ଜମ୍ବାଳ—ପଙ୍କ, ଝଷ—ମାଛ, ନିରୟ—ନରକ, କୃକ—କୃକଳାସ (?) ଏଣ୍ଡୁଅ, ନାକନିତମ୍ବିନୀ—ସ୍ୱର୍ଗନାରୀ,

ମୋ ଅଭିଳାଷପୂର, ଝିମିଟ ହେଲାଟି ମନ୍ବନ୍ତର, ଝାଞ୍ଜିତପ୍ତ ଅଳ୍ପ ଜଳ ଜମ୍ବାଳ ବର୍ଣ୍ଣ ବ୍ୟାକୁଳ ଝଷଦଶା ହୋଇଲା ମୋହର ହେ । ୯ । ନୃଗ ନାମେ ନୃପବର ନିରୟେ ନିମଜ୍ଜି ଚିରକାଳୁ ହୋଇଥିଲେ କୃକସରି । ନବୀନ ନୀରଦ ନିନ୍ଦା, ନବ ରତନବିସନ୍ଧା, ଶ୍ରୀହସ୍ତେ ତାହାଙ୍କ କର ଧରି ହେ । ମହାବାହୁ । ନେଇ ଯିବାକାଳେ ତୁଲେ ତୁଲେ, ନିରେଖି ତାହାଙ୍କ ତେଜ ଭଲେ, ନାକ ନିତମ୍ବିନୀମାନେ, ନନ୍ଦନବନ ପ୍ରସୂନେ, ନିତି ନିତି ଉପହାର ଦେଲେ ହେ । ୧୦ । ଟେକିଛି ଅଦ୍ୟାପି ପୀନ, ବାହୁ ଯୁଗଳକୁ ଦୀନ, ଜନରେ ଛାୟାଦେବାକୁ ଚିନ୍ତି । ଟାକି ରହିଛି ମୁଁ ସେହି ବାହୁବୃନ୍ଦାରକ ମହୀରୁହ ଅନାତପକୁଟି ନିତି ହେ । ମହାବାହୁ । ଟିକିଏ କରୁଣା ଜାତ ହେଉ, ଟୋପାଏ ତହୁଁ ଏ ଟେକା ପାଉ, ଟାଳି ଦେଲେ ଭାବଗ୍ରାହୀ, ଦୁର୍ଗତି ଦୁଃଖକୁ ଚାହିଁ, ଟମକ ପିଷ୍ଟପେ ବାଜିଯାଉ ହେ । ୧୧ । ଠଣାଦାରପରି କାଳ, କରରେ ଧରି କରାଳ, ଦଣ୍ଡ ଜଗି ରହିଅଛି ଠଣା । ଠିକମାର୍ଗ ପରିହରି, ଠକ ଆଚରଣ କରି ବଞ୍ଚିବା ଜନ୍ତୁର କି ଠିକଣା ହେ, ମହାବାହୁ । ଠଉରଥିବାର ଏ ଜଗତେ, ଠଉରାଇ ଗତି ହିତାହିତେ, ଠାକୁରମାନଙ୍କ ମଥାମଣି ହେ ମୁଁ କେଉଁ କଥା କରିବି ବିଚାର ଦିବ୍ୟ ଚିତ୍ତେ ହେ । ୧୨ । ଡାକି ଗଉରବେ ଆଣି ବନ୍ଦନୀୟ ଜନ ପାଣି, ପଦ୍ମେ ଦେଉ ନାହିଁ ବରାଟକୀ ଡୁବାଇ ନାହିଁ ମସ୍ତକ, ମନ୍ଦାକିନୀ ହ୍ରଦୋଦକ, ପୂରେ ପଶି ହରି ହରି ଡାକି ହେ, ମହାବାହୁ । ଡରୁଛି ଯେ ଛାମୁରେ ତୁମ୍ଭର, ଡାକୁଅଛି ଆହେ ବିଶ୍ୱମ୍ଭର, ଡିମ୍ଭର ଦୋଷକଳାପ, ତୁମ୍ଭେ ପରା ବାପ ମାଫ, ନ କଲେ କି କରିବ ଇତର ହେ । ୧୩ । ଢାଳି କରୁଣା ପୀୟୁଷ; ଅଶେଷ ଦୋଷୀଙ୍କ ଦୋଷ, ନାଶିବାରୁ ସିନା ବାରଂବାର । ଢକ୍କା ବାଜୁଛି ସଂସାର, ମଧ୍ୟେ ଏହି ଅନ୍ତଃସାର, ସକାଶୁଁ ମୁଁ କରୁଛି ବ୍ୟାପାର ହେ, ମହାବାହୁ । ଢାଳେ କ୍ଷିତି ଅନାଇ ନ ଚାଲି, ଢମ କହୁଅଛି ଛାତି ଠେଲି, ଢାଙ୍କି ରହିଥିବା ଘୋର, ଦାବାଗ୍ନିକି ନାଥ ମୋର ଢୋକି ଦେବେ ଅନାୟାସେ ବୋଲି ହେ । ୧୪ । ଅପରିମିତ ମହିମ ଅଘବିଧ୍ୱଂସନ ନାମ, ଅତ୍ୟନ୍ତ ପ୍ରବଳ ହେଲେ ହେଲେ । ଅପରାଧ ହେବା ଡରେ, ଅଘରେ ଆତଙ୍କନରେ, ଆସକ୍ତ ନୋହିବା ଜାଣେ ଭଲେ ହେ, ମହାବାହୁ । ଅଣୁଏ ଆୟତ ନାହିଁ ମୋର, ଆଚରୁଛି ପାତକୀ ପ୍ରକାର, ଆପଣ ହୃଦେ ନିବାସ କରି ଯେଉଁ ଫରମାସ, କରୁଛ ତା କରୁଛି

---

ପ୍ରସୂନ—ଫୁଲ, ପୀନ—ସ୍ଥୂଳ, ମୋଟା; ବାହୁବୃନ୍ଦାରକମହୀରୁହ—ବାହୁରୂପ ସୁବୃହତ୍ ବୃକ୍ଷ, ଅନାତପ—ଛାୟା, ଟାଳି ଦେଲେ—ଦୂରକରି ଦେଲେ, ଏଡ଼ି ଦେଲେ; ଟମକ—ନାଗରାବାଦ୍ୟ, ପିଷ୍ଟପେ—ଜଗତରେ; ଠଣାଦାର—ପ୍ରହରୀ, ପହରାବାଲା; ଠଣା—ସ୍ଥାନ, ବରାଟକୀ—କଉଡ଼ି, ମନ୍ଦାକିନୀହ୍ରଦୋଦକ ପୂରେ—ଗଙ୍ଗାନଦୀର ଜଳପ୍ରବାହରେ, ଡିମ୍ଭ—ଶିଶୁ, ଅଜ୍ଞ; ମାଫ୍—କ୍ଷମା, ଢାଳେ—ଥରେ, ଅଘବିଧ୍ୱଂସନ—ପାପନାଶକ, ଅଘ—ପାପ, କିଙ୍କର—ଚାକର, ତାପାର୍ତ୍ତି—ଦୁଃଖକର, ତପନୀୟ ଗିରିତଳେ—ସୁମେରୁ ପର୍ବତତଳରେ ଅର୍ଥାତ୍ ପୃଥିବୀ ମଧରେ;

କିଙ୍କର ହେ । ୧୫ । ତାରିବାକୁ ମାରିବାକୁ ତାପାର୍ତ୍ତି ନିବାରିବାକୁ ତୁମ୍ଭତୁଲ୍ୟ ପ୍ରଭୁ ଆଉ ନାହିଁ । ତପନୀୟ ଗିରିତଳେ ତପୋଧନମାନେ ତିଳେ ତବ ତତ୍ତ୍ୱ ଜାଣନ୍ତି ବା ନାହିଁ ହେ, ମହାବାହୁ । ତର୍କି ନ ପାରିବାରୁ ବିଭୂତି, ତସ୍କର ବନିଲେ ପ୍ରଜାପତି, ତନୁରୁ ତର୍ଣ୍ଣକ ଶିଶୁ, ତକ୍ଷଣେ ହେବା ସକାଶୁଁ, ତଳେ ଲୁଠି ଲାଜେ କଲେ ସ୍ତୁତି ହେ । ୧୬ । ଥିବାରୁ ମଞ୍ଜୁଷେ ଗଣ୍ଠି, ପରି ହେ, ବୈକୁଣ୍ଠକଣ୍ଠୀ, ରବ ତବ ପ୍ରଭାବ ମୋ ମନେ । ଥୁଆଧନ ସିନା ଭୋଗ, କରି ହରିବି ଉଦ୍‌ବେଗ, ବୋଲି ଭାବୁ ଭାବୁ ଅନୁଦିନ ହେ, ମହାବାହୁ । ଥାଏ ମୋ ଭରସା ମେରୁପରି, ଥାପିରେ ଧଇର୍ଯ୍ୟ ଥାଏ ପୂରି, ଥରୁଅଛି ଏବେ ଭୟଭରେ ଅନୁକମ୍ପାମୟ; ନୟନାନ୍ତ ଛଟା ଦିଅ ଠାରି ହେ । ୧୭ । ଦିନେ ଦୟାଳୁତା ବାନା ଦୃଶ୍ୟ କରାଇଲେ ସିନା, ଦୀନବନ୍ଧୁ ନାମକୁ ତୁମ୍ଭର । ଦୁଷ୍ଟ ଦୁଃଖ ଦନ୍ଦଶୁକ,—ଦଷ୍ଟ ହୃଦନ୍ତର ଲୋକ, ରକ୍ଷା ଜାଙ୍ଗଳିକ ପୁରନ୍ଦର ହେ, ମହାବାହୁ । ଦରିଦ୍ରକୁ ଦାନଦେବା ଯଶ, ଦିଗନ୍ତକୁ କରଇ ଆଶ୍ଳେଷ, ଦଇବେ ଦ୍ରବିଣବନ୍ତ ଜନେ କଲେ ବିତ୍ତ ଦତ୍ତ ଦାତାର କି ହେବ ପଉରୁଷ ହେ । ୧୮ । ଧରିଥିଲେ ତରୁ ରୂପ, ଧାତାପୁତ୍ର ମୁନିଶାପ, ବଶୁଁ ଧନାଧିନାଥଙ୍କ ସୁତେ । ଧରାଇଲ ଦିବ୍ୟତନୁ, ଧ୍ରୁବକୁ ବାଳକ ଦିନୁଁ, ଦିବ୍ୟ ଧାମ ଦେଲ ଏ ଜଗତେ ହେ, ମହାବାହୁ । ଧଡ଼ି ଶେଷୁ ସମର୍ପି ନଜର, ଧନୀ ହେଲେ ସୁଦାମା ଭୂସୁର, ଧବଳ କରିଛି ଏହି, ଯଶବ୍ୟୋମ ତୁଲେ ମହୀ ଧର୍ମ ଧାରାବନ୍ତ ଧୁରନ୍ଧର ହେ । ୧୯ । ନିରର୍ଗଳ ଅଧିକାର, ନିତ୍ୟ ନିଳୟ ଯାହାର, ନାଥଙ୍କର ନାମ ଶୁଭୁଅଛି । ନିସ୍ତାରଣ ହୋଇ ତାର, ନରଦେହ ବହିବାର, ନାଶ ଗଲା ବୋଲାଇଣ ଛି ଛି ହେ, ମହାବାହୁ । ନ ନଚାଇ ଏହା ଜନମୁଖ, ନିଯୋଜନା କର ମୋର ସୁଖ, ନଳିନେ ଉଲ୍ଲାସଶିରୀ, ନିଧାନ ରଚିଲା ପରି ନବୋଦିତ ମିହିରମୟୂଖ ହେ । ୨୦ । ପ୍ରପନ୍ନ ହୋଇ ମୁଁ ବାରେ ପଦପଙ୍କେରୁହ ତଳେ ପଡୁ ପଡୁ ପେଲିଦେବା ନୋହୁ । ପଡ଼ିବି ସିନା ତୁମ୍ଭର ଗର୍ଭେ ଦେଇ ଜରଭର ପଦାରେ ତ ସ୍ଥଳ ନାହିଁ ଆଉ ହେ, ମହାବାହୁ । ପରମ ସୌଭାଗ୍ୟ ମୋର ଏକା, ପର ପରିମାଣୁ ନାହିଁ ଦକା, ପ୍ରଭୁ ପଣକୁ ମାତ୍ରକ ପ୍ରପଞ୍ଚ ମଣ୍ଡଳଯାକ, ନିନ୍ଦା ହେବ ବୋଲି କରେ ଡକା ହେ । ୨୧ । ଫନ୍ଦା କରି ଆପଣଙ୍କୁ, ଫଳଲାଭ ବିନା ରଙ୍କୁ, ବଳିଲିଣି ଆଚରଣ ସିନା ଫେଡ଼ି ଏ

ବିଭୂତି—ଐଶ୍ୱର୍ଯ୍ୟ, ତସ୍କର—ବନିଲେ—ଚୋର ହୋଇଗଲେ; ପ୍ରଜାପତି—ବ୍ରହ୍ମା, ତର୍ଣ୍ଣକ ଶିଶୁ—ବାଛୁରୀ, ମଞ୍ଜୁଷ—ପେଡ଼ି, ଗଣ୍ଠି—ଧନ, ବୈକୁଣ୍ଠକଣ୍ଠୀରବ—ବୈକୁଣ୍ଠର ସିଂହ ସ୍ୱରୂପ, ବୈକୁଣ୍ଠର ଅଧିପତି, ଥାପି—ଶାନ୍ତି, ଦନ୍ଦଶୂକ—ସର୍ପ, ଦନ୍ଦଶୂକଦଷ୍ଟହୃଦନ୍ତର ଲୋକ—ଯେଉଁ ଲୋକ ହୃଦୟରେ ସର୍ପଦଂଶନ କରିଅଛି । ଜାଙ୍ଗଳିକପୁରନ୍ଦର—ଶ୍ରେଷ୍ଠଗୁଣିଆ, ଆଶ୍ଳେଷ—ଆଲିଙ୍ଗନ; ଦ୍ରବିଣବନ୍ତ—ଧନବନ୍ତ, ବିତ୍ତ—ଧନ, ଧାତାପୁତ୍ରମୁନି—ଦେବର୍ଷି ନାରଦ, ଧନାଧିନାଥଙ୍କସୁତେ—ନଳକୁବେର ଓ ମଣିଗ୍ରୀବ ଦୁଇ ଭାଇ, ଧଡ଼ିଶେଷୁଁ—କାନିପଣତରୁ, ନଜର—ଭେଟି,

ମାନସକଥା, କା ଆଗେ କହିବି ବ୍ୟାଥା, ଫେଡ଼ି ନେବ ଆଉ ତୁମ୍ଭ ବିନା ହେ, ମହାବାହୁ । ଫାଟିଅଛି ଯେବେ ମୋ କରମ, ଫନ୍ଦାଇବାକୁ ଆପଣ କ୍ଷମ, ଫୁଟୁଥିଲା ପହଣ୍ଡକେ, ଯେଉଁ କୁବ୍‌ଜୀ ଏହି ଲୋକେ, ନ କଲ କି ତାକୁ ରମ୍ଭା ସମ ହେ । ୨୨ । ବିଳମ୍ୱ ସହିବା ପୀଡ଼ା, ହେଲେହେଁ ବରହଚୂଡ଼ା, - ବତଂସ ମୁଁ ବଳିଆଇଁ ଏତେ । ବିରକତ କରି ଅତି, ବିଜ୍ଞାପନ ନ କରନ୍ତି, ବାଧା ବଳି ପଡ଼ିଲାଣି ମୋତେ ହେ, ମହାବାହୁ । ବଳିଷ୍ଠ ବାହୁଯୁଗଳ ତଳେ, ବେଗେ ମୋତେ ଛାୟାଦିଅ ବେଳେ, ବଳଦେବ ବଳାହିତାବରଜ ହେ ସିନ୍ଧୁସୁତା - ବର ବନ୍ଦେ ଅମନ୍ଦ ବିକଳେ ହେ । ୨୩ । ଭୟାନକ ଭବ ଅହି ସୁଖେ ପଡ଼ିଛି ତ ମୁହିଁ, ଭବ୍ୟ କଥା ଲୋଡ଼ିଲେ କେ ଦେବ । ଭରଛିଲେ ଭଳେ ଏହା ଭ୍ରମରୁ ହେ ରମାନାହା, ଭଲ ଲୋଡ଼େ ନ ଲୋଡ଼ି ଲାଘବ ହେ, ମହାବାହୁ । ଭରସା ଏତିକି ଥାଏ ମୋର, ଭର୍ତ୍ତା ଯେଣୁ ତୁମ୍ଭେ ବଳିଆର, ଭୂରୁଭଙ୍ଗ ମାତ୍ରକରେ, ଭସାଇଲ ରତ୍ନାକରେ, ମହୋନ୍ନତ ବହୁତ ଭୂଧର ହେ । ୨୪ । ମହାମହିମ ହେ ମଣି, ମଉଳି ଗର୍ଭକମଣି ମହୋନ୍ନତ ମହୀଧର ସିନା । ମନାସି ତୁମ୍ଭର ଯଶ, ପଙ୍ଗୁ ଲଘିଛି ନିମିଷ, ମାତ୍ରକେ ତାହାକୁ ଶ୍ରମ ବିନା ହେ, ମହାବାହୁ । ମଜ୍ଜିଥିବା ନିଗମକୁ ଛାଣି, ମଲା ଗୁରୁତନୟଙ୍କୁ ଆଣି, ମହରାଦି ଲୋକେ ଦର, ମଲ୍ଲୀମାଳା ମନୋହର, କୀର୍ତ୍ତିରେ ମଣ୍ଡିଲ ଯଦୁମଣି ହେ । ୨୫ । ଯମଙ୍କ କିଙ୍କରେ ମନ୍ତୁ—ମନ୍ତ ହେବା ଯେଉଁ ଜନ୍ତୁମାନଙ୍କୁ ଯାତନ ଦେଉଥାନ୍ତି । ଯାଗ ଭାଗ ଭୁଞ୍ଜିବାକୁ, ଯୋଗ୍ୟ କରାଅ ତାହାଙ୍କୁ, ଯଶୋଦାଙ୍କ ଯବିଷ୍ଠ ସନ୍ତତି ହେ, ମହାବାହୁ । ଯଦୃଚ୍ଛା ବିଳାସବିଚକ୍ଷଣ, ଯତ୍ନ କଲେ ନ ମିଳ ଆପଣ, ଯାବତ ଘଟରେ ବହି - ରତ୍ନରେ ସନ୍ତତ ରହି, କରୁଛ କି ଇଚ୍ଛା ତୁମ୍ଭେ ଜାଣ ହେ । ୨୬ । ରତ୍ନାକର ଯା ମନ୍ଦିର, ରମା ରମଣୀ ଯାହାର, ଯାହାର କୌସ୍ତୁଭ ମଣିବର । ରଥ ସୁତବିନତାର, ରଥଚରଣ ହତ୍ୟାର, ରୁଦ୍ରଦେବ ପରା ପରିବାର ହେ, ମହାବାହୁ । ରସାଚରମରେ ପଡ଼ି ପଡ଼ି, ରହିଛି ସନ୍ତତ କର ଯୋଡ଼ି, ରଙ୍କ

---

ଭୂସୁର—ବ୍ରାହ୍ମଣ, ନଳିନ—ପଦ୍ମ, ଉଲ୍ଲାସଶ୍ରୀ—ଆନନ୍ଦପୂର୍ଣ୍ଣଶୋଭା; ମିହିରମୟୂଖ—ସୂର୍ଯ୍ୟକିରଣ, ପ୍ରପନ୍ନ—ଶରଣାଗତ, ପଦପଙ୍କେରୁହ—ପାଦପଦ୍ମ, ପ୍ରପଞ୍ଚମଣ୍ଡଳ—ଧରାମଣ୍ଡଳ, ରଙ୍କୁ—ଦରିଦ୍ର ଅପେକ୍ଷା, ଫନ୍ଦାଇବା—ଯୋଡ଼ିଦେବା, ଯୁକ୍ତ କରିବା; ଫୁଟୁଥିଲା—କ୍ଲାନ୍ତ ହୋଇପଡୁଥିଲା, ବର୍ହଚୂଡ଼ାବତଂସ—ମୟୂରଚନ୍ଦ୍ରକ ମସ୍ତକଭୂଷଣ ଯାହାଙ୍କର, ବଳଦେବ ବଳାହିତାବରଜ—ବଳରାମ ଓ ଇନ୍ଦ୍ରଙ୍କ ସାନଭାଇ (ସଂ) ସିନ୍ଧୁସୁତାବର—ଲକ୍ଷ୍ମୀଧବ, ଅମନ୍ଦବିକଳେ—ଅତି ଦୁଃଖରେ, ଭବଅହି—ସଂସାରରୂପସର୍ପ, ଭବ୍ୟକଥା—ସୌଭାଗ୍ୟକଥା, ମଣି - ମଉଳିଗର୍ଭକ—ଯାହାର ଗର୍ଭ ଓ ମସ୍ତକରେ ମଣିପୂର୍ଣ୍ଣ, ମଣି—ମନେକରି, ମହୀଧର—ପର୍ବତ, ନିଗମ—ବେଦ, ମହରାଦି ଲୋକେ—ଭୂଃ, ଭୂବଃ, ସ୍ୱଃ, ମହଃ ପ୍ରଭୃତି ଲୋକରେ । ମନ୍ତୁମନ୍ତ—ପାପୀ, ଯବିଷ୍ଠ—ସନ୍ତାନ, ରତ୍ନାକର—ସମୁଦ୍ର, ରମା—ଲକ୍ଷ୍ମୀ, ବିନତାର ସୁତ ରଥ—ଗରୁଡ଼ ଯାହାଙ୍କ ବାହନ, ରଥଚରଣ—ଚକ୍ର, ହତ୍ୟାର—ହତିଆର, ଆୟୁଧ;

ଗୁହାରି—ଭାରତୀ, ରତ୍ନକୁଣ୍ଡଳିଆ ଶ୍ରୁତି, ରନ୍ଧ୍ରପାଶେ ଥରେ ଯାଉ ପଡ଼ି ହେ । ୨୭ । ଲାଗିକାଳେ ଏ ମକର - କୁଣ୍ଡଳ ଯୁଗଳ ମୋର ଦୁଃଖ ଜଣାଇବେ ବୋଲି ଚିନ୍ତି । ଲଗାଇ ରସାରେ ଶିର, ଲକ୍ଷ ଲକ୍ଷ ନମସ୍କାର, ଲାଞ୍ଚ ଦେଇ କରୁଥାଏ ସ୍ତୁତି ହେ, ମହାବାହୁ । ଲଦିହୋଇ ଏତେ ରତ୍ନଗଣ, ଲାଗିଲେ କାହିଁକି ମୋର ରଣ, ଲଭି ଶ୍ରୁତି ପାଶେ ଘର, ଲଗଡ଼ କି ଲାଟସାର ଲୋକରେ ଲୁଳିତ ଲୁବ୍ଧଗୁଣ ହେ । ୨୮ । ବଡ଼ ମୃଦୁଳ ଏ ବନମାଳା ବୋଲି ପ୍ରତିଦିନ, ବନ୍ଦୀ କରୁଥାଏ ବିଜ୍ଞାପନ । ବିଶେଷେ ତାହାଙ୍କ ସଙ୍ଗ, କରି ଆସୁଥିବା ଭୃଙ୍ଗ, ପଛେ ଗୋଡ଼ାଇବାକୁ ମୋର ମନ ହେ, ମହାବାହୁ । ବରଜ ବନିକା ଯାକ ବୁଲି, ବୁଝୁଥାଏଁ ଦେଖି ପ୍ରତି ବଲ୍ଲୀ, ବଇଜୟନ୍ତୀ ବଲ୍ଲରୀ, ବକ୍ଷରେ ଯେ ଥିଲେ ଶିରୀ, ଛାମୁରେ କି ପଡ଼ିଥିଲା ବୋଲି ହେ । ୨୯ । ଶରାବ୍ଧି ବେଳାକୁ ବଳି, ଅଦ୍ୟାପି ନାହାନ୍ତି କଳି, କାଳେହେଁ ନିତ୍ୟ ମୁଁ ଲଭି ରତି । ଶଶି କୁରଙ୍ଗକୁ ଶେଷ, ଧରାକୁ ଶଙ୍କର ବିଷ କଳଙ୍କ ପରାୟେ ବହିଛନ୍ତି ହେ, ମହାବାହୁ । ଶରଣ ବୋଲିବା ଡାକପଣେ, ଶରଣାର୍ଥୀ ଜନ ତତେ କିଣେ, ଶତ୍ରୁ ହେଲେ ସେ ମୋହର, ବୋଲି ତ ହୁକୁମ କର, ପ୍ରତିପାଳୁ ନାହିଁ ଏବେ କେଣେ ହେ । ୩୦ । ଷୋଡ଼ଶ ସହସ୍ର ବ୍ରଜସରୋରୁହାକ୍ଷୀ - ସମାଜ ଘେନି ସୁରସୁତା ତାର କୁଞ୍ଜେ । ଷଡ଼ାସ୍ୟଜନକାହିତ ସଙ୍ଗର ପ୍ରସଙ୍ଗେ ମତ୍ତ, ହୋଇ ପ୍ରଫୁଲ୍ଲିତ ପୁଷ୍ପକୁଞ୍ଜେ ହେ, ମହାବାହୁ । ଷଡ଼ଙ୍ଘ୍ରି ରଚିଲା ପରି କେଳି, ଷଡ଼ାହିତ ନିରସନଶାଳୀ, ଷଡ଼ଅଙ୍ଗୀ ଶ୍ରୁତିମାନେ, ସ୍ତୁତି କଲେ ଅବସାନେ, ନ ଲାଗିଲା ଅପବାଦ ଧୂଳି ହେ । ୩୧ । ସବୁ ସଂସାରି - ସଦନୁ, ସମସ୍ତ ଜନ ବଦନୁ, ଶୁଣିଅଛି ସତ ଅବା ମିଛ । ସହସ୍ର ସଂଖ୍ୟକ ଅପ - ରାଧ କଲେ ହେଲେ ମାଫ, କରି ପ୍ରସନ୍ନକୁ ରଖୁ ଅଛ ହେ, ମହାବାହୁ । ସେ ସକାଶୁଁ ମୋର ଏ ସାହସ, ସଙ୍କୋଚକୁ ମନେ ନାହିଁ ତ୍ରାସ, ସରସ ସକଳ ସୁର, ସାମନ୍ତମାନଙ୍କ ସାର ସଂରଜସେବକ ସମୁଲ୍ଲାସ ହେ । ୩୨ । ହରିହୟ ବିଭୂତିକି, ହଂସରଥାଧିକୃତିକି, ହଟି ରଟୁ ନାହିଁ ମୁଁ ସମ୍ମୁଖେ । ହର୍ମ୍ୟତଳେ ଥିବାଯାକେ, ହାସ୍ୟାସ୍ପଦ ନୋହି ଲୋକେ, ହରିନେବି କାଳ କିଛି ସୁଖେ ହେ, ମହାବାହୁ । ହଇରାଣ ନୋହି କ୍ଳେଶଜାଳେ, ହରେ ହରେ ବୋଲି ଅନ୍ତଃକାଳେ, ହସି ହସି ଯିବି ହରିଦଶ୍ୱ ସୁତଙ୍କ ନଗରୀ, ସୀମା ମାତ୍ର ନ ଦେଖିବି ଡୋଳେ

ରସା ଚରମରେ—ପୃଥିବୀ ଉପରେ, ଲଗଡ଼—ସୁନ୍ଦର, ଲାଟସାର—ଉତ୍କୃଷ୍ଟ, ପିନ୍ଧାଲୁଗା; ବରଜ ବନିକା—ବ୍ରଜପୁରର ବନଦେଶ, ପ୍ରତିବଲ୍ଲୀ—ପ୍ରତ୍ୟେକ ଲତା, ଶରାବ୍ଧି—ଜଳଧି, ସମୁଦ୍ର; ବେଳା—ସମୁଦ୍ର କୂଳ, ସରୋରୁହାକ୍ଷୀସମାଜ—ପଦ୍ମନେତ୍ରା ସ୍ତ୍ରୀ ସମୂହ, ସୁରସୁତା—ଯମୁନା, ଷଡ଼ାସ୍ୟଜନକାହିତ—ଶିବଶତ୍ରୁ କନ୍ଦର୍ପ, ସଙ୍ଗର ପ୍ରସଙ୍ଗେ—ଯୁଦ୍ଧ ବ୍ୟାପାରରେ,ଷଡ଼ଙ୍ଘ୍ରୀ—ଭ୍ରମର, ଷଡ଼ାହିତନିରସନଶାଳୀ—କାମ କ୍ରୋଧାଦି ଷଡ଼୍‌ରିପୁକୁ ଯେ ନିରାକରଣ କରିପାରନ୍ତି, ଷଡ଼ଙ୍ଗୀଶ୍ରୁତି—ଶିକ୍ଷା କଳ୍ପ ବ୍ୟାକରଣ ପ୍ରଭୃତି ଷଡ଼ଙ୍ଗଯୁକ୍ତ ବେଦମାନେ,

ହେ । ୩୩ । କ୍ଷିତିକି ବହିବା ଅହି, କ୍ଷମ ନୋହିବାରୁ କହି, ନ ପାରନ୍ତି ଯାହାଙ୍କ ପୁରତେ । କ୍ଷମା ପୀୟୂଷ ସମୁଦ୍ର, ହେବାର ମୁଁ ଅତି କ୍ଷୁଦ୍ର, ଶ୍ରୀଛାମୁରେ ଜଣାଇଲି ଏତେ ହେ, ମହାବାହୁ । କ୍ଷମ ଅପରାଧ ଏ ତ ନୁହେ, କ୍ଷମାଧିପବାନାଧିବାସ ହେ, କ୍ଷମାକର ଆଜ୍ଞା ହେବ, କ୍ଷିତିସୁର ବଳଦେବ କବିରବି ରାୟଗୁରୁ କହେ ହେ । ୩୪ ।

●

## (୧୨)
## ବିରହୀ - ଚଉତିଶା
### ରାଗ—ଆଷାଢ଼ଶୁକ୍ଳ

କିଶୋରଚନ୍ଦ୍ର କଂସକଟକେ ରହି,
କିଶୋରୀଙ୍କ ବିନା ହୋଇ ବିରହୀ ଯେ
କଲେ ତାହାଙ୍କ ଗୁଣଗଣ ସ୍ମରଣ,
କଞ୍ଜ କିଞ୍ଜଲ୍କ - ଦେହା ଧରାଭରଣ ରେ । ୧ ।
ଖୁରି ତୁରୀୟ ଭାଗ କାଳ ମୋ କୋଳେ,
ଖେଳି ନଥିଲେ କ୍ଷଣ ଯୁଗର ବଳେ ଯେ
ଖମଣି ଯେମା ବନି ଶିଖରି ଅନ୍ତେ,
ଖଞ୍ଜିଲା ଧାତା ବରତିବି କେମନ୍ତେ ରେ । ୨ ।
ଗଳାମଣ୍ଡନ ତୁ ମୋ ରତନ ହାର,
ଗମାର ଦଶା କରିଅଛି ବାହାର ଯେ
ଗତି କେ ବଞ୍ଚିବିଟି କେହି ଏଣିକି,
ଗୁପତ ଧନ ଫିଙ୍ଗିଅଛି ପାଣିକି ରେ । ୩ ।
ଘନମଣ୍ଡଳି ତୁ ମୁଁ ଚାତକ ବୋଲି,
ଘଣ୍ଟା ଘୋଷଣ ମୁଁ ଯେ ଦିଆଉଥିଲି ଯେ
ଘୋର ଜାଙ୍ଗଳ ବିଷ ଖାଇଲା ପରି,
ଘାରି ହେଉଛି ଏବେ ବରନାଗରି ରେ । ୪ ।

---

ହରିହୟବିଭୂତି—ଇନ୍ଦ୍ରସଂପତ୍ତି, ହଂସରଥାଧିକୃତି—ବ୍ରହ୍ମାଙ୍କ ଅଧିକାର, ହରିଦଶ୍ୱସୁତଙ୍କ ନଗରୀ—ଯମପୁରୀ, କ୍ଷିତିବହିବା ଅହି—ଶେଷଦେବ, ଅନନ୍ତ ।

(୧୨) କଞ୍ଜ—ପଦ୍ମ, କିଞ୍ଜଲ୍କ—କେଶର, ତୁରୀୟ ଭାଗ—୪ର୍ଥ ଭାଗ, ଖମଣି ଯେମା—ଯମୁନା ନଦୀ । ଗମାର—ମୂର୍ଖ, ଜଙ୍ଗମ—ଗତିଶୀଳ, ଜମ୍ବୁନଦ—ସୁନା, ଜମ୍ଭାରି—ଇନ୍ଦ୍ର,

ନିନ୍ଦିତ ଶରଦିନ୍ଦୁ ସୁନ୍ଦର ମୁଖୀ,
ନଟନ ଲୀଳା - ପଟୁ ଖଞ୍ଜରୀଟାକ୍ଷି ଯେ
ନିଦ ନଜାଣେ ଛାମୁ ଛାଡ଼ିଲା ଦିନୁ,
ନ ଗଲୁ ନତଦେହା ନିମିଷେ ମନୁ ରେ । ୫ ।
ଚାହିଁଲେ ଚାରି ଦିଗେ ବାହାରେ ଦିଶୁ,
ଚକ୍ଷୁ ବୁଜିଲେ ପୁଣି ଚିତ୍ତେ ବିଳସୁ ଯେ
ଚାତୁର୍ଯ୍ୟନିଧି ଜାଣୁ ତୁ କି କୁହୁକ,
ଚିତ୍ରରୁ ଚିତ୍ର ଏ ତ ଅଲଉକିକ ରେ । ୬ ।
ଛାତିକି ଲାଗିବାର ହେଉ ବିଦୂର,
ଛାଇ ଛୁଆଁ ଉନାହୁଁ ଦେହକୁ ମୋର ଯେ
ଛାମୁ ମୁକୁର ପରି ଯେ ହୋଇଥିଲି,
ଛବି ଜଳଧି କେତେ ଅନ୍ତର ହେଲି ରେ । ୭ ।
ଜଙ୍ଗମ ଜମ୍ବୁନଦ ନବ ଲତାଙ୍ଗୀ,
ଜଗତୀଜୀବା ତୁ ମୋ ଜୀବନ ସଙ୍ଗୀ ଯେ
ଜାଣୁ ତୁ ଯେତେ ରସ ସସ୍ମିତମୁହିଁ,
ଜମ୍ଭାରି ସୁଖପ୍ରଦା ରମ୍ଭାରେ ନାହିଁ ରେ । ୮ ।
ଝଟକୁଥାଏ କାନ୍ତ କନକଶୀରି,
ଝଲକି ପଡ଼ିଥାଏ ଲାବଣ୍ୟଝରୀ ଯେ
ଝମକୁଥାଏ ପଦକଞ୍ଜ ମଣ୍ଡନ,
ଝୁଲା କରୀନ୍ଦ୍ର ପରି ଆସୁ ମୋ ଧନ ରେ । ୯ ।
ନିଜ ସଖୀକି କର ପଇଠଦିଆ,
ନେବାର ପୁଣି କାହା କରୁ ବିଡ଼ିଆ ଯେ
ନବ ରତନ ଯୁତ କଠଉ ଲାଗି,
ନେତ୍ର ସିନା ସେ ଶୋଭା ବିଭବ ଭାଗୀ ରେ । ୧୦ ।
ଟେକାଇଥାଉ ଚିତ୍ର ଫୁଲ ଆଡ଼ଣି,
ଟାପରା କରି ପ୍ରିୟ ଆଳିକି ପୁଣି ଯେ
ଟିପି ଦେବାର କନିଷ୍ଠିକା ଅଞ୍ଚଳେ,
ଟିକାୟତ ତୁ ରସବତୀ ମଣ୍ଡଳେ ରେ । ୧୧ ।

ଡାକି—ଡମରୁ, ଢବା—ଆଟୁଘର, ତନାବି—ଝରକା, ତାଜିମ—ଝରକା, ଧମିଲୁ—ସଜ୍ଜିତ

ଠଉରାଉ ଦୂରରୁ ପ୍ରବେଶ ମୋର,
ଠାରି ଲୋଚନାଞ୍ଚଳେ ଚତୁରୀବର ଯେ
ଠାକୁରାଣୀ ଲାଞ୍ଛନ ଛପାଇ ଦେଉ,
ଠାଣି ଜଳଧି ଭିନ୍ନ ଛବି ଦେଖାଉ ରେ । ୧୨ ।
ଡେରି ନ ରଖି ଛାତି ମୁଖ ନ ଟେକି,
ଡୋଳା ଚପଳା ଲୀଳା ଦେଇ ଅଟକି ଯେ
ଡାକି-କଟୀଟି ଅବା କିଛି ନ ଜାଣୁ,
ଡରିଲା ପରି ରଣରଣ କରଣୁ ରେ । ୧୩ ।
ଢବା ତନାବିତଳେ କରନ୍ତେ ବିଜେ,
ଢଳି ମୋ ନୟନ ସେ ଶୋଭା ସମାଜେ ଯେ
ଢାଳିବି ବୋଲି ନବ ମାଳି ଚାମର,
ଢୋକେ ଢୋକିବି ବୋଲି ମଧୁରାଧର ରେ । ୧୪ ।
ଉପକଣ୍ଠକୁ ମୋର ଯିବାର ଦେଖି,
ଆହା ସସ୍ମିତ ବ୍ରୀଡ଼ ପ୍ରସାଦମୁଖୀ ଯେ
ଉଠି ତଜିମ ଦେଇ ଯହୁଁ କୁହାରୁ,
ଉଚ୍ଛଳେ ସ୍ମରସିଂହ ମନ ଗୁହାରୁ ରେ । ୧୫ ।
ତୋତେ ନିବିଡ଼େ ଭିଡି ଚରଣ ତଳୁ,
ତମାଳ ତୁଲ୍ୟକେଶା ତୁ ହିଁ ଦୟାଳୁ ଯେ
ତୁ ସାରାଂଶକୁ ଚୁମ୍ବି ଦେବଙ୍କ ପରି,
ତୃଷାର ଶାନ୍ତିକରା ନବ କିଶୋରୀ ରେ । ୧୬ ।
ଥୋକାଏ ବେଳେ ଚୁମ୍ବରସରେ ମାତି,
ଥାପି କରାଇ କିଛି ଅତନୁପତି ଯେ
ସ୍ଥୂଳ ନିତମ୍ବେ ସ୍ଥାପି ଦିଅନ୍ତେ ମାର,
ଥରୁ ତୁ କିମଣିଟି ରମଣୀବର ରେ । ୧୭ ।
ଦମ୍ଭେ ବଞ୍ଚାଇବାକୁ ନିଜାପଘନ,
ଦୁଃଖ ପାଶୋରା କରୁ ନାନା ଯତନ ଯେ
ଦୃତ ଯହିଁରେ ବୀର ମକର ପତ୍ର,
ଦୁଇ ହୃଦୟ ମିଶିବାର କି ଚିତ୍ରରେ । ୧୮ ।

କବରୀ, ଧକ—ଭୟ, ବରାରୂହା—ଶ୍ରେଷ୍ଠା ନାୟିକା, ନତନୁ—କନ୍ଦର୍ପ,

ଧନ୍ମିଲ୍ଲ ବ୍ୟସ୍ତ ହେବାଯାଏଁ ଆଗ୍ରହେ,
ଧାତାର ଚିତ୍ତେ ହୋଇ ଲମ୍ପଟ ବୁହେଁ ଯେ
ଧକ ସୁହାତ ବର ବରାଗୃହାଟି,
ଧମକାଉ ଯା ଝଷଧ୍ୱଜ କୁହାଟି ରେ । ୧୯ ।
ନ ଯାଏ ମନୁଁ ଅନୁପମ ତୋ ଲୀଳା,
ନଟନୁ ଦେବତନୁମଧ୍ୟା କୁଶଳା ଯେ
ନାହିଁ ତୋ ତୁଳା ତିଳେ ଥିବାର ରାମା,
ନକ୍ଷତ୍ରନାଥମୁଖୀ ତୁ ତୋ ଉପମା ରେ । ୨୦ ।
ପରମେଶ୍ୱର ପୁଣି ପ୍ରସନ୍ନ ହେବେ,
ପ୍ରୀତିବତ୍ସଳା ତୋତେ ପାଇବି କେବେ ଯେ
ପରତେ ହେଉ ନାହିଁ ମାନସେ ମୋର,
ପାପିଷ୍ଠ ଦଶା ଯହୁଁ କରିଛି ଦୂର ରେ । ୨୧ ।
ଫୁକାର କରି ଫଗୁ ଖେଳିବା କେଳି,
ଫନ୍ଦାଧନକୁ ଦିନେ କଳି ମୁଁ ଅଳି ଯେ
ଫିଟାଇ ହେଉ ବୋଲି ମୋତେ ନ ଭାଷି,
ଫେରି ଚାହିଁଲୁ ସଖୀ ମୁଖକୁ ହସି ରେ । ୨୨ ।
ବିଦା ହେଉଛି ବୋଲି ଆର କୁଞ୍ଜକୁ,
ବୋଲାଇ ନେଲୁ ପ୍ରିୟଆଳି ପୁଞ୍ଜକୁ ଯେ
ବନାଇବାକୁ ରଣପ୍ରବୀର ବେଶ,
ବସୁଧା - ଭୂଷା ତାଙ୍କୁ ଦେଲୁ ନିଦେଶ ରେ । ୨୩ ।
ଭଙ୍ଗୀଭଙ୍ଗୁର ଆଲବେଲିଆ ଖୋଷା,
ଭଲେ କରାଇ ଦକ୍ଷଅଂଶ ଲହସା ଯେ
ଭରମ ଜରିପଟା ଗୁଚ୍ଛ ତକିଆ,
ଭ୍ରୂ ମଧେ ଯତି ଧୃତିଖିଆ ଆଖିଆ ରେ । ୨୪ ।
ମଧକୁ ଅଳିକର ବିନ୍ଦୁ ସିନ୍ଦୂର,
ମାନିଲା ନବୋଦିତ ଇନ୍ଦୁ ସୁନ୍ଦର ଯେ
ମଣ୍ଡଳ ଅତି ମନୋରମ ଭାଲରେ,
ମଣ୍ଡନ କଲେ ଦିବ୍ୟ ମୋତି ଝାଲରେ । ୨୫ ।

---

ନକ୍ଷତ୍ରନାଥମୁଖୀ—ଚାନ୍ଦମୁହିଁ, ଆଲବେଲିଆ—ଇତସ୍ତତଃ ବିକ୍ଷିପ୍ତ । କଞ୍ଚୁକ—କାଞ୍ଚଲା,

ଯତ୍ନେ କୁସୁମାରାଗ ରଞ୍ଜିତ ଶାଢ଼ୀ,
ଯୋଷାଏ ଲାଗି କରାଇଲେ ନିବାଡ଼ି ଯେ
ଯମୁନା ଜଳ ନୀଳ କଞ୍ଚୁକେ ଭଲେ,
ଯାମଳ ମେରୁ ଚାରୁ ସ୍ତନ ମଣ୍ଡିଲେ ରେ । ୨୬ ।
ରମା ମୋ ସ୍ମର ଜ୍ୱର ଜୀର୍ଣ୍ଣ ବଟିକା,
ରଖିଲୁ କଳପୂରା ବାସବୀଟିକା ଯେ
ରଙ୍ଗ ପରାଗମୁଷ୍ଟି କରୁ ଖସିଲା,
ରକ୍ତିମା ଝଲକିଲା ପରି ଦିଶିଲା ରେ । ୨୭ ।
ଲମ୍ବି ଜାନୁକୁ ମୋତିଝୁମ୍ପା ଅଞ୍ଚଳ,
ଲିଭାଇ ଦେଲା ସୃଷ୍ଟି ସୁଷମା ବଳ ଯେ
ଲହଙ୍ଗା - ଲାଗି ଶୋଭା ସମ୍ଭାର ଦେଖି,
ଲଭିଛି ସୁଖ ଯେଉଁ ଆକ୍ଷି ସେ ସାକ୍ଷୀରେ । ୨୮ ।
ବାଜେଣୀ ଭୂଷାପୁଞ୍ଜ ସିଞ୍ଜିତ ବାଜା,
ବଜାଇ ବିଜେ କଲୁ ରସିକାରାଜା ଯେ
ବିଜେ ମଣିମା ଡାକ ଦିଅନ୍ତେ ଦାସୀ
ବଳକ୍ଷ ଫୁଲଛତୀ ଯିବାରୁ ଦିଶି ରେ । ୨୯ ।
ଶାମ୍ବରୀ ସଖୀ ବେଶେ ଛାମୁରେ ଭେଟି,
ଶର୍ମଦାୟିନୀ ତୁଲେ ଖେଳିଲି ହଟି ଯେ
ଶେଷ ହେବ କି ସେ ସମୟର ଭାବ,
ଶେଷ କହିଲେ ଅବଶେଷ ରହିବ ରେ । ୩୦ ।
ଷୋଡ଼ଶ ବୟସୀରେ ସଦୟ ହେବେ,
ଷଡ଼ାସ୍ୟ - ତାତ ଦେବ ମୋ'ଠାରେ କେବେ ଯେ
ଷାଠିଏ ଦଣ୍ଡଯାକ ପୂଷିତ କୁଞ୍ଜେ,
ଷଡ଼ଙ୍ଘ୍ରି ହେବିକି ତୋ ଶ୍ରୀମୁଖକଞ୍ଜେ ରେ । ୩୧ ।
ସନ୍ତତ ହୃଦୟରେ କରିବି ହାର,
ସୁବର୍ଣ୍ଣ ସଉଧରେ କରି ବିହାର ଯେ
ସଢ଼ାଇ ସ୍ମରବୀର ବଢ଼ାଇ ଧୃତି,
ସମୟ ବଞ୍ଚାଇବି କେବେ ସୁଦତି ରେ । ୩୨ ।

ବୀଟିକା—ଖିଲିପାନ, ଲହଙ୍ଗା—କୁଞ୍ଚକରା ଘାଗରା, ବଳକ୍ଷ—ଧଳା, ଶାମ୍ବରୀ—ମାୟା,

ହଙ୍କାରେ ନୃପ ଦେଲେ ହେଲେ ନିଦେଶ,
ହିରଣ୍ୟଗୋରୀ ନ କରିବି ବିଦେଶ ଯେ
ହରଷେ ତୋହ ରସସୁଧାରେ ଭାସି,
ହରିବି କାଳ କଳମଧୁରଭାଷୀ ରେ । ୩୩ ।
କ୍ଷପାରମଣକର କଳିକା କେଳି,
କ୍ଷତ ତିମିର ରମ୍ୟ ପୁଳିନେ ମିଳି ଯେ
କ୍ଷୀବ ହେବିକି ସତେ ଅନଙ୍ଗରଣେ,
କ୍ଷିତି ମହେନ୍ଦ୍ର ହରିଚନ୍ଦନ ଭଣେ ରେ । ୩୪ ।



## (୧୩)
## ମଞ୍ଜୁଳା ଚଉତିଶା
### ରାଗ—ବସନ୍ତ

କିଶୋରୀବରଙ୍କ ବଦନ ନିରଙ୍କ ଚନ୍ଦ୍ରରେ ଗୁମାନ ଦେଖି ରେ
କଳାପୀ କଳାପ କିରୀଟ ମଣ୍ଡନ କହନ୍ତି ଆଢନ୍ନସୁଖୀ ରେ
ମଞ୍ଜୁଳା, କିଛି ଦୋଷ ନାହିଁ ମୋର ରେ
କାହିଁକି ଶୁଖିଲା ଛବିକି ଶିଖିଲା ତୋ ଶ୍ରୀମୁଖ କଳାକର ରେ । ୧ ।
ଖଟିଅଛି ନିତି ଖଟର ପଞ୍ଚମ ଖୁରାପରି ଢଗି ବସି ରେ
ଖସି ପଡୁଥିବା ନିତମ୍ବ ଅମ୍ବର ଖଞ୍ଜୁ ଅଛି ପ୍ରତିନିଶୀରେ
ମଞ୍ଜୁଳା, ଖେଳା ଖଞ୍ଜରୀଟଦୃଶା ରେ
ଖଳଜନ ଖଚ ବଚନକୁ ସତ୍ୟ ମଣି ଆଚରି କିଦୃଶାରେ । ୨ ।
ଗଣି ନିଶା - ଗର୍ଭ ଗରବ ଗଞ୍ଜନ ଗଉର ବିଗ୍ରହବତୀ ରେ
ଗଣି ଗୁପ୍ତଧନ କଣ୍ଠୀରବମଧମଧା ତୁ ମୋର ସୁଦତୀ ରେ
ମଞ୍ଜୁଳା, ଗିରୀଶ ସପତ୍ନ ଶରରେ
ଗୁନ୍ଥାଇ ନ ଦିଅ ଗୁଣ ରୂପ ରସସିନ୍ଧୁ ମୋବନ୍ଧୁ ରୋଷରେ ରେ । ୩ ।

---

ଶର୍ମଦାୟିନୀ—ସୁଖ ଦେଉଥିବା, ଷଡ଼ାସ୍ୟତାତ—କାର୍ତ୍ତିକଙ୍କ ପିତା ଶିବ, ଷଡ଼ଂଘ୍ରି—ଭ୍ରମର, ସୁଦତି—ଉତ୍ତମ ଦାନ୍ତଥିବା । କ୍ଷପାରମଣ—ଚନ୍ଦ୍ର, କ୍ଷୀବ—ମତ୍ତ ।

(୧୩) ନିରଙ୍କ—କଳଙ୍କହୀନ, ଅମ୍ବର—ଶାଢ଼ୀ, ସୁଦତୀ—ଭଲ ଦାନ୍ତ ଥିବା । ଅଳକତ—ଅଳତା, ଛେଳ—ଅଶ୍ୱ, ଶମ୍ବରାରି—କନ୍ଦର୍ପ, ଜମ୍ବୁନଦ—ସୁନା, ବରୋରୁହା—

ଘଡ଼ିଏ ଅନ୍ତର ନୋହିବାର ତୋର ଛାମୁରୁ ଚିତ୍ତେ ନାହିଁକି ରେ
ଘୋଷା ଘୋଷାକର ଯୋଷାମାନଙ୍କର ଭୂଷାକରିଛୁ କାହିଁକି ରେ
ମଞ୍ଜୁଳା, ଘେନିଲେ ହେଲାନି ଯୁଗରେ
ଘନଜଘନା ତୋ ମୁଖଚନ୍ଦ୍ରେ ଦେଖି ସ୍ମିତକ୍ରୀଡ଼ା ବିପ୍ରଯୋଗ ରେ ।୪।
ନଖରାଜି ମାଜି ନବୀନ ନଳୀନ ବିକାଶ ଚରଣେ ତୋର ରେ
ନିନ୍ଦ୍ୟ ନୋହିବାର ଅଲକତ ସାର ବୋଲି ବଡ଼ପଣ ମୋର ରେ
ମଞ୍ଜୁଳା, ନ ଥିଲେ ତୋ ନଉକରିରେ
ନ ଲୋଡ଼େଁ ମୁଁ ମୋର ଭାଗ୍ୟ ବଡ଼ି ଚଢ଼ିବାର ଚତୁର୍ଦ୍ଦନ୍ତ କରୀରେ ।୫।
ଚନ୍ଦ୍ରିକା ତୁ ଚିରତୃଷିତ ଚକୋର ଚଞ୍ଚୁପୁଟ ମୋ ଲପନ ରେ
ଚୁମ୍ବେ ଚମତ୍କାର ରବ ନ କରଇ ସବ୍ରୀଡ଼ ଜାଣି ତୋ ମନ ରେ
ମଞ୍ଜୁଳା, ଚିହିଙ୍କିବୁ ବୋଲି ଡରେ ରେ
ଚେତି ପହୁଡ଼ିବା ବେଳେ ଏକା ନଖ ଶିଖର ଚାଳନ କରେ ରେ ।୬।
ଛ'ନବ ବୟସୀ ଛଣାମୃତ ଭାଷୀ ଛୁଆ ମଦଗଜ ଗତି ରେ
ଛତି ଟେକାଇ ମୁଁ ତୋର ଭୃତ୍ୟ ବୋଲି ପ୍ରସରୁଅଛି ଜଗତୀରେ
ମଞ୍ଜୁଳା, ଛେଦନା' ଉନ୍ନତି ମୋର ରେ
ଛେଚି ହେବି ଛେଲ ମାରିହେବି ଅବା ସିନା ଶ୍ରୀଛାମୁରେ ତୋର ରେ ।୭।
ଯେବେ ଶମ୍ବରାରି ଜମ୍ବୁନଦ ଜରିତମ୍ଭ ବରୋରୁହା ସ୍ତନାରେ
ଜାଣିଥିବି ଜମ୍ଭାରାତି ଭାଗ୍ୟ ରମ୍ଭା ତୁଲ୍ୟ ନାରୀ ଉପାସନା ରେ
ମଞ୍ଜୁଳା, ଯାହା ତୁ ଫରମାସିବୁ ରେ
ଜବାବ ନ ଦେଇ ଯୋଡ଼କର ହୋଇ ସେ ଦଣ୍ଡ ସହିବି ସବୁ ରେ ।୮।
ଝଳି ଝଲମଲ ଝଟକ ହାଟକ ନ ସଞ୍ଚ କେଉଁ ଦୁର୍ମତି ରେ
ଝପାଇ ମନକୁ ଲୋଭରେ ମୋହରେ ବଳାଏ ବଳାଏ ରତିରେ
ମଞ୍ଜୁଳା, ଝୁଣ୍ଟି ମରିବ କେ ଘେନ ରେ
ଝୁମ୍ପା ଝାଲରିଆ ଅମ୍ବାରିରୁ ଖସି ଝଗଡ଼ି ଝଗଡ଼ା ବନରେ ।୯।
ନନ୍ଦନ ବନ ତୁନ୍ଦ ହରିଚନ୍ଦନ ତରୁତଳ ବାସ ଥିବ ରେ
ନିର୍ଗନ୍ଧନ ମେରୁ ବନକୁ ଧନକୁ ପଚାରୁଛି କେଉଁ ଜୀବ ରେ

---

ଘନଜଘନୀ, ଜମ୍ଭାରାତି—ଇନ୍ଦ୍ର, ଅମ୍ବାରି—ଖାଡି, ତୁନ୍ଦ—ବୃହତ, କିରାତନିର୍ଯ୍ୟାସ—ନିମ୍ବରସ। ଡିହାପଣ—ଗାଲୁଆପଣ, ଡିମ୍ବକୁରଙ୍ଗ—ସାନ ହରିଣ, ପର୍ଯ୍ୟଙ୍କ—ପଲଙ୍କ, ଅର୍ଯ୍ୟମାଜେମା—ଯମୁନା, ଶାଖୀ—ଗଛ, ଦ୍ରଢ଼ିମା—ଦୃଢ଼ତା, ଏତାମଦ—ବହୁପ୍ରକାର,

ମଞ୍ଜୁଳା, ନିର୍ଝର ନଦୀ ତେଜିବ ରେ
ନୀଚ ପଶୁଜନ ସ୍ନାନ ପାନ ମ୍ଳାନ ଜଳଗର୍ତ୍ତକୁ କେ ଯିବ ରେ । ୧୦ ।
ଟିକିଏ ଦୁର୍ଘଟ ନୋହି ସୁଧାଘଟ ଥିବ ଯା ରସନା ପାଶରେ
ଟାକର ନ ଫରମାସିବ ସେ ନିକି କରା କିରାତ ନିର୍ଯାସ ରେ
ମଞ୍ଜୁଳା, ଟୋକିଟା କେ ଟାକି ଥିଲା ରେ
ଟେକାଟେକି କରି ଛାମୁରେ କିସଟି ଟୁପୁ କରି ଟିପି ଦେଲା ରେ । ୧୧ ।
ଠାକୁରଙ୍କୁ ସାକ୍ଷୀ କରି ଖଞ୍ଜନାକ୍ଷି ଯଥାର୍ଥ ଜଣାଉଅଛି ରେ
ଠକ ଆଚରଣ ମୋର ତୋ ଚରଣ ସେବାରେ ନାହିଁଟି କିଛି ରେ
ମଞ୍ଜୁଳା, ଠୋ'କରି ହଣାଇ ଦେ'ନା ରେ
ଠ ଅକ୍ଷର ପରି ଜଗତୀରେ ଫେରିବାର ଦୟାଳୁତା ବାନା ରେ । ୧୨ ।
ଡିହାପଣ ପଲେ ହେଲେ ମୁଁ ରୋଷକୁ କ୍ଷମାଗୁଣେ କରି ମନା ରେ
ଡିମ୍ଭ କୁରଙ୍ଗ - ନୟନ - ଜିଣା ନେତ୍ର ଅଞ୍ଚଳରେ ଥରେ ଅନା ରେ
ମଞ୍ଜୁଳା, ଡାକ ମୋତେ ପର୍ଯ୍ୟଙ୍କକୁ ରେ
ଡେଇଁ ପଡିବିଟି ତୋ ଅଙ୍ଗେ ଅର୍ଯ୍ୟମା ଜେମା ଜୀବନ ଅଙ୍କକୁ ରେ । ୧୩ ।
ଢାଳ ମୋରେ ଅନୁକମ୍ପା ଚମ୍ପା ଶମ୍ପା ସମ୍ପତ୍ତି - କମ୍ପଦ ମୂର୍ତ୍ତି ରେ
ଢୋକାଇ ଅଧରୁ ଢୋକେ ସୁଧାଧାରା ଧବଳିତ କର କୀର୍ତ୍ତିରେ
ମଞ୍ଜୁଳା, ଢଳୁଛି ମୋ ମୋଦ ଶାଖୀ ରେ
ଢାଳେ ଧୃତଜଳ ପିଆଇ ତା ମୂଳ ଦୃଢିମାକୁ ଦିଅ ରଖି ରେ । ୧୪ ।
ଅମ୍ବୁଦ ଅଭିନବ ଦଳ ତମାଳତରୁ ଅତସୀ ଅଞ୍ଜନ ରେ
ଏତାମଦ ନୀଳଚେଳ ଏତେ ଦ୍ରବ୍ୟେ ମୋ ସ୍ନେହ ରସେ ତୋ ମନ ରେ
ମଞ୍ଜୁଳା, ଆପେ ମୁଁ ହାଜର ଅଛି ରେ
ଅତି କରୁଣାର୍ଦ୍ର ମନୁଟି ତ ତୋର ଅନୁକମ୍ପ ନାହିଁ କିଛି ରେ । ୧୫ ।
ତରୁଣୀ ତିଳକୀକୃତ ତାମରସ ଚରଣ ପରାଗାବଳି ରେ
ତପନ ତନୟା ତଟିନୀ ତଟକୁ ତୋଷ ରଚି ରାସ କେଳି ରେ
ମଞ୍ଜୁଳା, ତଳକୁ ନ କର ମୁଖରେ
ତାଳକୁଚୁକ ପୂର୍ଣ୍ଣସ୍ତନା ଗୁମାନେ କାଳକୁ କଥା ନ ରଖ ରେ । ୧୬ ।

---

ତାମରସ—ପଦ୍ମ, ଦୁରନ୍ତ—ପ୍ରଚଣ୍ଡ, ଦମ୍ଭୋଳି—ବଜ୍ର, ଦେହୁଡ଼ି—ଦ୍ୱାରଦେଶ, ଟିରା—ସାମାନ୍ୟ, ଓଜ—ତେଜ, ଧଗଦ୍ଧଗଦ୍ଧା—ଠେଲାପେଲା, ଧୂମଧ୍ୱଜ—ଅଗ୍ନି । ଭର୍ଗ—ଶିବ, ଦନ୍ତାମ୍ବର—ଓଠ,

ଥରେ ତୋ ଶ୍ରୀମୁଖ ତୁଷାର ମୟୂଖ ଶୁଖିଲା ଦେଖିଲା ନାହିଁ ରେ
ଥରେ ଏହି ଭୟବଶୁଁ ମୋ ହୃଦୟ ଅପୂର୍ବ ସୁଷମା ଚାହିଁ ରେ
ମଞ୍ଜୁଳା, ଥାପିହେଉ କ୍ରୋଧଭର ରେ
ଥାଳ ତୁ, ମୁଁ ଯୋଗୀ ହେଲେ ବିପ୍ର ଯୋଗୀ ତୋତେ ସିନା ଅସୁନ୍ଦର ରେ ।୧୭।
ଦୟା - ଦରିଦ୍ର ସେ ଦୁରନ୍ତ ଦଇବ ଦେଉଛି ମୋତେ ଏ ଦଣ୍ଡ ରେ
ଦଳି ପକାଉଛି ଦାରୁଣ ନାରାଚ ଦମ୍ଭ ଦମ୍ଭୋଳି ମୋ ପିଣ୍ଡରେ
ମଞ୍ଜୁଳା, ଦେଲେ ହେଲେ ତୁ ଘଉଡ଼ି ରେ
ଦୁଃଖିଧନ, ତୋର କରିବି କି ଦୂର କୁଞ୍ଜ ମନ୍ଦିର ଦେହୁଡ଼ି ରେ । ୧୮ ।
ଧୀରା ଯୁବତୀଙ୍କ ହୀରା ରଖ କ୍ଷିତି ଚିରା ମାଗୁଛି ଏତେକ ରେ
ଧନ, ମୁଁ ମୀନଜୀବନ ତୁ ନବୀନ ଘନ ତ ମୁଁ ଯେ ଚାତକ ରେ
ମଞ୍ଜୁଳା, ଧ୍ୱଂସ କରିବ ମୋ ଓଜ ରେ
ଧଗଦ୍ଧଗଦ୍ଧାଟି ହେଉଛି ଧୂର୍ଜଟୀ - ରିପୁ ଧୂର୍ତ୍ତ ଧୂମଧ୍ୱଜ ରେ । ୧୯ ।
ନିପଟ ନିସର୍ଗ ହୃଦୟ ଯେ ଭର୍ଗ ପରିପନ୍ଥି ପ୍ରେତବର ରେ
ନ ଦଣ୍ଡ୍ୟ ଅପରଚଣ୍ଡ କରେ ଆପେ ଦଣ୍ଡକରେ ସାଧକର ରେ
ମଞ୍ଜୁଳା, ନିଶ୍ଚିତ ହେଲେ ମୋ ଦୋଷ ରେ
ନଖର ପ୍ରଖର ପ୍ରାନ୍ତର କୁନ୍ତରେ ମୋତେ ଭୂମିଭୂଷା ଭୂଷ ରେ । ୨୦ ।
ପକାଇ ଉତ୍ତାନ କରି ତଳେ ମୋତେ ପଥର ନଦିଲାପରି ରେ
ପୀନ ପୟୋଧର ପରବତ ମୋର ଉରେ ଲଦିଦିଅ ଚୂରି ରେ
ମଞ୍ଜୁଳା, ପୀଡ଼ି ଦନ୍ତେ ଦନ୍ତାମ୍ବର ରେ
ପୂତନାର ସୁଚୁଚୁକଦ୍ୱାରେ ପୂରି ପିଇଦିଅ ପ୍ରାଣ ମୋର ରେ । ୨୧ ।
ଫାଟିଯିବା ଭଳି ମୋ ବାହାଯୁଗଳ ଭିଡ଼ି ବନ୍ଧୁ କୁନ୍ଦହାସୀ ରେ
ଫିଟାଇ ଦେବାକୁ ହୁକୁମ ନ ଥାଇ ବାନ୍ଧି ବାହୁ ଦୃଢପାଶି ରେ
ମଞ୍ଜୁଳା, ଫରମାସିବୁ ତୁ ଯାହା ରେ
ଫନ୍ଦା କରି ତାକୁ ଫୁଲପରି ଶିରେ ବହି ସହିବି ସୁସ୍ନେହା ରେ । ୨୨ ।
ବିଶ୍ୱାସ ଉଚିତ ନଉକରି ଚିତ୍ତ ଦୂର ହେଲେ କରି ଦୂର ରେ
ବସନ ଫିଟାଇ ବନ୍ଧନ ଫିଟାଇବାର ବୋଲି ଅସୁନ୍ଦର ରେ
ମଞ୍ଜୁଳା, ବିଚାରିବୁ ନାହିଁ ମନେ ରେ
ବରଜି କରୁଣା ଏଥୁଁ ବଡ଼ଦଣ୍ଡ ଦେଇଅଛୁ ଦିନେ ଦିନେ ରେ । ୨୩ ।

ଭରଜି—ମନାଇ, ଲାୟକ—ଯୋଗ୍ୟ, ଯମସ୍ୱସା—ଯମ ଭଗିନୀ ଯମୁନା,

ଭୃତ୍ୟ କଲେ ଦୋଷ ପ୍ରଭୁ ବହି ରୋଷ ନ ଦଣ୍ଡିଲେ କେ ଦଣ୍ଡଇ ରେ
ଭରଜି ଦାସର ଦାସ୍ୟରେ ବିଶ୍ୱାସ ନ ମଣ୍ଡିଲେ କେ ମଣ୍ଡଇ ରେ
ମଞ୍ଜୁଳା, ଭର୍ତ୍ତାକୁ ଯେଟି ଭଣ୍ଡଇ ରେ
ଭରଣ ନ କରି ପ୍ରଭୁ ତାର ଅଙ୍ଗ ନ ଖଣ୍ଡିଲେ କେ ଖଣ୍ଡଇ ରେ । ୨୪ ।
ମୋହିଲା ପଦାର୍ଥ ତୁ ସିନା କିଶୋରୀ ମହୀ ଲାୟକ ଯେ ନୋହୁ ରେ
ମହୀ ଲାଘବୁଁ ମୁକ୍ତ ହେଲା ବହିଲା ଏ ବିଧି ଏତିକି ରହୁ ରେ
ମଞ୍ଜୁଳା, ମଦାଳସା ବ୍ରଜରାଜରେ
ମଲ୍ଲୀଦଳକୃତ ବହଳ ବିଛଣା ମଧରେ ଥରେ ବିରାଜ ରେ । ୨୫ ।
ଯମସ୍ୱସାଜଳେ ଯୁବତୀଙ୍କ ମେଳେ କରୁଥିଲୁ ଅବଗାହ ରେ
ଯାଦୁପରି ଦୂରୁଁ ବୁଡ଼ିଆସି ଭିଡ଼ି ଢ଼ୋକିଲି ପଦାମ୍ବୁରୁହ ରେ
ମଞ୍ଜୁଳା, ଯଥୋଚିତେ ଚାଳି ନଖ ରେ
ଯତ୍ନେ ନଟବେଶ ଦେଖାଦେଲି ହାସେ ସଖାମାନେ ଥିବା ସୁଖରେ । ୨୬ ।
ରମଣୀୟ - ଶୀଳ ରମଣୀମଣ୍ଡଳ ରମଣୀ ତୁ ତ ବିଦୂଷୀ ରେ
ରଖି ମନେ ଏହି କଥାକୁ କି ମଥା ନୁଆଇଁ ବସନ୍ତୁ ରୁଷି ରେ
ମଞ୍ଜୁଳା, ରହସ୍ୟ ଲୋକାନ୍ତ ଭେଦ ରେ
ରମ୍ୟଗୁଣ ତୋର ରଖଇ କି ପଛେ ଜନ୍ମଇ ସିନା ନିର୍ବେଦରେ । ୨୭ ।
ଲଦିଛି ମଙ୍ଗଳାଙ୍କୁ ମୁଁ ଏକ ଊଣା ଲକ୍ଷେ ମନ୍ଦାର ମୁକୁଳ ରେ
ଲଗଡ଼ ବିଚାରି ଏକ ନଉକରି ସ୍ୱଗୋତ୍ରେ କରି ମୁଁ କୁଳ ରେ
ମଞ୍ଜୁଳା, ଲଗାଇଲେ ପ୍ରେମଧାରାରେ
ଲଳନାମଣି ରେ ନ ପାଳିବାକୁ ସେ ଆଜ୍ଞାକୁ କାହାରି ଚାରା ରେ । ୨୮ ।
ବିଶ୍ୱ ବିଶ୍ୱମ୍ଭରା ଧୂଳି ପରମ୍ପରା ଲେଖିବାକୁ ବିଦ୍ୟା ଥିବ ରେ
ବିଶ୍ୱାସୀ ଚାକର ଦୋଷର ଆକର ତା' ଦୋଷ ଗଣା ନ ଯିବ ରେ
ମଞ୍ଜୁଳା, ବିବେକୀ ପ୍ରଭୁ ତୋ ପରି ରେ
ବଞ୍ଚାଇ ନେଉଥାଏ କ୍ଷମାଗୁଣରୁ ଗର୍ହିତ ଭାବ ନ ଧରି ରେ । ୨୯ ।
ଶେଫାଳିକା ବାସ ଭାରବୁହାଳସ ପ୍ରସରଣୁ ହୋଇ ଚାରୁ ରେ
ଶତପତ୍ର ବନବିଳାସୀ ପବନ ବହିଲାଣି ଯମୁନାରୁ ରେ
ମଞ୍ଜୁଳା, ଶିଶିର ହେଲା ନୀହାର ରେ
ଶୀତଳ ନୋହିଲା ଏତେ ବିନୟେ ତୋ ଚିତ୍ତ ଏ କି ଚମତ୍କାର ରେ । ୩୦ ।

ପଦାମ୍ବୁରୁହ—ପାଦପଦ୍ମ । ନିର୍ବେଦ—ଖେଦ, ଲଗଡ଼—ଶୋଭନୀୟ, ବିଶ୍ୱମ୍ଭରା—ଜଗତପାଳିକା, ଶତପତ୍ର—ପଦ୍ମ, ନୀହାର—ବରଫ, ଷଡାନନ, ପିତା - ପ୍ରାସାଦ—ଶିବମନ୍ଦିର,

ଷଡ଼ାନନ ପିତା ପ୍ରାସାଦମାନଙ୍କେ ବିକଶୁଛି ଶଙ୍ଖ ନାଦ ରେ
ଷଡ଼ଘ୍ରିଂମାନେ କୁସୁମକଳି ଚୁମ୍ବି ତା' ତୁଲେ କଲେଣି ବାଦ ରେ
ମଞ୍ଜୁଳା, ଷଡ୍ଉପାୟ ଶେଷ ହେଲା ରେ
ଷୋଡ଼ଷୁଁ ନ୍ୟୁନ ବୟସୀ ଅକାରଣେ ତୋ ରୋଷ ଶେଷ ନୋହିଲା ରେ । ୩୧ ।
ସହି ବାରକ ମୋ ଅପରାଧ ଏବେ କହିବାର କଥା ଘେନ ରେ
ସଙ୍ଖାଳି ସରସ ନେତ୍ରାନ୍ତେ ମୋହର ସମ୍ଭାଳି ରଖ ଜୀବନ ରେ
ମଞ୍ଜୁଳା, ସରିଲିଟି ଚାହୁଁ ଚାହୁଁ ରେ
ସୁଧା ସାର ସାର ସଦୃଶ ବଚନେ ଥରେ ଆହା ବୋଲୁ ନାହୁଁ ରେ ।·୩୨ ।
ହିମ ହରିତାଳ ତାଳ ସୁବର୍ତ୍ତୁଳ ସ୍ତନ ଲଗାଇ ମୋ ଛାତିରେ
ହର - ପରିପନ୍ଥୀ ଶର ଜ୍ୱର ମଛି ପକାଅ ମନ୍ଥରଗତି ରେ
ମଞ୍ଜୁଳା, ହାର ଏକା ସବୁ ମୋର ରେ
ହେଲା ଏଣିକି ମୁଁ ଯେବେ ଆଚରିବି ହଣାଇ ଦିଅ ମୋ ଶିରରେ । ୩୩ ।
କ୍ଷଣଦା - ମୟୁଖମୁଖୀ ଶ୍ୟାମମୁଖ ବାଣୀ ଶୁଣି ହୋଇ ସୁଖୀ ରେ
କ୍ଷୀରବିନ୍ଦୁ କୁନ୍ଦଅବଦାତ ମନ୍ଦ ସ୍ମିତ ରଦାମ୍ବରେ ରଖି ରେ
ମଞ୍ଜୁଳା, କ୍ଷିତି ପ୍ରସାଦେ ମଣ୍ଡିଲେ ରେ
କ୍ଷମା ସଂକ୍ରନ୍ଦନ ଶ୍ରୀହରିଚନ୍ଦନ ଜଗଦ୍ଦେବ ବିଚରିଲେ ରେ । ୩୪ ।



## (୧୪)
## ମୋହନା ଚଉତିଶା
### ରାଗ—ବସନ୍ତ

କଂସ ନଗରୀରେ ବିହରି ଶ୍ରୀହରି ହଂସଗମନାକୁ ଭାବି ରେ
କୁସୁମ ବିଶିଖେ ବିଦ୍ଧ ହୋଇ ଦୁଃଖେ ବୋଲନ୍ତି ଆହା ବାନ୍ଧବୀ ରେ,
ମୋହନା, କେତେ ଦୂର ଧାତା କଲା ରେ,
କି ଛାଡ଼ି ରହିଲି ଯାହାପାଶେ ନେତ୍ର ପିଛାଡ଼ି ହେଉ ନ ଥିଲା ରେ । ୧ ।

ଷଡଘ୍ରିଂ—ଭ୍ରମର, ଷଡ୍ଉପାୟ—ସ୍ତମ୍ଭନ ମୋହନାଦି ୬ଟି ତାନ୍ତ୍ରିକ ଉପାୟ, ହରିତାଳ—ପୀତବର୍ଣ୍ଣ, କ୍ଷଣଦା—ରାତି, ସଂକ୍ରନ୍ଦନ—ଇନ୍ଦ୍ର ।

(୧୪) ପିଛାଡ଼ି—ପଲକ ପଡ଼ିବା, ଖମଣିନନ୍ଦନା - ତଟ—ଯମୁନାତଟ, ସୂନ—ଫୁଲ,

ଖମଣି - ନନ୍ଦନା - ତଟ ବନ ସୂନ ନିର୍ମିତ ଜଙ୍ଗମ ଲତାରେ
ଖୁଆ - ମୁହାଁ ନବନୀତେ ତ ନ ଥିବ ତୋ ଶ୍ରୀଅଙ୍ଗ କୋମଳତା ରେ
ମୋହନା, ଖଟପଡ଼ା ହଂସ ତୂଳୀରେ
ଖୁରି ଅର୍ଦ୍ଧକାଳ ବରଛି ମୋ କୋଳ ପହୁଡ଼ିଲେ ପଡୁ ଲୁଚି ରେ ।୨।
ଗଜେନ୍ଦ୍ର ଗରବଗଞ୍ଜନ ଗମନା ଅଞ୍ଜନା ନୀଳକୁନ୍ତଳା ରେ
ଗୁଣରୂପ ରସବତୀମାନଙ୍କର ଗୁରୁ ମୋ ନେତ୍ରପିତୁଳା ରେ
ମୋହନା, ଗିରିତୁଙ୍ଗେତର ସ୍ତନା ରେ,
ଗୋରୀ ତୁ ମୋ ଗତି ନିଖିଳ ଜଗତୀ ଶୀରି ତୁଳନା - ବିହୀନା ରେ ।୩।
ଘେନାଘେନି ବାଣୀ କୁହାପୋଛା ଠାଣି ଦୀନଜନ ଅନୁକମ୍ପା ରେ
ଘନକେଶା ଅଣୁମଧ୍ୟା ସିନା ଜାଣୁ ଶୃତି ମୋତିଝୁମ୍ପା କମ୍ପା ରେ
ମୋହନା, ଘଡ଼ିଏ ନୁହେଁ ପାଶୋରି ରେ
ଘୃତାଚୀମୁଖ ଲେଖ ବାରବାମାଏ ନୁହନ୍ତି ତ ତୋ ପା’ ସରି ରେ ।୪।
ନିରେଖି ମୋର ଛାମୁକୁ ଆସିବାର ଦିନେ ନିତମ୍ବିନୀବର ରେ
ନିଦ ନ ଥାଇ ନୟନ ବୁଜି ମିଛେ ଆଉଜିଲୁ ଅପସରରେ
ମୋହନା, ନିକଟକୁ ଧୀରେ ଆସି ରେ
ନବ ଜାତୀ ସୂନ ଝରା ଖଞ୍ଜି ମୁଁ ନତନୁ ନଦେ ଗଲି ଭାସି ରେ ।୫।
ଚୁମ୍ବି ଚିବୁକେ ଚଟୁଳ ପୟୋଧର - ଚକ୍ରବାକେ ଦେଲି ପାଣି ରେ
ଚତୁରୀ ସେ ସୁଖ ଭୋଗକଲୁ କିଛି ନ ପାରିଲାପରି ଜାଣି ରେ
ମୋହନା, ଚିରସୁଖ ସ୍ୱାଦ ଅନ୍ତେ ରେ
ଚିହିକି ପଡ଼ିଲା ହୋଇ ଚନ୍ଦ୍ରାନନା ନିବିଡ଼େ ଭିଡ଼ିଲୁ ମୋତେ ରେ ।୬।
ଛକେ ଛକେ ତହୁଁ ଛବି ଜଳଧିର ଛନ୍ଦି ପ୍ରତିଅଙ୍ଗ ଅଙ୍ଗେ ରେ
ଛପିଲି ଛ’ ଦଣ୍ଡଯାଏଁ ଫୁଲକାଣ୍ଡ ସମର ରସତରଙ୍ଗେ ରେ
ମୋହନା, ଛିଡ଼ନ୍ତେ ଉନ୍ମାଦ ଫାଶି ରେ
ଛାଡ଼ ଛୁରୀଅନା - ଗଭା ମୋ ରାଣଟି ବୋଲି ଭାଷିଲୁ ଯା’ ହସିରେ ।୭।
ଜଗତୀଭୂଷାର ଜାଣିବାରୁ ସାର ମୁଁ କିଛି ସୁସାର ରୀତିରେ
ଜବର ତ ବର - ଯୋଷା ତୁ ଶବର ସ୍ମର ଆହବରେ ମାତି ରେ

ଲୁଚି—ଝାଉଁଳି, ଅଣୁମଧ୍ୟା—କ୍ଷୀଣକଟୀ, ଘୃତାଚୀ—ଅପ୍ସରା, ଅପସର—ତକିଆ, ନତନୁ—କନ୍ଦର୍ପ, ଜଳଧି—ସମୁଦ୍ର, ଛପିଲି—ବୁଡ଼ିଗଲି । ସ୍ମରଆହବ—ରତିକ୍ରୀଡ଼ା, ସୁସାର—ଶୋଭା, ଜୁରାଇଲୁ—ଲୁଟି କରାଇଲୁ, ଝସଧ୍ୱଜ ଗଜକୁମ୍ଭ—କନ୍ଦର୍ପ ହାତୀର କୁମ୍ଭ, ଝୁମୁଥିଲୁ—ନିଶା ଭୋଳରେ ଝୁଲୁଥିଲୁ, ଶମ୍ବର—ମୃଗ, ଗିରୀଶପୁର—କନ୍ଦର୍ପ, ଗୋପୁର—ଦ୍ୱାର,

ମୋହନା, ଜାଗରୂକ ଅତି ହେଲୁ ରେ
ଜରଜର କରି ରସେ ମୋ ସନ୍ତାପ - ନଗରୀ ଜୁରାଇ ଦେଲୁ ରେ । ୮ ।
ଝସଧ୍ୱଜ ଗଜକୁମ୍ଭ ତୋ ଉରଜ କଟୀଟି ତ ମାୟା ସରୁ ରେ
ଝାଳବିନ୍ଦୁ ବୃନ୍ଦ ଝରିବା ତନୁରୁ ଝୁଲାଝୁଲି ଆୟାସରୁ ରେ
ମୋହନା, ଝୁମୁଥିଲୁ ମାରମଦେ ରେ
ଝଲକି ଲାବଣ୍ୟ ନେତ୍ର ମାର୍ଗେ ଆସି ଭରତି ହେଲା ମୋ ହୃଦେ ରେ । ୯ ।
ନିତମ୍ବ ବିମ୍ବ ଆଡ଼ମ୍ବର ଶମ୍ବର ସପତ୍ନ ଡିଣ୍ଡିମେ କାହିଁ ରେ
ନୟନ କଳୁଷ ନୁହେଁ କି ନିଃଶେଷ ନିଧୁବନ କାଳେ ଚାହିଁ ରେ
ମୋହନା, ନାହିଁ ତୋ'ପରି ତ୍ରିପୁର ରେ
ନୀବି ନବରସ ଅର୍ଗଳ ଗିରୀଶ ପର ମନ୍ଦିର ଗୋପୁର ରେ । ୧୦ ।
ଟୋକି ପଞ୍ଚଦଶ ଯାଏଁ ପରିବେଶ ପରା ଥାନ୍ତି କେତେ ଘେରି ରେ
ଟୋପି କସ୍ତୁରୀତିଳକ ଶୋଭିନୀ ତୁ ପଞ୍ଚଦଶ ଶଶୀପରି ରେ
ମୋହନା, ଟେକାଇ କୁସୁମାଳଟ ରେ
ଟିକେ ପରିସରେ ଉଭା ହେଲେ ସରେ ସଂସାର ସୁଷମା ଲଟ ରେ । ୧୧ ।
ଠଉରିଥିବ ମୋ ଧନ ସଙ୍ଗ କେବେ ନୋହିବ ବୋଲି ଅନ୍ୟଥା ରେ
ଠାକୁରମାନଙ୍କ ପଦପୀଠରେ ମୁଁ ଠୁକୁଥାଏଁ ନିତି ମଥାରେ
ମୋହନା, ଠକ ପୁରୁଷ ଦଇବ ରେ
ଠୁଳେ ମୋ ତରସ ଭରତି ନ କଲା ଏ ଦେହ କେହି ସହିବ ରେ । ୧୨ ।
ଡାକି - ମନୋହରମଧାକୁ ତ ଦୂର କରିଛି ନିର୍ଦ୍ଦୟ ହୃଦେ ରେ
ଡାକିବି ମୁଁ ଏବେ କାହାକୁ ଟି ଜୀବେଶ୍ୱରୀ କିରେ ବୋଲି ମୋଦେ ରେ
ମୋହନା, ଡିମ୍ଭ ସାରଙ୍ଗ ଲୋଚନା ରେ
ଡକା କରି ଦିନ ଯିବ ମୋର ପାପ ଦଇବ କଲା ରଚନା ରେ । ୧୩ ।
ଢୋକେ ତୋ ମଧୁର ସୁବାସ ଅଧର ମଧୁରସ ନ ପାଇଲି ରେ
ଢାଳେ ଫୁଲ - କଙ୍କପତ୍ର ରଣରଙ୍କ ହୋଇ କାଳ ପୁହାଇଲି ରେ
ମୋହନା, ଢଳା ଚପଳ ନେତ୍ରାନ୍ତ ରେ
ଢାଳି ମୋ ବଦନେ ରଚିବାର ସ୍ମିତ ସ୍ୱପ୍ନ ହେଲା ପ୍ରାଣମିତ ରେ । ୧୪ ।

କୁସୁମାଳଟ—ଫୁଲର ପଙ୍ଖା, ତରସ—ମାଂସ, ଡିମ୍ଭ—ସାନ, କଙ୍କପତ୍ର—ଶର । ରାକାନିଶି—ପୂର୍ଣ୍ଣିମା ରାତ୍ରି, ପରିରମ୍ଭ—ଆଲିଙ୍ଗନ, ତପନୀୟ—ସୁନା, ବିଭାବରୀବରମୁହାଁ—ଚନ୍ଦ୍ରମୁଖୀ, ଦୁରାପ—ଦୁଷ୍ପ୍ରାପ୍ୟ, ତୋଡ଼ର—ଭୂଷଣ, ପ୍ରପଦ—ପାଦ,

ଅଙ୍କରେ ପଙ୍କଜନେତ୍ରା ବସି ମୋର ଶରଦର ରାକାନିଶି ରେ
ଇନ୍ଦୁ ଇନ୍ଦିରାକୁ ପ୍ରଶଂସିଲୁ ଧୀରେ ଅଙ୍ଗୁଳିକି ଦେଇ ଘଷି ରେ
ମୋହନା, ଅଳକ କସ୍ତୁରୀ ମସୀରେ
ଏଥିକି କେ ପାରିବ ମୋ ମା' ବୋଲି ଗଲୁ ହସି ମୋ ତନୁରେ ମିଶି ରେ ।୧୫।
ତନୁରୁ ଅନ୍ତର ହୋଇବାରୁ ମୋର ତିଳେ ତ ସହି ନ ପାରୁ ରେ
ତରୁଣ ତମାଳ ତରୁକୁ ତରୁଣୀମଣି ପରିରମ୍ଭ କରୁ ରେ
ମୋହନା, ତରକି ତୋର ମରଜି ରେ
ତପତ ତପନୀୟକୁ ମୀନାକ୍ଷି ପରି ମୀନାକ୍ଷୀ ଥାଏଁ ମୁଁ ଭଜିରେ ।୧୬।
ଥରି ମନ୍ମଥରେ ଡରି ଥରେ ଥରେ ସରି ଯାଉଥାଏଁ ମୁହିଁ ରେ
ଥାପି କରିଦେଉ କି ଭାବରେ ପୂର୍ଣ୍ଣ ବିଭାବରୀବର ମୁହାଁ ରେ
ମୋହନା, ଥିଲେ ତୋ ଛାମୁରେ ବସି ରେ
ଥାଟପରି ମାଡ଼ି ଆସୁଥିଲେ ଛାଡ଼ିଯାଏ ସ୍ମରତାପ ରାଶି ରେ ।୧୭।
ଦିନେ ଦିନେ ଦିନ ଦିଧୀତି - ଦୁହିତା ତଟ ଅଟବୀରେ ପଶି ରେ
ଦୁହେଁ ମିଶି ଫୁଲ ତୋଳିବା କାଳରେ କି ରସ ଯାଏ ବରଷି ରେ
ମୋହନା, ଦୁରାପ ସେ ଦେବତାଙ୍କୁ ରେ
ଦିବ୍ୟ ଦ୍ରବ୍ୟମାନ ମିଳୁ ତୋ ସମାନ ରସିକା କେ ଦେବ ତାଙ୍କୁ ରେ ।୧୮।
ଧରାଅ ପୁନ୍ନାଗ ଝରାକୁ ମୋ ଶିରେ ବୋଲି ତାହାକୁ ମୁଁ ଭାବି ରେ
ଧନ ମୋ କୋଡ଼ରେ ଥାଇ ମୋ ଗୋଡ଼ରେ ତୋଡ଼ର କରୁ ମାଧବୀ ରେ
ମୋହନା, ଧାର୍ମିକ ପଣକୁ ଜାଣିରେ
ଧରି ପ୍ରପଦରୁ ମଥାଯାଏଁ ଲକ୍ଷେ ଚୁମ୍ବଇଁ ମୁଁ ଗଣିଗଣି ରେ ।୧୯।
ନକ୍ଷତ୍ରମଣ୍ଡଳ ଚୁମ୍ବ ଚାରୁ ଚେଳ ବଲ୍ଲରୀ ବଡ଼ଭୀତଳେ ରେ
ନିସ୍ତନ୍ଦ୍ର ଚନ୍ଦ୍ର ସୁନ୍ଦରମୁଖୀ ସଖୀବୃତ ଗାଦି ମଧ୍ୟସ୍ଥଳେ ରେ
ମୋହନା, ନିଶାମୁଖେ ବିଜେକରି ରେ
ନିର୍ଜ୍ଜରାଧିନାଥ ନିତମ୍ବିନୀ ପରି ବିପଞ୍ଚୀକି ଅଙ୍କେ ଧରି ରେ ।୨୦।
ପ୍ରଶଂସାରେ ମୋର ପୂରି ରହିବାର ଚଷକ ରସ କବିତାରେ
ପଞ୍ଚମେ ପକାଇଥିଲୁ ମାଳବରେ ମାଳବର ବିଭୂଷିତା ରେ

---

ବଲ୍ଲରୀ—ଲତା, ବଡ଼ଭୀ—ଚନ୍ଦ୍ରଶାଳା ପୁର, ନିସ୍ତନ୍ଦ୍ର—ତନ୍ଦ୍ରାହୀନ, ନିର୍ଜ୍ଜରାଧିନାଥ—ଇନ୍ଦ୍ର, ବିପଞ୍ଚୀ—ବୀଣା, ଚଷକ—ପାନପାତ୍ର, ମାଳବ—ରାଗବିଶେଷ, ମାଳବର—ଶ୍ରେଷ୍ଠ ମାଳ, ପୃଥୁ ଅପସର—ମୋଟା ତକିଆ । ଚଙ୍ଗ ଖଞ୍ଜରୀ—ସୁନ୍ଦର ଖଞ୍ଜଣୀ, ଭରତବନ୍ଧୁ—କନ୍ଦର୍ପ,

ମୋହନା, ପହିଲୁଁ ତ ଦିନଶେଷେ ରେ
ପୃଥୁ ଅପସର ପଛେ ଥିଲି ତୋର ପ୍ରିୟ ସହଚରୀ ବେଶେ ରେ । ୨୧ ।
ଫୁଲାଇ ପୁଲକ ମୁକୁଳେ ପ୍ରତୀକ ଗୋଟିଯାକ ମୋଦ ବଳେ ରେ
ଫଣୀ ପଶୁ ଶିଶୁ ଶ୍ରବଣ ପ୍ରବଣ ସଙ୍ଗୀତେ ରସିବା ବେଳେ ରେ
ମୋହନା, ଫାଟିଲା ମୋ ଧୃତି ଘଟି ରେ
ଫୁଲ କୁଞ୍ଜମୁଖେ ଚୁମ୍ବିଲି ପଛରୁ ଭିଡ଼ିଧରି ଶତଗୋଟି ରେ । ୨୨ ।
ବେହେଲା ସୀତାର ତମ୍ବୁରା ଅମୃତ ପିନାକୀ ଚନ୍ଦ୍ର ମର୍ଦ୍ଦନୀ ରେ
ବଂଶୀମୁଖ ଚଙ୍ଗ ଖଞ୍ଜରୀ ସାରଙ୍ଗ କିଙ୍କିଣି ମର୍ଦ୍ଦଳ ଗିନି ରେ
ମୋହନା, ବଜାଉଥିଲେ ଯେ ସଖୀ ରେ
ବ୍ରୀଡ଼ାଭରନତ ବଦନରେ ସ୍ମିତ ଧରି ପଳାଇଲେ ଦେଖି ରେ । ୨୩ ।
ଭରତ ବନ୍ଧୁର କଳା ଚାଳନାଦି କଉତୁକ ମହୋତ୍ସବେ ରେ
ଭରତି କଲାଇଁ ସେ ରାତି ଶିବଙ୍କ ଅରାତି ପ୍ରବୀରାହବେ ରେ
ମୋହନା, ଭାଗ୍ୟହୀନ ଦଶା ଏବେ ରେ
ଭଗାରି ହସାଇ ଦେଉଛି ଭସାଇ ତୋ ବିଚ୍ଛେଦ ମହାର୍ଣ୍ଣବେ ରେ । ୨୪ ।
ମାନସେ ମୋହର ନ ଥିଲା ମଦନ କେଳି ବିଦ୍ୟା କଳ୍ପବଲ୍ଲୀ ରେ
ମଧୁରାଧରାମୃତ ପାନ ଏପରି ଅଧୀରା ହୋଇବ ବୋଲି ରେ
ମୋହନା, ମନ୍ଦମତି ଚାରିମୁଖ ରେ
ମାରି ନ ପକାଇ ମରବି ପକାଇ ଦେଲା ମୋର ମୂଳ ସୁଖରେ । ୨୫ ।
ଯତ୍ନ ଶତଶତ କଲେ ହେଲେ ଶିତସ୍ମିତା ଯା ନଦେଉ ଧରା ରେ
ଯନ୍ତ୍ର ଧୁରନ୍ଧର ସ୍ମରଶୈଳୁଁ ଶର ମାୟାବିଦ୍ୟା ତୁହି ପରା ରେ
ମୋହନା, ଯଶହୀନ ମୋ କରମ ରେ
ଯାତ ଯାମ କରି ଦେଉଛି ମକରୀ - ମଣ୍ଡନା ତୋ ସଙ୍ଗୋଦ୍ୟମ ରେ । ୨୬ ।
ରତି ରସାଞ୍ଚଳ ସମୟେ ଚଞ୍ଚଳଭାବ ନୟନେ ନ ଥାଇ ରେ
ରଣକୃତ - ଶର - ବ୍ରଣତନୁ ଶୂର ପରି ଅଳପ ବ୍ୟଥାଇ ରେ
ମୋହନା, ରୁଷିଲାପରି ଶ୍ରୀମୁଖ ରେ
ରଖି ତାରକା ମଛର ନେତ୍ରାନ୍ତରେ ସସ୍ମିତେ ଦେଉ କି ସୁଖ ରେ । ୨୭ ।

---

ଚାରିମୁଖ—ବିଧାତା, ମରବି—ବନ୍ଧ, ଯାତ ଯାମ—ସଂଯମହୀନ, ବ୍ରଣତନୁ ଶୂର—ବିକ୍ଷତ ବୀର, ଲମ୍ବୋଦର—ଗଣେଶ, ଲୋକାଲୋକ—ପର୍ବତ, ବିଶ୍ୱକେତୁ—କନ୍ଦର୍ପ, ଉସଙ୍ଗରେ—କୋଳରେ । ଶତମୁଖ—ଇନ୍ଦ୍ର, ଶାତଘାତିନୀ—ହର୍ଷନାଶକାରୀ, ଶଶବିଷାଣ—ଠେକୁଆର ଶିଂଘ ପରି ଅଳୀକ,

ଲକ୍ଷ ଲଡୁ ଲମ୍ବୋଦରଙ୍କ ଅଧରେ ଲାଗି କରାଇବା ଫଳରେ
ଲୋକା - ଲୋକ ଶୀରି ସିନା ଚୋରିକରି ମଣ୍ଡିଛି ତୋ ବକ୍ଷସ୍ଥଳ ରେ
ମୋହନା, ଲୋକ ବୋଲେ ପୟୋଧର ରେ
ଲାଗେ ଅତି ଭାରି ଘେନି ମେରୁପରି ହେବାରୁ ସମୁକ୍ତା - ହାର ରେ । ୨୮ ।
ବଉଳବଲ୍ଲୀ ବାସରେ ଦିନେ ହୋଇ ବିଶ୍ୱକେତୁ ରସାତୁରା ରେ
ବସିଥିଲୁ ମୋର ଉସଙ୍ଗରେ ରସି ବଶୀକରଣ ଚତୁରା ରେ
ମୋହନା, ବିମ୍ବାଧରୁ ଦେଇ ମଧୁ ରେ
ବିଦେଶ ପରି ଏ ସୁଆଦ ହେବ କି ବୋଲି ଯେ ସୁନବବଧୂ ରେ । ୨୯ ।
ଶଚୀ ଶତମୁଖ ଦୁହେଁ ଯେଉଁ ସୁଖ ନ ଲଭନ୍ତି ଅଭିଳାଷ ରେ
ଶଶୀ ସକଳ ଶିରଭୂଷା ପ୍ରସାଦୁଁ ହୋଇଥିଲା ଆମ୍ଭ ବଶ ରେ
ମୋହନା, ଶାତଘାତିନୀ ଏ ଦଶାରେ
ଶମ୍ଭୁ ପ୍ରସାଦକୁ କରିନେଲା ଶଶ ବିଷାଣ ସଦୃଶ ମୃଷା ରେ । ୩୦ ।
ଷଟପଦ ଯୁବାପରି ଆଚରିବା ଚରିତ ମୋର କୁହନା ରେ
ଷୋଡ଼ଶରୁ ଊଣା ବୟସୀ ରେ ! କିଣା ତୋହରି ଏ ପ୍ରାଣ ସିନା ରେ
ମୋହନା, ଷଡ଼ଙ୍ଘ୍ରିଂ ନୀଳ କୁନ୍ତଳା ରେ
ଷଡ଼ାସ୍ୟ ଜନକ ବିପକ୍ଷ ତଟିନୀ ତରିବାକୁ ତୁ ମୋ ଭେଳାରେ । ୩୧ ।
ସରସିଜ ସୂନୁ ସରଜିବ ନାହିଁ ସରସ ହେବା ସଂସାର ରେ
ସର୍ଜିଲେ ସର୍ବଥା ସଞ୍ଚିତ କରିବ ନାହିଁ ତହିଁ ସ୍ନେହ ସାର ରେ
ମୋହନା, ସ୍ନେହକୁ ଯେବେ ସର୍ଜିବ ରେ
ସ୍ନେହୀ ବିରହରେ ସେହିକ୍ଷଣେ ସରିଯିବାକୁ ଉପାୟ ଥିବ ରେ । ୩୨ ।
ହିଣ୍ଡିର ହାର ହୀରକ ହିମଚୟ କୁମୁଦ କର୍ପୂର ହାସୀ ରେ
ହଇରାଣ ବଡ଼ ହେଲି ତୋତେ ଦୂରେ ହରାଇ ହୋଇ ପ୍ରବାସୀ ରେ
ମୋହନା, ହେବ ହରକୃପା ଲବେ ରେ
ହେମସାର ଗୋରା ମୃଦୁ ତନୁଟି କି ଏ ମସାର ଯୁତ ହେବ ରେ । ୩୩ ।
କ୍ଷମଦା ରତିବାନ୍ଧବୀ ସୁଖୀ କର ବିରହୁଁ ବ୍ରଜେନ୍ଦ୍ରସୁତ ରେ
କ୍ଷଣାର୍ଦ୍ଧକୁ ଯୁଗଠାରୁ ଅତି ଦୀର୍ଘ ଘେନି ହୋଇ ସନ୍ତପତ ରେ
ମୋହନା, କ୍ଷମ ନୋହି ବିରହଣ ରେ
କ୍ଷୀଣାନନ୍ଦ ହେଲେ ଜଗଦ୍ଦେବ ହରିଚନ୍ଦନ ଭୂପତି ଭଣେ ରେ । ୩୪ ।

●

ମୃଷା—ମିଥ୍ୟା, ଷଟପଦ—ଭ୍ରମର, ଷଡ଼ଙ୍ଘ୍ରି—ଭ୍ରମର, ଷଡ଼ାସ୍ୟଜନକବିପକ୍ଷ—କନ୍ଦର୍ପ, ସରସିଜ ସୂନୁ—ବ୍ରହ୍ମା, ହିଣ୍ଡିର—ଫେଣ, ହେମସାର—ଭଲ ସୁନା, ମସାର—ଇନ୍ଦ୍ର ନୀଳମଣି, କ୍ଷମଦା—କ୍ଷମାଦାୟିନୀ, ବିହରଣ—ହରଣକାରୀ ।

## (୧୫)

# ସଖୀ ଚଉତିଶା : ଶ୍ରୀରାଧାଙ୍କ ଉକ୍ତି

## ରାଗ—ପୂରବୀ-ଏକତାଳି

କଞ୍ଜନୟନ ସେ କେ ଗୋ କହ—ଅଞ୍ଜନପୁଞ୍ଜ ମଞ୍ଜୁଳ ଦେହ,
ଖଞ୍ଜନନେତ୍ର ସେ ସତୀ ମଦଗଜ - ଗଞ୍ଜନ ଗୁଞ୍ଜ କନ୍ଦର ସିଂହ । ୧ ।
ଖଣ୍ଡ ଦୂରୁ ଦୃଷ୍ଟି ପଡ଼ିଗଲା—ଖ'ମଣ୍ଡଳେ ଧୃତି ଉଡ଼ିଗଲା,
ଖସି ମତି ଲତିକାରୁ ସାରାସାର ବିବେଚନା ଫଳ ଝଡ଼ିଗଲା । ୨ ।
ଗଭୀର ତା'ର ଲାବଣ୍ୟବନ—ଗୋଟିଯାକ ବୁଡ଼ିଗଲା ବନ,
ଗଲା ତହିଁ ରହି ଆସିପାରୁ ନାହିଁ ଏ ଘେନି ହୋଇଲି ତା ଅଧୀନ । ୩ ।
ଘାଣ୍ଟି ହେଉଅଛି ହୃଦାନ୍ତର—ଘରେ ମନ ରହୁ ନାହିଁ ମୋର,
ଘରମ ଉଦକ ଶ୍ରବି ହେଉଅଛି ଭରମୁ ମୋ ଦେହ ଥର ଥର । ୪ ।
ନିର୍ମ୍ମଳ କସ୍ତୁରୀ ବିନ୍ଦୁ ଥିଲା—ନତନୁର ଶିର ବନ୍ଦୁଥିଲା,
ନୂଆ ନୀଳୋତ୍ପଳ ହେଲେ ନବଲକ୍ଷ ନକ୍ଷତ୍ରନାଥକୁ ନିନ୍ଦୁଥିଲା । ୫ ।
ଚଞ୍ଚଳ ଚନ୍ଦ୍ରକ ଚାରୁଚୂଳ—ଚିଲିବଲ୍ଲୀ ନାଟ କି ମଞ୍ଜୁଳ,
ଚରଣତଳେ ତାହାର ଚୁମ୍ବିଥିଲେ ଚକ୍ରବର୍ତ୍ତୀ ହୋଇ କେଉଁ ଫଳ । ୬ ।
ଛାଡ଼ି ମନୁ ଭୟ କୁତୂହଳେ, ଛପନ୍ତି କଦମ୍ବ କୁଞ୍ଜ ତଳେ,
ଛାଇ ହେଲେ ତାର ଛାତିକି ଛୁଆଁଇ ଛତି ଟେକାନ୍ତି ଅବଳାକୁଳେ । ୭ ।
ଯେବେ ତା କୃପା ନୋହିବ କିଛି—ଜାଣିଥାଅ ଜଣା କରୁଅଛି,
ଜରା ନୋହିବାର ଜାଙ୍ଗଳଜହର ଗିଳିବି, ଜୀବ କି ହେଉ ଛି ଛି । ୮ ।
ଝଲକ ମାନସେ ଖେଳିଲାଣି—ଝିମିଟକୁ ଯୁଗୁଁ ବଳିଲାଣି,
ଝିଙ୍କିବାରୁ ଝସଧ୍ୱଜ ପୀଡ଼ାଝାଞ୍ଜି, ଚେତା ଲତିକାଟି ଲୁଚିଲାଣି । ୯ ।
ନ ଲୋଡ଼ି ସୁଖୋପଚୟନକୁ—ନିଶ୍ଚିତ ହେଲେ ହେଁ ଶୟନକୁ,
ନିଦ ନ ଛୁଅଁଇ ନୟନ ଯୁଗକୁ ନିରେଖି ନିକୁଞ୍ଜ ଅୟନକୁ । ୧୦ ।
ଟିକିଏ କରୁଣା ବହି ଚିତ୍ତେ—ଟାକି କାଳ କହ ତା ପୁରତେ,
ଟମକ ବଜାଇ ତ୍ରିଜଗତେ ତାର ଟୋକି କରି ପଛେ ରଖୁ ମୋତେ । ୧୧ ।

---

(୧୫) ଅଞ୍ଜନପୁଞ୍ଜ—ଘନ କଳା, ଗୁଞ୍ଜ କନ୍ଦର—ଘଞ୍ଚ ପର୍ବତଗୁହା, ଖ-ମଣ୍ଡଳ—ଆକାଶ, ଘରମଉଦକ—ଝାଳ, ନତନୁ—କନ୍ଦର୍ପ, ଚନ୍ଦ୍ରକ—ମୟୂରପୁଚ୍ଛ, ଚିଲିବଲ୍ଲୀ—ଲତା ଆକୃତିର ଅଳଙ୍କାର, ଜରା—ଶୋଧିତ, ଜାଙ୍ଗଳ ଜହର—ବନ୍ୟ ବିଷ, ଝିମିଟ—କ୍ଷଣକାଳ,

ଠିକ୍ କେଡ଼େ ତା ରଦନ ବାସ—ଠଣ ସୁନ୍ଦର ମୋହନ ହାସ,
ଠାକୁର କହନ୍ତେ ବିଡ଼ିଆ ଖଟନ୍ତି ଠଉରାଇ ତାର ଅବକାଶ । ୧୨ ।
ଡାକି ଦେଇଥିଲେ ନୟନାନ୍ତେ—ଡରନ୍ତି ନାହିଁ କାହାକୁ ଚିତ୍ତେ,
ଡେଇଁ ପଡନ୍ତି ତା ସଙ୍ଗ ତଟିନୀକି, ଡାକିହାକି କହୁଅଛି ତୋତେ । ୧୩ ।
ଢାଳେ ନୋହି ବୁକୁ ଦୁକୁଦୁକୁ—ଢଳିଯିବି ସତେ ମୁଁ କେବକୁ,
ଢୋଳାଇ ଢୋଳାଇ ତା ଅଧର ସୁଧା, ଢୋକେ ଢୋକେ କରି ଢୋକୁଢୋକୁ ।୧୪।
ଓଟାରି ନେବାକୁ ମନ ମୋର—ଏହିଠାରେ କଲା ବେଦବର,
ଅତସି ତମାଳ ଅଞ୍ଜନ ଉତ୍ପଳ, ଅଭିନବୋଦୟ ଅମ୍ବୁଧର । ୧୫ ।
ତା କଟି ତଟରେ କି ଅମ୍ବର, ତ୍ରିଲୋକେ ନାହିଁ ତା ଆଡ଼ମ୍ବର,
ତପନୀୟକୁ ତା ତୁଲେ ମୁଁ ତୁଳିଲେ, ତାଳିମାରି ଉଡ଼ାଇବେ ନର । ୧୬ ।
ଥାପିରେ ତା ସ୍ନେହ ଜଣାଯାଉ, ଥୋକାଏ ବିବେକ ଥାଉଥାଉ,
ଥରେ ମୋ ଅଧର ପିଆଇବି, ରୋଷେ ଥୁ ଥୁ କରି ପଛେ ଫିଙ୍ଗିଦେଉ । ୧୭ ।
ଦଇବ ଦୟା ବିହିଲେ ମୋରେ, ଦୁଃଖକୁ ଦବାଇ ଦେଇ ଦୂରେ,
ଦୁର୍ବାଦଳ ଶ୍ୟାମ ସଙ୍ଗତ ଲଭିବି, ଦୁର୍ବାଦ ଲକ୍ଷେ ଦିଅନ୍ତୁ ନରେ । ୧୮ ।
ଧୂର୍ତ୍ତପଣ ପଛେ ହେଉ ଖ୍ୟାତି, ଧ୍ରୁବ ଯାଏ ଯାଉ ଅକୀରତି,
ଧକ୍କାମାରି ଘଉଡ଼ାଇ ଦେବାଯାଏଁ, ଧନ କରିବି ମୁଁ ତାହା ପ୍ରୀତି । ୧୯ ।
ନାହାନ୍ତି କେତେ କିଶୋରବର, ନୀପ ତରୁତଳ ଅଳଙ୍କାର,
ନଳିନ ଚରଣ ନଖକାନ୍ତି କଣ, ନେତ୍ରେ ନ ଦେଖଇ ମୁଁ କାହାର । ୨୦ ।
ପ୍ରାଣୁ ଅଧିକ ମୁଁ ତୋର ବୋଲି, ପ୍ରୀତି ଭଙ୍ଗ ଭୟୁଁ ପଚାରିଲି,
ପଚାରି ପିଇବା ପୀୟୁଷ ନୁହେଁ ସେ ପକାଇ ଦେଉ ପଶିବି ପେଲି । ୨୧ ।
ଫୁଟିଲା ଫୁଲରୁ ଗିରିବନେ, ଫୁଟି ତାହା ସଙ୍ଗ ନିଧୁବନେ
ଫନ୍ଦାକରି ତାର ପ୍ରୀତିରତନକୁ ଫୁଲିବି କି ମୋଦେ ମନେମନେ । ୨୨ ।
ବିଷାଇବା ବଜ୍ର ମନୁ ଜିଣି, ବିଷମ କେଡ଼େ ତା ଅନାଉଁଣି,
ବାଜିଲେ ଭାଜିବ ଶୀରି ତ ରାଜୀବ, - ନୟନାର ଜୀବ କେତେ ପୁଣି । ୨୩ ।
ଭୁଲାଇବାର ତ ଗୁଣ ଏଡ଼େ, ଭଲା ବୁଝିବ ସୁରସ କେଡ଼େ,
ଭିତରେ କୁଞ୍ଜର ଆଗୁ ଜଗି ଭାବେଁ, ଭିଡ଼ିଦେବି ଲୁଚି ପଛଆଡ଼େ । ୨୪ ।

ଝସଧ୍ୱଜ—କନ୍ଦର୍ପ, ଲୁଚି—ମଉଳି, ଠଣ—ଦେହ ଗଢଣ, ବେଦବର—ବ୍ରହ୍ମା, ଅମ୍ବୁଧର—ମେଘ । ଅମ୍ବର—ବସ୍ତ୍ର, ତପନୀୟ—ସୁନା, ଦୁର୍ବାଦ—ନିନ୍ଦା, ନଳିନଚରଣ—ପଦ୍ମପାଦ, ନିଧୁବନେ—ରତିକ୍ରୀଡ଼ାରେ, ଆଖଣ୍ଡଳ—ଇନ୍ଦ୍ର, ଜଳଜ—ପଦ୍ମ, ରଥାଙ୍ଗପାଣି—ଶ୍ରୀକୃଷ୍ଣ,

ମନୋଜ ମକର କୁଣ୍ଡଳକୁ, ମୁଖଜିତ ବିଧୁମଣ୍ଡଳକୁ,
ମଜ୍ଜାଇବ ରସ ଯେ ବାମା ବରଷେ, ମାନିବ କି ସେ ଆଖଣ୍ଡଳକୁ । ୨୫ ।
ଯଶ ନେବ କି ମୋ କର୍ମ୍ମ ଦିନେ, ଜାତ ହୋଇ ଯମୁନାର ବନେ,
ଯଦୁମଣି ଜଳେ ପଶିଲେ ଜାକିବି, ଜଳଜ ଚରଣ ମୋ ଜଘନେ । ୨୬ ।
ରମାରମଣ ରଥାଙ୍ଗପାଣି, ରଙ୍ଗକୁ ରତନ ଦେବେ ପୁଣି,
ରଖି ଉରଜେ ରାଇକା ପିନ୍ଧୁଥିବି, ରମୁଥିବି ରତିକାଳ ଜାଣି । ୨୭ ।
ଲୋକରୁ ଲବେ ନ ଥାଇ ଡର, ଲପନ ଚୁମ୍ବିବା ଦିନ ତାର,
ଲକ୍ଷ ଲଡୁ ଲମ୍ବୋଦରଙ୍କ ଅଧରେ, ଲାଗିହେବା ସଂକଳପ ମୋର । ୨୮ ।
ବେଗେ ଘଟାଅ ମୋ ବାଞ୍ଛାଫଳ, ବିଚାରିବାକୁ ଯେ ନାହିଁ କାଳ,
ବିଳମ୍ବ ବିହିଲେ ବଞ୍ଚି ପାରିବି କି, ବାଧିଲାଣି ବଡ଼ ନାହିଁ ବଳ । ୨୯ ।
ଶରୀର ରହୁ ତୋ ସ୍ନେହ ବଶୁଁ, ଶଶୀଖଣ୍ଡଧର - ପର ତ୍ରାଶୁ ।
ଶରଣ ହେଉ ସେ ମଦନମୋହନ, ସେ ଶିଖଣ୍ଡଚୂଳଧର ଶିଶୁ । ୩୦ ।
ଷଡ଼ାଶ୍ୟଜନକ - ରିପୁ ରସେ, ଷଟ୍‌ପଦ ଧ୍ୱନି ମଧୁର ଦେଶେ,
ଷୋଡ଼ଶକୁ ଚାରି ଗୁଣରେ ବିଚାରି, ମାତିବି ତା ତୁଲେ କେବେ ତୋଷେ । ୩୧।
ସତ୍ୱର ହୋଇ ତୁ ଯାଅ ଯା'ରେ, ସନ୍ଦେଶ ମୋର ବଖାଅ ଜାରେ,
ସହି ନ ପାରଇ ଆଉ ପଡ଼ିବିଟି, ଏ ବଢାରେ ଯାଇ ରବିଜାରେ । ୩୨ ।
ହରଷେ ମୋ ମନକୁ ମଜ୍ଜାଇ, ହଜାରେ କହ ତୁ ସମଝାଇ,
ହଟି ମୋ ହୃଦୟ ବୁଡ଼ି ବହିଲାଣି ହରିହୟମଣି ଶ୍ୟାମେ ଯାଇ । ୩୩ ।
କ୍ଷଣେ ହେଲେ ତାକୁ ଭୋଗ କରି, କ୍ଷିତିକି ମଣି ତ୍ରିଦିବ ସରି,
କ୍ଷମାନାଥ ହରିଚନ୍ଦନ କହଇ, କ୍ଷୟ ହେଲେ ହେଉ ଅବ୍‌ଜପରି । ୩୪ ।



ରାଇକା—ରକ୍ଷାବନ୍ଧନ ସୂତ୍ର, ଲମ୍ବୋଦର—ଗଣେଶ, ଶଶୀଖଣ୍ଡଧର - ପର ତ୍ରାଶୁ—କନ୍ଦର୍ପ ଭୟରୁ, ଷଡ଼ାସ୍ୟଜନକ ରିପୁ—ମହାଦେବଙ୍କ ଶତ୍ରୁ କନ୍ଦର୍ପ, ଷଟ୍‌ପଦ ଧ୍ୱନି—ଭ୍ରମର ଶବ୍ଦ, ଷୋଡ଼ଶକୁ ଚାରି ଗୁଣରେ ବିଚାରି—୬୪ ରତି ବନ୍ଧରେ, ଜାରେ—ଉପପତି, ଶ୍ରୀକୃଷ୍ଣ ଅର୍ଥରେ, ରବିଜାରେ—ଯମୁନା ନଦୀରେ, ହରିହୟ ମଣି—ଇନ୍ଦ୍ର ନୀଳମଣି, ତ୍ରିଦିବ—ସ୍ୱର୍ଗ, ଅବ୍ଜ—ପଦ୍ମ ।

# (୧୬)

# ରସିକ ଚଉତିଶା

## ରାଗ—ଶଙ୍କରାଭରଣ

କୋଉ ରସିକ ସେ ରୋଷେ କରି ଧାତା ନିନ୍ଦା ।
କରେ ବରତନୁ ଅନୁଚିନ୍ତା ଏକା ଫନ୍ଦା ।
କୃପାନିଧି ରେ, କି ଦଶା ପାଇଲି ।
କି ସମ୍ବାଦି କି ସମୟେ କାହିଁ ହଜାଇଲି ।୧।
ଖୁରିପରି ବିଭାବରୀ ସାରି ନାନା ରତେ ।
ଖେଳାନ୍ତି ମୁଁ ଉରେ ଯୋଉ ପଦାର୍ଥ ନିରତେ ।
ଖଞ୍ଜନାକ୍ଷି ରେ, ଖରାବ ତା କଲି,
ଖବର ନପୂଆ ଭଳି ବିପତ୍ତି ଲୋଡ଼ିଲି ।୨।
ଗମାର ସାରସାସନ ହରି ମଣିହାର ।
ଗଳାଗୋଟି କାଟି କିମ୍ପା ନ ଦେଲା ମୋହର ।
ଗୁଣମଣି ରେ, ଗହନୁ କି ହେବ ।
ଗଲା ଯେବେ ଛାଡ଼ି ତାକୁ ବସନ୍ତ ଉତ୍ସବ ।୩।
ଘଟିବ ନାହିଁ ଚପଳା ଲତିକା ସଙ୍ଗମ ।
ଘୋଟି ବନବାହ କି ଦିଶିବ ମନୋରମ ।
ଘନକେଶୀ ରେ, ଘେନି ତତେ ଅଙ୍କେ ।
ଘଡ଼ିଏ ଖେଳିବା ଭଳି ନୋହିଲି ପଲ୍ୟଙ୍କେ ।୪।
ନୋହିଲେ ପହିଲୁ ନୋହିଥିବା କଥା ଭଲ ।
ନୂତନ ରତନ ହଜା ଅତି କଲବଲ ।
ନତଅଙ୍ଗୀ ରେ, ନାନା ସୁଖ ମାନ ।
ନୂଆଁ କଞ୍ଜ ଚରଣକୁ କଲେ ଅନୁଯାନ ।୫।
ଚରମେ ନ ଥାଇ ଯାର ଚଉକେ ଚୀବର ।
ଚଣ୍ଡାଳ ଦଇବ କରି ତାକୁ ଶଚୀ ବର ।

---

(୧୬) ବରତନୁ—ବରାଙ୍ଗୀ, ଖୁରି—ଅଳ୍ପକାଳ, ନପୂଆ—ନ ମିଳିବା, ଗମାର—ଓଲୁ, ସାରସାସନ—ବିଧାତା, ଗହନ—ବନ, ବନବାହ—ମେଘ, ନୂଆ—କଅଁଳ, ଅନୁଯାନ—ଅନୁସରଣ, ଚରମ—ପଛଭାଗ, ଚୀବର—କୌପୀନ, ଛଇଳା—ସୁନ୍ଦରୀ,

ଚନ୍ଦ୍ରମୁଖୀ ରେ, ଚଖାଇ ପୀୟୂଷ ।
ଚାଳିଲା ବେଳେ ରସନା ଫିଙ୍ଗିଲା ପାଉଁଶ ।୬।
ଛଇଲା ମଣ୍ଡକମଣି ଆହାରେ ମୋ ସହୀ ।
ଛାଡ଼ିଦେଇ ପାଶୋରିବା ସମ୍ଭଵିକି ତୁହି ।
ଛବିସିନ୍ଧୁ ରେ, ଛନ୍ଦେ ଚାରି ମୁଖ ।
ଛପାଇ ଦେଲା ମୋ ସବୁ ଭାଗ୍ୟ ସବୁ ସୁଖ ।୭।
ଜଗତେ ମୂରୁଖ ନାହିଁ ମୋ ତୁଲ୍ୟ ଯୁବାରେ ।
ଜାଣି ଜାଣି ଜହର ଆହାର କରିବାରେ ।
ଜବାଧରା ରେ, ଜୀବନ ଉପାୟ ।
ଯେ ଜାଣଇ ନାହିଁ ସେହି ଏକ ପଶୁ ପ୍ରାୟ ।୮।
ଝାଡ଼ରୁ ବଳୁଚି ଅଟ୍ଟାଳିକା ମଧ ମତେ ।
ଝମଣ୍ଡକ ଯୁଗପରି ହୋଉଚି ପରତେ ।
ଝଲିଗୋରି ରେ, ଝସଧ୍ୱଜ ହଟି ।
ଝାଡ଼ି ଦେଉଚି ମୋ ମଜ୍ଜା ବଳ ପରିପାଟୀ ।୯।
ନବ ମୃଦୁ ଭାରତୀ ସୁଧାରୁ ଏକ ବିନ୍ଦୁ ।
ନିଉଡ଼ି ନାହୁଁ ମୋ ଶ୍ରୁତି ନାଳେ ପ୍ରାଣ ବନ୍ଧୁ ।
ନିତମ୍ବିନୀ ରେ, ନିଧୁବନ ରସ ।
ନିର୍ଜ୍ଜରମାନଙ୍କ ମାର୍ଗ କୁସୁମ ସଦୃଶ ।୧୦।
ଟେକି ଧରି ମୁଖଚନ୍ଦ୍ର ଶୋଭା ଚାହିଁ ଚାହିଁ ।
ଟୋପିଏ ଅମୃତ ରଦବାସୁଁ ପିଇ ନାହିଁ ।
ଟେକସ୍ତନା ରେ, ଟୋପେ ମତେ ଭରି ।
ଟାଣି ଘେନିଗଲା କେ ମୋ କରୁ ଇନ୍ଦ୍ରଶିରୀ ।୧୧।
ଠଣା ଠୁକି ଉଡ଼ାଇ ମନ୍ମଥ ମଥା ଶିଖା ।
ଠାରି ନାହିଁ ତୋ ପାଦେ ଅଳତା ଚିତ୍ରରେଖା ।
ଠିକହାସି ରେ, ଠୁଳ କରି ଚିତ୍ତେ ।
ଠଉରାଇ ନାହିଁ ତୋ ବିଭ୍ରମ କ୍ରମ ଯେତେ ।୧୨।

---

ଛନ୍ଦ—କପଟ, ଚାରିମୁଖ—ବିଧାତା, ଝମଣ୍ଡ—କ୍ଷଣକାଳ, ଝସଧ୍ୱଜ ହଟି—ମଦନ ହଟ କରି, ନିର୍ଜ୍ଜର—ଦେବତା, ନିର୍ଜ୍ଜର ... ସଦୃଶ—ଆକାଶକୁସୁମ ଭଳି, ରଦ ବାସ—ଓଠ, ଟୋପ—ବନ୍ଦୀ ଗୃହ, ଠୁକି—ଆଘାତ କରି, ଡାକି—ଡମରୁ, ତର୍କି—ତରକି, ପୂର୍ବରୁ ସାବଧାନ ହୋଇ,

ଢ଼େରି ନାହିଁ ଛାତି ଅଭିମାନେ ତତେ ପାଇ ।
ଢ଼ାକି ନାହିଁ ଢୋ ଉଚିତ ପ୍ରେମ ପଲ୍ଲବାଇ ।
ଢାକିକଟି ରେ, ଢ଼ରି ଢରି ଚାଲି,
ଢୋଳାହୀନ ଚକ୍ଷୁ ଦଶା ଅନୁଭବ କଲି ।୧୩।
ଢାଳେ ଉଣା ନୋହି ରହିଥିଲା ରସ କୁମ୍ଭ ।
ଢୋକେ ଢୋକି ନାହିଁ ହେଲା ଏ ଦଣ୍ଡ ଆରମ୍ଭ ।
ଢଳାଗତି ରେ, ଢଳି ନାହିଁ ଲେଶେ
ଢାଙ୍କି ମୋ ନେତ୍ର କେ ଲୁଚାଇଲା ଦୂର ଦେଶେ ।୧୪।
ଅତି ସୁକୁମାର ଅଙ୍ଗେ କର ବସିବାକୁ ।
ଅମ୍ଲାନ ପଙ୍କଜ ପରି ବାସି ଆସିବାକୁ ।
ଅମଳାଙ୍ଗି ରେ, ଅନିଳ ପ୍ରଭାବୁ,
ଅମ୍ବୁଜିନୀଦଳ ଜଳପରି ହେଲା ସବୁ ।୧୫।
ତନୁକୁ ପୁଲକ ଶିରୀ ପୂରି ଚୁମ୍ବି ନାହିଂ ।
ତରୁଣୀରତନ ମତେ ଛାଡ଼ି ଗଲୁ କାହିଂ ।
ତାପହାରି ରେ, ତର୍କି ନ ପାରିଲି,
ତପ - ଲବ୍ଧ ଧନ ସିନା ବୋଲି ବିଚାରିଲି ।୧୬।
ଥାଉ ଦୂରେ ତୋ ସଙ୍ଗ ସୁରତ ଭାଗ୍ୟୋଦୟ ।
ଥରେ କର ଯୋଡ଼ି ହୋଇ ନାହିଂ ସବିନୟ ।
ଥିରଗତି ରେ, ଥୁଆ ଧନ ଗଡ଼ି,
ଥକିଲା ଅବଟେ କରପୁଆ ସୀମା ଛାଡ଼ି । ।୧୭।
ଦେଖି ନାହିଁ ଶ୍ରୀଅଙ୍ଗ ଲାବଣ୍ୟ ଭଲ କରି ।
ଦିଶୁଥିଲା ଥରେ ଥରେ କି କି ଝଲକରି
ଦୁଃଖୀଧନ ରେ, ଦେଇ ଦିବ୍ୟ ଗ୍ରାସ,
ଦରପୂରା କରିବାକୁ କଲି ମୁଁ କି ଦୋଷ । ।୧୮।
ଧରାମଣ୍ଡନା ରେ, ଧିକ୍ ଧିକ୍ ମୋ ଲଲାଟ,
ଧଇଲି ବିଶୁଦ୍ଧ ହେମ ହେଲା ଆରକୂଟ ।
ଧୀରାବର ରେ, ଧଇର୍ଯ୍ୟକୁ କେହି,
ଧରି ରହିବିଟି ଏଡ଼େ ବଡ଼ ଦାଉ ସହି ।୧୯।

ଅବଟ—କୂପ, ଗାତ, କି କି—କିପରି ବା, ଆରକୂଟ—ପିତଳ, କେହି—କିମିତି, ପରିଣତ ଫଳ—ପାଚିଲା ଫଳ, ସଦ୍ୟ ଖାଦ୍ୟ ଫଳ; ପତୁଖା—ବିକ୍ରେତାର ପ୍ରଥମ ବିକ୍ରୟ, ଆଦ୍ୟ ବିକ୍ରୟରୁ

ନମସ୍କାର କରୁଥାଇ ଭୂଦେବମାନଙ୍କୁ ।
ନୂତନା ତୁ ଅନ୍ତର ନୋହିବୁ ବୋଲି ଅଙ୍କୁ ।
ନାରୀମଣି ରେ, ନୋହିଲା ତା ଫଳ,
ନିଶ୍ଚୟ ମୁଁ କଲି ସବୁ କଥା କର୍ମମୂଳ ।     ।୨୦।
ପରିଣତ ଫଳ ବାଢ଼ି ନ ପଡୁ ପଡୁଖା ।
ପହିଲୁ ପସରା ଲୁଟି କାହିଂ ନାହିଂ ଦେଖା ।
ପ୍ରିୟମ୍ବଦା ରେ, ପଛେ ପଛେ ତୋର
ପଳାଇ ନ ଗଲା କିମ୍ପା ପରାଣ ମୋହର ।     ।୨୧।
ଫୁଟିବାର ଥାଉ ନାନାବନ୍ଧ ନିଧୁବନେ ।
ଫରମାସ ପରିପାଳି ନାହିଂ ତୋର ଦିନେ ।
ଫନ୍ଦାଧନରେ, ଫରୁଥାରୁ ଆଣି,
ଫିଙ୍ଗି ଦେଲି ଯତ୍ନ ସମ୍ପାଦିବା ଚିନ୍ତାମଣି     ।୨୨।
ବିଛେ କଳାବେଳେ ହେଲେ ବୀଣାଜିଣା ବାଣୀ ।
ବଚନେ କହି ମୋଠାରୁ ହୁଅନ୍ତୁ ମେଲାଣି ।
ବିଦ୍ୟାନିଧି ରେ, ବିଘ୍ନ ଅବା କରି ।
ବୋଲନ୍ତି କାହିଂକି ଯିବୁ ମୋ ଜୀବନେଶ୍ୱରୀ     ।୨୩।
ଭାବି ଏବେ ଚିରକାଳକୃତ ମନୋରଥ ।
ଭାସିଲାଇଂ ଦୁହେଂ ଯହିଂ ରିପୁ ମନମଥ ।
ଭାବବତୀ ରେ, ଭ୍ରଷ୍ଟ ହେଲେ ମତି,
ଭୁଭଙ୍ଗ* ନ କରି କାଳେ ଲଭି ହେ ବିପତ୍ତି     ।୨୪।
ମନ୍ତ୍ରବଳେ ଯେ ନ ପାରନ୍ତି ମନାକରି
ମୁଁ ଅବା ଗହଣେ ଆସି ଥାନ୍ତି ଅନୁସରି ।
ମଦାଳସି ରେ, ମିଶି ପରିରମ୍ଭେ
ମଜ୍ଜାଇ ରଖନ୍ତି ଉର ସ୍ଥଳେ ଅବା ଦମ୍ଭେ     ।୨୫।
ଯୁବା ଯୁବତୀଙ୍କି ଦଣ୍ଡ ବିଚ୍ଛେଦରୁଂ ସରେ ।
ଯୁଗ ହୋଏ ଦଣ୍ଡ ଏହି ପାପ ବୟସରେ ।
ଯୋଷାମଣି ରେ, ଯଥାର୍ଥ କହୁଛି,
ଯଶଶୂନ୍ୟ ହେବାକୁ ମୋ ଜୀବନ ରହିଛି     ।୨୬।

ପ୍ରାପ୍ତ ଧନ, ଫୁଟିବା—ହାଲିଆ ହେବା, ନିଧୁବନ—ରତିକ୍ରିୟା, ରଘୁକୁଳଚନ୍ଦ୍ର—ରାମଚନ୍ଦ୍ର,

* ପାଠାନ୍ତର—ଭୃଭଙ୍ଗ ।

ରମ୍ଭୋରୁ ରେ ନରଯୁବା ଛାର ଅବା କେତେ
ରଘୁକୁଳଚନ୍ଦ୍ର ଲଭିଛନ୍ତି ଦୁଃଖ ଯେତେ
ରସବତୀ ରେ, ରାମା ବିରହରେ,
ରହଇ ନାହିଂ ଯେ ଲବେ ବିବେକ ଦେହରେ । ୨୭ ।
ଲତା ବଧୂ ଆଲିଙ୍ଗନୁ ଦ୍ରୁମ[୳] କମନୀୟ ।
ଲଳନା ସଙ୍ଗରୁଂ ପୁରୁଷଙ୍କ ସୁଖୋଦୟ ।
ଲୀଳାବତୀ ରେ, ଲାଟସାରପଣେ ।
ଲୋଡ଼ିଲେ ଥିବ କି ଆଉ ମୋହ ପରି ଜଣେ । ୨୮ ।
ବିଦେଶ ମୁଁ କରି ଦୂର ହେଲେ ହେ ତୋ ପାଶୁଂ ।
ବିଚାରନ୍ତି ହୋଉଥାଏ ବିଷୟ ସକାଶୁଂ ।
ବାଳାମଣି ରେ, ବ୍ୟର୍ଥେ ଫଣୀଧରି,
ବିକଳ ହୋଉଛି ଏବେ ବିରାଜ ସୁମରି । ୨୯ ।
ଶରଦ ରଜନୀନାଥ ମୁଖ ପାଶେ ଦିନେ,
ଶୃଙ୍ଗାର ବିଡ଼ିଆ ଖଟି ନାହିଁ ସାବଧାନେ,
ଶ୍ରଦ୍ଧାବତୀ ରେ, ଶମ୍ବରିପୁ ରଣେ
ଶ୍ରୀଅଙ୍ଗେ ତୋ ସ୍ୱେଦ ଦେଖି ନାହିଂଟି ଈକ୍ଷଣେ । ୩୦ ।
ସବତ ପକାଇ ଚୁମ୍ବ ଦେଲା ବେଳେ ଲାଜେ ।
ସୁରତ ପଣ୍ଡିତା ନାହିଁ ବୋଲିବାର ବ୍ୟାଜେ ।
ସୁଲକ୍ଷଣା ରେ, ଶୁଣି ନାହିଂ କାନେ,
ସୁଖ ଦୁହିଂଙ୍କର ଏହିପରି ସେ ବିଧାନେ । ୩୧ ।
ସଦୁପାୟ ଭଳି ହୋଇଥାନ୍ତା ଯେବେ କେବେ ।
ସମାଧାନ ମାନସେ କରନ୍ତି ଅବା ଏବେ ।
*ସୁଖଦାତ୍ରି ରେ, ସେହି ହୋଇ ନାହିଂ,
ସ୍ମରଣୀୟ ହୋଇବାର କଥା ଏଥି ନାହିଂ । ୩୨ ।

---

ଲାଟ—ବିଦଗ୍ଧ ବ୍ୟକ୍ତି, ବିଷୟ—ଧନସମ୍ପତ୍ତି, ବିରାଜ—ଗାରିଡ଼ିଆଙ୍କ ଦେବତା ? ସବତ—ରାଣ, ସଦୁପାୟ—ସୁବିଧା, ହରିହୟ—ଇନ୍ଦ୍ର, କ୍ଷପାକର—ଚନ୍ଦ୍ର ।

୳ ପାଠାନ୍ତର—ଦ୍ରୁମ ।

* ପାଠାନ୍ତର—କ୍ଷୁଖଦାତ୍ରି ।

ହରପରସାଦ ସତେ ମୋରେ ଆଉ ହେବ ।
ହଙ୍କିବାର ହରିହୟ ବିଭୂତି ମିଳିବ ।
ହୃଦହାରା ରେ, ହସି ନାନା ରସେ,
ହରିବି ସମୟ ବୋଲି ନାହିଁ ମୋ ମାନସେ ।୩୩।
କ୍ଷପା କର ରାତି ଜଗତୀରେ କରି ସ୍ଥାନ ।
କ୍ଷତ କରିବି କି ମାର ବୀର ଅଭିମାନ ।
କ୍ଷମାନିଧି ରେ, କ୍ଷଣେହେ ତୋ ସ୍ନେହେ,
କ୍ଷିତିପତି ରାମଚନ୍ଦ୍ର ଛୋଟରାୟ କହେ । ।୩୪।



## (୧୭)
## ବସନ୍ତ ବର୍ଣ୍ଣନା
### ରାଗ—ଆଷାଢ଼ଶୁକ୍ଳ

ପ୍ରବେଶ ହୋଇଲେ ଋତୁରାଜନ କରାଇଲା କାମେ ଆତୁରା ଜନ,
ହେଲେ ସବୁରି ବଲ୍ଲଭା ଜୀବନ ପଡ଼ିଲା ଫୁଲ ତରୁ ଭାଜି ବନ ।
ଭୃଙ୍ଗ ଗରଜନ, ଶୁଣି ମତ୍ତ ହେଲେ ନାଗରଜନ । ୧ ।
ବହିଲା ମନ୍ଦ ମନ୍ଦ ନଭସୂତ କୁହୁଡ଼ି ହୀନ ହେଲା ନବସୂତ,
ନ ହରିଲେ ଅବା ରବିକଶିତ ହୋଇଲେ ପଦ୍ମମାନେ ବିକଶିତ ।
ସେ କାମିନୀ ରତ, ଇଚ୍ଛାକଲେ ମନେ କାମୀ ନିରତ । ୨ ।
ହୋଇଲେ ବିରାଜମାନ ବକୁଳ ପାଇଲେ ପ୍ରମୋଦ ମାନବକୁଳ,
ଅତି ସେ ବଢ଼ିଲା ଦର୍ପକ ବଳ କଲା ସେ ବିରହୀ ଦର୍ପ କବଳ ।
କହେ କବି କଳ,—କାନ୍ତୀ ସୁମରି ପଥିକ ବିକଳ । ୩ ।
ଦିଗେ ଦିଗେ ଭୃଙ୍ଗ ସଂଘ ଉଡ଼ିଲେ ପାନ୍ଥକୁ ପ୍ରିୟାଠାକୁ ଘଉଡ଼ିଲେ,
ମଦନଶର ଦେହେ ହାବୁଡ଼ିଲେ ଏଣୁ ରସରେ ସୁଦେହା ବୁଡ଼ିଲେ ।
ଭୋଗୀ ପହୁଡ଼ିଲେ, ନାରୀ ଘେନି କାମ ତାପ ହୁଡ଼ିଲେ । ୪ ।

(୧୭) ଭୃଙ୍ଗ—ଭ୍ରମର, ନଭସୂତ—ପବନ, ନବସୂତ—ସକାଳର ସୂର୍ଯ୍ୟ, ଦର୍ପକ—କନ୍ଦର୍ପ, ଶିବାରାତି—କନ୍ଦର୍ପ, ଜନି—ଉତ୍ପତ୍ତି, ରଜନୀରେ—ଅଙ୍ଗରାଗ ମିଶା ପାଣିରେ ।

ମୋହିଲା ମହୀ କନ୍ଦରପ ତୀରେ    କଲେ ଅବଳା ଆଦର ପତିରେ,
ରସିକଜନ ରଟି ପୀରତିରେ    ମାତିଲେ ବଶହୋଇ ପୀରତିରେ ।
ସେ ଦିବା ରାତିରେ, ସର୍ବେ ମତ୍ତହେଲେ ଶିବାରାତିରେ । ୫ ।
ରମିଲେ ପୁଷ୍ପମାନଙ୍କେ ଭ୍ରମରେ    ନକଲେ ନାରୀମାନଙ୍କେ ଭ୍ରମ ରେ,
ପୂର୍ଣ୍ଣ ହେଲା କର୍ଣ୍ଣ ପିକ ରବରେ    ହେଲେ ନାରୀଙ୍କର କିଙ୍କର ବରେ ।
ନାରୀ ସ୍ୱଭାବରେ, ଭୁଲାଇଲେ ରତି ରସ ଭାବରେ । ୬ ।
ଏକାଳେ ତେଜିଲି ଜୀବସଙ୍ଗିନୀ    ଶୁଖି ତା ମୁଖରାଜୀବ ଯିବନି,
ନଥିବ ପୂର୍ବପରି ଦେହ ବନି    ଘୋର ଚିନ୍ତା ଆସି ହୃଦେ ହେବନି ।
ଆହା ହା ସଜନୀ, ହୋଇ ନଥିବ ମୁଖେ ହାସ ଜନି । ୭ ।
ତେଜି ନିଃଶ୍ୱାସ ପରାଣ ଦୁଃଖରେ    ଚିରୁଥିବ ପରା ଧରା ନଖରେ,
ମଣ୍ଡିଥିବ ଏକାନ୍ତ ରଜ ନୀରେ    ନିଦ୍ରା ନଥିବ ଆଉ ରଜନୀରେ ।
ମାର-ବୀର ଶରେ, ଗଣା ହେବଣି ବନ୍ଧୁ ବିରସ ରେ । ୮ ।
ଆହା ରେ ସୁରତ କଳପତରୁ    ତନୁ ତ କୋମଳ ତଳପ ତରୁ,
ଭ୍ରମେ ନିକି ମୋତେ ତୁ ହୀନ କରୁ    ତୋ ମୁଖ ସୁନ୍ଦର ତୁହିନ କରୁ ।
ଏ ମଦ-ଜ୍ୱରରୁ, ଅସ୍ତ ତ ହେବଣି ପ୍ରମଦନରୁ । ୯ ।
ମଣ୍ଡୁଥାଉ ମହୀ ଆଗମନରେ    କେବେ ନ ଘେନୁ ତୁ ଆଗ ମନରେ
କି ଶୋଭା ଦିଶଇ ବାସବ ପୁରେ    ସେପରି ନଥିବ ବାସବ ପୁରେ ।
ତମାଳକେଶୀ ରେ, ମୋ ବିନୁ ଖଞ୍ଜିବ ମାଳ କେ ଶିରେ । ୧୦ ।
ତୋ ଦୁଃଖ ଦେଖି ଗୋ ନବରସିକେ    ଯାଉଥିବେ ଅଶ୍ରୁ ନ ବରଷି କେ,
ବୋଲୁଥିବୁ ମୁଁ ତ ଶର ସାୟକେ    କେହି ବଞ୍ଚିବି ଏ ସ୍ମରଶାୟକେ ।
ଆହେ ବିନାୟକେ, କୃପାକଲେ ସଙ୍ଗ ହେବି ନାୟକେ । ୧୧ ।
ନ ଇଭି ହରବାଦି ନବରସ    ହେବନି ତୋର ବାଦି ନବରସ,
ମଣ୍ଡୁ ନଥିବୁ ହାର ମଣି ପାଶ    ସତେ କି ଯିବି ହାରାମଣି ପାଶ ।
ତୋତେ ନୂଆ ବେଶ,—କରି ଭାଙ୍ଗିବି ଅତନୁ ଆବେଶ । ୧୨ ।
ଥିବ କି ମନେ ଏକ ଦିନକର    ଅସ୍ତାଚଳକୁ ଗଲେ ଦିନକର,
ବୋଇଲି ବନ୍ଧୁ ମୁଁ ତୋ ପରିକର    ମାଗୁଅଛି ରତେ ତୋ ପରିକର ।
ମୁଁ କହିଲି କର,—ଧଇଲି ରେ ଧନ ମୋହିନୀ କର । ୧୩ ।

---

ତୁହିନକର—ଚନ୍ଦ୍ରକିରଣ, ଶରଶାୟକ—ସାମାନ୍ୟ ତୃଣ, ହରବାଦି—କନ୍ଦର୍ପ, ପରିକର—ଆତ୍ମୀୟ ଓ ଅନୁଚର, ଦିଗମ୍ବର—ବସ୍ତ୍ରହୀନ, ଶଠିଆ—ଧୂର୍ତ୍ତ, ବରଗ—ସମୂହ, ନାକେ—ସ୍ୱର୍ଗରେ, ମାଧବ—ବସନ୍ତ ।

କରିବାକୁ ରାମାବର ମୁଁ ରତି କଲି ତୋତେ ଦିଗମ୍ବର ମୂରତି,
ଆନନ୍ଦରେ ନ ଦିଶିଲା ଜଗତୀ ରହିଲା ନାହିଁ ଆଉ ଲାଜ ଗତି ।
ଏହୁ ବସୁମତୀ, ମଧ୍ୟେ କେ ତା ଦେବ ଭୋଗ ସୁମତି । ୧୪ ।
ଲୁଚାଇ ମୋ ନେତ୍ର ଇଞ୍ଜନା, କରେ ଲୁଚାଇଲୁ ମୋତିଫଳ ନାକରେ
ଖେଳାଇଲୁ ବେଣୀ ପିଠି ଆଡ଼ରେ ପଳାଇଲା କାମ ଶଠିଆ ଡରେ
ମୋ ରାମା ନଖରେ—ସରଜିଲୁ ଯେ ଅଙ୍ଗମାନ ଖରେ । ୧୫ ।
ନିଶବଦ ହୋଇଲା ତ ନୂପୁର ନଚାଇଲୁ ଯେ ତୁ ଅତନୁ ପୁର
ଝାଳ ହେଲା ଅଙ୍ଗୁ ଗଳି ବାହାର ଛିଡ଼ିଗଲା ଦୋଳି ଖେଳିବା ହାର
ଯୁବତୀ ଶେଖର—ନଚାଇଲୁ କଟି ଅତି ସେ ଖର । ୧୬ ।
ଶୁଣି ତୋ କିଙ୍କିଣି ବରଗ ରବ ନିବର୍ତ୍ତିଲା ରତିପତି ଗରବ
ସେ ଭାବ ଆଉ ତୋ ବିନା କେ'ଦେବ ଆଉ ନ ଥିବେ ଯାହା ନାକେ ଦେବ
ମୋ ଏ କାମ ଯିବ-ବେଗେ ମୋର ସେ ରସିକା ମଜ୍ଜିବ । ୧୭ ।
ଶିବଙ୍କୁ ଭାବି ବୋଲେ ବଳଦେବ ଏହି ବର ମୋତେ କେବଳ ଦେବ
ନେଉଅଛି ମୋର ଏ କାମ ଜୀବ ବେଗେ ମୋ ରସେ ରସିକା ମଜ୍ଜିବ
ଆହେ ଉମାଧବ, ଭେଟିବି ପ୍ରିୟା ନ ଯାଉ ମାଧବ । ୧୮ ।



## (୧୮)

## ବର୍ଷା ବର୍ଣ୍ଣନା

### ରାଗ—ଆଷାଢ଼ଶୁକ୍ଳ

ଆବିର୍ଭୂତ ହେଲା ଆସି ବରଷା ମାଳତୀ ବିକାଶୁଁ ବାସିବ ରସା
ଜମ୍ବାଳ ହୋଇଯିବ ଭୂପରାଗ ତରୁଣେ ଲୋଡ଼ି ସ୍ମରଭୂପ ରାଗ
ସୁଖେ ବିହରିବେ,
ନବ ନିତମ୍ବିନୀ ନୀବି ହରିବେ । ୧ ।
ହୋଇବ ପରଦାର ଅଙ୍ଗୀକାର ଗତି ନୋହିବ ମୃଦୁ ଅନ୍ଧକାର
ବିକଶିତ ହେବ ବହୁତ କିଆ ପରସ୍ପର ଭୁଜବଲ୍ଲି ତକିଆ
ହେବ ଉପଧାନ,
କେଦାରେ ହେବ ନାନା ରୂପ ଧାନ । ୨ ।

(୧୮) ରସା—ମାଟି ବା ପୃଥିବୀ, ଜମ୍ବାଳ—ପଙ୍କ, ଭୂପରାଗ—ଧୂଳି, ଉପଧାନ—

ଶୁଣି ଭୀଷଣ ଘନ ଗରଜନ ଚମକିବେ ଭୀରୁ ନଗରଜନ,
ଅନ୍ଧକାର ହେବ ଦିନ ନିଶାରେ ଖ-ମଣି ଲୁଚିବେ ନଭୋମଣ୍ଡଳେ,
ଖେଳିବ ଚପଳା,—
ବୋଲି ପ୍ରବାସୀ ଧୃତି ନୀଚ ପଳା । ୩ ।
ଧଇଲେ ଏବେ ଯେ କର କା କର ମୁଞ୍ଚିବେ ସେ ଘନେ କରକା କର
ନାଚିବେ ପ୍ରମୋଦ ଭଜି ବରହୀ ବିଯୋଗୀ ଜୀବ ନିକି ଯିବ ରହି,
ଫୁଟିବ ଗଣିକା,
ସନ୍ତତ ରଣ୍ଡ଼ ଫୁଟିବ ଗଣିକା । ୪ ।
ସମ୍ବନ୍ଧ ହୋଇବ କୋନିରାଶାରେ ସଢ଼ିବେ ବଧୂଜନେ ନିରାଶାରେ,
ସଂଯୋଗୀଜନେ ହୋଇ ପରବଳ ଦଳିବେ ଚନ୍ଦ୍ରଚୂଳ-ପର ବଳ,
ଭେକ କଳବଳ,
କରିବ ପାନ୍ଥ ଧୃତି କଳବଳ । ୫ ।
ବିବେକ ଦ୍ରୁମର କ୍ଷିପ୍ର ଭଞ୍ଜନ ପ୍ରସରିବ ଯେ ଝଞ୍ଜା ପ୍ରଭଞ୍ଜନ
ଝିଙ୍କାରି ଝଙ୍କାର ପରବଳିବ ମୃଗୟାରେ ରତି ବର ବଳିବ
ଦାତ୍ୟୂହ କୂଜନ,
ଶୁଣି କମ୍ପାଇବେ ଦେହକୁ ଜନ । ୬ ।
ଉତ୍ପଳ ବୁଡ଼ିଯିବ କବନ୍ଧରେ ଯୁବା ମାତିବେ ଅନେକ ବନ୍ଧରେ
ପ୍ରସଙ୍ଗେ କହିବେ ଅଭିସାରିକା ସଙ୍କେତସ୍ଥଳକୁ ଅଭିସାରିକା
ତୀର ତିନ୍ତି ଆପେ,
ଯିବେ ସୁରତ ଚିତ୍ତେ ଚିନ୍ତି ଆପେ । ୭ ।
ଛପିବେ କୁମୁଦ-ବନ୍ଧୁ ତରଣି ଖେଳାଇବେ ସବୁ ସିନ୍ଧୁ ତରଣୀ
ହଂସ ବିହରିବେ ମାନସେ ଯାଇ କଦୃଷ୍ଟ ତଳପମାନ ପକାଇ
ଭୋଗୀ ପହୁଡ଼ିବେ,
ଯୋଗୀ ରାମନାମ ଜପ ହୁଡ଼ିବେ । ୮ ।
ମାର୍ଗେ ଏକାଳେ ଆସିବ ସଜନୀ ମୁହଁରୁ କେହି ଆଶୀବିଷ ଜନି
ଶୁଣିବାକୁ ଆଳୀକୁଳ ଟାପରା ମାନସେ ଚିନ୍ତି ମଣିବାକୁ ପରା
କୀଚକ କଦମ୍ବ,
ମଣ୍ଡିବ ଦମ୍ପତ୍ତି କୁଚ କଦମ୍ବ । ୯ ।

ବାଳୁଙ୍ଗା ବା ଘାସ, ଖମଣି—ସୂର୍ଯ୍ୟ, କରକା—କୁଆପଥର, ଗଣିକା—ଯୂଇଫୁଲ ଓ ବେଶ୍ୟା, ଚନ୍ଦ୍ରଚୂଳ-ପର—କନ୍ଦର୍ପ, ଦାତ୍ୟୂହ—ଡାହୁକ, କବନ୍ଧ—ଜଳ, ତରଣି—ସୂର୍ଯ୍ୟ, କଦୃଷ୍ଟ—ଅଙ୍ଗ

ଖ-ମଣ୍ଡଳେ ଅତି ବିଦ୍ୟୁତମାନେ ପ୍ରକଟିତ ହେବେ ଖଦ୍ୟୋତ ମାନେ
ଅନଙ୍ଗାନଳ ପରି ଆଭାସିବ ଜଳରେ ଧରି ଗରିଆ ଭାସିବ
ପହଁରିବା ନର,
ନେବେ ନାନାଫଳ ହରି ବାନର । ୧୦ ।
ମାର୍ଦ୍ଦବ ମର୍ଦ୍ଦିବ ନବନୀତାକୁ ଏକାଳେ ଛାଡ଼ିଲି ସେ ବନିତାକୁ
ପୀୟୂଷ ବିଷ ହୋଇବନି ତାକୁ ନ କଲି ସ୍ମରଣ ଅବନିତାକୁ
ଆହା ବନିତାକୁ,
ପୁରକୁ ମନେ ନେବ ବନି ତାକୁ । ୧୧ ।
ଛାଡ଼ି ସ୍ନେହ ସେ ପୁର ମଣ୍ଡନରେ ବୋଲୁ ନଥିବ ପୁର ମଣ୍ଡନରେ
ବରଜି ମୋ ଜୀବ ସଙ୍ଗୀତ ରସ ପାଶୋରି ଦେବନି ସଙ୍ଗୀ ତ ରସ
ଆହା ରସନିଧି,
ଦେଖୁ ନଥିବ ଆହାର ସନ୍ନିଧି । ୧୨ ।
ଆଚରି ନାନା ପ୍ରକାର ବିଳାପ କରି ବିଜିତ ଯାଗ ସଙ୍କଳପ
ଭାବିବାରୁ କଞ୍ଜଦଳ ତଳପ ଆଳୀ ବୋଧିଲେହେଁ କୋଟି ତଳପ
ନ ଘେନି ଅଳପ,
କରୁ ନଥିବ ସଧୃତି ଜଳପ । ୧୩ ।
ସହଜେ ତ ବରତନୁ ଅବଳା ଉରୁ ଠାରିବ ଫେରିନି ତା ବଳା
ନାସାପାଶେ କେ ସମରପି ତୁଳା ନିରେଖୁଥିବ ତା ଡୋଳା ପିତୁଳା
ଜଳପି ବଗଳା,
କେ ଆପଣାର ଚିପୁଥିବ ଗଳା । ୧୪ ।
କେ ସଖୀ ଧମନୀକି ପରକ୍ଷିବ ଅନ୍ଧାରି ଦେଇ କେ ଦୀପ ରଖିବ
ଛାମୁରେ କେହି ବିଶ୍ୱାସି ବସିବ ଶ୍ରବଣରେ କେ ଶୁଣାଇବ ଶିବ
ଯେ ଟି ଭରସିବ,
ଅମ୍ବୁ ଶିଖର ମୁଖେ ବରଷିବ । ୧୫ ।
ମେରୁ ଗରୁଆ ହୋଇବ ନିବାସ ଥିବ କି ନଥିବ ଯିବନି ବାସ
ପ୍ରାଣେ ବାଜିଲେ ବୃନ୍ଦାବନୀ ବାସ ବୋଲୁଥିବ ଆହେ ଜଗନ୍ନିବାସ
କି ସଂଭୋଗ ରାସ,
ଛାଡ଼ି ହେଲି ସ୍ମର ସର୍ପଗରାସ । ୧୬ ।

ଗରମ, ଆଶୀବିଷ—ସାପ ବିଷ, କୀଚକ—ବାଉଁଶ, କଦମ୍ବ—ଦ୍ୱୟ, ଖମଣ୍ଡଳେ—ଆକାଶରେ, ଗରିଆ—ପାତ୍ର, ମାର୍ଦ୍ଦବ—କୋମଳତା, ଅବନିତା—ବିନୀତା, କଞ୍ଜଦଳ—ପଦ୍ମପତ୍ର, ବଗଳା—

ପାଇଲ ମୋ ସ୍ନେହକୁ ସେ ସରସା  ଶିରେ ବୋହିଲାପରି ଶେଷ ରସା ।
ଜାଣଇଁ କେତେ ଜାତି ରସମାନ  ଚାଲଇକି ସେ ହାତୀର ସମାନ
ସୁଧାପରି ଭାଷା,
ସେହି ଶୃଙ୍ଗାର ଶାସ୍ତ୍ର ପରିଭାଷା । ୧୭ ।
ଟିପି ଦେଲେ କକ୍ଷସ୍ଥଳୀ ନଖରେ  ଆଡ଼ ପଞ୍ଚଶିଖ ନଳିନଖରେ
ଚାଲ ମା, ଏ ନାହିଁ, ଏ କି ଟା ପରା କରନାହିଁ ବୃଥା ଏତେ ଟାପରା
ହସି ଏତେ ଭାଷି,—
ଯାଏ ମୋ ଶରୀର ସରିତେ ଭାସି । ୧୮ ।
ମୋପରି ବେଶ ଦେଖିବା ତରସେ  ଦିନେ ହଟିଲି ବିପରୀତ ରସେ
ଚତୁରୀ ତ ବଡ଼ ଅମିତ ରସେ  ଜବାବ ଦେଲା ନକରି ତର ସେ
ହୁଏ କେ କା ପରି,
କରଟ କି ରଟଇ କେକା ପରି । ୧୯ ।
ବୁଡ଼ିବାରୁ ମୁହିଁ ତାପୀ ରତିରେ  ନ ରସଇ ଗୋ ଅନ୍ୟ ପୀରତିରେ
ସେ ଚମ୍ପାକଳୀ ଜିଣା ସୁନା ସାର  ଶ୍ରୀଅଙ୍ଗ ସୁକୁମାର ସୁ-ନାସାର
ମୁଁ ମସାରମଣି,
ମାନେ ମୋତେ ସେହୁ ଭୂଷାରମଣି । ୨୦ ।
ଘେନାଇଁ ନଜର ମୁକୁତାହାର  ମୁଁ ଯେବେ ଯାଏ ଛାମୁକୁ ତାହାର
ସଦରହାସ ଲାଜ ତାଜିମରେ  ଚଳି ମଦନରାଜ ପାଜି ମରେ
ମେରୁ ରଚି ବୁକ,
ଧରି ଧରେ ତା ରୁଚିର ଚିବୁକ । ୨୧ ।
ଶୃଙ୍ଗାର ଯେମନ୍ତ ସୁଆଦ ରସ  ଗୋଧନଟି ତାର ସୁଆଦରଶ
ଜଗତେ ଅଛି କି ତା'ହାସମାନ  ଚନ୍ଦ୍ରିକାରହରେ ତାହା ସମାନ
ସେ ବରତରୁଣୀ,
ବୋଲୁଥାଏ ଟି ହେବ ରତ ଋଣୀ । ୨୨ ।
କୃପାକୁ କଲେ ଅନାବିଳ ଶିବ  ମୋ କୋଳେ ପୀନସ୍ତନା ବିଳସିବ
ପରତେ ହେଉ ନାହିଁ ମାନସରେ  ତା ସ୍ନେହଠାରୁ ମୋ ଗୁମାନ ସରେ
ସେ ସାର ରମଣୀ,
ମୋ ହୃଦୟ ମଧ ହାରର ମଣି । ୨୩ ।

---

ଦେବୀ, ଗରୁଆ—ଭାରି, ଶେଷ—ବାସୁକୀ, ରସା—ପୃଥିବୀ, ତରସେ—ଶୀଘ୍ର, କରଟ—କୁଆ, କେକା—ମୟୂର ଡାକ, ମସାରମଣି—ଇନ୍ଦ୍ରନୀଳମଣି, ତାଜିମରେ—ବିସ୍ମୟରେ । ଚନ୍ଦ୍ରିକାରହରେ—ଚନ୍ଦ୍ରିକା କ୍ରୀଡ଼ାରେ, ପାଟବ—ପୂର୍ଣ୍ଣାଙ୍ଗ, କଦମ୍ବମୂଳିଆ—ଶ୍ରୀକୃଷ୍ଣ ।

କେବେ ପାଟବ ହେବ ମୋ ଦଶାର ମିଳିବ ତା ସଙ୍ଗତି ମୋଦ ସାର
ମଦନ ମୁଖେ କାଳି ଲଗାଇବି ଧନ ତୁଲେ 'ଜାଇଫୁଲ' ଗାଇବି
ବଞ୍ଚିବି ସୁଖରେ,
ଲଭି ତା ସୁଖ, କାଟି ବିସୁଖରେ । ୨୪ ।
କହେ ଅଷ୍ଟଦୁର୍ଗେଶ୍ୱର ସଭାର କବିରବି ନେଇ ଏ ରସ ଭାର
ଦେଲେ କଦମ୍ୱମୂଳିଆ ଚରଣେ ଅର୍ଜିବା ପାପ କଳି ଆଚରଣେ
ସେ ନଟ ନାଶିବେ,
ହେଲେ କିଶୋରୀଙ୍କ ଘଟ ନାଶିବେ । ୨୫ ।

●

## (୧୯)
## ନାୟକ ଅନୁଚିନ୍ତା
### ରାଗ—ଆଷାଢ଼ଶୁକ୍ଳ

ଧନି ! ଅନାଥରେ ଚାହିଁଲା ପରି ଧନୀ ଅନାଁ ଥରେ ।
ଜାଣୁ ତ ଜୀବେଶ୍ୱରୀ ଆଜନମୁଁ—ତୋ ଚିଉକେଳି ଜଗୁଆ ଜନ ମୁଁ
ମୋଠାରେ ଏ ଗାଢ଼ ଲାଜ ନ କର—ରହସ୍ୟ ପ୍ରଣୟ ଭାଜନ କର । ୧ ।
ମୁଁ ଚାତକପକ୍ଷୀ ତୁ ଧାରାଧର—ଅଧରେ ସ୍ମିତ ସୁଧା ଧାରା ଧର
ଆଉଜା ଲୀଳାକୁ ରଚି ବୁକୁରେ—ଗୋଟିଏ ଚୁମ୍ୱ ଘେନି ଚିବୁକରେ । ୨ ।
ମୁଖ କଳାନିଧି ଅଧ ନ କର—ଅଂଶ ମୋର ଦିଅ ଅଧନ କର
ତୋ ସୀଉକାର ହେଉ ଭାରତୀରେ—ସ୍ୱରକୁ ଜିଣିବା ତା ଭାରତୀରେ । ୩ ।
ଅନେକ ଦିନୁ ମୁଁ ତୋ ନଉକରି—ଦୁଃଖୀଧନକୁ ନବ ନଉ କରି
ତନୁକୁ ତୋର ପରଦା ନ କରେ— ଶକ୍ର ଭୂତିକି ପରଦାନ କରେ । ୪ ।
ଲଜାରେ ନକର ପରମାଦର—ନିଦାନ ହେଉଛି ପରମାଦର
କରୁଥାଇ ଯେତେ ଭୋଗ ତରସ—ସେ ସବୁ ହେଉଅଛି ଗତରସ । ୫ ।
ଖେଳାଉ ନାହିଁ ମୁଁ କରଜାଗ୍ର ତ—କରୁ କେତେ କଳେବର ଜାଗ୍ରତ
ଛୁଇଁ ତ ନାହିଁ ତୋର ନୀବି ତରେ—ଅଧର କିପାଁ ଭିଡୁ ନିବିଡ଼ରେ । ୬ ।

(୧୯) ଧାରାଧର—ମେଘ, ଭାରତୀରେ—କଥାରେ । ଅଧ—ଚଳକୁ, ନଉ—ନବେ, ଶକ୍ରଭୂତି—ଇନ୍ଦ୍ର ସଂପଦ, ପରମାଦର—ଶ୍ରେଷ୍ଠ ସ୍ନେହ ଓ ଭୁଲଭ୍ରାନ୍ତିର, ତରସ—ଶୀଘ୍ର, କରଜାଗ୍ର—ହାତନଖର ମୁନ, ଜାନି—ଭିଡ଼, ସାରସ—ଚନ୍ଦ୍ର, ସରିତପତି—ସମୁଦ୍ର,ଗିରୀଶାରି

ଏପରି ଅନୁଚିତ କାଳଯାକ—ବନ୍ଧୁ ମୋ ତନୁ ତତକାଳ ଜାକ
ଏ ଶୋଭା ଚାହିଁ କି ନିବରତିବି—ତୋ ବିନା ଧନ ନିକି ବରତିବି । ୭ ।
ବିରାଜ ସୁରତ ସଦନାଦିରେ—ଧୀରା ଯଶ ରଖ ମଦ ରାଜିରେ
ଝମ୍ପାତାଳେ ବଜାଅ ତ ନୂପୂର—କମ୍ପାଇ ରୁଚିର ଅତନୁପୁର । ୮ ।
ସୁଜାଣୁ ତ ଜାଣୁ ରତି ଶରଣ—ଅତି ଭାର ସଦମ୍ପତି ଶରଣ
ତାରଣ ଧୃତିକି ଖସା ରସରେ—ପୂରି ପ୍ରସାଦ ସୁଖ ସାରସରେ । ୯ ।
ଆରେ କ୍ଷମାଗୁଣ ସରିତ ପତି—ସାରିଦେବ ଗିରୀଶାରି ତପତି
ଦୟାଳୁ ଗୁଣେ ତୁ ତୁଷାର କର—ମୋ ପ୍ରାଣରକ୍ଷାକୁ ତୁ ସାର କର । ୧୦ ।
ଏ ଯଉବନ ସେହି ତ ଯବନ—ତକ୍ଷଣେ ଘେନିଯିବ ତ ଜୀବନ
କ୍ଷଣରୁ କ୍ଷଣ ଅନ୍ତର ସମୟ—ହୋଇବ ଅବା ଇତର ସମୟ । ୧୧ ।
କୁଞ୍ଜ କମନୀୟ ନୀପ ବନରେ—କୁଞ୍ଜ ସୁରଭି ଧ୍ୱନି ପବନରେ
ବିହରି ମୋ କୋଳେ ଅନବରତ—ବଲ୍ଲଭୀ ପଲ୍ଲବା ଅନବରତ । ୧୨ ।
ଦର୍ଭ ଗର୍ଭ ତ ଶେଜର ଉପରେ—ତୋ ମନ ମନ୍ତ୍ର ବରଷେ ଜପରେ
ପ୍ରବଣ ହୋଇଛି ମୁଁ ତୋ ସେବାରେ—ମୋ ଅଙ୍ଗେତ ନଭ୍ରମୁ ତୋଷେ ବାରେ । ୧୩ ।
ଅଦୃଶ୍ୟ ହୋଇଲେ ଅମ୍ବର ମଣି—କୁମୁଦବନେ ରୋଲମ୍ବରମଣୀ
ପ୍ରିୟ ତୁଲେ କରିବାର ସଙ୍ଗୀତ—ଶୁଣି ନର ସୃଜି ବର ସଙ୍ଗୀତ । ୧୪ ।
ନ ଦେବାରୁ ତୁ ସମ୍ପଦ ନଜର—ହେବାରୁ ଦୁହେଁ ସମଦନ ଜର
ଅଭିନବ ସୁଖ କଳପତରୁ—ଶୁଖି ଯିବଟି କୋମଳସ ତରୁ । ୧୫ ।
ଶ୍ଳେଷ ଆଶ୍ଳେଷ ରମ୍ୟ ପରିହାସ—ମଦବିକଚ କୁନ୍ଦ ପରି ହାସ
ଏହିଟି ଏ ଭବ ସୁଖ ନିଦାନ—କର ଶୁଭେ ଏବେ ସୁଖେ ନିଦାନ । ୧୬ ।
କରାଇବି ତ ମୁଁ ରାଇକା ଲାଗି—ମୁଖ ପୋତୁ ଲାଜ ପାଇ କା' ଲାଗି
କର ରେ ବିନା ଏହା ଆନ ନରେ—ନ ମଣ୍ଡ ଚେଲାଞ୍ଚଳ ଆନନରେ । ୧୭ ।
ମଳୟ ବିହାର କରା ମାରୁତ—ସଦ୍ରାଣପ୍ରିୟ ପିକ ରାମାରୁତ
ଚନ୍ଦ୍ର ଚନ୍ଦନ ଅପଘନସାର—ହଟେ ଲୁଟିବ ଅପଘନ ସାର । ୧୮ ।
ହରି ଏପରି ଭାଷି ସୁଆଗରେ—ପ୍ରବଳନ୍ତେ କୁସୁମେ ସୁଆଗରେ
ହସି ବିହରିଲେ ରସିକମନେ—ଅଷ୍ଟଦୁର୍ଗେଶ ଭାଷିଲେକ ଦିନେ । ୧୯ ।



---

ତପତି—କନ୍ଦର୍ପ ଜ୍ୱାଳା, ଦର୍ଭ—କଅଁଳ ଘାସ, ରୋଲମ୍ବରମଣୀ—ଭ୍ରମରୀ, ରାଇକା—ଲାକ୍ଷା, ରୁତ—କୁହୁ ଧ୍ୱନି ।

# (୨୦)
# କୁଞ୍ଜ ମିଳନ
## ରାଗ - କାମୋଦୀ

ଦିନେ ଦିନେଶସୁତା-ତଟ ମାଧବୀ ଲତା
ମଣ୍ଡପେ ନବଘନ ଶ୍ୟାମ
କହନ୍ତି ପଙ୍କେରୁହ-ନେତ୍ରାଙ୍କୁ ଅତି ସ୍ନେହ—
ବଶରୁ ତରୁଣୀ ଲଲାମ ରେ
ଦରହାସୀ,
ମୋ ଜନ୍ମ କିଶୋରତା ଧନ୍ୟ
ଅସଦୃଶ ମୋ ପୂର୍ବ ପୁଣ୍ୟ
ଜମାଇ ମଙ୍କେ ମନେ ଦେହେ ଦେହ ନୟନେ
ଯା ଭୋଗ କଲା ଏ ଲାବଣ୍ୟ ରେ । ୧ ।
ଲୋଲୁପ ଭାବେ ଲାଖି ଯେବେ ଜନର ଆଖି
ତୋ ଶୋଭାମୃତ ଚାଖିଥିବ
ଉର୍ବଶୀ ରମ୍ଭା ରତି ତୁଲ୍ୟ ବୋଲି ଭାରତୀ
ବଦନୁ ନିଜ୍ଝ ନିଃସରିବ ରେ
ଦରହାସୀ,
ତୋ ଉପମାନ ତୁହି ଏକା
ତୁହି ତୋ ସଦୃଶ ରସିକା
କେତେ ଘେନି ସମ୍ଭାର ହେଲେଣି ଦେବୀ ତୋର
ରସନା ଅଞ୍ଚଳ ଲାସିକା ରେ । ୨ ।
ଭଲା ତୋ ଅନାଉଁଣି ଯା ଭଙ୍ଗୀକି ଲାଉଣି
ଦେବାକୁ ନୁହଇ ଖଞ୍ଜନ
ତହିଁ କେ ପୁଣି ରଞ୍ଜିଅଛି ଏ ସରୁ ଲାଞ୍ଜି
ରେଖିକା ମଞ୍ଜୁଳ ଅଞ୍ଜନ ରେ
ଦରହାସୀ,
ଯେ ଜନ୍ତୁ ଦୁଷ୍ଟ ମହାମଲ୍ଲ
ତାହାକୁ ପିଆଇ ଅମଳ
ବାଇ କରାଇ ତାର କରରେ ତରୁଆର
ଦେଲେ କରଇ ସେ କି ଭଲ ରେ । ୩ ।

---

(୨୦) ଦିନେଶ ସୁତା—ଯମୁନା, ପଙ୍କେରୁହନେତ୍ରା—ପଦ୍ମନୟନା, ଲାସିକା—ନର୍ତ୍ତକୀ, ଲାଉଣି—ଧରିବା, ଅମଳ—ମଦ୍ୟ, ମହାନୟ—ବଡ଼ ବିପଦ, ବିରାକ୍ଷି—ବିଶେଷ ଦୃଷ୍ଟି,

ମହାନୟ ବିନୟ ବିରାକ୍ଷି ଅଭିନୟ
ପୀୟୂଷ ରସମୟ ବାଣୀ
ବୀଣା ବାଦ୍ୟ ପ୍ରବୀଣା ପଣ ମୂଲ୍ୟରେ କିଣା
ତୋର କି ବାଣୀ ଠାକୁରାଣୀ ରେ
ଦରହାସୀ,
ନେତ୍ରାନ୍ତ କରି ଚଳାଚଳ
କମ୍ପାଉ ଉରଜ ଅଚଳ
ନଚାଇ ଦେଇ ଚିର ପଚାଇ ଦେଉ ମୋର
ପୂରୁବ ତପୋବଲ୍ଲୀ ଫଳ ରେ । ୪ ।
ସସ୍ମିତ ରଦବାସ ପଲ୍ଲବେ ଦେଇ ବାସ
ସଲ୍ଲଜେ ଯାହା କହିଆଣୁ
ସତେକି ରେ ବିବେକୀ ମୋତେ ଦେବାକୁ ନିକି
ଚନ୍ଦ୍ରମଣ୍ଡଳୁ ସୁଧା ଛାଣୁ ରେ
ଦରହାସୀ,
ସେ କାଳେ ପଡ଼ିଗଲେ ଘାଣୁ
ଭ୍ରୂଭଙ୍ଗୀ ତରବାରେ ହାଣୁ
ଶ୍ରୁତି ମୁକୁତାଝୁମ୍ପା କରିବା ଦରକମ୍ପା
ଚମ୍ପା ଗଉରୀ ଏକା ଢାଣୁରେ । ୫ ।
ମଣ୍ଡ ମୋହର ଅଙ୍କ ମରକତ ପର୍ଯ୍ୟଙ୍କ
କରିବି ବାସନ୍ତୀକ ବେଶ
ତୋ ଅଙ୍ଗ ସଙ୍ଗ ପାଉ କୃତାର୍ଥ ହୋଇଯାଉ
ଫୁଲ ପଲ୍ଲବ-ସୃଷ୍ଟି ଆଶ ରେ
ଦରହାସୀ,
ପରିଜନରେ ଏ କି ଲାଜ
ଟେକ ଶ୍ରୀମୁଖ ଦ୍ୱିଜରାଜ
ଲାଜ ସିନ୍ଧୁରେ ପଡ଼ି ରହିଲେ ହେଲେ ବୁଡ଼ି
ନିବର୍ତ୍ତି କି ପାରିବି ଆଜ ରେ । ୬ ।

ଚିର—ସ୍ତନର ଅଗ୍ରଭାଗ, ରଦବାସ—ଅଧର, ଦ୍ୱିଜରାଜ—ଚନ୍ଦ୍ର । ପ୍ରପଦ—ପାଦର ଅଗ୍ରଭାଗ, ବେଦଯୁଗଳ ଦୁର୍ଗ—୪ ବେଦର ଦ୍ୱିତ ଅଷ୍ଟଦୁର୍ଗ ।

କିଶୋରଚନ୍ଦ୍ର ବାଣୀ ଶୁଣି ଶ୍ରୀ ଠାକୁରାଣୀ
ପ୍ରେମ ପ୍ରମୋଦ ଲଜ୍ଜାଢଳେ—
ନିମଜ୍ଜି ରହି ମନ୍ଦ ସ୍ଫୁଟ ସୁନ୍ଦର କୁନ୍ଦ—
ସ୍ମିତକୁ ବିରଚିବା ବେଳେ ରେ
ଦରହାସୀ,
ପରମ ପ୍ରପଦ ଆନନ୍ଦେ
ଚାପି ଶ୍ରୀଚରଣାରବିନ୍ଦେ
ବେଦଯୁଗଳଦୁର୍ଗ ବସୁଧା ମାୟା ସ୍ୱର୍ଗ—
ବଳୟ ପୁରନ୍ଦର ବନ୍ଦେ ରେ । ୭ ।

•

## (୨୧)
## ବିରହୀ ଚିଟାଉ
### ରାଗ—ଚିନ୍ତଦେଶାହ

କେଉଁ ବିରହୀ ନାଗରବର, ପ୍ରିୟାଠାକୁ ଲେଖଇ ଉତ୍ତର
ଆରେ ପ୍ରାଣବନ୍ଧୁ, ଏବେ କାମସିନ୍ଧୁ—
ମଜ୍ଜିଅଛି ମୁଁ ବିରହେ ତୋର ରେ କିଶୋରି । ୧ ।
ଆରେ ପ୍ରିୟେ, ତୁ ମୋ ପ୍ରାଣଧନ, ତୋତେ ନ ଦେଖି ଯିବ ଜୀବନ
ତୋ ଶିରୀଷତନୁ ପରିରମ୍ଭ ବିନୁ—
ମୋତେ ନ ରୁଚେ ଚନ୍ଦ୍ର, ଚନ୍ଦନ ରେ କିଶୋରି । ୨ ।
ଆଜ ଥରେ ହେବୁ ମୋହ ପରି, ବୋଲି କହନ୍ତେ ମୁଁ କର ଧରି
ଏ କିସ ଗୋ ବୋଲି ମନ୍ଦ ହସିବାର—
ଯିବ କେହି ମୋ ମନୁ ପାଶୋରି ରେ କିଶୋରି । ୩ ।
ମୋଦେ ମୋ ଅଙ୍କରେ ବସିଥାଉ, ପ୍ରେମ ରସରେ ଚିତ୍ତ ମଜ୍ଜାଉ
ସ୍ମିତ ଜିତ ବାଣୀ ପଦ ପଦକ ରେ—
ବ୍ରହ୍ମପଦ ଦେଇ ଯାଉଥାଉ ରେ କିଶୋରି । ୪ ।

(୨୧) ପରିରମ୍ଭ—ଆଲିଙ୍ଗନ, ହେବୁ ମୋହ ପରି—ବିପରୀତ ରତି ଅର୍ଥରେ,

ରସ ସଙ୍ଗୀତରେ ଥାଉ ମଜ୍ଜି, ପଛୁଁ ଧରନ୍ତେ ତୋ ନେତ୍ର ବୁଜି
ଜାଣିଲି ଯେ ଛାଡ ବୋଲି କହିବାର—
ହେଜି ଯାଉଛି ମୋ ଧୃତି ଭାଜି ରେ କିଶୋରି । ୫ ।
ତୋତେ ସ୍ୱହସ୍ତରେ ବେଶକରି, ବସିଥାଇ ମୁଁ ଯେ କୋଳେ ଧରି
ଆନନ୍ଦ ସମୁଦ୍ରେ ମଜ୍ଜିଧାଏଁ ବନ୍ଧୁ—
ବିହି ହରିଲା ସେ ସୁଖଶାରି ରେ କିଶୋରି । ୬ ।
ବଳେ ଯେବେ ମୁହିଁ ନୀବି ଧରେଁ, ମୋ ବିମନେ ଭାବି ନିଷେଧରେ
କି ଭଙ୍ଗୀରେ ଧନ, ବଞ୍ଚାଉ ରସାଇ—
ମୋର ମନ ଆନ ପ୍ରସଙ୍ଗରେ ରେ କିଶୋରି । ୭ ।
ଗେଲେ ମାନକରି ବସିଥାଉ, ପଚାରିଲେ ଉତ୍ତର ନ ଦେଉ
ହେଲେ ମୁଁ ତରସ୍ତ ବିତୁଥିଲି ଚିତ୍ତ—
ବୋଲି ହସି ଅଙ୍ଗେ ମାତିଯାଉ ରେ କିଶୋରି । ୮ ।
ଯେବେ କରଜ ଦିଏଁ ଚଳାଇ, ଅଙ୍ଗେ ରୋମାଞ୍ଚକୁ ଉପୁଜାଇ
ଖେଳାଇ ଡ଼ୋଳାକୁ ହସି ଭାଷି ବାଳା—
ଭିଡ଼ି ଉରେ ଉରକୁ ଲଗାଉ ରେ କିଶୋରି । ୯ ।
ଦିନ ଦିନକର ଭାବ ଯେତେ, କହି ନ ପାରିବି ତା କିଛୁତେ
ମନ ଏକା ଜାଣେ ଏ ଘେନି ଅନ୍ତର—
ହେଲେ ହେଲେ ନ ତେଜଇ ତୋତେ ରେ କିଶୋରି । ୧୦ ।
ନବନାଗରୀ ରାମାରତନ, ଜାଣୁ ତୁହି ସିନା ମୋର ମନ
ଶ୍ରବଣ ଇଚ୍ଛେ କରିବାକୁ ଶ୍ରବଣ—
ତୋର ବିପରୀତ ସଞ୍ଚ ସ୍ୱନ ରେ କିଶୋରି । ୧୧ ।
ତୋର ମୁଖ ପୂର୍ଣ୍ଣକଳାକର, ଦେଖି ମୋ ନେତ୍ର ଦ୍ୱୟ ଚକୋର
ଆନନ୍ଦକୁ ଲଭି ସତେ କି ବଲ୍ଲଭୀ—
ବଲ୍ଲଭ କି କରିବ ଅନ୍ତର ରେ କିଶୋର । ୧୨ ।
ଆରେ ନବନୀତ ସୁକୁମାରୀ, ବରଷିବା ରସ ମନୋହାରୀ
କେବେ ତୋ ଅଧର ବନ୍ଧୁଜୀବ ମଧୁ—
ପାନେ ମୁଁ ହେବି ମଧୁପ ପରି ରେ କିଶୋରି । ୧୩ ।

କରଜ—ନଖ, ଉର—ଛାତି, ସଞ୍ଚ—ସୁନ୍ଦର, ବନ୍ଧୁଜୀବ—ବଧୂଲି ଫୁଲ, ଶାତକୁମ୍ଭମୟ—ସ୍ୱର୍ଣ୍ଣମୟ, ତନୁ—ଦେହ ଓ କ୍ଷୀଣତା ।

ଭାସୁଅଛି ମୁଁ କାମ ସିନ୍ଧୁରେ, ତୋର ଜାନୁ ଭେଳା କରି ବାରେ
କୁଚ ଶାତକୁମ୍ଭମୟ କୁମ୍ଭ ଧରି—
କେବେ ପାରିହେବି ମୋଦଭରେ ରେ କିଶୋରି । ୧୪ ।
ତୋର ବିରହେ ମଳୟାନିଳ, ଆଭାସଇ ସେ ପ୍ରଳୟାନଳ
କୋକିଳ କୁଳ କଳରବ ସକଳ—
ଧୃତି ସିନା କରାଏ ଆକୁଳ ରେ କିଶୋରି । ୧୫ ।
ତୋର ସନ୍ନିଧି ତେଜିଲା ଦିନୁ, କ୍ଷଣେ ତୁ ନ ଯାଉ ମୋର ମନୁ
ସୁତନୁ ଅତନୁ ମାର୍ଗଣେ ତୋ ବିନୁ—
କରି ହେଲାଣି ମୋ ତନୁ ତନୁ ରେ କିଶୋରି । ୧୬ ।
ନାହିଁ ମୋର ବଞ୍ଚିବା ଭରସା, ତୋର ଦରଶନ ପ୍ରତିଆଶା
କେବଳ ରଖିଛି କଷ୍ଟେ ପ୍ରାଣ ଅଙ୍ଗେ—
କଷା ନୁହେଁ ନେତ୍ର ନିତି ନିଶା ରେ କିଶୋରି । ୧୭ ।
ନ ଜାଣୁ କି ଜଗଦ୍ଦେବ ଚିତ୍ତ, ବନ୍ଧୁ ନାହିଁ ମୋ ଲେଶ ଆୟତ୍ତ
ସତ ତୋ ବିଜିତ ପୂର୍ଣ୍ଣଚନ୍ଦ୍ର ମୁଖ—
କରାଇବ ମୋର ନେତ୍ରଗତ ରେ କିଶୋରି । ୧୮ ।



## (୨୨)
## ଖଣ୍ଡିତା ନାୟିକା
### ରାଗ—ଆଷାଢ଼ଶୁକ୍ଳ

ମୁଁ ନ ପାରେଁ ଯାଇ, ମିଛୁରା ମଉଳିକି ସମଝାଇ । ଘୋଷା ।
ମଳୟଜ ବସୁନ୍ଧରାଧରରୁ, ମନ୍ଦ ସୁଗନ୍ଧ ମରୁତ ପ୍ରସରୁ ।।
ମିଳିନ୍ଦେ ମଞ୍ଜୁ ଗୁଞ୍ଜନେ ହଟନ୍ତୁ, ମଦ ପରଭୃତମାନେ ରଟନ୍ତୁ । ୧ ।
ମୟୂଖ ମଣ୍ଡଳେ ମଣ୍ଡି ଜଗତୀ, ମନ ହରୁଥାଇ ରଜନୀପତି
ମାକନ୍ଦ କଳି ତର୍ଜନୀ ହଲାଇ, ମୋ ଧୃତି ମୂଳ ଦେଉ ଦୋହଲାଇ । ୨ ।
ମୋ'ଠାରେ ଦୁଃଖ ରଖି ତୁମ୍ଭେମାନେ, ମୁହଁ ନ ଚାହଁ ପଛେ ପ୍ରୀତମନେ
ମାର ମରମ ମରଦନ ବାଣ, ମୂନରେ ପଛେ ଘେନିଯାଉ ପ୍ରାଣ । ୩ ।

(୨୨) ମିଛୁରା ମଉଳି—ବିଚଳିତ ମସ୍ତିଷ, ବସୁନ୍ଧରାଧର—ପର୍ବତ, ମିଳିନ୍ଦ—ଭ୍ରମର,

ମାଧବୀ ମଞ୍ଜରୀ ମନ୍ଦିରେ ବସି, ମହୀ ଚୁମ୍ବିଲା ଶେଫାଳିକା ଖସି
ମଉଳିଲା ମୋ ଫୁଲ ଆଭରଣ, ମଣିଲି ଭଲ ତାତହୁଁ ମରଣ । ୪ ।
ମୁଦିରୋଦୟକୁ ଚାତକପରି, ମୃଗାଙ୍କକୁ ଯେଉଁପରି ଚକୋରୀ
ମାର୍ଗକୁ ଅନାଇଁ ଅନାଇଁ ତାର, ମୋଦ ସରସୀ ଶୁଖିଗଲା ମୋର । ୫ ।
ମେଘ ତା ପଞ୍ଚତରୁ ନବଦଳ, ମସୀ ଅତସୀ ଅସିତ ଉତ୍ପଳ
ମହେନ୍ଦ୍ରମଣି ସୁଖଦ୍ରବ୍ୟ ଯେତେ, ମେଚକ ବିଷପରି ଲାଗେ ମୋତେ । ୬ ।
ମୋ ମନ ତହିଁ ନିପଟ ନ ଥିଲା, ମଣିମଞ୍ଜରୀ ସିନା ଏହା କଲା
ମୋରେ ଏହା ଅଛି ନିତି ବିରାଗ, ମାରିବି ଅରବିନ୍ଦେ ଆସୁ ଆଗ । ୭ ।
ମଲ୍ଲୀ ନବମାଳିଦଳ ତଳପ, ମନୋଜ୍ଞ ଛାଇ ଫୁଲ ଚନ୍ଦ୍ରାତପ
ମଣ୍ଡାନ୍ତି କୁଞ୍ଜ ଶୋଭା ହେଲା ବାସି, ମନମଥ ହୋଇଗଲା ସନ୍ନ୍ୟାସୀ । ୮ ।
ମଧୁର ଗୁଣ ଯହିଁରେ ଯେତିକି, ମାର କୃପଣ ତହିଁରେ ତେତିକି
ମାନସେ କଲି ମୁଁ ଏ ଅନୁଭବ, ମାନ ସେ ସତ ହେବ କେହି ଜୀବ । ୯ ।
ମତ୍ତ ହୋଇଥାଉଁ ମୋର ଆଶ୍ଳେଷେ, ମନ ଥାଇ ଆଉ ଗୋଟିକ ରସେ
ମାରୁଥାଏ ଆଖି ନଦୀତଟକୁ, ମଙ୍ଗିବି କେହୁ ସେ ବିଟ ଭେଟକୁ । ୧୦ ।
ମୋହନ ସ୍ମିତ ମକର କୁଣ୍ଡଳ, ମୁରଲୀ ମୟୂର ଶିଖଣ୍ଡ ଚୂଳ
ମୋର ନ ପକାଅ ସ୍ମୃତି ପଥରେ, ମରିବିଟି ମାରି ମୁଣ୍ଡ ପଥରେ । ୧୧ ।
ମୁକୁତା ମଣି ରମ୍ୟ ନାସାପୁଟ, ମର୍ମ୍ମଭେଦକ ଭୃରୂବଲ୍ଲୀ ନାଟ
ମଣ୍ଡିଛି ଦେହେ ଯେତେ ଆଭରଣ, ମାରଣବିଦ୍ୟାର ଉପକରଣ । ୧୨ ।
ମୁକୁଟମଣି କିତବଙ୍କର ସେ, ମଇତ୍ରନ ପରି ପାଲଟିଲେ ସେ
ମୁଞ୍ଚ-ଚମ୍ପା ତୁମ୍ଭେ ନିଃସ୍ୱ ପ୍ରସବ, ମଧୁଲିଟପରି ତା ମନୋଭାବ । ୧୩ ।
ମୋଦେ ହସୁଥିବେ ସପତ୍ନୀ ଶ୍ରେଣୀ, ମହତ୍ତ୍ୱ ଗଲେ ଆସିବ କି ପୁଣି
ମହେନ୍ଦ୍ର ସଦୃଶ ରତନ ଦେଲେ, ମହୀମହେନ୍ଦ୍ର ଜଗଦ୍ଦେବ ବୋଲେ । ୧୪ ।



ପରଭୃତ—କୋଇଲି, ମାକନ୍ଦ—ଆମ୍ବଗଛ, ମୁଦିରୋଦୟ—ମେଘ ପ୍ରକାଶ, ମୃଗାଙ୍କ—ଚନ୍ଦ୍ର, ମେଚକ—ଧୂଆଁ, କିତବ—ଖଳ ଲୋକ, ମଇତ୍ରନ—ଅବନ୍ଧୁ ।

# (୨୩)

## ନାୟକ ଚାଟୁ

### ରାଗ—ବଙ୍ଗଳାଶ୍ରୀ

ଧନ୍ୟରେ ଧରଣୀବଧୂ-ମୂର୍ଦ୍ଧାମଣି ଅନ୍ୟରେ ନାହିଁ ନା ତୁଳା
ମନ ମୋହଦାନ-ପଣ୍ଡିତା ଜୀବନ ଧନ, ମୋ ନେତ୍ର ପିତୁଳା ରେ । ୧ ।
ତୋ'ପରି ପୀରତି ପାଳିବାକୁ ରତି-ରସକୁ ଜାଣିବା ପଣେ
ନାହିଁ ନାହିଁ କାହିଁ ନ ଥିବ ଜଗତେ ଜନମ ନୋହିବ ଜଣେ ରେ । ୨ ।
ବାସଗୃହେ ସଜଡ଼ାଇବା ସମୟେ ବାସମୟ କବରୀକି
ବାଞ୍ଛୁଁ ମୋ ବାସନା ସଂଯତ ବସନା ହୋଇ ଚାହୁଁ ଶିଙ୍ଗାରୀକି ରେ । ୩ ।
ପୁରୁଷ ହାତୀଙ୍କି କହ ମୋ ନତିକି ବୋଲି ଧୀରେ ଫରମାସୁ
ହାସକୁ ରଚି ମୋ ପାଶକୁ ପୁନ୍ନାଗଝରା ଶିରେ ଖୋସି ଆସୁ ରେ । ୪ ।
ଲୋଚନେ ଲୋଚନ ମଣ୍ଡିବା ପ୍ରମୋଦ ବଚନେ କି ଯିବ କୁହା
ବଳାରାତି ପୁରୁ ବଳି ଯାଉଥାଏ ବାଳାକୁ ଏ ସର୍ବଂସହା ରେ । ୫ ।
କହିବ ଶ୍ରବଣେ କିଛି ବୋଲି ପ୍ରାଣେଶ୍ୱରୀ ବିଜେ କରି ଦମ୍ଭେ
କମ୍ପାଇ କୁଣ୍ଡଳ ମୋ ଗଣ୍ଡମଣ୍ଡଳ ପୂର୍ଣ୍ଣ କରୁ ସରୁଚୁମ୍ବେ ରେ । ୬ ।
ଭୁଜେ ମୃଦୁ ଭୁଜ ଉରଜେ ଉରଜ ବଦନେ ଶ୍ରୀମୁଖଶଶୀ
ଉରୁଯୁଗେ ଉରୁ ଲଗାଇବା ସରୁ ଶ୍ରୀଅଙ୍ଗେ ମୁଁ ଯାଏଁ ମିଶି ରେ । ୭ ।
କାଟୁଛି କି ରେ ମୋ ସଙ୍ଖାଳି ବୋଲି ମୁଁ ଚାଟୁ ଚିକ୍‌କଣେ ପଚାରୁଁ
ଗଳିଯିବ ପରା ଥାଉ ବୋଲି ହାରାବଳି ଆଡ଼ିଆଇ ଧରୁ ରେ । ୮ ।
ଅଧର ଚିବୁକ ଚକ୍ଷୁ ଚଞ୍ଚରୀକ ଗଣ୍ଡେ ତୋ କଳମା ଦୁଇ
ଚରମ ଚୁମ୍ବି ଚିକୁର ବନ୍ଧଠାରୁ ଚରଣ ଯାଏ ଲମ୍ବଇ ରେ । ୯ ।
କି ଭିଡ଼ରେ ଥାଇ ଆନ୍ଧ୍ରଦେଶୀ ପିନ୍ଧା ନିବିଡ଼ ନିରନ୍ଧ୍ର ନୀବି
ଅଯତନେ ଖସି ଆସିବାରୁ ହସି କି ଲାଜ ଭଜୁ ବାନ୍ଧବୀ ରେ । ୧୦ ।
ଝାମ୍ପୁଁ ମୁଁ ନିମଜ୍ଜି ସୁନ୍ଦର ମଦନ-ମନ୍ଦିର ଚମ୍ପୂ ରସରେ
କମ୍ପୁ କନକ କଦଳୀ ଲତାପରି ପଞ୍ଚକଳମ୍ବର ଶରେ ରେ । ୧୧ ।

(୨୩) ଶିଙ୍ଗାରୀକି—ଶୃଙ୍ଗାରକୁ, ବଳାରାତିପୁର—ଇନ୍ଦ୍ରପୁର, ଚକ୍ଷୁ ଚଞ୍ଚରୀକ—ଆଖିଡୋଳା, କଳମା—ନାରୀଙ୍କ ଗଣ୍ଡଦେଶର କୁନ୍ତଳ, ପଞ୍ଚକଳମ୍ବ—କନ୍ଦର୍ପ, ଧାଟି—ଧାଡ଼ି, କଳହଂସ କଳରୁତ—ରାଜହଂସର କଳଧ୍ୱନି । ଏତା—ଏହା, ନଖ ନଖ—ରାଣ ପକାଇ,

ଚିବୁକ ଧରି ଝୁଲାଇ ଦେଲାବେଳେ ବୁଲାକି ଝୁଲା କି ଦିଶେ
ମୂଲକେ କରିବ ମୂଲ କେ ତାହାର ତ୍ରିଲୋକେ ନାହିଁ ଯେ ଲେଶେ ରେ । ୧୨ ।
କର ଜାଗ୍ରତ ତନୁକୁ ବନ୍ଧୁ ବୋଲି କରଜାଗ୍ରତ ବୁଲାଏଁ
ଫୁଲକୁଣ୍ଡ ଧାଟି ଫୁଟିଦିଶିବାରୁ ପୁଲକାବଳି ବୋଲାଏଁ ରେ । ୧୩ ।
ଟେକି ସମାନ ନ ଥିବା ଉରୁଚେଳ ଗ୍ରହଣାନ୍ତେ, ନାହିଁ ନାହିଁ
କିସ ମା' ମୁଁ ନ ପାରଇଁ ବୋଲିବାର ବାଣୀତୁଲ୍ୟ ସୁଧା କାହିଁ ରେ । ୧୪ ।
ତଳପକୁ ବିଜେ କରାଇବା କାଳେ ଅଳପ ମାଦକ ହାସେ
'କାହିଁକି ଗୋ' ବୋଲି ପଚରା-ମାଧୁରୀ ନାହିଁ, ମଧୁର ସାର ସେ ରେ । ୧୫ ।
ଶପଥ ଶତ ପକାଇ ମୁଁ ରଚନ୍ତେ ସପତତାଳିଆ କେଳି
କି ମାନଇଁ ରାଜଲୋକ ସୁରରାଜ ନୀଳ ନିଭ ଡୋଳା ଖେଳି ରେ । ୧୬ ।
ପାଉଞ୍ଜ ମିଞ୍ଜିର ସିଞ୍ଜିତ ବର୍ଜିତ କଳହଂସକଳରୁତ
ପଡ଼ି ସେହି ତାଳେ ପ୍ରସରିବା କାଳେ କରେ କି ସୁଖ ସମ୍ଭୂତ ରେ । ୧୭ ।
ତଳପେ ଅଳପ ଚରମ ଦେଇ ମୁଁ ଅଙ୍ଗୁଳି ଛନ୍ଦରେ ଟାଣି
ତା' ମୁଁ ନ ଜାଣେଟି ବୋଲୁଁ ବୋଲୁଁ ହଟି ହୃଦ ଲଗାଇବା ଆଣି ରେ ।୧୮ ।
ଓଟାରି ଚଞ୍ଚଳେ ମୋ ଦୂକୂଳାଞ୍ଚଳେ ଶ୍ରୀମୁଖଚନ୍ଦ୍ର ଲୁଚାଉ
ସେହି ତାଳରେ ମୋ ସହୀ ତାଳତୁଲ୍ୟ ଉରଜେ ହାର କଚାଉ ରେ । ୧୯ ।
ଆନ ବେଳେ ଆନ ବୋଇଲେ ହେଁ ପାନ ନକରୁ ମୋ ଓଷ୍ଠ ଲାଜେ
କୁସୁମ କୋଦଣ୍ଡ ଅମଳୁ ମୋ ଗଣ୍ଡ ଉରୁ ଚୁମ୍ବନ ସମାଜେ ରେ । ୨୦ ।
ପୁଣି ଲଭି ଚେତା ମୁଁ ନ ଜାଣେ ଏତା ନଖି ନଖି ବୋଲି ହସୁ
ପୁଲକିତ ଗାତ୍ରେ ମୁକୁଳିତ ନେତ୍ରେ ମଲି ମଲି ଇଷି ଭାଷୁ ରେ । ୨୧ ।
ବିନ୍ଦୁ ବିନ୍ଦୁ ଝାଳ ସୁନ୍ଦର କପୋଳେ ଶ୍ରୀମୁଖ ମଣ୍ଡଳ ଚାହିଁ
ବ୍ରହ୍ମାନନ୍ଦ ସୁଖ ପ୍ରବାହେ ପଡ଼ି ମୋ ବିବେକ ରହଇ ନାହିଁ ରେ । ୨୨ ।
ଦେଖି ଅବ-ଶ୍ୱାସ ଶ୍ରୀଅଙ୍ଗ ଆୟାସ ଜାଣି ପୁଣି ଅବଶ୍ଳେଷେ
ତୋ ପଦ କମଳ ଆଭରଣ ଜାଳ ସିଞ୍ଜିତ ଶ୍ରବଣେ ରସେ ରେ । ୨୩ ।
ରସୁଥାଏ ଚିତ୍ତ ସୁଚିର ସୁରତ ରସ ଯେ ବେଳକୁ ବେଳ
ଛଳେ ସରି ସରି ମଲିଟି ଉଚାରି ପେଲୁ ମୋ ଉରୁ ଯୁଗଳ ରେ । ୨୪ ।
ଉଠ ରଖ ରଖ ବୋଲି ମୋର ଦୁଃଖପାଶୋରା ବିରତି ଲୋଡୁ
କମ୍ପାଇ କଟୀକି କିପାଁ ମୋ କଟୀକି ଉରୁ ଯୁଗେ ଗାଢ଼େ ଭିଡୁ ରେ । ୨୫।
ବାସ ଲାଗିକାଳ ହାସ, ଦନ୍ତ ଚେଲଭିଡ଼ା ଶୋଭାକୁ ଅନାଇଁ
ସୁର ଋଷି ହେଲେ ଦୂରରୁ ମୋହିତ ନିକି ହୋଇଯିବେ ନାହିଁ ରେ । ୨୬ ।

ଅବଶ୍ଳେଷ—ଆଲିଙ୍ଗନ, ଶ୍ରବଅବତଂସ—କାନ ଅଳଙ୍କାର, ସମ୍ଭରି—ପୂର୍ଣ୍ଣ କରି ।

ବିଧୁବଦନା ତୋ ନିଧୁବନ ଶ୍ରଦ୍ଧା ପୁଣି ଜନ୍ମିବାରୁ ହସି
ସଖୀମାନେ ମୋତେ ରଖି ନ ଦେବେ ଯେ ପରିହାସେ ବୋଲି ଭାଷି ରେ ।୨୭ ।
ସାଜିଦେବ କି ଗୋ ଭାଜି ଲିଭିଗଲା ଅଳକୁ ତିଳକ ମୋର
ଏତେ ବୋଲି ମୋର ଉରେ ଆଉଜନ୍ତେ ହୁଅଇ ନୂଆ ତୟାର । ୨୮ ।
ଆଉ ଥରେ ମନ ଅଛିକି ରେ ଘନକୁନ୍ତଳା ମୁଁ ଯେବେ ବୋଲେଁ
ଶ୍ରବ ଅବତଂସ ଇନ୍ଦିବର ହଂସଗମନା ବଞ୍ଚାଉ ଗେଲେ । ୨୯ ।
ସେ ସମୟ ବ୍ୟାଜ କୋପମିଶା ଲାଜ ଚାହାଣୀ ସଖି ମୋ ଆଖି
ଅଙ୍ଗୁଳି ଅଞ୍ଚଳେ ମୋ ଚରମସ୍ଥଳେ ହୋଉ ବୋଲି ଦେଉ ଲେଖି । ୩୦ ।
ଦିନ ଦିନକର ଆରେ ପୀନକର—ଭୋରୁ ତୋ ରସ ଲହରୀ
ସିନ୍ଧୁ ସମୁଦୟ ହେଲେ ମୋ ହୃଦୟ ପାରନ୍ତି ତହିଁ ସନ୍ତରି । ୩୧ ।
ଯେଡ଼େ ଅବଧାନ ମୋଠାରେ ଜୀବନ ବନ୍ଧୁ ତା କହିବି କିସ
ଆପଣା ଜୀବନ ମୋର ଅନୁଗତ ନୋହିଲେ ତା ମଣୁ ବିଷ । ୩୨ ।
ଆଜନ୍ମ ମୁଁ ମହାରାଜନନ୍ଦନା ଯେ ତୋ ସେବାକାରିଣୀ ଜନ
ଅସମର ମୋର ହେଲେ ଜାଣି ତାର ନ କରୁ ଅବଲୋକନ । ୩୩ ।
ତୋଷ ପରିଚିତ ହୋଇ ଯେ ନିରତ କରେ ମୋ ଅନୁସରଣ
ତାହାଠାରେ ଅନୁକମ୍ପା ବାରେ ଘେନୁଥାଏଁ ମୁଁ ତୋ ପ୍ରଭୁପଣ । ୩୪ ।
ହେମଦେହା ରେ ମୁଁ ଯିବିକି ବୋଲନ୍ତେ କେ ମନା କରିଛି ବୋଲି
ମୋ ପିନ୍ଧା ଅଞ୍ଚଳ ଛନ୍ଦି ଧରିଥାଉ କଉତୁକ କଳ୍ପବଲ୍ଲୀ । ୩୫ ।
ଶୁଣି ଅଷ୍ଟଦୁର୍ଗନାଥ ବାଣୀ ସ୍ୱର୍ଗଲଳନା ତୁଳନାବତୀ
ଲଜ୍ଜା ଅନୁରାଗ ଦୁହିଙ୍କ ଆଭୋଗ ଭରେ ହୋଇଲା ଭରତି । ୩୬ ।

•

## (୨୪)

## କିଶୋରୀପ୍ରତି ସଖୀ

### ରାଗ—ଆଷାଢ଼ଶୁକ୍ଳ

କିଶୋରୀ ଏ କିସ ରେ,
କୋପ ତ ଅଜାଡ଼ି ଦେଲୁ ପୀୟୂଷରେ । ଘୋଷା ।
କରିବାରୁ କୋଟି ସଂଖ୍ୟା ଯତନ କରଗତ ହେବା ଚିନ୍ତା ରତନ ।
କାହିଁକି ଫିଙ୍ଗିଦେଲୁ କହ ସତେ କିଞ୍ଚିତ ବିବେକ ନ କରି ଚିତ୍ତେ । ୧ ।

(୨୪) କୁଟୀମ—ମଣିମୁଦ୍ରା, ନିବହ—ସମୂହ, ସିତ—ଧଳା, ସିତା—ଜ୍ୟୋସ୍ନା,

କୋମଳଚରଣ ପରାଣ ହାର କୁଚେ ଲଗାଇବାକୁ ପେଇ ହାର ।
କେହି ସହାୟ ନଥାଇ ସାଥିରେ କୁଞ୍ଜକୁ ବିଜେ କଲୁ ନିଶିଥରେ । ୨ ।
କରିବାକୁ ଯାହା ଶୋଭା ବୀକ୍ଷଣ କୁଟୀମମାନ ଛାଲରେ ଇକ୍ଷଣ ।
କଞ୍ଜ ଖଞ୍ଜୁଥାଉ ପରା ତୁ ବସି କି ଦୋଷୁ ତାକୁ ଦୂର କଲୁ ରୁଷି । ୩ ।
କୁପରାଗ କେଳି କାଳୁ ଅଦମ୍ଭେ କେବଳ ପ୍ରାଣପ୍ରିୟ ସଖୀ ଆମ୍ଭେ ।
କଳେବରକୁ ଛାଇପରି ଭଜି କଳି ନ ପାରିଲୁଁ ତୋର ମରଜି । ୪ ।
କଳା କୁମୁଦ ତମାଳ ଅତସି କସ୍ତୁରୀ ତିଳକ କଜ୍ଜଳ ମସି ।
କମନୀୟ ନୀଳରତନ ଶାଢ଼ୀ କଳା ମାତ୍ର ପରା ନପାରୁ ଛାଡ଼ି । ୫ ।
କୃଷ୍ଣ ଭିନ୍ନ ଯେତେ ଦ୍ରବ୍ୟ ନିବହ କୃଶ ହେବାରୁ ତହିଁ ତୋର ସ୍ନେହ ।
କଳାକର ସିତ ସିତାକୁ ତେଜି କଳାକୂଟକୁ କରୁ ପରା ରାଜି । ୬ ।
କିଛି ହେଲେ ଲାଘବରୁ ନ ଡରି କଳଙ୍କ ଦରିଦ୍ର କୁଳ ପାଶୋରି ।
କରି ଅଭିପ୍ରେତ ଶ୍ୟାମ ପ୍ରୀତିକି କର ଧରି ପରା କହୁ ଦୂତୀକି । ୭ ।
କଳାପି ଚନ୍ଦ୍ରକ ଚାରୁ ମୁକୁଟ କିଶୋରବର ଛଗି ଛଳ ଘାଟ ।
କର୍କଶ କଲୁ କୁଳିଶରୁ ମନ କଲୁ ଯା ନାହିଁ ତୋଳି ଆଲିଙ୍ଗନ । ୮ ।
କନ୍ଦର୍ପ ଦର୍ପ ମଦନ ମୂରତି କିଶୋର ସେ ବିଶ୍ୱନେତ୍ର ସଂପତ୍ତି ।
କହିବାର ପଟୁ ଚାଟୁ ନ ଶୁଣି କୋଣ ନୟନେ ନ ଚାହିଁଲୁ ପୁଣି । ୯ ।
କାମ ଛଳେ ପୁଣି ହୋଇ ଜର୍ଜର କଲେ କୁସୁମଝରା ତୋ ନଜର ।
କଟାକ୍ଷ ପୁଣି ନଦେଲୁ ତେଣିକି କଳି କଲୁ ତୁ ପ୍ରତିହାରିଣୀକି । ୧୦ ।
କୁହାଉ ଥାଉ ପରା ରସବତୀ କୃପାଳୁ ବିବେକିନୀ ମତିମତୀ ।
କିଞ୍ଚିତ କରି ଘେନି କୃଷ୍ଣ ସ୍ନେହ କେଉଁ ଧଇର୍ଯ୍ୟକୁ ବହିଛୁ କହ । ୧୧ ।
କାହାକୁ ଅବା ସେ କୃଷ୍ଣ କି ଦିଶେ କୃଶାଙ୍ଗୀକୁ ମୁଦକଳାନିଧି ସେ ।
କୃତାର୍ଥ ନ କଲୁ ଏ ଯଉବନ କୋଳକରି ଗଣ୍ଡେ ଦେଇ ଚୁମ୍ବନ । ୧୨ ।
କଳପର ଧୃତ ମୃଦୁ ଗାନର କଳପଦ୍ରୁମ ସେ ସୁଖ ଦାନର ।
କୃତାଞ୍ଜଳି ହେଲେ ପୁଣି ପହିଲୁ କୃପଣ ପଣକୁ କିପାଁ ବହିଲୁ । ୧୩ ।
କୁନ୍ତଳ ଦେଶ ଜଗତୀ ଦେବୀର କର୍ଣ୍ଣର ଅବତଂଶ ଇନ୍ଦୀବର ।
କଜ୍ଜଳ ରେଖା ଲୋଚନ ଦ୍ୱୟର କରି କି ସେହିଠାରେ ଅନାଦର । ୧୪ ।
କରି କର୍କଶ କରବାଳ କେଳି କ୍ରୋଧେ କୁସୁମ ଦଳ ଦେଇ ଦଳି ।
କି କୃତ୍ୟ କଲୁ ନିତି କହୁ କହୁ କରମ ବଳବତୀକି ତୁ ନୋହୁ । ୧୫ ।

ପ୍ରତିହାରିଣୀ —ଦାସୀ, ଦ୍ୱାରପାଳିକା, କପର୍ଦୀ—ଶିବ, କିଞ୍ଜଳ୍କ—ଫୁଲରେଣୁ, କରଗୃହାଗ୍ରେ—ହାତ ନଖର ଅଗ୍ରଭାଗରେ, ଝୁମେ—ଟଳମଳ ହୁଏ ।

କାଳ ବିପର୍ଯ୍ୟାସ କି ନ କରଇ କପର୍ଦୀ ପୂଜୁଥାଉ ଯାହା ପାଇଁ ।
କିଶଳୟ କର ଯୋଡ଼ିକି ଯୋଡ଼ି କହିଲେ ଚାଟୁ ଦେଲୁ ମୁହଁ ମୋଡ଼ି ।୧୬।
କିଞ୍ଜଳ୍କଗଉରଦେହା ତୋ ସ୍ନେହେ କଟୀରେ ଶ୍ୟାମ ପୀତପଟ ବହେ ।
କାନ୍ତ ରତନ ନୀଳବସନା ତୁ କାହିଁକି କେଡ଼େ ସ୍ନେହଛାଡ଼ି ମାତୁ । ୧୭।
କମଳ ନେତ୍ର ଅଙ୍କସଙ୍ଗ ବିଧି କୂଳକୁ ଲଘିବା ସୁଖ ଜଳଧି ।
କର୍ପୂରୁଁ ଜାତ ହେଲା ଅଗ୍ନିକଣ କୁମ୍ଭ-ସମ୍ଭବ ହେଲା ତୋ ଦୁର୍ଗଣ । ୧୮।
କନକ କେତକୀ ଦଳ ସଦୃଶ କାୟ କାନ୍ତିପୁଞ୍ଜ କରି ଅଦୃଶ୍ୟ,
କମଳୁଚାଉଛୁ ଅଧର ଦଳେ କୁଚକୁ ତିନ୍ତାଉଛୁ ଅଶ୍ରୁ ଜଳେ । ୧୯ ।
କେଶବ କଲେ ଯେବେ ଅନାଚାର କରଜ କୁନ୍ତେ ତାହାଙ୍କୁ ପ୍ରହାର,
କି ଦୋଷ କରିଛି ରସାରମ୍ଭୋରୁ କରରୁହାଗ୍ରେ ତା ଚରମ ଚିରୁ । ୨୦ ।
କଳ କୋକିଳ ପରଭୃତ ରୁତ କଳାକଳାଂଶୁ ଚନ୍ଦନ ମରୁତ,
କୁସୁମ ବାସ ଆଜି ଯାଇ ପାଡ଼ି କାମ ଧନୁର୍ବାଣ ଗଲାଣି ଛାଡ଼ି । ୨୧ ।
କପାଳ ପରମାଦେ ଝୁମେ ଢଳି କଷାୟିତ କରି ନେତ୍ର ଯୁଗଳି,
କଦମ୍ବଲତା ମନ୍ଦିରୁ ପ୍ରଭାତେ କରିବାର ବିଜେ ନ ରୁଚେ ତୋତେ ।୨୨।
କହିବା କଥା ଏବେହେଲେ ଘେନ କୁତୁକେ ଚାଲ ଭେଟିବା ମୋହନ,
କୁଟୀଳତାକୁ ଧୋଇଦିଅ ସ୍ନେହେ କଳାକର ଅଷ୍ଟଦୁର୍ଗର କହେ । ୨୩ ।



## (୨୫)

# ମାଳଶ୍ରୀ

## ରାଗ—ମାଳଶ୍ରୀ

ମା ଗୋ !

ଜୟ ଜୟ ଜଗଜ୍ଜନନୀ ବାଳା, ଜୟ ମଙ୍ଗଳଦାୟିନୀ ମଙ୍ଗଳା,
ମହେଶ ମହାସୁରତ ଲମ୍ପଟା, ମନ୍ଦାରମାଳାମଣ୍ଡିତ ମୁକୁଟା,
ଚନ୍ଦ୍ର ମାରତଣ୍ଡ ମଣ୍ଡଳ ପ୍ରଚଣ୍ଡ ଧନଞ୍ଜୟ ବିଲୋଚନା ଗୋ ମା,
ଭବନ ଭୟଭାର ବିମୋଚନା । ୧ ।

(୨୫) ସ୍ୟନ୍ଦନାଙ୍ଗ—ଚିହ୍ନ, ମହାମୂରା—ମାଂସାହାରୀ, କୁସୁମ୍ଭା—କୁସୁମଭୂଷିତା,

ମନୋହର କ୍ଷଣପ୍ରଭାରୁଚିରା, ଶଙ୍ଖ ସ୍ୟନ୍ଦନାଙ୍ଗ ତ୍ରିଶୂଳକରା
କଳାନିଧି କଳାକୃତଶେଖରା, ସିଂହବାହିନୀ ଧୃତ ନୀଳାମ୍ବରା,
ମହିଷାଦି ସୁରବିପକ୍ଷ ପ୍ରକର ବିଦଳନ ବିଚକ୍ଷଣା ଗୋ ମା,
ସୁଲକ୍ଷଣା କୃତ ବିଶ୍ୱରକ୍ଷଣା । ୨ ।
ବିଲ୍ୱ ବନିକା-ମଣ୍ଡପ ମଣ୍ଡନା, ଚଣ୍ଡ ଚଣ୍ଡ-ମୁଣ୍ଡ ମୁଣ୍ଡ ଖଣ୍ଡନା
ମକରନ୍ଦ ମନ୍ଦ-ରସ ପ୍ରମତ୍ତା, ରକତ ପାନେ ଆଶକତଚିତ୍ତା,
ମହାଭୟଙ୍କର ପ୍ରବଳ ହୁଙ୍କାରଧ୍ୱନି ଧ୍ୱଂସ ମହାମୂରା ଗୋ ମା,
କୁସୁମ୍ଭା ଲାଲ ବସନ ଭାସ୍ୱରା । ୩ ।
ମୁଣ୍ଡ ମଣ୍ଡଳି-ମାଳିକା ଭୂଷଣା, କରାଳ କରାଳୀ କାଞ୍ଚୀ ଭୀଷଣା
ଶବଯୁଗଳୀ କଳିତ କୁଣ୍ଡଳା, ନିତମ୍ବଚୁମ୍ବୀ ପ୍ରଲମ୍ବ କୁନ୍ତଳା,
ଖଣ୍ଡା ମୁଣ୍ଡବର ଅଭୟ ସୁନ୍ଦର ଚତୁର୍ଭୁଜା ଦିଗମ୍ବରା ଗୋ ମା,
ତନୁଜିତ ନବଘନାଡ଼ମ୍ବରା । ୪ ।
ଅଟ୍ଟାଟ୍ଟହାସ ଜାତ ବାତ ବାଜି, ଉଡ଼ି ଅନ୍ତରୀକ୍ଷେ ଅଚଳରାଜି
ଫଟାଇ ଦେଲେ ବ୍ରହ୍ମାଣ୍ଡ-କଟାହ ଲଭିଲେ ଦିଗ-ମତ୍ତଙ୍ଗଜେ ମୋହ
ମହେଶୀ ମହାମହିମ କଳ୍ପଲତା ମାତଙ୍ଗଗତି ମାତଙ୍ଗୀ ଗୋ ମା,
କ୍ଷୀରୋଦ ଲୋଳ କଲ୍ଲୋଳ ଅପାଙ୍ଗୀ । ୫ ।
ଦନ୍ତ ପ୍ରକଟ କଟକଟ ରବ ଝାଡ଼ିଲା ଗିରିବରୁ ମହାଗ୍ରାବ
ପ୍ରତ୍ୟାଲୀଢ଼ ତୋ ପଦ ଜଳ ତଳ କଲା ଯା ଭୂମଣ୍ଡଳ ଟଳମଳ,
କମ୍ପିଲେ ମଣ୍ଡୁକନାଥ ରେ ଚଣ୍ଡକା ଜନ୍ମିଲା ମହା ଅଦ୍ଭୁତ ଗୋ ମା,
ରଣ-ରସିକା ତ୍ରିଜଗତ ମାତ । ୬ ।
କେଉଁ ଦିଗେ ଲହଲହ ରସନା କେଉଁ ଦିଗେ ମୂର୍ତ୍ତି ବିଶେଷ ସେହ୍ନା
ନିନ୍ଦି ନିନ୍ଦି ନବ ଉଦିତ ଇନ୍ଦୁ କେଉଁ ଦିଗେ ଦିଶେ ସିନ୍ଦୂର ବିନ୍ଦୁ,
ଧନୁର୍ବାଣ ଖଣ୍ଡା ଫରିବର ଦରୀ ଗଦା ଚକ୍ର କାତି ଧରି ଗୋ ମା,
ଦଳିଲ ଦନୁଜଙ୍କୁ ବିଶ୍ୱେଶ୍ୱରୀ । ୭ ।
ଦୁର୍ଗା ଦଇତ୍ୟଙ୍କୁ ଦଳିଲା ଘେନି ଜନ୍ମିଲା ତହୁଁ ରୁଧିର-ବାହିନୀ,
କୋଟି କୋଟି ରଥ ଗଜ ତୁରଙ୍ଗେ ପଡ଼ି ଭାସିଲେ ସେ ନଦୀ ତରଙ୍ଗେ
ହର ଆକୁଳ ହେଲେ, ଶିବାକୁଳ ମାତିଲେ ଗୃଧ୍ର ନିଚୟ ଗୋ ମା,
ହେଳେ ହେଲେ ଶୁମ୍ଭ ନିଶୁମ୍ଭ କ୍ଷୟ । ୮ ।

---

ମତ୍ତଙ୍ଗଜ—ହସ୍ତୀ, ମହାଗ୍ରାବ—ମେଘ, ପ୍ରତ୍ୟାଲୀଢ଼—ଆସ୍ୱାଦିତ । ଫରିବର—ବଡ଼ ଢାଲ, ଦରୀ ଗଦା—ଭୟ ଉତ୍ପାଦକ ଗଦା, ଶିବାକୁଳ—ଶୃଗାଳମାନେ ।

ଧୁନ୍ଦୁ ଧୁନ୍ଦୁ ଧୁନ୍ଦୁ ଦୁନ୍ଦୁଭି ରବେ ପୁଷ୍ପ ବରଷିଲେ ଇନ୍ଦ୍ରାଦି ଦେବେ,
ହରିଲ ମହାମାୟା ମହୀଭାର ତୁମ୍ଭ ମହିମା କାହାକୁ ଗୋଚର,
ଅଷ୍ଟଦୁର୍ଗନାଥ ଯୋଡ଼ି ଦୁଇ ହାତ ବନ୍ଦି ଜଣାଉଛି ଏତେ ଗୋ ମା,
ସମୟେ ସ୍ଫୁରୁଥିବ ମୋର ଚିତ୍ତେ । ୯ ।

•

## (୨୬)
## ଝୁମ୍ପା ଚଉତିଶା

କେତେ ଜନ୍ମ ତପ ବିହି କଳା କଳେବର ଚାହିଁ
କୁଳ ପରିପାଳି ପାରିବି ନାହିଁ, ରେ ନିଆଳୀଗଭା,
କହ ମୁଁ ପଶିବି କାହିଁ ? । ୧ ।
ଖିଆଲ ବିଚାରି ଥିଲି ଖୋସାମତ କେତେ କଲି
ଖିଲେ ମାତ୍ର ପାନ ଖୁଆଇ ଦେଲି, ରେ ନିଆଁଳିଗଭା,
ଖଟଣିରୁ ବଳି ଗଲି । ୨ ।
ଗୋଟିଏ ଚୁମ୍ବିଲେ ଗେଲେ ଗଣ୍ଡ ମୋ ଭରତି କଲେ
ଗାଢ଼େ ବାହୁଯୁଗ ଜମାଇଁ ଦେଲେ, ରେ ନିଆଳିଗଭା,
ଗୋଟା ଗଳାଗୁଣ୍ଠା କଲେ । ୩ ।
ଘେନିନେଇ ତହୁଁ ମୋତେ ଘେନାଘେନି କରି କେତେ
ଘଡ଼ିଏ ଯାଏଁ କି କଲେଟି ରତେ, ରେ ନିଆଳିଗଭା,
ଘଟେ ଚେତା ନାହିଁ ସତେ । ୪ ।
ନ ସମ୍ଭାଳି ଟାଉଟାଉ ନୀବି ଫିଟାଉ ଫିଟାଉ
ନାହିଁ ବୋଲିବାକୁ ନୋହିଲା ଆଉ, ରେ ନିଆଳିଗଭା,
ନୂତନର କେତେ ଦାଉ । ୫ ।
ଚୁମ୍ବି ପ୍ରତି ଅପଘନ ଚାଳିବାରୁ ନଖମୂନ
ଚିହିଁକିଲେ ହେଲେ ତହିଁକି ମନ, ରେ ନିଆଳିଗଭା,
ଚାଖିବାକୁ ଛନ୍ନଛନ୍ନ । ୬ ।

(୨୬) ଟାଉଟାଉ—ଚଞ୍ଚଳ, ଝଳିଗଲା—ଝଟକିଲା । ନବନୀତ—ଲହୁଣୀ, ତପତି—ଉତ୍ତାପ, ନଳିକ—ପାଖେଇବା, ଠୋକାଠୁକି—ମିଳିତ ହେବା, ଢୋକାଇ—ଖୁଆଇ, ଧରାଧର—ପର୍ବତ (ଏଠାରେ ସ୍ତନ ଅର୍ଥରେ), ଧକସୁହା—ବ୍ୟଥା ସହ୍ୟକାରୀ, ଧନୁ—ଶରୀର ଅର୍ଥରେ ।

ଛକକୁ ଛକ ଦୋହର ଛନ୍ଦେ ଛନ୍ଦି ରମିବାର
ଛଣା ସୁଧାରୁ ତ ବଡ଼ ମଧୁର, ରେ ନିଆଳିଗଭା,
ଛାଡ଼ିବି କି ସଙ୍ଗ ତାର । ୭ ।
ଜୋଡ଼ାରେ ନ ଥିବ ଭେଦ ଜମାଇଁ ଲଭି ପ୍ରମୋଦ
ଜକାଜକି ରସ କେଡ଼େ ସୁଆଦ, ରେ ଚନ୍ଦ୍ରବଦନା,
ଜାଣଇଁ ତା ନିଜ ହୃଦ । ୮ ।
ଝିଙ୍କାଝିଙ୍କି କରି ଭିଡ଼ି ଝାଳେ ଯାଉଥିବ ବୁଡ଼ି
ଝଳିଗଲା ପରି ଥିଲେ ପହୁଡ଼ି, ରେ ନବନବୀନା,
ଝସଧ୍ୱଜ ଯାଏ ଝଡ଼ି । ୯ ।
ନବନୀତ ମୋ ମାନସ ନ ସହେ ତପତି ଲେଶ,
ନବଘନ ଶ୍ୟାମ ପ୍ରେମ ହୁତାଶ, ରେ ଜୀବର ଧନ,
ନଜିକ ହୋଇଲା ଝାସ । ୧୦ ।
ଟେକି ଦେଲେ ହେଲେ କାଖ ଟିପିଟିପି ଦେଲେ ନଖ
ଟୋପିଟୋପି ହୋଇ ସ୍ରବଇ ସୁଖ ରେ, ମୋ ଜାଇଫୁଲ,
ଟେକି ଲାଜେ ରଖେ ମୁଖ । ୧୧ ।
ଠକ ପଣ ତାର କେତେ ଠଉରାଇଲୁ କି ଚିତ୍ତେ
ଠୋକାଠୁକି ହେବା ପାଇଁ ଏକାନ୍ତେ, ରେ ଜୀବଜୀବନ,
ଠାରିଦେଲେ ନୟନାନ୍ତେ । ୧୨ ।
ଡର ଛାଡ଼ି ଡେରି ଛାତି ଡିଣ୍ଡିମ ବଜାଇ ନିତି,
ଡାକି ଶ୍ୟାମ ତୁଲେ କଲେ ପୀରତି, ରେ ଜୀବନପ୍ରଭୁ,
ଡୁବିଯାଏ ସତେ ଜାତି । ୧୩ ।
ଢୁଳାଇଲା ପରି ହୋଇ ଢୋକେ ଢୋକେ ଓଷ୍ଠ ପିଇ
ଢମ କହିଲା ତୁ ବୋଲିବୁ ନାହିଁ, ମୋ ବାଇଆଣି,
ଢୋକାଇ ଜାଣଇଁ ସେହି । ୧୪ ।
ଅତି ମୃଦୁଳ ଦେହ ସେ ଅତସି ଫୁଲକୁ ହସେ
ଅନିଳ ଅତର ପରାଏ ମିଶେ, ଜାଇଫୁଲ ରେ,
ଆଲିଙ୍ଗନେ ଯେବେ ରସେ । ୧୫ ।

---

ବାଳିଶା—ନିର୍ବୋଧ ସ୍ତ୍ରୀ, ଅନାରତ—ଦୁଃଖହୀନ, ବାଇ—ପାଗଳ । ଶମନ ଭଗିନୀ—ଯମୁନା,

ତପତି ମଦନେ ହେବା, ତଟିନୀ ତଟେ ପଡ଼ିବା
ତରୁଣୀ ତନୁ ସଫଳ କରିବା, ରେ ମୋ ରସବତୀ,
ତମାଳ ତଳକୁ ଯିବା । ୧୬ ।
ଥାଏ ମନେ ମୋ ଏ ଭାବ ଥାପି ବେଳ ବୁଝିଯିବ
ଥରେ ଯେବେ ଓଷ୍ଠ ଚଖାଇ ଦେବ, ରେ ରୁଚିକସ୍ତନା,
ଥୁ ଥୁ କରି ପିଙ୍ଗି ନେବ । ୧୭ ।
ଦରହାସ କି ସୁନ୍ଦର ଦୁଇଅର୍ଥ ଚାଟୁଣୀର,
ଦେଖୁଥିଲେ ଦୁଃଖ ଯାଏ ପାଶୋର, ରେ ସେବତୀଝରା,
ଦୁଃଖ ସଙ୍ଖାଳି ସେ ମୋର । ୧୮ ।
ଧରାଧର ଦୁଇଗୋଟି, ଧରାଧରି କଲେ ହଟି,
ଧଇଁସଇଁ ସେ କି ହୁଏ ମୁଁ ଫୁଟି, ରେ ନବଅବଳା,
ଧକସୁହା ମୋ ଧନୁଟି । ୧୯ ।
ନବୀନ ବୟସୀ ଚାରୁ— ନଖ ମୁନ ମାରୁ ମାରୁ,
ନିଶ୍ଚୟ ତୋ ଦେହ ଶିଳା କି ଦାରୁ, ରେ ନୂଆ ନିଆଳି,
କେତେ ନାହିଁ ନାହିଁ କରୁ । ୨୦ ।
ପିଲାଦିନୁ ପିତା ଯେତେ ପିଇଥାଇ ଧାଈ ହାତେ
ପହିଲି ପାହାରୁ ନରଖେ ଚିତ୍ତେ, ରେ ଚନ୍ଦ୍ରବଦନା,
ପୁରୁଷ ମାଧୁର୍ଯ୍ୟ ସତେ । ୨୧ ।
ଫେରାଇ ନୟନ ଚାହିଁ ଫନ୍ଦାଇ ବିନୟ କହି
ଫୁଟିବା ଯାଏ ତ ରଖିଲା ନାହିଁ, ରେ ମୀନନୟନା,
ଫାଙ୍କିବାକୁ ବେଳ କାହିଁ ? । ୨୨ ।
ବିଟପୀ ନୋହିବି ବୋଲି ବଡ଼ ଧଇର୍ଯ୍ୟରେ ଥିଲି
ବନମାଳ ବାସ ତହିଁ ପାଇଲି, ରେ ନବଛଇଳୀ,
ବାଳିଶାରୁ ବଳିଗଲି । ୨୩ ।
ଭଲ ଦିଶୁ କି ନ ଦିଶୁ ଭର୍ତ୍ସନା କରନ୍ତୁ ଶାଶୁ
ଭରୁ ଭଙ୍ଗ ନାହିଁ ଭଗାରି ହସୁ, ରେ ନୂଆ ଖିଆଲୀ,
ଭ୍ରମେ ନୀଳମଣି ବସୁ । ୨୪ ।

ଷଟପଦ ଯୁବା—ତରୁଣ ଭ୍ରମର, ସବୁରି ନେତ୍ରର ଗିରି—ସମସ୍ତଙ୍କ ଆଖିରେ ବଡ଼, କ୍ଷୀରୋଦନନ୍ଦନା-ପତି—ବିଷ୍ଣୁ ।

ମଞ୍ଜେ ହୋଇଥାଇ ଜାତ କରିବା କଥା ତ ସତ
ମଦନମୋହନ ଶ୍ୟାମ ଅମୃତ, ରେ ନୂଆରଙ୍ଗିଲା,
ମଜ୍ଜିଥିବି ଅନାରତ । ୨୫ ।

ଯତ୍ନେ ହେଳା ନ କରିବା ଯମୁନାକୁ ଯାଉଥିବା,
ଯଦୁନାଥଙ୍କୁ ଯେବେ ନ ପାଇବା, ରେ କଳସସ୍ତନା,
ଯୋଗୀ ହୋଇ ସତେ ଯିବା । ୨୬ ।

ରସରେ ରସ କେବଳ ରସବଶଟି ମଣ୍ଡଳ,
ରଖ ରମଣୀର ଜନମଫଳ, ରେ କୁନ୍ଦରଦନା,
ରସିକକୁ କରି କୋଳ । ୨୭ ।

ଲତା ଲତା ଦଳିଦଳି ଲୁଚି ଲୁଚି ବୁଲିବୁଲି
ଲାବଣ୍ୟ ପୁଞ୍ଜକୁ ଲତାଇ ଦେଲି, ରେ କୁନ୍ଦରଦନା,
ଲମ୍ପଟିଟା ବୋଲାଇଲି । ୨୮ ।

ବସାଉ ବସାଉ ବଳେ ବସନ୍ତେ ମୁଁ ଶ୍ୟାମ କୋଳେ
ବଡ଼ ସୁଖ ଦେଇ ନିତମ୍ବ ତଳେ, ରେ ମନମୋହନା,
ବାଇପରି କିସ ଖେଳେ । ୨୯ ।

ଶମନ ଭଗିନୀ ବଣେ ଶପଥ ପକାଇ ପଣେ
ଶିଖଣ୍ଡ ଲଗାଇ ମୋର ଚରଣେ, ରେ ଜୀବର ସଙ୍ଗୀ,
ଶରଣ ବୋଲନ୍ତି କେଣେ । ୩୦ ।

ସ୍ନେହକୁ ମୁକୁତା ହାର ସମାନ ଘେନି ତାହାର
ସମର୍ପି ଦେଇଛି ଶରୀର ମୋର, ରେ ଛଇଳାମଣି,
ସୁନ୍ଦରକୁ ଅଗୋଚର । ୩୧ ।

ଷଟ୍‌ପଦ ଯୁବା ପରି ସନ୍ତୋଷେ ବନେ ବିହରି,
ସହସ୍ରେ ସର୍ଜିବି ହୋଇ ଥାଉ ହରି, ଛଇଳାମଣି,
ସବୁରି ନେତ୍ରର ଗିରି । ୩୨ ।

ହରି ହରି ହରି ହରି ହରି ହରି ହରି ହରି
ହରିବେ ଯେ ଦୁଃଖ ଭବଲହରି, ରେ ପୃଥୁଳସ୍ତନା,
ହସିହସି ଯିବା ତରି । ୩୩ ।

କ୍ଷୀରୋଦ-ନନ୍ଦନା-ପତି, କ୍ଷିତି ଆଦି ଲୋକଗତି
କ୍ଷମାନାଥ ଜଗଦ୍ଦେବ ଭାରତୀ, ରେ ଜୀବନପ୍ରଭୁ,
କ୍ଷଣେ ହେଁ ନିଅନ୍ତୁ ସ୍ତୁତି । ୩୪ ।

●

# (୨୭)
# ଫଳ ମନାସ

## ରାଗ—ବଙ୍ଗଳାଶ୍ରୀ

ଦ୍ରାକ୍ଷା ଜାମି କରମଙ୍ଗା ନାଗରଙ୍ଗ ନାରଙ୍ଗ ଟଭା ରସାଳ
ଅମୃତଭଣ୍ଡା ଗୋଲାପଜାମ ଗୁଆ ବରକୋଳି ସୀତାଫଳ । ଘୋଷା ।
ଜମ୍ବିଳ କରୁଣା ଫପସ ମାରିସ ଲେମ୍ବୁ ସହିତେ ଷୋଡ଼ଶ
ଏତେ ଜାଣି ଫଳୁଁ ସୁନା କମଣ୍ଡଳୁସ୍ତନା ଗୋଟିଏ ମନାସ ।। ୧ ।।
ଅମୃତଭଣ୍ଡା ଡାଳିମ୍ବ ନାରୀକେଳ ଟଭା କମଳା ଜମ୍ବିଇ
ଫପସ ମାରିଶ ରସାଳ ପଣସ ଜାମି ନାରଙ୍ଗ ଅଙ୍ଗୁର ।
ଗୁଆ ସପୁରୀ ଖର୍ଜୁର ବେଲ ମିଶି ଷୋଳ ଏ ଫଳ ନିବହ
ତୁ ଯାହା ମାନସେ ଚିନ୍ତିଲୁ ଧନ ସେ ଏ ପଦେ ଅଛି କି କହ ।। ୨ ।।
ଗୋଲାପଜାମ ଖର୍ଜୁର ବରକୋଳି ଅମୃତଭଣ୍ଡା ଜମ୍ବିର
ଗୁଆ ଟଭା ଜମ୍ବୁ କମଳା ଡାଳିମ୍ବ କରୁଣା ତାଳ ଅଙ୍ଗୁର ।
ଦ୍ରାକ୍ଷା ଲଙ୍କା ଜାମ ନାରଙ୍ଗ ସହିତେ ଲେଖା ହୋଇଲା ଷୋଡ଼ଶ
ତୁ ମନେ ବିଚାରିବାର ଫଳ ଗୋରୀ, ଏଥିରେ ଅଛି କି ଭାଷ ।। ୩ ।।
ବେଲ ବରକୋଳି ଫପସ ମାରିଶ ଗୁଆ ତାଳ ନାରୀକେଳ
କଦଳୀ ଲଙ୍କା ଜାମ ଲେମ୍ବୁ କରୁଣା ନାରଙ୍ଗ ଯେ ରାମଫଳ
ଖର୍ଜୁର ନାରଙ୍ଗ ଡାଳିମ୍ବ ଗୋଲାପଜାମ ମିଶି ହେଲା ଷୋଳ
କହ ଧନ ଧୀରେ ଅଛି କି ଏଥିରେ ତୁ ଚିତ୍ତେ ଚିନ୍ତିବା ଫଳ ।। ୪ ।।
ଫପସ ମାରିଶ ବେଲ ଲଙ୍କା ଜାମ ଗୋଲାପଜାମ ଅଙ୍ଗୁର
ଦ୍ରାକ୍ଷା କଇଁ ସପୁରୀ ବରକୋଳି ଅମୃତଭଣ୍ଡା ଖର୍ଜୁର ।
ରାମଫଳ କରମଙ୍ଗା ଜାମି ତୁଲେ ଷୋଡ଼ଶ ନାରଙ୍ଗ ମିଶି
ଅଛି କି ଏ ଷୋଳ ଭିତରେ ଯେ ଫଳ ଅଛୁ ତୁ ଯାହା ମନାସି ।। ୫ ।।

# ଫଳ ମନାସର ଉତ୍ତର

## ରାଗ—ଘଣ୍ଟାରବ

ଚଳସଫଂରୀ ଇକ୍ଷଣା—ନିଧୁବନ ବିଚକ୍ଷଣା
କବିତା ପଣ୍ଡିତା ମନାସିଲୁ ସୀତାଫଳ ହେଲା ମୋତେ ଜଣା । ୧ ।
କେଳଟୀ ରମ୍ଭା ସଦୃଶୀ—ଯୁବ-କଳକଣ୍ଠ ଭାଷୀ
ଘନ ସରି ନୀଳକୁନ୍ତଳା ମାନସେ ପଣସ ଅଛୁ ମନାସି । ୨ ।

ପସାଗଞ୍ଜପା ଲାଳସା—ମସାର ସଦୃଶ କେଶା
ରସାଳସା ନିଶ୍ଚେ ରସାଳ ବିଚାର ତୋ ଚିତ୍ତେ କରିଛି ବସା । ୩ ।
କମ୍ବୁକଣ୍ଠୀ ବରାରୁହା—ଜମ୍ବୁନଦ ଗୋରା ଦେହା
ଜମ୍ବୁଫଳ ତୋର ଚିତ୍ତର ଭିତର ମଣ୍ଡିଛି ଜାଣିଲି ଏହା । ୪ ।
ଶାରଦା-ସଙ୍ଗୀତ ସଭା—ନୟନ ରଞ୍ଜନ-ପ୍ରଭା
ମହୀ ମହିଳାର ମଉଳି ଚମ୍ପକଗଭା ତୁ ବାଛିଚୁ ଟଭା । ୫ ।
ରମଣୀ ମଣ୍ଡନ ଶୀରି—ରମଣୀୟ ହେମଗୋରୀ
ନିତି ସ୍ନେହ ଘେନା ମାନସରେ ସିନା କମଳା ଅଛୁ ବିଚାରି । ୬ ।
କୁମ୍ଭିରାଜ କୁମ୍ଭସ୍ତନା—ଗମ୍ଭୀର ସରସ ମନା
ଜମ୍ବିଳକୁ ଚିତ୍ତେ ଚିନ୍ତିଛୁ ତୁ ମୋତେ ଗେଲେ ଲୁଚାଉଛୁ ସିନା । ୭ ।
ମଦଲୀଳା ଗଜଗତେ—ବିଦଳିତ କୁନ୍ଦସ୍ମିତେ
କଦଳୀ ତ ଚିତ୍ତେ ଚିନ୍ତିଛୁ ନାହିଁ କି କହି ଦେଉ ନାହୁଁ ମୋତେ । ୮ ।
ଅମ୍ବୁରୁହ ବାସବତୀ—ଅମ୍ବୁଦ କେଶୀ ସୁଦନ୍ତୀ
ଲେମ୍ବୁ ଫଳ ସିନା ସରସହସନା ତୋ ମନେ କରିଛି ସ୍ଥିତି । ୯ ।
ମଧ୍ୟ ବିଜିତ କେଶରୀ—ପରିଣତ ବିମ୍ବାଧରୀ
ବାରି ଖେଳ ରସ ରସିକା ତୋ ହୃଦେ ନାରୀକେଳ ଥିଲା ପରି । ୧୦।
ନାଗରାଜଗତି ଧନ—ନାଗରୀ ଶିର ରତନ
ସାଗର ତନୟା ଲୀଳାବସତୀ ତୁ ନାଗରଙ୍ଗେ ଦେଲୁ ମନ । ୧୧ ।
ପରିଣତ ଚନ୍ଦ୍ରମୁହାଁ—ମାଳତୀ ଦେହା ମୋ ସହୀ
ତାଳ ତୋ ହୃଦରେ ଅଛି ବୋଲି ଅତି ବାଳକେ ତ ଦେବେ କହି । ୧୨ ।
ମଜ୍ଜାରେ ରଖି ଗୋ ସ୍ନେହ—ଲଜ୍ଜାରୁ ଛାଡ଼ି ଆଗ୍ରହ
ଅରୁଣାଧରା ତୋ ହୃଦୟ ସ୍ଥଳରେ କରୁଣା ନାହିଁ କି କହ । ୧୩ ।
ସ୍ନେହ ଜରଜର ଚିତ୍ତେ—ଅକପଟେ କହ ମୋତେ
ବିମ୍ବାଅଧରା ଡାଳିମ୍ବ ତୁ ମାନସେ ମନାସିଅଛୁ କି ସତେ । ୧୪ ।
ଲାଜ କାହିଁକି ବନ୍ଧୁଆ—ମୋ ସନ୍ଦେହ-ପଙ୍କ ଧୁଆ
ଦଶବରଷୁଁ ତ ରସମୟ ହୃଦେ ଗୁଆ ହୋଇଥିବ ଥୁଆ । ୧୫ ।
ମଦନପ୍ରିୟ ବସନା—କୁନ୍ଦ-ସୁନ୍ଦର ଦଶନା
କୃଇ ଠଉର ନ ପଡ଼ି ରହିଲା କି କଇଁଠ ଚିନ୍ତିଛୁ ସିନା । ୧୬ ।
ତୋ ହୃଦରେ ଥିବା ବେଲ—ମୋ ହୃଦେ ଲଦିଲେ ଭଲ
ଦୂରରୁ ମର୍ମ୍ମ ଯା ବିଦାରେ ବେଲ ସେ ନୁହଇ ବିଚିତ୍ର ଛେଳ । ୧୭ ।

ପବିତ୍ର ପୀଠରେ ଥାଇ—ସ୍ତବ କବଚାଦି ଗାଇ
ଜପ ସହସ୍ର ମୁଁ କରିଛି ତୋ ହୃଦ ଫପସ ମାରିଶ ପାଇଁ । ୧୮ ।
ଅଙ୍କାରଙ୍କାର ମୋ ଧନ—ଲଙ୍କା ଜାମରେ ତୋ ମନ
ଖେଳୁଛି ପ୍ରବୀଣା ହୋଇଲା ଯେ ଜଣା କି ବେଗେ କହିଲି ଘେନ । ୧୯।
ହର-ମନୋହର ବେଶା—ପରମ ରସିକା ଭୂଷା
କରମଙ୍ଗା ମନେ ବିଚାରିଛୁ ତୁହି କହିଲାଣି ମନ୍ଦହସା । ୨୦ ।
ଶୃଙ୍ଗାର ଆଖେଟ ମହୀ—ଭୃଙ୍ଗାଳିକେଶା ମୋ ସହୀ
ସପୂରୀ ତ ପୂରି ଅଛି ତୋ ମାନସେ ହଉ ବୋଲି ଦିଅ କହି । ୨୧ ।
ଯାମିନୀନାଥ ବଦନା—କାମିନୀ ମଣ୍ଡଳ ସୁନା
ଜାମି ନିଳୟ ତୋ ମନ ହେଲା ହଂସଗମନୀ ନ କହୁ ସିନା । ୨୨ ।
ଅଳପ ଯାହା ହସିଲୁ—ମୋ ସନ୍ଦେହ ବିନାଶିଲୁ
କର-କୋକନଦ ଶୋଭିନୀ ମନେ ତୁ ବରକୋଳି ବିଚାରିଲୁ । ୨୩ ।
ଦକ୍ଷା ତପନୀୟ ଗୋରୀ—ପ୍ରଖ୍ୟାତ ଲାବଣ୍ୟଶୀରି
ସାକ୍ଷାତ ରତିମୂରତୀ ତୁ ଚିତ୍ତରେ ଦ୍ରାକ୍ଷା ତ ଅଛୁ ବିଚାରି । ୨୪ ।
ଜଣାଉଛି ସନ୍ନିଧାନେ—ବନ୍ଧୁ ଶୁଣ ସାବଧାନେ
ମଞ୍ଜୁଳ ମଞ୍ଜିର ଚରଣ ତାଙ୍କର ବିଚାରିଅଛୁ ତା ମନେ । ୨୫ ।
ଦର୍ପକ ଦର୍ପଣମୁହୀଁ—ମୋ ଠାରୁ ନାହିଁ ତୋ ସ୍ନେହୀ
ଅନୃତ ନ କହ ଅମୃତଭଣ୍ଡା ତୁ ମନାସି ଅଛୁ କି ନାହିଁ । ୨୬ ।
କାମଫଳଦାତ୍ରୀ ଧନ—ରାମଫଳେ ତୋର ମନ
କମ ଫଳକ କମନୀୟ ନିତମ୍ବା କହିଲି କି ନାହିଁ ଘେନ । ୨୭ ।
ବିଚାରିଛୁ କ୍ଷୀରକୋଳି—କହିଲି କିଛି ନ ଭାଳି
ମୋହପରି କହିପାରିବୁ ରେ ସହି କର ମୋହପରି କେଳି । ୨୮ ।
ସୁଲାବଣ୍ୟ ମଣି ଖଣି—ଗୋଲାପ ଜାମୁକୁ ଘେନି
ଖେଳେ ଚିତ୍ତ ତୋର ଘେନ ପ୍ରାଣମିତ ମୁଁ କେମନ୍ତ ଅନୁମାନୀ । ୨୯ ।
ବର୍ଜିତ ଦୁର୍ଗୁଣ ଶ୍ରେଣୀ—ନିର୍ଜିତ ସୁରରମଣୀ
ଅର୍ଜୁନାମ୍ବୁଜ ସୁବାସିନୀ ମନେ ଖର୍ଜୁର କି ଅଛୁ ଆଣି । ୩୦ ।
ମୋ ହୃଦୟ ମୃଗପାଶି—ବିଶ୍ୱମୋହନ ବିଳାସୀ
ହାରରାଜି ରାଜି ସ୍ତନ ମଣ୍ଡଳା ତୁ ନାରଙ୍ଗ ଅଛୁ ମନାସି । ୩୧ ।
ସଦା ମଧୁରାଙ୍ଗୀ ବାଳା—ସଦା-ମସ୍ତକ ମଣ୍ଡଳା
ବାଦାମ୍ବ ଫଳରେ ମଦାଳସା ତୋର ମାନସ ରଚିଛି ଖେଳା । ୩୨ ।

ବସୁଦୁର୍ଗ ଧରଣୀଶ—ବସୁଧା ମଣ୍ଡନ ଯଶ
ଚଞ୍ଚଳ ମଞ୍ଜୁଳ-ନେତ୍ରା ଘେନାଇଲେ ଫଳ ମନାସର ରସ । ୩୩ ।

●

## (୨୮)
# ଫୁଲ ମନାସ

### ରାଗ—ବଙ୍ଗଳାଶ୍ରୀ

ଅଲାର ବଧୂଲୀ ଜବା କଳାମଲ୍ଲୀ ଛୁରୀଅନା କନିଅର
ବଉଳ ମାଳତୀ ଚମ୍ପକ ନିଆଳି କଲାଇଟଳା ଟଗର ।। ୧ ।।
ଗଙ୍ଗଶିଉଳୀ ପୁନ୍ନାଗ ବିଳାସିନୀବର ରେ ଏ ପଞ୍ଚଦଶ
ତରାଟ ମିଶି ଷୋଳ ହେଲା ଏଥିରୁ ଗୋଟିଏ ଫୁଲ ମନାସ ।। ୨ ।।
ଗୋଲାପ କରବୀର ଯୁଇ ମାଳତୀ ଚମ୍ପକ କଲାଇଟଳା
ପୁନ୍ନାଗ ଗଂଗଶିମୂଳୀ ଜାଇ କୁନ୍ଦ ସେବତୀ ନନ୍ଦନା ଅଁଳା ।। ୩ ।।
କନିଅର ଜୁଇ ବଉଳ ମିଶାଇ ଷୋଳ ଏ ଫୁଲ ସମୂହ
ତୁ ଯାହା ମନାସିଅଛୁ ମୃଦୁଭାଷୀ ଏଥିରେ ଅଛି କି କହ ।। ୪ ।।
କଲାଇଟଳା ଚମ୍ପକ କନିଅର କଞ୍ଚନ ଯେ କରବୀର
ରଂଗଣୀ ଗଂଗଶିଉଳୀ ବନ୍ଧୁଜୀବ ଅଲାର ଫୁଲ ପନିର ।। ୫ ।।
ଗୋଲାପ ମାଳତୀ ପୁନ୍ନାଗ ତରାଟ ନନ୍ଦନା ନିଆଳୀ ସୂନ
ଏ ଷୋଳ ଭିତରେ ତୋ ମନାସ ଫୁଲ ଅଛି କି କହ ମୋ ଧନ ।। ୬ ।।
କିଆ କର୍ଣ୍ଣିକାର ସମଲି ଅଲାର ଚମ୍ପା ଜାଇ ଛୁରୀଅନା
ଗୋଲାପ ମାଳତୀ ଅଁଳା ଅରବିନ୍ଦ ଗଂଗଶିଉଳୀ ନନ୍ଦନା ।। ୭ ।।
କଞ୍ଚଣ ସେବତୀ ତରାଟ ମିଶିଲେ ହେଲା ଏ ଷୋଡ଼ଶ ଫୁଲ
ଧନ ତୁ ମାନସେ ବିଚାରିବା ଫୁଲ ଏଥିରେ ଅଛି କି ବୋଲ ।। ୮ ।।
ନିଆଳୀ ବଉଳ ଚମ୍ପେଲ ଚମ୍ପକ କିଆ କୁନ୍ଦ ଇନ୍ଦୀବର
କର୍ଣ୍ଣିକାର ଅଁଳା ପୁନ୍ନାଗ ସେବତୀ ନନ୍ଦନା ଫୁଲ ପନିର ।। ୯ ।।
ଗଂଗଶିମୂଳୀ ଟଗର ତରାଟ ଏ ଷୋଡ଼ଶ ତ ସଂଖ୍ୟା ଫୁଲେ
ମୋରେ ଅନୁଗ୍ରହ ରଖି ବନ୍ଧୁ କହ ତୁ ଚିନ୍ତିବା ଫୁଲ ଥିଲେ ।। ୧୦ ।।

# ଫୁଲ ମନାସ ଉତ୍ତର

## ରାଗ—ସାରଙ୍ଗ

ଜାଣିଲି ରେ ସୁଦଶନା,
ଜବା ତୁ ମନାସିଛୁ ମନେ ସିନା ରେ,
ଜନ୍ମୁ ତ ନାହିଁ ବାସନା, ମୋ ବନ୍ଧୁ ରେ ।୧।
ବିବିଧ ବିକାଶ ଶୋଭା,
ଜୁଇ କୁସୁମେ କି ବଳିବ ଗଭା ରେ,
ବିଶେଷେ ହେବ ଅଶୋଭା, ମୋ ବନ୍ଧୁ ରେ ।୨।
କେଳିକଉତୁକବତୀ,
କୋମଳ ବାସ ମାନସରେ ଚିନ୍ତି,
କନିଅରେ କଲୁ ମତି, ମୋ ବନ୍ଧୁ ରେ ।୩।
ରତିରସ ତରଙ୍ଗିଣୀ,
ସାମନ୍ତାଣୀଗଣ ସୀମନ୍ତମଣି,
ମନାସିଅଛୁ ରଙ୍ଗଣି, ମୋ ବନ୍ଧୁ ରେ ।୪।
ମଧୁର ସରସଭାଷୀ,
ମଧୁଲିଟନୀଳ କୁଞ୍ଚିତକେଶି,
ବଧୁଲିରେ ଅଛୁ ରସି, ମୋ ବନ୍ଧୁ ରେ ।୫।
କଳାବତୀକୁଳ ବର,
କର୍ଣ୍ଣାବତଂସକୁ ହେବ ସୁନ୍ଦର,
କଳପିଛୁ କରବିର, ମୋ ବନ୍ଧୁ ରେ ।୬।
କଳାହକ ଉପମାନ,
କଳାଇଟଳାରେ ଜୀବନ ଧନ,
ବଳାଇ ଅଛୁ କି ମନ, ମୋ ବନ୍ଧୁ ରେ ।୭।
କରି ବିପରୀତେ ରାଜି,
ଦରବିକଶିତହାସୀରେ ଆଜି,
ଅରବିନ୍ଦେ ଦେବି ସାଜି, ମୋ ବନ୍ଧୁ ରେ ।୮।
ପରିଣତ ଚନ୍ଦ୍ରାନନା,
କେଳିବନ ଦିଗେ ଅଳପ ଅନାଁ,
ପୂରିଅଛି ଛୁରିଅନା,ମୋ ବନ୍ଧୁ ରେ ।୯।

ତୁ ମନେ ବାଞ୍ଛିବା ଜାଇ,
ମୋ ଉରେ ଉରୋଜ ଦେଲେ ମଜାଇ,
ଏବେ ଆଣି ଦେବି ଯାଇ, ମୋ ବନ୍ଧୁ ରେ । ୧୦ ।
ବିଚାରିଛୁ ସିନା ମଲ୍ଲୀ,
ଏବେ ଅଣାଇବି ଲୋକରୁ ବୋଲି,
କରୁଣା କଳପବଲ୍ଲୀ, ମୋ ବନ୍ଧୁ ରେ । ୧୧ ।
ଚଞ୍ଚଳ ନୟନାଞ୍ଚଳା,
କଞ୍ଚନେ ତୋ ଚିତ୍ତ ରଚିଛି ଖେଳା,
ଅଣାଇଁବି ଛାଡ଼ି ହେଳା, ମୋ ବନ୍ଧୁ ରେ । ୧୨ ।
ଭଲା ରଙ୍ଗ ତା'ର ଭାବି,
ଅଲାର ବିଚାରିଅଛୁ ବାନ୍ଧବୀ,
ମଲାରୁ ଅଣାଇଁ ଦେବି, ମୋ ବନ୍ଧୁ ରେ । ୧୩ ।
ମଗାଇବି ଫରମାସି,
ତୁ ଲାବଣ୍ୟଗୁଣ ରସ-ସରସୀ,
ଗୋଲାପ ଅଛୁ ମନାସି, ମୋ ବନ୍ଧୁ ରେ । ୧୪ ।
ତାଳତୁଲ୍ୟ ପୟୋଧରା,
ପାଳଟୀ ବସି ଅଣାଇବେ ପରା,
ମାଳତୀ ମାଳିକା ଝରା, ମୋ ବନ୍ଧୁ ରେ । ୧୫ ।
ଇନ୍ଦୀବର ବରମୁଖୀ,
ଇନ୍ଦୀବର ଅଛୁ ମାନସେ ରଖି,
ନିନ୍ଦିବ ତାକୁ ତୋ ଆଖି, ମୋ ବନ୍ଧୁ ରେ । ୧୬ ।
ନଗରଯାକ ତଲାସି,
ତଗରକୁ ଅଛି ପେଷି, ମୋ ବନ୍ଧୁ ରେ । ୧୭ ।
ଛଣାପୀୟୂଷ ବଚନା,
ଜଣାଗଲାଣି ତୋ ଆଲୋଚନା,
ଅଣାଇଁବି କୁନ୍ଦ ସିନା, ମୋ ବନ୍ଧୁ ରେ । ୧୮ ।
ବଉଳେ ଅଛି ତୋ ଚିତ୍ତ,
ମଉଳେ ଯେବେ ଅତି ସୁବାସିତ,
ଚଉକିତ ବଡ଼ ହିତ, ମୋ ବନ୍ଧୁ ରେ । ୧୯ ।

ସନୀର ନୀରଦ କେଶୀ,
ପନିର ଫୁଲେ ଧନି, ଅଛୁ ରସି,
ବନିରୁ ତୋଳନ୍ତୁ ଦାସୀ, ମୋ ବନ୍ଧୁ ରେ । ୨୦ ।
ଆରେ ତ୍ରିଜଗତୀଶୋଭା,
ନିଆଳୀରେ ହୋଇଅଛୁ ସଲୋଭା,
କି ଆଳି ରଚିବେ ଗଭା, ମୋ ବନ୍ଧୁ ରେ । ୨୧ ।
ଚମ୍ପକକୁ ଅଛୁ ହଟି,
ଅଣାଇଁ ଦେବି ଏବେ କୁଶ-କଟୀ,
ତୁମ୍ଭେ ପାଲଟା ଦେବୁଟି, ମୋ ବନ୍ଧୁ ରେ । ୨୨ ।
ପଚାରେଁ ଚାନ୍ଦମୁହାଁକି,
ପୁନାଗତ ମୁଁ, ମୋ କୋଳେ ବସିବା,
ଆଉ ପୁନ୍ନାଗ କାହିଁକି ? ମୋ ବନ୍ଧୁ ରେ । ୨୩ ।
କି ଆରେ ଜୀବ ଜୀବନ,
ତିଆରି ନାହିଁ କି ମୁଁ ଗତଦିନ,
କିଆରେ ଜାଣି ତୋ ମନ, ମୋ ବନ୍ଧୁ ରେ । ୨୪ ।
ତନୁଦ୍ୟୁତି ଜିତି ସମ୍ପା,
ଥିବ କି ତୋର ଏହି ଅନୁକମ୍ପା,
ଅଣାଇବି ଦିବ୍ୟ ଚମ୍ପା, ମୋ ବନ୍ଧୁ ରେ । ୨୫ ।
ରେ ବତିଶାର୍ଦ୍ଧ ବୟସୀ,
ସେବତୀକି ମନେ ଅଛୁ ମନାସି,
ସେ ବନିବ ଶେଜ ନିଶି, ମୋ ବନ୍ଧୁ ରେ । ୨୬ ।
କଳାବତୀଙ୍କ ରତନ,
ଅଁଳା କୁସୁମରେ ଅବଶ୍ୟ ମନ,
ବଳାଇଛୁ ତୁ ତ ଧନ, ମୋ ବନ୍ଧୁ ରେ । ୨୭ ।
ସ୍ୱର୍ଣ୍ଣସବର୍ଣ୍ଣ ବରନା,
କର୍ଣ୍ଣିକାରକୁ ବିଚାରିଛୁ ସିନି,
କେ କଲା ତହିଁକି ମନା, ମୋ ବନ୍ଧୁ ରେ । ୨୮ ।
ବିରାଟ ପରି ସେ ଦିଶେ,
ତରାଟ ସେ ସିନା ଅଛି ମାନସେ,
ଧରା ତ ଅଛି ବିଶେଷେ, ମୋ ବନ୍ଧୁ ରେ । ୨୯ ।

ମହୀ-ମହେନ୍ଦ୍ର-ନନ୍ଦନା,
ମନେ ଯେ ମନାସି ଅଛୁ ନନ୍ଦନା,
ଉପବନେ ଅଛି ସିନା, ମୋ ବନ୍ଧୁ ରେ । ୩୦ ।
ରଙ୍ଗ ମଧୁର-ଅଧରା,
ଗଙ୍ଗସିମୁଳୀ ବିଚାରିଛୁ ପରା,
ପ୍ରଭାତେ ଦେବି ତା ଝରା, ମୋ ବନ୍ଧୁ ରେ । ୩୧ ।
ତୋ ମନେ କରିଛି ଖେଳା,
ନୀପରେ କି ପୀରତି ବହଳା,
ଥିବାରୁ ପୁଲକ ତୁଳା, ମୋ ବନ୍ଧୁ ରେ । ୩୨ ।
ବସୁଦୁର୍ଗଧରାଧୀଶ,
ରସନିଧିକି ପୂରାଇ ହରଷ,
ରଚିଲେ ଫୁଲ ମନାସ, ମୋ ବନ୍ଧୁ ରେ । ୩୩ ।



## (୨୯)
# ଅଳଙ୍କାର ମନାସ
### ରାଗ—ବରାଡ଼ି

ନଥ ଚାପସରି କିଆପତ୍ରି ଟାଟଙ୍କ ବନ୍ଦିଆ
ଚନ୍ଦ୍ର ସୂର୍ଯ୍ୟ ଚିତା ମଲକଡ଼ୀ,
ଚମ୍ପାକଢ଼ି ମାଳି ହୀରା,-ଦଣ୍ଡୀ ସୁନା ଦୁବଝରା
ହସ୍ତପାଟି ଗୁଜୁରାତିମାଳି ରେ, ଶୋଭାନିଧି ।
ହୀରାବଟୁ ସେବତି ପହଞ୍ଚି-ଗୋଟାକାଚ ପଟାକାଚ
କାଞ୍ଚି ଦଶାବତାର ମାଳିକା, ଶିଖା ମୋହର ମୁଦ୍ରିକା
ମେଖଳା ନବରତ୍ନ ପହଞ୍ଚି ରେ, ଶୋଭାନିଧି । ୧ ।
ଗୁଛ ଝଲକା ଝୁଣ୍ଟିଆ-ରସନାଗର ଗଡ଼ିଆ
ନକ୍ଷତ୍ରମାଳା ପଦକମାଳି
ହରିଡ଼ାମାଳି ପାହୁଡ଼ ଡ଼ଉଁରିଆ ମାଳି
ବଡ଼ଘାଗଡ଼ା ମାଳି ଏ ଭୂଷାବଳି ରେ,ଶୋଭାନିଧି ।

ଲେଖାରେ ହୋଇଲା ଦ୍ୱିଷୋଡ଼ଷ - ଏଥିରୁ ଗୋଟିକୁ ତୁ ମନାସ
କହି ପାରିବି କି ନାହିଁ - ଦର୍ପକଦର୍ପଣମୁହାଁ
ତହିଁରୁ ମୋ ଚାତୁରୀକୁ କଷ । ୨ ।
ଗୁଚ୍ଛ ଝଲକା ମୁକୁତା,—ଝମ୍ପା କିଆପତ୍ରୀ ଚିତା
ଛେଚା କଣ୍ଠିମାଳି ମୋତି ଜାଲି,
ପେଣ୍ଡା ଆମ୍ୱକସି ଶୁଆ,—ଗୁଣା କଙ୍କଣ ବନ୍ଧିଆ
ଚନ୍ଦ୍ରହାରା ତଉଁରିଆ ମାଳି ରେ, ଶୋଭାନିଧି ।
କଣ୍ଟାନଥ ଝୁଣ୍ଟିଆ ମେଖଳା—ରସନା ଘାଗଡ଼ାମାଳି ବଳା
ଚନ୍ଦ୍ରମଲକଡ଼ୀ ଶିଖା, ମୋହର ବସା ମୁଦ୍ରିକା ପଟା ପହୁଞ୍ଚି ମୁକୁତାମାଳା ରେ ।
ପଟାକାଚ ଚମ୍ପାକଳିମାଳି, ଚାପସରି ମାଳି
ଗରଗଡ଼ିଆ, ହରିଡ଼ାମାଳି,
ତଉଁରିଆ ମାଳା ନବ,—ଗ୍ରହ ମୁଦି ନଥ ନବ—
ରତନ ପହିଞ୍ଚି ତୁଲେ ମିଳି ରେ, ଶୋଭାନିଧି
ଗଣନାରେ ହେବ ଦ୍ୱିଷୋଡ଼ଶ—ଏଥୁଁ ଯେଉଁ ଭୂଷାକୁ ମନାସ ।
ମନାସି କିଛି ତୋହର—ଏଥିକି ସେ ଥିଲେ, ମୋର
ପ୍ରାଣବନ୍ଧୁ ଅଛି ବୋଲି ଭାଷ ରେ ।୪ ।
ରସୁଣିଆମାଳି ପଟା ପହିଞ୍ଚି କଙ୍କଣ ଛେଚା—
କଣ୍ଠିମାଳିଖଞ୍ଜା କଡ଼ିଆଳି,
ତାଟଙ୍କ ମୁକୁତା ଝମ୍ପା—ଚାପସରି କଣ୍ଠା ଚମ୍ପା—
କଡ଼ୀ ମାଳି ଚିତାଧାନମାଳି ରେ, ଶୋଭାନିଧି ।
ପଦକମାଳି ମୁକୁତାମାଳା—ପାହୁଡ଼ ବୀରପିତୁଳାମାଳା
ତାହିତ ପହିଞ୍ଚି ଗୋଟା,—କାଚ କାନଫୁଲ ପଟା—
କାଚ ନୂପୁର ଝୁଣ୍ଟିଆ ବଳା ରେ । ୫ ।
ନବଗ୍ରହ ମୁଦି, ଦଶା,—ବତାର ମାଳିକା ଭୂଷା
ନବରତ୍ନ ପହୁଞ୍ଚି ମଣ୍ଡନ,
ମୁକୁତାଜାଲି, ଘାଗଡ଼ାମାଳି ଚନ୍ଦ୍ରସୂର୍ଯ୍ୟ—
ନୀଳମଣି ନାକଚଣା ଚିତ୍ରେ ଘେନ ରେ, ଶେଭାନିଧି ।
ଚଉଁରିମୁଣ୍ଡି, ବନ୍ଧିଆ ମିଶି—ଦ୍ୱିଷୋଡ଼ଶ ହେଲା ରେ, ସୁକେଶୀ
ଏଥି ଭିତରେ ସେ ଭୂଷା—ଅଛି କି ରେ ବରଯୋଷା
ମନେ ଯାହା ଅଛୁ ତୁ ମନାସି ରେ । ୬ ।

ଖଞ୍ଜା ଖଡ଼ିଆଳି ଗର,—ଗଡ଼ିଆ ତାଡ଼ ଗୁଞ୍ଜର
ବାଜବନ୍ଧ ଶତହସ୍ତ ପାଟୀ
ଟାଟଙ୍କ ମୁକୁତା ଝୁମ୍ପା, ଚନ୍ଦ୍ରମଲକଡ଼ୀ ଚମ୍ପା—
କଡ଼ୀମାଳିକା ଅଳକାପାଟିରେ, ଶୋଭାନିଧି ।
କାନଫୁଲ ଗୁଜୁରାତିମାଳି—ମଲକଡ଼ୀ ଡେଉଁରିଆମାଳି
ବନ୍ଦିଆ ଫୁଲଝଲକା—ବୀର ପିତୁଳି ମାଳିକା
ଧାନମାଳି ସୋରିଷିଆ ମାଳି ରେ । ୭ ।
ଗୋଟାକାଚ ପଟାକାଚ ମୁକୁତା କଙ୍କଣ
କାଞ୍ଚି ଦଶାବତାର ମାଳି,
ବନ୍ଧାଇ ଚାରୁ ରସନା—ଝୁଣ୍ଟିଆ ପାହୁଡ଼ ସୁନା—
ନୂପୁର ମେଖଳା ଭୂଷାବଳି ରେ, ଶୋଭାନିଧି ।
ଚନ୍ଦ୍ରମୁଖୀ ଛବିଳ ଛଇଳା—ଲେଖାରେ ଏ ଦ୍ୱିଷୋଡ଼ଶ ହେଲା
ତୁ ମନାସିବା ମଣ୍ଡନ—ଏଥି ଅଛି କି ରେ ଧନ
କହ କହିବି କି ନାହିଁ ଭଲା ରେ । ୮ ।
ଚାପସରି ସୋରିଷିଆ ମାଳି, ମାଣିକ୍ୟ ଝୁଣ୍ଟିଆ
ହୀରାଦଣ୍ଡୀନଥ ଶୁଆଗୁଣା,
ଶିଖାମୋହର ମୁଦ୍ରିକା—ରସନାପତ୍ର ଝଲକା
କଣ୍ଠା ନୀଳମଣି ନାକଚଣା ରେ, ଶୋଭାନିଧି ।
ଧନମାଳି ସେବତୀ ପହିଞ୍ଚି—ବୀରପିତୁଳିମାଳିକା କାଞ୍ଚି,
ଗୁଜ୍‌ରାତି ମାଳି ଛେଚାକଣ୍ଠି ମାଳି
ସେରାପଚା ପହିଞ୍ଚି ନବରତ୍ନ ପହିଞ୍ଚି ରେ । ୯ ।
ଅଂଗୁଷ୍ଠରତ୍ନ ମୁଦ୍ରିକା—ଦଶାବତାର ମାଳିକା
ଲହରୀଚୁଡ଼ି ଡଉଁରାମାଳା,
ରମ୍ଭାକଡ଼ୀମାଳି ହୀରାବଟୁ ମୁଦ୍ରିକା ଘାଗଡ଼ାମାଳି
ନବଗ୍ରହମୁଦି ମେଖଳା ରେ, ଶୋଭାନିଧି ।
ପାହୁଡ଼ ନୂପୁର ସୁମେଖଳା—ବତିଶ ଏ ମିଶି ହେଲା ବଳା,
ତୁ ମାନସରେ ବିଚାର—କରିଥିବା ଅଳଙ୍କାର
ଏଥିରେ ଅଛି କି ନାହିଁ ବାଳାରେ । ୧୦ ।

ବାହୁବନ୍ଧ, ପଟାକାଚ, ହସ୍ତପାଟି ଗୋଟାକାଚ
ମୁକୁତାକଙ୍କଣ ମୁଣ୍ଡାମାଳି
ଗୁଞ୍ଜର ଗରଗଡ଼ିଆ ଲହରୀଚୁଡ଼ି ଝୁଣ୍ଟିଆ
ହୀରାବଟୁ ରସୁଣିଆ ମାଳି ରେ, ଶୋଭାନିଧି,
ନବରତ୍ନ ପହିଞ୍ଚି ପାହୁଡ଼—ଶିଖା ମୋହର ମୁଦ୍ରିକା ତାଡ଼
ନକ୍ଷତ୍ରମାଳା ମୋହନମାଳି ଅଙ୍ଗୁଷ୍ଠ ରତନ—
ମୁଦି ଚନ୍ଦ୍ରହାରା ନାହିଁ ହୁଡ଼ ରେ । ୧୧ ।
ନବଗ୍ରହମୁଦି କାଚ—ସେବତୀଫୁଲ ପହିଞ୍ଚି
ପଚା ପହିଞ୍ଚି ପଦକମାଳା,
ମଞ୍ଜୁ ଖଞ୍ଜା କଡ଼ିଆଳି—ରସନା ହରିଡ଼ାମାଳି
ନୂପୁର ଚନ୍ଦାଇ ମରି ବଳାରେ, ଶୋଭାନିଧି,
ଦ୍ୱିଷୋଡ଼ଶ ଏ ମେଖଳା ମିଶି—ଅଛୁ ତୁ ମାନସେ ଯା ମନାସି
ଏ ମଣ୍ଡନ ସମୂହରେ—ଅଛି ସେ ଯେବେ ସ୍ନେହରେ
ଅଛି ବୋଲି କହ କଳହାସୀ ରେ । ୧୨ ।



# ଅଳଙ୍କାର ମନାସ ଉତର

## ରାଗ—କେଦାର—କାମୋଦି

ଜଣାଗଲା ଯେ ଆରେ ତମାଳକେଶୀ,
ଜନକ ଦୁବଝରା ଅଛୁ ମନାସି ରେ । ୧ ।
ନିଶ୍ଚୟ କଲି ବନ୍ଧୁ ମୁଁ ଅନୁମାନେ,
ଖେଳୁଚି ପେଣ୍ଡା ଆମ୍ବ କସି ତୋ ମନେ ରେ । ୨ ।
ଆଶ୍ରିତ ଜନ ନେତ୍ର ସୁଖଦାତ୍ରୀ କି,
ଓହ୍ଲାଉଅଛୁ ସିନା କିଆପତ୍ରିକି ରେ । ୩ ।
ଯହିଁରେ ବସେ ନାନା ରତନ ଖଣ୍ଡି,
ଚିନ୍ତିବୁ ସହି, ସେହି ଚଉଁରୀମୁଣ୍ଡି ରେ । ୪ ।
ଆରେ ନିର୍ଜିତ ଚମ୍ପାକଳିକାଙ୍ଗୁଳି,
ଚନ୍ଦ୍ର ସୂର୍ଯ୍ୟ କରନ୍ତି ତୋ ମନେ କେଳି ରେ । ୫ ।

ବିଚାରିଅଛୁ ସିନା ସେ ମୁଖଜାଲି,
ଛାମୁରେ ଯା ନଜର କରିଛି କାଲି ରେ । ୬ ।
ସୀତା ମଧୁର ମୃଦୁ ସରସଭାଷୀ,
ଚିତାକୁ ସିନା ମନେ ଅଛୁ ମନାସି ରେ । ୭ ।
ସତ କହ ରେ ନବରତ୍ନ ସ୍ନେହାଟି,
ବିଚାରି ଅଛୁ କି ନା ଅଳକାପାଟିରେ । ୮ ।
ବଳି କମନୀୟାଙ୍ଗୀ ହାଟକ ଗୋରୀ,
ମଲ୍ଲୀ କଢ଼ିକି ଅଛୁ ସିନା ବିଚାରି ରେ । ୯ ।
ତୋ ଚିତ୍ତେ କଉତୁକ ଅଛି ବଢ଼ି କି
ବିଚାରି ଅଛୁ ଚନ୍ଦ୍ରମଲକଢ଼ିକି ରେ । ୧୦ ।
ଗୁଛ ଝଲକା ମନେ ଅଛୁ ବିଚାରି
ଚାରୁହାସୀ ମୋ ହୃଦେ ହେଲା ଏପରି ରେ । ୧୧ ।
କଥାରମ୍ଭେ ଯା ପ୍ରମୋଦରେ ପୁଲକୁ,
ମୋ ଧନ ମନାସିଛୁ କାନଫୁଲକୁ ରେ । ୧୨ ।
ଖେଳୁଛି ଜଣାହେଲା ମୋ ଅନୁମାନେ,
ତାଟଙ୍କ ପଙ୍କେରୁହ-ନେତ୍ରା ତୋ ମନେ । ୧୩ ।
ମୁଁ ମନେ ମନାସିଛି ତୋ ଅନୁକମ୍ପା
ତୁ ମନେ ମନାସିଛୁ ମୁକୁତାଝମ୍ପା । ୧୪ ।
ବନ୍ଦିମନ୍ଦିର କାନ ଯୋଗ୍ୟ ବନ୍ଦିଆ,
ତୋ ମନେ ରହିଲାଣି ଜୀବବନ୍ଧୁଆ । ୧୫ ।
ନ କହୁ ଦିଶିଯିବ ବୋଲି ହାଲକା,
ବିଚାରିଅଛୁ ସିନା ପତ୍ରି ଝଲକା । ୧୬ ।
ତୋ ନାସାଦଣ୍ଡ ଅଛି ଯାହାକୁ ମଣ୍ଡି,
ସହି ତୁ ବିଚାରିଛୁ ସେ ହୀରା ଦଣ୍ଡି । ୧୭ ।
ସୁଆଗ ବିଶାରଦା ଆରେ ସୁକେଶୀ,
ଶୁଆ ଗୁଣା କି ଅଛୁ ଚିତ୍ତେ ମନାସି । ୧୮ ।
ଯେ ମନମଥର ତୋ କିଙ୍କିଣି ତାଳେ,
ନାଚେ ସେ ନଥ ଅଛି ତୋ ହୃଦସ୍ଥଳେ । ୧୯ ।

ଜଣାଉଁଅଛି ରତି-ବିଚକ୍ଷଣାକୁ,
ବାଞ୍ଛିଛୁ ନୀଳମଣି ନାକଚଣାକୁ । ୨୦ ।
ତାପସ ଜନ ମନମୋହନ ବେଶା,
ଚାପସରିରେ କଲା ତୋ ଚିତ୍ତ ବସା । ୨୧ ।
କଣ୍ଡାକୁ କଣ୍ଡୀରବମଧ୍ୟା ତୋ ମନ,
ମନାସିଅଛୁ ଏଥି ନ ହୋଇ ଆନ । ୨୨ ।
ନାଗପୁଙ୍ଗବ ଗତି ଘାଗଡ଼ାମାଳେ,
ତୋ ଚିତ୍ତ ଅଛି ମାତ୍ର ନ କହୁ ଛଳେ । ୨୩ ।
ସୋରିଷାର ସଦୃଶା ସୋରିଷା ମାଳି,
ଧରି ସାକ୍ଷାତ ପୁଣି ଅଛୁ ତା ଭାଳି । ୨୪ ।
ବିଚାରିଅଛୁ ଗୁଜୁରାତି ମାଳିକି,
କହ, ଯେ ଦେଲି କହି ମନେ ଭାଳିକି । ୨୫ ।
ଛେଚାକଣ୍ଠିରେ ମନ ଅଛି ପ୍ରବଳି,
କେ ଚାତୁର୍ଯ୍ୟକୁ ତୋର ପାରିବ କଳି । ୨୬ ।
ଠଉରାଇଲି ଆରେ ତରୁଣୀବର,
ତଉଁରାମାଳି ଅଛି ମାନସେ ତୋର । ୨୭ ।
ବୀର ପିତୁଳି ମାଳି ଅଛି ତୋ ମନେ,
ହୀରକ ଦନ୍ତି କହେଁ ମୁଁ ଅନୁମାନେ । ୨୮ ।
ପଙ୍କଜଦୃଶା ଦଶାବତାର ମାଳି,
ଜାଣିଲି ମାନସରେ ଅଛୁ ତୁ ଭାଳି । ୨୯ ।
ଜାଣି ଜଣାଉଁ ଅଛି ଧନମାଳିକି,
ଆଣିଛୁ ହୃଦୟକୁ ଧ୍ୟାନ ମାଳିକି । ୩୦ ।
କେଶ ନୀଳିମା ବଳି ଛିତ କାଳିକା,
ବିଚାରିଅଛୁ ଚମ୍ପାକଢ଼ି ମାଳିକା । ୩୧ ।
ଜାଣି ପାରୁଛି ନିଶ୍ଚେ କରୁଛି କେଳି,
ମନମୋହନା ମନେ ମୋହନମାଳି । ୩୨ ।
କହ ନ କହ ଜାଇଦଳ କୋମଳା
ଜାଣିଲି ତୋ ମାନସେ ନକ୍ଷତ୍ରମାଳା । ୩୩ ।

କହେଁ ମୋ ନେତ୍ର ମନ ବନ୍ଦିକାରାକୁ
ବିଚାରିଅଛୁ ଚାରୁଚନ୍ଦ୍ରହାରାକୁ । ୩୪ ।
ଧରିବି ମନଭାବ କରିଛି କେଳି,
କରିଗମନା ମନେ ହରଡ଼ମାଳି । ୩୫ ।
ନ ଶୁଣ ଅବା ଘେନ ନ ଘେନ କିଛି,
ରସୁଣିଆ ମାଳ ତୋ ମାନସେ ଅଛି । ୩୬ ।
ମଦ କାଦମ୍ବଗତି ମୋ ଜୀବଧନ,
ପଦକମାଳାରେ ତୋ ବଳିଛି ମନ । ୩୭ ।
ଜାଣିଲି ଆରେ ନବନୀତ କୋମଳା,
ମୋ ବନ୍ଧୁ ବିଚାରିଛୁ ମୁକୁତାମାଳା । ୩୮ ।
ଛାଡ଼ କପଟ, ସତ୍ୟ କହ ନବୀନା,
ତାଡ଼ ତୁ ମନାସିଛୁ ମାନସେ ସିନା । ୩୯ ।
ଯାହା ବାନ୍ଧବୀ ଅଛୁ ମନାସି ଚିତ୍ତେ,
ବାଜୁବନ୍ଧ ସେ ହେଲା ମୋତେ ପରତେ । ୪୦ ।
କହୁଛି ରଖିଥିବୁ ତୁ କୃପାଟି କି,
ବିଚାରି ଅଛୁ ସତ ହସ୍ତ ପାଟିକି । ୪୧ ।
କୁଞ୍ଜର ମଦହରଗମନା ଚିତ୍ତେ
ଗୁଞ୍ଜର ବିଚାରିଲୁ ନାହିଁକି ସତେ । ୪୨ ।
ସ୍ମରଗରବ ବିନାଶିନୀ ମୋ ଧନୀ,
ଗରଗଡ଼ିଆ ମନେ ଅଛୁ କି ଘେନି । ୪୩ ।
ବିଚାରି ଅଛୁ ଖଞ୍ଜା ଖଡ଼ିଆଳିକି,
ମତେ ନ କହ ପଛେ କହ ଆଳିକି । ୪୪ ।
ଖଟା ନ ରଖି ମନେ କହ ନାଗରୀ,
ଗୋଟା କାଚ କି ମନେ ଅଛୁ ବିଚାରି । ୪୫ ।
ମୁକୁତା କଙ୍କଣ ତ ବାଛିଛୁ ମନେ,
କାହିଁକି କହୁନାହୁଁ ଗଜଗମନେ । ୪୬ ।
କଟାକ୍ଷ ଚାହାଣିରୁ ଗଲାଣି ଜଣା,
ପଟା କାଚକୁ ମନାସିଛୁ ପ୍ରବୀଣା । ୪୭ ।

ନିର୍ମଳ ନୀଳମଣି ଲହରୀଚୁଡ଼ି,
ଚତୁରୀ ଚିତ୍ତଜଳେ ରହିଛି ବୁଡ଼ି । ୪୮ ।
ବ୍ରହ୍ମଜାତିଆ ହୀରାବଟୁ ମୁଦ୍ରିକା,
ମନେ ମନାସି ଅଛୁ ନବରସିକା । ୪୯ ।
ତର୍ଜନୀ ନବଗ୍ରହ ଅଙ୍ଗୁଳି ଏକେ,
ଅଛି ତୋ ଚିତ୍ତ ଜଣା ପଡ଼ିଲା ସ୍ତୋକେ । ୫୦ ।
ଶାଖା ମୋହନ ମୁଦି ଅଛି ତୋ ଚିତ୍ତେ,
ହରିଣେକ୍ଷଣା ଜଣା ପଡ଼ିଲା ମୋତେ । ୫୧ ।
ଜଣାଗଲା ରେ ଆରେ ପ୍ରାଣ ବାନ୍ଧବୀ,
ରତନ ଅଙ୍ଗୁଷ୍ଠିକା ଅଛୁ ତୁ ଭାବି । ୫୨ ।
ସେବତୀ ପହିଞ୍ଚିରେ ତୋ ମନ ଅଛି,
ଏଥିରେ ନାହିଁ ମୋର ସନ୍ଦେହ କିଛି । ୫୩ ।
ନଚାଉଅଛୁ ପଚା ପହିଞ୍ଚି ମନେ,
ନିଶ୍ଚୟ କଲି ଏହା ମୁଁ ଅନୁମାନେ । ୫୪ ।
ନବନୀତାଙ୍ଗୀ ନବରତ୍ନ ପହିଞ୍ଚି,
ଅବଶ୍ୟ ତୋ ମନକୁ ଅଛି ପହଞ୍ଚି । ୫୫ ।
କିପରି ମାନିବ ଟି ତୋତେ ବନ୍ଧାଇ,
ହୁକୁମ ହେଲେ ଥରେ ଦେବି ପିନ୍ଧାଇ । ୫୬ ।
ଆରେ ଭାରତୀ-ବିନିର୍ଜିତ ବିପଞ୍ଚି,
ପ୍ରତୀତ ହେଲା ମୋତେ ପାଞ୍ଚିଛୁ କାଞ୍ଚି । ୫୭ ।
କହିଲି କି ଚିତ୍ର ରେ ସ୍ନେହ ବସ୍ତଳା,
ଲାଗରେ ପଡ଼ିଅଛି ଦେଖ ମେଖଳା । ୫୮ ।
ରୁଚି ନିନ୍ଦିତକୁନ୍ଦମନ୍ଦହସନା,
ତୁ ତ ମାନସେ ମନାସିଛୁ ରସନା । ୫୯ ।
ଲାଗିରେ ନ ଥିବାର ନଥିବ ଦିନ,
ନୂପୁରକୁ ପୁରତେ ଦେଖୁଛୁ ଧନ । ୬୦ ।
କ୍ଷମା କରିବୁ ମାତ୍ର ହେବ ଯା ହୁଡ଼,
ଅବଶ୍ୟ ଧନ ମନାସିଛୁ ପାହୁଡ଼ । ୬୧ ।

ମୋଠାରେ ପ୍ରଂଶସାକୁ ଅବଳାବଳା,
ବିଚାରି ଅଛୁ ବର ଅବଳାବଳା । ୬୨ ।

ଖୁଣ୍ଟିଆ ପରି ତାକେ ଯେ ବିଢେବେଳେ
ଝୁଣ୍ଟିଆ ବିଚାରିଛୁ ହୃଦକମଳେ । ୬୩ ।

କଥାରେ କରୁନାହୁଁ ସିନା ବ୍ୟକତ,
ମଥାମଣିରେ ତୋର ବଳିଛି ଚିତ୍ତ । ୬୪ ।

ଶ୍ରୀବାଲୁକେଶ ଅଷ୍ଟଦୁର୍ଗନରେଶ,
ରସେ ରଚିଲେ ଅଳଙ୍କାର ମନାସ । ୬୫ ।



(୩୦)

## 'ବଡ଼ଗଡ଼' ରାଜଦରବାରରେ କବିଙ୍କ ଉକ୍ତି

ବନାତ ଫରଦା - ତଳେ ବିଶାରଦା ! ଅନା ତ ଥରେ ନିରେଖି,
ଆହା ଧନ୍ୟ ଧନ୍ୟ ! ଏ ଯୁବା ଲାବଣ୍ୟ ଦେଖି ଥିବା ଆଖି 'ଆଖି' ରେ
ସଙ୍ଗାତ, ସେହିଟି କିଏ ? କହଟି,
ଯାହାଙ୍କର ଯଶ-ବାସ ଦଶଦିଶ ଯାକେ ଯାଉଚି ଚହଟି । ୧ ।
ପଦ ନଳିନର ନିଉଁଛାଳି ଭଳି ମଦନ-ମୁକୁଟ ନୁହେ,
ମାନବରୁ ଏଥୁଁ ଆନ ବରେ ଯୋଷା-ମାନଙ୍କ ମନକୁ ମୋହେ ରେ ସଙ୍ଗାତ,
କଟାକ୍ଷ ଖେଳକୁ ଦେଖ,
ଏ ଟି ନାଗରୀଙ୍କ ଧୃତିକି ଅରିଙ୍କ ଗୁମାନ ମଙ୍ଗାକୁ ମେଖ ରେ ! । ୨ ।
ଶ୍ରୀମୁଖର କଳା ଗୋଟିକର ତୁଳା ନାହିଁ ରୋହିଣୀ ରମଣେ,
ଆହା ! କି ସୁନ୍ଦର ମନ୍ଦ ହାସ ତା'ର କେଉଁ ଉନ୍ମାଦକ ଗୁଣେ ରେ ସଙ୍ଗାତ,

(୩୦) ବନାତ—ଗରମକନା ବା ଲୁଗା, ଫରଦା—ଚାଦୁଆ, ଆଖି 'ଆଖି'—ଆଖି ପ୍ରକୃତ ଆଖି ପଦବାଚ୍ୟ, ଯଶବାସ—ଖ୍ୟାତିର ସୁଗନ୍ଧ, ପଦନଳିନ—ପାଦପଦ୍ମ, ଧୃତି—ଧୈର୍ଯ୍ୟ, ମେଖ—କାଳା ବା ଦଣ୍ଡ, ରୋହିଣୀରମଣେ—ଚନ୍ଦ୍ରଠାରେ, କନକ—ସୁନା, ବେତଣ୍ଡ—ଜରିମାନା ନ ଥିବା, ପବି—ବଜ୍ର, ଗିର—ତୁଣ୍ଡର କଥା, କାଶୀନାଥ ରାଜଗୁରୁ—ରାଜସଭାର ଜନୈକ ପଣ୍ଡିତ,

ବାହୁ ଯୁଗଳର ଛବି
କନକ ବେତଣ୍ଡ ଗଜ ଶୁଣ୍ଡାଦଣ୍ଡ ଗରବ ଗିରିକି ପବି ରେ ! । ୩ ।
ସରସ ଶେଷ ଗମ୍ଭୀର ଗିର ତୁଲେ ଯାହା । ନାଚୁଅଛି ଭୂରୁ,
ତା' ସିନା ଜାଣନ୍ତି କିଛି କିଛି ଚିନ୍ତା 'କାଶୀନାଥ ରାଜଗୁରୁ' ରେ ସଙ୍ଗାତ,
କି ପୁଣ୍ୟ ଏ କରିଥିଲେ !!
ଏ ନୃପ ସଭାରେ ବସୁ ବସୁ 'ବସୁଗଣେ' ଗଣନୀୟ ହେଲେ ରେ । ୪ ।
ନବୀନ ଜବନ ଭବନ କବନ ଦଶନ ବସନା ! ଅନା
ଏ 'ଥୁ' ପାନ ବୋଳ ଯାହା ଗଣ୍ଡସ୍ଥଳ ଲଭିବ, ସେ ବରାଙ୍ଗନାରେ ସଙ୍ଗାତ,
ନାରୀରେ କି ଯିବ ଲେଖା ?
ଅମରୀଙ୍କ ମଧେ ଚମରୀନେତ୍ରୀ ତ ସେ ଭାଗ୍ୟେ ନ ଯିବ ଦେଖା ରେ । ୫ ।
ଗିରୀନ୍ଦ୍ର ନନ୍ଦନା ମୋଦରେ ବନ୍ଦନା କରି କର ନିବେଦନ,
ମୃକଣ୍ଡୁ ତନୟଙ୍କର ଆୟୁର୍ଦାୟ ଲଭନ୍ତୁ ଏ ଦୁଃଖୀଧନ ରେ ସଙ୍ଗାତ,
ଏହି ଯଉବନ ଥାଉ
ଏଥୁ ଅଲଗଡ଼ ପାଞ୍ଚିବ ଯେ ଗଡ଼ଚଣ୍ଡୀ ତାକୁ ମୋଡ଼ି ଖାଉ ରେ ! । ୬ ।
କବି ଜନଙ୍କର 'ରାୟଗୁରୁ' ଗିର ତ୍ରିକାଳେ ନୋହୁ ଅନ୍ୟଥା
ତାଟକା ହେଲାନି 'ହାଟକାଦ୍ରି' ଘେନି ଆପଣା ଅନିତ୍ୟ କଥା ରେ ସଙ୍ଗାତ !
ଖଡ଼ଗ ଖେଳ ନ କର
ବଡ଼ ଗଡ଼ କରି ଦାନ ଦିଅନ୍ତୁ ଏ ବଡ଼ଗଡ଼ ପୁରନ୍ଦର । ୭ ।



ବସୁଗଣେ—ଗଣଦେବତା, ଜବନ ଭବନ କବନ—ଆଶୁ କବିତ୍ୱର ଗୃହ, ଦଶ ନ ବସନା—୧୦ ବା ୯ ବସ୍ତ୍ର ପରିହିତା, ଥୁ ପାନ ବୋଳ—ପାନ ପିକର ବୋଳ, ଅମରୀ—ଦେବନାରୀ, ଚମରୀ ନେତ୍ରୀ—ମୃଗୀନୟନା, ଗିରୀନ୍ଦ୍ର ନନ୍ଦନା—ପାର୍ବତୀ ଦେବୀ, ମୋଦରେ—ଆନନ୍ଦରେ, ମୃକଣ୍ଡୁ ତନୟ—ଦୀର୍ଘାୟୁ ମାର୍କଣ୍ଡେୟ ମୁନି, ଅଲଗଡ଼—ବିପରୀତ, ହାଟକାଦ୍ରି—ସୁନାର ପାହାଡ଼, ଗଡ଼ଗଡ଼ କରି—ଖଣ୍ଡ ଖଣ୍ଡ କରି, ବଡ଼ଗଡ଼ ପୁରନ୍ଦର—ବଡ଼ଗଡ଼ର ଇନ୍ଦ୍ର ବା ରାଜା ।



## (୩୧)

# ମନସିକୋଲ୍ଲାସ

## ରାଗ—ବରାଡ଼ୀ

ଅନଙ୍ଗସଙ୍ଗର ଶେଷ ସୁଖ ବ୍ରହ୍ମାନନ୍ଦରସ ପ୍ରବାହରେ ପଡ଼ି ଯୁବରାଜ । କିଶୋରୀକି ଧରି କୋଳେ ଚେଳାଞ୍ଚଳ ବିଞ୍ଚାବେଳେ କହେ ଚୁମ୍ବି ମୁଖଦ୍ୱିଜରାଜ ହେ । ଜୀବବନ୍ଧୁ । ମୋ ରାଣଟି ପଚାରୁଛି କହ । କି ପଦାର୍ଥ ତୁ ମୋର ପ୍ରାଣପଞ୍ଚକ କି ବରବରନା କି ତୁ ଜଗତୀମୋହ ରେ । ୧ । ମୋର ପୂର୍ବ ତପୋବଳ କଳପବଲ୍ଲରୀଫଳ ତୁହି କି ରେ ମହୀସ୍ଥଳୀଭୂଷା । କି ମୋ ସାମ୍ରାଜ୍ୟବିଭୂତି ହୋଇଅଛି ମୂର୍ତ୍ତିମତୀ ତୋ ସ୍ନେହ ମୋ ହୃଦପଦ ପୂଷାରେ । ଜୀବବନ୍ଧୁ । ମୁଁ ବକ୍ଷ ତୁହି କି ମୋତିମାଳା । ମୁଁ କୁସୁମ ତୁ ବାସନା କି ରେ ହୀରକଦଶନା ମୁଁ ଆକାଶ ତୁ କି ଚନ୍ଦ୍ରକଳା ରେ । ୨ । ପଟୁ ନଟ ଖଞ୍ଜରୀଟ ଘଟଣନେତ୍ରା ମୁଁ ଘଟ ତୁହି ଜୀବନ କି କହ କହ । ତୁ ପରିଣତଚନ୍ଦ୍ରମା ଚକୋର ମୁଁ କି ରେ ରାମା ମୁଁ ଚାତକ ତୁ କି ବାରିବାହ ରେ । ଜୀବବନ୍ଧୁ । ମୁଁ କି ବନ ତୁ ବସନ୍ତଶିରୀ । ବିକଶିତ ଅରବିନ୍ଦ ତୁ କି ମୁଁ ଭୋଖୀ ମିଳିନ୍ଦ ମୁଁ ମୀନ ତୁ କି ଗଭୀର ବାରି ରେ । ୩ । ମୁଁ କାବ୍ୟ ବନ୍ଧ ତୁ ରସ, ରସ ମୁଁ ତାହା ବିଶେଷ ସ୍ୱାଦୁ ଗୁଣ କି ରେ ଗୁଣନିଧି । ତୁ ପ୍ରଭୁ ମୁଁ ପରିଜନ ଏଥି ନାହିଁ ଅନୁମାନ ମୁଁ ମନ୍ତ୍ର ଜପ କି ତୁ ତା ସିଦ୍ଧି ରେ । ଜୀବବନ୍ଧୁ । ମୁଁ ମନ୍ଦିର ତୁ କି ଦୀପଶିଖା । କି ବୋଲି ତୋ ସମ୍ବୋଧନ କରିବି ରେ ପ୍ରାଣଧନ ସକରୁଣ ଚିତ୍ତେ ମୋତେ ଶିଖା ରେ । ୪ । ମୁଁ ଦେହ ତୁ ଅଳଙ୍କୃତି କି ରେ କେଳିକଳାବତୀ ସହଜେ ମୁଁ ନୃପ ତୁ କି ନୀତି । ମୁଁ ଶାଖୀ ତୁ ବନଲତା ମୁଁ ଜଳ ତୁ ନିର୍ମଳତା ମୁଁ ରଜନୀ ତୁହି କି ମୋ ଗତି ରେ । ଜୀବବନ୍ଧୁ । ଅଳକା ମୁଁ ତୁ କି ମୋ ସମ୍ପଦ । ମୁଁ କି ପ୍ରସିଦ୍ଧ ପ୍ରାସାଦ ସ୍ୱାଦୁମୃଦୁତରନାଦକଣ୍ଠି କି ତୁ ମହୋତ୍ସବ ଭେଦ ରେ । ୫ । ମୁଁ କି ବାଳକାଳ ଅନ୍ଧ ଆରେ ବିବିଧପ୍ରବନ୍ଧପଣ୍ଡିତା ତୁ ନେତ୍ରଲାଭ ମୋର । ମୋ ମାନସ ସେ ସରସୀ ତୁ କି କେଳିକଳହଂସୀ ମୁଁ ସୁରତ ତୁ କି ଅନ୍ତଃସାର ରେ ।

---

୧ । ଅନଙ୍ଗସଙ୍ଗର—କାମ ଯୁଦ୍ଧ, ଚେଳାଞ୍ଚଳ—କାନି ପଣନ୍ତ, ମୁଖଦ୍ୱିଜରାଜ— ମୁଖଚନ୍ଦ୍ର, ପ୍ରାଣପଞ୍ଚକ—ପଞ୍ଚପ୍ରାଣସ୍ୱରୂପ । ୨ । କଳପବଲ୍ଲରୀ—କଳ୍ପଲତା, ସାମ୍ରାଜ୍ୟବିଭୂତି— ରାଜ୍ୟର ଐଶ୍ୱର୍ଯ୍ୟ, ପୂଷା—ସୂର୍ଯ୍ୟ । ୩ । ଚଞ୍ଚଳଖଞ୍ଜରୀଟ ପରି ସୁନ୍ଦର ନେତ୍ର ଯାହାର, ଘଟ—କୁମ୍ଭ ବା ଦେହ, ଜୀବନ—ଜଳ ବା ପ୍ରାଣ, ପରିଣତ ଚନ୍ଦ୍ରମା—ପୂର୍ଣ୍ଣଚନ୍ଦ୍ର, ବାରିବାହ—ମେଘ, ବସନ୍ତଶିରୀ—ବସନ୍ତଶୋଭା, ଅରବିନ୍ଦ—ପଦ୍ମ, ମିଳିନ୍ଦ—ଭ୍ରମର । ୪ । ତୁ ସେ ରସର ବିଶିଷ୍ଟ ସ୍ୱାଦୁତା, ପରିଜନ—ଭୃତ୍ୟ । ୫ । ଅଳଙ୍କୃତି— ଅଳଙ୍କାର, ନୀତି—ରାଜନୀତି, ଶାଖୀ—ବୃକ୍ଷ, ରଜନୀ—ରାତି, ଗତି—ପ୍ରାପ୍ତି (ଏଠାରେ ଚନ୍ଦ୍ର), ପ୍ରାସାଦ—ଦେବାଳୟ, ହେ

ଜୀବବନ୍ଧୁ । ମୁଁ ମୁକୁର ତୁ କି ତାହା ଝଳି । ମୁଁ କନକ ତୁ ନୂତନ ରତନ ମୁଁ କି ରତନ ତୁ କି କରକଳିକାଆବଳୀ ରେ । ୬ । ମୋ ଧନଟି କାହିଁ କହ ବୋଲି ଯେ ଏତେ ଆଗ୍ରହ କରୁଅଛି କହିଲୁ ତ ନାହିଁ । ବଞ୍ଚାଉ ଯେ ଲକ୍ଷେ ରାଣ ଭଲ କି ଗଲେ ମୋ ପ୍ରାଣ ସ୍ନେହ ଥିବା ଜଣାଗଲା କେହି ରେ । ଜୀବବନ୍ଧୁ । ମାତେ ପଚାରିଲେ କି ପଚାର । ନ କହିଲେ ମୁଁ ଛଦ୍ମରେ ଘେନି ହୃଦୟ ପଦ୍ମରେ ତହିଁକି ବିଚାର ଉପଚାର ରେ । ୭ । ଛାଇ ପରି ଅନୁସରି ଥିବା ଲୋକେ ଏତେ ସରି ଲାଜେ ତୁ ଯେ ରଖିଅଛୁ ଟାକ । ନଖ ଶିଖଠାରୁ କେଶଯାଏ ମନ ଜାଣି ବେଶ କେ କରିବ ପୁଣି କାଳଯାକ ରେ । ଜୀବବନ୍ଧୁ । ମୋ ତୁଲ୍ୟ ତ ନୋହେ ଲାଗି ଶାଢ଼ୀ । ତାହାକୁ ରଖିବି ଦୂରେ ରସଲମ୍ପଟୀ ମୋ ଉରେ ରହିବୁ ନିବିଡ଼େ ପରା ଜଡ଼ି ରେ । ୮ । ସବ୍ରୀଡ଼ ନେତ୍ରଯୁଗଳୀ ନୀଳଘନ ପକ୍ଷ୍ମପାଳୀ ଟେକି ମୋ ମୁଖକୁ ହସି ଚାହିଁ । ଅନଙ୍ଗ କଳାନିଧି ରେ କହ କହ ''ମୃଦୁଗିରେ ମୋର ବନ୍ଧୁଆଟି କାହିଁ କାହିଁ ରେ ।'' ଜୀବବନ୍ଧୁ । ମୁଁ ବୋଲିବା କଥା ଯେବେ ଲାଜ । ଏ ରୁଚିରାଙ୍ଗୁଳୀ କଳୀ ଅଗ୍ରେ ଉରୋଜଯୁଗଳୀ ମଧ ଛୁଇଁ ବଢ଼ାଅ ମୋ ଓଜ ରେ । ୯ । ଏତେ ବିନତିରେ ଏହି କଥାରେ ନିର୍ବାହ ନାହିଁ କରି ତତେ ସକଳ ସମ୍ପତ୍ତି । କରିଛି ଯେ ଅନଳପ ସଉଭାଗ୍ୟ ସଂକଳପ କେମନ୍ତେ ସେ ହୋଇବ ଭରତି ରେ । ଜୀବବନ୍ଧୁ । ତୁହି କି ମୋ ସକଳ ସଖୀଳି । ବଚନେ ପଛେ ନ କହ ନେତ୍ରନୀଳଜଳରୁହ ଥରେ ଉରୋଜରେ ଦିଅ ଢାଳି ରେ । ୧୦ । ତ୍ରିଲୋକଯାକ ଲାବଣ୍ୟ କରିଥିଲା କେତେ ପୁଣ୍ୟ ଏ ମୁଖଚନ୍ଦ୍ରରେ କଲା କେଳି । ତହୁଁ କେତେ ଗୁଣେ ବଳି ମୋର ଏ ନେତ୍ରଯୁଗଳୀ କରିଥିଲା ତପ ନୋହେ କଳି ରେ । ଜୀବବନ୍ଧୁ । ଏଡ଼େ ଲାଗେ ଭୋଗ କରେ ଚାହିଁ । ପୁଲୋମାପୁତ୍ରୀ କାମୁକ ନୟନ ସହସ୍ରଯାକ ଏ ଶିରୀ ତ ଦେଖି ପାରି ନାହିଁ ରେ । ୧୧ । କି ଭାଗ୍ୟବନ୍ତ ମୋ କର ଦ୍ୱିଜେ ହିରଣ୍ୟଭୂଧର କେତେବାର ଦେଇଥିଲା ଦାନ । ଫିଟାଇ ରାଇକାହୁଣ୍ଡି ବୋଲି ସୁଧାକରଗୁଣ୍ଡି ଭୋଗ କଲା ଏ ସୁନ୍ଦର ସ୍ତନ ରେ । ଜୀବବନ୍ଧୁ । କି ମଧୁର ଏ ତୋ ଦନ୍ତଚେଳ । ସୁଧା ରସେ ମୁଧାମତି ଦ୍ରାକ୍ଷାରେ କ୍ଷାର ପ୍ରତୀତି ହୁଏ ଅନ୍ୟ କେ ଏହାର ତୁଲ ରେ । ୧୨ । ରସମୟ ଏ ସମୟ ସମୁଚିତ ହୃଦାଶୟ ନିଜ

---

ମୃଦୁମଧୁରଭାଷିଣୀ ! ତୁ କି ସେ ଦେବମନ୍ଦିରର ଉତ୍ସବସ୍ୱରୂପା । ୬ । ବିବିଧପ୍ରବନ୍ଧପଣ୍ଡିତା—ନାନା ଶାସ୍ତ୍ରନିପୁଣା, ମୋ ମାନସ ସେ ସରସୀ—ମୋର ମନ ମାନସସରୋବର ପରି, ସୁରତ—ରତିକ୍ରୀଡ଼ା, ଅନ୍ତଃସାର—(ଏଠାରେ) ବୀର୍ଯ୍ୟ, ଝଳି—କାନ୍ତି, ବରକଳିକା ଆବଳୀ—ଚନ୍ଦ୍ରରୁ ବାହାରୁଥିବା କିରଣସବୁ । ୯ । ସବ୍ରୀଡ଼—ସଲଜ୍ଜ; ଏ ରୁଚିର ... ଓଜ—ସୁନ୍ଦର ପୁଷ୍ପକଢ଼ି ପରି ହୋଇଥିବା ଅଙ୍ଗୁଳି ଅଗରେ କୁଚଦ୍ୱୟର ମଧକୁ ସ୍ପର୍ଶ କରି ମୋର ମନବଳକୁ ବଢ଼ାଅ । ୧୦ । ନିର୍ବାହ— ସମ୍ପାଦନ, ନିଷ୍ପତ୍ତି; ଅନଳପସଉଭାଗ୍ୟସଂକଳ୍ପ— ପ୍ରଚୁର ସୁଖ ପାଇବାର ସଙ୍କଳ୍ପ, ଜଳରୁହ— ପଦ୍ମ । ୧୧ । ଏଡ଼େ ଲାଗେ—ଏତେ ଶୀଘ୍ର, ପୁଲୋମାପୁତ୍ରୀକାମୁକ ... ଶଚୀଙ୍କ ପ୍ରତି ଅଭିଳାଷୀ ଇନ୍ଦ୍ରଙ୍କ ସହସ୍ର ସଂଖ୍ୟକ ଚକ୍ଷୁ ତୋର ଏ ଲାବଣ୍ୟ

ଅନୁଭବେ ଜାଣି ଜାଣି । କୁସୁମବିଶିଖସଖା ଋତୁ କିଶଳୟ ଲେଖା ଜିଣାକରେ କିପାଁ ଦେଲୁ ପାଣି ରେ । ଜୀବବନ୍ଧୁ । ଏହିଟି ବୋଲାଏ ଭକ୍ଷଧୂଳି । ପଲକ ଅର୍ଦ୍ଧକେ ସାତ ଯେତେ ଧ୍ୱସ୍ତ ହୋଏ ସେତ ଶତଜନ୍ମେ ନ ପାରିବ ମିଳି ରେ । ୧୩ । ନ ପାରି ପାଳି ମୋ କଥା ହସି ଯେ ନୂଆଉଁ ମଥା ହଜି ଯାଉଅଛି ମୋର ବୁଦ୍ଧି । ଭଲେ ଭରଜି ମରଜି ଯେବେ ପ୍ରଭୁ ପାଶେ ଭଜି ଥାଇ କରାଳେ ନୋହି ଅପରାଧୀ ରେ । ଜୀବବନ୍ଧୁ । କିପରି ଜାଣିବି ତୋର ମନ । କେଉଁ ସେବା କେତେବେଳେ ଚାଳି ବୟସ୍ୟାମଣ୍ଡଳେ ସମ୍ପାଦିବି ଦିବ୍ୟ ଅବଧାନ ରେ । ୧୪ । ଚନ୍ଦ୍ରହାରା ପ୍ରିୟସଖି କରି କିରେ ଚନ୍ଦ୍ରମୁଖି ବହିବି ହୃଦୟ ସ୍ଥଳେ ତୋତେ । ମଉଳିମଣ୍ଡନଚମ୍ପା ଗଭା କଲେ ଅନୁକମ୍ପା ପାତ୍ର କରି ଘେନିବୁ କି ଚିତ୍ତେ ରେ । ଜୀବବନ୍ଧୁ । ପ୍ରେମପଟତନ୍ତୁ ଗୁନ୍ଥା କରି । ହୋଇ ପ୍ରମୋଦେ ମଗନ କୁତୁକେ ଧରି ଲପନ କରିବି କି କଣ୍ଠଲଗ୍ନ ସରି ରେ । ୧୫ । ତୁ ମୋତେ କିପରି ପରିପାଳିବୁ ରେ କୃଶୋଦରି ଜଣାକର ମୋ ଭରସା ପାଉ । ହେବି ପଦଶତପତ୍ରତଳେ କି ଅଳତା ଚିତ୍ର ଅବା ମଣିମଣ୍ଡିତକଠାଉ ରେ । ଜୀବବନ୍ଧୁ । ହେବି କି ପାହାଡ଼ାବିଜେ ବେଳେ । ପାହୁଡ଼ ବାଜଣି ବଳା ପଉଞ୍ଜି ମଞ୍ଜୁ ଶିକୁଳା ତୁଲେ ମିଶିବି କି କୁତୂହଳେ ରେ । ୧୬ । ଅଦୃଶ୍ୟ ସୁନ୍ଦର କଟୀତଟୀ କାଞ୍ଚୀକ୍ଷୁଦ୍ରଘଣ୍ଟି ପଟଳୀରେ କରିବୁ କି ଏକ । ତୋ ଲାଗି ଦୁକୂଳ ଭାଗ୍ୟ ପରମ୍ପରା ଭୋଗ ଯୋଗ୍ୟ ହେବି କି ରଜନୀଦିବାଯାକ ରେ । ଜୀବବନ୍ଧୁ । ହେବି କି କାଞ୍ଚୁଲା ପୟୋଧରେ । ଧାରାଧରମାଳାଲୀଳା ଧରିବି କି ରେ କୋମଳା ଧରାଧରାଧିରାଜ ମୂର୍ଦ୍ଧରେ ରେ । ୧୭ । ମହିଳାମଣ୍ଡଳୀ ମଥାମଣି କି ଆହୁରି କଥା ଗୋଟିଏ ପଚାରୁଅଛି ଭାଷ । ନବନୀତ ପିତୁଳାକୁ ଆଣି ନୁହଇ ତୁଳାକୁ ଏପରି ତ ତୋ

---

ଦେଖି ପାରି ନାହିଁ । ୧୨ । ହିରଣ୍ୟଭୂଧର— ସୁନାର ପର୍ବତ, ରାଇକାହୁଣ୍ଡି—କାଞ୍ଚୁଲାରେ ଲାଗିଥିବା ଦଉଡ଼ିର ଗଣ୍ଠି, ସୁଧାକରଗୁଣ୍ଡି— କର୍ପୂରଚୂର୍ଣ୍ଣ, ଦନ୍ତଚ୍ଛେଦ—ଅଧର, ତୋ ଅଧରରୁ ଯେଉଁ ଅମୃତ ମୁଁ ଚାଖିଛି ତା ତୁଳନାରେ ପ୍ରକୃତ ସୁଧାରସରେ (ଅମୃତ ରସରେ) ମୋର ମୃଧାମତି (ବୃଥା ବୁଦ୍ଧି) ଜାତ ହୁଏ; ଅର୍ଥାତ୍ ପ୍ରକୃତରେ ଏହା ଛଡ଼ା ଅନ୍ୟ ଅମୃତ ନାହିଁ ବୋଲି ମନେ ହୁଏ । ଦ୍ରାକ୍ଷାଫଳ କ୍ଷାର (ଲୁଣିଆ ଖାର) ପରି ବୋଧହୁଏ । ୧୩ । କୁସୁମବିଶିଖ ... ଯେଉଁ ଅଧର କନ୍ଦର୍ପବନ୍ଧୁ ବସନ୍ତ ଋତୁର କିଶଳୟ (ନୂତନ ପଲ୍ଲବ)ର ଜିଣାକ ଅର୍ଥାତ୍ ଜୟକାରୀ, ତହିଁରେ କାହିଁକି ପାଣି (ହସ୍ତ) ଦେଲୁ, ଅର୍ଥାତ୍ ଅଧରକୁ କାହିଁକି ହାତରେ ଲୁଚାଇଲୁ । ଏହାକୁ ଭକ୍ଷ ଧୂଳି ଅର୍ଥାତ୍ ଖାଇବା ପତ୍ରରେ ଧୂଳିଦେବା କହନ୍ତି । ଏହାଦ୍ୱାରା ଅର୍ଦ୍ଧନିମେଷରେ ଯେତେ ସାତ (ସୁଖ) ଧ୍ୱସ୍ତ ହୁଏ (ନଷ୍ଟ ହୁଏ) ତାହା ଶହେ ଜନ୍ମରେ ମିଳିବ ନାହିଁ । ୧୪ । ବୟସ୍ୟାମଣ୍ଡଳେ—ସଖୀମାନଙ୍କ ମଧ୍ୟରେ । ୧୫ । ଚନ୍ଦ୍ରହାରା—ଏକପ୍ରକାର ହାର, ମଉଳିମଣ୍ଡନ—ମସ୍ତକ ଭୂଷଣ, ଅନୁକମ୍ପାପାତ୍ର— କୃପାପାତ୍ର, ପ୍ରେମପଟ—ପ୍ରଣୟ ଚିତ୍ର, ତନ୍ତୁଗୁନ୍ଥାକରି—ସୂତାରେ ଗୁନ୍ଥି, କରିବି କି କଣ୍ଠଲଗ୍ନସରି—ଗଳାରେ ଲଗାଇ ଦେବି କି! ।୧୬। ପଦଶତପତ୍ରତଳେ—ପାଦପଦ୍ମରେ । ୧୭ । କାଞ୍ଚୀକ୍ଷୁଦ୍ରଘଣ୍ଟି ପଟଳୀରେ—ଅଣ୍ଟା ଚନ୍ଦ୍ରହାରରେ ଥିବା କ୍ଷୁଦ୍ର ଘଣ୍ଟିମାନଙ୍କ ମଧ୍ୟରେ । ଲାଗି ଦୁକୂଳ—ପିନ୍ଧା

ଶ୍ରୀଅଙ୍ଗଦେଶ ରେ । ଜୀବବନ୍ଧୁ । ଛବି ଏଡ଼େ ଅବିବେକ ମାର । ତାହା ଅମଳ ଅଜ୍ଞାନ ବଶେ କଲେ ଆଲିଙ୍ଗନ ସରିଯିବ ସିନା ମୋ ସଂସାର ରେ । ୧୮ । କିଞ୍ଚିତମଧ୍ୟା ଗଭୀର ରୁଚିର ଚିବୁକେ ତୋର ମୃଗମଦପଙ୍କଚିତ୍ର ଭୃଙ୍ଗୀ । ହେଲେ ସେ ଅବା ମୋ ଗୁରୁ ଶିଖାଇବ ପ୍ରସୂନରୁ ନିର୍ବାଧ ମରନ୍ଦଭୋଗଭଙ୍ଗୀ ରେ । ଜୀବବନ୍ଧୁ । ତୋ ସହଜ ପଙ୍କଜବାସକୁ । ଗଣୁଥିଲେ ସଚେତନେ ତୋ ଅଙ୍ଗସଙ୍ଗ ଯତନେ କରନ୍ତି ତାଠାରୁ ଅଭ୍ୟାସକୁ ରେ । ୧୯ । ମୁଁ କାମକାଠର ଶିଖୀ ସକାଶୁଁ ହେବାରୁ ଭୋଖୀ ଦେଖି ଏ ଲାବଣ୍ୟ ନବାମୃତ । ଆଖିରେ ଅଳପ ଚାଖି ଦେଲେ ତୁ ମନ୍ଦାକ୍ଷେ ଲାଖି ରହି କୋଳେ ମୁଖ କରୁ ନତ ରେ । ଜୀବବନ୍ଧୁ । ଜର ଜର ଗୋଟିଯାକ ରସେ । ସ୍ମରଜ୍ୱର କମ୍ପମାନ ଶମ୍ପାର ତ ତୁ ସମାନ କରଜର ମୃଦୁଳ ସ୍ପରଶେ ରେ । ୨୦ । କନକ ପାରଦ ରସମୟ କରି କି ଲୋକେଶ ଶରୀର ନିର୍ବାହ କଲା ତୋର । ବିରାଜିଲେ ହେଲେ କୋଳେ ସମୟ ବାଞ୍ଛିତ ସ୍ଥଳେ ସ୍ଥିର ହେଉ ନାହିଁ ମୋର କର ରେ । ଜୀବବନ୍ଧୁ । କେଉଁ ଅଙ୍ଗେ ନ ଦେଲେ ଚୁମ୍ବନ । ଚୁମ୍ବ ବିନା କେତେବେଳେ ରହିବ ଜୀବ ନିଷ୍ଠଳେ କେତେ ଯୁଗେ ତୁଷ୍ଟ ହେବ ମନ ରେ । ୨୧ । ଘନଜଘନା ରେ ଘେନ ତେଡ଼େ ଧୀର ଚିରନ୍ତନ ଶତପତ୍ର ପୁତ୍ର ଆଚରଣ । କୃତବୀର୍ଯ୍ୟ ସୁତ ଶେଷ ଶକ୍ର ଏ ତିନିଙ୍କ ବେଶ ଦେଇ ନୋହିଲା ଯା ମୋ ଶରଣ ରେ । ଜୀବବନ୍ଧୁ । ତୋ ଆଶ୍ଳେଷ ଚୁମ୍ବ ଦରଶନେ । ଦ୍ୱିବାହୁ ଏକ ବଦନ ଦ୍ୱିଲୋଚନବନ୍ତ ଜନ ପ୍ରସାଦ ଲଭିବ କେହି ମନେ ରେ । ୨୨ । ଜଳଜଜିତ୍ୱର ପାଣି ଧରି ଜଣାଉଛି ପୁଣି ପ୍ରବଳିତ ଅନଙ୍ଗ ଆହବେ । ମୋ ଶରୀରଭର ବୁହା ମର୍ଦ୍ଦନ ପୀଡ଼ନ ସୁହା ଭଳି ବଳ ନ ପାଇବ ଯେବେ ରେ । ଜୀବବନ୍ଧୁ । ଖେଳିବୁ ମୋ ଉରସ୍ଥଳେ ରହି ।

---

ପାଟଶାଢ଼ୀ, ଧାରାଧରମାଳାଲୀଳା—ବର୍ଷାକାଳ ମେଘମାଳାର କ୍ରୀଡ଼ା, ଧରାଧରାଧିରାଜମୂର୍ଦ୍ଧରେ—ଉଚ୍ଚ ପର୍ବତ ମସ୍ତକରେ (କୂଟରେ) । ୧୮ । ନବନୀତ ପିତୁଳା—ଲହୁଣୀରେ ତିଆରି ପିତୁଳା, ତୁଳାକୁ—ତୁଳନାକୁ, ସାଦୃଶ୍ୟକୁ; ଛବି—ଶୋଭା, ତାହା ଅମଳ ... କାମବିହ୍ୱଳ ହୋଇ ଆଲିଙ୍ଗନ କଲେ । ୧୯ । କିଞ୍ଚିତମଧ୍ୟା—କ୍ଷୀଣକଟି, ମୃଗମଦପଙ୍କ ଚିତ୍ରଭୃଙ୍ଗି—ଚିବୁକରେ କସ୍ତୁରୀରେ ଚିତ୍ରିତ ହୋଇଥିବା ଭ୍ରମରୀ । ଭ୍ରମରୀ ଫୁଲରୁ ଯେଉଁ ରୀତିରେ ମରନ୍ଦ (ମକରନ୍ଦ ମଧୁ) ପାନ କରେ, ସହଜପଙ୍କଜବାସକୁ—ସ୍ୱାଭାବିକ ପଦ୍ମ ଗନ୍ଧକୁ । ୨୦ । କାମକାଠରଶିଖୀ—ଅନ୍ତରରେ ଥିବା ପ୍ରବଳ କାମଅଗ୍ନିରେ । ମନ୍ଦାକ୍ଷେ—ଲଜ୍ଜାରେ, ଶମ୍ପାର ତ ତୁ ସମାନ—ବିଦ୍ୟୁତ୍ ପରି; କରଜରମୃଦୁଳସ୍ପରଶେ —ନଖରେ ଧୀରସ୍ପର୍ଶ କରିବାଦ୍ୱାରା । ୨୧ । କନକପାରଦ ରସମୟ କରି—ଅର୍ଥାତ୍ ସୁନା ଓ ପାରଦକୁ ଏକତ୍ର ତରଳାଇ, ଲୋକେଶ—ବ୍ରହ୍ମା । ୨୨ । ଘନଜଘନା—ସ୍ଥୂଳ ଜଙ୍ଘ ଯାହାର, ଚିରନ୍ତନ—ଅତିପ୍ରାଚୀନ, ଶତପତ୍ରପୁତ୍ର—ବ୍ରହ୍ମା, କୃତବୀର୍ଯ୍ୟସୁତ—କାର୍ତ୍ତବୀର୍ଯ୍ୟ (ସହସ୍ର ବାହୁବିଶିଷ୍ଟ), ଶେଷ—ଅନନ୍ତ ଦେବ (ସହସ୍ରମୁଖବିଶିଷ୍ଟ), ଶକ୍ର—ଇନ୍ଦ୍ର (ସହସ୍ର ନେତ୍ରବିଶିଷ୍ଟ), ବ୍ରହ୍ମା ମୋତେ ଏମାନଙ୍କ ପରି ସହସ୍ର ବାହୁ, ସହସ୍ର ମୁଖ ଓ ସହସ୍ର ଚକ୍ଷୁ ଦେଇ ନ ଥିବାରୁ ମୁଁ ଦୁଇବାହୁ, ଏକମୁଖ ଓ ଦୁଇ ଚକ୍ଷୁରେ ତୋର ଆଲିଙ୍ଗନ, ଚୁମ୍ବନ

ଗେ ନଖାଗ୍ର ଦନ୍ତପୀଡ଼ା ଶ୍ରୀଭୁଜ ନିବିଡ଼ଭିଡ଼ା ବୁଝିବା ମୁଁ ସହିବି କି ନାହିଁ ରେ । ୨୩ । ନ କରି ଲାଜେ ଖାତର କ୍ଷଣେ କ୍ଷଣେ ତୁ ମାତର ହରୁଥିବୁ ହୋଇ ରସଲୋଭା । ମଦମତ୍ତ ଭୃଙ୍ଗଜାତ ସ୍ୱପକ୍ଷ ସଂଘାତ ଜାତ ବାତପ୍ରକମ୍ପିତ ଗଭାଶୋଭା ରେ । ଜୀବବନ୍ଧୁ । ପୂରିବ ଉଭୟ ମନୋରଥ । ନଥ ନରତନ ମନମଥ ନରମ ବିଧାନ ବଢ଼ାଇବ ସୁଖ ସ୍ୱର୍ଗପଥ ରେ । ୨୪ । ତଳୁ ମୁଁ କରେ ମୁକୁର ଦେଖାଇ ଦକ୍ଷିଣ କର ଅଗ୍ରେ ସ୍ତନଅଗ୍ରେ ଦଳୁଥିବି । ଦେଖିବୁ ସେକାଳେ ସାତ ପୁଲକାଳି କଣ୍ଟକିତ କପୋଳ ଦର୍ପଣଖଣ୍ଡ ଛବି ରେ । ଜୀବବନ୍ଧୁ । ଚାହିଁବୁ ସଲଜ ମନ୍ଦହସା । ଅଯତ୍ନ ନୟନ ଖୋସା ଖୋସାର ଦୂରଲହସା ଶୋଭା ହୋଇଥିବ ତହିଁ ମିଶା ରେ । ୨୫ । ଏଥିରେ ତୁ ଯେବେ ଶାନ୍ତ ହେବୁ ରେ କୁମୁଦକାନ୍ତମଣ୍ଡଳମଦଖଣ୍ଡନମୁଖି । ମୋ ବକ୍ଷମୁକ୍ତାହାର ବଲ୍ଲରୀ କରି ବାହାର ରହ ତୁ ଉରୋଜ ଉରେ ଯୋଖି ରେ । ଜୀବବନ୍ଧୁ । ନ ପହୁଡ଼ ପଛେ ମୋର ଅଙ୍କେ । ପର୍ଯ୍ୟଙ୍କବନ୍ଧରେ ବସି ଅନାୟାସେ ହସି ହସି ସ୍ମରବଳ ଦଳିବା ନିଃଶଙ୍କେ ରେ । ୨୬ । ଜାଣ ମୋ ପ୍ରାଣମିତରେ ତୋ ମରଜିରୁ ଇତରେ ସଂଚରିବା ସେବକ ମୁଁ ନୋହେ । ସୁଗୁଣ ଗ୍ରାହକଚିତ୍ତେ ବିଚାରି ସେବାରେ ମୋତେ ରଖିଛୁ କେମନ୍ତେ ଅନୁଗ୍ରହେ ରେ । ଜୀବବନ୍ଧୁ । ପ୍ରଭୁ ତୁହି ତତେ ଜଣା ତାହା । ସମୟମାନ ସେବାର ଜାଣି ସେବା କରିବାର ବିନା ମୁଁ ନ ଜାଣେ ଆନ ରାହା ରେ । ୨୭ । ମଣ୍ଡି ତୋ ନିତମ୍ବେ ଅଙ୍କ ଅଡର ପଙ୍କିଳ କଙ୍କପତ୍ରରେ କୁରୁଳି କେଶପାଶ । ଷଟ ପଞ୍ଚାଶତ ଦେଶପ୍ରଥିତ ପେଶଳ ବେଶ ସମୁଚିତ୍ତ ମଣ୍ଡନ ବିନ୍ୟାସ ରେ । ଜୀବବନ୍ଧୁ । ଜାଣଇ ନ ହୁଡ଼ି ଅଣୁମାତ୍ର । କୁସୁମୀ ଥାନି ଆଖିଆ ମକ୍ଷିକା ମକରୀ ଛୁଆ ମୃଗମଦପତ୍ରଭଙ୍ଗ ଚିତ୍ରରେ । ୨୮ । ବିବିଧ ଜାତି ପ୍ରସୂନ ବିଚିତ୍ର ମଣ୍ଡନମାନ ସଜାଡ଼ି ଜାଣଇ ଋତୁଭେଦେ । ବହଳ ଅଳତାଦ୍ରବବଲ୍ଲରୀ ଚିତ୍ରପାଟବ ଦେଖାଇବି ଏ ସୁନ୍ଦର ପଦେ ରେ । ଜୀବବନ୍ଧୁ । ଉରୋଜ ଉଲ୍ଲାସ କ୍ରମ ଜାଣି । ସୁନୁଲୀ କସିଦାପଢ଼ା ରାଇକାସିହା ସଜଡ଼ା ବିଧି ଜାଣିମାରେ ମୁଁ ବିନ୍ଧାଣି

---

ଓ ଦର୍ଶନ କରି ଆଦୌ ହୃଦୟରେ ପ୍ରସାଦ (ତୃପ୍ତି, ସନ୍ତୋଷ) ଲାଭ କରି ପାରୁ ନାହିଁ । ୨୩ । ଜଳଜଜିତ୍ୱର ପାଣି—ପଦ୍ମକୁ ଜୟ କରିଥିବା ହାତ, ପ୍ରଜ୍ୱଳିତ ଅନଙ୍ଗଆହବେ— ପ୍ରବଳ କାମଯୁଦ୍ଧରେ । ୨୪ । ମଦମତ୍ତ ... ଉନ୍ମତ୍ତ ଭୃଙ୍ଗଜାତ (ଭ୍ରମରସମୂହ)ର ନିଜ ପକ୍ଷ ସଞ୍ଚାଳନରୁ ବାୟୁର ଆଘାତରେ ଗଭାଗୋଭା କମ୍ପିତ ହେବାଭଳି ଜଣାଯାଉଥିବ, ଅର୍ଥାତ୍ ଧୀରେ ଧୀରେ ଝୁଡ଼ା କମ୍ପୁଥିବ । ମନମଥନରମବିଧାନ—କାମକ୍ରୀଡ଼ାବିଧି (ଏଠାରେ ବିପରୀତ ବିଧି ବ୍ୟଙ୍ଗ୍ୟ) । ୨୫ । ମୁକୁର—ଦର୍ପଣ, ସାତ—ସୁଖ, ପୁଲକାଳିକଣ୍ଟକିତ —ରୋମାଞ୍ଚିତ, କପୋଳ—ଗଣ୍ଡଦେଶ, ଖୋସା—ଖୋସିବା ବା ନିବେଶିବା କାର୍ଯ୍ୟ, ଖୋସା—ଝୁଡ଼ା, ଦରଲହସା—ଅଳ୍ପ ଢିଲା ହୋଇଥିବା । ୨୬ । କୁମୁଦକାନ୍ତ ... ଯାହାର ମୁଖ ଚନ୍ଦ୍ରମଣ୍ଡଳ ଗର୍ବ ଧ୍ୱଂସ କରେ, ପର୍ଯ୍ୟଙ୍କବନ୍ଧ—ଏକପ୍ରକାର ରତିବନ୍ଧ । ୨୮ । ତୋ ନିତମ୍ବରେ ମୋ ଅଙ୍କକୁ ମଣ୍ଡି ଅର୍ଥାତ୍ ତୋତେ କୋଳରେ ବସାଇ, ଅଡରପଙ୍କିଳ—ଅଡରଦ୍ୱାରା ବୋଳା, କଙ୍କପତ୍ର—କେଶଶୋଭାବର୍ଦ୍ଧକ କଙ୍କପକ୍ଷୀର ପକ୍ଷ, କୁରୁଳି—ଚୂର୍ଣ୍ଣକୁନ୍ତଳ, ପେଶଳ—ସୁନ୍ଦର, କୁସୁମୀଥାନି—ଫୁଲ ପଡ଼ିଥିବା,

ରେ । ୨୯ । କନକଦଳ ସୋଦର ବିଡ଼ିଆ ନାନା ପ୍ରକାର ଭାଙ୍ଗିବା ଭଙ୍ଗିରେ ମୋ ଗୁମାନ । ଦୁହେଁ କଳପିବା ଗୀତ ପ୍ରବନ୍ଧ ରସ ବିଚିତ୍ର ଲେଖିବି ଯେ ନ ଥିବ ମାନସ ରେ । ଜୀବବନ୍ଧୁ । ସଙ୍ଗୀତ ସଙ୍ଗୀ ତ ହେବି ମୁହିଁ । ଅମରପାମର ଦୁଇ ଘେନି ଘେନାଇ ପାରଇ ପ୍ରଭୁ ତୁ ବଡ଼ାଇ କହୁ ନାହିଁ ରେ । ୩୦ । ପଛ ଢଳା ସମ ସମ ମଉଳି ଘନ ସୁଷମ ବରତୁଳ ଠାଣି ପାଣିବନ୍ତ । ପୃଥୁରୋମବୀଜ ରୋପି ମୃଗେନ୍ଦ୍ର ଢାଲିଆ ଲିପି ପ୍ରବଳିବ ଯହିଁ ତୋର ସ୍ୱାନ୍ତ ରେ । ଜୀବବନ୍ଧୁ । କେତେକ କେତକୀ ଚମ୍ପା ଆଦି । ଯେଉଁ ପୁଷ୍ପ ଦଳେ ଫରମାସିବୁ ରମଣୀବର ଲେଖୁଥିବି ପ୍ରଶଂସିବ ବାଦୀ ରେ । ୩୧ । କ୍ଷଣେ ରହ ଅକମ୍ପନେ ଏ ସୁନ୍ଦରେନ୍ଦୁ ଲପନେ ଚୁମ୍ବଇ ମୁଁ ଲକ୍ଷେ ଗଣି ଗଣି । ସୁଧାରୁ ଲାଗେ ମଧୁର ପୂରଇ ନାହିଁ ଉଦର ଏ କି ସୂତ୍ର ଖଞ୍ଜିଅଛୁ ପୁଣି ରେ । ଜୀବବନ୍ଧୁ । ଯାହା ହେଉଅଛି ମନ ଏଣୁ । ମନସିଜୋଲ୍ଲାସ ନାମ ଏ ଛାନ୍ଦ ରସିକା ଶ୍ୟାମ ଇନ୍ଦିବରନେତ୍ରା ତୁ ତ ଜାଣୁ ରେ । ୩୨ । ବନମାଳା ବିରାଜିତ ବୃଷଭାନୁଭବାୟତ ଚନ୍ଦ୍ରକଲାବଣ୍ୟବେଶଶାଳୀ । ଭବଭୟ-ନିବାରଣ ଧରିତ୍ରୀଧରଧାରଣ ପ୍ରଭୋ ସଦାଶିବ ବନମାଳୀ ହେ । ଜୀବବନ୍ଧୁ । ଦୁହିଙ୍କର ଚାରି ଶ୍ରୀଚରଣ । ଜଳନ୍ତର ହରିହୟ ରାମଚନ୍ଦ୍ର ଛୋଟରାୟ ଦେବର ହୋଇବେ କି ଶରଣ ହେ । ୩୩ ।



ଆଖିଆ—ଏକପ୍ରକାର କାଝଲା । ୨୯ । ଚିତ୍ରପାଟେ—ଚିତ୍ରନିପୁଣତା, ସୁନୁଲି କସିଦାପଡ଼ା—ସୁନେଲି ରଙ୍ଗର ଫୁଲ ବୁଣା ଜରିକାମ ହୋଇଥିବା, ରାଇକାସିହା—କାଝୁଲା ସିଲାଇ କରିବା, ବିନ୍ଧାଣି—କାରିଗର । ୩୦ । କନକଦଳସୋଦର—ସୁନାପତ୍ର ପରି ହଳଦିଆ, ବିଡ଼ିଆ—ପାନ, କଳପିବା—କଳ୍ପନା କରିବା, ସଙ୍ଗୀତ ସଙ୍ଗୀ—ସଙ୍ଗୀତର ସାଥୀ, ଦୁଇ ଅମର ପାମର—ସଂସ୍କୃତ ଓ ଦେଶଭାଷା । ୩୧ । ପଛ ଢଳା—ପଛକୁ ଢଳିପଡ଼ିଥିବା, ସମ ମଉଳି—ମୁଣ୍ଡକୁ ସମାନ ହୋଇଥିବା, ପୃଥୁରୋମବୀଜ—ମାଛମଞ୍ଜିଆ (ମୂଳ ସରୁଆ), ମୃଗେନ୍ଦ୍ରଢାଲିଆ—ସିଂହଢୁଲିଆ (ମଝି ସରୁଆ) । ଲିପି—ଅକ୍ଷର, ତୋର ସ୍ୱାନ୍ତ—ତୋ ନିଜ ମନ, ଅର୍ଥାତ୍ ମୁଁ ନାନାପ୍ରକାର ଫୁଲଝରା ତିଆରି କରି ଓ ଅକ୍ଷର ଲେଖି ଜାଣେ । ୩୨ । ସୁନ୍ଦରେନ୍ଦୁଲପନେ —ସୁନ୍ଦରଚନ୍ଦ୍ର ମୁଖରେ । ୩୩ । ବନମାଳାବିରାଜିତ —(କୃଷ୍ଣ) ବନଫୁଲ ମାଳାରେ ଶୋଭିତ, (ଶିବ) କୈଳାସର ବନସମୂହରେ ଶୋଭିତ । ବୃଷଭାନୁଭବାୟତ—(କୃଷ୍ଣ) ରାଧିକାଙ୍କ ଅଧୀନ, (ଶିବ) ବୃଷଭର ସାମର୍ଥ୍ୟର ଅଧୀନ; ଚନ୍ଦ୍ରକଲାବଣ୍ୟ ବେଶଶାଳୀ—(କୃଷ୍ଣ) ମୟୂରଚନ୍ଦ୍ରିକାର ଶୋଭାରେ ସୁନ୍ଦର, (ଶିବ) ଚନ୍ଦ୍ରଙ୍କର ସୌନ୍ଦର୍ଯ୍ୟଦ୍ୱାରା ସୁନ୍ଦର; ଭବଭୟନିବାରଣ —(ଉଭୟ) ସଂସାରର ଜନ୍ମଦୁଃଖ ନିବାରକ ଅର୍ଥାତ୍ ମୁକ୍ତିଦାତା, ଧରିତ୍ରୀଧରଧାରଣ—(କୃଷ୍ଣ) ଗୋବର୍ଦ୍ଧନଧାରୀ, (ଶିବ) ସର୍ପଭୂଷଣ, ଜଳନ୍ତରହରିହୟ—ଜଳନ୍ତରର ଇନ୍ଦ୍ର ବା ରାଜା ।



(୩୨)

# ନାୟକର ବିଦେଶରୁ ପତ୍ରଲିଖନ

## ରାଗ—କୃଷ୍ଣକଳା

ଚିର ପ୍ରବାସରେ ରହିବାରୁ ନାଗରିକ । ତୀରପ୍ରହାରେ ମଦନ ହରିଲା ବିବେକ । ଦିନୁ ଦିନୁ ତନୁ ହୋଇବାରୁ ଅତି କ୍ଷୀଣ । ତନୂଦରୀ ଶ୍ରୀଛାମୁକୁ ଲେଖି ଜଣାଣ । ୧ । ଚିବୁକ ଚୁମ୍ବନ ଗାଢ଼ ଆଶ୍ଳେଷ ସଂଖୋଳା । ଦିବ୍ୟ ଅବଧାନକୁ ଆସିବ ପ୍ରେମଶୀଳା । ଅରଜିବା ପ ଁ ନାନା ଦୁଃସହ ବେଦନା । ବରଜିଲି ତୋତେ ଯେଉଁ ଦିନୁ ଚନ୍ଦ୍ରାନନା । ୨ । ଲଭିବାର ଦୁଃଖରାଶି ଡରି ନ ଲେଖିଲି । କିଶୋରୀ ତୁ ପଡ଼ି ଶୋକେ ସଡ଼ିଯିବୁ ବୋଲି । ତୁ ସାର ହୋଇ ନ ଥିବା ସକାଶୁଁ ମୋ ପାଖେ । ପୂଷାରଠାରୁ ମୋ ଭୀତି ତୁଷାରମୟୂଖେ । ୩ । ମାରୁଚି ନ ବୋଲି ତା କରକୁ ବଡ଼ଲୋକେ । ମରୀଚି ବୋଲନ୍ତି ସତେ କେଡ଼େ ଅଦିବେକେ । ସ୍ୟନ୍ଦନଚରଣ ଚାରୁ ନିତମ୍ବବତି ରେ । ଚନ୍ଦନର ବନ୍ଦନ ମୁଁ ନ କଲି ଭୀତିରେ । ୪ । କାଳପାଶ ଘେନି ହୋଏ ମରୁତ ତ କାଳ । କେହି ନ ବୋଲେ ଏ ମନ୍ଦ ମରୁ ତତକାଳ । ସ୍ତବକିତ ମଞ୍ଜରୀରେ ନବ କିଶଳୟ । ନେବ କି ପରାଣ ପରି ଜାତ କରେ ଭୟ । ୫ । ତୋ ଗିର ସ୍ମରଣୁଁ ସ୍ନେହ ନାହିଁ କୀରବରେ । କର୍ଣ୍ଣେ ବଜ୍ରବୁଦ୍ଧି ହୋଏ ଶୁଣି ପିକବରେ । ମନୁ ନାଶ ନୋହିବାରୁ ଅନିଷ୍ଟଶଙ୍କାର । ଭ୍ରମରୀତି ହେତୁ ହେଲା ଭ୍ରମରୀଝଙ୍କାର । ୬ । ଆହା ରେ ରୁଚିରଦେହା ଡାକ ବିନା କେବେ । ଆହାରେ ରୁଚି ଥିବାର ନ ଜାଣଇ ଲବେ । ମଜ୍ଜାସାର ତ ଅସାର ହେଲାନି ବିକଳେ । ସରସ କଞ୍ଜହିଁ ଦହି ନୋହେ ହୃଦସ୍ଥଳେ । ୭ । ଜୀବ ଯିବ ବୋଲି ଚିନ୍ତା ନାହିଁ

---

୧ । ତନୂଦରୀ—କ୍ଷୀଣୋଦରୀ । ୩ । ତୁ ସାର ହୋଇ ନ ଥିବା ସକାଶୁଁ—ତୁ ସ୍ଥିର ହୋଇ ମୋ ସାଙ୍ଗରେ ନ ଥିବାରୁ । ପୂଷା—ସୂର୍ଯ୍ୟ, ତୁଷାରମୟୂଖେ—ଚନ୍ଦ୍ରଠାରେ । ୪ । ମାରୁଚି— ମାରୁଅଛି ବା ମାରଣା, କର—କିରଣ, ମରୀଚି—କିରଣ, ସ୍ୟନ୍ଦନଚରଣ ଚାରୁ ନିତମ୍ବବତିରେ—ହେ ରଥଚକ୍ରପରି ମନୋହର ନିତମ୍ବଯୁକ୍ତା । ୫ । କାଳପାଶ—ପ୍ରାଣବିନାଶକ ପାଶ, ମରୁତ ତ କାଳ—ପବନ ପ୍ରତ୍ୟକ୍ଷ ଯମ ପରି, କେହି ... କେହି କହେ ନାହିଁ, "ଏ ମନ୍ଦ ତତ୍କାଳ (ସାଙ୍ଗେ ସାଙ୍ଗେ) ମରୁ ।" ସ୍ତବକିତ ମଞ୍ଜରୀ—ପେନ୍ଥା ପେନ୍ଥା ହୋଇଥିବା ଫୁଲକଢ଼, କିଶଳୟ—ନୂଆପତ୍ର । ୬ । କୀରବରେ—ଶ୍ରେଷ୍ଠ ଶୁକଠାରେ, ପିକବରେ—କୋକିଳଠାରେ । ଭ୍ରମରୀତି ହେତୁ—ଭ୍ରାନ୍ତିପୂର୍ଣ୍ଣ ଧାରଣାର କାରଣ । ୭ । ରୁଚିରଦେହା—ସୁନ୍ଦରୀ, ଆହାରେ ରୁଚି—ଖାଦ୍ୟରେ ଅଭିଳାଷ, ମଜ୍ଜାସାର— ଅନ୍ତଃକରଣଶକ୍ତି,

ଚିତ୍ତେ ମୋର । ଜୀବଂଜୀବ ମୋ ନେତ୍ର ତୋ ମୁଖ କଳାକର । ତାହା ଦରଶନ ବିନା ମାରିବାକୁ ମୋତେ । ଯାହା ଦରପଣ ମାର ଦେଖାଇ ନିରତେ । ୮ । ବିଷାଇ ତୋ ମାର୍ଦ୍ଦବ ଶ୍ରୀଅଙ୍ଗସ୍ଫୁତ ଗରେ । ସାରି ଦେଲାନିଚି କୋଟି ଶରପ୍ରୟୋଗରେ । ବଞ୍ଚିବିଟି କେହି ରେ ବିପଞ୍ଚୀଜିଣାବାଣୀ । ସଞ୍ଚି ରୋଷ ବିରଞ୍ଚି କି ଦଣ୍ଡ ଦେଲା ଆଣି । ୯ । ନିରତେ ମୋ ହୃଦ ରଙ୍ଗସ୍ଥଳୀ ମଧ୍ୟେ ରହି । ନାଚିବାରୁ ପାଚିବା ରୁଚକସ୍ତନା ତୁହି । ତୋ ଲାବଣ୍ୟ ବିନା ଆଉ ଇତର ନ ଦିଶେ । କି ମୋହନମନ୍ତ୍ର ସିନ୍ଧୁ ଭିତରେ ନ ଦିଶେ । ୧୦ । ନୟନ ବୁଜିଲେ ଦିଶୁ ମୋ ଅନ୍ତଃକରଣେ । ଚାହିଁଲେ ଚିତ୍ରିତ ଦିଶୁ ହରିତବରଣେ । ପ୍ରିୟ ଆଳୀ ଜଣେ ମାତ୍ର ସମୀପେ ରୁହାଇ । ଯାଇ ଢାଳି ଯବନିକାପାଶେ ଉଭା ହୋଇ । ୧୧ । କୁସୁମମଣ୍ଡପେ ମୁଁ ଏକାନ୍ତେ ଥିବା ଜାଣି । ନ ଜାଣିଲା ହୋଇ କହିବାର ରସ ବାଣୀ । ରସାଇ ସଖୀକି କରିବାର ପରିହାସ । ମିଶାଇ ତହିଁରେ ମୁଁ ଶୁଣିବାଭଳି ହାସ । ୧୨ । ମଞ୍ଜୁଆତି ବିନ୍ଦୁ ରାଗମଞ୍ଜୁଳ ଅଙ୍ଗୁଳି । ଗଳାଇ ପରଦା ରନ୍ଧ୍ରେ କରାଇବା କେଳି । କେଡ଼େ ଉଚ୍ଚସ୍ୱରେ କହୁଚି ମା କଥା ବୋଲି । ଢାଳିମାର୍ଗେ ଅନାଇଁ ନଚାଇ ଚାରୁ ଚିଲ୍ଲୀ । ।୧୩। ଫିଙ୍ଗି ମୋ ବଦନେ ନେତ୍ର ଇନ୍ଦୀବରବର । ଅମନ୍ଦ କନ୍ଦର୍ପ ମନ୍ଦସ୍ମିତ ବିହିବାର । କହ କହ ସଖି କେହି ନାହାନ୍ତି ତ ବୋଲି । ସଖୀକି ଦେବାର ଶାଢ଼ୀବାଡ଼ଦିଗେ ପେଲି । ୧୪ । ପୁଣି ସବୁ ସଖୀଙ୍କି ଡକାଇ କରି ସଭା । କରକଞ୍ଜ ଖଞ୍ଜି ଜନମାଇ ବୀଣାଶୋଭା । ଝରାଇ ସୁବର୍ଣ୍ଣ କର୍ଣ୍ଣସୁଧା ଝରିବାର । କିନ୍ନରୀ ଗାରିମା ଶିରୀ ଚୋରି କରିବାର । ୧୫ । ମୁଁ ମିଳୁ ମନ୍ଦାକ୍ଷେ ହସି ରସନା କାମୋଡ଼ି । ରସନା ବଜାଇ ତଳ୍ପେ ବିପଞ୍ଚୀ କଚାଡ଼ି । ପଳାଇ ଯିବାର ମଦ କଳହଂସ ପରି । ଦେଲା ପରି ମୋ ନୟନେ ଘନସାର ଚୂରି । ୧୬ । ନେତ୍ରାଞ୍ଚଳେ ଚାହିଁ ପରକାଶି ଦର ସ୍ମିତ । ଏ ଜୀବ ଥିବାରେ କି ପାସୋରି ପାରେ ଚିତ୍ତ । ଚରମାଦ୍ରି ଚୂଳକୁ

---

ଅସାର—ଦୁର୍ବଳ, କଞ୍ଜ—ପଦ୍ମ । ୮ । ଜୀବଂଜୀବ—ଚକୋର, କଳାକର—ଚନ୍ଦ୍ର, ଦରପଣ—ଭୟ, ମାର—କନ୍ଦର୍ପ । ୯ । ବିଷାଇ —ବିଷଲିପ୍ତ କରାଇ, ମାର୍ଦ୍ଦବ ଶ୍ରୀଅଙ୍ଗସ୍ଫୁତ ଗରେ —କୋମଳତାପୂର୍ଣ୍ଣ ସୁନ୍ଦର ଅଙ୍ଗରୁ ଗଳିତ ବିଷରେ । ବିପଞ୍ଚୀଜିଣାବାଣୀ—ବୀଣାଜିଣାବଚନା, ବିରଞ୍ଚି—ବ୍ରହ୍ମା । ୧୦ । ପାଚିବା ରୁଚକସ୍ତନା— ପାଚିଲା ଟଭାଫଳ ପରି ସ୍ତନ ଯାହାର । ୧୧ । ଢାଳି ଯବନିକା—ଝାଲର ପରଦା । ୧୨ । ରସବାଣୀ—ରସପୂର୍ଣ୍ଣ କଥା । ୧୩। ଚାରୁଚିଲ୍ଲୀ —ସୁନ୍ଦର ଭ୍ରୂଲତା । ୧୪ । ନେତ୍ରଇନ୍ଦୀବରବର— ସୁନ୍ଦର ନେତ୍ରରୂପ ନୀଳପଦ୍ମ । ଶାଢ଼ୀବାଡ଼ ଦିଗେ—ପରଦା ଆଡ଼କୁ । ୧୫ । କରକଞ୍ଜଖଞ୍ଜି ଜନମାଇ ବୀଣାଶୋଭା—ହସ୍ତପଦ୍ମରେ ବୀଣା ଧରି । ୧୬ । ମନ୍ଦାକ୍ଷେ—ଲଜ୍ଜାରେ, ରସନା— ଜିହ୍ୱା ଓ କଟିଭୂଷଣ କାଞ୍ଚୀଦାମ, ତଳ୍ପେ— ବିଛଣାରେ । ବିପଞ୍ଚୀ—ବୀଣା, ଘନସାର—କର୍ପୂର । ୧୭ । ଚରମାଦ୍ରିଚୂଳକୁ—ଅସ୍ତପର୍ବତ ଶିଖରକୁ, କରମାଳୀ ସୂର୍ଯ୍ୟ ଓ ହାତରେ ଧରିଥିବା

ଚୁମ୍ବନ୍ତେ କରମାଳ । ପେଷି ବିଚକିଲକଳିକୁଳେ କରମାଳି । ୧୭ । ତୁଙ୍ଗ ଝରାରେ ମିଶାଇ ପୁଷ୍ପଚୟ ଦେ ଷି । ହେଲି ବାରି ନ ଘେନିବେ ବୋଲି ଆଉ ଭାଷି । ସେ ଇଙ୍ଗିତ ଭଙ୍ଗି ଶୁଭାଙ୍ଗୀର ତ ଇ । ଅଧ ଉର୍ଦ୍ଧ୍ୱେ ସାତଗୋଟି ପଙ୍କଜ ରଖାଇ । ୧୮ । ତଳକୁ ରହାଇ ତହିଁ ଯେଉଁ ଦ୍ଧ ଗୋଟି । ଗୋଟି ଗୋଟି କରେ ଚୁମ୍ବ ଦିଏ କୋଟି କୋଟି । ଦିନେ ଦିନେ ଦିନାନ୍ତରେ ଆଜନମସୁଖୀ । ପରିଜନ ବିନା ମୁଁ ଏକାନ୍ତେ ଥିବା ଦେଖି । ୧୯ । ସ୍ନେହପ୍ରେ ାସିବା ମାନସ ନ ସମ୍ଭାଳି । କରାଇ ଅଧରେ ଙ୍କାନହଜା ହାସ କେଳି । କମ୍ପାଇ ତାଟଙ୍କ ମୋଡ଼ିହୁଣ ଅପ୍ରକଟେ । ଝମ୍ପାଇ ଶ୍ରୁତିକି ଲୋଳ ନେତ୍ରମଣ୍ଡାରୀଟେ । ୦ । ଶ୍ରବଣେ କିଛି କହିବା କପଟରେ ଆସୁ । ସ୍ନେହରେ ମୋ ଗଣ୍ଡେ ଚୁମ୍ବକଦମ୍ବ ବରଷୁ । ଏକ ତୋ ଅବଧାନ ଭାବିଲା ଉତ୍ତାରୁ । ନ ଫାଟେ ଯା ଛାତି ଏ ନିରାଟ ବଜ୍ରଠାରୁ । ୨୧ । ଇନ୍ଦ୍ରହିଁ ହେଲେ ଏହାକୁ ନିଜାସ୍ୱ ନ କରେ । ଶଚିର ଚିରବିରହ ସହିବା ଭୟରେ । ପୂର୍ବ ଶୁଦ୍ଧାନ୍ତ ପ୍ରାସାଦେ କୁହୁନିଶାନନେ । ଉଭା ହୋଇଥିଲୁ ନୀଳ ଚୋଳ ପିନ୍ଧି ଦିନେ । ୨୨ । ମସାଲା ପ୍ରଦୀପ କିଛି ନ ଥିଲା ହାଜର । ମୁଁ ମଧ ମଣ୍ଡପେ ଥିଲି ପଡ଼ିଲା ନଜର । ତୋ ମୁଖମଣ୍ଡଳ ବୋଲି ନୋହିଲା ବିବେକ । ସେ ନିଶାରେ କଲି ରାକା ବ୍ୟବହାର ଯାକ । ୨୩ । ତମମୁଖ ଉଚ୍ଛିଷ୍ଟ ସମାନ କଲେ ଘେନି । ବିମ୍ବପ୍ରତି ବିମ୍ବାଧରା ହୋଇଲୁ ମାନିନୀ । ଗିରି ମାଡ଼ିପଡ଼ି ନାଡ଼ି ଛାଡ଼ି ଗଲା ପରି । ଗିରିଜେମାବରପର ଶରେ ଗଲି ସରି । ୨୪ । ଜଣାଇଲି ଚିବୁକରେ କରନ୍ୟାସ କରି । ତୁ ମୋ ଧନୀ ପରା ସୁନାଗୋରି ସୁକୁମାରି । ଦାସୀମାନଙ୍କରେ ଜଣେ ମୁଁ ପରା ତୋହର । ଭାସିଯିବି ସିନା ହେଲେ କରୁଣାନ୍ତ ହର । ୨୫ । ମୁଁ ତୋ ପଦକଞ୍ଜ ଅଳକତ ଚିତ୍ରକରା । ତୁ ମୋ ମଉଳି ଭୂଷଣ ଚମ୍ପାଝରା ପରା । ତଳକୁ ଅନାଇ ନ ଚାହୁଁଛୁ ଯାହା ମୋତେ । ନୀଳକୁନ୍ତଳା ମୋ ଭାଗ୍ୟମୂଳ କେ ଜଗତେ । ୨୬ । ଶୁଣି ଗୁଣବତୀ ଗେଲେ ଗୁମାନ ଛାଡ଼ିଲୁ । ପୁଣି ହସି ସ୍ତନଯୁଗେ ଜଡ଼ାଇ ଭିଡ଼ିଲୁ । ପ୍ରସାଦ ମୋ ବିବଶ ମନକୁ ରିଝାଇଲୁ । ପ୍ରାସାଦେ ମୁଁ ସିନା ଥିଲି ବୋଲି ବୁଝାଇଲୁ । ୨୭ । ବଡ଼ ସାର ବଡ଼ଭୀରେ

---

ମାଳା, ବିଚକିଳକଳିକୁଳେ—ମଲ୍ଲୀଫୁଲ କଢ଼ିମାନଙ୍କରେ । ୧୮ । ତୁଙ୍ଗଝରା—ବଡ଼ ବଡ଼ ଫୁଲତୋଡ଼ା, ହେଲି ବାରି ନ ଘେନିବେ—ମୁଁ (ଚାରିଦିନ) ପୃଥକ୍ ହେଲି, ସାତଗୋଟି ପଙ୍କଜ—ଏକ ମୁଖ, ଦୁଇ କର, ପାଦ ଓ ସ୍ତନ ସଦୃଶ । ୧୯ । ପରିଜନ—ଭୃତ୍ୟାଦି ଅନୁଚର । ୨୧ । ଚୁମ୍ବକଦମ୍ବ—ଚୁମ୍ବନସମୂହ, ନିରାଟ— ନିଷ୍ଠୁର, କର୍କଶ । ୨୨ । ଏହାକୁ—(ଏଠାରେ ହୃଦୟକୁ) ପୂର୍ବଶୁଦ୍ଧାନ୍ତ ପ୍ରାସାଦେ—ପୁରୁଣା ଅନ୍ତଃପୁର କୋଠାରେ, କୁହୁନିଶାନନେ— ଅମାବାସ୍ୟାର ସଞ୍ଜବେଳେ, ନୀଳଚୋଳ— ନେଳିଆ ଲୁଗା । ୨୩ । ରାକାପୂର୍ଣ୍ଣିମା ରାତି, ତୋ ମୁଖ ଚନ୍ଦ୍ରପରି ହୋଇ ଅମାବାସ୍ୟା ଅନ୍ଧକାର ଦୂରକରି ଦେବାରୁ । ୨୪ । ତମମୁଖ ଉଚ୍ଛିଷ୍ଟ— ରାହୁ ମୁହଁର ଅଇଁଠା—ଚନ୍ଦ୍ର; ଗିରିଜେମାବରପର —ଶିବଶତ୍ରୁ କନ୍ଦର୍ପ । ୨୫ । କରୁଣାନ୍ତ ହର— ନିର୍ଦ୍ଦୟତା ଦୂର କର । ୨୭ । ପ୍ରସାଦୁଁ—ଅନୁଗ୍ରହ କରି,

ବରଷାର କାଳେ। ବସିଥିଲୁ ଗବାକ୍ଷ ସମୀପେ ମୋର କୋଳେ। ପରିବୃଦ୍ଧ ସରିତଲହରୀ ଦୂରେ ଚାହିଁ। ଏମନ୍ତ ଭାଷିଲୁ ପରିରେ ଚାନ୍ଦମୁହାଁ। ୨୮। ତୀରତରୁମାନଙ୍କର ସାର ନେବ ଧନୀ। ମୁଁ ବୋଇଲି ଅନ୍ତରୁ ତୁ ଫେରାଅ ଭାବିନି। ଚତୁରୀ ତହିଁକି ହସି କହିବା ଭାରତୀ। କତୁରି ପକାଉଛି ମୋ ଅନାରତେ ଧୃତି। ୨୯। ଦିନେ ସ୍ମରବଶେ କରକଞ୍ଜ ଯା ଧଇଲି। ଥରେ ମୋହପରି ହେବୁ ଛଇଳା ବୋଇଲି। ତହିଁକି ଭାଷିଲୁ ହସି ଉରେ କର ତାଡ଼ି। ଦଶନାନ୍ତେ ରସନା ପଲ୍ଲବାଞ୍ଚଳେ ଭିଡ଼ି। ୩୦। ମେଧାରେ ଧିଷଣ ବଳେ ବାଳୀ ରୂପେ କାମ। ସଙ୍ଗୀତେ ଗନ୍ଧର୍ବ କ୍ଷମାଗୁଣେ କ୍ଷମୋପମ। ମୋ ଛାର କିଶୋରୀ ତୁମ୍ଭପରି କେହି ହେବି। ଏତେ କହି ଖେଳିଲୁ ମୋ ଛାତିରେ ବାନ୍ଧବି। ୩୧। ହୋଇଗଲା ବିରତ ମଞ୍ଜୀର ମଞ୍ଜୁରବ। ମେଖଳା କିଙ୍କିଣୀ କଲା ଶ୍ରବଣ ଉତ୍ସବ। ମେରୁଯୁଗ କମ୍ପିଲା ତଳକୁ କରି ଚୂଳ। ବିଷ୍ଣୁପଦେ ଲମ୍ଫି ମନ୍ଦାକିନୀ ହେଲା ଲୋଳ। ୩୨। ଶଙ୍ଖଶିଖେ ଶଶୀ ଶଶୀଦୁଇ ପାଖେ ରହି। କମ୍ପିଲେ ଭାର୍ଗବ କବି ତରଳତା ବହି। ଝଲକା ମୋତିରେ କରି ଲବଳୀ ବଶ୍ୱାସ। ଝାମ୍ପି ଫେରିଲା ଖଞ୍ଜନ ଆଗେ ଚାହିଁ ପାଶ। ୩୩। ଚାମୀକର କର ଚଞ୍ଚୁପୁଟରେ ଲବଳୀ। ଧରି ପ୍ରମୋଦରେ ତାକୁ ଖେଳାଇଲା ଦୋଳି। ଝାମ୍ପି ନ ପାରିଲା ପକ୍ୱବିମ୍ବ ତାହା ତଳୁ। ଛାଡ଼ି ନ ପାରିଲା ଆଶା ଲବଳୀ କବଳୁ। ୩୪। ବିପରୀତ କାଳ ହୋଇବାରୁ ପରବେଶ। ବିପରୀତ ରୀତିଯାକ ହୋଇଲା ପ୍ରକାଶ। ଆରମ୍ଭିଲା ନରତନ କି ଯତନ କରି। କନକ କେତକୀ

---

ରିଝାଇଲୁ—ରଞ୍ଜାଇଲୁ, ପ୍ରାସାଦେ— କୋଠାରେ। ୨୮। ବଡ଼ସାର ବଡ଼ଭାରେ— ଅତ୍ୟୁନ୍ନତ କୋଠାରେ, ଗବାକ୍ଷ—ଝରକା, ପରିବୃଦ୍ଧସରିତଲହରୀ—ବଢ଼ିଥିବା ନଈର ଢେଉ। ୨୯। ଧୁନୀ—ନଦୀ, ଭାବିନି—ହେ ରମଣି, ବୋଇଲି—ତୋ କହିବା ଧାଡ଼ିଟିକୁ ଶେଷଆଡୁ ପଢ଼ 'ନିଧୁବନେରସ', ଥରେ ମୋହ ପରି ହେବୁ—ପୁରୁଷାୟିତ ରତି ପ୍ରଦାନ କରିବୁ, ଦଶନାନ୍ତେ ... ଦାନ୍ତରେ ଓଠ କାମୁଡ଼ି। ୩୧। ମେଧାରେ—ବୁଦ୍ଧିରେ, ଧିଷଣ—ବୃହସ୍ପତି, ବାଳୀ—ମର୍କଟରାଜ, ରୂପେ କାମ— ସୌନ୍ଦର୍ଯ୍ୟରେ କନ୍ଦର୍ପପରି, କ୍ଷମୋପମ—ପୃଥିବୀ ପରି। ୩୨। ମଞ୍ଜୀର—ନୂପୁର, ମଞ୍ଜୁରବ— ମନୋହର ଧ୍ୱନି, ମେଖଳକିଙ୍କିଣୀ—କଟୀ ଅଳଙ୍କାରର ଘୁଙ୍ଗୁଡ଼, ବିଷ୍ଣୁପଦ—ଆକାଶ, ଶୂନ୍ୟ ମନ୍ଦାକିନି—ସ୍ୱର୍ଗଗଙ୍ଗା ଓ ହାର, ଲୋଳ—ଚଞ୍ଚଳ। ୩୩। ଶଙ୍ଖଶିଖେ ଶଶୀ—ଗ୍ରୀବାରୂପ ଶଙ୍ଖ (କମ୍ବୁ) ଉପରେ, ମୁଖରୂପ ଶଶୀ (ଚନ୍ଦ୍ର), ଶଶୀ ଦୁଇ ପାଖରେ (ମୁଖ ଦୁଇ ପାଖରେ) (ଭାର୍ଗବ କବି—ଶୁକ୍ର ସୂର୍ଯ୍ୟ ରୂପୀ କର୍ଣ୍ଣଭୂଷଣ) ତରଳତା ବହି ଚଞ୍ଚଳ ହୋଇ କମ୍ପିଲେ। ଝଲକା ମୋତିରେ—କାନଫୁଲରେ ଲାଗିଥିବା ମୁକ୍ତାରେ, ଲବଳୀ—ନରକୋଳି, ଖଞ୍ଜନ—ନୟନରୂପ ଖଞ୍ଜନ ପକ୍ଷୀ, ପାଶ—(ଏଠାରେ) ପର୍ଣ୍ଣରୂପ। ୩୪। ଚାମୀକରକର ଚଞ୍ଚୁପୁଟରେ—ସୁବର୍ଣ୍ଣ ତେଜୋମୟ ଥଣ୍ଟରେ (ନାସିକାଦଣ୍ଡି ରୂପ), ପକ୍ୱବିମ୍ବ—ପାଚିଲା ବିମ୍ବଫଳ (ଅଧରରୂପ), ଲବଳୀକବଳୁ—ନରକୋଳିଫଳ ଭକ୍ଷଣରୁ। ୩୫। କନକକେତକୀଦଳେ କଳାନାଗପରି—ସୁନାରଙ୍ଗର

ଦଳେ କଳା ନାଗ ପରି । ୩୫ । ସେ ସମୟ ମିଶି ରସ ବରଷା ସଙ୍ଗରେ । ପୂରିଗଲା ଚନ୍ଦନ ମାରୁତ ତରଙ୍ଗରେ । ନିଦାଘରେ ଲୁଳି କେଳି କନକମଞ୍ଜରୀ । ଜମିଗଲା ଗାଢ଼େ ଦ୍ରୁମେ ଅବଲମ୍ବ କରି । ୩୬ । ସେ ସୁଭାଗ୍ୟ ସୁଖସ୍ୱର୍ଗ ସମ୍ପତ୍ତି ସ୍ମରଣୁ । ନ ଦିଶଇ ମୋତେ ଆନ ଉପାୟ ମରଣୁ । କରିବି କି ବୁଦ୍ଧିରେ ସୁବୁଦ୍ଧି ରାମାବର । ବରଷ ଶତ ହେଲାନି ତ୍ରୁଟିକ ମାତର । ୩୭ । ତରଳି ଗଲାନି ଭୟେ ମଜ୍ଜାନବନୀତ । ନିତମ୍ବିନୀମଣି ପରା ତୁହି ମୋ ଜୀବିତ । ବିତରଣ କରି ଦନ୍ତଚେଲୁଁ ସୁଧାରସ । ରସନାକୁ ଯେବେ ମୋର କରିବୁ ସନ୍ତୋଷ । ୩୮ । ତୋ ସକାଶୁଁ ସିନା ମୁଁ ତରୁଣ ପୁରନ୍ଦର । ଦରକଣ୍ଠି ନୋହୁ ତୁ ମୋ ପରାଣୁ ବାହାର । ହାର ମଧ ତରଳ ମୁଁ କେହି ତୋତେ କରି । କରଗତ ହେବି କେଳିବିପିନବିହାରୀ । ୩୯ । ହାରି ଜୁହାରିବ ଦୂରୁ ପ୍ରସୂନପ୍ରହର । ହର ପ୍ରସାଦୁଁ ଏ ଭାଗ୍ୟ କେବେ ହେବ ମୋର । ତୋ ଶ୍ରୀହସ୍ତ ପ୍ରତିଲେଖ ଦରଶନାବଧି । ରଖିଅଛି ଜାଣ ପ୍ରାଣ ଲାବଣ୍ୟବାରିଧି । ୪୦ । ତୁ ତ ଗୁଣଗଣମଣି ମଞ୍ଜୁଷ ମୋ ବନ୍ଧୁ । ବିଶେଷ ଅରଜି କିସ ଦେବି ରସସିନ୍ଧୁ । ଶୁଣ ହେ ରସିକବରେ ହୋଇ ପୂର୍ଣ୍ଣମୋଦ । ଜଳନ୍ତର ବସୁନ୍ଧରାକପଟକ୍ଷୀରୋଦ । ୪୧ । ତହିଁ ଚିତ୍ରସୁଧାକର ରାମଚନ୍ଦ୍ର ଦେବ । କଳପନା କଲେ ଏ ଶ୍ରବଣ ମହୋତ୍ସବ । ହେବ ଏ ନିଖିଳ ତୃଷାଭୟନିବାରିଣୀ । ଦୁଃଖ ନିବେଦନ ରସାମୃତତରଙ୍ଗିଣୀ । ୪୨ ।



---

କେତକୀପତ୍ରରେ କଳାନାଗ ପରି ପୃଷ୍ଠଦେଶରେ ବେଣୀ ନୃତ୍ୟ କଲା । ୩୬ । ରସବରଷାସଙ୍ଗରେ —ଜଳବୃଷ୍ଟି ସହିତରେ ଅଥଚ ଶୃଙ୍ଗାରରସମୟ ଯୁଦ୍ଧରେ, ଲୁଳି—କ୍ଳିନ୍ନ ହୋଇ, କନକ ମଞ୍ଜରୀ— ସ୍ୱର୍ଣ୍ଣବର୍ଣ୍ଣ କଳିକା ଅର୍ଥାତ୍ ତତ୍‌ସଦୃଶୀ କିଶୋରୀ, ଦ୍ରୁମ—ବୃକ୍ଷ ଅଥଚ ଦ୍ରୁମରୂପୀ ପୁରୁଷ । ୩୭ । ତ୍ରୁଟି—କ୍ଷଣକାଳ, ମଜ୍ଜାନବନୀତ—ଅନ୍ତଃକରଣ-ରୂପ ଲହୁଣୀ, ନିତମ୍ବିନୀମଣି—ରମଣୀମଣି, ଦନ୍ତଚେଲୁଁ—ଅଧରରୁ । ୩୯ । ତରୁଣପୁରନ୍ଦର— ଯୁବକଶ୍ରେଷ୍ଠ, ଦରକଣ୍ଠି ! ହେ କମ୍ବୁକଣ୍ଠି ତରଳ—ହାରମଧ ମଣି । ୪୦ । ପ୍ରସୂନପ୍ରହର—କନ୍ଦର୍ପ । ୪୧ । ଅରଜି—ଅର୍ଜି, ପ୍ରାର୍ଥନାପତ୍ର; କପଟକ୍ଷୀରୋଦ—କପଟ କ୍ଷୀରସମୁଦ୍ର । ୪୨ । ଚିତ୍ରସୁଧାକର—ବିଚିତ୍ର ଚନ୍ଦ୍ରମା, ରସାମୃତତରଙ୍ଗିଣୀ—ଶୃଙ୍ଗାରରସରୂପ ଜଳପୂର୍ଣ୍ଣ ନଦୀ ।



## (୩୩)

# ସଂଭୋଗ ଚାଟୁ

## ରାଗ—ସମ୍ଭୋଗ ଭୂପାଳ

କେଉଁ ରସିକ ବାଳାକୁ କୋଳେ ଧରି । କହେ ଚିବୁକେ କର ବିନ୍ୟାସ କରି । ୧ । ଶିରୀଷାଙ୍ଗୀ ପ୍ରାଣେଶ୍ୱରୀ ତୁହି ପରା । ପରାଣବନ୍ଧୁଆ ମୋ ହୃଦୟ ହାରା । ୨ । ଚାରୁ ମୋତିଞ୍ଜିତଦନ୍ତୀ ବିମ୍ବାଧରୀ । ଧରିତ୍ରୀମଣ୍ଡନା ମୋ ଲୋଚନଶିରୀ । ୩ । ଝଳିଗୋରୀ ସୁନୟନା ସୁକୁମାରୀ । ବାଳାମଣି ମୋ ଶିରଭୂଷଣଶିରୀ । ୪ । ମୁହିଁ ତୋ ଚରଣସେବା ନଉକର । ତୁ ମୋ ପ୍ରଭୁ ସିନା ନିତମ୍ବିନୀବର । ୫ । ବାଳାବଳୟମଉଳି ଅଳଙ୍କାର । ରମା ସମାନ ନୋହେ ଶୋଭାକୁ ତୋର । ୬ । ଯୋଗିଯୋଗଧ୍ୱଂସିନୀ ରେ ଜୀବବନ୍ଧୁ । ବନ୍ଧୁଜୀବଅଧରା କରୁଣାସିନ୍ଧୁ । ୭ । କେଶ ସମ ନୋହିବାରୁ ନବଘନ । ନୀରଛଳେ ମୁଞ୍ଚେ ଅଶ୍ରୁ ଘନ ଘନ । ୮ । ମନମୋହନା ନବୀନା ମଦାଳସୀ । ତୋର ବଦନ ସଦୃଶ ନୋହେ ଶଶୀ । ୯ । ନାସା ଶୋଭାକୁ କାହାକୁ ଲକ୍ଷି ପାରି । ତିଳତିଳକ ତିଳକେ ନୋହେ ସରି । ୧୦ । ନେତ୍ର ତୁଲ୍ୟ ନୋହିବାରୁ ଇନ୍ଦୀବର । ଭୟେ ପଳାଇ ବନରେ କଲା ଘର । ୧୧ । ଭୂରୁଧନୁ କଜ୍ଜଳ ଗୁଣରେ ରାଜେ । ଚାହିଁ ଯତୀନ୍ଦ୍ର ତପଗରବ ଭାଜେ । ୧୨ । ଦିବ୍ୟ ଝଳିମନ୍ତ ତୋର ଗଣ୍ଡସ୍ଥଳୀ । ମାରମୁକୁର ଛାର କି ଏହା ଭଳି । ୧୩ । ନବପଲ୍ଲବେ ତୁଲ୍ୟ କି ତୋ ଅଧର । ଏକା ମଧୁମାସେ ସିନା ସେ ମଧୁର । ୧୪ । ଶ୍ରୁତି ଘଟନା ପାଟଳୀ ନୋହେ ସରି । ସ୍ୱର୍ଣ୍ଣତୁଳେ ଗୁଞ୍ଜାକୁ ତୁଳିଲା ପରି । ୧୫ । କମ୍ବୁକଣ୍ଠତୁଲେ ତୁଲ୍ୟ ହେବା ପାଇଁ । ଶମ୍ଭୁଠାବରେ ସେବାରେ ନିତି ଯାଇ । ୧୬ । ସେ କି ଶିବ ସେବି ସମ ହୋଇପାରେ । ଯାହା ଉପମା ନାହିଁ ତ୍ରିପିଷ୍ଟପରେ । ୧୭ । ମଧୁଜିଣାବାଣୀ ଆରେ ଧୀରାବର । ସୁଧାଝରୀରୁ ତ ସ୍ୱାଦୁ ଗିର

୪ । ଝଳିଗୋରୀ—ସମୁଜ୍ଜ୍ୱଳ ଗୌରବର୍ଣ୍ଣା । ୫ । ନଉକର—ଚାକର । ୬ । ବାଳାବଳୟମଉଳି ଅଳଙ୍କାର—ଯୁବତୀସମୂହର ମସ୍ତକଭୂଷଣରୂପା, ରମା—ଲକ୍ଷ୍ମୀ । ୭ । ବନ୍ଧୁଜୀବଅଧରା— ବନ୍ଧୁଲିଫୁଲ ପରି ରକ୍ତବର୍ଣ୍ଣ ଅଧର ଯାହାର । ୮ । ନବଘନ—ନୂତନ ମେଘ । ୧୦ । ନାସାଶୋଭାକୁ ... ନାସିକା ଶୋଭାକୁ କାହା ସଙ୍ଗେ ତୁଳନା କରିବ ? ତିଳତିଳକ—ଉତ୍କୃଷ୍ଟ ରାଶିଫୁଲ, ତିଳକେ —ଅଳ୍ପମାତ୍ରାରେ ସୁଦ୍ଧା । ୧୧ । ଇନ୍ଦୀବର— ନୀଳକଇଁ, ବନରେ—ଜଳରେ । ୧୨ । ଭ୍ରୂଲତାରୂପ ଧନୁ କଜ୍ଜଳରେଖାରୂପ ଗୁଣରେ ଶୋଭାପାଏ । ୧୩ । ଝଳିମନ୍ତ—କାନ୍ତିଯୁକ୍ତ, ମାରମୁକୁର—କନ୍ଦର୍ପର ଦର୍ପଣ । ୧୪ । ମଧୁମାସ —ବସନ୍ତ ଋତୁ । ୧୫ । ପାଟଳୀଫୁଲ (କର୍ଣ୍ଣସଙ୍ଗେ ଉପମିତ ହୁଏ), ଗୁଞ୍ଜ—କାଇଁଚ । ୧୬ । କମ୍ବୁ—ଶଙ୍ଖ ।

ଚୋର । ୧୮ । ଉଚ୍ଚସ୍ତନା ସୁବରନା ଦିବ୍ୟ ବେଣୀ । ଦାସ ସ୍ନେହବସ୍ଥଳାରେ ନୀଳକେଶି । ୧୯ । ପୂର୍ବକାଳ କାଶୀବାସୀ ସେବିବାର । ଫଳ ଫଳିଲା କି ଏତେକାଳେ ମୋର । ୨୦ । ଧରି ଚରଣକଞ୍ଜ ଅଳତା ଦେଲି । ଶକ୍ରପଦ ପଦତଳେ ରଖାଇଲି । ୨୧ । ଗଙ୍ଗାସାଗରେ ମୁଁ ଝାସିଥିବା ଘେନି । ମୋର ଅଙ୍କ ଅଳଙ୍କାର ହେଲୁ ଧନି । ୨୨ । କାମକଳାନିଧି ଆରେ କୃଶୋଦରୀ । ଦରିଦ୍ର ମୁଁ ବନ୍ଧୁ କଳ୍ପଲତା ପରି । ୨୩ । ପରିଣତ କରକ ସୁବୀଜଦନ୍ତି । ଦନ୍ତିରାଜଗମନା ତୁ ମୋ ସମ୍ପତ୍ତି । ୨୪ । କରିଅରିଜିଣାମଧ୍ୟା ସୁଲକ୍ଷଣା । ଚମ୍ପାଦେହା ଚଞ୍ଚଳାକ୍ଷି ବିଚକ୍ଷଣା । ୨୫ । କଞ୍ଜଚାରୁ ଚରଣାରେ ଚନ୍ଦ୍ରାନନା । ରମ୍ଭା ଉରୁବଶୀରେ କି ତୋ ଗଣନା । ୨୬ । ରସନିଧି ତୁ ମୋ ଗଳାମାଳା ସିନା । ଗୁଣଜଳଧିରେ ତୁ ମୋ ଗଣ୍ଡି ସୁନା । ୨୭ । ପଣ୍ଡିତାମଣି ରମଣୀ ଏଣୀଦୃଶୀ । ଉମାପତିମୋହିନୀ ରେ କୁନ୍ଦହାସି । ୨୮ । ନବମାଳୀକରଜା ସୁନ୍ଦରୀରଜା । ତୋ ଲାଗିବାସ ଭଳି ମୁଁ ସୁଉରଜା । ୨୯ । ରସାଳସା ବରଯୋଷା ସୁନୟନା । ମୋ ସମସ୍ତ ସଉଭାଗ୍ୟ ତୁହି ସିନା । ୩୦ । ମୋର ମାଗୁଣି ଗୁଣମଣିକି ଏତେ । ସ୍ନେହ କିଣା ନ କରିବୁ କଦାଚିତେ । ୩୧ । ଏହି ସୁଖେ ମୁଁ ସମୟ ହରୁଥିବି । ଚନ୍ଦ୍ରହାରା ପରି ହୃଦେ କରୁଥିବି । ୩୨ । କ୍ଷଣେ କ୍ଷଣେ କରି ଆନ ଆନ ବେଶ । ବ୍ରହ୍ମାନନ୍ଦରେ କରିବି ପରିହାସ । ୩୩ । ମଣି କଠାଉ ଅଳତା ପରି ଅବା । ଲାଗି ପଦତଳେ କରୁଥିବି ସେବା । ୩୪ । ମୋତେ ଦେଉଥିବୁ ଚୁମ୍ବ ବରତନ । ମୋର ସେହିଟି ସଞ୍ଚାଳି ସୁରତନ । ୩୫ । ଜଳନ୍ତରଧରାନାଥ ରସବାଣୀ । ବୀଣାବିଶାରଦା ମୋଦେ ଶୁଣି ଶୁଣି । ୩୬ । ଲାଜମିଶ୍ରିତ ଧଇର୍ଯ୍ୟଧରା ହାସେ । ମଣ୍ଡି ଦେଲା କଣ୍ଠକୁ ଶ୍ରୀଭୁଜ ପାଶେ । ୩୭ । ରାଧାଜନକନନ୍ଦନା ପ୍ରାଣନାଥ । ଦୁଇ ପ୍ରଭୁ ପୂର କର ମନୋରଥ । ୩୮ ।



---

୧୭ । ତ୍ରିପିଷ୍ଟପରେ—ତ୍ରିଭୁବନରେ । ୨୦ । କାଶୀବାସୀ—ବିଶ୍ୱେଶ୍ୱର ଶିବ । ୨୧ । ଶକ୍ରପଦ—ଇନ୍ଦ୍ରପଦ । ୨୪ । ପାଚିଲା ଡାଳିମ୍ବ ବୀଜ ପରି ଦନ୍ତ ଯାହାର, ଦନ୍ତିରାଜଗମନା—ମତ୍ତହସ୍ତୀର ଗତିପରି ଗତି ଯାହାର । ୨୫ । କରିଅରିଜିଣାମଧ୍ୟା—ସିଂହ କଟିକୁ ଯାହାର କଟି ଜିଣିଅଛି । ୨୮ । ଉମାପତିମୋହିନୀ —ଶିବମୋହିନୀ, କୁନ୍ଦହାସୀ—କୁନ୍ଦଫୁଲ ପରି ହାସ ଯାହାର । ୨୯ । ନବମାଳୀକରଜା— ନିଆଳୀଫୁଲ ପରି କରଜ (ନଖ) ଯାହାର, ଲାଗିବାସ—ପିନ୍ଧାଲୁଗା । ୩୩ । ବ୍ରହ୍ମାନନ୍ଦରେ କରିବି ପରିହାସ—ବ୍ରହ୍ମ ପ୍ରାପ୍ତିଜନିତ ଦିବ୍ୟ ଆନନ୍ଦକୁ ଉପହାସ କରିବି । ୩୫ । ବରତନ—ବେତନ ।



(୩୪)

# ନାୟକର ଚିଟାଉ

## (ରାଗ—କେଦାର କାମୋଦୀ)

ହରି କମଳ ପାଦ ମନରେ ଗୁଣି, ଧରି କଲମ ଦିବ୍ୟ କାଗଜ ପୁଣି ଯେ । ୧ ।
ଅଳପ ରସେ କେଉଁ ନାଗର ବର, ଜଳଜ-ନେତ୍ରା ଠାକୁ ଲେଖେ ଉତ୍ତର ଯେ । ୨ ।
ଶଙ୍ଖ କଣ୍ଠୀରେ ସୁନା କେତକୀ ଦେହା, ସଙ୍ଖୁଳାଉଛି ଚିତ୍ତେ ଘେନି ମୁଁ ଏହା ରେ । ୩ ।
ଘନଜଘନା ଆରେ ଚାନ୍ଦମୁହିଟି, ମନରୁ ତତେ ମୁଁ ପାସୋରି ନାହିଁଟି ରେ । ୪ ।
ଦେହରୁ ଯେଉଁ ରୂପେ ଜନ୍ମଇ ସ୍ୱେଦ, ସ୍ନେହରୁ ଜାତ ହେଉଥାଇ ବିଚ୍ଛେଦ ରେ । ୫ ।
ଟେକସ୍ତନାରେ ଝଳି-ଝଲକ-ମୁହିଁ, ଏ କଥାଟାକୁ ଚିନ୍ତା କରିବୁ ନାହିଁ ରେ । ୬ ।
ପ୍ରେମ ଲମ୍ପଟ ଆରେ ରସିକା ସାର, ଏମନ୍ତ ଚଳୁଅଛି ପାପ ସଂସାର ରେ । ୭ ।
ଅସିତକେଶା ଯାଏ ଜନନୀ ପାଶ, ରସିକ ହେଲେ କରେ ବିଦେଶେ ବାସ ରେ । ୮ ।
ଦେହ ମାତ୍ରକ ସିନା ବୋଲାଏ ଭିନ୍ନେ, ସ୍ନେହ ତ ପୂରିଥାଏ ଦୁହିଙ୍କ ମନେ ରେ । ୯ ।
ଦୂରେ ତୁ ଥିଲେ ହେଲେ ପ୍ରାଣ ସଜନୀ, ଉରେ ଖେଳିଲାପରି ମୁଁ ମନେ ଘେନି ରେ । ୧୦ ।
ତୋର ସୁନ୍ଦର ଚନ୍ଦ୍ର ଲପନ ଠାରୁ, ଚରଣ ଠାରୁ ଚୁମ୍ୱୁଅଛି ରସ୍ନୋରୁ ରେ । ୧୧ ।
ମଜ୍ଜାଇ ମୋର ଦରଶନରେ ମନ, ବଜାଇ ଝୁମୁ ଝୁମୁ ପଦ ମଣ୍ଡନ ରେ । ୧୨ ।
ଝୁଲାଇ ବେନି କର୍ଣ୍ଣ ଝଲକା ଭୂଷା, ଫୁଲାଇ ତିଳଫୁଲ ସଦୃଶ ନାସା ରେ । ୧୩ ।
ଅୟନ ମଣ୍ଡୁଥାଏ ଚେଳ ଅଞ୍ଚଳ, ନୟନ ବେନିକରି ଖେଳ ଚଞ୍ଚଳ ରେ । ୧୪ ।
ବିଳସୁଥାଏ ମନ୍ଦସ୍ମିତ ଅଧରେ, ନୀଳ ସୁନ୍ଦର କେଶା ଆସି ସଧୀରେ ଯେ । ୧୫ ।
ଯାହାରେ ଧନ ମୋତେ ଗେଲେ ଜୁହାରୁ, ବାହାରେ ସ୍ମର ସିଂହ ମନଗୁହାରୁ ରେ । ୧୬ ।
ଢାଳି ଆଳବେଲିଆ କୁସୁମ ଗଭା, ଆଳି ଚରମେ ଢଳି ହେବାର ଉଭା ରେ । ୧୭ ।
ଅନୁସରଣେ ବଶ କରିବା ଭଙ୍ଗୀ, ତନୁ ମଧ୍ୟମା ଏକା ଜାଣୁ ମୋ ସଙ୍ଗୀ ରେ । ୧୮ ।
ତଳ ତଳପେ ବସୁ ମୋ ଆଜ୍ଞା ଘେନି, ଜଳପୁ କି ମଧୁରେ ଗଜଗାମିନୀ ରେ । ୧୯ ।
ମନ ମୋହନା କଉତୁକେ ମୋ କୋଳେ, ଅନଙ୍ଗ ରଙ୍ଗରସେ ଖେଳିବା କାଳେ ରେ । ୨୦ ।
ନିବିଡ ରସମୟ ସରୁ ଚୁମ୍ବନ, କି ଭିଡ଼ ଆଲିଙ୍ଗନ କି ସୁଖ ଦାନ ରେ । ୨୧ ।
ପଦ ମଧ୍ୟମ କରି ବାଜିଣୀ ଭୂଷା, ନାଦ କି ସୁଖ ଦିଏ ଚମରି ଦୃଶା ରେ । ୨୨ ।

କିଙ୍କିଣୀ ନାଦ ପୂରି ମନୋରଥକୁ, ଝିଙ୍କି ନିଅଇ ସୁଖ ସ୍ୱର୍ଗ ପଥକୁ ରେ । ୨୩ ।
ଇତର ସୁଖ ଯେତେ ଜନ୍ମରେ ସଖୀ, ଚିତ୍ତ ତହିଁକି ତୋର ମୋହର ସାକ୍ଷୀ ରେ । ୨୪ ।
ପାସୋରି ପାରିବ କେ ଏ ରସ ମାନ, କିଶୋରୀ ବର ତୁହି ତୋର ସମାନ ରେ । ୨୫ ।
ନିକଟେ ଲଭିବି ମୁଁ ସକଳ ସୁଖ, ପିକ ବରନା ମନେ ଦୁଃଖ ନ ରଖ ରେ । ୨୬ ।
ନିଜ ଆଶ୍ରିତେ ଆଜ୍ଞା ଅନ୍ୟଥା ନୁହେଁ, ଶ୍ରୀ ଜଗଦ୍ଦେବ ମହୀମହେନ୍ଦ୍ର କହେ ରେ । ୨୭ ।



(୩୫)

## ନାୟକର ଚିଟାଉ

### (ରାଗ—କେଦାର କାମୋଦୀ)

ସକଳ ଜଳଦର ଦୁରିତ ହାରୀ,
ବ୍ରଜବଂଧୁ ଚରଣ ଶରଣ କରି ରେ । ୧ ।

ଏକ ରସିକ ଲଭି ବିରହ ଦୁଃଖ,
ଟେକସ୍ତନା ଛାମୁକୁ ଲେଖଇ ଲେଖ ରେ । ୨ ।

ଆରେ ରମଣୀ ମଣି ମୁକୁଟ ମୋତେ,
ବାରେ ନ ପକାଇଲୁ ତୁ ଦିବ୍ୟ ଚିତ୍ତେ ରେ । ୩ ।

ଉରେ ଖେଳୁଥାଉ ରେ ଲାବଣ୍ୟନିଧି,
ଦୂରେ ରଖିଲା ତୋତେ ଦାରୁଣ ବିଧି ରେ । ୪ ।

ଛାଡ଼ି ରହିବା ଦିନୁ ଛାମୁରୁ ତୋର,
ନାଡ଼ି ମାତ୍ରକ ଲାଗୁଛି ସିନା ମୋହର ରେ । ୫ ।

ଈସି ନ ବୋଇଲେ ଉଠି ହେଉ ନାହିଁ,
ନିଶି ଦିନ ନ ଜାଣେ ରେ ଚାନ୍ଦମୁହିଁ ରେ । ୬ ।

ବସି ପାରିବା ବଳ ନାହିଁ ରେ ଗୋରୀ,
ଶଶୀ ଦିଶୁଛି ପ୍ରଳୟ ଅନଳ ପରି ରେ । ୭ ।

ବହି ଚନ୍ଦନ ଶିଖରୀ ପ୍ରଭଞ୍ଜନ,
ଦହି ପକାଉଅଛି ମୋ ଅପଘନ ରେ । ୮ ।

ନୂଆ ପଲ୍ଲବଚୟକୁ ଅତି ଦୂରୁ,
ମୁଁ ଆଖିରେ ଦେଖି ପାରୁ ନାହିଁ ଡ଼ରୁ ରେ । ୯ ।

ଯମ ରସନା ପରି ସେ ଦିଶୁଅଛି,
ସମରଥପଣ ରଖୁ ନାହିଁ କିଛି ରେ । ୧୦ ।

ପିକ ରବ ଯେବେ କାନେ ପଡୁଅଛି,
କି କରିବିଟି ବୋଲି ମୁଁ ସଡୁଅଛି ରେ । ୧୧ ।

ଭୃଙ୍ଗନାଦ ଚୁମ୍ବିଦେଲେ ଶ୍ରୁତିପଥ,
ଶୃଙ୍ଗଭଙ୍ଗ ଭଯେ ସୁଖ ମନୋରଥ ରେ । ୧୨ ।

କେହି ନଜର କଲେ କୁସୁମ ମାଳା,
ସହି ହୁଏ ମୋ ତାପ ଅନଳ ଜ୍ୱାଳା ରେ । ୧୩ ।

ଦଣ୍ଡେ ପାଶୋରିଲି ନାହିଁ ତୋତେ,
ଗଣ୍ଡେ କେବେ ଚୁମ୍ବିବି ରେ ବନ୍ଧୁ ସତେ ରେ । ୧୪ ।

ଦିଗେ ଦିଗେ ଦିଶୁଛି ଶ୍ରୀମୁଖ ତୋର,
ନିଶେ କର ପକାଉଛି ହର ପର ରେ । ୧୫ ।

ମନମଥ ମଦ ଜାତ ମନ୍ଦହାସ
ଧନ ଚୋରି କରିଛଟି ମୋ ମାନସ ରେ । ୧୬ ।

ବକ୍ର ନୀଳଚପଳ ଚାହାଣୀ ଭଙ୍ଗୀ
ଶକ୍ର ନ ଦେଖିଥିବେ ରେ ଜୀବସଙ୍ଗି ରେ । ୧୭ ।

ବନ୍ଧୁମଣି ନିଧୁବନ କାଳ ଖେଳ
ମଧୁ ରସରୁ ମଧୁର ଦନ୍ତଚେଳ ରେ । ୧୮ ।

ସ୍ତନ କନକ କଳସ ଆଉଜାଣି
ଜନ ଜନ୍ମକେ ପାରିବ ଆଉ ଆଣି ରେ । ୧୯ ।

ଦେବେ ଦୁର୍ଲଭ ତୋର ସଙ୍ଗମ ସୁଖ
କେବେ ମିଳିବ ଏଥି ଉତ୍ତର ଲେଖ ରେ । ୨୦ ।

ଲେଖା ବି ନିର୍ମିତ ବର୍ଣ୍ଣଧାଟି ତୋର
ଦେଖା ଯାଏଟି ଜୀବ ଅବଧି ମୋର ରେ । ୨୧ ।

କଷ୍ଟ ସରିତ ତରିବି ତା ଦେଖିଲେ,
ଅଷ୍ଟଦୁର୍ଗପୁରନ୍ଦର ବିରଚିଲେ ରେ । ୨୨ ।

●

(୩୬)

# ନାୟକର ଚିଟାଉ

(ରାଗ—କେଦାର କାମୋଦୀ)

କାଗଜ ଦଳ ଅପସରରେ ରଖି,
ଆଗ ଜଗଦୀଶ୍ୱର ଶରଣ ଲେଖି ରେ । ୧ ।

ରସିକ-ବର କମ୍ପି ଫୁଲ ବିଶିଖେ,
ଅସିତକେଶା ନାମେ ଚିଟାଉ ଲେଖେ ରେ । ୨ ।

ପଙ୍କଜ ନୟନାରେ ଖେଳିବୁ ଚିତ୍ତେ,
ସଙ୍ଖୁଳୁ ଅଛି ଟି ମୁଁ ଅନୁବରତେ ରେ । ୩ ।

ଜୁହାର ଘେନି ତୋହଠାରୁ ମଞ୍ଜୁରା,
ମୁଁ ହାର ଆଡ଼ିଆଇ ଭିଡୁଛି ଧୀରା ରେ । ୪ ।

ବସାଇ ହଂସ ତୁଳୀ ବହଳ ଶେଯେ,
ରସାଇ ଚୁମ୍ବୁଛି ତୋ ବଦନାମ୍ବୁଜେରେ । ୫ ।

ଭ୍ରୂରୁ-ନର୍ତ୍ତକୀ ନାଟ ପଣ୍ଡିତା ତୋର
ଉରୁ ମୂଳରେ ଖେଳାଉଛି ନଖର ରେ । ୬ ।

ହାତୀ ଗମନା ଆରେ ମୋ ଜୀବଧନ,
ଛାତିରେ ତୋତେ ଆଉଜାଉଛି ଘେନ ରେ । ୭ ।

ପୀୟୂଷ ସମ ସ୍ୱାଦୁ ଅଧର ତୋର,
ପିଉଛି ସୁଧାନିଧି ମୁଁ ନିରନ୍ତର ରେ । ୮ ।

ଧନ ରେ ମୋ ପାଶରୁ ହୋଇଲେ ଦୂର,
ମନରେ ମୋର କରିଅଛୁ ମନ୍ଦିର ରେ । ୯ ।

ସ୍ମରଉନ୍ମାଦ ଚାଲି ଚାଲି ଚାହାଣୀ,
ସ୍ମରଣାକରି ହୃଦ ହେଉଛି ହାଣିରେ । ୧୦ ।

ସଲଜ୍ଜ ରସ ସ୍ୱାଦ ମୃଦୁ ଭାଷରୁ,
ଝଲକ ବରନା ମୋ ବିବେକ ସାରୁ ରେ । ୧୧ ।

ରତି-ସମୟ ସୁଖ ପୂଆଉ ଯେତେ,
ଅତିଶୟରେ ଖେଳୁଅଛି ମୋ ଚିତ୍ତେ ରେ । ୧୨ ।

ବାଜିବା ଭୂଷା ପ୍ରତି ପ୍ରସରୁ ଥାଏ,
ରାଜୀବାକ୍ଷି ମୋ ଶ୍ରୁତି କି ସୁଖ ପାଏ ରେ । ୧୩ ।

ମିଶି ତହିଁରେ ଆ ନା ମଲିଟି ରଖ,
ଇକ୍ଷି ଏ ଭାଷା ଜାତ କରେ କି ସୁଖ ରେ । ୧୪ ।

ବିମ୍ବଅଧରା ଆରେ ଛଇଲା ମଣି,
ଚୁମ୍ବସମ୍ଭବ ରବ ତହିଁରେ ପୁଣି ରେ । ୧୫ ।

କି ସୁଖ ଦେଉଥାଏ କର୍ଣ୍ଣ ବେନିକି,
ଦିସୁ ନ ନିଏ ତ୍ରିଦିବକୁ ଘେନିକି ରେ । ୧୬ ।

ଇନ୍ଦୁରୁ ସୁଧା ପରି ଅତି ନିର୍ମଳ,
ବିନ୍ଦୁ ବିନ୍ଦୁ ଜନମେ ବଦନୁ ଝାଳ ରେ । ୧୭ ।

ତିଳକ ଅଧେ ଲିଭି ଅଧେ ପ୍ରକାଶେ,
ଅଳକ ଲୁଳି କେଡ଼େ ସୁନ୍ଦର ଦିଶେ ରେ । ୧୮ ।

ଲହସି ଯାଏ ଖୋସା ଖସଇ ଗଭା,
ନ ହସି ରହି ନୋହେ ଚାହିଁ ସେ ଶୋଭା ରେ । ୧୯ ।

ନାୟିକାବର ଧରୁଥାଉ ତୁ ଭିଡ଼ି,
ରାଇକା ଶିଥିଳାଏ ମୁଁ କରେ ପୀଡ଼ି ରେ । ୨୦ ।

ନିତମ୍ବ ଜଘନକୁ ବିବାସ ଦେଖି,
ମିତ ମୋ ବୁଜିଦେଉ କି ଲାଜେ ଆଖିରେ । ୨୧ ।

ଗଳାମଣ୍ଡନା ତୁଟି ପଡ଼ନ୍ତେ ଶେଯେ,
କଳା ଚଳାନ୍ତେ ଜ୍ଞାନ ହଜାଉ ଲାଜେ ରେ । ୨୨ ।

ତ୍ରପାରେ ବାମକର ନବ ପଲ୍ଲବେ,
ଛପାଇ ମନମଥ ମନ୍ଦିର ଜବେ ରେ । ୨୩ ।

ଟେକଉରଜା ତୋଳି ସଜରୁ ହାର,
ଏକ ହସ୍ତରେ କରେ ଶହେ ଜୁହାର ରେ । ୨୪ ।

ଆଜ ନଉକରିରେ ଏତିକି ମୁହିଁ,
ହାଜର ହୋଉଅଛି ବୋଲି ଜଣାଇ ରେ । ୨୫ ।

ଦଶନେ ତୃଣଧରା ଠାରି ସତ୍ୱରେ,
ବସନ ପିନ୍ଧିବାର ଭାବେ ଚିତ୍ତରେ ରେ । ୨୬ ।

କୁସୁମ ଆଲଟେ ମୋ ସ୍ୱେଦ ନିବାରି,
କି ସୁଖେ ପହୁଡ଼ାଇ ବର ନାଗରୀ ରେ । ୨୭ ।

ଟେକା ଶିଖଣ୍ଡକେଶା ରେ ବରତନୁ,
ଏ କି ପାଶୋର ଯାଏ ରସିକ ମନୁ ରେ । ୨୮ ।

ଅଳପ ଦିନରେ ମୋ ଜୀବ ଜୀବନ,
ତଳପ ତଳର ମୋ ହେବୁ ମଣ୍ଡନ ରେ । ୨୯ ।

କାନ୍ତ ସୀମନ୍ତମଣି ତୁ ମନେ ଲବେ,
ଚିନ୍ତା କରିବୁ ନାହିଁ ତୁ ନିରାଶ ଭାବେ ରେ । ୩୦ ।

ମାନସେ କରିଅଛୁ ଯେଉଁ କାମନା,
ଧାନ ସମାନ ହେବ ନାହିଁ ତା ମନାରେ । ୩୧ ।

ଉଦୟାଚଳ ହେଲେ ପଶ୍ଚିମ ଧର,
ମୁଁ ଦୟା ନ ଛାଡ଼ଇ ତରୁଣୀ ବର ରେ । ୩୨ ।

ବିହରିବୁ ଅବଶ୍ୟ ମୋ ପାଶେ ଗଲେ,
ଶ୍ରୀ ହରିଚନ୍ଦନ ଭୂ-ମହେନ୍ଦ୍ର ବୋଲେ ରେ । ୩୩ ।



(୩୭)

## ନାୟିକାର ଚିଟାଉ

### (ରାଗ—କେଦାର କାମୋଦୀ)

ଦଇବ ଯୋଗୁ କେଉଁ ରସିକାବର, ହୋଇ ବଲ୍ଲଭଜନ ପାଶୁ ଅନ୍ତର ରେ । ୧ ।
ଭାଜି ଦେବାରୁ ତନୁ ବିରହ ଝାସ, ରାଜୀବ ଦଳ ଶେଯେ କରି ନିବେଶ ଯେ । ୨ ।
କାଗଜ ଧରି ତହିଁ କଲମ ଯୋଖି, ଆଗ ଜଗଦୀଶ୍ୱର ଶରଣ ଲେଖି ରେ । ୩ ।
ଦେଖିଲା ଅନ୍ୟ କେହି ନିକଟେ ନାହିଁ, ଲେଖିଲା ଲେଖ ଚାରୁ ଚନ୍ଦ୍ରମାମୁହିଁ ରେ । ୪ ।
ତରୁଣୀଜନ ସ୍ତନ ଚନ୍ଦନ କର, ଧରଣୀ ପୁରନ୍ଦର ଚନ୍ଦନ କର ଯେ । ୫ ।

କଉସ ତଳେ କୋଟି ପ୍ରଣାମ କରି, ଜଣାଣ ଯୋଗାଉଛି ତୁମ୍ଭ କିଙ୍କରୀ ଯେ । ୬ ।
ମୁଁ ଦୂରହୋଇ ଦିନ ଅନେକ ହେଲା, ଶ୍ରୀହସ୍ତଲେଖା ହେଲେ ଦେଖା ନହେଲା ହେ । ୭ ।
ଯେତେ ସରସ ତେତେ ସଦୟ ମନ, ମୋର କି ଅପରାଧ ହେଲା କଠିନ ହେ । ୮ ।
କରିବାବେଳେ ପରିରମ୍ଭ ଯାହାର, ଉରରୁ ମୁକ୍ତାହାର କର ବାହାର ରେ । ୯ ।
ବହଳ ଅବା କେତେ ଚନ୍ଦନଲେପ, କରପଙ୍କଜ ତଳେ ତା କରି ଲୋପ ରେ । ୧୦ ।
ଅନ୍ତରଠାରୁ କରି ଅତି ନିବିଡ଼, ରାତି ଗୋଟିକ ଯାକ ଛାତିରେ ଭିଡ଼ ହେ । ୧୧ ।
ଭିଡ଼ିଲାବେଳେ କାଟୁଛି କି ରେ ବାଳି, ବୋଲି ପଚାର ସ୍ନେହ ପୀୟୂଷ ଢାଳି ହେ । ୧୨ ।
ଏବେ କି ଦୋଷୁ ହେଲି ଏଡ଼େ ଅନ୍ତର, ନବନୀତ କି ବନିଗଲା ପଥର ଯେ । ୧୩ ।
ଫୁଲ ପରାଗ ବନ ବିହାର କାଳେ, ଝାଡ଼ ମୋ ଅଙ୍ଗୁ ପରା ଦୁକୂଳାଞ୍ଚଳେ ରେ । ୧୪ ।
ରୋମ ରୋମକେ ଏବେ ମାରେ ଯେ ମାର, ସଙ୍ଗୀରୁ ନାହିଁ ଥରେ ସଙ୍ଗାଳି ମୋର ଯେ । ୧୫ ।
ଅଧର ପାନ କାଳେ ରଦନ ଶେଷେ, ନଥର ଭିଡ଼ି ବ୍ରଣ ଦିଶିବା ତ୍ରାସେ ରେ । ୧୬ ।
ଦଳି ନ ଦେଇ ଧୀରେ ପିଅ ପୀୟୂଷ, ଅଳି ପିଇଲା ପରି କୁସୁମ ରସ ରେ । ୧୭ ।
ଆନତ କରି କେବେ ମୁଖ ବିମ୍ବକୁ, ମାନତ କରି ନ ଜାଣଇ ତୁମ୍ଭଙ୍କୁ ହେ । ୧୮ ।
ନ ଥିବ ଅବା ଦିବ୍ୟ ଚିତ୍ତରେ ଏବେ, ଦିନେ ଯେ ବ୍ରଣ ହେଲା ଓଷ୍ଠପଲ୍ଲବେ ଯେ । ୧୯ ।
କଲା ମା ଭଙ୍ଗୀ ବେଳେ ଗର୍ହି ସେପରି, କଲେ ମା ମୋତେ କିସ ବିଚାରି ଯେ । ୨୦ ।
ମଜ୍ଜାରୁ ଜନମିଲା ପ୍ରଣୟ ରୋଷ, ଲଜ୍ଜାରୁ ହୋଇବାରୁ ଅତି ବିଶେଷ ଯେ । ୨୧ ।
ଆଡ଼ରୁଷା ମୁଁ ଯହୁଁ ଦେଲି ଅଳପ, ତାଡ଼ରୁ ତୁମ୍ଭ ତୁଷ୍ଟି ହେଲା କଳାପ ଯେ । ୨୨ ।
ଏପରି ଯାହାଠାରେ କରୁଣା ଥିଲା, ଏପରି ଭବଭଳି କେହି ସେ ହେଲା ହେ । ୨୩ ।
ବରଜି ଚାପ ରୋପ କେଳତି ପତି, ତୁମ୍ଭ ନଗରେ କି ହୋଇଗଲାଣି ଯତି ଯେ । ୨୪ ।
ଚଳି ଆସିଲା ଦିନୁ ତୁମ୍ଭ ପାଶରୁ, ବଳିଲାଣି ଟି ସୁଧାରସ ବିଷରୁ ଯେ । ୨୫ ।
ତୁମ୍ଭର ସୁଖ ଲାଭ ଅଭିଳାଷରେ, ସିନା ମୁଁ ମନ ଦେଉଥାଇ ବେଶରେ ଯେ । ୨୬ ।
ଶ୍ରୀ ହସ୍ତେ ସାଜିବାର କୁନ୍ତଳ ବେଶ, ଫିଟି ନାହିଁଟି ଆଉ ମୋର ଜୀବେଶ ରେ । ୨୭ ।
ତେଣୁଁ ପଡ଼ିବା ମନ ହୁଏ କାସାରେ, କୁସୁମ ବାସ ବାଜି ଗଲେ ନାସାରେ ହେ । ୨୮ ।
ଭୃଙ୍ଗ ସଙ୍ଗୀତ ହରି ନେଉଛି ଜ୍ଞାନ, ନିମ୍ବ ଦଳରୁ ପିତା ଲାଗୁଛି ପାନ ଯେ । ୨୯ ।
ଫୁଲ ଲଲାମ କେହି କଲେ ନଜର, ସେକାଳେ ସାକ୍ଷୀ ମୀନକେତନ ଜ୍ୱର ଯେ । ୩୦ ।
କଳନା କର ଦିବ୍ୟ ଚିତ୍ତେ ହେ ଧନ, ଲଳନାଙ୍କର ଲାଜ ସିନା ମଣ୍ଡନ ହେ । ୩୧ ।
ବରଜି ତାକୁ ଲେଖିଲି ଏ ଜଣାଣ, ମୋର ଜୀବନବନ୍ଧୁ ଏତିକି ଜାଣ ଯେ । ୩୨ ।
ଦିଶୁଛି ଦିଶେ ଦିଶେ ସେଇ ଶ୍ରୀମୁଖ, ଶରଦୁଦିତ ପୂର୍ଣ୍ଣ ସୁଧାମୟୂଖ ହେ । ୩୩ ।
ନୟନାଞ୍ଚଳ ଖେଳ ମୋହନ ସ୍ମିତ, ସରସ ଶ୍ଳେଷ ମୃଦୁ ସ୍ନେହ ଭାଷିତ ଯେ । ୩୪ ।
ଚକାପର୍ଯ୍ୟଙ୍କ ଛାଇ ପାଇ ଆତୁଖା, ପକାଇଲାଇଁ ଯେଉଁଦିନ ପଦୁଖା ଯେ । ୩୫ ।

ମଞ୍ଜରୀ ନାଦ ଶୁଣି ଖଞ୍ଜନ ଟେକି, ମାଳିକି ମାଳି କି ସେ ଆଣିଲା ଡାକି ଯେ । ୩୬ ।
ଦିବା ଦେଖିଲେ ଦୁହେଁ ବିବାସ ବେଶ, ଲଜ୍ଜା ମଜ୍ଜିଗଲା ପରା ମାନସ ରେ । ୩୭ ।
ଏ କିସ ଗୋ ମା ବୋଲି ପଡ଼ି ଚମକି, ପଳାଇ ଯାଉଥିଲେ ସେ ଦୁଇ ଟୋକୀ ଯେ । ୩୮ ।
କରି କଟୀରେ ଚେଳ ଅତି ଚପଳେ, ଧରି ଆଣିଲେ ଚେଟୀ ଦୁହିଁଙ୍କି ବଳେ ଯେ । ୩୯ ।
ଧରି ଦୁହିଁଙ୍କ କର ଚିବୁକ ଦରେ, କାଞ୍ଚନ ଭୂଷା ଦେଇ ଲାଞ୍ଛ ଆଦରେ ଯେ । ୪୦ ।
କେହିଟି କରି କି ଭଙ୍ଗୀରେ ବିନତି, ସେହି ଦୁହିଙ୍କୁ କଲ ରହସ୍ୟଦୂତି ହେ । ୪୧ ।
ପ୍ରସୂନ ସକର୍ପୂର ଚନ୍ଦନ ଚୁଆ, ଦଶନ ଚିହ୍ନ ବସା ବାସ ବିଡ଼ିଆ ହେ । ୪୨ ।
ଦେହ କୁଙ୍କୁମାରୁଣ ସ୍ନେହ ପତ୍ରିକା, ଗୋଳି ଦିଅନ୍ତି ସେହି ବାମାଏ ଏକା ଯେ । ୪୩ ।
ନିଆଳି ନାଗେଶ୍ୱର ଚମ୍ପା ଚେମ୍ବଲି, ବଉଳ ଆମ୍ବ କସି ମରୁଆ ବୋଲି ଯେ । ୪୪ ।
ହେବାର ଡକାଡକି ଆହା କି ସୁଖ, ଦେବାର ଟିପି କକ୍ଷତଳରେ ନଖ ଯେ । ୪୫ ।
ଏ ଭାଗ୍ୟ ନାହିଁ ମନୋରଥ ପଥରେ, ଶ୍ରୀ ହସ୍ତାକ୍ଷର ହେଲେ ଦେଖାଅ ଥରେ ହେ । ୪୬ ।
ତହିଁରେ ଚୁମ୍ବି ପୟୋଧରେ ଲଗାଇ, ରହିବି ପ୍ରାଣ ତୁମ୍ଭ ସୁଗୁଣ ଗାଇ ଯେ । ୪୭ ।
ହୋଇବ ଅପରାଧ କ୍ଷମା ମୋହର, ଦଇବ ବଶୁଟି ମୁଁ ହୋଇଲି ଦୂର ହେ । ୪୮ ।
ଘେନ ମୁଁ ଖଟୁଥିବା ପରି ପା-ତଳ, ଧନ ମୋ ଠାରେ ସ୍ନେହ ନୋହୁଁ ପାତଳ ହେ । ୪୯ ।
ଅଚିରେ ଜାଣି ନୂଆ ଛଇଳା ମନ, ରଚିଲେ ଅଷ୍ଟଦୁର୍ଗ ନାକ ଜୀବନ ହେ । ୫୦ ।

•

(୩୮)

## ଚଉତିଶ ପଦିଆ

## ନାୟକର ଚାଟୁ ଉକ୍ତି

### (ରାଗ - କୁମ୍ଭ କାମୋଦୀ)

ଆସ ରେ ଆସ ମୋ ଅଙ୍କକୁ ରଙ୍କକୁ ଚିନ୍ତାମଣି ମିଳୁ
ପାଶରେ ଏପରି ଲଜ୍ଜାକୁ କାହିଁକି କୃପାଳୁ ତୁ ପାଳୁ । ୧ ।
ତୁ ହାର କାହାର କହଟି ନ ହଟି ତନୁ ସଙ୍କୋଚରେ
ଜୁହାର ପଛକୁ ଆଉ ଦିଅ ଆଗ ଜମାଇ କୁଚରେ । ୨ ।
କାଇଁଚ ମୁଖି ମୁଖ ପୀୟୂଷ-ମୟୂଖ-ମଣ୍ଡଳର ଶିରୀ
ଚାହିଁ ମୋର ନେତ୍ର ଯୁଗଳ ପବିତ୍ର ହେଉ ରେ କିଶୋରୀ । ୩ ।
ନବୀନ ଅନଳ ଛବି ନୟନରେ ଅଳପ ନିରେଖି
ଧନ ମୋର ପୂର୍ବ ପୁଣ୍ୟ ପୁଞ୍ଜ ବୋଲି ଦେବି ପରା ଲେଖି । ୪ ।

ରତୀଶ ଦର୍ପଣ ଦ୍ୟୁତି ସମର୍ପଣ ହେବାର ଲଜ୍ଜିତ
ଝଳି ଝଲମଲ ମାଂସଳ ମୃଦୁଳ ତୋ ଗଣ୍ଡ ସ୍ଖଳିତ । ୫ ।
ନବ ଇନ୍ଦିବର ଯା ଶୋଭା ଲବର ନୁହଁଇ ଲାଭଣୀ
ଆରେ ଚାରୁଶୀଳା ପ୍ରସରୁ ସେହି ନାଳେ କମଳ ଅନାଉଁଣୀ । ୬ ।
ମୁଁ ପାଏ ଚୋପାଏ ତା ସ୍ୱାଦୁ ଦ୍ରପାରେ ଛପାଇ ନଧର
ବିଦ୍ରୁମ ଦ୍ରୁମର ନବ କିଶଳୟ ସଦୃଶ ଅଧର । ୭ ।
ଏ କିସ ଗୋ ! ମୁଖ ଟେକି ସମନାଅ ଆହା କି ସୁନ୍ଦର
ଏ କି ନୁହେଁ ଦରହସ ସହୋଦର କି ବାସ କୁନ୍ଦର । ୮ ।
ସୁନାଶୀର ଗଞ୍ଜେ ସଞ୍ଜକୁ ମଞ୍ଜୁଛି ଚାରୁ ଚିବୁକଟି
ଖିରି ଯୁଗଳ କି ତୁ କେ ରେ ପଚାରୁ ଚିବୁକଟି । ୯ ।
ଟାଣିଛି କି ଜରି ଯାଉଁଳି ତମ୍ଭୁଟି ସ୍ମର ଭୂପତି ସେ
ତା ଜୟ ଡିଣ୍ଡିମ ପରି ନିତମ୍ବଟି ବିପରୀତେ ଦିଶେ । ୧୦ ।
ମଧ୍ୟ ତ ସରୁଆ ଏସନ ଗରୁଆ ଲଲାଟେ ତତେ
ଦରୋଟି ହାସି ଡମ୍ବରୁଟି ନିପଟ ନାହିଁକିରେ ସତେ । ୧୧ ।
ନବନୀତ ତହୁଁ ଅବନୀ ତଳେ ତ ନାହିଁ ସୁକୁମାର
ତୋ ତନୁରୁ କରକଶ ପରି ତାକୁ ଘେନେ ମନ ମୋର । ୧୨ ।
ଭଲା ନିରିମାଣ କଲା ନାରୀଜନ୍ମ ସମ୍ଭବ ତୋହର
କରପଦକୁ ଇତର ପରିପନ୍ଥୀ ପ୍ରଥମ ପ୍ରହର । ୧୩ ।
କିଞ୍ଚିତ କୁଞ୍ଚିତ ଶ୍ୟାମଳ ଚାମର ସଦୃଶ ତୋ କେଶ
ସଜାଡି ଅଜାଡ଼ି ଦେଲା ଷଡ଼ରସେ ଧନୁ ସେ ଲୋକେଶ । ୧୪ ।
ଯେ ଶରଣ କଲା ତୋତେ ମୁଁ ବଳେ ଏ ବେଶ ରଜନୀକି
ତୋ ତୁଲେ ତଳପେ ହୁଅଇ ପ୍ରବେଶ ରଜନୀକି । ୧୫ ।
ନ କର ମୋ କେରି ନିଷେଧ ମୋ ପରାଣଧନରେ
ଆଜକ ଲାଜ କୁଶଳରେ ଦେଇ ବୋଲି ଘେନ ମନରେ । ୧୬ ।
ସୁଆଦ ନିରଙ୍କ ବରବର୍ଣ୍ଣିନୀଙ୍କର ଦାମ୍ଭର ମାତ୍ର
ପୀୟୂଷ ନିର୍ଝର ପୂରିଛି ତୋର ଗୋଟିକ ଯାକ ଗାତ୍ର । ୧୭ ।
ମଦିରାକ୍ଷୀ ମୋର ମଦୀରାକ୍ଷିର ମୁଁ ନ ଘେନିବି ଦୋଷ
ତୋ ଯେ ସମୟକୁ ମୋ ସମୟ ମନା ସାକ୍ଷୀ ତୋ ମାନସ । ୧୮ ।
ରଦ ବାଜିଲେ ହେଁ ନ ଦବାଇବୁଟି ଶ୍ରୀହସ୍ତ ଧରୁଛି
ଛାଡ଼ି ଯିବାଯାଏଁ ମୋର ଫୁଲଶର ଜ୍ୱରଜ-ଅରୁଚି । ୧୯ ।

ବୁଡ଼ି ବୁଡ଼ି ଡାଡ଼ ମୋ ଦେହେ ନିବାଡ଼ ଭିଡ଼ିଦେ ଡର ନା
ପ୍ରବାତ କଦଳୀ ଲତା ପରି ଅଳି କୁନ୍ତଳା ଥର ନା । ୨୦ ।
ମୋ ରାଣଟି ତତେ ମୋ ପରାଣବନ୍ଧୁରେ ମୋ ରଦ ବସନ
ପୀଡ଼ି ଦିଅ ଗାଢ଼େ ବୁଡ଼ିବସୁ କୁନ୍ଦ ଶିଖର ଦଶନ । ୨୧ ।
କାଟୁଥିବ ବୋଲି ନାଟୁଆ ଖଞ୍ଜନ ନେତ୍ରା କି ଡରୁଛୁ
ମରି ଟି ଗଲିଟି ସରି ଶିରୀଷାଙ୍ଗି, ଶ୍ଳଥ ଯେ କରୁଛୁ । ୨୨ ।
ପଡୁଛି ଚରଣେ ମନମଥରଣେ ମାନସ ମଜ୍ଜାଅ
ଶିଖ ଶିଖ ନଖ ଶିଖ କେଳି ସୁଖ ମତେ ସମଜ୍ଝାଅ । ୨୩ ।
ନିବିଡ ଛୁଆଁଇ ଦେଉନାହିଁ କେହି ଜୀବିତ ରହିବି
ମୋତେ ଦିଗମ୍ବର କର ଧନ ମୋର ଅବଶ୍ୟ ସହିବି । ୨୪ ।
ବୁଜୁଛୁ ଯେ ନେତ୍ର ତୋର ଚିର ଗାତ୍ର ମୁଁ ଦେଖୁ ନାହିଁ କି
ଏ କାଳରେ ଚାରି ତୋଳାମେଳଖେଳା ବରଜୁ କାହିଁକି । ୨୫ ।
କେଉଁ ତାଳେ ପଡ଼ି ବାଜୁଛି ତୋ କର ଚରଣ ମଣ୍ଡନ
କହ ମତି ଗତି ହେଉ ମୋର ଶ୍ରୁତି କଦନ ଖଣ୍ଡନ । ୨୬ ।
କି ଲାଗୁଛି ରସ-ମୟ ମୋ ମାନସ ମୋହନା କହଟି
କ୍ରମରେ ଶ୍ରମର ଶ୍ରମ ଭରୁ ମାର ଯିବଟି କହଟି । ୨୭ ।
ଜାଣିଲୁଣି ବାଣୀ ବିପଞ୍ଚି ପଞ୍ଚମ ନିନାଦ ବଚନା
କରିବୁ କି ମୋହ ପରି ଅବିଗ୍ରହ ମହ ବିରଚନା । ୨୮ ।
ଚରମରେ ବେଣୀଲତା ନୀଳ ଫଣୀ ରମଣୀ ଖେଳିବ
ମୁକୁତା ରତନ ନଥ ନରତନ ଛବି ପ୍ରଚଳିବ । ୨୯ ।
ତଳକୁ ଶିଖର କରି ସୁରଧର ଯୁଗଳି ରହିବ
ଦୋଳା ଲୀଳା ଘେନି ହାର ମନ୍ଦାକିନୀ ଧୀର କି ବହିବ । ୩୦ ।
କଟି ମେଖଳାରେ ରଟିବ କିଙ୍କିଣୀ ବିଜୟ ଡିଣ୍ଡିମ
ତୋ କର ଚରଣ କଞ୍ଜ ଆଉ ରଣ ହେବ ବାହୁ ଯମ । ୩୧ ।
ଫିଟି ଗୋଟି ଗୋଟି ତୁଟି ତଳପରେ ବିରାଜିବ ହାର
ଇନ୍ଦୁ ବଦନରୁ ବିନ୍ଦୁ ବିନ୍ଦୁ ଝାଳ ହୋଇବ ବାହାର । ୩୨ ।
ଅରବିନ୍ଦ ବାସ ବହି ଖରଶ୍ୱାସ ଯହୁଁ ପ୍ରସରିବ
ସ୍ମର ବୀର ମାନ ସହିତେ ତୋ ମନ ସନ୍ଦେହ ସରିବ । ୩୩ ।
ସେ ସମୟେ କିସ ହେବ ତହୁଁ ଲେଶ ଜାଣି ନ ପାରିବା
ଚେତି ପୁଣି ଦୁହେଁ ଦୁହିଙ୍କି କି ହେଲା ବୋଲି ପଚାରିବା । ୩୪ ।

ସସ୍ମିତ ମନ୍ଦାକ୍ଷ ଅନାଉଣ ଲକ୍ଷ ହେବ ଦୁଇ ମୁଖ
ଶଚିବର ଦୀନ ପରି ଆଭାସିବେ ଶଚି ଶତମୁଖ । ୩୫ ।
ଘରମ ଉରରୁ ନବନୀତ ପରି ମୋ ଉରେ ଲୋଳିବୁ
ମନ ନିକିତିରେ ସ୍ୱର୍ଗକୁ କ୍ଷିତିରେ ମିଶାଇ ତୁଳିବୁ । ୩୬ ।
ଶାଢ଼ୀଲାଗି ଦ୍ୱରା ଗଡ଼ିଲା ପରି ମୁଁ ଉପାୟ କରିବି
ପନୀରକୁ ସିଞ୍ଚି ଚେଳାଞ୍ଚଳେ ବିଞ୍ଚି ଉସଙ୍ଗେ ଧରିବି । ୩୭ ।
ଛଇଳା ଆଳିଙ୍କ ଛାଉଳି ଭାରତୀ ଭଙ୍ଗୀରୁ ଡରିବୁ
ସୁସାରି ଦେବାକୁ ଭୂଷା ରୀତି ଅତି ଆଗ୍ରହ କରିବୁ । ୩୮ ।
ଭାଙ୍ଗିବା ଅଳକ ଲିଭିବା ତିଳକ ଲୁଳିବା ଚିକୁର
ସଜାଡ଼ି ଦେଇ ମୁଁ ଦେଖାଇବି ତୋର ଛାମୁରେ ମୁକୁର । ୩୯ ।
ପରଶଂସିବୁ ମୋହର ଚାତୁରୀ କି ଧନ ପୁନରପି
ବୋଲିବୁ ତୁମ୍ଭରେ ମନ ମୁଁ ଦେହ ତ ଅଛି ସମରପି । ୪୦ ।
ନିଜ ଅଭିଳାଷେ ପୁନରପି ମନସିଜର ସେବାରେ
ବନଜାନନା ତୋ ମନ ଜାଣି ହେବି ହାଜର ସେବାରେ । ୪୧ ।
ମଞ୍ଜୀର ବାଜଣା ହେବ ମାତ୍ର ଜଣା ନ ଯିବ ତନୁକୁ
ଫଜିତ କରିବ ଅଜିତ ଗୁମାନୀ ପ୍ରସୂନ ଧନୁକୁ । ୪୨ ।
ଆଜଠାରୁ ଲାଜ ବରଜରେ ରାଜଚକ୍ରଙ୍କ ଗମନା
ଲଜ୍ଜାଟି ତୋହର କରୁଥାଏ ମୋର ସବୁଭୋଗ ମନା । ୪୩ ।
ଏତେ ସ୍ନେହଶୀଳ ତୁ କଳା କୁଶବା ବୋଲାଇବୁ ନାହିଁ
ହର ପରବଳ ପରବଳିବରେ ଶରଦିନ୍ଦୁ ମୁହିଁ । ୪୪ ।
ଦମତିର ନିରନ୍ତର ସଂଗତିରୁ ସଂପତ୍ତି ସରଇ
ଭରି ଦିଗନ୍ତର ସୁରଭି-ତରୁର ଯଶ ପ୍ରସରଇ । ୪୫ ।
ସମ୍ଭେଶ ଅଶନ ଆଦି କି ବସନ ସଦୃଶ ବରଜି
ଝଳି ଥିବ ଶଂକେ ତରୁଣୀତରୁଣ ଦୁହିଙ୍କ ମରଜି । ୪୬ ।
ଇତିର ମୋହରେ ପଡି ଯେ ଓହରେ ଏ ରଶୁକି ଚିତ୍ତ
ପ୍ରାଣ ବଲ୍ଲଭାରେ ଜାଣ ସେହି ଜନ ଦଇବ ବଞ୍ଚିତ । ୪୭ ।
ଦେଖୁଥିଲେ ଦେଖୁଥିବ ପରସ୍ପରେ ବଦନ ଦ୍ୟୁତିକି
ଲେଖୁଥିଲେ ଲେଖୁଥିବ ପଟପଟେ ସେହି ସୁରତିକି । ୪୮ ।
ସହୁଥିଲେ ସହୁଥିବ ନଖଦନ୍ତ ଘାତ ପୀଡ଼ନକୁ
କହୁଥିଲେ କହୁଥିବ ଗତନିଶା ପ୍ରସଙ୍ଗମାନଙ୍କୁ । ୪୯ ।

ପାନ କରୁଥିଲେ କରୁଥିବ ଦନ୍ତ-ଦୁକୂଳାମୃତର
ଗାନ କରୁଥିଲେ କରୁଥିବ ସେହି ଚରିତ ଗୀତର । ୫୦ ।
ଏପରି ରତୀଶରଶର ଶେଷ ସେ ଭାରତୀ ରାଜିର
ଶ୍ରବଣେଁ ଅବସ୍ଥା ଜଡପରି ହେଲା ସେ ଶିରୀଷାଙ୍ଗୀର । ୫୧ ।
ବାସଲାଗି ତ୍ୱରା ହାସଲାଜ ମୋଦ ଯେଡ଼େ ଅପ୍ରମାଣେ
ଅଷ୍ଟଦୁର୍ଗଧରା ବଳୟ ଅମରାବତୀ ନାଥ ଜାଣେ । ୫୨ ।
ରସାମୃତ ନମେ ପ୍ରକଟ ହେବ ଏ ସବୁ ଜନପଦେ
ଏ ଗୀତ ନିର୍ମିତ ହେଲା ଶୁଭଦିନେ ଚଉବନ ପଦେ । ୫୩ ।
ତମାଳସୁନ୍ଦର ବ୍ରଜପୁରନ୍ଦର ସୁତ ଏହି ମନେ
ଜମାହେବା ଦୋଷ କ୍ଷମନ୍ତୁ, ଏଗୀତ ପ୍ରସରୁ ଭୁବନେ । ୫୪ ।

●

(୩୯)

## ପଞ୍ଚତିରିଶ ପଦିଆ

# ନାୟିକାର ବିରହାନୁଚିନ୍ତା

## (ରାଗ - କେଦାର କାମୋଦୀ)

କେଉଁ ରସିକାବର ଦଇବ ବଶୁ
ହେଉଁ ଅନ୍ତର ନୂଆ ନାଗର ପାଶୁଁ ରେ । ୧ ।
ସହି ନ ପାରି ଘୋର ବିରହ ତାପ
କହିଲା ସହୀ ଆଗେ ବିହି ବିଳାପରେ । ୨ ।
ସଙ୍ଘାତ ମୋତେ ମନ୍ଦ ବିଧି ପାଞ୍ଚିଲା
ଶୃଙ୍ଗାର ମୂର୍ତ୍ତିସଙ୍ଗ ଦେଇ ଭାଙ୍ଗିଲା ରେ । ୩ ।
ଧନ ମୋ ବିନା କେହି ବଞ୍ଚିବେ କାଳ
ଅନବରତ ସହି ମାୟା ଜଞ୍ଜାଳ ଯେ । ୪ ।
ସୁମରୁଛନ୍ତି ସେ ଯେ ଦିବସରାତି
ଚମରୁଦୃଶାଟିରେ ବୋଲି ଡ଼ାକନ୍ତି ଯେ । ୫ ।
ଅଧର ନ ପିଇଲେ ଏକ ନିମିଷ
ଧନରେ ଯାହାଙ୍କର ମନ ବିରସ ରେ । ୬ ।

ଠଉରିବି ଯେ ଏବେ କି ରୂପେ କହ
ଗଉରୀବର କଲେ କେଡ଼େ ନିଗ୍ରହ ଯେ । ୭ ।
ମୁଁ କେହି ବଞ୍ଚିବିଟି ତାହାଙ୍କୁ ଛାଡ଼ି
ଛାଡ଼ି ନ ଯିବ ନିକି ନିକଟେ ନାଡ଼ି ଯେ । ୮ ।
କଞ୍ଜାରମ୍ୟ ବଦନ ଦେଖିବି ବୋଲି
ପଞ୍ଜର ଯାଏଁ ଯାଉଥାଏ ମୁଁ ପେଲି ଯେ । ୯ ।
ସୁଯୋଗ ଯେବେ ଚାରିନୟନ ମିଶେ
ଏ ମର୍ତ୍ତ୍ୟ ସ୍ୱର୍ଗଠାରୁ ବଳି ଆଭାସେ ଯେ । ୧୦ ।
ଅନେକ ରସମିଶା ହସ ଚାହାଣି
ମନେ କଲେ ମୋ ହୃଦ ହୁଅଇ ହାଣି ରେ । ୧୧ ।
ଅତର, ଫୁଲ, ଦନ୍ତୀ ଦନ୍ତପାନିଆଁ
ବିଡ଼ିଆ ଧରା ଗଭା ମାଳାମାନିଆ ରେ । ୧୨ ।
କେତକୀ ଦଳ ଲେଖା ସରସପଦ
ପେଷନ୍ତି ମୋତେ ସୁରେଶ୍ୱର ସଂପଦ ରେ । ୧୩ ।
ମୁଁ ପୋଷୁଥାଏଁ ଚିତ୍ର କୁସୁମ ଗଭା
ଦେଖିବା ଆଶେ ଲାଗି ସମୟ ଶୋଭା ଯେ । ୧୪ ।
ନଚ୍ଛିକେ ଖଟିଗଲେ ମୁଁ କେବେ କେବେ
ମଜ୍ଜି କେବଳ ମହାମଦ ଅର୍ଣ୍ଣବେ ଯେ । ୧୫ ।
ଦିଅନ୍ତି ଅଙ୍ଗେ ଅଙ୍ଗ ଜମାଇଁ ଭିଡ଼ି
ପିଅନ୍ତି ପତି ଅଙ୍ଗ ଦଶନେ ପୀଡ଼ି ରେ । ୧୬ ।
ନରମ ଅଭିଳାଷ ସରସ ଚିତ୍ତେ
ଚରମ ଆତୁ ଆସି ଅତରକିତେ ରେ । ୧୭ ।
ଜାଣି ଜଘନ ତଳ ସ୍ଥଳ ନିକଟ
ପାଣିଜ ଶିଖଖେଳ କରି ପ୍ରକଟ ଯେ । ୧୮ ।
ଚମକି ହସି ପଳାଇବା ମୋ ସୁଖ
ଶଚିଙ୍କି ଦେଇଥିବେ କି ଶତମୁଖ ରେ । ୧୯ ।
ତିନିଦିନିଆଁ ଯେବେ ହୁଏ ବିଚ୍ଛେଦ
ଘେନି ତା ତହୁଁ ଭଲ ସ୍ୱଶିରଚ୍ଛେଦ ରେ । ୨୦ ।
ମଦନ ବାଣ ଦାଉ ସହି ନ ପାରି
ମୋ ଧନ ଆସି ପଛୁ ପକାନ୍ତି ଧରି ଯେ । ୨୧ ।

କିଛି ବିବେକ ନାହିଁ କି ଦିବ୍ୟଚିତ୍ତେ
ଛି ଛି ଛୁଇଁଲ କାହିଁପାଇଁକି ମୋତେ ଯେ । ୨୨ ।
ଏପରି ନିଷେଧ ମୁଁ ହୋଇଲେ ଚଳି
ଚାଳି ଦିଅନ୍ତି ସବୁ ବିଧି ପ୍ରବଳି ରେ । ୨୩ ।
ମୁଁ ପବନକୁ ଲୋଡ଼ି ନିଦାଘ କାଳେ
ଉପବନକୁ ଗଲି ସୁକୁତୂହଳେ ରେ । ୨୪ ।
ମୋ ସାଥେ ଥିବା ଟୋକୀ ଦୂରକୁ ଚଳି
ଖୋଷାରେ ତାର ଖଞ୍ଜୁଥିଲା ନିଆଳି ରେ । ୨୫ ।
ଏକାଳେ ମୋ ପରାଣବନ୍ଧୁ ସେ କେହି
ଏକାକୀ ହୋଇକରି ମିଳିଲେ ତହିଁ ରେ । ୨୬ ।
ଚାହିଁ ମୁଁ ଦନ୍ତେ ଭିଡ଼ି ରସନାଞ୍ଚଳ
ପଳାଇବାକୁ ଯହୁଁ ହେଲି ଚଞ୍ଚଳ ରେ । ୨୭ ।
କେହି ନାହିଁ ରେ ଏଥି ବରବରନା
ମୋ ରାଣ ଅଛିଟି ତୁ କିଛି ଡ଼ରନା ରେ । ୨୮ ।
ଏମନ୍ତ ବୋଲି ମୋତେ ନିବିଡ଼େ ଭିଡ଼ି
ଦଶନାଞ୍ଚଳ ମୋର ଦେଲେ କାମୋଡ଼ି ଯେ । ୨୯ ।
ବୋଇଲେ ମୋ ମଥାରେ ଲଲାମ ଖଞ୍ଜ
ଜନ ନାହାନ୍ତି କେହି ହେଲାଣି ସଞ୍ଜ ରେ । ୩୦ ।
ଗଭାରେ ଖଞ୍ଜି ଦେଉ ଦେଉ କୁସୁମ
ଉଭାରେ ବଢ଼ିଗଲା ସକଳ କ୍ରମ ଯେ । ୩୧ ।
ସେ ସୁଖ ଆଉ ଏ ଜନମରେ ମୋତେ
ମିଳିବ ନାହିଁ କଲି ନିଶ୍ଚୟ ଚିତ୍ତେ ରେ । ୩୨ ।
ପର ପୀରତି କରି ତେଜିବ ଯେବେ
ଗର ପିଇବ ବୋଲି ଯୁବତୀ ଜବେ ରେ । ୩୩ ।
ମୋ ଭାଲପଟେ ଥିଲା ଏ ଦୁଷ୍ଟଲେଖା
ଏ ଦେହେ ଆଉ କେବେ ନୋହିବ ଦେଖା ରେ । ୩୪ ।
ଲଭିଲେ କଷ୍ଟ ଯିବ ଜୀବନ କେତେ
ରଚିଲେ ଅଷ୍ଟଦୁର୍ଗ ନାୟକ ଗୀତେ ରେ । ୩୫ ।

●

( ୧ )

## ରାଗ—ତୋଡ଼ି

ଅନା ଅନା ସୁନୟନା କିଞ୍ଚିତ କୃପାରେ । ପଦ ।

ତୋଷ ମୋତେ ଅନୁକମ୍ପାହାତୀ ଶିରୂପାରେ, ନ ହସି ମୋ ଭଗାରିଏ ସଜ୍ଜନ୍ତୁ ତ୍ରପାରେ । ୧ । କେତେ କେତେ ଜନ୍ମେ ଧନ ମୁଁ ଜଳ ଜପାରେ, ଲେଖିଛି ଅଳତା ଚିତ୍ର ତୋ ଜଳଜ ପାରେ । ୨ । ନ ଫିଙ୍ଗେ ଦୃଷ୍ଟି ତୋ ବିନା ଆନ ସୁରୂପାରେ, ଚିନ୍ତାମଣି ଥାଉଁ ଥାଉଁ କେ ରସେ ରୂପାରେ । ୩ । ଭାସିଲିଟି ଡାକିକଟି ସ୍ମର ଅକୂପାରେ, ତରୁଣି ତରଣୀ ହୋଇ ଲଗାଅ ତୁ ପାରେ । ୪ । ଜଳନ୍ତର ପୁରନ୍ଦର ଚାଟୁ ଜଳପାରେ, ରସିଲା ରସିକା ରସ କୁତୂହଳପାରେ । ୫ ।

●

( ୨ )

## ସରାଗ—ପୂହବୀ—ଝୁଲା

ଅନୁସରିଛି ରେ, ମନୁ ପାସୋରିବୁ ନାହିଁ,
ବଢ଼ି ଅଇଲାଣି, କଢ଼ି ପଦ୍ମପ୍ରାୟେ, ଉଚ୍ଚ ହୋଇ କୁଚ ଦୁଇ । ଘୋଷା ।

କରକରଦନା, କରଯୋଡ଼ି ଜଣାଇଁବି ଯେତେବେଳେ ତୋତେ,
ଦରହାସ ମିଶା ପରଶନ ମୁଖ ଦରଶନ ଦେବୁ ମୋତେ । ୧ ।

---

(୧) ଟୀକା—ଅନୁକମ୍ପା ହାତୀ (ସମ୍ବୋଧନ); ଶିରୂପାରେ—ମସ୍ତକରୁ ପାଦଯାଏ, ତ୍ରପା—ଲଜ୍ଜା, ଜଳଜପାରେ—ପାଣିରେ ରହି ମନ୍ତ୍ରାଦି ଜପିବାରେ, ଜଳଜ ପାରେ—ପଦ୍ମପାଦରେ, ଡାକିକଟି—କ୍ଷୀଣକଟି, ସ୍ମରଅକୂପାରେ—କାମସାଗରରେ, ଜଳପାରେ—କଥାରେ, କୁତୂହଳପାରେ—କୌତୁକ ଶେଷ ସୀମାରେ ।

ରଙ୍ଗା ଅଧରୀକି, ଭଙ୍ଗାର କହିବେ ପ୍ରୀତି ବିରୋଧିନୀ ଯେତେ,
ସୁଝୀନ ବସନା ! ବୁଝିବା ଉଚିତ, ବୁଝି ଦଣ୍ଡ ଦେବୁ ମୋତେ । ୨ ।

ତରୁଣି-ବରଙ୍କ ରଙ୍ଗା ଯେତେବେଳେ ହେବୁ କରୁଣା ଲହରୀ,
ଆଜନ୍ମସୁଖି ରେ ! ଲାଜ ପ୍ରବଳରେ ଦେବୁ ପରା ମନାକରି । ୩ ।

ଜମ୍ବୁନଦଜିତ ଶମ୍ଭୁପରା ସ୍ତନ ଏକା ପଡୁ ମୋର ହସ୍ତେ,
କବିଦିନକର ରାୟଗୁରୁ ବୋଲେ ହାର କରିଥିବି ତୋତେ । ୪ ।



## (୩)

## ଅବନୀଭୂଷା

ଅତନୁ ବାଣେ ନ ଭୂଷା ରେ । ୦ ।

ଅନା ଏ ଶରଦ କାଳ
ଘନା ଏ ସୋହାଗଜାଳ
ଧ'ନା ଏ ଧୂତ-ଧୁନି-ରୁଷାରେ । ୧ ।

ଲୋକେ ଟେକି ରାଟ ପଣ
ଲୋକେ ଦୁର୍ଲ୍ଲଭ ଯୌବନ
ଢୋକେ ଦେଇ ନାଶ ତୃଷାରେ । ୨ ।

ଅମ୍ବର ଚନ୍ଦ୍ର ମଣ୍ଡଳ—
ଦମ୍ଭ କରେ ଦୃଷ୍ଟି ବଳ,
ଗମ୍ଭୀରୀକି ଆସ ସୁସାରେ । ୩ ।

ଏ ନିଶା ଅଷ୍ଟ ଦୁର୍ଗେଶ
ଅନିଶା କରିଚି' ଆସ
ବସିଯିବା ବ୍ୟାଜେ ପଶାରେ । ୪ ।



(୩) ଘନା—ଗାଢ଼ କର, ସୋହାଗଜାଳ—ଆଦରସବୁ, ଧ'ନା—ଧର ନା, ଧୂତ-ଧୁନି-ରୁଷା— କଂପିତ ଅଗ୍ନିପରି ରୋଷ, ରାଟପଣ—ରାଜପଣ, ଅମ୍ବର—ଆକାଶ, ସୁସାରେ—ଭଲଭାବରେ, ବ୍ୟାଜେ—ବାହାନାରେ ।

## (୪)

## ରାଗ—ପିଲୁ—ଏକତାଳି

ଅରୁଣାମ୍ବୁଜଚରଣା ତୁ ରସାରେ ଭରସା ରେ,
କରୁଣାନିଧି ଶରଣାଗତଠାରେ କି ରୁଷା ରେ ? । ପଦ ।
ଅସିତକେଶି ! ମୁଁ ତୋ ପରିଚାର, ରୁଷି କି ନ କରି କିଛି ବିଚାର
ସୁଗୁଣ-ସରିତ-ପତି ତୋ ପରି ତ ନାହିଁ ସରସା ରେ । ୧ ।
ନ ରହ ସୁଦନ୍ତି ! ବଦନ ପୋତି, କଳପ ଅଳପ ହସନ ମୋତି,
ମୃଦୁଳ-ସରସ-ରସ-ହୃଦୟା ତୁ ହୋ ନା ପରୁଷା ରେ । ୨ ।
ନ ନେ ଉନ୍ମାଦନା ଧୃତିକି ଛାଣି, ଗରଳ ଗିଳିବିଟି ପିକବାଣି ।
ତରକି ହୃଦୟ କର-କିଶଳୟ ଗଣ୍ଡେ ନ ରସା ରେ । ୩ ।
ନ କର ମୁକୁରମୁଖି ! ନିରାଶ, ବିଷମ ବଡ଼ କୁସୁମ ଶରାସ
ସହଜରେ ମିତ ବଚନ ଅମୃତ ଧାରା ବରଷା ରେ । ୪ ।
ଅତି ରତିପରି ଚିନ୍ତି ସୁଧୀର, ନୀତି ଗୁଣି ମୁରମଥନ ଗିର,
ଅଷ୍ଟଦୁର୍ଗ ପତି କହେ ସ୍ମିତବତୀ ହେଲେ ତରସା ରେ । ୫ ।

●

## (୫)

## ରାଗ—କାମୋଦୀ

ଆଜ କେ ଶିଖାଇଲା ରୁଷାକୁ ରେ, ରାଜକୁରଙ୍ଗୀଶିଶୁଦୃଶାକୁ ରେ;
ଲାଜ-ମିଳିତ ମନ୍ଦ ବିକାଶ ବାସକୁନ୍ଦରମ୍ୟହାସିନୀ ବରଯୋଷାକୁ ରେ । ଘୋଷା ।
ଶୁଦ୍ଧାନ୍ତୁ ମୁଁ ବାହାର ହେଲେ ଦୃଷ୍ଟି ଯାହାର
ଦଉଡ଼େ ମୋ ବିହାର ଆଶାକୁ ରେ,
ଉଭା ହେଲି ସମୀପେ, ନ ଚାହିଁଲା ଯେ କୋପେ
ବୋଲିବା ସିନା ଦୁଷ୍ଟଦଶାକୁ ରେ । ୧ ।

(୫) ଟୀକା—ରାଜକୁରଙ୍ଗୀଶିଶୁଦୃଶା—ଛାତିଆ ହରିଣୀଛୁଆର ଆଖି ପରି ଆଖି ଯାହାର, ଲାଜମିଳିତ ମନ୍ଦବିକାଶ—ଲଜ୍ଜାହେତୁରୁ ଅଳ୍ପ ପରିମାଣରେ ଯାହା ପ୍ରକାଶିତ ହୁଏ (ହାସର ବିଶେଷଣ);

ବସି ତନାବୀ ପାଶେ, ଅସିତକେଶା ତୋଷେ,
ହସି ଫୁଲାଇ ଚାରୁ ନାସାକୁ ରେ,
ଫୁଲକୁଥାଏ ପରା ମୁଁ ଲପୁଥିଲେ ଧୀରା,
ଶୁଣି ମୋ ସାଧାରଣ ଭାଷାକୁ ରେ । ୨ ।

ଅଧରୁ ସୁଧାଝର, ଦେଇ ଯେ ନାଶେ ମୋର
ବିଷମଶର-ଜ୍ୱର-ତୃଷାକୁ ରେ,
ଚିନ୍ତାକୃଶାନୁ ଝାସେ, ସାରିଦେଲା କି ଦୋଷେ,
ପଚାରିବଟି କଟିକୃଶାକୁ ରେ । ୩ ।

ଯାହାକୁ ଅଧିକୃତି, ଦେଇଥାଏ ସୁଦତୀ,
ଖୋସା ଉପର ଝରାଭୂଷାକୁ ରେ,
ଏହି ସିନା ବିଚିତ୍ର, କେହି ସେ ହେଲା ପାତ୍ର,
ମୁହଁ ନ ଚାହାଁ ଭଳି ଘୋଷାକୁ ରେ । ୪ ।

ଏବେହେଁ ଚାହୁଁ ଭର୍ଗ- ମୋହନା ଅଷ୍ଟଦୁର୍ଗ-
ଧରାକପଟସ୍ୱର୍ଗ ବୃଷାକୁ ରେ,
ନ ରଚୁଁ ନଖେ ଏଣୀ- ଦୃଶାକୁ ପଦେ ବାଣୀ
ଖରଚୁ କହ ଧରାଭୂଷାକୁ ରେ । ୫ ।



ବାସକୁନ୍ଦରମ୍ୟହାସିନୀ—ସୁବାସିତ କୁନ୍ଦଫୁଲ ପରି ମଧୁର ହାସ ଯାହାର, ଶୁଦ୍ଧାନ୍ତ— ଅନ୍ତଃପୁରରୁ, ଆଶା—ଦିଗ, ମୋ ବିହାରଆଶା—ମୁଁ ଯେଉଁ ଦିଗକୁ ବୁଲିବାକୁ ଯାଇଥାଏ, ତନାବୀ—(ଯାବନିକ) ଝରକା, ଲପିବା—କହିବା, ବିଷମଶର—ପଞ୍ଚବାଣଧାରୀ କନ୍ଦର୍ପ, ଚିନ୍ତାକୃଶାନୁ—ଚିନ୍ତାରୂପ ଅଗ୍ନି, ଝାସ—ଅଗ୍ନିତାପ, କଟିକୃଶା—କ୍ଷୀଣକଟି, ଅଧିକୃତି—ଅଧିକାର, ସୁଦତୀ—ଉତ୍ତମ ଦନ୍ତ ଯାହାର, ଘୋଷା—(ଯାବନିକ) କ୍ରୋଧ, ଭର୍ଗମୋହନା—ମହାଦେବଙ୍କୁ ଯେ ମୋହିତ କରିପାରେ, ବୃଷ— ଇନ୍ଦ୍ର; ଏଣୀଦୃଶାକୁ କହ, ସେ ନଖରେ ଧରାଭୂଷାକୁ ନ ରଚୁଁ, ପଦେ ବାଣୀ ଖରଚୁ ।

(୬)

ଆଜ ମୁଁ ଦେଖିଲି ଲାଜବତୀକି ଗୋ !
ଚମ୍ପା ଗୋରୀ ମନ୍ଦେ ହସି
କଂପାଇ ବଦନ ଶଶୀ
ଫମ୍ପା କରିଦେଲା ମୋ ଧୃତିକି ଗୋ ! । ୦ ।

ଛଟା ଧୃତ-ଭ୍ରୂ-କମାଣ
କଟାକ୍ଷ ତୀକ୍ଷଣ ବାଣ
ଓଟାରି ବିନ୍ଧିଲା ମୋର ଛାତିକି ଗୋ । ୧ ।

ଅନଙ୍ଗ ରଙ୍ଗ ପ୍ରବୀଣା
ଅନର୍ଘ ଜ୍ୟୋତିରେ ଛଣା
ଅନାଘାତ ଘାତେ ଘାରେ ମତିକି ଗୋ । ୨ ।

ବାଲୁଙ୍କେଶ ନୃପ ଭାଷ
ତାଳୁରେ କୃପା କଳଶ
ଢାଳୁଚି ସେ ଯା ତା' ଗତି ମୁକତିକି ଗୋ । ୩ ।

●

(୭)

## ରାଗ—ତୋଡ଼ି

ଆରେ କୁରଙ୍ଗୀଦୃଶା, ଆଜ ନିଶି କି ହେବ ତୋ ଦଶା ରେ । ପଦ ।

ଲୁଚି ପଡୁ ତୁ ପହୁଡ଼ିଲେ ମୃଦୁଳ ତୂଳୀ ତଳପରେ କ୍ଷଣେ, ପୁରୁଷ ତୁଲେ କି ଖେଳିବୁ ସଂସାର ଗୁରୁ ସମରପ୍ରାଙ୍ଗଣେ । ୧ । ନୂତନବୟସୀ ଜିଣିବ ଯତନ ତୁ ତ ନ ଜାଣୁ ପହିଲେ, ଫତୁଆ ହେବୁ କି ସେ କାମ ଅମଳ ମତୁଆ ଯୁବା ତୁଲେ । ୨ । ଶରୀରଲତା ତୋ ନ ଜାଣେ ଜନମୁ ପରିରମ୍ଭଜାତ ପୀଡ଼ା, ବରଗିଲେ ଲମ୍ଭି ସହିବୁ

(୬) ଫମ୍ପା କରିଦେଲା—ସଂପୂର୍ଣ୍ଣ ନଷ୍ଟ କରିଦେଲା, ଧୃତିକି—ଧୈର୍ଯ୍ୟକୁ, ଅନଙ୍ଗ ରଙ୍ଗ ପ୍ରବୀଣା—ରତିକ୍ରୀଡ଼ାରେ ନିପୁଣା, ଅନର୍ଘ—ଅମୂଲ୍ୟ, ଅନାଘାତ ଘାତେ—କ୍ଷତହୀନ ଚୋଟ ବା ପ୍ରହାର ।

କେହି ସେ ଅରଗଳ ଭୁଜଭିଡ଼ା । ୩ । କୋଟିଏ ସବତ ଆଳିଙ୍କର ହେଲେ ଗୋଟିଏ ନ ଘେନୁ ଚୁମ୍ବ, ପୀବରସ୍ତନାରେ ବ୍ରଣେ ଏବେ ପୂରି ଯିବ ରଦବାସ ବିମ୍ବ । ୪ । ବିଧୁବଦନା ତୋ ଲାଜ ବଳିଯିବ ନିଧୁବନ ପରିଶ୍ରମୁଁ, ରାଜିବ ଚରଣ ଝୁଲିଲେ ନୂପୁର ବାଜିବ ଯେ ଝୁମୁ ଝୁମୁ । ୫ । ଭରତି କରି ସମସ୍ତ ମନୋରଥ ବରତି ଆସିବୁ କେହି, ବୀର ରାମଚନ୍ଦ୍ର ଦେବ ବୋଲେ ମୋର ନିରନ୍ତର ଚିନ୍ତା ଏହି । ୬ ।

•

## (୮)

## ରାଗ—ଭାଟିଆରୀ, ଏକତାଳି

ଆରେ ଦୁଃଖିଧନ,
ସୁଖୀ ଏକା ଏ ସଂସାରେ ସେହି ଜନ । ପଦ ।

ମହାରସୋଦୟ ରାଜ୍ୟ ଥିବ, ତହିଁ ଯାହାର ସାମ୍ରାଜ୍ୟ ଥିବ,
ଝସଧ୍ୱଜ-ଯୁଦ୍ଧ ସମୟେ ବିବିଧ ରସକୁଶଳା ସାହାଯ୍ୟ ଥିବ । ୧ ।

ହରି ଚରିତରେ ତତ୍ତ୍ୱ ଥିବ, ମହୀରେ ମହା-ମହତ୍ତ୍ୱ ଥିବ,
ଜଡ଼ିବାକୁ ଅଙ୍ଗେ, ମନସିଜ ସଙ୍ଗେ, ଲଢ଼ିବାକୁ କିଛି ସତ୍ତ୍ୱ ଥିବ । ୨ ।

ଅଳକାସଦୃଶ ବାସ ଥିବ, ସୁଧା ସହୋଦର ଗ୍ରାସ ଥିବ,
ନୂଆ ରସିକାର ସୁଆଗ ସରସ, ଖିଆଲରେ ଅଭିଳାଷ ଥିବ । ୩ ।

ଉରେ ଚାରୁ ଚନ୍ଦ୍ରହାରା ଥିବ, ବଚନରେ ସତ୍ୟ ଧାରା ଥିବ,
ହରଷଦାୟିନୀ ମୁନିବିମୋହିନୀ ସରସ ହୃଦୟା ଦାରା ଥିବ । ୪ ।

କାବ୍ୟରସେ ଦିନ ବଞ୍ଚୁଥିବ, ପରଂପଦ ପୁଣ୍ୟ ସଞ୍ଚୁଥିବ,
ସୁମିଜନ ଆଣେ, ଗଣ୍ଡିଧନ ତୁଲେ ନିର୍ମଳିନ ଲୀଳା ରଚୁଥିବ । ୫ ।

---

(୭) ଟୀକା—ଲୁଚିପଡୁ—କ୍ଳାନ୍ତି ସହକାରେ ଲୟ ହୋଇଯାଉ, ଫତୁଆ—ହଟହଟା, ଅମଳ—ନିଶା, ଜନମୁ—ଜନ୍ମରୁ, ପରିରମ୍ଭ—ଆଲିଙ୍ଗନ, ସବତ—ରାଣ, ପୀବର—ପୃଥୁଳ, ରଦବାସବିମ୍ବ—ଅଧରବିମ୍ବ, ନିଧୁବନ—କାମକ୍ରୀଡ଼ା ।

ବିନୟ ସଂପଦ ପୂରିଥିବ, ଗିରିପରି ମଉକରୀ ଥିବ,
ହରିବାକୁ ସ୍ମର ଅହଙ୍କାର ଯାର ପରିଣତ ବିମ୍ବାଧରୀ ଥିବ । ୬ ।

ସତ୍ତ୍ୱ ସମୃଦ୍ଧି ସମ୍ପଦ ଥିବ; ସବୁ ସୁଖେ ଧନ୍ୟ ପଦ ଥିବ,
ପୀଡ଼ିବାକୁ ସାର ଜଗତୀ-ଭୂଷାର ସୁରସ ସୁରଦଛଦ ଥିବ । ୭ ।

ଗୁରୁ ଦେଖି ଦୂରୁ ଲସୁଥିବ, ସଦାନନ୍ଦ ଜଳେ ଭାସୁଥିବ,
ନିଶିଯାକ ରଙ୍ଗେ, ରସି ମିଶି ଅଙ୍ଗେ, ଶଶୀମୁଖୀ ତୁଳେ ରସୁଥିବ । ୮ ।

ଅନ୍ୟାୟ ବିଭବ ଝୁରୁଥିବ, ଅରିଗର୍ବ ଶିରି ଚୂରୁଥିବ,
ବଧୂର ମଧୁର ରସଗର୍ଭଗିର ପଦକୁ ପଦେ ଯେ ପୂରୁଥିବ । ୯ ।

ସମୀପେ ସୁମନ୍ତ୍ରୀବର ଥିବ, ମଜ୍ଜିବାକୁ ଦିବ୍ୟସର ଥିବ,
ହେଲେହେଁ ମିଥୁନ, ପ୍ରିୟ ପ୍ରିୟାନନ, ମନେକରି ସ୍ମରଦର ଥିବ । ୧୦ ।

ସକଳ କେଳିରେ ମନ ଥିବ, ବୁଲିବାକୁ ଫୁଲବନ ଥିବ,
ଦଳିବାକୁ ଘନଜଘନାର ପୀନ କନକ-କଳଶ-ସ୍ତନ ଥିବ । ୧୧ ।

ମାନୁଥିବା ଅଭିମାନ ଥିବ, ବଳିକି ଛଳିବା ଦାନ ଥିବ,
ବରତନୁ ରତେ ଦରବି ଯିବାକୁ ହରପର-କଳା ଜ୍ଞାନ ଥିବ । ୧୨ ।

ହାଟକ ଝଟକ ଦ୍ୟୁତି ଥିବ, ମାର-ମଞ୍ଜୁଳ ମୂରତି ଥିବ,
ଅସିତକେଶୀର କରୁଣା ବଶରୁ, ରସିକ-ରାଜ୍ୟରେ ଛତି ଥିବ । ୧୩ ।

ଅକଳଙ୍କ ହେବା ଗୋତ୍ର ଥିବ, ତହିଁ ସମୁଚିତ ପୁତ୍ର ଥିବ,
ବୋଲେ ଛୋଟରାୟ, ଯାହାର ନିଶ୍ଚୟ ଅନ୍ତ ସମୟକୁ କ୍ଷେତ୍ର ଥିବ । ୧୪ ।

●

## (୯)

ଆରେ ପ୍ରାଣସଙ୍ଗି

ମନମୋହନ ମନ୍ତର ତୋର ଭଙ୍ଗୀ । ପଦ ।

କୃପାରେ ମାନସ ରଖାଇଲୁ, ଭୁଜେ ଭୁଜବନ୍ଧା ଶିଖାଇଲୁ, ଅଳପ ଅଳପ ବଞ୍ଚାଇଣ ବିମ୍ବଅଧରରୁ ମଧୁ ଚଖାଇଲୁ । ୧ । ବ୍ରହ୍ମଜ୍ଞାନୀ ଯୋଗୀ ଯୋଗଭୁଲା, ତିଳସୁମନସ ନାସାଫୁଲା, ପଦ ପଦକରେ ଯାତି ଦେଉଥାଏ ଶକ୍ରପଦ

ମଣିନଥଝୁଲା । ୨ । ସନ୍ତାପ-ସରିତ ଶୁଖାଇଲୁ, କରେ ପୟୋଧର ରଖାଇଲୁ, ହେମ ପଶାସାର ପଲ୍ଲବପାଲିରେ, ପଚାରିବା ରୀତି ଶିଖାଇଲୁ । ୩ । ଅଷ୍ଟଦୁର୍ଗପତି ଭାଷେ ଭୋଳେ, ଚକ୍ରବର୍ତ୍ତୀ କଲୁ ଯୁବାକୁଳେ, ଦାନୀ ହୋଇ ଅଛ ମାନୀ ହେଲୁ କାନି ପଣନ୍ତେ ପବନ ଯେତେବେଳେ । ୪ ।

•

## (୧୦)

## ରାଗ-ତୋଡ଼ି ।——ଝୁଲା

ଆରେ ବିଧୁବଦନା,
ଘେନିଲୁ ତ ନାହିଁ ମୋ ନିବେଦନା । ୦ ।
ମହାବ୍ରତ ପୁଞ୍ଜ ପାଳିକାଶିରେ, ଦେଉଥିଲି ଜବା କାଳିକାଶିରେ,
ପିଠି କରିବାକୁ କି ମୋ ଆଡ଼କୁ, ସମର୍ପି ଦେଇ କାମ ଚିଆଡ଼କୁ । ୧ ।

ମାଳିଯାକ ବହୁଥାନ୍ତି ଉଦକ, ଜାଳି ଜାଗର କରି ଅଭିଷେକ,
କାଳଟି ଯାକ ସେବି ଶଙ୍କରଙ୍କୁ, ତୁମ୍ଭ ଗୋଟିକୁ ଯେ ବଳିଲି ରଙ୍କୁ । ୨ ।

ଘନକରି ପ୍ରିୟସଖୀଙ୍କି ଭିଡ଼ୁ, ସ୍ତନ କଳଶ କଠିନତା ତାଡ଼ୁ
ନାହିଁ କିଛି ସୁଖ ମୋ ଦେହେ ବୋଲି, କାହିଁକି ଦେଉ ମୋ ପାଣିକି ପେଲି ।୩।

କଳ-ବନପ୍ରିୟ-କୂଜିତ ବାଣୀ, ଖଳବଚନ ସତପରି ମଣି,
ସ୍ମରଜ୍ୱରଜାତ ଯାତନା ସହି, କରଜ ମୂନେ ଚିରାଉଛୁ ମହୀ । ୪ ।

ପୁରତେ କହୁଥାଏ ଏଣୁ ତୋର, ସୁରତେ ନ ରହେ ବିବେକ ମୋର,
ଅଧରେ ବୁଡ଼ିଲେ ମୋ ଦନ୍ତ ଶେଷ, ନ ଧରିବୁ ଚିତ୍ତେ ବୋଲି ମୋ ଦୋଷ ।୫ ।

ବସୁଦୁର୍ଗ-ସ୍ୱର୍ଗ-ଶକ୍ର ବିନୟେ, ବସୁମତୀ-ଭୂଷା ତୁଷ୍ଟ ହୃଦୟେ,
ଶରୀର ତ ଏ ତୁମ୍ଭର ବୋଇଲା, ପରିରମ୍ଭ କରି ନୂଆ ଛଇଲା । ୬ ।

•

## (୧୧)

## ରାଗ——ତୋଡ଼ି ପରଜ, ଏକତାଳି

ଆରେ ମୋ ବନ୍ଧୁ ମହୀକି ଚାହୁଁ କାହିଁକି ?
ସରସ ହୃଦୟା ମୋ ଠାରେ ସୁଦୟା ପୂରୁବ ପରି ନାହିଁ କି ? ।। ପଦ ।।

ମୋ ରଦ ଲାଞ୍ଛନ ନ ଥିବାର ପାନ ମଣୋହି ନ କରୁ କେବେ
ପରମ ଦୟାଳୁ ବିନା ଅପରାଧେ ଚରମ କରୁ ତୁ ଏବେ । ୧ ।
ତ୍ରିଦିନ ବିରହେ ଅବରୋଧ ଗୃହେ ଭିତ୍ତିରେ ଲେଖି ମୋ ମୁଖ
ସ୍ନେହ ଅବଲମ୍ବବଶେ ତହିଁ ଚୁମ୍ବ ଦେଇ ହରୁ ପରା ଦୁଃଖ । ୨ ।
ସୁବେଶ ପଗଡ଼ି ଝରା ମାତ୍ର ଛାଡ଼ି କରେ ଧରି ତାକୁ ଆସୁ
ମୁଁ ମୋ କରେ ଶିରେ ଦେବା ଲାଳସରେ ନଦରେ ବୋଲି ତ ହସୁ । ୩ ।
ମଙ୍ଗଳାଙ୍କ ଓଷା ମୋହପାଇଁ ଯୋଷାମଣି ତୁ କରିବା ଦିନ
କଉତୁକେ ଥରେ ଦୁକୂଳ ଉପରେ ଛୁଇଁଦେଲି ସିନା ସ୍ତନ । ୪ ।
ପଞ୍ଚୁଁ ଯେଉଁଦିନ ଲୁଚି ମୁଁ ବିଧାନ ରଚୁ ପଡ଼ିଲୁ ତହିଁକି
କ୍ଷମା ଛାଡ଼ି ରୋଷେ ଶ୍ରବଣାବନ୍ତ ସେ ପ୍ରହାରିଛୁ ତ ତହିଁକି । ୫ ।
ସଉଧ ପଞ୍ଜର ପାଖେ ବସି ତୋର ମୁଖଚନ୍ଦ୍ରେ ରଖି ଆଖି
ପକ୍ୱ ବିମ୍ବାଧରେ ଚୁମ୍ବିଦେଲା ବେଳେ ଦେଖିଲା ସିନା ତୋ ସଖୀ । ୬ ।
ନିଧୁବନେ ତେଡ଼େ ନିବିଡ଼େ ନ ଭିଡ଼େ ଲଭିଲା ଭଳି ବ୍ୟଥାକୁ
ଅଷ୍ଟଦୁର୍ଗପତି ବୋଲେ ଅତି ଭୀତି ଜନ୍ମଇ ଏହି କଥାକୁ । ୭ ।

●

## (୧୨)

## (ରାଗ—ସାବେରି)

ଆରେ ମୃଦୁଅଙ୍ଗି ରେ

ଲାବଣ୍ୟ ତରଙ୍ଗି, ରତି ରସ ରଙ୍ଗିରେ । ୦ ।
ଗୋରି, ତୋହରି ପରି ନ ଥିବ ସୁନ୍ଦରୀ;
ଧନ, ମନ ତୋଷୁ ମୋ'ର, କରି କେତେ ଭଙ୍ଗିରେ ! । ୧ ।
'ଗଭା' କରୁଁ ବହି ଶୋଭା ଧରେ ମହୀ;
ସଂକୋଚିବ ତୋ'ନେତ୍ରକୁ ଦେଖିଲେ 'କୁରଙ୍ଗୀ'ରେ ! । ୨ ।

ଟୀକା—(୧୨) ମୃଦୁ ଅଙ୍ଗୀ—କୋମଳଦେହା, ରତିରସରଙ୍ଗୀ—ରମଣାଦି କାର୍ଯ୍ୟରେ ନିପୁଣା, ଗଭା—ପୁଷ୍ପଗୁଚ୍ଛ, କରୁଁ—ହାତରୁ, କୁରଙ୍ଗୀ—ମୃଗୀ, ଦନ୍ତୀରାଜଗତି—ଐରାବତ ହସ୍ତୀର

ମୋତିଜିତ ଦନ୍ତି ! ଦନ୍ତୀରାଜ ପତି,
'ସ୍ମର' ତୋ'ର ଭୂରୁ ଚାହିଁ 'ଧନୁ' ଦେବ ଭାଙ୍ଗିରେ ! । ୩ ।
ଶୁଣିଲେ ତୋ' ବାଣୀ, ତାହା ଗୁଣି ଗୁଣି
'ଶାରଦା' ଶ୍ରୀ ପାଣି-ବିପଞ୍ଚୀକି ଦେବେ ଫିଙ୍ଗି ରେ ! । ୪ ।
ଛୋଟରାୟ ଭାଷେ—''କି ସୁକୃତ ବଶେ
ହୋଇଲି ଛଇଳା ଶିରୋମଣି, ତୋ'ର ସଙ୍ଗୀରେ ?''



(୧୩)

## ରାଗ—ବିହାଗ ।—ଝୁଲା

ଆରେ ମୋ ହୃଦହାରା,
କିପାଁ ବହେ ନେତ୍ରୁ ନୀରଧାରା ରେ । ପଦ ।

ଶୋଇଅଛୁ କିପାଁ ଧରାରେ ରାମା,
ପଙ୍କଜାକ୍ଷି ହେଜ ମୋ ଅଙ୍କ ତୋ ନିଜ—
ବିଜୟ-ପଲଙ୍କ ପରା ରେ । ୧ ।

ଥିଲେ ହେଲେ ମୋର ହରା ରେ ରାମା,
ତୁ ଅଟୁ ତ କ୍ଷମାଜଳନିଧି ବାମା-
ରାଜିଙ୍କ ମସ୍ତକ ହୀରା ରେ । ୨ ।

ଘେନ ପୀନ ପୟୋଧରା ରେ ରାମା,
ବନ୍ଧୁ ତୋ ମୂରତି ସୁଷମା ସଂପତ୍ତି
ମୋ ମନ ନୟନକାରା ରେ । ୩ ।

ନବପଲ୍ଲବ ଅଧରା ରେ ରାମା,
ଗୁମାନ ନ ଧର ଧରଣୀର ଶିର-
ମଣ୍ଡନା ଝମକଝରା ରେ । ୪ ।

---

ଗତି, ସ୍ମର—କନ୍ଦର୍ପ, ଶାରଦା—ସରସ୍ୱତୀ, ଶ୍ରୀପାଣି ବିପଞ୍ଚୀକି—ଶ୍ରୀହସ୍ତର ବୀଣାକୁ, ଛଇଳା ଶିରୋମଣି—ରମଣୀଶ୍ରେଷ୍ଠା ।

 କ୍ଷିତିରେ କରଜ ଗିରା ରେ ରାମା,
ନ କର ରେ ଜୀବବନ୍ଧୁ ଅଭିନବ—
ପଲ୍ଲବ ସୁନ୍ଦରାଧରା ରେ । ୫ ।
ଘେନ ମୋ ଶ୍ରୀହସ୍ତଧରା ରେ ରାମା,
ଜଗଦ୍ଦେବଙ୍କୁ ତୋ ବନ୍ଧୁକଅଧର
ମଧୁରସ ପାନ କରା ରେ । ୬ ।

•

(୧୪)

## ରାଗ—ପୂରବୀ ।—ଏକତାଳି

## (କାମଦୁହା ବୃତ୍ତେ)

ଆରେ ରସସିନ୍ଧୁ !
ନାହିଁ ନାହିଁ କିପାଁ କରୁ ପ୍ରାଣବନ୍ଧୁ ରେ । ପଦ ।

ରାଜୀବର ଆରେ ସୁ-ରମଣି, ରାଜୀବର-ମୁଖୀ ମୋର ବାଣୀ
ବାଜିଯାଉ ଥରେ କଟିର କିଙ୍କିଣୀ, ଭାଜିଯାଉ କାମଦର୍ପ ଶୁଣି ରେ । ୧ ।
ମିଶିଯା' ମୋକୋଳେ କିପାଁ ଲାଜ, ତୋଷିଯା' ମୋତେ ନାଗରୀରାଜ,
ରସିକା, ମଦନ ରସେ ମୋର ସଙ୍ଗେ, ରହିଯା ଗୋ ମରଜି କି ଆଜ ରେ ।୨।
ଫୁଲାଇ ନାସାକୁ ହୋଇ ତୋଷ, ଗେଲାଇ ପଦେ ବଚନ ଭାଷ,
ଝୁଲିଯାଉ ଥରେ ଅପଘନ ତୋର, ଭୁଲି ତୁ ଦେଖିବୁ ମୋ ମାନସ ରେ । ୩ ।
ବାସ ପ୍ରତି ଅଙ୍ଗୁ ଖସିଯାଉ, ଦୁଇ କଳେବର ମିଶିଯାଉ,
ଝଲକି ଅଧରୁ ହାସ ଦିଶିଯାଉ, ନିମିଷ ପରିରେ ନିଶି ଯାଉ ରେ । ୪ ।
କରଜାଗ୍ର ବାଜିକରି ଯାଉ, ଜଘନାଦି ଅଙ୍ଗ ଥରିଯାଉ,
ଥିବା ମନୋରଥ ମୋର ପୂରିଯାଉ, ମଦନ ଭଣ୍ଡାରୁ ସରିଯାଉ ରେ । ୫ ।
ଭାଷେ ଅଷ୍ଟଦୁର୍ଗ ମହୀପାଳ, ରସେ କର ମର୍ଜି ଅତି ଭୋଳ,
ନାଚିଯାଉ ଥରେ ନାସା ନୀଳମଣି, ପାଚିଯାଉ ସର୍ବ ଲତା ଫଳ ରେ । ୬ ।

•

## (୧୫)

## ରାଗ—ଭାଟିଆରୀ, ତାଳ—ଝୁଲା

ଆରେ ସହଚରୀ, ଥିବି ତୁମ୍ଭଙ୍କୁ ଏକା ଭରସା କରି ॥ ପଦ ॥
ମଦୁଆ ମଦନ ରଣ କଥା, ଶୁଣି ଜନମେ ଯା' ତନୁ ବ୍ୟଥା
ଏ ଦଣ୍ଡ ତା' ଭଳି ନୁହେଁ ନା ବୋଇଲି ଲାଜେ ଛିଡ଼ି ଗଡୁଅଛି ମଥା । ୧ ।
ଦିଆଇ ମୋତେ ଏତକ ଦଶା, କରାଇବାକୁ କି ଲୋକହସା
କରୁଥିଲ ବେଶ ସମସ୍ତେ ଦିବସ ମଧରୁ ପ୍ରବେଶ ହେଲା ନିଶା । ୨ ।
କହୁଛନ୍ତି ସହଚରୀ ବୋଲି, ମୁଁ ଉଲ୍ଲାସେ ସଧ କରିଗଲି
ତହିଁ ଫଳ ଜଣା ହେଲା ଯା ଆପଣା ଆବୁର ସହିତେ ସରିଗଲି । ୩ ।
ରହିଥିଲି ବନ୍ଧା ଲୋକ ପରି, ଚୁମ୍ବନେ ଚିବୁକ ଗଲା ପୂରି
ପ୍ରଦୀପ ଗୁଡ଼ିକ ଜଳି ଝକଝକ ଦିଶୁଥିଲା ହେଲି ଏତେ ସରି । ୪ ।
ଏତେ ଯତନେ ସଧାଇ ତହିଁ, ପାଇଲି କି କି ବଧାଇ କାହିଁ
ଉରଜୁ କାଞ୍ଚିଲା ନ ଘୁଞ୍ଚି ବଞ୍ଚିଲା ଉପାୟ ହିଁ ଯେ କହିଲା ନାହିଁ । ୫ ।

●

## (୧୬)

ଆହା ମୋ ଖଞ୍ଜନାକ୍ଷି ଅନଙ୍ଗେ ମୋ ବିନା ଦୁଃଖୀ ରେ,
ଅବନୀରେ ଢଳିପଡ଼ିବାରୁ ଟୋଳି ଧରୁଥିବେ ପ୍ରିୟସଖି ରେ । ପଦ ।

ଅହର୍ନିଶ ଝୁରି ଝୁରି, ଅତି କୃଶ କୃଶୋଦରୀ, ଇନ୍ଦୁକଳା ତନୁ ତାକୁ ନିନ୍ଦିବନି ତାର ତାର ତନୁଶିରୀ ରେ । ୧ । ଅଶ୍ରୁଭରେ ନେତ୍ର ବେନି, ଅବିରତେ ପୂରିବନି, ଅସାର ମାର ଅକୂପାରେ ପଡ଼ିଣ ମୃଦୁହାସୀ ଭାସିବନି ରେ । ୨ । ଆଭରଣ ଦୂର କରି, କେଉଁ କୁମ୍ଭ ପୟୋଧରୀ, ଅମଳ ମୃଣାଳ ଖଣ୍ଡ ପାଣିପିଣ୍ଡେ ମଣ୍ଡୁଥିବଟି କିପରି ରେ । ୩ । ଅବଧିରେ ତେଜି ଆଶା, ଅଧିକରେ ଅଭରସା, ଅତି ଶ୍ୱାସ ଖର ପଡୁଥିବ ପରା ହେବନି ଦଶମ ଦଶା ରେ । ୪ । ଅଷ୍ଟଦୁର୍ଗେଶ୍ୱର ଭଣି, ଅଭିନବ ରାମାମଣି, ଉମାଧବ କୃପା ସତେ ହେବ ଅବା ଜୀବ ଯିବାଯାଏ ପୁଣି ରେ । ୫ ।

●

## (୧୭)

## ରାଗ—ମୁଖାରୀ, ତାଳ—ଝୁଲା

ଊଣା ତ ନାହିଁ ଚାକିରିରେ, ବନ୍ଧୁ
ଗୁଣାମ୍ବୁନିଧିରେ ଜଣା ତ ଯାଉଛି
ତୁ ମୋତେ ରୁଷିଲା ପରି ରେ । ଘୋଷା ।
ହଣା ବଳି ଦେଇ ଦେବୀଙ୍କି ମଣାଇ
ପାଇଅଛି ନଉକରି ।
ବଣା ମୃଗାକ୍ଷୀ ମୁଁ ତୋ ଗଣ୍ଡ ଯୁଗଳେ
ଲେଖିଛି ଚିତ୍ର ମକରୀ ରେ । ୧ ।
ବୀଣା ବାଣୀ ଯୋଡ଼ି ମାଙ୍ଗକୁ ସଜାଡ଼ି
ଅଳକା ଲାଗି ମୋହରି ।
ଗୁଣା ମୋତି ଦଣ୍ଡି ସୁନାସାରେ ମଣ୍ଡି
କଣ୍ଠେ ରତ୍ନ ଚାପସରି ରେ । ୨ ।
ଟଣାଟଣି କରି ତୋ ଉରେ ବାନ୍ଧିଛି
କାଞ୍ଚଲାରେ ଦେଇ ଜରି ।
ବୀଣାନାଦ ଜିଣି କଟୀରେ କିଙ୍କିଣୀ
ଭିଡ଼ିଛି ସୁଯତ୍ନ କରି ରେ । ୩ ।
ଶୁଣା ପ୍ରଖର ଶବ୍ଦ ପଦେ ନୂପୁର
ଖଞ୍ଜିଛି ନବ ନାଗରୀ ।
ଜଣାଉଛି କବିରବି—ବିପରୀତ
ଦାନେ ବରତନ ସରି ରେ । ୪ ।

●

## (୧୮)

ଏ କି ଦୀନେ ଗୋ !
କୁନ୍ଦହାସୀ, ଗୁମାନ ଘେନନା ମନେ । ୦ ।

କୁରଙ୍ଗଦୃଶା ରେ ଗତି କେ ତୋ ବିନା
ଏ ରତୁ ରୀତିକି ଅନାଥ ନବୀନା

(୧୮) କୁରଙ୍ଗଦୃଶା—ମୃଗନୟନା, ଭେକ—ବେଙ୍ଗ, ଟେକ ଡାକ—ଉଚ୍ଚ ରବ,

ଭେକ ଟେଙ୍କ ଡ଼ାକ ଯୁବା ଜୀବ ଘେନା
ହେଉ ଅଛି ପ୍ରତି ସ୍ଥାନେ ॥ ୧ ॥

ଚନ୍ଦ୍ରବଦନା ରେ ହର ମୋ ବେଦନା
ଭରଭର କରେ ଦୁଃଖ ନିବେଦନା
ନୀଳକଣ୍ଠ ନାଟ ପାଟବ ଘଟନା
ଘଟୁଚି ଗିରି ଗହନେ ॥ ୨ ॥

କାଳିକା କପଟେ ଏ କାଳ ଭୂଜଙ୍ଗୀ
ଦେଖାଇ ବିଜୁଳି ଛଳେ ଜିହ୍ୱାଭଙ୍ଗୀ
ବକାଳିକା ଏ ନୁହେଁ ରେ ଜୀବସଙ୍ଗୀ,
ଦେଖ ବିଷଦାନ୍ତମାନେ ॥ ୩ ॥

ଘଡ଼ଘଡ଼ି ରଡ଼ି ଶ୍ରୁତି ପଥେ ପଡ଼ି
ମୁନିକରୁ ଜପା- ମାଳି ଯିବ ଝଡ଼ି
ଏ ସମୟେ କୃପା ପୀୟୁଡା ନିଉଡ଼ି
ରଖ ପ୍ରାଣ ସମାଧାନେ ॥ ୩ ॥

ରସି ମୋରେ କ୍ଷଣେ ଚଞ୍ଚଳ ଈକ୍ଷଣେ
ନ ଚାହିଁଲେ ଭାସି ଗଲିଟି ଏକ୍ଷଣେ
ନୃପ ରାମଚନ୍ଦ୍ର ଛୋଟରାୟ ଭଣେ
ବରଷାଋତୁ ବିଧାନେ ॥ ୫ ॥

●

(୧୯)

## ରାଗ—ସାବେରି

ଏହି ସ୍ନେହରେ ମୁଁ କିଣା,
ତୁଳିଲେ କମଳ-ପୁଅ ପଦ ହେବ ଊଣା । ୦ ।

ଭରଭର କରେ—ଛାତିରେ ହାତ ଦେଇ, ନୀଳକଣ୍ଠ ନାଟ—ମୟୂରନାଚ, କାଳିକା—ମେଘମାଳା, କାଳ ଭୁଜଙ୍ଗୀ—କାଳସର୍ପିଣୀ, ବକାଳିବା—ବଗସମୂହ, ନିଉଡ଼ି—ଅଜାଡ଼ି, ଈକ୍ଷଣେ—ସୁଦୃଷ୍ଟିରେ ।

ଲହୁଲୀ ବୟସୀ ରସି ହସି ବସି ପାଶେ
ଦନ୍ତବାସେ ଶାଢ଼ୀ ଶେଷ ଭ୍ରୂଲତା ଉଲ୍ଲାସେ । ୧ ।
ତଳପ ପକାଇ ତଳେ ବସିଥାଇ ଜଗି
ନ ଖାଇ ନ ଖାଇ, ଦେଉ ପାନ ଖିଲ ଭାଙ୍ଗି । ୨ ।
ଭ୍ରମାଇଁ ମୋହର ନାମ ଡ଼ାକୁ ଶୁଆ - ସାରୀ,
ତୁଚ୍ଛା ପରିରମ୍ଭ ଦମ୍ଭହର ପରି କରି । ୩ ।
ପରଶଂସୁ ନିତି ରାତି ପୂର୍ଣ୍ଣିମାର ଏକା
ଖଞ୍ଜିଲେ ଗଳାରେ ହାର ହେଉ ତୁ ତାଟକା । ୪ ।
ଗଜପତି ରାମଚନ୍ଦ୍ର ଦେବ ଏ ବଦତି
ରତି 'ରତି' ନୁହେ ସମ ହାତୀଗତି ରୀତି । ୫ ।



(୨୦)

## ରାଗ—କାମୋଦୀ, ଆଠତାଳି

କମ୍ପି କମ୍ପାଇଲା ରେ ଘସା ଚୂନିବସା ଦଣ୍ଡି
ମୁଁ ନିକି ଶୁଝିବି ମୁନି-ମୋହନାର ତୁନିକୁହା ଭାବଖଣ୍ଡି । ପଦ ।
କୁସୁମ-ସମୟ ନ ଜାଣି କୁସୁମ-ବିଶିଖେ ହୋଇ କାତର
କରିକୁମ୍ଭଯୁଗ ନିନ୍ଦିବା ଉରଜେ ପକାଇଦେବାକୁ କର । ୧ ।
ଜାଣି ନିଶୀଶେଷ ଲାଜ ପାଇ ବେଶ ପାଶୁଁ ଉଠିବାର ବେଳେ
ବଳିଆଇ କେଳି ସଦନେ ବାଳାକୁ ବସାଇ ଦେବାରୁ କୋଳେ । ୨ ।
ଆଳି ନିକଟରେ ଥିବାର ନ ଜାଣି ନବୀନା ବାଳୀକି ଦିନେ
ଛନ୍ଦି ବାହୁଯୁଗେ ଆବଦ୍ଧ କରିଣ ଚୁମ୍ବଦେବାରୁ ବଦନେ । ୩ ।
କବିରବି ରାୟଗୁରୁ ବୋଲେ ପ୍ରୀତେ ଦିନେ ସୁକନକ ଗୋରୀ
ମଙ୍ଗଳାଙ୍କୁ ପୂଜୁଥିଲା ତା ନ ଭାବି ପଛୁ ପକାଇଲି ଧରି । ୪ ।



(୧୯) କମଳପୁଅ ପଦ—ପଦ୍ମରୁ ଜାତ ବ୍ରହ୍ମା-ପଦ, ଲହୁଲୀ (ନହୁଲି)—କୋମଳ, ଦନ୍ତବାସେ ଶାଢ଼ୀଶେଷ—ପଣତକାନି ଦାନ୍ତରେ ଧରି, ତଳପ—ଶେଯ, ନଖାଇ—ନଖରେ ଧରି, ପରିରମ୍ଭ— ଆଲିଙ୍ଗନ, ତାଟକା—ଆଶ୍ଚର୍ଯ୍ୟ, ରତି—ଟିକେ ମାତ୍ର, ରତି—କନ୍ଦର୍ପଙ୍କ ସ୍ତ୍ରୀ ।

(୨୧)

## ରାଗ——ପୂରବୀ——ଝୁଲା

କରୁ କାହିଁକି ରେ, ସରୁକଟୀ ମୋତେ ଲାଜ ?
ଅରୁଚି ଘୁଞ୍ଚିବା ସରୁ ଚୁମ୍ବନକୁ ନ ରୁଚିଲା ପରି ଆଜ । ପଦ ।
ତନୁଟି ଛୁଆଁଇ ନ ଦେଲୁ ନିପଟ ଧନୁଟି ପରା ତୁ ମୋର
ଜାତି-କରଜା ରେ, ଛାତିରେ ନ ମିଶି ରାତିଯାକ ହରବର । ୧ ।
ପୀଡ଼ିବି ସିନା ମୁଁ ଅଧର ଅଳପ ଭିଡ଼ିବି ସିନା ରେ ସହି,
ଘରୁଟି ବୁଡ଼ିବ ଦରୁଟି ବଚନ ଥରୁଟିକୁ ନାହିଁ ନାହିଁ । ୨ ।
ଆଉ ଟିକାକୁ ତ ସୁଖ ଯିବ ସରି ଦାଉ ବଳିଯିବ ସିନା
ପାରିବାର ସାଚି-ପାନଖିଲ ମୋର ଯାଚି ଦେଲେ ହେଲେ ମନା । ୩ ।
ନୀବିକି ଫିଟାଇ କାମ ସଦନରେ ଦେବିକି ଚଳାଇ ନଖ
ଠିକି କେ ମୋ କର ବଞ୍ଚାଇ ଦେଉଛୁ ପୋତି ଆଢ଼େ ଚନ୍ଦ୍ରମୁଖ । ୪ ।
ଭାରତୀକି ଶୁଣି ଜଗଦ୍ଦେବଙ୍କର ଗାରସାର ଗୁଣନିଧି
ହସହସ ହୋଇ ଆରମ୍ଭି ଦେଲା ଯେ ବୃଷରାଜବନ୍ଧ ବିଧି । ୫ ।



(୨୨)

## ରାଗ——ଶାବେରୀ, ଏକତାଳି

କାନ୍ଦ ନା ମୁଁ ନୋହିବି ବିଦେଶୀ ରେ, ମନ୍ଦହାସୀ । ପଦ ।
କା'ର ବୋଲେ ସହି, ଗାର କାଟୁ ମହୀ,
ହାର ପରି ନେତ୍ରଧାରକୁ ବୁହାଇ,
ବାରଣଗତିକି କାରଣଟି ଏହି ଛାରକଥାକୁ କି ରୁଷିରେ । ୧ ।
କୁନ୍ଦରଦନା ମୋ ପନ୍ଦରବୟସୀ ମନ୍ଦର-ଉରଜା ଚନ୍ଦ୍ରଜିତ ହାସୀ
କନ୍ଦର୍ପ ଶରେ ମୁଁ ଦେଖୁଁ ଗଲି ଭାସି, ସୁନ୍ଦର ନିକି ଏ ଦିଶି ରେ । ୨ ।
ଦରପଣମୁଖୀ ପରସନ ହୁଅ, ଉରଜରେ କରଗଣ୍ଡକୁ ନ ଦିଅ
ଦରହାସୀ ଦରହାସେ ଦୟା ବହ, ସରସ ବଚନ ଭାଷି ରେ । ୩ ।

ହରିଣୀ-ନୟନା ଧରି ତୋର କର, ସରିଗଲିଣି ମୁଁ କହୁଛି ନିକର ।
କରିବି କି ବୁଦ୍ଧି ହରସୁତ-ଶର, ମରମେ ଯାଉଛି ପଶି ରେ । ୪ ।
ସେବିଥିବି ତୋର ପାଶେ ଅନୁବ୍ରତେ, ଯିବି ନାହିଁ କାହିଁ ଥିବା ରେ ଜୀବିତେ
କବି ରବି ବୋଲେ ଏ ଗୀତରେ ଏତେ ପାଇଛି ଗଙ୍ଗାରେ ଝାସି ରେ । ୫ ।



(୨୩)

## ରାଗ—ଝଂଝୋଟି—ରୂପକ

କଳାକେଶୀ କଳାକରହାସୀ, ରଷିମୋହିନୀ ନ ବସ ରୁଷି । ଘୋଷା ।
ବଳାନାଦେ ପଳା ପଳା ବୋଲି ଚଳା କାମକୁ ତୁ ଚଳାଚଳଦୃଶୀ । ୧ ।
ରସବତୀ କୁଳ ଚକ୍ରବର୍ତ୍ତୀ ହୋଇ ନ ଘେନିଲେ ମୋ ମିନତି
ନୀରସବତୀ ବୋଲିଣ ରହିଯିବ ଜଗତରେ ତୋର ଅକୀରତି । ୨ ।
ସୁନାଗୋରୀ ଯେବେ ଏତେ ସରି—କରିବାକୁ ଥିଲୁ ତୁ ବିଚାରି
ପୀୟୂଷ ରସକୁ ମଧୁର ଅଧରୁ ପିଆଇ ନ ଥାନ୍ତୁ କୃପା କରି । ୩ ।
ଭାଷା ବିନିର୍ଜିତ ମଧୁରସା—ସୁଖୀ କରି ପଦେ କହି ଭାଷା
ଆଶାକୁ ମୋହର ନ ଭାଙ୍ଗରେ ବର-ରସାଳସା ତୁ ତ ମୋ ଭରସା । ୪ ।
ଜିତକଣ୍ଠୀରବ କଟୀକଟୀ—ଚିତ୍ତ ଜାଣିଥିବାଠାରେ ଖଟି
ନବଳୁ ବିଦୂର ହରି ପରିହର ତୋତେ ଏ ବିଚିତ୍ର ନୁହଇଟି । ୫ ।
ପ୍ରାଣକୁ ପରି ପ୍ରୀତିକି ପାଳି—ଥାଉ ପରା ମୋର ଗଳାମାଳି
ଜାଣିଥାଇ ଦୁଃଖ ଖଣାକୁ ପେଲୁଛୁ ଚିତ୍ତେ ମୋର କେଉଁ ଦୋଷ ଭାଳି ।
ଶ୍ରୀ ବାଲୁକେଶ ନୃପତିବର—ତୋ ଛାମୁରେ ଅଛି ନିରନ୍ତର
ତେବେ ହେଲେ ରସ ବିଚକ୍ଷଣା, ଶୁଣା ନ ଗଲା ଛଣା ପୀୟୂଷ ଗିର । ୬ ।



(୨୪)

## ରାଗ—ସାବେରୀ—ଆଠତାଳି

କଳାବତୀ ରେ, ଚଳା ମୋରେ କୃପା ଅପାଙ୍ଗଟିକି ରେ । ପଦ ।

ଏ କି ଭଙ୍ଗୀରେ ତୋ ଜବାଧରା,
କେ କି କହେ କି ବାଧି ସୁଧୀରା,
ଟେକିଅଛୁ ବିବେକିନୀଙ୍କ ଚକ୍ରେ ଛତିରେ । ୧ ।
ଜଟାଧାରୀ-ମୋହନୀ ବିବେକୀ,
ହଟା ଅରିମଣ୍ଡଳେ କରିକି,
ଫିଟା ମୋ ସନ୍ଦେହ ଗଣ୍ଠିଟିକି,
ଖଟା ତ ମୁଁ କରି ନାହିଁ ଦିନେ ତୋ ନୀତିରେ । ୨ ।
କାନେ ନ ଶୁଣି ମୋ ନିବେଦନା,
ମାନେ ବଳିଲେ ରେ ସୁନୟନା,
ଧାନେ ହେଲେ ପ୍ରାଣଧନ ବିନା,
ଆନେ ନ ଥାଏ ତ କେବେ ମୋର ସମ୍ମତିରେ । ୩ ।
ତ୍ରାସେ ସରିଲିଟି ମଦନର,
ହାସେ କିପାଁ ନ ମଣ୍ଡୁ ଅଧର,
ଦାସେ ଥିଲେ ଯେତେ ଦୋଷ ତାର,
ନାଶେ ବଳଇ କି ମତି ମତିକ ମତିରେ । ୪ ।
ଦାସବତ୍ସଳା ରେ ଘନକେଶା,
ଭାଷ ପଦେ ସୁଧା-ସ୍ୱାଦୁ ଭାଷା,
କାଶହାସୀ ନ ନାଶି ମୋ ଆଶା,
ଆସ ମୋ ଅଙ୍କ ଜଗତୀକି ଗଜଗତି ରେ । ୫ ।
କଳକଣ୍ଠୀ ରସିଲେ ସଦୟ,
ଜଳନ୍ତର ବସୁଧା ବଳୟ,
ଛନ୍ଦୁ ସୁର ସନ୍ଦ ହରିହୟ,
ଶ୍ରୀ ପୁରୁଷୋତ୍ତମ ଛୋଟରାୟ ଭାରତୀ ରେ । ୬ ।



## (୨୫)

## ରାଗ—ପଞ୍ଚମ ବରାଡ଼ି

କଳା ବଳାହକତୁଳାଦଳିତନୀଳକୁନ୍ତଳା ଚଳାଚଳାଚାରୁନେତ୍ରାଞ୍ଚଳା ।

ବାଳାବଳୟଇଟଳାଗଭାସଦୃଶୀ ମଞ୍ଜୁଳା ଦଳା ଗୋରୋଚନାଙ୍ଗୀ କୋମଳା ରେ, କଳାବତି, କଳାନିଧି ଶ୍ରୀମୁଖମଣ୍ଡଳା, ଢଳା ନେତ୍ରେ କର ମୋ ସଙ୍ଖଳା, ବାଳାହଳାହଳଗିଳାଚୂଳାଭରଣକୋମଳା ଜଳାତି ନିର୍ମଳାତିବତ୍ସଳା ରେ । ୧ ।

କି ମାନିବା ସୀମା ଦେଖି ପ୍ରମାଦ ମାର୍ଗ ଉପେକ୍ଷି ରମା ସମାଜମାନଙ୍କୁ ହରି । ସମାନ ବିମ୍ବ ଚନ୍ଦ୍ରମାମୁହାଁ ତୋ କୁନ୍ତଳେ ଜମା ହେଲା ତମାଳମାଳ ମାଧୁରୀ ରେ, କ୍ଷମାନିଧି, ଗୁମାନ ମାତ୍ର ନ ଧର ମୋରେ, ଜମାଅ ମାଗୁଛି ପୟୋଧରେ, ରମା ଉମା ତୁରଙ୍ଗମା ସମାନସାଧ ମଧମା ଗମାର ମାର ମାରୁ ନା ଶରେ ରେ । ୨ ।

ତୁଷାରସାମ୍ୟସୁପ୍ରହସାନନା ତୁ ମୋ ଶୁଭ-ଦଶାର ସାର ସାମଗ୍ରୀବର । ତୁ ସାରସାକ୍ଷୀକି ହେଜି ପ୍ରାସାଦ ସାମ୍ରାଜ୍ୟ ତେଜି ରୁଷା-ରୁଷାରୁ ସାମର୍ଥ୍ୟ ମୋର ରେ, ରସାଳସା, ମୁଁ ସାରସ ଚରଣରେ ପଶି, ଅସାର ସଙ୍ଗରେ ନାହିଁ ବସି, ତୁ ସାରାସାରବିବେକି ଭୂଷା ତୁ ସାକ୍ଷୀ ତହିଁକି ରସାଅ ସାର୍ଥରେ ଥରେ ହସି ରେ । ୩ ।

ହରାପରାଧୀ ଦୁର୍ଜର ନାରାଜରାଜିରେ ମୋର ପରାଭବ ଏକା କଲେ ଫନ୍ଦା । ଧରାଧରାଧିପସ୍ତନା ଚରାଚରାନ୍ତେ ତୋ ବିନା ପରାଭବ କାହିଁ ହେବ ନିନ୍ଦା ରେ, ଧରା-ଝରା, ଅରାତି ନୁହଇ ମୁଁ ସୁକେଶା, ଖରାପ ନ କର ଏଡ଼େ ଆଶା, ସ୍ମରାତୁର ଜଳନ୍ତରଧରାମରାବତୀସୁର ପରାଣ ପାଇଲେଟି ପ୍ରଶଂସା ରେ । ୪ ।



## (୨୬)

## ରାଗ—କାମୋଦୀ, ଆଦିତାଳ

କହିବାକୁ ଲାଜ, ସଖି ଯାହା ହେଲା ଆଜ । ଘୋଷା ।

ପହୁଡ଼ିଥିଲେ ଜଣା ନ ଥିଲା ମୋତେ ବୀଣା ଆଳାପେ ଲଗାଇଲି ଗେଲେ ଲୟ, କାନ୍ତ ମୋ ଗଣ୍ଡେ ଆସି ଚୁମ୍ବିଲେ ପରଶଂସି ମରଣୁ ବଳିଗଲା ସେ ସମୟ । ୧ । ଖସି

(୨୫) ଟୀକା—କଳାବଳାହକ—କଳାମେଘ, ଜଳାତି (ଜଳାତ୍ୟୟ ଶବ୍ଦଜ)—ଶରତ୍‌କାଳ, ଧରାଧରାଧିପ—ପର୍ବତରାଜ ।

ପଡ଼ିଲା କରୁ ବିପଞ୍ଚୀ ଧରୁ ଧରୁ, ମେରୁଗରୁଆ ହେଲା ଗଭାଫୁଲ; ଟେକି ନୋହିଲା ମୁଖ ତହିଁ ପଞ୍ଚବିଶିଖ ଚଣ୍ଡାଳ କଲା କେତେ କଲବଲ । ୨ । ଚୁମ୍ବିଲେ ଅଙ୍ଗସୀମା, ଜାତ ପୁଲକରମା, ଶୀତ୍‌କାର ଉପୁଜିଲା ବାରମ୍ବାର; ନିବିଡ଼ ଭୁଜବନ୍ଧୁ ଛାଡ଼ି ନ ଦେଲେ ବନ୍ଧୁ, ପଳାଇବାକୁ କାହିଁ ରାହା ମୋର । ୩ । କେତେ କଥାକୁ ଏତେ ଦଶା ଲଭିଲି ଚିତ୍ତେ, କି ନ କଲା ଏ ଲାଜ ଘେନ ମନେ; କିପରି ଗୋ ସଙ୍ଘାତ ବିପରୀତ ସୁରତ ରସକୁ ରସୁଥାନ୍ତି ବାମାମାନେ । ୪ । ଭାଷଇ ଜଳନ୍ତର ଅବନୀ ପୁରନ୍ଦର ହେଲେ ହୋଇବ ଏକ ଗୁଣ ଲୋପ; ଆଉ ପାପ ସଙ୍ଗୀତ ବିଦ୍ୟାସଧରେ ଚିତ୍ତ ନ ଦେବି ବୋଲି କଲି ସଂକଳପ । ୫ ।

●

## (୨୭)

## ରାଗ—କାମୋଦୀ, ଏକତାଳି

କହିବି କେତେ ଥର ଥରକୁ ରେ, ମହୀ ମଉଳିଭୂଷାବରକୁ ରେ ।
ସହିବି କେହି ଦଣ୍ଡଧର ସଦୃଶ ଚଣ୍ଡ ଚଣ୍ଡୀରମଣ-ପର ଶରକୁ ରେ । ୦ ।
ମାଦରଚୋଦ ପାପ କର୍ମତ କଲା ଅପବାଦ ନିରତ ଲୀଳା ଗାରକୁ ରେ
ଚାଦରଧରା ଦାସଠାରେ କରି ନିରାଶ ଆଦର କଲା ରୁଷା ଛାରକୁ ରେ । ୧ ।
ନିନ୍ଦଇ ଯେଉଁ ମୁଖ ସୁଧାମୟ ମୟୂଖ ସୁନ୍ଦର ବିଭାବରୀ-ବରକୁ ରେ
କୁନ୍ଦନାଙ୍ଗୀ ତା' ଶିରୀ ସାରିଦେଲା ପ୍ରସାରି କ୍ରନ୍ଦନ୍ତୁ ଅଶ୍ରାନାଶ୍ରୁ ଝରକୁ ରେ । ୨।
ସୁହାଇ କ୍ରମେ କ୍ରମେ ଦୟାଳୁ ମଣି ପ୍ରେମେ ବୁହାଇଥିଲା ପୟୋଧରକୁ ରେ
ମୁହାଇଟାକୁ ପ୍ରାଣ ରଖିଛି ପଞ୍ଚବାଣ ତୁହାଇ କରେ ଯେ ପ୍ରହାରକୁ ରେ । ୩।
ଜଣା ନ ଥାଏ ତେବେ ହେଲେ ଦୟାଳୁଭାବେ ମଣାଇଧରି କଞ୍ଜକରକୁ ରେ
ବଣା ନୋହିବୁ ପ୍ରୀତିପଦବୀ ବୋଲି ନିତି ଜଣାଉଥାଏ ଏହି ଗିରକୁ ରେ । ୪ ।
ନିକିତି ତୁଳ ପରି ଭଜିଅଛି ନ କରି ଟିକିଏ ହେଲେ ପରିହରକୁ ରେ
କି କି କରି ନ ପାରେ ପ୍ରଭୁ ଯେ ଯାହାଠାରେ ବିକିଥାଇଟି ନିଜ ଶିରକୁ ରେ । ୫।
କରୁଣା ସୁଧାରାଶି ଅନାଉ ଥାଉ ଭାସିଯିବାର ପସନ୍ଦ ନିତରକୁ ରେ
ଶ୍ରୀ ଜଗଦ୍ଦେବ ବୋଲେ ରସିକା ଏବେ ହେଲେ ସଦୟ କରୁ ହୃଦନ୍ତରକୁ ରେ । ୬।

●

(୨୬) ଟୀକା—ବିପଞ୍ଚୀ—ବୀଣା, ପଞ୍ଚବିଶିଖ—କନ୍ଦର୍ପ, ଜାତପୁଲକରମା—ରୋମାଞ୍ଚଶୋଭା ଜାତ ହେଲା ।

(୨୮)

## ରାଗ—ତୋଡ଼ି

କାଞ୍ଚନ ବରନା ଚଞ୍ଚଳେ ଅନା ରେ ବଞ୍ଚନା କର ନା ॥ ପଦ ॥
ମାରଦର ପରିଚାର ଜନର ନିବାର
ଯୁବ ମଦବାରଣେନ୍ଦ୍ର-ଗତି ସାର
ସାରସ ସୌରଭ ଭାର ବାସିନୀ ॥ ୧ ॥

କନ୍ଦର୍ପ ସାଳସୀ ସୁନ୍ଦରହାସୀ ପନ୍ଦର ବରଷୀ
ମନ୍ଦ ବିଦଳିତ କୁନ୍ଦ ବିଚକିକବୃନ୍ଦ ଗଳିତ
ମରନ୍ଦ ରସଝର ବିନ୍ଦୁ ସନିଭ ମୋହନ—
ସ୍ମିତ କାନ୍ତି ତୁନ୍ଦିଳ ଗଣ୍ଡ ମଣ୍ଡଳୀ ॥ ୨ ॥

ନିର୍ଦ୍ଧୂତକଦନା ଚନ୍ଦ୍ରବଦନା ରେ ମୋ ଶ୍ରମସଦନା
ଦୋଷ ନ ସମଝି ରୋଷ ନ କର ଏ ଘୋଷ ତରୁଣୀ ରେ
ତୋ ସମାନ ତ ନାହିଁ ଚାହିଁଲି କାହିଁରେ
ଅବଗାହିବା ମନା ନ ଥାଇ ରେ ଧନ ॥ ୩ ॥

ମାନସମୋହନା ମାନ ତୁ ସହନା ବିରସେ ରହନା
ଖଣ୍ଡ ରସନିଧି ଖଣ୍ଡ-ପରଶୁ ପରଚଣ୍ଡ ଶର ଦର ଦଣ୍ଡଭୂପର-
ପୃଷ୍ଠ ଭାଷିନୀ ଅନ୍ତ ତୋ ବଶ
ଅଷ୍ଟଦୁର୍ଗ ପୁରନ୍ଦର ରେ । ୪ ।

●

(୨୯)

କାହିଁକି ଆଜ—
ଦ୍ୱିଜରାଜ ବଦନେ, ଲାଜ—
ଭରି କିଶୋରୀ ନ ଚୁମ୍ବୁ ଗୋ । ୦ ।
ଅରସବତୀ ଘନ— କୁନ୍ତଳା ବୋଲି ଜନ
ନ ବୋଲନ୍ତୁ, ତୋ ଡଣା ଯାଉ ଗୋ,

(୨୯) ଦ୍ୱିଜରାଜ-ବଦନେ—ଚନ୍ଦ୍ରମୁଖରେ, ରତେ—ରତିକ୍ରୀଡ଼ାରେ,

ରସାଇବାକୁ ତୋତେ ମିଳିବ ନାହିଁ ରତେ
ମୋ ପରି ପରିଜନ ଆଉ ଗୋ । ୧ ।
ତୋ ବଧୂଲି ଅଧର ସ୍ୱର୍ଗ ସୁଧା ମଧୁର
ମୋର ରସନାକୁ ସମଜାଉ ଗୋ,
ଜାଣୁ ତ ପ୍ରାଣମିତ ମାରମାର୍ଗଣ ଜାତ
ସମୟ ଏ କେମନ୍ତ ଦାଉ ଗୋ । ୨ ।
କୋଟିଏ ଅଭିଳାଷ ବହି ଆସିଛି ପାଶ
ସମ୍ପ୍ରତି ଚରମକୁ ଥାଉ ଗୋ,
କୋଳେ ନିଷ୍କଳେ ବସ କରି ସବ୍ରୀଡ଼ ହସ
କବି ମିହିର ଦୁଃଖ ଯାଉ ଗୋ । ୩ ।



(୩୦)

## ରାଗ—ଭୈରବୀ—ଆଡ଼ତାଳି

କାହିଁ ଲୁଚାଇ ସେ ସ୍ନେହ, ଚାହିଁଲୁ ଧରାରେ । ୦ ।
ମଦନ—ଦର୍ପଣ ଝଳି—ସଦନ ସସ୍ମିତ କେଳି
ବଦନ ବିମୋଦ ନତ-ଅଙ୍ଗୀ ନ କରା ରେ । ୧ ।
ଅରୁଣଓଷ୍ଠୀ ରୁଚିର—ଚରଣ ପଙ୍କଜ ତୋର
ଶରଣ ତୁ ପରା ମୋର ମଉଳି—ଝରା ରେ । ୨ ।
ଠିକ୍ ଯୁବ ମଦ କଳ—ପିକଭାଷୀ ତୋ ତାମ୍ବୁଳ—
ପିକଦାନୀ ଦାନୀବର ମୋ କରେ ଧରା ରେ । ୩ ।
ମନକୁ ମ୍ଳାନ ନ କର—ଘନ କୁନ୍ତଳା ମୋହର
ଧନକୁ ଜୀବନକୁ ତୁ ଅଧିକ ପରା ରେ । ୪ ।
ଶଶିହାସୀ ମାର ମଦେ—ଇସି ଭାଷି ମୋର ହୃଦେ
ଠେସି ଦିଅ ପୀନସ୍ତନ-କନକ-ଗରା ରେ । ୫ ।

ରସନାକୁ ସମଜାଉ—ସ୍ୱାଦ ଉପଲବ୍ଧି କରୁ, ମାରମାର୍ଗଣ—କନ୍ଦର୍ପଶର, ସବ୍ରୀଡ଼—ସଲଜ୍ଜ ।

ବସୁ ଦୁର୍ଗନାଥ ବୋଲେ—ବସୁମତୀ-ଭୂଷା ଗେଲେ
ରସୁ ଲେଖା ହେଲା ସ୍ମର ଦୁଃଖ ପାଶୋରା ରେ । ୬ ।



(୩୧)

## ରାଗ—ବଙ୍ଗଳାଶ୍ରୀ—ଝୁଲା

କାହିଁ ବରକେଳି-ମଣ୍ଡଳେ ନୋହିବ ସୁଧାରେ ତାର ସମାନ
ଅମରେଶ୍ୱରଙ୍କୁ ମିଳୁଥିବ ଅବା ସୁଧାରେ ତା ରସମାନ । ୦ ।
ସଉରଭ ଲୋଭେ ଝାମ୍ପୁଥିଲା ଯହିଁ ମଧୁପ ଚାରିବଦରେ
ହରିଲିଟି ବୋଲି ବାମାର ଅଧର ମଧୁପ ଚାରି ବଦରେ । ୧ ।
ଯେଉଁପରି ହରିଚନ୍ଦନୁ ମିଳିବା ବଦନେ ମଧୁର ସାର
ସେପରି ଥିବ କି ରସ ସରଜନେ ବଦନେ ମଧୁ ରସାର । ୨ ।
ଚାକୁରେ ବନିବା ଏଥୁଁ ଯେବେ ଅନ୍ୟ ଭରମେ ଦିଖଣ୍ଡ ସରେ
କି ବାଦୁ ମିଳିବ ଏକମାତ୍ର ଶ୍ରମ ଭରମେ ଦିଖଣ୍ଡ ସରେ । ୩ ।
ଏ କେଳି ଝଳିରୁ ଊଣା ହେବ ମଜ୍ଜା ଅପୂର୍ବ ସୁଆଦ ରସ
ରସକୁ ଘେନିଲେ ଇକ୍ଷୁଖଣ୍ଡ ହେବ ଅପୂର୍ବ ସୁଆଦରସ । ୪ ।
ନିଷିଦ୍ଧ ଏ ବୋଲି ନ ବହେ ଯା ତାକୁ ମହୀମ କର ମାସରେ
ଘେନୁଛି ମୁଁ ମନେ ତା'ଠାରୁ ବିଗଡ଼ ମହି ମକର ମାସରେ । ୫ ।
ଦେଉ ପ୍ରସାଦରୁ କରିପାରିବି ଏ ସଂସାରେ କରି ବିଶେଷ
କବିରବି ବୋଲେ ଏ ରସ କି ପରସଂସାରେ କରିବି ଶେଷ । ୬ ।



(୩୨)

## ରାଗ—ତୋଡ଼ି—ଏକତାଳି

କି କଲି ମଲ୍ଲୀହାସୀକି,
କି ଦୁଃଖେ ଦେଲି ଗୁଣରାଶିକି । ୦ ।
ଆହା ମୋ ଲୀଳା-ବିଳାସୀ
ସମ୍ପୂର୍ଣ୍ଣ ଶରଦଶଶୀ—

ବଦନ, କରେ ନିବେଶି, ଥିବ ବସି ।
(ପଡ଼ି)
ମୋ ଛାର ପାଇଁ ଜୀବନ ମୀନଗରବଗଞ୍ଜନ—
ନୟନୁ ସରୁଅଞ୍ଜନ ଧୋଇଲା
ସେ ମୋର ମହିଳା କାହାର ମଣି ସେ ନ ଚାହିଁଲା
ଧିକ ଧିକ ମୋ ଜୀବନ ବେନି ସପତ ଭୁବନ
ଖୋଜିଲେ ସୁକୃତହୀନ ନ ଥିବ ମୋପରି ଆନ । ୧ ।
କଲେହେଁ ବହୁତ ଦୋଷ, କରି ନାହିଁ ଦିନେ ରୋଷ,
ସେ ଦୟାଳୁ ଅବତଂଶ,—ନାଗରୀ ଈଷ
(ପଡ଼ି)
ଶ୍ୱେତ ନଳୀନ ମୁଖୀକି ଆହା ଆଜନ୍ମ ସୁଖୀକି
ମନନୟନ ପ୍ରୀତିକି—ଦେଇ ଛାତକି ମାଇଲୁ କାତିକି । ୨ ।
ଏକେ ଅତି ସୁକୁମାରୀ, ସେ ତ ନବୀନା କିଶୋରୀ—ମୋ ମନୋହାରୀ
(ପଡ଼ି)
ଅହର୍ନିଶ ବସୁଧାରେ, କୋଟିବାର ଲୋଟିବାରେ
ଘୋଟିଲା ମଳିନ ଯୋଷା କେତକୀ । ୩ ।
ମୃଣାଳ-ବାହୁ ବଲ୍ଲରୀ, କରେ ତତି କେତେ ପରି, ସେ ନାଗରୀ
(ପଡ଼ି)
ସେ ତ ଭାବମାନ ଦୂର—କରି କରେ ଏ ମନ୍ତର
ଅଷ୍ଟଦୁର୍ଗ ମହୀପତି ଭାଷିଲା,—ମୋର ସୁଶୀଳା
ଅତେଜ ଅଙ୍ଗନା ମିଶିଲା । ୪ ।



## (୩୩)

କିପାଁ କରୁଛୁ ନିରାଶ, ମୁଁ ପରା ତୋ' ନିଜ ଦାସ । ୦ ।
ସେବି ତତେ ଦିବା - ରଜନୀ ! ସଜନୀ
କେତେ ନାହାନ୍ତି ତୋ' ପାଶ ।
ତହିଁ ମୁହିଁ ଜଣେ ହୋଇ ତୋ' ଚରଣେ
ଦେବି ସିନା ଲାକ୍ଷାରସ । ୧ ।

ଆରେ ଘନକେଶି ! ସ୍ୱଜନ ବିନାଶି

ଲଭିବୁ ତୁ କେଉଁ ଯଶ ?

ତନୁଅଙ୍ଗି ! ଅଙ୍ଗୀକାର କର, ଦର—

ହାସ କର ପରକାଶ । ୨ ।

ନାହିଁ ଚିତ୍ର-ଅଳି ଦିଶେ ମୋ' ସଙ୍ଖାଳି !

ଅଲଗା ତୋ' ରଦବାସ,

ହୁଅ ପଛେ ଚଳି, କୁଚେ ପତ୍ରାବଳୀ,

ଲେଖିବାକୁ ପରମାସ । ୩ ।

ଆରେ ଜୀବ ଧନ ! ଯିବାକୁ ଜୀବନ

ଲାଗୁ ନାହିଁ ମୋତେ ପ୍ରାସ,

ମୋ' ପରି କେ ମନ ଜାଣି ନିଧୁବନ-

କୁଶଳା ! କରିବ ବେଶ ? । ୪ ।

ହୋଇ ତୁ ହରଷ ସରସ ହୃଦୟା !

ଅଧରୁ ସୁଧା ପରଷ;

ହରିଚନ୍ଦନ ଚାତକେ ଘନ ପରି

କରୁଣା ରସ ବରଷ । ୫ ।



## (୩୪)

କି ବର୍ଣ୍ଣିବି ରେ ! ତୋ' କୁଚକୁ ? । ୦ ।

ଶୋଭା ଦେବୀ କର—ଲୀଳା-'ସରସିଜ' କି ବହିଲା

ମୁଖ ଚନ୍ଦ୍ର ଚାହିଁ ସଂକୋଚକୁ ରେ ? । ୧ ।

ତାରୁଣ୍ୟ - ସୁନାରି ଯୋଡ଼ି ସ୍ୱର୍ଣ୍ଣ ସଂପୁଟ ସଜାଡ଼ି

ଭେଟିଚି କି 'ଫୁଲ ନାରାଚ'କୁ ରେ । ୨ ।

(୩୩) ଲାକ୍ଷାରସ—ଅଳତା, ତନୁ ଅଙ୍ଗୀ—ତନୁପାତଳୀ, ଚିତ୍ରଅଳି—ମୁଖମଣ୍ଡଳରେ ଅଙ୍କିତ ଚିତ୍ର ସମୂହ, ରଦବାସ—ଓଠ ଓ ଅଧର, ଚଳି—ବିରକ୍ତ, ପ୍ରାସ—ବ୍ୟଥା, ନିଧୁବନକୁଶଳା—ରତିକ୍ରୀଡ଼ାରେ ନିପୁଣା, ଘନ ପରି—ମେଘ ସଦୃଶ ।

(୩୪) ଶୋଭାଦେବୀ—ଲକ୍ଷ୍ମୀ, କରଲୀଳା-ସରସିଜ—ହସ୍ତର କ୍ରୀଡ଼ନକ ପଦ୍ମଫୁଲ, ତାରୁଣ୍ୟସୁନାରି—ଯୌବନ ରୂପକ ବଣିଆ, ସଂପୁଟ—ଫରୁଆ, ଫୁଲନାରାଚକୁ—କନ୍ଦର୍ପଙ୍କୁ,

ଅବା ତୁ କଳା ବଲ୍ଲରୀ ଦିବ୍ୟ ଫଳ ଯୁଗ ଧରି
ବଢ଼ାଉଚୁ ? ବଳିବ ରୁଚକୁ ରେ ! । ୩ ।
ବିଧି-ଚକ୍ରୀ ଏକାବେଳେ କୁମ୍ଭ ଦ୍ୱୟ କୁତୂହଳେ
ଜାତ କଲା କେହି ଏକା ଚକ୍ରୁଁ ରେ ? । ୪ ।
ଅଷ୍ଟଦୁର୍ଗନାଥ ଭାଷେ 'ବିପୁଳ' ଦେଖି ହରଷେ
'ଶମ୍ଭୁ' ଇଚ୍ଛାରେ କଲା କି ଉଚ୍ଚକୁ ରେ ? । ୫ ।



(୩୫)

## ତୋଡ଼ି ବଙ୍ଗଳା—ଏକତାଳି

କି ଭାବର ବାଣୀ ସବୁ ଜାଣି ଜାଣିରେ ଆଜ ଏ କି ଠାଣି ରେ । ୦।
ଖଳି କି ବିନ୍ଧାଣୀପଣେ ଅନ୍ତର୍ବାଣୀ—
ହୋଇ ଦେଲା ଏ ଗୁମାନୀ ମୂରତି ନିର୍ମାଣି ରେ । ୧ ।
ମୋ ଧଇର୍ଯ୍ୟ ଛାଣି ନେବାକୁ କି ଟାଣି
ଗଣ୍ଡକୁ ମଣ୍ଡିଛୁ ନବ କିଶଳୟ ପାଣିରେ । ୨ ।
କେଡ଼େ ମୂଢ଼ ପ୍ରାଣୀ ହେଲେ ଯେ ପଛାଣି
ବରଜି କି ସୁଧାରସ ଲୋଡ଼େ ତର ବାଣୀ ରେ । ୩ ।
ଫୁଲଚାପ-ପାଣି ତୋ ମହୀ ଚାହାଣୀ
ଦେଖି, ରଖିଲାଣିଟି ମାର୍ଗଣଗଣ ଶାଣି ରେ । ୪ ।
ଅଦୋଷରେ ଆଣି ଦୃମନଦେ ହାଣି
ଅନା ଜଗଦେବଙ୍କୁ ସୁନ୍ଦରୀ ସାମନ୍ତାଣୀରେ । ୫ ।



କଳାବଲ୍ଲରୀ—କଳାପୂର୍ଣ୍ଣ ଲତିକା, ରୁଚକୁ—ରୁଚିକୁ, ବିଧିଚକ୍ରୀ—ବିଧାତାରୂପୀ କୁମ୍ଭକାର, ଚକ୍ରୁ—କୁମ୍ଭାରଚକରୁ, ବିପୁଳ—ବିଶାଳତା, ଶମ୍ଭୁ—ଶିବଲିଙ୍ଗ ।

(୩୬)

## ରାଗ—କାମୋଦୀ-ଝୁଲା

କି ରସିକ ସେ, ବିରସ ଯାହାର ମୁଖୁ ବିକଶେ
ପୁରୁଷ ହୋଇ ଯେ ନାରୀମନସୁନା ପ୍ରୀତି କଷଟିରେ ଯେବେ ନ କଷେ । ୦ ।
କଳନା ନ ଯାଏ ଲଳନାର ମୁଖ କମଳ ପରାଯେ ସଦା ବିକଶେ
ଅଳି ହୋଇ ଯେବେ ଚୁମ୍ବି ନ ପାରଇ ଅଳି କରିବାର ତାର ଧିକ ସେ । ୧ ।
ଚତୁରୀ ଚାତୁରୀ ବଚନ ଉଚ୍ଚାରି ମରମେ ନୟନ ଶରକୁ ପେଷେ
ତହିଁକି ଯେ ପ୍ରତିଉତ୍ତର ନ ଦେଲା ଯୁବାବୃନ୍ଦ ମଧ୍ୟେ ଅବିବେକ ସେ । ୨ ।
ଭିତରେ ସଦୟ ବାହାରେ ସଭୟ ଦେଖାଇ କହନ୍ତି ମାତରକ ସେ
ଘେନାଇ କରି ଯେ ଛନ୍ଦାଇ ନ ଦେଲା ନ ଜାଣଇ କିଛି ବିତରକ ସେ । ୩ ।
ପଙ୍କଜାକ୍ଷୀ ବାଳା ଯା'ଅଙ୍କେ ନ ବସେ କେଉଁମନ୍ତେ ଭାଗ୍ୟବନ୍ତ ଅଟେ ସେ
କହେ କବିରବି ମୋହନୀ ମନ୍ତର ଜାଣି ମୁଁ ତାହାର ମନକୁ କଷେ । ୪ ।



(୩୭)

## ରାଗ—କାମୋଦୀ । ତାଳ ସରିମାନ୍

କେଉଁ କାରଣୁ ମୁଁ ତୋ ସେବାକୁ ଗୋ,
ମୋଠାରେ ଅବଧାନ ହେବାକୁ ଗୋ । ପଦ ।

ତୋ ଚାରୁମୁଖ ମାଠି, ଘେନି ତିଳକ କାଠି, ଭାଳଇ ଭାଳେ ନିବେଶିବାକୁ ଗୋ; ଲାଗଇ ମନେ ଦୁଃଖ, କୋଟିସୁଧାମୟୁଖ ଦଳିବା ଝଳି ଛପି ଯିବାକୁ ଗୋ । ୧ । ମନୋହର କବରୀ, ସାଜି ପାରଇ ଗୋରି ଜାଣି ତୋ ଚିତ୍ତ ରସାଇବାକୁ ଗୋ, ଭରସା ନୋହେ ମୋର ଛାର ନୀଳଚାମର ଚଉଁରି କେଶେ ମିଶାଇବାକୁ ଗୋ । ୨ । ତୋ ପୟୋଧର ହେମ ଦାମ ଛଡ଼ା କୁସୁମ ପରି ମୋ ଚିତ୍ତେ ଆଭାସିବାକୁ ଗୋ; ମରଣୁଁ ଲାଜ ବଳେ ଚାହୁଁ ଚାହୁଁ ତ କଳେବରକୁ ଅଳଙ୍କାର ଦେବାକୁ ଗୋ । ୩ । ସାରି ସକଳ ବେଶ ଦେଖାନ୍ତି ଆଦରଶ ହେବା ନୋହିବା ପଚାରିବାକୁ ଗୋ; କବିମିହିର କହେ, ସତେ ଦିଶେ ତୋ ଦେହେ କେବଳ ଅନୁଗ୍ରହ ଥିବାକୁ ଗୋ । ୪ ।



(୩୮)

## ରାଗ—ତୋଡ଼ି, ଝୁଲା

କେଳିପ୍ରବୀଣା, କେବଳ ତୋତେ ସିନା ଜଣା ରେ,
ପ୍ରଣୟ ଧନେ ପ୍ରାଣ କିଣା ରେ । ପଦ ।

ନେତ୍ରାନ୍ତ ଖେଳଯୁତ, କରାଇ ମିତସ୍ମିତ, ବିବେକ କରି ଦେଉ ବଣା ରେ । ୧ । ଦରଶନ ଆରମ୍ଭେ, ସରସ ଗିର ଦମ୍ଭେ, ପରଷିବାର ସରପଣା ରେ । ୨ । ଦରକଣ୍ଠି ସୁନ୍ଦର, ଦରହାସ ମଧୁର, ସରସ ଗିର ପଦେ ଶୁଣା ରେ । ୩ । କରୁଣାମୟ ଚିତ୍ତେ, ଅରୁଣାଧରା ମୋତେ, ତୋ ଦାସୀଗଣନାରେ ଗଣା ରେ । ୪ । ମୁଁ ଏହି ଅଭିଳାଷେ, ଶିବ ଶିବାଙ୍କ ପାଶେ, କରୁଥାଏଟି ଜଣାମଣା ରେ । ୫ । ଗୁଣେ ଲାବଣ୍ୟବତୀ, ପାଶେ ଭାରତୀ ରତି, ଦୁହେଁ ତୋ ଠାରୁ କିଛି ଊଣା ରେ । ୬ । ବୋଲେ ଶ୍ରୀଜଗଦ୍ଦେବ, ତୋ ସ୍ନେହୁଁ ମନୋଭବ-ମସ୍ତକେ ମାରି ପାରେ ଠଣା ରେ । ୭ ।



(୩୯)

କେହି ବଞ୍ଚିବି ରେ
ସହି ଜୀବନଦ ରବ
ଏ କାଳରେ ଯାହା ତେଜିଲି ରେ ଆହା
ସହୀ ଜୀବନ ଦରଦ । ୦ ।
ଘେନି ଯାଉଥିବ ସ୍ମର ଶରେ ତାର
ଜୀବ ମୋ ଆଗମନରୁ
ସତେକି ଭେଟିବି ବିନୟେ, ସେ ଦର
ଯିବ ମୋ ଆଗ ମନରୁ । ୧ ।

(୩୮) ଟୀକା—ମିତସ୍ମିତ—ଈଷଦ୍ଧାସ୍ୟ, ସରସଗିରଦମ୍ଭେ—ସରସ ବାକ୍ୟ ଛଳନାରେ, ଦରକଣ୍ଠି— କମ୍ବୁକଣ୍ଠି, ଜଣାମଣା—ପ୍ରାର୍ଥନା, ଭାରତୀ—ସରସ୍ୱତୀ, ଠଣା—ଆଘାତ ।

(୩୯) କେହି—କିପରି, ଜୀବନଦ ରବ—ମେଘର ଡାକ, ଦର—ଭୟ, ଅବଧୀର—ଅସ୍ଥିର, ଅବଧିର—ଅବଶିଷ୍ଟ, ଭୁଜଙ୍ଗୀ—ସର୍ପିଣୀ, ହାରବର—ଶ୍ରେଷ୍ଠହାର, ବନ୍ଧୁଜୀବ ସମାଧରୀ—ବଧୁଲୀ ଫୁଲ ପରି ଅଧର ଯାହାର, ବନ୍ଧୁ ଜୀବସମା ଧରି—ମୋ ବନ୍ଧୁ ପ୍ରାଣ ପରି ଜୀବ ଧରିଥିବ,

କୋଳେ ବସି ମୋର          ନାଗରୀ ମଦନ
ଅବଧୀର ନିରନ୍ତରେ
ଏବେ ବସି ଗଣୁ          ଥିବ ଦିନ ମୋର
ଅବଧିର ନିରନ୍ତରେ । ୨ ।
ଭୁଜଙ୍ଗୀ ଏ ବୋଲି          ଭ୍ରମ ହେବନି ମୋ
ସଜନୀର ହାର ବରେ
ତା ମୁଖ କମଳେ          ସିଂଚୁଥିବେ ସଖୀ
ସଜନୀର 'ହା' ରବରେ । ୩ ।
କି କଲି ଯା ତେଜି          ଅଇଲି ମୋର ସେ
ବନ୍ଧୁଜୀବ ସମାଧରୀ
କଣ୍ଠ ତଟେ ପ୍ରାଣ          ରଖିଥିବ ଆହା
ବନ୍ଧୁ ଜୀବ ସମା ଧରି । ୪ ।
ଅତି ଆର୍ତ୍ତ ହୋଇ          ବିନୟରେ ରାମା
ସେ ବି ପଦ ଶର ଦରେ
ଜଣାଉଥିବ ଯେ          ମଦନରୁ ଲଭି
ସେ ବିପଦ ଶରଦରେ । ୫ ।
କମ୍ପି ଯାଏ ନାମ          ବୋଲନ୍ତେ ଏ ନବ—
ଘନ' ତାରକେଶମୁହାଁ
ଏବେ ଦେଖି ରଖି          ପାରିବ କି ଅପ-
ଘନ ତାର କେଶ ମୁହିଁ । ୬ ।
ମତେ ଚିନ୍ତି ମନେ          ଅବୟବ ନବ—
ନୀତ ତନୁ କରୀଗତି
ନ ଦେଖି କାହାକୁ          ମୋ ବିନା ସେ ନବ—
ନୀତ ତନୁ କରି ଗତି । ୭ ।

---

ଶରଦରେ—ଶରତ୍ କାଳରେ, ଶର ଦରେ—କାମବାଣ ଭୟରେ, ତାରକେଶ ମୁହାଁ—ଚନ୍ଦ୍ରମୁଖୀ, ମୋହର—ବଶ୍ୟତାର, ସ୍ତନିତ—ମେଘ ଗର୍ଜନ, ସମୀପ ରାମାର—ପ୍ରେମିକା ପାଖକୁ ।

କିଶଳୟ ଶୟ— ନର ହୋଇଥିବ
ମୋହର ଘନସ୍ତନୀ ତ
ହେଉଥିବ ତାର ନିରତ କାରଣ
ମୋହର ଘନ ସ୍ତନିତ । ୮ ।
ବିରହାଗ୍ନି ତାପେ ଥିବ ସେ ସ୍ୱକୀୟ
ରୁଚିର ବରନ ବିନା
ମେରୁ ଗୁରୁ ମଣି ବିନା ପିନ୍ଧା ବାସ
ରୁଚିର ବର ନବୀନା । ୯ ।
କି ବିଚାରୁ ଥିବ ଧରଣୀ ଶୟନେ
ମାନସେ ଆହା ରମଣୀ
ଉଭା ହେବା ବଳ ନ ଥିବ ଗରଳ
ମାନସେ ଆହାର ମଣି । ୧୦ ।
ଏ ଘନ କାଳରେ ଜୀବ ସେ ତେଜିବ
ପରା ମାର ଶରଦରେ
ଲଭିବି କି ଆଉ ଗଲେ ମୁହି ସମୀ-
ପରାମାର ଶରଦରେ । ୧୧ ।
ଜୀବ ଥିବ ସତେ ମୋ ପ୍ରିୟାକୁ ମତେ
ଦେବ ଶ୍ରୀ ହରିଚନ୍ଦନ
ଚିତ୍ର ଦେବି ସ୍ତନେ ତାର ଭାଷେ ଜଗ-
ଦେବ ଶ୍ରୀ ହରିଚନ୍ଦନ । ୧୨ ।

●

(୪୦)

## ରାଗ—ମୁଖାରୀ, ଆଠତାଳ

କୁନ୍ଦରଦନା ରସବତୀ, ରସବତୀ ରାମା ରସବତୀ । ପଦ ।

ଗଲା ନିଶି ତାହା ସଙ୍ଗତେ ମାତି, ଯେତେ ବନ୍ଧେ ହେଲା ସୁରତି, ରତିରେ ମାତି ନ ହେଜିଲି ରାତି, ଢାଳୁଥିଲା ତାର ନେତ୍ର ସମ୍ପତ୍ତି, ଭିଡ଼ିଲା ଦେଇ ଛାତିକି ଛାତି । ୧ ।

ନାଟ କରୁଥିଲା ନାସିକାମଣି, ଫିଟି ଚରମେ ଲୋଟୁଥିଲା ବେଣୀ, ବାଜୁଥିଲା ତାର କଟି କିଙ୍କିଣୀ, ନେଉଥିଲା ମୋର ଚିତ୍ତକୁ କିଣି, ଭାଷିଲା ହୁଁ ହୁଁ ଶବଦବାଣୀ । ୨ । ଉରଜେ କରଜ ଚାଳନ୍ତେ ନେଇ, ଚମକି ଇଷି ବୋଲିଣ ଭାଷଇ, କହୁଥାଇ କେତେ ବିନୟ ହୋଇ, ଏଥକୁ ଆଉ ମୁହିଁ ନ ପାରଇ, ବୋଲଇ ଆଜି ପଡ଼ିଲି କାହିଁ । ୩ । କେତେବେଳ ଅନ୍ତେ ଜୀବଜୀବନ, ଆରମ୍ଭିଲା ବିପରୀତ ବହନ, ତେତେବେଳେ ଯାହା ହେଲା ମୋ ମନ, ତହିଁକି କେବଳ ସାକ୍ଷୀ ମଦନ, ଗଣି ଦେଉଥିଲା ଚୁମ୍ବନ ଦାନ । ୪ । ଅଷ୍ଟଦୁର୍ଗପତି ବୋଲେ ଏ ରସ, ଏହି ଆଜ୍ଞା ମୋତେ ହେବ ଗିରୀଶ, ଖଟିଥିବି ଅନବରତ ପାଶ, ବସି ଚାହିଁଥିବି ମୁଖସାରସ, ଘେନି ବଞ୍ଚୁଥିବି ରାତ୍ରିଦିବସ । ୫ ।

●

## (୪୧)

## (ଶ୍ରୀ ରାଗ କାମୋଦୀ)

କୁନ୍ଦ ସୁନ୍ଦରହାସୀ ଇନ୍ଦୁବଦନା । (ପଦ)
ଶମ୍ବ ବିଶିଖମଣି କେଶୀ ରେ ସହି
ବିମ୍ବ ସଦୃଶ ରଦନାମ୍ବର ଚାହିଁ
ଚୁମ୍ବନ ବିନୁ ଧୃତି ସମ୍ଭବୁ ନାହିଁ ନ କର ମନା (୧)
କୁଞ୍ଜରବର ଗତିରେ କୁଟିଳାକ୍ଷୀ
ପଡିଛି ନିକଟ ଅନାଉଣି ଦୀକ୍ଷା
କଞ୍ଜ ସୁରଭି ତନୁ ମୋର ତୁ ରକ୍ଷା ମୋ ମନ୍ତ୍ର ତୋ ନା (୨)
ଆଜ ରଜନୀ ଧନ ତୋର ପରମାସେ
ହାଜର ହେବି ଫୁଲବଲ୍ଲୀ ନିବାସେ
ଲାଜ ରହିତ ନୟନାନ୍ତ ସବିଳାସେ ଅଳପ ଅନା (୩)
ଅଙ୍କେ ବିହର ପିକ ନିସ୍ୱନ ଗାନେ
ଶଙ୍କର ରିପୁ ରଣରଙ୍ଗ ବିଧାନେ
ରଙ୍କେ ନୃପତି ରାମା ତୁ ନିଦାନେ ଘେନ ବେଦନା (୪)
ଭାସଇ ନୃପ ଜଗଦ୍ଦେବ ଯେ ଭାଷା
ରଣକୁଶଳା ରସିକାବର ଯୋଷା
ହ୍ରାସ ସଫଳ କଲା ସକଳ ଆଶା ଶମଦମନା (୫)

●

(୪୨)

## ରାଗ—କେଦାର, ତାଳ-ସରିମାନ

ଖଚ ବଚନକୁ ସତ ମଣି କି ରେ । ଘୋଷା ।

ଆଦରଶେ ଥିବା ବାଙ୍କ, ଗଙ୍ଗାଜଳେ ଅଛି ପଙ୍କ, ରବିବିମ୍ବରେ କଳଙ୍କ ଭଣିକି ରେ । ୧ । ଭୃତ୍ୟର ବିଶ୍ୱାସ ଦେଖି, କରିଥାଇ ଯେବେ ସୁଖୀ, କାଳେ ତା ଚିତ୍ତରେ ରଖି ଟାଣିକି ରେ । ୨ । ମଦନ ଅମଳ ବଶେ, କ୍ଷତ ଯେବେ ଦନ୍ତବାସେ, ଦିଶଇ ଏ ଦୋଷ ଦୋଷେ ଗଣି କି ରେ । ୩ । ଯେବେ ପ୍ରଭୁପଣ କରି, ପାରିବୁ ହିରଣ୍ୟଗୋରି, ଜିଣି ଯିବି କରେ ଧରି ଫଣୀକି ରେ । ୪ । ଲଭିବାରୁ ମୁଁ ପଣ୍ଡିତା, ବର ତୋ ପରିଚାରିତା, ଲକ୍ଷ୍ୟ ନ କରେଁଟି ଚିନ୍ତାମଣିକି ରେ । ୫ । ଏଣିକି ତୋ ଅନୁଗ୍ରହ, ନୋହିଲେ ମୋ ରିପୁବ୍ୟୂହ, କହିବ ମୋ ପାଇଁ ଦେହପଣିକି ରେ । ୬ । ଅଗଣିତ ଆନ ମନ, ଅନାଥ ବରଜି ମାନ, ରାୟଗୁରୁ କବିଦିନମଣିକି ରେ । ୭ ।



(୪୩)

## ରାଗ—ବିଳାହୋରି, ତାଳ—ଏକତାଳି

ଖଞ୍ଜରୀଟନୟନା ଅଳପ ଚାହାଁ ରେ । ପଦ ।

ଅଞ୍ଜନରୁଚି ମଦଗଞ୍ଜନକେଶା, କଞ୍ଜସୁନ୍ଦର ମୁଖ ରଞ୍ଜନବେଶା, ସଞ୍ଜ କୁମୁଦସମହାସବିଳାସା, ତୁ ସିନା ସାହା ରେ । ୧ । ଦନ୍ତ ବସନ ରୁଚି ସନ୍ତତ ଚାଖି, ସନ୍ତତ ତବ ତନୁ କାନ୍ତିରେ ଲାଖି, କାହିଁ ଭରସି ରସି ନାହିଁ ମୋ ଆଖି, ତୋହର ବାହାରେ । ୨ । ବାରଣବରଗମନା ରସକାରା, ପରିଚିତ ରଣରଣ ଧରଣୀବିହାରା, ରଚ ବଚନାମୃତ ନିର୍ଗତ ଧାରା ମିଶ ହୃଦ ହାରେ । ୩ । ଚଣ୍ଡ ମଦନ କର ଦାରୁଣ ବାଣେ, ଦଣ୍ଡକୁ ସମୁଚିତ ନୁହଇ ମୁଁ ଟାଣେ, ମଣ୍ଡ ଗଳକୁ କହେଁ ଅଗଣିତ ରାଣେ, ମୃଦୁଳବାହା ରେ । ୪ । ମଗ୍ନ ମୁଁ ତୋର ରସନିର୍ଝରକୂପେ, ତନୁ ରୁଚି ନିର୍ଧୂତ ହାଟକରୂପେ, ସକରୁଣ ହୁଅ ହରିଚନ୍ଦନ ଭୂପେ, ମୋ ସୁଖ ରାହା ରେ । ୫ ।



(୪୨) ଟୀକା—ଆଦର୍ଶ—ଦର୍ପଣ, ଦନ୍ତବାସ—ଅଧର, ପରିଚାରିତା—ଭୃତ୍ୟତ୍ୱ, ଚିନ୍ତାମଣି—ଅଭୀଷ୍ଟପ୍ରଦ ମଣି, ଦେହପଣିକି—ଶରୀରପଣ (ଟିକସ୍) ପାଇଁ, ଆନ—ରାଣ, ରିପୁବ୍ୟୂହ—ଶତ୍ରୁସମୂହ ।

(୪୩) ଟୀକା—ଖଞ୍ଜରୀଟ—କଜଳପାତି, ଦନ୍ତବସନରୁଚି—ଅଧର ମାଧୁରୀ,

## (୪୪)

## ରାଗ—ତୋଡ଼ି ଜଙ୍ଗଲା—ଆଦିତାଳ

ଖୁଣ ନ ଥିବା ଗୁଣ— ଗଉରୀକି ମୋ ଋଣ—
ଲାଗି ତନୁ ସୁଝିବୁ ଆଉ ରେ । ପଦ ।
କେଣେ ସ୍ତନେ ମୋ ପାଣି ନ ବହୁ ବୀଣାବାଣୀ
ବହେଁ ମୁଁ ତୋ' ଲାଗି କଠାଉ ରେ । ୧ ।
ଥିଲେ ତୋର ମାନସ ତୋତେ ନ ଘଟେ କିସ
କାହିଁକି ସୁଝି ନ ପକାଉ ରେ । ୨ ।
ନ ଦେଉ କିପାଁ ଧନ, ମୋତେ ପ୍ରତି ଚୁମ୍ବନ
ମୋର ଆଗ୍ରହୁଁ ତ ଚୁମ୍ବାଉ ରେ । ୩ ।
ଟିପେ ମୁଁ ତ ସ୍ତନରେ ଥରେ ତୁ ମୋ ତନୁରେ
କାହିଁକି ନଖ ନ ଖେଳାଉ ରେ । ୪ ।
ଉରେ ଜମାଇ ତୋର ଉରଜ ମହୀଧର
ଭିଡ଼େ ତୁ ନଭିଡ଼ି ବଞ୍ଚାଉ ରେ । ୫ ।
ମୁଁ ଯେ ଲିଭାଏଁ ତୋର କସ୍ତୁରୀ ଚିତ୍ରାଙ୍କୁର
ତୁ କାମାନଳ ନ ଲିଭାଉ ରେ । ୬ ।
ଶ୍ରୀ ଜଗଦେବ ବୋଲେ ବିଶୋଧନ ନୋହିଲେ
କି କରି ନ ପାରେଟି ସାହୁ ରେ । ୭ ।



## (୪୫)

## ରାଗ—ତୋଡ଼ି ଜଙ୍ଗଲା—ଆଡ଼ତାଳି

ଗାନ-ପଣ୍ଡିତା ତୋତେ ଆନ ନାରୀଙ୍କ ପରି
ମାନ ମାନଇ ନାହିଁ ଲେଶେ ଗୋ । ପଦ ।

ଋଣରଣ—କନ୍ଦର୍ପ; ହାଟକ—ସୁନା, ସଞ୍ଜକୁମୁଦ—ସନ୍ଧ୍ୟା ସମୟରେ ଫୁଟିଥିବା କଇଁଫୁଲ, କଞ୍ଜସୁନ୍ଦର—ପଦ୍ମପରି ମନୋହର ।

ଦନ୍ତ ବାସ ପଲ୍ଲବ ବିନା ଅରୁଣ ଭାବ
ନ ରହେ ମୁଖ ପରବେଶେ । ୧ ।
ପୋତିବାକୁ ଲପନ କଲେ ହେଲେ ଯତନ
ତଳୁ ସ୍ତନ କଳଶ ଠେସେ । ୨ ।
ବିଶାଳ ବସୁମତୀ ମୋ ଛାତି ବୋଲି ଚିନ୍ତି
ଭୂଭୂଷା ଭୂଷୁ ନଖଶେଷେ । ୩ ।
କଞ୍ଜାର କିଶଳୟ ପରି ଦିଶଇ ଶୟ—
ପଲ୍ଲବ ଦେଲେ ଗଣ୍ଡଦେଶେ । ୪ ।
ନ ଥାଏ କେଉଁ ଶୋଭା ତୁ ମହୀମଥା-ଗଭା
ଚିତ୍ର ନ ଦେଲେ ହେଲେ ବେଶେ । ୫ ।
ବସିବା ବେଳେ ରକ୍ଷି କି ରମ୍ଭା କି ଉର୍ବଶୀ
ଦିଶିବ ତୋ'ପରି ସେ କେ ସେ । ୬ ।
ଦିଶନ୍ତା ଭୂଷାପରି ନ ଥିଲେ କୃପା ପୂରି
ଶ୍ରୀ ଜଗଦ୍ଦେବ ଅବନୀଶେ । ୭ ।



(୪୬)

## ବୃତ୍ତ—ସିନ୍ଧୁକାମୋଦୀ

ଗୁଣନିଧି ଲାବଣ୍ୟଲହରୀ ରେ, ମୋ ରାଣଟି କହ କହ,
ଦିବ୍ୟ ଅବଧାନେ ଯେବେ ହେଲେ ଧାନେ ଅଛି ମୋରେ ଅନୁଗ୍ରହ । ପଦ ।

ଲୀଳା ସଉଧରେ ଆରମ୍ଭି ଥିଲୁ ତ ବିଳାସ ମଧୁର ଗାନ, ହରିଣାଙ୍କ ବିମ୍ବ ଚାହିଁ କିପାଁ ବିମ୍ବଅଧରା ହେଲୁ ମଉନ । ୧ । ଶଶାଙ୍କନିବାସ ଛାଡ଼ି କରି ଶଶ କଲେ ଶ୍ରୀମୁଖ ଆଶ୍ରୟ, ବିମଳ ବଦନ ହେବ ସଲାଞ୍ଛନ, ବୋଲି ଲଭିଲୁ କି ଭୟ । ୨ । ପଲକେ ପଲକେ ମୁଁ ପ୍ରିୟଙ୍କ ଅଙ୍କେ ନିଶି ନୋହିଥିଲେ ସ୍ଥିତ, ଏହି ନିଶାଚର ପିଅଇ ରୁଧିର

(୪୬) ଟୀକା—ହରିଣାଙ୍କବିମ୍ବ—ଚନ୍ଦ୍ରମଣ୍ଡଳ, ସଲାଞ୍ଛନ—କଳଙ୍କଯୁକ୍ତ, ପୀୟୂଷମୃଦୁଳ—ଅମୃତ ଥିବା ହେତୁରୁ ଅତି କୋମଳ; ଚନ୍ଦ୍ରାଲୋକ କରି—ଚନ୍ଦ୍ରଦର୍ଶନ କରି ।

ବୋଲି ହେଲୁ କି ଚକିତ । ୩ । କରକଶତର ଅକର୍ମ ପଥର ଦ୍ରବାଏ ମୋ କଣ୍ଠଧ୍ୱନି, ପୀୟୁଷ-ମୃଦୁଳ ବିଧୁର କି ବଳ ବିଚାରି ହେଲୁ କି ତୁନି । ୪ । ଅଷ୍ଟଦୁର୍ଗପତି ବୋଲେ ଗଜଗତି ନ କରି କପଟ ଲେଶ, କରି ଚନ୍ଦ୍ରାଲୋକ ତୁ ହେବାରୁ ମୂକ ହୁଏ ସନ୍ଦେହ ଅଶେଷ । ୫ ।

●

## (୪୭)

## ରାଗ କଲ୍ୟାଣ—ଏକତାଳି

ଘନଜଘନା, ମନ ଅଛି ନ କର ମନା ରେ । ପଦ ।

ତୋର ଅଭିଳାଷ ଚାଲି ରେ, ସୁରସବଲ୍ଲୀ
କହୁଛି ନାଚୁଣୀ ଚାରୁଚିଲି ରେ । ୧ ।
ତୁଛା କି ହୁଏ ଉଦିତ, ମୋ ପ୍ରାଣମିତ !
ସରସ ସୁନ୍ଦର ଶିତ ସ୍ମିତରେ । ୨ ।
କମ୍ପୁଛି ଉରୁ କଦଳୀ, ମୋ ଗଳାମାଳି
କପାଳି ସ୍ଥଳେ ପୁଲକ ପାଳି ରେ । ୩ ।
ସଦୟ-ଅପାଙ୍ଗ ଭଙ୍ଗି, ଶିରୀଷ ଅଙ୍ଗୀ !
ସନ୍ଦେହ ଦେଉଛି ଭାଙ୍ଗି ରେ । ୪ ।
ଆଚରିଲେ ତୁ ବିଳମ୍ବ, ଫୁଲକଳମ୍ବ
ଫିଙ୍ଗିବଟି ତା କଳମ୍ବ ଶମ୍ବରେ । ୫ ।
ବେଗେ ଅଙ୍ଗୀକାର କର, ରସିକାବର !
କହେ ଅଷ୍ଟଦୁର୍ଗମହେଶ୍ୱର ରେ । ୬ ।

●

## (୪୮)

ଘନଜଘନା—
ମୋତେ ମନା କରି ଦେ ନା !
ଘନ ଘନ ନୀଳ କେଶା, ବିଲୋଳ ଲୋଚନା,
ଘେନ ଧନାଧିକ ମୁଁ ତୋ ଘେନାଘେନି ସିନା । ୧ ।

ବନାଅନା ସୁନା ଗୋରୀ ବିପଞ୍ଚୀ ବଚନା
ଅନାଦର ଅନାଉଣୀ ମୋ ପରାଣ ଘେନା । ୨ ।
ଚିନାଏ ନାହିଁ ମୋ ଦୋଷ ବିଶେଷ ନବୀନା
ଅନାରତେରେ ନାଗରୀ ଜପୁଥାଇ ତୋ ନା । ୩ ।
ଦନାର୍ଦ୍ଦନାୟୁଧ ନାମ ବିହଙ୍ଗମସ୍ତନା
ପ୍ରେମାଧୀନା ସୁନା ଗୋରୀ କହ୍ଳ ତୁ ଧୋନା । ୪ ।
ନାନାଯତ୍ନେ କରି ତୋତେ ମୁଁ ଜୀବନ ଖାନା
ଛୋଟରାୟ ଭଣେ ଯୁବାଗଣେ ତୋର ବାନା । ୫ ।

•

## (୪୯)

## ରାଗ—ସାବେରୀ—ଆଡ଼ତାଳି

ଘନ ନିଶାରେ, ରମଣୀମଣି ଦେଲା ବାସବ ଭୂତି ମୋରେ । ପଦ ।
ଜାତୀ ଉପବନ ଜଗତୀକି, ପ୍ରୀତି ସଙ୍କେତ ଗଜଗତିକି
ମତି-ମୋହନା ତେଜି ଭୀତିକି
ବିଜେ କଲା ଝରଝର ନୀର ବରଷା ରେ । ୧ ।
ଜିଣିବାକୁ ରାମା ପଞ୍ଚବାଣ, ମଣିଭୂଷଣେ ହୋଇ ଭୂଷଣ
କିଣି ଘେନିଗଲା ମୋର ପ୍ରାଣ,
ଛାତି ସୁପାତିରେ ମାତି ସେ ନେବ ନିଶାରେ । ୨ ।
ତରତର ଝଲକା ଝଲକ, ବାରବାର ଲୁଟିଲା ପଲକ
ମୋର ହରିଲା ଧୀର ବିବେକ,
ନଚାଇଲା ଯୋଡ଼ି ମୋତିବସଣୀ ନାସାରେ । ୩ ।
ଧରି ବରାରୁହା କୁଚ କୁମ୍ଭ, ବାରିରୁହ ମୁଖେ ଦେଇ ଚୁମ୍ବ
କରି ବାଳା ମୋତେ ପରିରମ୍ଭ
ମନ ମୋହିନେଲା କହିକହି ବିନୟ ଭାଷାରେ । ୪ ।

(୪୮) ବିଲୋଳ—ଅତି ଚଞ୍ଚଳ, ଧନାଧିକ—ସଂପତ୍ତିରୁ ଅଧିକ, ଘେନାଘେନି—ସମାଦର, ଚିନାଏ—ଟିକିଏ, ଅନାରତରେ—ସୁଖରେ, ବିହଙ୍ଗମସ୍ତନା—ଚକ୍ରବାକସ୍ତନା, ଧୋନା—ଧନ୍ୟା ।

କେଳିରସେ ନିମଜ୍ଜିତ ରଙ୍ଗେ, ଢାଳି ନୟନ ଚାହେଁ କି ଭଙ୍ଗେ
ଢଳି ଝୁଲିଯାଏ ମୋର ଅଙ୍ଗେ
ପୂର୍ଣ୍ଣକଳା ଛୋଟରାୟ ଦେଉ ଲିପିସା ରେ । ୫ ।

●

(୫୦)

ଘେନ ମୋ'ର ଭାରତୀ ମନ୍ଥର-ଗତି ରେ ! । ୦ ।
ନାସିକା ମଣି ନଚାଇ, କଟି ରସନା ବଜାଇ,
ରସ ଶମ୍ବରାରି ରଣେ ହୋଇ ତୋଷ ମତିରେ ! । ୧ ।
ଗେଲେ 'ଉହୁଁ' ଗିର ଭାଷି ଭାଲେ କଞ୍ଜ ଡ଼ୋଳା ଖୋସି
ଗାଢ଼େ ଭିଡ଼ି ସୁକରଜେ ପକାଅ କରତି ରେ ! ୨ ।
ତୋ'ର ବିରସ ବଦନ ଦେଖି ଆରେ ଜୀବଧନ !
'ଅଦେହ' ଶରେ ମୋ' ଦେହ କଲାଣି ଭରତିରେ ! । ୩ ।
ପରିଣତ ବିମ୍ବାଧରି ! କଲେ ପରିପନ୍ଥୀ ପରି
'ତୋ' ବିନା ଏ ଧରିତ୍ରୀରେ କହ କେ ମୋ' ଗତିରେ ? । ୪ ।
ଛୋଟରାୟ ଦେବ କହେ—'ମୁହିଁ' ଅପରାଧୀ ନୁହେଁ ।
କର କରୁଣା ଚିତ୍ତ ରେ ମାନି ମୋ ମିନତି ରେ । ୫ ।

●

(୫୧)

## ରାଗ—ଆଶାବରୀ

ଚନ୍ଦ୍ରନିଶାରେ, ଦେଲା ସୁନ୍ଦରୀମଣି ମହେନ୍ଦ୍ରଭୂତି ମୋରେ । ପଦ ।

ଫୁଲବନେ କେଳିସରକୂଳେ, ନବ ସଙ୍କେତ କଙ୍କେଳିମୂଳେ, ଶେଯ ସାଜି ନାନା ପୁଷ୍ପଦଳେ, ବସିଥିଲି ସେ ରମ୍ଭୋରୁ ସମ୍ଭୋଗ ଆଶାରେ । ୧ । ଏ ସମୟେ ମୋ

(୫୦) ଭାରତୀ—ବଚନ, ମନ୍ଥରଗତି—ମନ୍ଦଗାମିନୀ, କଟିରସନା—ଅଣ୍ଟାସୂତାର ଘଣ୍ଟି, ଶମ୍ବରାରି —ଶମ୍ବରାସୁର ଶତ୍ରୁ କନ୍ଦର୍ପ, ଶମ୍ବରାରି ରଣେ—ରତିକ୍ରୀଡ଼ାରେ, କଞ୍ଜଡୋଳା—ପଦ୍ମରୂପକ ଆଖି, ସୁକରଦ—ଭଲ ନଖ, ଅଦେହ—କନ୍ଦର୍ପ, ପରିଣତ—ପକ୍ୱ, ପରିପନ୍ଥୀ—ଶତ୍ରୁ ।

(୫୧) ଟୀକା—ମହେନ୍ଦ୍ରଭୂତି—ଇନ୍ଦ୍ରସମ୍ପତ୍ତି, କଙ୍କେଳି—ଅଶୋକବୃକ୍ଷ, ମଣ୍ଡନ—ଅଳଙ୍କାର,

ଜୀବନଧନ, ଘେନି ଘନ ସର୍ବାଙ୍ଗଚନ୍ଦନ, ତେଜି ବାଜିବା ମଣ୍ଡନମାନ, ବିଜେ କଲା ମଲ୍ଲୀଗଭା ଭୂଷିତ ଖୋସାରେ । ୨ । ଶଙ୍ଖକଣ୍ଠୀକି ମୁଁ ଦେଖି କରି, ରଙ୍କ ରତନ ଲଭିଲା ପରି, ଅଙ୍କପର୍ଯ୍ୟଙ୍କେ ବସନ୍ତେ ଧରି, ଗଲା ଅଙ୍ଗ ଅନଙ୍ଗ ମର୍ଦ୍ଦିବା ଦୁର୍ଦ୍ଦଶାରେ । ୩ । ଉରେ ଜମାଇ ଉରୋଜ କୁମ୍ଭ, କରୁ କରୁ ଗାଢ଼େ ପରିରମ୍ଭ, କଲି ସହସ୍ର ଚୁମ୍ବ ଆରମ୍ଭ, ମନ ବଳିଲା ନାହିଁ ପୀୟୂଷ ପ୍ରଶଂସାରେ । ୪ । ଫେଡୁ ଫେଡୁ ବାଳାବର ନୀବି, ଯେତେ ଭାବ ତା କି ବରନିବି, ବିବସନ କାଳେ ଯେଉଁ ଛବି, ଆଖି ଦେଖିଲା କେଉଁ ଭାଗ୍ୟରୁ ଏ ରସାରେ । ୫ । ଝୁମି ଝୁମି କାମମଦଭୋଳେ, ଝୁଲୁ ଝୁଲୁ ନାସାଭୂଷା ଲୋଳେ, ଝଲ ଝଲ ଝଟକିଲାବେଳେ, ଛିନ୍ନି ନେଲା ସ୍ୱର୍ଗସୁଖ ମାର୍ଗକୁ ସୁସାରେ । ୬ । କହେ ଅଷ୍ଟଦୁର୍ଗ ହରିହୟ, ପରସ୍ପର ପ୍ରେମ ରସମୟ, ଜାତ ହେଲା ଯାହା ସେ ସମୟ, ଝରଝର ଅପୂରବ ରସ ବରଷାରେ । ୭ ।

•

(୫୨)

## ରାଗ—ଶାବେରୀ—ଝୁଲା

ଚନ୍ଦ୍ରବଦନା ରେ ଲେଉଟି ପଛକୁ ଅନାଁ । ପଦ ।

ଅଣ୍ଟା ତାର ସରୁ, କୁଚ ମହା ମେରୁ, ତାହା ସହିଛି ଅବଳା ।
ସେ ସରୁ କଟିରେ ନୀରକୁମ୍ଭ ଧରି ଆସୁଥାଏ କରି ହେଳା । ୧ ।

ସେ ଯେଉଁ ଚାହାଣୀ ହୃଦ ହୁଏ ହାଣି ତେଣେ କିପାଁ ଆଖିଠାର,
ପାଷାଣ ହୋଇଲେ ତରଳି ପଡ଼ିବ ପୁରୁଷ କେତେ ମାତର । ୨ ।

ମତ୍ତଗଜ ଗତି ହୋଇଣ ସୁମତି କରୁଥାଏ ସେ ସୁମନା,
ବସନ୍ତ ଋତୁରେ ଝାଳ ଟିପିଟିପି ଖରାବେଳେ ପାଣିଅଣା । ୩ ।

ଦେଖି ତୋର ଭଙ୍ଗୀ ଯୋଗୀ ଯୋଗ ଭାଙ୍ଗିଯିବ ପଙ୍କଜ-ଆନନା,
ବୋଲେ କବିରବି ତୋହର ଯେ ଛବି ଚାହିଁଲେ ବଢ଼େ ବେଦନା । ୪ ।

•

ପୀୟୂଷ—ଅମୃତ, ନୀବି—କଟିର ବସ୍ତ୍ରବନ୍ଧ, ହରିହୟ—ଇନ୍ଦ୍ର ।

## (୫୩)

## ରାଗ—ପୂରବୀ—ଆଠତାଳି

ଚନ୍ଦ୍ରମୁଖି ରେ, ଏକା ଭାଗ୍ୟବନ୍ତ ପଣେ ତାକୁ ଲେଖି ରେ । ପଦ ।

କୁସୁମବନେ ବିହରୁଥିବ,
ବିଦ୍ୟାରସେ କାଳ ହରୁଥିବ
ଜ୍ଞାନୀ ପଣ୍ଡତାର ପାନ ପିକଦାନୀ
ଧରି ନଉକରୀ କରୁଥିବ । ୦ ।

ଆଖଣ୍ଡ ମଣ୍ଡଳେ ଆଜ୍ଞା ଥିବ,
ଉରେ ଦିବ୍ୟ ମୋତିମାଳା ଥିବ
ଅଙ୍କରେ ଶଙ୍କର-ଧଇର୍ଯ୍ୟ-ଧ୍ୱଂସିନୀ
ପଙ୍କଜ-ନୟନା ବାଳା ଥିବ । ୨ ।

ଦନ୍ତବାସ ସୁଧା ପିଉଥିବ,
ଇଙ୍ଗିତ ଭଙ୍ଗିକି ଜାଣୁଥିବ,
ରାତିଯାକ ହାତୀକୁମ୍ଭ ଉରଜାକୁ
ଛାତିରେ ଲଗାଇ ଭିଡୁଥିବ । ୩ ।

ସଙ୍ଗୀତ ବିଦ୍ୟାକୁଶଳା ଥିବ,
ପ୍ରଭୁ ଅଧିକାର ଚଳୁଥିବ,
ପଶାଖେଳି ରସାଳସା ତୁଲେ ଗେଲେ
ବିପରୀତ ଜୁଦ୍ଧେ ଜିଣୁଥିବ । ୪ ।

ଅନର୍ଗଳ ଅଧିକାର ଥିବ,
ଉଚ୍ଚ ଅଟ୍ଟାଳିକା ଘର ଥିବ,
ନୂତନ-ଛଇଳା ଅବତାର ମାର-
ବାଣ ମାରଣ ମନ୍ତର ଥିବ । ୫ ।

ଅକଳଙ୍କ କ୍ଷତ୍ରି ଜାତି ଥିବ,
କପିଳାଶ ତୁଲ୍ୟ ହାତୀ ଥିବ,
ମହେନ୍ଦ୍ର ଦମ୍ପତି ତୁଚ୍ଛ ମଣି ରତି—
ଉତ୍ସବରେ ନିତି ମାତିଥିବ । ୬ ।

ଅଙ୍ଗେ କର୍ପୂର ଚନ୍ଦନ ଥିବ,
ସବୁ ଦିନେ ଯଉବନ ଥିବ,
ଅନଙ୍ଗ-ଭଙ୍ଗରେ ବାଳା ସଙ୍ଗେ
ପଡ଼ି, ଗଡ଼ି ଲଢ଼ିଯିବା ମନ ଥିବ । ୭ ।
ରାମଚନ୍ଦ୍ର ଛୋଟରାୟ ଭାବ,
ଏକା ପ୍ରିୟା ଭୟ ନାହିଁ ଲବ,
ଥିବାରୁ ସରସେ ମୋର
ଉରଦେଶେ ଶାସନ ସମ୍ପଦ ତା ଗୌରବ । ୮ ।

●

## (୫୪)

## ରାଗ—କେଦାର

ଚାନ୍ଦସୁନ୍ଦରମୁଖି ରେ,
ବୃନ୍ଦ ବୃନ୍ଦ କନ୍ଦର୍ପ ଶରମୟ ସର୍ପ ନ ଦିଏ ମୋ ଦର୍ପ ରଖି ରେ । ପଦ ।

ରସୋଇ ସାରସଦୃଶା ଲସା ମୋ ଦୁର୍ଦ୍ଦଶାରେ, ଦଶାରେ ତୋ ଲାଭ ମୋ ଭରସା ରସାଳସା ରେ । ନିଶାରମଣକର, ବିଶାଳମଦହର, ହସା ବିଭବଭର, ମିଶା ମଧୁରତର, ପ୍ରସାଦ ପରିହର, ରୁଷାରୁତ ନ କର, ତୃଷା ମୋହର ହର, କୃଶାନୁବର ରେ । ୧ । ବଳାହକ ବିଜୟି କୁନ୍ତଳା ଲୀଳାବତୀ ରେ । ଝଳାଅ କୁଞ୍ଜର କୁମ୍ଭସ୍ଥଳାକୃତି ଛାତି ରେ । ଗଳା ନବରତନ, କଳାପ ଅନୁଦିନ, ଚଳାଚଳ ନୟନ, ଢଳା ରସକୁ ମନ, ବଳାଅ ରେ ମଦନ, କଳାନିଧି ବହନ, ବଳାପହକଦନ, ପଳାଉ ଧନ ରେ । ୨ । ଚରାଚର ବିଭୂଷଣା ଧରାଧରସ୍ତନା ରେ, ପରାଣ ଅଛି ତୁ ଦେବା କରାରରୁ ସିନା ରେ, ଧରା ତଳେ ମୋ ଗତି, ପରା ତୁ ଗଜଗତି, ହରାରିଶରେ ନିତି, ମରାଇ ଅକୀରତି, ପରାଗରେ ଜଗତି, କରାଉଛୁ ଭରତି, ଅରାଳ ଭୃରୁତତି, ଝରା ସୁଦତି ରେ । ୩ । କହେ ଅଷ୍ଟଦୁର୍ଗ ନାଥ ସ୍ନେହେ ତୁ ଅଧୀନା ରେ, ଅହେତୁକ ରୋଷ ଛାଡ଼

(୫୪) ଟୀକା—ହେ ସାରସଦୃଶା, ତୋ ଲାଭ ଦଶାରେ ମୋ ଦୁର୍ଦ୍ଦଶାକୁ ଲସା; ଅର୍ଥାତ୍ ଦୂର କର । ବଳାହକବିଜୟିକୁନ୍ତଳା—ମେଘ ଅପେକ୍ଷା ନୀଳତର କୁନ୍ତଳ ଯାହାର, କଳାନିଧିବହନବଳାପହ-କଦନ—ଶିବ ଶତ୍ରୁ ଅର୍ଥାତ୍ ମଦନର କଷ୍ଟ, କରାର—କଣ୍ଠ, ଅରାଳଭୃରୁତତି—ବାଙ୍କଚାହାଣି ।

ମହେଶମୋହନା ରେ, ବହେ ଅନବରତ, ଦହେ ମୃଦୁ ମରୁତ, ସହେମ ମରକତ, ଗୃହେ ହୋଇ ମିଳିତ, ତୁ ହେବୁ ରସ ରତ, ଦୁହେଁ ହେବା ସଙ୍ଗତ, ମୁଁ ହେବି ମହୀଗତ, ମହେନ୍ଦ୍ରବତ ରେ । ୪ ।

●

(୫୫)

ଚାହାଁ ରେ, ନିଧୂବନ କେଳିକୁଶଳାକୁ । ଘୋଷା ।

କୋମଳପାଦ ସରୋରୁହ ଯାବକ ଚିତ୍ରଶଳାକାଧରାକୁ, ତା ମଧୁରାଧର ଲାଲ-ଜବା-ମକରନ୍ଦଝୁରା ଭ୍ରମରାକୁ । ୧ । ନିର୍ଜିତଶୋଣସରୋଜକରେ କରୁ ଯା ସଜଡ଼ା ବିଡ଼ିଆକୁ, ହୀରକ-କୈରବ-କାଶ-ସୁଧାକର-ହାସ ବିଳାସିନି ତାକୁ । ୨ । ଚାରୁ ସୁନୀଳ ଚଳାଚଳ ଲୋଚନ କୋଣ ନିଦେଶକରାକୁ, ଚାମର ବାତଭରେ ରତି-କୌତୁକ-ସମ୍ଭବ-ଖେଦହରାକୁ । ୩ । ଶୈଳସହୋଦର ପୀନପୟୋଧର ଚନ୍ଦନ ଭୋଗଦିଆକୁ, ମଞ୍ଜୁଳିମାଚଳ କକ୍ଷତଳେ ନଖକେଳିକଳା ହଟିଆକୁ । ୪ । ବାନ୍ଧବି ! ଯଦ୍ୟପି ମାନସରେ ଅଛି ଲେଶ କୃପା କରିବାକୁ, ରାଜ କଦମ୍ବ କିରୀଟ ଜଳନ୍ତରନାଥ ମହୀମଘବାକୁ । ୫ ।

●

(୫୬)

## ରାଗ—ତୋଡ଼ି—ଆଡ଼ତାଳି

ଚାହିଁ ଯା ନୟନାନ୍ତେ ଅଳପ ରେ । ପଦ ।

ଟାଳିଦେବି ମୁଁ ଦୁଃଖ—ପାଳି, ଫେରାଇ ମୁଖ
ଗାଳିରେ ହେଲେ ପଦେ ଜଳପ ରେ । ୧ ।

ଖଣ୍ଡ-ମଧୁର ବାଣୀ—ମଣ୍ଡ ସ୍ତନେ ମୋ ପାଣି
ଦଣ୍ଡ ହେଲାଟି କୋଟି କଳପ ରେ । ୨ ।

ରେ ବିମ୍ବାଧରାବର—ସେବି ନିଶାବାସର
ହେବି ମୁଁ ତୋ କିଙ୍କର କଳପ ରେ । ୩ ।

(୫୫) ଟୀକା—ନିର୍ଜିତ ଶୋଣ ସରୋଜକର—ରକ୍ତପଦ୍ମଠାରୁ ଅଧିକ ମନୋହର ହସ୍ତ, କୈରବ— କଇଁ, କୁମୁଦ; ମଞ୍ଜୁଳିମାଚଳ—ସୌନ୍ଦର୍ଯ୍ୟପୂର୍ଣ୍ଣ ପର୍ବତସ୍ୱରୂପ, କଦମ୍ବ—ସମୂହ, କିରୀଟ—ମୁକୁଟ ।

ଗଜଗତିକି ସ୍ନେହେ—ଶ୍ରୀ ଜଗଦେବ କହେ
ପଣ୍ଡିତା ମଣ୍ଡ କେଳି ତଳପରେ । ୪ ।



(୫୭)

## ରାଗ—ମୋହନା—ନିଃସାରୀତାଳ

ଛାଡ଼ିଲାଣି ଶିଶୁଭାବ ମୋ ଧନ
ଛୁଇଁଲାଣି ଯଉବନ ଗୁମାନ । ପଦ ।
ସରି-ବୟସୀ ସଖୀ ପରିହାସେ
ଅଧର ମଣ୍ଡିଲାଣି ଦରହାସେ । ୧ ।
ଧ୍ୱଂସିଲାଣି ଧୃତି, କଟାକ୍ଷେ ଚାହିଁ
ପଢ଼ାଇବାକୁ ବାକି କିଛି ନାହିଁ । ୨ ।
ପୁରୁଷ ବାସନା ବାଜିଲାକ୍ଷଣି
ଚଞ୍ଚଳ ହୋଇଲାଣି ସୁଲକ୍ଷଣୀ । ୩ ।
କରିରବି ଏହି ଗୀତରେ କହେ
ନାଗରମାନଙ୍କ ଚିତ୍ତକୁ ମୋହେ । ୪ ।



(୫୮)

## ରାଗ—ସୁରଠ—ଏକତାଳି

ଛି ଛି ପର ପୀରତି କିଛି ନ ରଖଇ ମତି ମା । ପଦ ।
ଦାଉ ଘେନିଣ ତା ଗୁରୁଜନଙ୍କର ଯାଉ ପଛେ ଜାତିରୀତି ମା
ସ୍ନେହରେ ଶ୍ରୀମୁଖ ଦେଖିଦେଲା ଯାଏ ଦେହରେ କି ଥାଏ ଗତି ମା । ୧ ।
ଭାଜି ହୋଇ ଯାଏ ତା ବିନୁ ତନୁଟି ବାଜି ବିରହାଗ୍ନି ତାତି ମା
ରାଜି ନ ଥାଏ କି ତା ସଙ୍ଗ ସୁଖରେ ଲାଜ ମିତ, ହୁଏ କ୍ଷତି ମା । ୨ ।
କହଇ ଅବଶ୍ୟ ଆସିବି ବୋଲି ମୁଁ ରହଇ ଇତରେ ମାତି ମା
ଦାସୀ ପରି ଅନୁସରି ବସୁ ଆସି ପାହିଯାଏ ସିନା ରାତି ମା । ୩ ।

ମନୁ ତେଜି ଦିନୁ ଦିନୁ ବଳିବାର ଆନ ନାହିଁଟି ସୁମତି ମା
ଆଖରକୁ ଫଳ ମଦନ ଶରକୁ ଲାଖ କରିବାର ଛାତି ମା । ୪ ।
ବସଇ ବସୁଧା ତଳ ତେଜି ଗଜଦନ୍ତ ପଲଙ୍କ ସୁପାତି ମା
ଦଶା ହୋଇଯାଏ ଅତି ବିପରୀତ ମଶା ହୋଇଯାଏ ହାତୀ ମା । ୫ ।
ଏ କାହାକୁ ଜଣା ଟେକାଏ ମାରଣା ମଣ୍ଡଳେ ହୋଇବ ଖ୍ୟାତି ମା
ସହି ତୁ ଥଇଲୁ ପଦେ ନ କହିଲୁ ବୋଲେ ବସୁଦୁର୍ଗପତି ମା । ୬ ।



## (୫୯)

## ରାଗ—କାମୋଦୀ, ତାଳ ଆଦି

ଜଣା ତ ଅଛି ମାତ୍ର ଏତିକି ରେ ।
ଗଣା ନ ଯିବା ଗୁଣବତୀକି ରେ । ପଦ ।

ଉତ୍ତମ ଅଙ୍କଚ୍ଛେଦ, ଅନୁରାଗ ବିଚ୍ଛେଦ, ଦୁହିଁକି ନେଲି ଯେ ନିକିତିକି ରେ; ଟେକିଗଲା ପ୍ରଥମ, ଯହିଁ ତୁଟିବା ପ୍ରେମ, ଦ୍ୱିତୀୟ ଚୁମ୍ବଦେଲା କ୍ଷିତିକି ରେ । ୧ । ବଳ ପାଉଛି ମୋର, ସହି ପାରିବି ଘୋର, କଳପାତର ଖରା ତାତିକି ରେ; ମଧୁରାଧରା ପ୍ରୀତି, ଅଧୁରା ହେବା କାତି, ସୁହାଇ ଜାଣି ନାହିଁ ଛାତିକି ରେ । ୨ । ଅବଳାମଣି ଅବ-ଧାନିଆ ପଣେ ଯୁବ-ଚକ୍ରେ ଟେକାଇଥିବ ଛତିକି ରେ; ଖଚ ବଚନ ଶୁଣି, ଧନବଦନ ମ୍ଳାନି, ସମୟେ ଥାଇ ଆଉ ଗତି କି ରେ । ୩ । ସୂଚକ ଆଗେ ସଡ଼ି, କହିବାର ଲେସଡ଼ି, ରୁଚଇ ନାହିଁ ମୋର ମତିକି ରେ; ରୁଚକପୟୋଧରା, ତୁ ଚତୁରୀଙ୍କ ଧୀରା, ବିଚାରି ପାଳିବୁ ମୋ ପ୍ରୀତିକି ରେ । ୪ । ସେବାରେ ତ ଫାବତ, ହେବାର ଯେବେ ସତ, ବାଣୀ କେ ଶୁଣାଇବ ଶ୍ରୁତିକି ରେ; କବିମିହିର ଗୀତେ, ବୋଲେ ପରଖି ମୋତେ, ସମର୍ପି ଦେବୁ ରତିପତିକି ରେ । ୫ ।



(୫୯) ଟୀକା—ସୂଚକ—ଖଳ ଲୋକ, ରୁଚକ—କଣ୍ଠାଭରଣ ।

(୬୦)

ଜବାଧରା, ଜାମ୍ବୁନଦ ଧରାଧର ପୟୋଧରାରେ । ୦ ।
ମାନ ସରସାରେ ତୋର ରତେ
ମାନସ ତ ଥାଏ ଅନାରତେ
ଆନ ସବତ ମୁଁ ବନାଇଲେ ହେଲେ
ତା ନ ସମଂକୁ କାହିଁକି ସତେ । ୧ ।
ଭୂରୁ ତରଣୀ ଯା ଭଙ୍ଗ ସଖୀ,
କରୁ ତହିଁ ଅଙ୍ଗୀକାର ଯୋଖି
ଉରୁ କମନୀୟ ରମ୍ଭା ତ କଂପାଉ
ଦୂରୁ ତରୁଣୀନ୍ଦ୍ର ମୋତେ ଦେଖି । ୨ ।
ପାଜି ପାପୀ ଦୁଷ୍ଟ ଦଶା ମୋତେ
ଆଜି କି ରଖିବ ରେ ଜୀବିତେ
ସାଜି ନତନୁ ଲଢ଼ାଇ ମୁଁ ଲୋଡ଼ିଲି
ରାଜି ନ ଜାଣିଲି କଦାଚିତେ । ୩ ।
ରହସ୍ୟ ତୁ ତ ମୋ ସୁଖ ସଙ୍ଗୀ
କହ ଶିରୀଷ ମୃଦୁଳ ଅଙ୍ଗୀ
ଲହସି ଗଲାଣି ମୋ ଚାଟୁ ଚାତୁରୀ
ନ ହସିଲୁ ଯାହା ଏ କି ଭଙ୍ଗୀ । ୪ ।
ଆରେ ବଚନୀ ବିଜିତ ବୀଣା
ନିଧୁବନ ବିଧି ବିଚକ୍ଷଣା
ପାନ ବା କରନ୍ତି ଅଧରର ସୁଧା
ମାନ, କି ଲାଜ ନୋହିଲା ଜଣା । ୫ ।
ଆଜ ନାହିଁ ରୋଷ ହେତୁ ଦୋଷ
ଲାଜ ଭଳି ନୋହେ ନିଜ ଦାସ

---

(୬୦) ଜାମ୍ବୁନଦ—ସୁନା, ଧରାଧର—ପର୍ବତ, ସବତ—ସବୁତ, ସାକ୍ଷ୍ୟପ୍ରମାଣ, ତରଣୀ—ନଦୀ, ନତନୁ—କନ୍ଦର୍ପ, ନିଧୁବନ ବିଧି—ରତିକ୍ରୀଡ଼ାର ରୀତି, ଜଗତି—ବେଦୀ, ସନ୍ଦୋହ—ସମୂହ ।

ପଙ୍କଜ ଲୋଚନା କରି ବିବେଚନା
ଅଙ୍କ ଜଗତିକି ଆସ ଆସ । ୬ ।
ମନ୍ଦେ ହସି ଦିଅ ନେତ୍ରୋତ୍ସବ
ସନ୍ଦେହ ମୋ ମନୁ ଦୂର ହେବ
ବନ୍ଦେ ହରି ପଦକମଳେ ସନ୍ଦେହ
ସନ୍ଦେହ ବିନା ଶ୍ରୀ ଜଗଦ୍ଦେବ । ୭ ।



(୬୧)

## ପୂରବୀ—ଏକତାଳି

ଜାଣିଲି ପଛିଆଣି ଚାହାଣିରୁ ଧନକୁ । ଘୋଷା ।
ପରବସୁଧା-ମୟୂଖ ଗରବ ଦଳଇ ମୁଖ
ତାର ତନୁ ବଳଇ ହଜାର ପୁଟ କନକୁଁ । ୧ ।
ଭଲା ମନୋହାରୀ ଧରା— ଲଲାମମଣ୍ଡନା ପରା
ସଲାମ କରିବ ସାନୁମଣି ତାର ସ୍ତନକୁ । ୨ ।
ମୁନିମନ-ମୋହନାର ସୁନୀଳ କବରୀଭାର
ମୁଁ ନିରେଖି ତୁଛ ମଣେ ଅଭିନବ ଘନକୁ । ୩ ।
ଅରସିକାଏ ତା'ଠାରେ ଭରସି ନ କହିବାରେ
ସରୁମଧ୍ୟା ଭୀରୁ ତ ଆଚରୁ ନାହିଁ ମନକୁ । ୪ ।
କବିରବି ଗୀତେ ଭଣେ ଅବିରତ ସଙ୍ଗୀ ଜଣେ
କରିପକାଇଥାନ୍ତା ମୋ ପରି ପରିଜନକୁ । ୫ ।



(୬୨)

ଜାନପୁର ବିତାନରୁ ଅଭିମାନ ଛେଦରେ
ଆନ ନ କର ସାନ ବଚନମାନ ଆଦରେ
ଜ୍ଞାନ ପଥରେ ଧ୍ୟାନ କର ତୁ ତାନରେ ମୁନି ମାନନୀୟ-
ଜାନପଦ ବିଧାନ କର ସୁଗାନ ବାଦରେ । ୧ ।

କାଟ କଳୁଷ ଥାଟ ଭୟକବାଟ ସାଙ୍ଗରେ ହାଟଟି ଏହୁ ବାଟ
ନ ତୁ ଉଚ୍ଚାଟ ହେଉରେ-
ପାନ ନ କର ଭାଟ ପଣର
ହାଟକ ନଟ-ନାଟରେ ତୁ ବାଟରେ ହେବ ଘାଟ
ଏହି ପାଟ ଶେଯରେ । ୨ ।
ବାରକ ମୋ ନିବାରଣ ମଣ ସାର ନିତିରେ ତାର ତନୁକୁ କାରଣ
ପରଦାର ଭୀତିରେ
ମାର ଭୟରୁ ବାର ରମଣୀ-ହାର ଉରଜଭାରକୁ ତୁ
ହାର କରି ବିହାର ନ କର, ଜାର ଭୀତିରେ । ୩ ।
ଯେବର ମଣୁ ସେ ବପୁକି ତୁ ଦେବ ସାତରେ
ସେବକ ତୁଲେ ନେବ କି କରି ଏ ବନାତରେ
ଭେବଳ ହେଲେ କେବଳ ତୋର ହେବ ଏ ଘେନି ଦେବ ଦେବ
କେବଳ ଜଗଦେବ ବଚନେ ସେବ ତାତରେ । ୪ ।



(୬୩)

## ରାଗ—କୋଳାହଳ

ଜୀବବାନ୍ଧବୀ ରେ, ପ୍ରାଣବାନ୍ଧବୀ ରେ
ତୋ ବିନା ମୋତେ ନ ଦିଶେ ଆନ । ଘୋଷା ।

ଜଗତେ ନାଗରୀମାନଙ୍କ ମାଧୁରୀ କରୁଥାଏ ମୁଁ ଯେ ଅନୁମାନ, ଗୋଟିଏ ଗୁଣରେ ତୋ ନଖ କୋଣରେ ତୁଳିବାକୁ ନ ବଳଇ ମନ । ୧ । ପୂର୍ବ ତପବଳେ କରିବ ଯେ ବଳେ ତୋ ମଧୁର ରଦଚ୍ଛଦ ପାନ, ସୁଧା ନିର୍ଝରୀକି ମଧୁର କରି କି ଲେଖିବ ନ ଧରି ଅଭିମାନ । ୨ । ତରୁଣୀ ତୋ ବାଣୀ ମୃଦୁ ମୃଦୁ ଠାଣି ଶୁଣିଥିବ ପୁଣି ଯାହା କାନ, ସେ କି ଗଉରବଯୋଗ୍ୟ ବିଚାରିବ ଶୁକ ପିକ ବେଣୁ ବୀଣା ଗାନ । ୩ । ଥରେ ଯାହା ଉର କରିଥିବ ତୋର ଘନ ପୀନସ୍ତନ ଆଲିଙ୍ଗନ, କୁମ୍ଭି-କୁମ୍ଭସ୍ଥଳ ଯୁଗଳକୁ ସ୍ଥୂଳ ମଣିବ କି ନ ବିଚାରି ନ୍ୟୂନ । ୪ । ମଧ ଥିଲେ ସିନା ତୋର ସୁଦର୍ଶନା ଘଟନା କରନ୍ତି ଉପମାନ,

(୬୩) ଟୀକା—ରଦଚ୍ଛଦ—ଅଧର, କୁମ୍ଭୀ—ହସ୍ତୀ, ହରିକଟି—ସିଂହକଟି, ଡାକି ଡମରୁ ଶେଷ—ଅନନ୍ତମୁଖଧାରୀ ଶେଷନାଗ ।

ହରିକଟି ଡାକି ବେଦୀ ମଧ୍ୟରେ କି କୃତାର୍ଥ କରନ୍ତେ ରୂପମାନ । ୫ । ହେଲେ ଯେ ମନ୍ଦରସ୍ତନା ତୋ ସୁନ୍ଦର ଚାଲିରେ କରିବ ଦୃଷ୍ଟିଦାନ, ଯେବେ ଥିବ ଲାଜ ରୁଚିବ କି ରାଜହଂସ ଗଜରାଜ ଲୀଳାଯାନ । ୬ । ଜଣାଇବି କିସ ଶେଷ ମୁଖେ ଶେଷ ହେବାର ଆୟାସ ଯେ ବିଧାନ, କହେ ଜଳନ୍ତର ମହୀପୁରନ୍ଦର ଥିବ ମାତ୍ର କିଛି ଅବଧାନ । ୭ ।



## (୬୪)

## (ବେହାଗଡା—ଆଦିତାଳ)

ଝଳିବରନା ରେ ! କଳିବୁଟି ମନେ ମନେ
ଲଳିତ ଚନ୍ଦ୍ରମୁଖୀ ବୋଲିଣ ଡାକୁଥାନ୍ତି ତୋହ ସଖୀମାନେ । ପଦ ।
ଶଶପ୍ରାଣ ଖାଇ ଶଶାଙ୍କ ବୋଲାଇ ଆକାଶେ ବିହରି ମରେ
ସଲିଳ ମଣ୍ଡୂକ ପରାୟେ ମାତ୍ରକ କିରଣଗୁଡ଼ାଏ ଧରେ । ୧ ।
ଯାହା କହୁଛନ୍ତି ଜନେ ତ ଶୁଣୁଛ କାହାଠାରୁ କିସ ଆଣି
ଲାଗୁଆ କରିଲା ବଡ଼ ହୋଇବାରୁ ଆଗୁଳା ହୋଇଛି ପୁଣି । ୨ ।
ନାନା କପଟରେ ଗେଲାଇ ଭୁଲାଇ ଗୁରୁପ୍ରିୟାକୁ ହରିଲା
କଳାଗଣ୍ଡେ ମଣ୍ଡି ଆଖଣ୍ଡଳଦେବ କୁଳ ବିଟାଳିଆ କଲା । ୩ ।
କେଉଁ ଗୁଣ ତାର ଭଲ ଦେଖି ଅବା ତୋତେ ତାକୁ ସମ କରି
ଗେଲାଇ ହୋଇ ଯା ଡାକି ମରୁଥାନ୍ତି ଚନ୍ଦ୍ରମୁଖୀ ନାମ ଧରି । ୪ ।
କେଉଁ ସଜନୀଟା ଆଜହୁଁ ସେ ନାମ ତୁଣ୍ଡେ ଆଣି ବସାଇବ
ଜଳନ୍ତର ସ୍ୱର୍ଗବଳବିପକ୍ଷଙ୍କ ସୁଧରମା ମନା ହେବ । ୫ ।



(୬୪) ସଲିଳ ମଣ୍ଡୂକ—ପାଣିର ବେଙ୍ଗ, ନୀରଧର—ମେଘ, ସିନ୍ଧୁଆ ପଣ—ଚୋରପଣ, ଆଖଣ୍ଡଳ ଦେବ—ଇନ୍ଦ୍ର, କୁଳବିଟାଳିଆ—ଅଜାତିଆ, ଲାବାଡ଼—ଧାରୁଆ, ଆଗୁଳା—ଆକଟ, ବଳବିପକ୍ଷ—ଇନ୍ଦ୍ର, ସୁଧରମା—ଦେବସଭା ।

(୬୫)

## ରାଗ—ପୂରବୀ

ଝଳିବରନା ରେ ! କଳିବୁଟି ମନେ ମନେ;
"ଇଳିତ ଚନ୍ଦ୍ରମୁଖୀ ରେ !" ବୋଲି କିପାଁ ଡ଼ାକନ୍ତି ତୋ ସଖୀମାନେ ? । ୦ ।
'ଶଶ' ପ୍ରାଣ ଖାଇ 'ଶଶାଙ୍କ' ବୋଲାଇ ଆକାଶେ ବିହରି ମରେ,
ସଲିଳ ମଣ୍ଡୁକ ପରାଏ ମାତ୍ରକ କିରଣ ଗୁଡ଼ାଏ ଧରେ । ୧ ।
ନୀରଧର 'ପଙ୍କ' ପରି ଯା' ଦିଶଇ ନାହିଁ କି ରେ ଗଳାହାରା ?
ସିନ୍ଧୁଆ ପଣ କା' ମନ୍ଦିରେ କଳାରୁ ଦାଗ ସେ ବିହିଲା ପରା ? । ୨ ।
ନୋହିଲେ ମୋ' ମନେ ବିଚାରୁଚି ଯେଣୁ ଗୁରୁ ପତ୍ନୀକି ହରିଲା,
'କଳା' ଗଣ୍ଡେ ମଣ୍ଡି ଆଖଣ୍ଡଳ ଦେବ କୁଳବିଟାଳିଆ କଲା । ୩ ।
ଯାହା କହୁଚନ୍ତି ଜନେ ତ ଶୁଣୁଚୁ, କାହାଠାରୁ କିସ ଆଣି
ଲାଗୁଆ କରି ଲାବାଡ ହୋଇବାରୁ ଆଗୁଳା ହୋଇଚି ପୁଣି । ୪ ।
କେଉଁ ଗୁଣ ତାର ଭଲ ଦେଖି ଅବା ? ତୋତେ ତାକୁ ସାମ୍ୟ କରି
ଗେଲାଇ ହୋଇ ଯା' ଡ଼ାକି ମରୁଥା'ନ୍ତି 'ଚନ୍ଦ୍ରମୁଖୀ' ନାମ ଧରି । ୫ ।
ଯେଉଁ ସଜନୀଟା ଆଜହୁଁ ସେ 'ନାମ' ତୁଣ୍ଡେ ଆଣି ବସାଇବ,
ଜନ୍ମାନ୍ତର-ସ୍ୱର୍ଗ 'ବଳ ବିପକ୍ଷ'ଙ୍କ ସୁଧରମା ମନା ହେବ । ୬ ।

●

(୬୬)

## ରାଗ—ବଙ୍ଗଳାଶ୍ରୀ

ଟମକ ବାଜଇ ଜଗତୀଯାକେ ତୁ ନ ଜାଣୁ ବୋଲି କପଟ; ଟଭା ପୀନସ୍ତନା ସେ ଗୁଣକୁ ମନା କରି ଦେଲୁ କି ନିପଟ । ୧ । ଟଳିଗଲା ଅନୁରାଗ ଯେ ତୋ ମନୁ କି ଦୋଷୁ କର ପ୍ରକଟ; ଟପ ଟପ ନୀର ବରଷୁ ଅଛି ଯେ ତୋ ନୟନ ଖଞ୍ଜରୀଟ । ୨ । ଟକ କରି ତୋର ରୁଷା ଅଜଗର ଗଳିଲା ସୁଖସମ୍ପୁଟ; ଟାଣି ପଦେ ପଦେ ବୋଲନ୍ତୁ

(୬୬) ଟୀକା—ସୁଖସଂପୁଟ—ସୁଖରୂପ ପରୁଆ; ଟଣକପଣ—ଟାଣପଣ ।

କାହିଁକି ମନ କଲୁ ସ୍ନେହତୁଟ । ୩ । ଟସର ମିଶାଇ ଦେଲେ ନିକି ଆଉ ପସନ୍ଦ ଦିଶଇ ପାଟ; ଟଣକପଣକତୁରୀ ଦେଲୁ କହେ ଅଷ୍ଟଦୁର୍ଗ ଧରାରାଟ । ୪ ।



(୬୭)

## (କାଫି—ଆଡ଼ତାଳି)

ତୁ ମୋ ପରାଣ ପୂର୍ଣ୍ଣଚନ୍ଦ୍ରମୁଖୀ ରେ । ଘୋଷା ।

କେତେ ତପ କରିଥିଲା ପୂରୁବେ ମୋ ଆଖି ରେ
ହେଲା ଧନ୍ୟ ଏ ଲାବଣ୍ୟ ଦେଖି ରେ । ୧ ।

କାହାର ରସନା ଯିବ ପୀୟୂଷକୁ ଚାଖି ରେ
ଥରେ ତୋ ଅଧରେ ଥିଲେ ଲାଖି ରେ । ୨ ।

କେ ରମ୍ଭାର ସମ୍ଭୋଗକୁ ନ ଦେବ ଉପେକ୍ଷି ରେ
ତୋ ରସକୁ ପାରିଲେ ପରଖି ରେ । ୩ ।

ମୁଁ ରାଣ ପକାନ୍ତେ ମୋ ପରି ରେ ମନେରଖି
ହସି ସଖି ବୋଲୁ ନଖି ନଖି ରେ । ୪ ।

ମିଛେ ବୋଲୁ ନାହିଁ ମା ଦେଖିବେ ମୋର ସଖି
ପୃଷ୍ଠେ 'ହେଉ' ବୋଲି ଦେଉ ଲେଖି ରେ । ୫ ।

ଅଷ୍ଟଦୁର୍ଗନାଥ କହେ କେତେ ଭଙ୍ଗୀ ଶିଖି ରେ
ସରୁମଧା କରୁ ମୋତେ ସୁଖୀ ରେ । ୬ ।



(୬୮)

## ରାଗ—ପୂରବୀତାଳ—ଆଠତାଳି

ତୁହି ପରା, ମୋ ହୃଦୟ ମଣିମୟହାରା ରେ । ଘୋଷା ।

ସହି ତୁ ମୋହର ସକଳ ସମ୍ପଦ, ମଦନ-ଫଣି ରଦନ-ବିଷଗଦ,
ଅଖିଳ ବିଭବ ଆଖଣ୍ଡଳ ପଦ, ଆରୋହଣପରମ୍ପରା ରେ । ୧ ।

ରସିକରାଜି ମସ୍ତକ ଅଳଙ୍କାର, ବିଦ୍ରୁମ ନବପଲ୍ଲବ ଗର୍ବହର,
ତୋ ପୟର ଲାକ୍ଷା-ରଞ୍ଜକ ଦାସ ମୁଁ ବିରହ ଦୁଃଖ ପାସୋରା ରେ । ୨ ।
କହିଥିବେ ସହୀ ଜାଣି ବା ନ ଜାଣି, ମଣିଲୁ କି ସତ ଶୁଣି ତାଙ୍କ ବାଣୀ,
ଧରିଛୁ ବିରସ ବିବେକିନୀଶ୍ରେଣୀ, ମସ୍ତକ ମଣ୍ଡନଝରା ରେ । ୩ ।
ନ ମଣ୍ଡିବୁ ସିନା ମୋର ବକ୍ଷସ୍ଥଳ, ହୃଦୟରୁ ଯିବୁ କରି କେଉଁ କଳ,
ମୋ ମନ-ଗଗନ ତଟ ସମୁଜ୍ଜ୍ୱଳ ଉଦୟ ନିର୍ମଳ ତାରା ରେ । ୪ ।
ସଜନି ଗୋ ନବସୁରତି-ବିଭବ, ପାସୋରି ଯିବ କି ମନୁ ଥିଲେ ଜୀବ,
ଦୀନ କବିରବି ଚାତକର ନବ ଘନରସ ଜଳଧାରାରେ ।୫ ।



## (୬୯)

ତୋ ଉପମା ତୁହି ରାମାମଣି ଏ ସଂସାରେ । ୦ ।
କର ତ ଏ ଅନୁମାନ ନାନା ବର୍ଣ୍ଣୁଁ ସାରେ;
ତୋ' ସମାନେ ମନକୁ ନ ଆସଇ ସୁସାରେ । ୧ ।
ରସିଥାଏ ଯେ ରସନା ସୁମଧୁର ସାରେ
ଘେନ ତ ମୋ ଧନ ! ସେ କି ଖେଳଇ 'କଷା'ରେ ? । ୨ ।
ମୋହନା, ମୁଁ ତୋହ ଅନୁଗ୍ରହ-ଭରସା ରେ !
ପ୍ରମୋଦେ ଚାଲଇ ଦେଇ ପ୍ରପଦ ରସାରେ । ୩ ।
ମନାଇଁ ତୁ ରସନ୍ତେ ମୋ' ଉସଙ୍ଗ ବସାରେ,
ବାସବ ମୋ' ସମ ନୁହେ ଅଖଣ୍ଡ ଦଶାରେ । ୪ ।

---

(୬୮) ଟୀକା—ଫଣି—ସର୍ପ, ଆଖଣ୍ଡଳପଦ—ଇନ୍ଦ୍ରପଦ, ଆରୋହଣପରମ୍ପରା—ପାହାଚସବୁ, ବିଦ୍ରୁମ—ପୋହଳା ।

(୬୯) ନାନା ବର୍ଣ୍ଣୁଁ—ବିଭିନ୍ନ କାରଣରୁ, ସାରେ—ସାର ବୋଲି ଭାବେ, ସୁସାରେ—ସହଜରେ, ସୁମଧୁର ସାରେ—ଉତ୍ତମ ମିଷ୍ଟାନ୍ନରେ, କଷାରେ—କଷା ଖାଦ୍ୟରେ, ପ୍ରପଦ—ପାଦ, ରସାରେ—ମାଟିରେ, ଉସଙ୍ଗ ବସାରେ—କୋଳରେ ବସାଇବାରେ, ବାସବ—ଇନ୍ଦ୍ର, ଅଖଣ୍ଡ ଦଶାରେ—ଉତ୍ତମ ଜୀବନ୍ଦଶାରେ, ଇହସା—ହୁଗୁଳା, ଘନସାରେ—କର୍ପୂର ବା ଚନ୍ଦନପାଣିରେ, ଲଜ୍ଜାଭର ବରଷାରେ—ଲାଜ ରୂପକ ବର୍ଷାଜଳରେ ।

ଭୁଲାଉ ନୟନେ ଯେବେ ଲହସା ଖୋସାରେ
ଫୁଲଇ ମୋ' ଛାତି ଭଲେ କୁଲାଏ ଓସାରେ । ୫ ।
'ଉରୁବଶୀ' ବେଶ ହେଲେ ତୋ ସାମ୍ୟ ଆଶାରେ
ମରିବ ସେ ଉଲୀ ସତେ କି ଲୋକହସାରେ ! । ୬ ।
ମଣ୍ଡୁଥାଉ ଓଷ୍ଠକୁ ଯେ ସୁମନ୍ଦ ହସାରେ
ଜର ଜର ହୁଏ ମୋ' ନୟନ ଘନସାରେ । ୭ ।
ଜଳନ୍ତରାଧିରାଜର ସସ୍ନେହ ଭାଷାରେ
ତିନ୍ତିଲା ସୁଦନ୍ତୀ ଲଜ୍ଜାଭର ବରଷାରେ । ୮ ।

●

(୭୦)

ତୋ ସରସ ପଣେ ଜଣେ
ନାହିଁ ନାହିଁ ଆଉ ରେ । ୦ ।
ଲଜ୍ଜାରେ ମୋର ପ୍ରସଙ୍ଗ
ବାକ୍ୟେ ନ ପକାଉ ରେ
ମଜ୍ଜାରେ ମୋ ଅନୁଧ୍ୟାନେ
ଅଙ୍ଗ ପୁଲକାଉ ରେ । ୧ ।
ମିତ ମୋ ନାମକୁ କଳ—
ପିତ ଗୀତ ଗାଉ ରେ
ଶଙ୍କି ପ୍ରିୟ ସଖୀ ନାମ
ଅଙ୍କିତ ଲଗାଉ ରେ । ୨ ।
ସୁଚାରୁ ଚାହାଣୀ ଛଟା
ମୋ ମୁଖେ ନଚାଉ ରେ
ମୁଁ ଚାହିଁଲେ କୁଚାଚଳେ
ଶ୍ରୀମୁଖ ଲୁଚାଉ ରେ । ୩ ।
ସ୍ମର ନରତନେ ଯେବେ
ମାନସ ମଜାଉ ରେ
କେତେ ରସେ ମୋତେ ପ୍ରାଣ—
ଧନ ସମଜାଉ ରେ । ୪ ।

ପଣ୍ଡିତ ପଦ ମଣ୍ଡନ
ଡିଣ୍ଡିମ ବଜାଉ ରେ
ଧୀରେ ମୋ ଅରାତି ଛାତି
କରତାଇ ଯାଉ ରେ । ୫ ।
ରଦ କ୍ଷତୁ ମୁଁ ତୋ ଓଷ୍ଠ
ବଂଚାଉ ବଂଚାଉ ରେ
ମଦ ଗଜଗତି ଶ୍ରୁତି
ଉତ୍ପଳ ଉଞ୍ଚାଉ ରେ । ୬ ।
ନ ବାଧିବାକୁ ମନ୍ମଥ
କରବାଳ ଦାଉରେ
ମୋ ବଳ କେବଳ ତୋର
ନିତମ୍ବ ବଦାଉ ରେ । ୭ ।
ଜଗଦ୍ଦେବ ଭାଷେ ତୋର
ସଙ୍ଗ ସୁଖ ପାଉ ରେ
ହୀରକ ଦଶନା ମୋର
ଚିରକାଳ ଯାଉ ରେ । ୮ ।



(୭୧)

## ରାଗ——କାମୋଦୀ——ଏକତାଳି

ଦମ୍ପେ ବା ସତେ ସହି କହିଲୁ ରେ,
ଦମ୍ଭୋଳିଗଢ଼ା ଛାତି ବହିଲୁ ରେ,
ମାନସରସ-ମହୁ ପାନ ସମଗ୍ର ନୋହୁ
ବିଚ୍ଛେଦ କେହି ସହୁ ସହିଲୁ ରେ । ପଦ ।
ଜାତିଘାତୀ ସେ ପ୍ରେମ କ୍ରମ ବଡ଼ ବିଷମ
ନୋହିଲେ ନୋହିଥିବ ପହିଲୁ ରେ,

(୭୦) ବାକ୍ୟେ—କଥାବାର୍ତ୍ତାରେ, କଳପିତ—କଳ୍ପିତ, କଳ୍ପନା କରି, କୁଚାଚଳେ—ଉଚ୍ଚ ସ୍ତନକୁ, ଶ୍ରୁତି ଉତ୍ପଳ—କାନ ରୂପକ ପଦ୍ମ, ବଦାଉ-ଡାଇ, ହୀରକ ଦଶନା—ହୀରା ଭଳି ଦାନ୍ତ ଯାହାର ।

ହୋଇ ନୋହିବା ପରି ହେଲେ ଧଇର୍ଯ୍ୟ ଧରି
କି ରୂପେ ରହୁ ଦେଖି ରହିଲୁ ରେ । ୧ ।
ତୁଟିଲେ ହେଲେ ସ୍ନେହ ଠଉରିବାକୁ ଦେହ—
ରକ୍ଷା ତୁ ତୋର ଅବା ବହିଲୁ ରେ,
ଏ ଯେବେ ନୋହେ ସତ ହୋଇ ମୋ ପ୍ରାଣମିତ
ମୋପରି କାହିଁକି ତୁ ନୋହିଲୁ ରେ । ୨ ।
ସୁଖସିନ୍ଧୁ ସରିକି ଯିବା ମନ-ତରୀକି
ପ୍ରତିକୂଳରେ ପୁଣି ବାହିଲୁ ରେ,
ଯୁଗ ନୋହିଲା କ୍ଷଣ ସଂସାର ବିଲକ୍ଷଣ
ରସେ ତୁ ଅବା ଅବଗାହିଲୁ ରେ । ୩ ।
ସମଝି ନାହିଁ ତ ମୁଁ କି ଯୋଗେ ତୁ ପ୍ରଥମୁ
କି ଭଙ୍ଗୀ ଅପାଙ୍ଗରେ ଚାହିଁଲୁ ରେ
ଗାଢ଼ ପ୍ରୀତି ବିନା ସେ ବଞ୍ଚୁ ଯା ଅନାୟାସେ
ପୂର୍ବେ ବା କେଉଁ ତପେ ଦାହିଲୁ ରେ । ୪ ।
ସରସ ପ୍ରାଣ ତୃଣ ବିଶେଷ ବଜ୍ରବାଣ
ପ୍ରୟୋଗ କରି କେହି ଦହିଲୁ ରେ,
ବଳକ୍ଷକୁ ସେ ସୟନେତ୍ରା ହୃଦେ ହୃଦୟ
ଟାଳି ନ ଜାଣି ତୁ କି ସହିଲୁ ରେ । ୫ ।
ମଣିମ ସେ ତୋ ଚାଲି ନୋହେ ତ ଧେନୁ ବୋଲି
ବଳୀବର୍ଦ୍ଧକୁ ନିକି ଦୁହିଁଲୁ ରେ,
ଭଣିଲେ ଅଷ୍ଟଦୁର୍ଗ ଧରାବଳୟ ସ୍ୱର୍ଗ
ଛଳେ କି ବଳେ ମୋତେ ମୋହିଲୁ ରେ । ୬ ।



(୭୨)

## ରାଗ—ମୁଖାବରୀ—ଏକତାଳି

ଦୟାବତୀକି, କର ଧରି ମୁଁ ମାଗୁଛି ଏତିକି
ବେଗେ ନେଇ ତୋର ପାଖରେ ହାଜର-
କର ମୋତେ ଆଜି ରାତିକି । ଘୋଷା ।

ନ ଦେଖି ଦୁଃଖିତ ମୋ ନେତ୍ର-ଚକୋର
ତୋ ଶ୍ରୀମୁଖ-ନିଶାପତିକି
ପଞ୍ଚଦଶ ତିଥି ଏକାବେଳେ ଥିଲା
ହେବାକୁ କି ନିତିନିତିକି ? । ୧ ।
ବିଚାରେ ହେମବରନାର ରତନେ
ନିର୍ମିତ ଥାଇ ମୂରତିକି
କୃପଣ ହେବାକୁ ମୁଁ ମାର୍ଗଣ ନୁହେଁ
ଦେଖାକୁ ନ ରଖ ଭୀତିକି । ୨ ।
ମୋ ଛାର ନିନ୍ଦାକୁ ବିଚାର କି ତୋର
ଜାଣିଲେ ଜନେ ଏ ରୀତିକି
କି ବୋଲିବେ କହ ଦାନୀବର ବୋଲି
ଟେକାଇଅଛୁ ଯେ ଛତିକି । ୩ ।
ହରିକୁ ଚନ୍ଦ୍ରମା ଧରିଲା ପରାଯେ
ବ୍ୟାକୁଳ କରିଛି ମତିକି
ଏହି ଘେନି ସିନା ଜଣାକରୁଅଛି
ଅଷ୍ଟଦୁର୍ଗ ନରପତିକି । ୪ ।



## (୭୩)

## ରାଗ—ମୁଖାବରୀ—ଝୁଲା

ଦୂତୀ ଚଳ ରେ, ଭୂତିଦାୟିନୀ ବିନା କେ ବଳ ରେ ।
ସୁତୀକ୍ଷ କଟାକ୍ଷ କକ୍ଷା କରି ରକ୍ଷା କରିବାରେ ଭାଳ ରେ । ଘୋଷା ।
ଚରମାଚଳଚୂଳ ରବି ମଣ୍ଡିଲା ଛଳ କରିବାକୁ ଗୋଳ ରେ
କିଂଶୁକରୁଚି ଅଂଶୁକ ପାଗ କାମ ଥୋଇଲାଟି ଅନୁକୂଳ ରେ । ୧ ।
ସାକ୍ଷାତରେ ଦେଖା ହୋଇଛି ପ୍ରତ୍ୟକ୍ଷ ବିଖ୍ୟାତ ଯା ମତ ଦଳ ରେ
ବକ୍ଷ ଲକ୍ଷକୁ ତୀକ୍ଷ ମୁଖ ଶୀଲୁଖ କଷିଛି ଯା ବାଣ ଫଳ ରେ । ୨ ।

ସାରିଦେଲାଣି ମଙ୍ଗଳ ଦେବାର୍ଚ୍ଚନ ବିଜୟ ଆଳତି କାଳରେ
ପୂର୍ଣ୍ଣମୃଗାଙ୍କ ରଜତ ଥାଳି ଅଙ୍କ ନିର୍ବାପନ ଧୂମଜାଳ ରେ । ୩ ।
କହିବୁ ସୁଦୟା ଥିଲେ ସହୃଦୟା ଅଷ୍ଟଦୁର୍ଗ ମହୀପାଳରେ
ଭରଜ ଉଲଟ ଘଟ ବେଣୀ ଫଣୀ ଦେଖାଇ ତା ଶୁଣ୍ଡେ ଟାଳ ରେ । ୪ ।



(୭୪)

## ରାଗ—ଏମନ କଲ୍ୟାଣ, ଆଢ଼ତାଳ

ଦୋଷ ବିନା ମୋ ନବୀନା ରୋଷ କିମ୍ପାଇ ବହିଲା ରେ । ପଦ ।

ଗେଲାଇ ନାଗରୀ ମେଳେ, ଗଜରାଜଗତି ଗଲାବେଳେ, ମୋ ଆଡ଼କୁ ଫେରି ଥରେ ହେଲେ ମୋତେ ନ ଚାହିଁଲା ରେ । ୧ । ମନୋହର ବେଶ ପାଇଁ, ସୁମନସ ଖୋଜି ଦେଲି ନେଇ, ତା ନ ଘେନି ଜୀବଧନୀ ମଥା ପୋତି ରହିଲା ରେ । ୨ । ଦିନେ ବସି ସଖୀ ସଙ୍ଗେ, ହରୁଥିଲା କାଳ ନାନା ରଙ୍ଗେ, ସେ ସମୟେ ମୋତେ ଦେଖି ହସି ଉଭା ତ ନୋହିଲା ରେ । ୩ । ତା ପ୍ରୀତି ଲଭିବା ଦିନୁ, ଇବେ ନ ମାନଇ ଫୁଲଧନୁ, ସେ କ୍ଷଣ ସହ ବୋଲି ବିହି ଏହା କି ଲିହିଲା ରେ । ୪ । ନ ସହି ମୋର ତ ଶିରୀ, କି ବିଚାରି ସେ ତ କୋପ କରି, ମୋତେ ପଞ୍ଚଶରେ ରବି ତାକୁ କି ଅବା କହିଲା ରେ । ୫ । ବୋଲେ ଅଷ୍ଟଦୁର୍ଗନାଥ, କି କରିବି ନ ଦିଶଇ ପଥ, ଚାହୁଁ ଚାହୁଁ ଦଶଦିଶ କାମ ଅନ୍ଧାର ପିହିଲା ରେ । ୬ ।



(୭୫)

## ରାଗ—ଆଶାବରୀ—ଆଢ଼ତାଳି

ଧନ, କେମନ୍ତେ ମୂର୍ଚ୍ଛିବି ରେ ମନରୁ ନ ଗଲୁ କ୍ଷଣେ ।
ଶୟନେ ସ୍ୱପନେ ଦିଶିଲୁ ନୟନେ ଜଡ଼ିଲୁ ତୁ ଅନୁକ୍ଷଣେ । ଘୋଷା ।
ତୋ ରୂପ ପଟରେ ଲେଖି ଉରପରେ ନ ରଖିଲେ ନିଦ୍ରା ନୋହେ
ଲଭିବାରୁ ଆନ ଆରେ ଜୀବଧନ, ନ ଯାଇ ଏ ଦେହ ସହେ । ୧ ।

ଝାସଦେବି ଯାଇ ଗଙ୍ଗାସାଗରରେ ଏ ଜନ୍ମେ ଭେଟ ନୋହିଲେ
ଦାସ ହୋଇଲେ ତ ବାସବ ପଣକୁ ବାଞ୍ଛା ନାହିଁ ମୋର ତିଳେ । ୨ ।
ବସିଲେ ବସିବ ଅପବାଦ ହାଟ ହସିଲେ ହସିବେ ଲୋକେ
ନାଶିଲେ ନାଶିବେ ସକଳ ସମ୍ପତ୍ତି ଭାସିଲେ ଭାସିବି ଶୋକେ । ୩ ।
ହେବ ଶିରଚ୍ଛେଦ ନୋହିବ ବିଚ୍ଛେଦ ଏହି ଚିନ୍ତା ଅନୁକ୍ଷଣ
କ୍ଷୋଭ ହେଉଥିଲେ ଲୋଭ ବଢୁଥାଇ ଚାହୁଁ ଚାହୁଁ ଶତଗୁଣ । ୪ ।
ବାମ ହେଲେ ହେବ ଗୁରୁ ଗୁରୁଜନ ମୂର୍ଚ୍ଛିବା ପଦାର୍ଥ ନୋହୁ
ବୋଲେ ଜଗଦ୍ଦେବ ଶ୍ରୀ ହରିଚନ୍ଦନ କି ଦୁଃଖ ଦେବ ସେ ଦେଉ । ୫ ।



(୭୬)

ଧନକୁ କେ ମାନେ ବଳାଇଲା ରେ ।
କେ ଦେଲା ଏ ଦଣ୍ଡ ରୋଷ ଲୌହ ଦଣ୍ଡ
ତା ମନ କୁନ୍ଦରେ ଖୁନ୍ଦାଇଲା ରେ । ୦ ।

ମୋ ସୁଖ ମୃଦୁଳ—
ମାଳତୀର ମାଳ
କା ପାଦ ପାଷାଣେ ବଳାଇଲା ରେ । ୧ ।

ମୋ ହୃଦ ଭିତରେ
ଅନଙ୍ଗ ଅହିରେ
କି ସମୟ ଜାଣି ଖେଳାଇଲା ରେ । ୨ ।

ବୋଲେ କବିସୂର୍ଯ୍ୟ
ଆହା ମୋ ଧଇର୍ଯ୍ୟ
ତୁଳା ପଟଳକୁ ଜଳାଇଲା ରେ । ୩ ।



(୭୬) ଖୁନ୍ଦାଇଲା—ଭର୍ତ୍ତି କଲା, ସୁଖ-ମୃଦୁଳ-ମାଳତୀ ମାଳ—ସୁଖ ରୂପକ କୋମଳ ମାଳତୀ ଫୁଲମାଳ, ଅନଙ୍ଗ ଅହିରେ—କନ୍ଦର୍ପ ରୂପକ ସର୍ପକୁ ।

## (୭୭)

## ରାଗ—କାମୋଦୀ

ଧନ ଘନ ରସ ବରଷିଲା ରେ, ଚଞ୍ଚଳା ଜ୍ୟୋତି ପ୍ରକାଶି,
ତୁରିତେ ଉତ୍କଣ୍ଠ ସରିତ ବଢ଼ିଲା ଦମ୍ଭ ଦ୍ରୁମ ଗଲା ଭାସି । ପଦ ।

ପୁଲକକଦମ୍ବ ପ୍ରଫୁଲ୍ଲ ହୋଇଲା, ନାଚିଲା ବେଣୀ ମୟୂରୀ, ଛିଡ଼ି ମୋତିମାଳ ଦିଶେ କି ଚଞ୍ଚଳ କି ସେ ବକପନ୍ତି ପରି । ୧ । ଖରଶ୍ୱାସ ଝଞ୍ଜା ପବନ ପ୍ରସରି ଜଳ୍ପାଏ ବଚନେ ମଲି, ଅଙ୍ଗ ଆମୋଦ ମାଳତୀ ବିକାଶଇ କି ପ୍ରସନ୍ନ ରସବଲ୍ଲୀ । ୨ । ନଖକ୍ଷତ ରକ୍ତ ଇନ୍ଦ୍ରଗୋପ ବ୍ୟକ୍ତ ଦିଶିଲା ଅତ୍ୟନ୍ତ ତ୍ୱରା, ସ୍ୱେଦବିନ୍ଦୁ ଛଳେ କରକା ନିପାତ ବୃଷ୍ଟିଜଳଧାରା ପରା । ୩ । କଟିଘଣ୍ଟି ଭେକ ପ୍ରକଟି ରଟିଲେ ଚଳେ ପୀନପୟୋଧର, ଭୂଷଣ ରତନକିରଣେ କି ଜ୍ୟୋତିରିଙ୍ଗଣଗଣ ପ୍ରଚାର । ୪ । ହୀରକକରଙ୍କ ତାଟଙ୍କ ଅଟକ ନ ରହି କର୍ଣ୍ଣରୁ ଗଳି, ଅବନୀରେ ପଡ଼ି ଶିଳୀନ୍ଧ୍ରକୁସୁମ ଫୁଟିଲା ପରାଏ ଝଳି । ୫ । ନୀଳ ପୀତ ରକ୍ତ ମିଶ୍ରିତ କୁସୁମ ପ୍ରାୟ ନିର୍ଣ୍ଣେ ଇନ୍ଦ୍ରଧନୁ, ବୋଲେ କବିସୂର୍ଯ୍ୟ ଅନଙ୍ଗ ଅନଳ ଲିଭାଇଲା ହୃଦବନୁ । ୬ ।



## (୭୮)

'ଧନ'—ମନ ମୋ' ରସେ ରସିଲା ରେ ! । ୦ ।
ପଞ୍ଚମ ଭାବ ବରଜି, ଚଟୁଳ ଚାଟୁ ସରଜି
ଫୁଲଚାପକୁ ତରଜି ମୋ' କୋଳେ ବସିଲା ରେ ! । ୧ ।

---

(୭୭) ଟୀକା—ରସ—ଜଳ, ଚଞ୍ଚଳା—ବିଜୁଳି, ପୁଳକକଦମ୍ବ—ରୋମାଞ୍ଚରୂପ କଦମ୍ବଫୁଲ, ନଖକ୍ଷତରକ୍ତ ଇନ୍ଦ୍ରଗୋପ—ନଖକ୍ଷତରୂପ ସାଧବାଣୀ ପୋକ, ଜ୍ୟୋତିରିଙ୍ଗଣ—ଜୁଳୁଜୁଳା ପୋକ, ହୀରକକରଙ୍କ ତାଟଙ୍କ—ଯେଉଁ କାନଫୁଲ ମୁଣ୍ଡରେ ହୀରା ଲାଗିଥାଏ, ଶିଳୀନ୍ଧ୍ରକୁସୁମ—ଛତୁ ।

(୭୮) ପଞ୍ଚମ ଭାବ—ମୈଥୁନ, ଫୁଲଚାପକୁ ତରଜି—କନ୍ଦର୍ପକୁ ଭୟ ଦେଖାଇ, ସୁନ୍ଦର ଦଶନା—ସୁନ୍ଦର ଦାନ୍ତ ଥିବା, ଊରୁମୂଳ ଚେଳ—ଜଙ୍ଘପାଖର ଶାଢ଼ୀ, କରଜ ଖେଳ—ହାତନଖର ଚାଳନା, ଅତନୁ—ଜନନେନ୍ଦ୍ରିୟ ଅର୍ଥରେ ପ୍ରଯୁକ୍ତ, ଘନେ—ମେଘରେ, ପ୍ରେମ ହେମକୁ—ପ୍ରେମ ରୂପକ ସୁନାକୁ, ମାନସକଷ-ପାଷାଣ—ମନ ରୂପକ କଷଟିପଥର ।

ଭିଡ଼ିଗାଢ଼େ ପୟୋଧର, ''ମଲିଟି ଇଷି'' ଏ ଗିର
ଭାଷି ରଙ୍ଗେ କି ସୁନ୍ଦର-ଦଶନା ହସିଲା ରେ । ୨ ।
ଟେକି ଊରୁମୂଳ ଟେଳ ରଚିଲି କରଜ-ଖେଳ,
କମ୍ପି ପୁଲକି ମଞ୍ଜୁଳ 'ଅତନୁ' ଦିଶିଲା ରେ ! । ୩ ।
ଶିଥିଳାଇ ନୀବିବନ୍ଧ କଲି ସୁରତି ପ୍ରବନ୍ଧ,
ଘନେ ବିଜୁଳିକି ବଳି ମୋ' ଅଙ୍ଗେ ମିଶିଲା ରେ ! । ୪ ।
ଜଳନ୍ତର ନାଥ ଭଣି ପ୍ରେମ—ହେମକୁ ତରୁଣୀ
ମାନସ-'କଷ'-ପାଷାଣେ ଆଜ କି କଷିଲା ରେ ? । ୫ ।



## (୭୯)

## ରାଗ—ବରାଡ଼ୀ—ଏକତାଳି

ଧନ ରେ, ଅବଶ୍ୟଟି ମୁଁ ବନରେ କରିବି ସ୍ନାନ
ମନରେ କି ଘେନି ପରିଜନରେ କରିଛୁ ମାନ । ଘୋଷା ।
ମୁହଁ ନ ଅନାଇଁ ମୋର ନୁହ ଲତାଙ୍ଗୀ ବିଶେଷରେ
ଲୁହ ନ ବୁହାଇ ସରୋରୁହ ନୟନରୁ ହସ ରେ । ୧ ।
ବଦନ ପୋତି ଯା ଚାଲୁ ନଖପଦ-ନଖକୁ ଧରାରେ
ରଦନେ ଟେଳ କାମୁଡ଼ି ମଦନ ମୋ ଉରେ ମରା ରେ । ୨ ।
ନ ଧର ରୋଷ ମୋ ଅଙ୍କୁ ଧର ତୁ କେଳିଶଙ୍କା ରେ
ବଧର ବିଚାରେ ମୋର ନ ଧର ବିମ୍ବ ନ କମ୍ପାରେ । ୩ ।
ହରଷ-ବିହୀନ କ୍ଷଣ ବରଷ ହୁଏଟି ଜାଣ ରେ
ନରସ କ୍ରୋଧେ ପୂରାଅ ତରସ ମୋର ତୁ ପ୍ରାଣ ରେ । ୪ ।
ଛବି ରମଣୀମଣ୍ଡନା ଅବିରତ ରତମନା ରେ
ଅବିରସ ନେତ୍ରେ ଅନା ଜଗଦ୍ଦେବଙ୍କୁ ନବୀନା ରେ । ୫ ।



(୮୦)

## ରାଗ—କାମୋଦୀ—ଆଠତାଳି

ନ କରିବୁ ଊଣା ପ୍ରୀତି ଚାଲିରେ
ତୋତେ ସିନା ଜଣା ପ୍ରୀତିଚାଲି ରେ ।। ପଦ ।।
ହିମବାଲୁକା ଥାଉ ଥାଉ, ଛୁଇଁ ନ ଯାଉ ଲୋଡୁ ମୋର କଠାଉ—
ତଳ ଝଡ଼ା ବାଲିରେ ।। ୧ ।।
ହୁଡ଼ ରଖି ନିରତେ ଜଣାଇବାକୁ ମୋତେ
ପଟ ବାହୁ ସେ ଚିତ୍ରେ ଚଦରଙ୍ଗ ପାଲିରେ ।। ୨ ।।
ଆଚମ୍ଭ ପରିରମ୍ଭ, ସ୍ତନ କନକ କୁମ୍ଭ
ହାରାବଳୀ ନ ରଖି କରିଥାଉ ଖାଲିରେ ।। ୩ ।।
ନ ଦେଉ କେଉଁ ତୋଷ, ହୋଇ ସମନ୍ଦ ହାସ
ଚାହୁଁ ଯା ଅତଳସ ଯବନିକା ଢାଲି ରେ ।। ୪ ।।
ଶ୍ରୀ ଜଗଦ୍ଦେବ ଭାଷେ ଆଜି ଯାଉ ଏ ରସେ
ଧନ ରେ ମୁଁ ତୋ ବଶେ ଆସିବିଟି କାଲି ରେ ।। ୫ ।।



(୮୧)

ନବଛଇଳୀ, ଯାଉଛି ବିଦେଶ ମୁଁ କାଲି । ଘୋଷା ।
ତୋ ପାଶୁଁ ମୁଁ ଅନ୍ତର ହେବି,—ବୋଲି ଚିତ୍ତରେ ନ ଥିଲା ପ୍ରାଣବାନ୍ଧବୀ ।
ବିଧାତା ବିଧାନ କଥା, କେ କରିପାରେ ଅନ୍ୟଥା
ଥିବି ମାତ୍ର ତୋର ଦିବ୍ୟଚିତ୍ତେ ଅନବରତେ । ୧ ।
ଯେତେ ଦୂରେ ଥିଲେ ମୁଁ ତୋର, କିଣା ଚାକର ମନେ ତୁ ନ କରିବୁ ପର
କରକରଦନା କର ଧରି ମାଗୁଛି ନିକର
ହସି ତୁ ମୋତେ କହି ଗିର ମେଲାଣି କର । ୨ ।
ଏ ବଡ଼ ଚିନ୍ତା ହୁଏ ଏକା, ମୋର ବିହୁନେ କିପରି ବଞ୍ଚିବୁ ରସିକା
ଥିବୁ ସର୍ବଶୁଭେ ତୁହି, ଲେଉଟି ଭେଟିବି ମୁହିଁ
ଈଶ୍ୱର କରିବେ କି ସତେ ନାହିଁ ପରତେ । ୩ ।

ନୃପକୁଳଶେଖର ଚନ୍ଦ୍ର, କିଶୋରଚନ୍ଦ୍ର ଛୋଟରାୟ ବଚନେ ଚନ୍ଦ୍ର-
ବଦନ ବିରସ ଜାଣି ଧରି ପ୍ରିୟା ବେନିପାଣି
ବୋଲି କିରେ ପ୍ରାଣବାନ୍ଧବୀ ନିଶ୍ଚେ ଆସିବି । ୪ ।



(୮୨)

## ରାଗ——କାମୋଦୀ——ତ୍ରିପୁଟା

ନବୀନା ସେ ଯାହା ନ ବିନାଶେ ॥
ନ କହି ମୋ ହୃଦୟ କେଉଁ ଅସହୃଦୟ
ଜନ ଜଣାଏଁ ଚିନ୍ତି ମୋ ଲାଘବ,
ରଖି ତା'ଠାରେ ଦୁଃଖ, ପଲ୍ଲବାଏ ମୋ ସୁଖ । ୧ ।
ଗାଢ଼େ ମୁଁ ଅପରାଧ, କଲେ ହେଲେ ସକ୍ରୋଧ,—
ହୃଦୟା ନୋହେ ସତେ ଦୟାଳୁ
ସେ ଦିନ କରେ ମୋହଠାରେ ଦ୍ୱିଗୁଣ ସ୍ନେହ । ୨ ।
ବ୍ରତ ନିୟମ ସାରା, ଦିନରେ ଆସି ଧାରା—
ସମ ଆଚାରେ ହରୁଥାଏ କାଳ,
ନ ଦଣ୍ଡେ ମୋତେ ପ୍ରାଣେଶ୍ୱରୀ କୁସୁମ ବାଣେ । ୩ ।
ଅନବସର ଜାଣି, ସେ ବୀଣାଜିଣାବାଣୀ
ପାଶକୁ ନ ଯାଏଁ ମୁଁ ଯେଉଁ ଦିନ
କେତେ ସରସ ଭାଷା, ଲେଖି ପୂରେ ମୋ ଆଶା । ୪ ।
ଶିଷ୍ଟ ପର୍ବ ଭୂଷାର, ଶିଷ୍ଟ ମୁଁ ଗୁଣସାର,
ଅଷ୍ଟଦୁର୍ଗ ରସାର ନାଥ ଭାବେ
ମୋହି ମୋହର ମତି, ସେହି ଜାଣେ ସେ ପ୍ରୀତି । ୫ ।



## (୮୩)

## ରାଗ—କଳହଂସ କେଦାର—ଝୁଲା

ନାଗେନ୍ଦ୍ରଗତି ଆହା ଘନଜଘନା
ନାରିକେଳରୁ ଚାରୁ ପୃଥୁଳ ସ୍ତନା । ଘୋଷା ।
ନାଟ ମଞ୍ଜୁଳ ଖଞ୍ଜରୀଟ ନୟନା
ନାକ ନାରୀଙ୍କ ରୂପେ ଯାହାଙ୍କ ବାନା । ୧ ।
ନାସେ ମଣ୍ଡିତ ନୀସାତିଳ ପ୍ରସୁନା
ନାରୀନିବହ ରୀତି ବିଶୁଦ୍ଧ ସୁନା । ୨ ।
ନାୟିକା ଶିରୋମଣି ବରବରନା
ନାହିଁ ତା ଅଙ୍ଗତୁଲ୍ୟ ମୃଦୁ ସୁମନା । ୩ ।
ନାଥ ନ ଥିଲେ ଯଥା ଦିଗଅଙ୍ଗନା
ନାଗରୀନ୍ଦ୍ର ମୋ ତଥା ହେଲା ବିଶନା । ୪ ।
ନାଲିକ ଦଳେ କରି ତଳ୍ପ କଳ୍ପନା
ନାନା ଉପାୟ ଆଳି କରିବେ ସିନା । ୫ ।
ନାଡ଼ି ଓହରି ହୋଇ ଜୀବନ କ୍ଷୀନା
ନାଦ ପିକର ଯହିଁ ଜୀବନଘେନା । ୬ ।
ନାସ୍ତିକ ସ୍ୱର ମୋର ଆଶ୍ଳେଷ ବିନା
ନାଶ ନ ଯିବ ନିକି ସତେ ନବୀନା । ୭ ।
ନାରାଚ ମାରି ହରିବାରୁ ଚେତନା
ନାସାପୁଟକୁ ଚାହିଁଥିବେ ଲଳନା । ୮ ।
ନାହକ ଅନୁଭବ କଲା ନୂତନା
ନାଖରା ଦଶା ହେତୁ ଦୁଃଖ ବେଦନା । ୯ ।
ନାପୁସି ତୁଳେ ହୁଏ ବୋଲି ବଚିନା
ନାଦାର ହୁଏ ଜଗଦ୍ଦେବ ଚେତନା । ୧୦ ।



(୮୪)

''ନାହିଁ'' କରୁ କାହିଁକି ? ରେ ଗଳା-ମଣି ମାଳି ! । ୦ ।
ନ ଯିବି କେବେ ବିଦେଶ, ତୁ ଦେଉଥିବା ନିଦେଶ
ଶିରେ ବହିଥିବି ପରିପାଳି । ୧ ।
ପରଜନଠାରେ ପରି ପରିଜନରେ କିଶୋରୀ !
ବସିଛୁ ମାନସେ କିସ ଭାଳି ? । ୨ ।
ତୋ ଚରଣ-କଞ୍ଜତଳ ସ୍ଥଳେ ମୋ' ନିଆଳୀ ଚୂଳ
କରୁଥିବି ନିତି ନିଉଁଛାଳି । ୩ ।
ମୋ' କୋଳେ ରଚି ବିହାର ଅରାତିମାନଙ୍କୁ ମୋ'ର
ମରାଇବାକୁ ମୋ' କରେ 'ତାଳି' । ୪ ।
ଆରେ କାମ କଳାନିଧି ! ହେଲି ଯେବେ ଅପରାଧୀ,
ଦେଉଥିବୁ ପଛେ ପଦେ 'ଗାଳି' । ୫ ।
ଆରୋହି ଅଙ୍କ-ତଳପ ପୂରାଅ ମୋ' ସଙ୍କଳପ
ଦେବାକୁ 'ମଦନ'-ମୁଖେ 'କାଳି' । ୬ ।
ପୀଡ଼ିବି ନାହିଁ ଦନ୍ତରେ, ଲାଲ ଦନ୍ତବାସେ ଥରେ
ରସନାକୁ ସିନା ଦେବି ଚାଳି । ୭ ।
'ଅଷ୍ଟଦୁର୍ଗ-ଭୂପ' ଭଣେ ଉଚ୍ଚ 'କୁଚ-କୁମ୍ଭ' କ୍ଷଣେ
ଦେବାକୁ ମୋ ଉର ସ୍ଥଳେ ଝାଳି । ୮ ।



(୮୫)

## ରାଗ—ତୋଢ଼ି—ପହପଟ

'ନାହିଁ' କରୁ କାହିଁକି ମୋ ଗଳାମୋତିମାଳି ରେ । ଘୋଷା ।
ପୀଡ଼ିବି ନାହି ଦନ୍ତରେ, ଲାଲ ଦନ୍ତବାସ ଧୀରେ
ରସନାକୁ ଦେବି ସିନା ଚାଳି ରେ । ୧ ।

(୮୪) ନିଦେଶ—ଆଜ୍ଞା, ପରିଜନ-ଚାକର, ଚରଣକଞ୍ଜ—ପାଦପଦ୍ମ, ନିଆଳୀ ଚୂଳ—ନିଆଳୀ ଫୁଲ ସଜ୍ଜିତ ମସ୍ତକ, ନିଉଛାଳି—ବନ୍ଦାପନା, ଅଙ୍କତଳପ—କୋଳ ରୂପକ ଶେଯ, ସଙ୍କଳପ (ସଙ୍କଳ୍ପ)—ମନୋରଥ, ଦେବାକୁ ମଦନମୁଖେ କାଳି—କନ୍ଦର୍ପକୁ ପରାଭବ ଦେବାକୁ, ଦନ୍ତବାସେ—ଓଠରେ, ରସନାକୁ—ଜିହ୍ୱାକୁ, ଉରସ୍ଥଳେ—ଛାତିରେ, ଝାଳି—ଯୋଡ଼ି ।

ଆରୋହ ଅଙ୍କ ତଳପ, ପୂରୁ ମୋର ସଙ୍କଳପ
ଦେବାକୁ ମଦନ ମୁଖେ କାଳି ରେ । ୨ ।
ଡରୁ କରଜଲାଞ୍ଛନ, ହେବାରୁ କଠିନ ସ୍ତନ
ହେଲେ ହେବ ଦେବୁ ପଛେ ଗାଳି ରେ । ୩ ।
ଆରେ କାମ-କଳାନିଧି, ହେବି ଯେବେ ଅପରାଧୀ
ନୟନାନ୍ତେ ଧୃତି ଦେବୁ ଟାଳି ରେ । ୪ ।
ଶ୍ରୀ ମୁକୁନ୍ଦଦେବ କହେ, ହେମକୁମ୍ଭ ସ୍ତନ ସ୍ନେହେ
ଉର ସ୍ଥଳେ ଦିଅ ମୋର ଢାଳି ରେ । ୫ ।

•

(୮୬)

## ରାଗ-ପୂରବୀ——ଝୁଲା

ନାହିଁ ରୁଷିଲା ଯେ କମ୍ପାଇ ଶ୍ରୀମୁଖ-ଶଶୀ
ନବ ବିଦ୍ରୁମ ବିଡ଼ମ୍ବିତ ଅଟରେ ଦରହାସ ଥିଲା ମିଶି । ଘୋଷା ।
ଚନ୍ଦ୍ର ଖଣ୍ଡ ଗଣ୍ଡେ ଚୁମ୍ବ ଦେଇ ଦିନେ ବୋଇଲି ରାମାମଣିକି
ନବସପତବୟସୀ ମୋ ଶପଥ ନଚା ତୋ ନାସାମଣିକି । ୧ ।
ବିଜେ ରତିଅନ୍ତେ ବସାଇ ପୂରତେ ରସାଇ ଚୁମ୍ବନମିଶା—
ଦନ୍ତକ୍ଷତ ଦନ୍ତ କରି ମୁଁ ଅଧରେ ଦିଅ ବୋଲୁ ମୋତେ ରସା । ୨ ।
ଦିନେ ପୁଷ୍ପଭେଦେ ରତିରସମୋଦେ ମାଗନ୍ତେ ମୁଁ ନିଧୁବନ
କେଶୁଁ କରବୀର କୁସୁମ ପକାଇ କ୍ଷତିକି କଲା ଲପନ । ୩ ।
ଦ୍ୱିରଦ-ଦଶନ ପଲଙ୍କ ଉପରେ କରି ଯେ ଥିଲା ଶୟନ
ଫିଟାନ୍ତେ ନୀବିକି ଚାହିଁ ସ୍ୱାଭାବିକି ବୁଜି ନଳିନୀନୟନ । ୪ ।
ଅଷ୍ଟଦୁର୍ଗାଧିପ ବାଲୁକେଶ ନୃପ ଜଗଦ୍ଦେବ ରସେ ଭଣି
ଧନ, ତୁ ମନରେ ମାନ ନ କରିବୁ ବୋଲି ଧରନ୍ତି ତା' ପାଣି । ୫ ।

•

## (୮୭)

## (ରାଗ-ସାବେରି)

ନାହିଁ ତୋହର ସମାନ 'ମୋହ' 'ରସ' - ସ୍ଥାନ
ବନ୍ଧୁ ମୋହର ସମାନ । ୦ ।
ତୋ କେଶକୁ ଅତି ପରବଳ 'ପର' ମଣି,
ଜିଣି ନ ପାରିବେ କେବେ ବଳପ ରମଣୀ । ୧ ।
ଚନ୍ଦ୍ରର ତୋ ମୁଖ ଦେଖି ସାର ସରିଗଲା
କଣ୍ଟକରେ ବିଦ୍ଧ ହେଲା 'ସାରସ'ର ଗଳା । ୨ ।
ଜାଣିଥିବ ଯେ ବା ଅକପଟ ନୟ ନର,
''ତୁଳା ନାହିଁ'' ବୋଲିବ ନିପଟ 'ନୟନ'ର । ୩ ।
ଧନ ! କି ଜିଣିଚୁ ଘନ ସାରକୁ 'ହାସ' ରେ ?
ଏ ସଂସାରୁ 'କୁନ୍ଦ' ପ୍ରଶଂସାର କୁହା ସରେ । ୪ ।
ଘେନୁଚି ମୁଁ ମନେ ଏହା ସୁଗଜଗତି ରେ !
ଝଷଧ୍ୱଜର 'ଆଶୁଗ' ତୁ କି ଜଗତୀରେ ? । ୫ ।
ତୋ' ଗଣ୍ଡକୁ ଅନାଇଁଲେ 'ଆଦରଶ' ହିତେ
ଘେନାଯାଏ ନାହିଁ 'ମଜ୍ଜା' ଆଦର ସହିତେ । ୬ ।
'ଜଗଦ୍ଦେବ' ବୋଲେ ''ଧନ୍ୟ ନବ ସରସା ରେ !
ମଣ୍ଡିଥା ମୋ' ଅଙ୍କ, ଖସି ନ ବସ 'ରସା'ରେ'' । ୭ ।



## (୮୮)

ନିମଜ୍ଜା ମନକୁ ରସେ, ପରିଜନ-ମଜ୍ଜା ସମଜ୍ଜା । ୦ ।
ଫୁଲିଚି ଗୁରୁ ଗରବେ ନିରତେ 'ମଦନ ରଜ୍ଜା',
ନିଧୁବନ-ଆହବରେ ନୂତନ ଛଇଲା ! ଭରଜ୍ଜା । ୧ ।

(୮୭) ମୋହ ରସସ୍ଥାନ—ମୋହିତ ହେବାକୁ ରସିକତାର ସ୍ଥାନ, ମୋହର—ସ୍ୱର୍ଣ୍ଣ ମୁଦ୍ରା, ପରବଳ ପର—ପ୍ରବଳ ଶତ୍ରୁ, ବଳପ ରମଣୀ—ବଳିଷ୍ଠା ଯୁବତୀ, ସାର—ତେଜ, ସାରସ—ପଦ୍ମ, ନୟ ନର—ନ୍ୟାୟବନ୍ତ ପୁରୁଷ, ଘନସାରକୁ—କର୍ପୂରକୁ, ଝଷଧ୍ୱଜର ଆଶୁଗ—କନ୍ଦର୍ପର ଶର, ଆଦରଶ—ଦର୍ପଣ, ସରସା—ରସିକା, ରସାରେ—ତଳେ ବା ମାଟିରେ ।

ଥାଏ ତ ତହିଁ 'ମରଜି' ତୋହରି; ଓହରି ନ ଯା;
ହଟି ନ ଯାଇ ବିଳାସ-ଡିଣ୍ଡିମ-ନିକୁରମ୍ବ ବଜା । ୨ ।
କରୁଣା ଜଳଧି, ମଥା ପୋତି ତୁ 'ଧୃତି' ନ ହଜା;
ପରମ ତପୋବଳେ ତ ତୋ'ର ବଶ କଲେ ଗିରିଜା । ୩ ।
କହୁଚି ତୋ' ମନ-କଥା ତନୁରେ 'ପୁଲକ-ଗଜା',
'ଜଳନ୍ତର'-ଭୂମି ସୁରାଧୀଶୁଁ ଧନ ! ବରଜ ଲଜା । ୪ ।



(୮୯)

## ରାଗ——ଶ୍ୟାମ-କଲ୍ୟାଣ——ଆଡ଼ତାଳି

ନୂଆ ଛଇଳା, ଥରେ ରସେ ରସାଇବି ରେ
କଦନକୁ ମୋ ଧନ ଲସାଇବି ରେ । ୦ ।
ସକରୁଣ ସ୍ମିତେ ଅଙ୍ଗୀ- କାର କର ଶିରିଷାଙ୍ଗୀ
ତଳୁ ତୋଳି କୋଳରେ ବସାଇବି ରେ । ୧ ।
ଚୁମ୍ବି ଚୁମ୍ବାଇ ଅଧର କରେ ଦେଇ ପୟୋଧର
ଗଣ୍ଡେ ଗଣ୍ଡସ୍ଥଳକୁ ଘଷାଇବି ରେ । ୨ ।
ମୋ ଛାତି ଚନ୍ଦ୍ରପରାଗୁ କିଛି ତୋ କୁଚାଗ୍ରେ ଲାଗୁ
ମଦନର ଭଗାରି ହସାଇବି ରେ । ୩ ।
ତୋ ଭୁଜେ ମଣ୍ଡି ମୋ ଗଳ ଦୁହିଁଙ୍କ ମନଯୁଗଳ
ରସାନନ୍ଦ ପ୍ରବାହେ ଭସାଇବି ରେ । ୪ ।
କହେ ଅଷ୍ଟଦୁର୍ଗନାଥ ପୂରି ଦୁଇ ମନୋରଥ
ପାପତାପଯାକକୁ ଖସାଇବି ରେ । ୫ ।



(୮୮) ରସେ——ଶୃଙ୍ଗାରରେ, ପରିଜନ ମଜା ସମଜା——ପରିବାରର ଅଭିପ୍ରାୟ ବୁଝାଇ ଦେ, ନିଧୁବନ ଆହବରେ——ରତିକ୍ରୀଡ଼ା ରୂପକ ଯୁଦ୍ଧରେ, ଭରଜା——କର୍ତ୍ତବ୍ୟ ପୂରଣ କର, ନିକୁରମ୍ବ——ସମୂହ, ଗିରିଜା——ପାର୍ବତୀ, ଭୂମିସୁରାଧୀଶୁଁ——ରାଜାଙ୍କଠାରୁ ।

(୯୦)

## ରାଗ—ପୂରବୀ

ନୂଆ ରସିକା ରେ ଗୁଆଁର ମୋ ସମ କାହିଁ ।
ତୁ ଆଚରୁଥାଉ ଗୁମାନ ବୋଲି ଯା ମୁଁ ଆରମ୍ଭୁଥାଏ ତାହିଁ । ପଦ ।

ନବଲତା ଲୋଳ ଶାଖେ ନିଷେଧିଲେ ଲଭି ସମୀରଣ ସଙ୍ଗ; ମକରନ୍ଦ ପାନ ଉତ୍ସବରେ ମନ ନ କରଇ କିକି ଭୃଙ୍ଗ । ୧ । ରସବତି ଘେନ ତେଜିଲେ ଜୀବନ ଝଷ ବରତିବ କେହି; ମଣି କରକଣ ବୋଲି ବରଜିବା ବଣିକର ଭାଗ୍ୟ କାହିଁ । ୨ । ଅଗତିକି ମୁହିଁ ବୋଲି ତ ଜାଣଇ ଜଗତୀତଳେ ତୋ ବିନା; ଚରଣକଞ୍ଜେ ତୁ ପେଲି ଦେଲେ ହେଲେ ଶରଣ ବୋଲିବି ସିନା । ୩ । ଯାହା ପାଦେ ଲାକ୍ଷା ଲେଖୁଥିଲେ ଶଚୀନାହାପଦ ତୁଚ୍ଛ କରି; ତାହା ପରା ରମ୍ୟ ପଦାର୍ଥକୁ ଯାହା ପର ପରିଭବ ସରି । ୪ । ଅଷ୍ଟଦୁର୍ଗନାଥ ବୋଲେ ଜାଣୁ ଜାଣୁ କଷ୍ଟଦ କାମ ଚରିତ; ଜମ୍ବାଳ ଲାଗିଲା ବୋଲି ବରଜିଲି ବିମ୍ବାଧରା ମରକତ । ୫ ।

•

(୯୧)

## ରାଗ—କାମୋଦୀ—ଆଠତାଳି

ପଙ୍କଜ-ଲୋଚନା, ମୁଁ ତୋ ଦାସ ରେ
ଅଙ୍କ ଜଗତୀକି ଥରେ ଆସ ରେ । ଘୋଷା ।
ସହି ମଦନାଳସା, ମହୀ-ମହିଳାଭୂଷା
ବହି ମନରେ ରୁଷା ରହି କି ବିରସ ରେ । ୧ ।
ବାରଣ-ଗତି ମୋର, ସାର ବଜ୍ରପଞ୍ଜର
ମାର ଫୁଲ ପ୍ରହାର ଛାରରୁ ଏ ତ୍ରାସ ରେ । ୨ ।
ମାନବେଶ କିଞ୍ଚିତେ, ମାନୁ ନାହିଁଟି ତୋତେ
ଆନଟି ମୋର ଚିତ୍ତେ ମାନ ରସରାସ ରେ । ୩ ।
ପୂରି କାମନା ମୋର, ଚୂରି ଦେବା କର୍ପୂର—
ପରି ସ୍ମିତକଧର ଗୋରୀ ଦନ୍ତବାସ ରେ । ୪ ।

(୯୦) ଟୀକା—ଜୀବନ—ଜଳ, ଝଷ—ମାଛ, ଜମ୍ବାଳ—କାଦୁଅ ।

ହରିଚନ୍ଦନ ଭାଷେ, ହରି ଚାଟୁ ବିଳାସେ
ହରିଣନେତ୍ରା ତୋଷେ ବିରଚିଲେ ହାସ ରେ । ୫ ।



## (୯୨)

### ରାଗ—ତୋଡ଼ି; ତାଳ—ଝମ୍ପା

ପର-ପୀରତିରୁ ଲାଭ ଏତିକି ଗୋ
ଛାତି ପାତିବାର ହେତିକି ଗୋ ।
ବନବନ ବୁଲି ସ୍ନେହ ମୋହେ, ଥନଥନ କରି ନେତ୍ରକୁ ହେ
ଛନଛନ ହୋଇ ପାଇବାର ଭୀତିକି ଗୋ । ଘୋଷା ।
ଅଳପ ଲୋକରୁ ଲଭି ବଡ଼ ଭୟ, ତଳପକୁ ନ ଅଣ୍ଟେ ପଲ୍ଲବଚୟ
ଜଳପି ବାତୁଳପରି, କଳପିବାର ପାସୋରି
ଜଳ ପିଆଇ ନୟନୁ କ୍ଷିତିକି ଗୋ । ୧ ।
କାହାର ଗିରରେ ନୁହଇ ବିଶ୍ୱାସ, ଆହାର ବିହାର ହାର ହୁଏ ବିଷ
ଆହା ରାବ ତୁଲେ ଶ୍ୱାସ, ବାହାର ହୁଏ ବିଶେଷ
ପ୍ରହାରେ ପଞ୍ଚମ ଧ୍ୱନି ଶ୍ରୁତିକି ଗୋ । ୨ ।
ନିଶି ନିଦ ବୋଲି ନ ଜାଣଇ ଆଖି, ବିସିନୀଦଳ ତଳପ ତହିଁ ସାକ୍ଷୀ
ମିଶି ନିରବଧି ଗିରେ ଇସି ନିରତ ଉଚ୍ଚାରେ
ଶଶୀନିନ୍ଦାରେ ପୁହାଇ ରାତିକି ଗୋ । ୩ ।
ମନ୍ତର କି ନ ଜାଣଇ ସେହି ଜନ, ଅନ୍ତର ବାହାରେ ଦିଶେ ତା ବଦନ
ଦନ୍ତବାସ ରୁଦ୍ଧ ମନ୍ତ, ଉଚ୍ଚାରି ଅଙ୍ଗେ ସନ୍ତତ
ରୋମାଞ୍ଚିତ ହର୍ଷ ବେଳ ଗତିକି ଗୋ । ୪ ।
ସଳଖ ମାର୍ଗ ତ୍ୟାଗରୁ ପଡ଼େ ଦୂରି, ବଳଖଣ୍ଡନ ହୁଅଇ ଝୁରି ଝୁରି
ପଳ ଛ'ଟିନା ଗଣ୍ଡଣା, ଫଳରେ ଲଭି ଏ ଜଣା
ଅଷ୍ଟଦୁର୍ଗବସୁମତୀପତିକି ଗୋ । ୫ ।



## (୯୩)

## ରାଗ—ଝୁଲା

ପର ପ୍ରେମ ପୋଡୁ ଗୋ, କାହିଁକି ତା ଲୋଡୁ ଗୋ
ମାଗୁଛି ଏତେ ତା ମୋ ଶ୍ରବଣେ ନ ପଡୁ ଗୋ । ୦ ।
ପ୍ରଳୟ ବହ୍ନିରୁ ବଳେ ମଳୟଜ ମରୁତ
ନିକର ବଇରୀ ଯୁବ ପିକରବ ବିରୁତ । ୧ ।
ବିଧୁର ହୁଅଇ ତନୁ ବିଧୁର କରତେଜେ
ନିମି ନିଦ ନ ଲାଗଇ ବିସିନୀଦଳ ଶେଯେ । ୨ ।
ଦଶନେ କରାଅ ତୃଣ ଅଶନେ ତ ଅରୁଚି
ରୂପକାନ୍ତି ହରେ ଏହି ଉପକାର କରୁଚି । ୩ ।
ଭ୍ରମର ଖର୍ଜନ ମିଶେ ଯମର ତର୍ଜନରେ
ରଜନୀ ଦୁଃଖି ତ ଥିବ ସଜନୀ ତୌ ମନରେ । ୪ ।
ସରି ଏକା କରିକୁମ୍ଭ ପରି ଧରିଥିବାର
କେ ସହିବ ଏ ସମୟେ ବେଶ ବାସି ହେବାର । ୫ ।
ଆଳି କହେ ହେବ ଏହି ପାଳିକ ତୁ ସହିଲେ
ଅଷ୍ଟଦୁର୍ଗ-ମଣ୍ଡଳାଖଣ୍ଡଳ ରସେ କହିଲେ । ୬ ।



## (୯୪)

## ରାଗ—ସାରଙ୍ଗ—ଝୁଲା

ପରବ ଚନ୍ଦ୍ରମାମୁହଁା, ପର-ବତ ମତେ ନ କର ତୁହି ରେ,
ପରବତ ରତେ ସହି, ମୋ ଧନ ରେ । ୧ ।
ନିଧୁବନ ବିଚକ୍ଷଣା, ବିଧୁର କିପାଇଁ ହେଉ ସୁମନା ରେ,
ମଧୁର ବଚନ ଶୁଣା, ମୋ ଧନ ରେ । ୨ ।

ବରସାରସ ଗମନେ, ନ ରସାଉ ରସେ ମନ କି ମନେ ରେ,
ଭରସା ତୁ ତ ଭୁବନେ, ମୋ ଧନରେ । ୩ ।
ସନକ ମନମୋହନା, କନକ ତନୁକୁ ମ୍ଳାନ କରନା ରେ,
ଧନ କରୁଛି ଯାତନା, ମୋ ଧନ ରେ । ୪ ।
ମଦନ ଦର୍ପଣମୁଖୀ, ବଦନ ତୋହର ଶୁଖିଲା ଦେଖି ରେ,
କଦନ ଲଭଇ ଆଖି, ମୋ ଧନରେ । ୫ ।
ପରମ ଦୟାଳୁ ହୋଇ, ପର ମଣି ମୋତେ ନ ଚାହୁଁ ସହି ରେ,
ମରମକୁ ବାଧେ ଏହି, ମୋ ଧନ ରେ । ୬ ।
ହରଶତ୍ରୁ ବିନ୍ଧେ ଶର, ହରଷେ ଅପାଙ୍ଗେ ଅନାଇଁ ମୋର ରେ,
ହର ସବୁ ଦୁଃଖଭାର, ମୋ ଧନ ରେ । ୭ ।
ଶରମରେ ଲଭିଥିଲି, ନରମଅଙ୍ଗୀ ନ ଚାହିଁଲୁ ବୋଲି ରେ,
କରମକୁ ଆଦରିଲି, ମୋ ଧନ ରେ । ୮ ।
କୁରଙ୍ଗ ଚାରୁ ଲୋଚନା, ସୁରଙ୍ଗ ଅଧରେ ମାଧୁରୀଘେନା ରେ,
ତୁ ରଙ୍ଗରେ ବାରେ ଅନା, ମୋ ଧନ ରେ । ୯ ।
ହୀରକରଦନୀ ଧନ, ଧୀର କରି କର ତୁ ଆଲିଙ୍ଗନ ରେ,
ଗିର କରି ପଦେ ଦାନ, ମୋ ଧନ ରେ । ୧୦ ।
ଛଇଳୀ ଥିବ କି ମନେ, ଧଇଲି କର ନ ଘେନିଲୁ ଦିନେ ରେ,
ରହିଲି ମୁଁ ଅଭିମାନେ ମୋ ଧନ ରେ । ୧୧ ।
ରସିକା ସେଦିନ ନିଶି, ରସି କାମେ ମୋର ମନକୁ ତୋଷି ରେ,
ହସି ଏକା ଗଲୁ ମିଶି, ମୋ ଧନ ରେ । ୧୨ ।
ଗତ ରସକଥା ମାନ, ଗତରସ କିପାଁ କରୁଛୁ ଘେନ ରେ,
ସତରବୟସୀ ଧନ, ମୋ ଧନ ରେ । ୧୩ ।
ହରିଚନ୍ଦନ ବୋଲନ୍ତି, ହରିଚନ୍ଦନୁ ତ ଶୀତଳ ଅତି ରେ,
କରିଛୁ କଠୋର ମତି, ମୋ ଧନ ରେ । ୧୪ ।



(୯୫)

## ରାଗ—ତୋଡ଼ି ପରଜ; ତାଳ—ଏକତାଳି

ପରାଣ ଛାର କି ଲୋଡ଼ା ରେ ସଙ୍ଗାତ,
ପରାଣ ଛାର କି ଲୋଡ଼ା ? । ଘୋଷା ।
ପ୍ରିୟଜନ-ପ୍ରୀତି ପୀୟୁଷ-ପ୍ରବାହ ହୁଅଇ ଯେବେ ଖଦଡ଼ା ରେ । ୦ ।
ପାସୋରେ ହୃଦୟ ଭିତରୁ ସଦୟପଣ ପରମ ମୁହାଁସ,
ପେଟଯାକ ପୂରିଥିବ ଯେବେ କୂଟ ମୁଖେ ଥିବ ମନ୍ଦହାସ ରେ । ୧ ।
ଛଳପୂର୍ଣ୍ଣ କରି ମୃଦୁ ବାଣୀ ଝରୀ ବିରହୀ ହୃଦେ ଢାଳିବା,
ନିଦାଘେ ତାପିତ ବନଲତା ହିତ ହାତଟେକା ଜଳ ଦେବା ରେ । ୨ ।
ପ୍ରଣୟ ପରଖ କରି ଲକ୍ଷ ଲକ୍ଷ ସବୁ ବୁଝି ଅନୁଭବେ,
ପ୍ରୀତିଠାରୁ ବଡ଼ କେହି ନାହିଁ ବୋଲି ବିବେଚନା ନାହିଁ ଯେବେ ରେ । ୩ ।
କବି-ଦିନକର ରାୟଗୁରୁ ବୋଲେ ଏବେ ସବୁ ଜଣାଗଲା,
ପକାଇ ପବିତ୍ର ସ୍ଥଳେ ସ୍ଥୂଳଗାତ୍ର ପରମ ପଦକୁ ଚଲା ରେ । ୪ ।



(୯୬)

## ରାଗ—ମୁଖାରୀ—ଆଠତାଳି

ପାରିବୁ କି, ରସେ ହାରିବୁ ରେ । ଘୋଷା ।
ନବଖଣ୍ଡ ମେଦିନୀ-ମଣ୍ଡନା ଜୀବଧନୀ
ଋଷିମନମୋହିନୀ ଶ୍ରୀମୁଖେ ଚୁମ୍ବ ଘେନି । ୧ ।
ତୁ ତ ନ ଜାଣୁ ରତି, ମତ୍ତ ବାରଣଗତି
କିପରି ଆଜ ରାତି ପତି ସଙ୍ଗତେ ମାତି । ୨ ।

(୯୫) ଟୀକା—ମୁହାଁସ—ଗର୍ବ, କୂଟ—କପଟ, ଝରି—ଜଳପାତ୍ରବିଶେଷ

ଗେଲାଇ ନାହିଁ ନାହିଁ, ଭାଷେ ଚନ୍ଦ୍ରମାମୁହିଁ

କେଳିତଳପେ ରହି କରଜ ଦାଉ ସହି । ୩ ।

ଭଲା ତା' ନାସାମଣି, ମୋ ମନ ନେଲା କିଣି

ରତି-ସମରେ ଜିଣି, ତାହାକୁ କିଣିଆଣି । ୪ ।

ଚକ୍ର କରି ନୋଥକୁ, ମାରି ମନମଥକୁ

ପୂର୍ଣ୍ଣ ମନୋରଥକୁ ଜଳନ୍ତର ନାଥକୁ । ୫ ।



(୯୭)

ପାରିବୁ ରେ, ରସେ ଘାରିବୁ ରେ ! । ୦ ।

ନବ ଖଣ୍ଡ ମେଦିନୀ ନବ ମଣ୍ଡନା ଧନି,

ମୁନି ମନ ମୋହିନି, ଚିବୁକେ ଚୁମ୍ବ ଘେନି । ୧ ।

ଗେଲାଇ 'ନାହିଁ ନାହିଁ'' ଭାଷି ଚନ୍ଦ୍ରମା ମୁହିଁ ।

କେଳି ତଳପେ ରହି କରଜ ଦାଢ଼ ସହି । ୨ ।

ଚାଟୁରେ ଭରଜାଇ ଡାକିବାରେ ନ ଯାଇ

ଆଲିଙ୍ଗନେ ମଜାଇ ଚେତନାକୁ ହଜାଇ । ୩ ।

ଇଙ୍ଗିତ ଭଙ୍ଗି - ମଝି ସଂସାର ଭାବ ବୁଝି

ପ୍ରିୟ ବିନୟେ ରିଝି ମଦନ ରଣେ ଯୁଝି । ୪ ।

ପ୍ରବନ୍ଧ ପଟ ଆଣି, ଚାହିଁ ସେ କ୍ଷଣି ଜାଣି

କିଙ୍କିଣୀ କିଣି କିଣି ରବେ ମାନସ କିଣି । ୫ ।

ଚକ୍ର କରି ନଥକୁ, ମାରି ମନମଥକୁ,

ପୂରା ମନୋରଥକୁ ଜଳନ୍ତର ନାଥକୁ । ୬ ।



(୯୭) ରସେ ଘାରିବୁ—ରତି କ୍ରୀଡ଼ାରେ ମଜ୍ଜିଯିବୁ, କରଜ ଦାଢ଼—ହାତ ନଖର କ୍ଷତ, ଭରଜାଇ—ସମଜାଇ, ରିଝି—ମଣାଇ, ମଦନ ରଣେ—ରତିକ୍ରୀଡ଼ାରେ, ପ୍ରବନ୍ଧପଟ—ଭଲ ଚିତ୍ରପଟ, ମନମଥକୁ—ମନ୍ମଥକୁ, ମନୋରଥ—କାମନା ।

(୯୮)

## ରାଗ—କେଦାର—ଆଦିତାଳ

ପ୍ରାଣନାଥ ବିଜେ ବେଳ ବଳିଲା ରେ । ଘୋଷା ।
ସଖି, ହେଲା କି ପାପ ଦେଖ ଏ ଚନ୍ଦ୍ରାତପ—
ବନ୍ଧା କୁସୁମ ଥୋପ ଆସି ଲୁଳିଲା ରେ । ୧ ।
ତୁଟିଲାନି ମୋ ହୃଦ- ପୁଟେ ଥିଲା ପ୍ରମୋଦ
ମଥାପରୁ କୁମୁଦବନ୍ଧୁ ଟଳିଲା ରେ । ୨ ।
ଦେଲା ଆହା କି ଫଳ ଭଲ ତ ମୋ କପାଳ,
ଲଗାଇଲେ ରସାଳ ନିମ୍ବ ଫଳିଲା ରେ । ୩ ।
ମଣ୍ଡାଇଲି ନିବାସ, କିପାଁ ହେଲି ଏ ବେଶ,
ଆନେ ତେବେ ଜୀବେଶ ମନ ବଳିଲା ରେ । ୪ ।
ଛୋଟରାୟ ନୃପତି, ବିଜେ କଲେ ଏ ରାତି,
ଜାଣ ସବୁ ସମ୍ପତ୍ତି ମୋତେ ମିଳିଲା ରେ । ୫ ।



(୯୯)

## ରାଗ—ଆନନ୍ଦ ଭୈରବୀ—ତ୍ରିପଟା

ପ୍ରାଣବନ୍ଧୁଆ, ଆଜ ତୋ ଅନାଉଣି ନୂଆ ରେ । ଘୋଷା ।
ସ୍ମିତ କାନ୍ତି ପ୍ରସରୁ, ସରୁମଧ୍ୟାରେ କରୁ,
ବସୁଧା ସୁଧାରେ ଗାଧୁଆ ରେ । ୧ ।
ହିୟାରେ ଢଳି ମୋର, ସୁଆଦ ରଦାମ୍ବର,
ପିଆଇ ଧନ ମୋତେ ଜିଆ ରେ । ୨ ।
ନିଶ ମରଦୁ ଅଛି, କି ସମଝୁଛି ଛି,
ବିଷମ ବିଶିଖ-ମଦୁଆରେ । ୩ ।
ଅମଳ ମୃଦୁ ଦେହା, ଶ୍ୟାମଳ ଉରେ ବୁହା,
ଯାମଳ ପୀୟୁଷ-ମାଠିଆ ରେ । ୪ ।

ଶ୍ରୀ ଜଗଦ୍ଦେବ ଭାଷେ, ଦେବୀ ସବ୍ରୀଡ଼ ହାସେ,
ଅଣିମାଦି ସୁଖକୁ ଦିଆ ରେ । ୫ ।



(୧୦୦)

## ରାଗ—ଝିଂଝୋଟି—ଏକତାଳି

ପ୍ରାଣବନ୍ଧୁଆ ରେ ତୋ ଶୋଭାକୁ ଚାହିଁ
ପୁରନ୍ଦର ସମ୍ପଦ ମୋ ନେତ୍ର ଲୋଡ଼ୁ ନାହିଁ । ଘୋଷା ।
ଫୁଲ୍ଲ ପଙ୍କଜ ଚନ୍ଦ୍ର ଦର୍ପଣ ସୁନ୍ଦରାନନୀ ମୋ ଧନୀ
ହେମ ଚମ୍ପକ କେତକୀ ତନୁ ଶମ୍ଭୁ-ଦମ୍ଭ ବିନାଶିନୀ
ତାର ହୀରକ କୁନ୍ଦ ମୌକ୍ତିକ କାଶହାସୀ ବିଳାସିନୀ
ଧରା ଧନ୍ୟ ହେଉଛି ତୋ ପାଦ ସଙ୍ଗ ଘେନି । ୧ ।
ନୀଳଉତ୍ପଳ ଖେଳ ଚଞ୍ଚଳ ମୀନ ଖଞ୍ଜନ ଲୋଚନୀ
ବୀର ମନ୍ମଥ ବାଣ ସମ୍ଭବଟି ଦୁଃଖ ବିମୋଚନୀ
ଲୋଳ ଲୋଚନ କଞ୍ଜରଞ୍ଜନ କୁଞ୍ଜରାଧିପ ଗାମିନୀ
ଅନଙ୍ଗ ମଙ୍ଗଳ ରମା ତୁ ମନମୋହିନୀ । ୨ ।
ମଞ୍ଜୁଳାଞ୍ଜନ-ପୁଞ୍ଜଗଞ୍ଜନ ନୀଳକୁନ୍ତଳପାଶିନୀ
ଭକ୍ଷିତାନିଳ ଯୋଗୀମଣ୍ଡଳ ଯୋଗଖଣ୍ଡନ ବେଶିନୀ
ସାନ୍ଦ୍ର ଚନ୍ଦ୍ର ପରାଗ ସଙ୍ଗତ ଗନ୍ଧସାର ସୁବାସିନୀ
କୃତାର୍ଥ ହୋଇଲା ଯଉବନ ତୋହ ଘେନି । ୩ ।
ବକ୍ର କୋମଳ ବାଣୀ ବର୍ତ୍ତୁଳ ଚନ୍ଦ୍ରଚାରୁ ନିତମ୍ବିନୀ
ଶକ୍ର ବାରଣ କୁମ୍ଭ ଭୂଧର ଚକ୍ରବାକ ଘଟସ୍ତନୀ
ଲାଲ ପଲ୍ଲବ ବିଦ୍ରୁମ ଭ୍ରମ କରକାଧରୀ ଭାବିନୀ
ରାମଚନ୍ଦ୍ର ଦେବେ କେବେ ନୋହିବୁ ଗୁମାନୀ । ୪ ।



## (୧୦୧)

ପ୍ରାଣବନ୍ଧୁ, କର ଗରବ କାହିଁକି ରେ;
ପରବ ଚନ୍ଦ୍ରମା ଚିତ୍ତେ, ବଳିଲାନି କି ତୋ ଝଳି
ଲାବଣ୍ୟାଦି ଗୁଣଗଣରୁ କିଞ୍ଚିତେ । ଘୋଷା ।
ଜଳଧିର ପଙ୍କ, କି ଅବା କଳଙ୍କ
ଖଣ୍ଡେ ଶିରୀକରି ଫୁଲେ,
ନାହିଁ କି ନଜର, ରସାଳସା ତୋର
ନେତ୍ର ଇନ୍ଦୀବର ଫୁଲେ । ୧ ।
ମୋ ସୁଧାତୁଳରେ, ବସୁଧା ତଳରେ
କେ ଅଛି ବୋଲି ଯା ଭାବେ,
କର୍ଣ୍ଣେ ନାହିଁ ଶୁଣି, ତୋ ମୃଦୁଳ ବାଣୀ
ବିଳାସକୁ ପରା ଲବେ । ୨ ।
କରିଛି କି ମନେ, ଏ ତିନି ଭୁବନେ
ମୁଁ ଏକା ରଜନୀକର,
ଫୁଲ ଶେଯରତେ, ତୋ ଚରଣେ କେତେ
ଲାଗଇ ରଜ ନିକର । ୩ ।
ଜଗତୀରେ ଏକା, ମୋହରି ଚନ୍ଦ୍ରିକା
ରୁଚିର ବୋଲି ଯେ ବୋଲେ,
କୁନ୍ଦ ବିକାଶକୁ, ନିନ୍ଦିବା ହାସକୁ
ଖେଳାଇ ହେବୁଟି ଗେଲେ । ୪ ।
ଭାବୁଅଛି ଚିତ୍ତେ, ଭଜିଛନ୍ତି ମୋତେ,
ଅନେକ ନକ୍ଷତ୍ରମାନେ,
ଶ୍ରୀହସ୍ତ ଚରଣ-କଞ୍ଜ ନଖଗଣ
ଶୋଭା ଚାହିଁ ନାହିଁ ଦିନେ । ୫ ।
ଟେକିଦିଅ ମୁଖ, ଏ ସିତ ମୟୂଖ-
ଜିତ ହୋଇ ମରୁ ଚଳି
ନିତି ନିଧୁବନେ, ଅନେକ ବିଧାନେ
କେତେ ଚନ୍ଦ୍ର ଥାଇ ଚଳି । ୬ ।
ଚକୋର ଏହାର, ବଡ଼ ପରିଚାର
ତୁ ସେବା ଦେଇଛୁ ମୋତେ,
ଅଷ୍ଟଦୁର୍ଗ ଧରାମଣ୍ଡଳୀ ଅମରାବତୀ-
ପତି ବୋଲେ ଗୀତେ । ୭ ।



(୧୦୨)

## ରାଗ—ଭୈରବ—ଆଠତାଳି

ପ୍ରିୟ ସହି, ଏତେବେଳୁ ଥାଅ ମୋତେ କହି ରେ,
ତହିଁରେ ମୁଁ ନାହିଁ ଅବଗାହି ରେ । ଘୋଷା ।

ପ୍ରଥମ ପ୍ରବେଶ କାଳେ, ଆଚ୍ଛାଦି ଅଙ୍ଗ ଦୁକୂଳେ,
ଉଭା ହେବି ସିନା ତଳେ, କେଳି ତଳପକୁ ବଳେ
ଘେନିଯିବେ, ସେହି ସ୍ନେହ ବହି ରେ । ୧ ।

ମାର ମନେ ଖେଳୁଥିବ, ପ୍ରଦୀପ ଯେ ଜଳୁଥିବ,
ବିବେକ ତ ଟଳୁଥିବ, ଲାଜ ତ ପ୍ରବଳୁଥିବ,
ତାଙ୍କ ମୁଖ, ଅନାଇବି କେହି ରେ । ୨ ।

ମଦନ-ମଦ ଅମଳେ, ଚେତା ନ ଥିବାରୁ ଭଲେ,
ଲୋଭ ବଶୁଁ ଅବା ଗେଲେ, ପୁନଃ ପୁନଃ ଚୁମ୍ବ ଦେଲେ,
ସ୍ଥିର ହୋଇ ରହି କି ନ ରହି ରେ । ୩ ।

ବୋଲୁ ଯେ ଅଛି ବିଧାନ, ବାଜି କରରୁହ ମୂନ,
ଦେହରେ ନ ରଖି ସ୍ଥାନ, ପୁଣ ଗାଢ଼େ ଆଲିଙ୍ଗନ,
ଏତେ ଦାଉ, ପାରିବି କି ସହି ରେ । ୪ ।

ବିନତି ହୋଇ କହିଲେ, ଏତେ ଅବା ହେବ ହେଲେ,
କି କରିବି ନୀବୀ ତୁଲେ, ହଟକୁ ପ୍ରିୟ ରଚିଲେ,
ସହିବାର, ପଡ଼ଇ କି ତାହି ରେ । ୫ ।

ଅଷ୍ଟଦୁର୍ଗ ନାଥ ଭଣେ, ତୋଷ ଗୋ ସଖି ଜଣାଣେ,
ମଣ୍ଡି ମଣି ଆଭରଣେ, ବନ୍ଦିବା ଶିବା ଚରଣେ,
ଆସିଲେ ମୁଁ, ଲୋକହସା ହୋଇ ରେ । ୬ ।



(୧୦୩)

## ରାଗ——କାଫି——ଆଡ଼ତାଳ

ପୁଚ୍ଛ ତ ସେ ରସଭୋଗୀକି ଗୋ, କାହୁଁ ହେଲା ଶିଖା ସଖୀକି ଗୋ
ସଂସାରେ ସଂସାର ଗୁରୁ କେଳିକାଳେ ସଖୀ କି ପାଖରେ ରଖିକି ଗୋ ।
ନବନିର୍ଗତ ମଧୁ ମଧୁରସା, କ୍ଷୀର ସର ସାର କର୍ପୂର ମିଶା
ଖଣ୍ଡକୁ ପରି ଗଣ୍ଡକୁ କରିବାର ସହଇ ଆଜନ୍ମ ସୁଖୀକି ଗୋ । ୧ ।
ଯହିଁ ସମର୍ପି ପରାଣେ ପରାଣ, ଯା ନିର୍ବାହକୁ ଲକ୍ଷ ଲକ୍ଷ ରାଣ
ନ ଜାଣି ସେ ବିଧି ବନି ଅପରାଧୀ ପୁଣି ହୋଇ ଦୁଃଖୀ ଦୁଃଖୀକି ଗୋ । ୨ ।
ଦୃଷ୍ଟି ଦେଇ ଆଜ ବାଳା ବଦନେ, ଅନୁମାନ କଲି ମୁଁ ମନେମନେ
ଶମ୍ବରାରିରଣ-ଡମ୍ବର ସମ୍ଭାର, ନୁହଇ ସେ ମୁଖାମୁଖୀକି ଗୋ । ୩ ।
ହେଲେ ହେଲେ ପିଉଁ ପୀୟୂଷରସ, ଘଣ୍ଟାଘଣ୍ଟି କରି ପିଉ ସରସ
ତହିଁରୁ ଓହରି ଅଙ୍ଗୀକାର କରି, ରୁଖାରୁଖି ସୁଖାସୁଖୀକି ଗୋ । ୪ ।
ଚନ୍ଦନ ମର୍ଦ୍ଦନ ବେଳେ ମୋ ଆଖି, ସୁନ୍ଦରୀ କକ୍ଷ ଶୋଭା ଦେଲା ଦେଖି
ଚିତ୍ତେ ହେଲା ମୋର ଚନ୍ଦ୍ର ଚାଳିବାର, ନୋହେ ତ ସେ ନଖାନଖିକି ଗୋ । ୫ ।
ହର୍ଷଚରିତ ସୁଧା ପୂରି ଆସେ, ହରିଚନ୍ଦନ ଜଗଦ୍ଦେବ ଭାଷେ
ହରିଚନ୍ଦ୍ରାନନା ଆବୁର ଧନ ସେ କାହିଁ କଲା ରଖାରଖିକି ଗୋ । ୬ ।

●

(୧୦୪)

## ରାଗ——ଭାଟିଆରୀ——ଏକତାଳି

ବଦନର ଚାହିଁ ଛବିଛଟା, ରଦନରେ ଧରୁ ନାହିଁ କୁଟା
ଗରବରେ ତୁଚ୍ଛା ହରବର ହେଲା ପରବ ରଜନୀ ରସିକୁଟା
ଆଗୋ ପ୍ରିୟସଖି !
ପ୍ରାଣପ୍ରିୟଙ୍କୁ ପାରିଲଟି କି ଦେଖି ? । ୧ ।
ବହି ନବ ଯୌବନ ମେରୁ, ସହି କେ ରହି ପାରିବ ଭୀରୁ
ସେ ମହିଳା ମନ ମହାନଦୀ ମୀନ-ବାହାଣିଆ ଭଙ୍ଗୀ ଚାହାଁଣିରୁ । ୨ ।

ଠୂଳ ହୋଇ ଆଶା ରହେ ଲାଗି, ମୂଳରୁ ଟଳିବ ଯେବେ ସଖୀ
ଚୂଳବତୀ ମଣିମଣ୍ଡିତ ମୁକୁଟେ କୁଳବତୀ ଯେବେ ଦେବ ଆଖି । ୩ ।
ଥାଏ ମୋର ମଦ ମୁଁ ବିବେକୀ,—ପ୍ରାଣତୁଲେ ହୋଇଗଲି ବିକି
ଜାଲିଟି ନିକଟେ ଅନାଇଁ ଦେଲି ମୁଁ କାଲି ଟିକିଏ ସେ ଚାଳିଟିକି । ୪ ।
ଜଗତେ ବିଜୟେ ରତିସ୍ମର, କରିବେ କିସ ମୂରତି ସ୍ମର
ଇଷ୍ଟକଥା ମାନ ପୁଷ୍ଟ କରିବେ ସେ ଅଷ୍ଟଦୁର୍ଗ ବସୁମତୀ-ସୁର । ୫ ।



## (୧୦୫)

## ରାଗ—କେଦାର, ତାଳ—ଆଡ଼ତାଳ

ବନ୍ଧୁ ଅଛି କି ଲୋଡ଼ା, ନୂଆ ନିଆଳାନିର୍ମିତ ଚୂଡ଼ାରେ । ପଦ ।

ପରମାଧିକାରେ ପରମାସୁ ଥିବୁ ମୋଠାରୁ ବରଜି ବ୍ରୀଡ଼ା ରେ । ମନ ଥାଇ ଲାଜଭରବଶୁଁ ବ୍ୟାଜଛନ୍ନ କଲେ ବଡ଼ ପୀଡ଼ା ରେ । ୧ । ନ ପାଇବା ସୁଖ ମୋ ଆଗେ ଶ୍ରୀମୁଖ ନୋହିଲେ ସଂକୋଚ ଛଡ଼ା ରେ । ଚିରେ ଥାଉ ମୁଁ ତୋ ସଙ୍ଗୀତ ଜଗତିବାହୁଡ଼ା ବିଜେ ପାହାଡ଼ା ରେ । ୨ । ଇଚ୍ଛା ମାପିକେ ତୋ ବିଛଣା ବନାଇ ଦିଆଇବି ହୋଇ ଛିଡ଼ା ରେ । ଅଣା ଅଛି କି ବହୁତ ବାସନ୍ତିକ ବାସ କୁସୁମପାଖୁଡ଼ା ରେ । ୩ । ସଇରିନ୍ଧ୍ରିକାକୁ ସହି କହୁ ଥା ତୁ ଆଜ ହୋଇବ ନିବିଡ଼ା ରେ । ଅଂସ ଅବତଂସ ଲହସା ଖୋସାକି କି ବେଣୀ ଲୋଟଣୀ ଜୁଡ଼ାରେ । ୪ । ଅଳପକେ ଯେ ହେଉଥାଏ ତରୁଣ ତରୁଣୀଙ୍କ ଘରବୁଡ଼ା ରେ । ଧନ ଚିନ୍ତିଲେ ଆମ୍ଭର ବଶଂବଦ ହେବ ସେ ସ୍ମର ବାପୁଡ଼ା ରେ । ୫ । ମାନିବ ଯେବେ ଦଣ୍ଡକେ ମହତ୍ତ୍ୱ ବନାଇ ଦେବା ଦିକଡ଼ା ରେ । ଜଗଦ୍ଦେବ ଗୀତେ ବୋଲେ କର ମୋତେ ଅଳପ ତଳପଗଡ଼ୀ ରେ । ୬ ।



(୧୦୫) ଟୀକା—ବ୍ୟାଜ—କପଟ, ବ୍ୟାଜଛନ୍ନ କଲେ ମନ—ମନକୁ କପଟଦ୍ୱାରା ଆବୃତ କଲେ, ପାହାଡ଼ା—ଗତିପଥର ଆଚ୍ଛାଦନ, ସୈରିନ୍ଧ୍ରିକା—ବେଶକାରିଣୀ, ଅଂସ—କାନ୍ଧ, ବାପୁଡ଼ା—ନଗଣ୍ୟ, ବଶଂବଦ—ଅଧୀନ ।

(୧୦୬)

## ରାଗ—ସାରଙ୍ଗ-ଏକତାଳ

ବନ୍ଧୁଆ, ତୁ ମୋ ମଣିହାର ରେ । ଘୋଷା ।

ନ ରସ ନିରାଶେ ବସୁମତୀ ବାସେ କର ମୋ ଉରେ ବିହାର ରେ । ୧ ।

ଗିରୀଶ ଅରାତି ଗିରିଷମ ତାତି ତୁ ନିଶାମୟ ନିହାର ରେ । ୨ ।

ମନମଥ ଦାବେ ମୋର ଶିବ ଭାବେ ତୋ ପୟୋଧରକୁ ଜୁହାରେ । ୩ ।

ରହିତ ଗୁମାନେ ରଖ ତୁ ସମ୍ମାନେ ବିଡ଼ିଆ ତବକ ବୁହାରେ । ୪ ।

ତୋର ସେ ମୃଗାକ୍ଷି ମୋ ରୁଚକି ସାକ୍ଷୀ ହରୁ ମୋ ହୃଦ ଗୁହାର ରେ । ୫ ।

ଜଗଦ୍ଦେବ ଭାଷେ ରସ ସୁବିଳାସେ ରସନା ମୋ ପରିହାର ରେ । ୬ ।

•

(୧୦୭)

## ରାଗ—ଆନନ୍ଦଭୈରବ

ବନ୍ଧୁଆ ତୁ ମୋ ସବୁ ଭରସା, ନ କର ଦରପଣନିଭ ରସା । ପଦ ।

ଭୂଷ ପଛେ ମୁନେ କରରୁହର, ଏ ଗୁମାନ ପରିକରରୁ ହର । ୧ । ଶ୍ରୀମୁଖ ପରବ-ତୁହିନକର, ଅରୁଣଭାବକୁ ତୁହି ନ କର । ୨ । ବିଅର୍ଥ ଏ ଚନ୍ଦ୍ର କ୍ଷଣଦା ସରେ, ଖେଳା ଚଞ୍ଚଳ ଇକ୍ଷଣ ଦାସରେ । ୩ । ମୁଁ ସାଧ ନୋହିଲେ ତିଆରଣରେ, ମାର ମଦନ ହଟିଆ ରଣରେ । ୪ । ସରିଲାଟି ଅଷ୍ଟଦୁର୍ଗନାଥରେ, ଅନା ଅନା ସୁନାବରନା ଥରେ । ୫ ।

•

(୧୦୭) ଟୀକା—ନିଭ—ତୁଲ୍ୟ, କରରୁହ—ନଖ, ପରିକରରୁ—ଚାକରଠାରୁ, କ୍ଷଣଦା—ରାତି, ତିଆରଣ—ଗାଳି ।

(୧୦୮)

## ରାଗ—କାଫି

ବନ୍ଧୁଆ ରେ ବାରେ ଅନା ରେ । ପଦ ।

ରଦନବାସ, ସଦରହାସ, କରିକରମାନଙ୍କୁ ମନା ରେ । ୧ ।

ଗଜେନ୍ଦ୍ରଗତି, ଗତି ଜଗତୀତଳେ ନାହିଁଟି ତୋହ ବିନା ରେ । ୨ । ନ ସହି ମୋତେ, କହୁ କେ କେତେ, ଧନ ମୁଁ ତୋ ଅଧୀନ ସିନା ରେ । ମୁଁ ତୋର ବୋଲି, ନ ଜାଣେ ଚାଲି, ଆହା କି ମୁଖ କରୁଛୁ ଚୁନା ରେ । ୪ । ଚାରୁ ଶ୍ରୀମୁଖ ସୁଧାମୟୂଖ, ଟେକି କରୁଣା କରୁ କି ନା ରେ । ୫ । କବିଦ୍ୟୁମଣି, ଗିରେ ତରୁଣୀ, ହେଲା ଆଶ୍ଲେଷ ସୁଖ ଘେନା ରେ । ୬ ।



(୧୦୯)

## ରାଗ—କରୁଣଶ୍ରୀ

ବନ୍ଧୁ ରୁଷିଲା, ଅନ୍ଧୂଦର ପରି ପୁରୀ ଦିଶିଲା,

ରାମା ରୁଷିଲା, କାମାନଳମୟ ସବୁ ଦିଶିଲା,

ବାଳା ରୁଷିଲା, ହାଳାହଳ ଜ୍ୱାଳାମୟ ଦିଶିଲା । ଘୋଷା ।

କି କଲା ଆହା ସୁଶ୍ରୋଣୀ, ମୋ ପରମ ସୁଖଶ୍ରେଣୀ, ସ୍ୱର୍ଗ ବଡ଼ଭୀ ନିଃଶ୍ରେଣୀ ଖସିଲା ରେ । ୧ । ଅନଙ୍ଗ ବାଣ ବରଷା, ସଙ୍ଗେ ତ କୁରଙ୍ଗଦୃଶା, ସରୋଷ ଅପାଙ୍ଗଭୂଷା ମିଶିଲା ରେ । ୨ । ତାର ନିଗ୍ରହୁ ମୁଁ ପରି-ବାରକୁ ଡରି ଜୁହାରି-ବାର ନୀରସ ଭଗାରି ହସିଲା ରେ । ୩ । ଦେଖି ନ ଥାଇ ଏ ଭୂତି, ଶିଖାଇ ଦୁର୍ନୀତି ନିତି, କେଉଁ ପିଶୁନ ମୋ ଧୃତି କଷିଲା ରେ । ୪ । ସନ୍ତାପ-ସିନ୍ଧୁକୁ ନବ, ବିଳାସିନୀ ସିନା ପ୍ଳବ, ଶ୍ରୀ ବାଲୁକେଶ୍ୱର ଦେବ ଭାଷିଲା ରେ । ୫ ।



---

(୧୦୮) ଟୀକା—ରଦନବାସ—ଅଧର, ସଦର ହାସ—ଦରହାସଯୁକ୍ତ ।

(୧୦୯) ଟୀକା—ଅନ୍ଧୂଦର—କୂଅଭିତର, ହାଳାହଳ—ବିଷ, ସୁଶ୍ରୋଣୀ—ନିତମ୍ବବତୀ, ବଡ଼ଭୀ—ଚନ୍ଦ୍ରଶାଳା, ନିଃଶ୍ରେଣୀ—ନିଶୁଣି, ପିଶୁନ—ନିଷ୍ଠୁର, ପ୍ଳବ—ନାହା, ପରିଚାର—ଭୃତ୍ୟ ।

## (୧୧୦)

## ରାଗ—କାମୋଦୀ, ତାଳ—ଆଦି

ବନ୍ଧୁ କଲି କି ଦୁର୍ବିଚାରକୁ ରେ, ବର୍ଜିଲି ଖଣ୍ଡ ଅର୍ଜ୍ଜି ଖାରକୁ ରେ ।

ଅକ୍ଷରେ ନ ଜାଣିବା ମୂରୁଖ ପରି ନିଜ ବକ୍ଷରେ ଲକ୍ଷ୍ୟ କଲି ଶରକୁ ରେ । ପଦ ।

ସମ୍ପାଦି ଗୁଞ୍ଜା ଆଣି, ମୁଁ ଫିଙ୍ଗିଦେଲି ପାଣି-ବନ୍ତ ବର୍ତ୍ତୁଳ ମୋତି ହାରକୁ ରେ; ଚଢ଼ାଇ ଦେଲି ଚାରୁତର ଚନ୍ଦନତରୁମୂଳେ କର୍କଟୀଲଟୀ ଛାରକୁ ରେ । ୧ । ଶ୍ୱପଚ ଗ୍ରାମ ମଝି, କୂପରେ ବୁଝି ବୁଝି, କଲି ସ୍ନାନାଦି ବ୍ୟବହାରକୁ ରେ; ନ କଲି ମନୋରଥ ପଥରେ ଭଗୀରଥ ନୃପନନ୍ଦନାନୀରଧାରକୁ ରେ । ୨ । ଟେକି ଠୁକୁଳି ଲୋଷ୍ଟ୍ର, ସର୍ବ ସୁପର୍ବ୍ ଶ୍ରେଷ୍ଠ, ଚନ୍ଦ୍ରଚୂଳ ଦେଉଳ ଦ୍ୱାରକୁ ରେ; ଯବନ-ଜାତି-ଶବ ଭବନ ହେବା ଗ୍ରାବ-କୂଟକୁ କଲି ନମସ୍କାରକୁ ରେ । ୩ । ଅତି ଭାଗ୍ୟ ଅର୍ଜିତ, ଉର୍ବଶୀ ଉରୀକୃତ, ଆଶ୍ଳେଷୁ ଛାଡ଼ି ଅଙ୍ଗୀକାରକୁ ରେ; ବାନରୀ ନେତ୍ରପ୍ରାନ୍ତ ବତାଇବା ସଙ୍କେତ ସ୍ଥଳକୁ କଲି ଅଭିସାରକୁ ରେ । ୪ । ଶିଳାଶୟନୁ ଡର, ନ ଥିବା ଗଉଡ଼ର, ନିମନ୍ତେ ରଖି ତୂଳି ସାରକୁ ରେ; ଶିରୀଷସୁକୁମାର, ମହାରାଜକୁମର କନ୍ଧରେ ବୁହାଇଲି ଭାରକୁ ରେ । ୫ । ଚିରଅଭ୍ୟସ୍ତ ଶସ୍ତ, ସଂସ୍କୃତ କରି ଅସ୍ତ, ବସି ଘୋଷିଲି ଶଶୀଠାରକୁ ରେ; ନ ଭଜି ଚକ୍ରାୟୁଧ, ତରିବି ବୋଲି ସଧ କଲି ସଂସାର ଅକୂପାରକୁ ରେ । ୬ । କବିମିହିର ବୋଲେ ଏପରି ହେଲେ ହେଲେ, କ୍ଷମା ଉଚିତ ପରିଚାରକୁ ରେ; ଦୋଷ ମୁଁ କରିଅଛି, ଲଘିଲି ଯେବେ କିଛି, ତୋତେ ପଣ୍ଡିତା ଅଗ୍ରଗାରକୁ ରେ । ୭ ।

●

## (୧୧୧)

## ରାଗ—ଇମନ କଲ୍ୟାଣ—ଏକତାଳି

ବାଣି ବୀଣାବାଣୀ ଠାଣି ଜାଣିଲା ରେ । ଘୋଷା ।

ଆଳିଙ୍କର ପ୍ରୀତି ପାଳିବାର ରୀତି
ଟାଳିବାର ଧୃତି ନେତ୍ରକୋଣ ଠାରେ । ୧ ।

(୧୧୦) ଟୀକା—ଗୁଞ୍ଜା—କାଇଁଚ, ପାଣିବନ୍ତ—ଢଳଢଳ, କର୍କଟୀଲଟା—କାକୁଡ଼ିଲଇ, ଶ୍ୱପଚ—ଚଣ୍ଡାଳ, ସୁପର୍ବା—ଦେବତା, ଚନ୍ଦ୍ରଚୂଳ—ଶିବ, ଗ୍ରାବକୂଟ—ପଥରଗଦା, ଉରୀକୃତ—ଅଙ୍ଗୀକୃତ, ଆଶ୍ଳେଷ—ଆଲିଙ୍ଗନ, ଶିରୀଷ-ସୁକୁମାର—ଶିରୀଷଫୁଲପରି କୋମଳ, ଶସ୍ତ—ଉତ୍କୃଷ୍ଟ, ଅକୂପାର—ସମୁଦ୍ର ।

ଗଜଗତି ରୁଚି ସଜରେ କରୁଚି
ନଜର ନ କରେ ଅବିବେକ ଛାରେ । ୨ ।
ପଲ୍ଲବକୁ ହରି ଝଲକଇ ଶିରି
ପୁଲକେ ନାଗରୀ ଅଙ୍ଗ ମୋର ନାଁରେ । ୩ ।
ଏହି ଯଉବନ ବହି କିଛି ଧନ
ସହିଲେ ତା' ସ୍ତନ ହେବ ଭାରି ଭାରେ । ୪ ।
ଅଳସ ନ କରି ଚଳ ସହଚରୀ,
କଳଶ ପୀନସ୍ତନାକୁ ଘେନି ଆ ରେ । ୫ ।
ଅଷ୍ଟଦୁର୍ଗେଶ୍ୱର କଷ୍ଟ ହେଲା ଦୂର
ଇଷ୍ଟଦେବ ତାର ଅନୁକ୍ରୋଶ ସାରେ । ୬ ।



(୧୧୨)

## ରାଗ—ଝିଁଝୋଟ, ତାଳ—ଆଠତାଳି

ବାରିଜାକ୍ଷି ମନରୁ ମାନ ବାରି ଦେ ରେ,
ଦେଖ କାଳ ହେଲେ କଳା ବାରିଦେ ରେ । ପଦ ।

ଦାସ ନାଶରେ ମାନସ, ବଳୁଛି ଯେବେ ନାରୀଶ, କରଜନାରାଚ ମାରି ଚିରି ଦେ ରେ । ୧ । ତୋ ଚରଣ ସେବା ଭଳି, ନୋହିଲି ଯେବେ ରେ ଆଳି, ଗାଳି ଦିଆଇ ମହତ ସାରି ଦେ ରେ । ୨ । ଏବେ ବନ୍ଧୁ ଅନାଥରେ, ଦୟା ଥିଲେ ଅନା ଥରେ, କରୁଣା କଟାକ୍ଷ ନେତ୍ରେ ଠାରି ଦେ ରେ । ୩ । ମହିଳାମଣି ଜଗତେ, ତୋ ବିନା ସାହା କେ ମୋତେ, ମାର ମୁଖୁଁ ବଞ୍ଚାଇବି ଗାରି ଦେ ରେ । ୪ । ଦ୍ୱିଜ କବିରବି ବାଣୀ, ଶୁଣି ସେ ରମଣୀମଣି, ସ୍ନେହେ ଦ୍ରବି ବହିଗଲା ବାରିଦେରେ । ୫ ।



(୧୧୩)

## ରାଗ—ଦେଶାକ୍ଷ, ଏକତାଳି

ବାମ-ନେତ୍ର କୋଣେ ମାତ୍ର ଥରେ ମୋତେ ଚାହାଁ ରେ । ଘୋଷା ।
କାହିଁକି ରେ ଜୀବଧନ, ମୋଠାରେ କରୁ ତୁ ମାନ
ଦିନକୁ ତ ଦିନ ଆନ କଲୁ କାନକୁହା ରେ । ୧ ।

ଦୟା ଅଛି ହୃଦେ ପୂରି, ନବନୀତ ସୁକୁମାରୀ
ହେଲାପରି ସୁନାଗୋରୀ କରମ ତ ଲୁହାରେ । ୨ ।
ସହି ନ ପାରଇ ଆଉ, ଏ ମଦନଶର ଦାଉ
ଅତି ଆଶା ଥାଉ ଥାଉ ଟେକି ରଖ ବାହା ରେ । ୩ ।
ଜଳନ୍ତର ନାଥ ଭଣି, ଯୁବରାଜ ଯୁଗ ଶ୍ରେଣୀ
ଘେନ ତୁ ମୋହର ବାଣୀ କହିବୁଟି ଏହାରେ । ୪ ।



## (୧୧୪)

ବାଳା ଯେ କି ତୋ ଭଙ୍ଗୀ
ହେଲା ନି ପରା ବୀର ଅନଙ୍ଗ ସଙ୍ଗୀ । (ପଦ)
ଧରା ପରାଗ ଖେଳୁ ଥିଲୁ ତ କାଲି
ଯେବେ ତ ମତ୍ତଜିତ ଗଜେନ୍ଦ୍ର ଚାଲି । (୧)
ବିମ୍ବରୁ ବଳିଲା ନୀରାଜନାମ୍ବର
ଶମ୍ବରୁ ନ ବଳୁଟି ହୃଦୟରୁ ତୋର । (୨)
ପୂର୍ଣ୍ଣ ମଧୁର ପ୍ରେମେ ପିୟୂଷ ଭରେ
ସୁନା କଳସ ପରି ଯେ କି ତୋ ଉରେ । (୩)
କବି ତପନର ସେ ମନବଳାଇ
ରାଜି ତପନୀୟ ହସି ଗଲା ପଳାଇ । (୪)



## (୧୧୫)

### ରାଗ—ବିହାଗ—ଏକତାଳି

ବାଳା ରେ, ତୁ ମୋ ଗଳାମାଳା,
ସହିବ କେହି ଦୁଃସହ ବିରହଜ୍ୱାଳା । ଘୋଷା ।
ଏକେ ତ ଅତି ସୁକୁମାରୀ, ରାଜକୁମାରୀ
ତହିଁ ପୁଣି ନବ କିଶୋରୀ ଚାଲି,
ଅଭିନବ କଦନ, ଥାଉ ଶଠ ମଦନ, ଦାଉ ସହି ଜୀବନ
ଆଉ କି ରଖିବ ବାଳା । ୧ ।

ଚାହିଁ ଚାହିଁ ମୋ ଆଗମନ, ହେବଣି ବିମନ

ନିଦ୍ରା ବିହୁନରେ ତା'ର ନୟନ,

ଆହାର ହେବ ଦୂର, ହାର ପରାୟେ ନୀରଧାର ପଡ଼ିବ ଉର,

ସାରା ପହର ପୂର କାରା ତୁ ମଣିବୁ ବାଳା । ୨ ।

ବେଢ଼ ବସି ସଖୀ ସକଳ, ହେବେ କି ବିକଳ,

କେତେ କରୁଥିବେ ଶୀତଳ

ଆହାର ହେବ ଦୂର, ଆହାର ଲାଗି ଘୋର, ଆହା ରବରେ ଘର—

ବାହାର ପୂରିବ ବାଳା । ୩ ।

ଅଙ୍ଗ କୃଶ ତ ଭଜିବ, ଶୋଭା ତେଜିବ, ବେଶଭୂଷଣ କାହିଁ ଯିବ ।

ହା ବରକଣ୍ଠୀ ମୋର, ଆହାଦର କରିବ, ହା ବର କରି ପର

ପାଦରେ ଲୁଟିବ ବାଳା । ୪ ।

ହରିଚନ୍ଦନ ଜଗଦ୍ଦେବ, କହଇ ଦେବ-ଦେବ କରୁଣା ଯେବେ ହେବ,

ମଜ୍ଜାଇ ଶରତେ ସେ, ଛାଇପରି ତା' ପାଶେ, ଥାଇ ପାଦ ସାରସେ

ପାଇବି ମୋକ୍ଷକୁ ବାଳା । ୫ ।



(୧୧୬)

## ରାଗ—ସଦର

ବିପରୀତ ରତେ ଗୋ, କିପରି ତରୁଣୀଜନେ ପ୍ରବଳନ୍ତି ସତେ ଗୋ । ପଦ ।

ଏକା ପ୍ରଦୀପରୁ ଭୟ ଜନମି ଅମିତେ ଗୋ, ଠଉରି ଯେ ନୋହେ ପ୍ରାଣ ପ୍ରଣୟି-ପୂରତେ ଗୋ । ୧ । ତଳପକୁ ଧରି ନେବାବେଳେ ଅସମ୍ମତେ ଗୋ, ହରି ହରିଣୀକି ନେଲା ହୁଅଇ ପରତେ ଗୋ । ୨ । ସମ୍ଭାଳି ନୋହିଲେହେଁ ବିକାର କଦାଚିତେ ଗୋ, ଚୁମ୍ବାଇ ନୁହଇ ମୁଖ ଚୁମ୍ବନ୍ତି କେମନ୍ତେ ଗୋ । ୩ । ମୁଁ ହେଲେ ରହିଲା ପରି ନୁହଇ ଜୀବିତେ ଗୋ, ଦୁକୂଳାଡ଼ମ୍ବର କିଛି ମୁକୁଳା ହୁଅନ୍ତେ ଗୋ । ୪ । କଳାପ କିଙ୍କିଣୀ ସୁର ଡିଣ୍ଡିମ ବିରତେ ଗୋ, ପଳାଏ କେ ଲାଜେ କହେ ଜଗଦ୍ଦେବ ଗୀତେ ଗୋ । ୫ ।



(୧୧୭)

## ରାଗ—କାମୋଦୀ—ଆଡ଼ତାଳ

ବୀଣାବାଣୀ ଏ କି ରେ, ଜଣାଇଲା କେ କି ରେ
ଘେନି ବସିନ୍ତୁ ମୁଖଚନ୍ଦ୍ରକୁ ନ ଟେକି ରେ । ଘୋଷା ।
ଖଳ ଶୁଖିଲାଟି ଦେଖି ବଳ ଅଛି ଆଉ କି
ଦଳ କଦଳୀର ସହେ କଳମର ଦାଉ କି । ୧ ।
ଲେଶେ ହେଲେ ଦୋଷ ଏକଦେଶେ ନାହିଁ ମୋହର
କେ ସେ କି କହିଲା ଚିତ୍ତରେ ବେଶେ ହେଲା ଓହର । ୨ ।
ପାନ କରି ନାହିଁ ନେତ୍ରେ ଆନ ମୁଖ-ଶୀରିକି
ସାନ ଲୋକ ଜାଣିଶୁଣି ମାନକୁ ଆଚରିକି । ୩ ।
ସ୍ୱ ଚାକରକୁ ମଦନୁ ବଞ୍ଚାଇବୁ ନାହିଁ କି
ନଚାଇ ଭୂରୁକୁ ଆଜି ନ ଚାହିଁଲୁ କାହିଁକି । ୪ ।
ବାସପରି ବିଭାବରୀ ବାସରେ ତ ରହିଛି
ରସରସିକାର ତ ମୁଁ ଦାସ ବୋଲି କହିଛି । ୫ ।
ଦଣ୍ଡ ପଛେ ମତେ କରି ଖଣ୍ଡ ଖଣ୍ଡ କରଜେ,
ମଣ୍ଡନା ଭୂମଣ୍ଡନା, ତୁ ଗଣ୍ଡ କର-ନୀରଜେ । ୬ ।
ଅଗନିଭଞ୍ଜନା ଶୁଣି ମନୁ ମାନ ନାଶିଲେ
ଜଗଦ୍ଦେବ ଶ୍ରୀ ହରିଚନ୍ଦନ ନୃପ ଭାଷିଲେ । ୭ ।



(୧୧୮)

## ରାଗ—କାଫି

ଭାସିଲିଟି ଆସି ଦରହାସି ଥରେ ରଖ ରେ । ପଦ ।

ନିଧୁବନବିଚକ୍ଷଣା, ଜାଣି ତୋ କରୁଣା ଊଣା, ମାରି ଗିରୀଶାରି ମୋତେ ସାରିଦେଲା ଦେଖ ରେ । ୧ । ଶରଣ ତୁହିଟି ବୋଲି, ଚରଣକଞ୍ଜ ଧଇଲି, ଚାହିଁଲୁ ନାହିଁ

(୧୧୮) ଟୀକା—ନିଧୁବନବିଚକ୍ଷଣା—ରତିପଣ୍ଡିତା, ଗିରୀଶାରି—କନ୍ଦର୍ପ, ଭୀରୁ—ହେ ଭୟାଳୁ, ହାସସମୁଲ୍ଲାସ—ହାସବିଳାସ, ହସି ଦରେ—ଅଳ୍ପହସି ।

ଧନ କାହିଁକି ଏ ଦୁଃଖରେ । ୨ । ନ ଶୁଣି ମୋ ଚାଟୁବାଣୀ, ଗଣ୍ଡଦେଶେ ମଣ୍ଡି ପାଣି, ଭୀରୁ କି ମତିରୁ ମହୀ ଚିରୁଅଛୁ ନଖରେ । ୩ । ଧରୁଛି ପଲ୍ଲବ କର, ଏବେ କୃପା ଲବ କର, ହାସ ସମୁଲ୍ଲାସ ପରକାଶ ବିଧୁମୁଖରେ । ୪ । ଆରେ ନବୀନ ବନିତା, ଲଗାଇଣ ପ୍ରୀତିଲତା, କାଟିପକା ନାଟୀ ସେ ଏକାଠି ସବୁ ସୁଖରେ । ୫ । ଅଷ୍ଟଦୁର୍ଗନାଥ ଶିରେ, କଷ୍ଟ ନାଶି ହସି ଦରେ, ଧରାଶିରହୀରା ଆସି ବିରାଜିଲା ପାଶରେ । ୬ ।



(୧୧୯)

## ଫୁଲତୋଳା—ବୃନ୍ଦ

ମଦନ ଅମଳେ ବାଇପରି କେ ଯୁବତୀ,
ଆଚରଇ ପ୍ରଳାପରେ ସ୍ୱୟଂ ଦୂତୀ ରୀତି । ୧ ।
କେଉଁ ପଥିକକୁ ପୁଚ୍ଛେ କି ହେ ପାଟଯୋଷୀ,
ବୃଝ କି ଯୋଗ ଆଜ ମୋ ପତି ପରବାସୀ । ୨ ।
କର ରମଣୀ ପାଣିରେ ଯାଇଅଛି ପଡ଼ି,
ମିଳିବ ପରା ବୁଝିବା ଥରେ ଥାପ ଖଡ଼ି । ୩ ।
ଚରମ ଅଚଳେ ପରବେଶ ହେଲେ ରବି,
ଯୁବା କୋଳ ବାହାରେ ମୁଁ ନିକି ବରତିବି । ୪ ।
ଆଗରେ ଟେକିଛି ପୟୋଧର ବରଷିବ,
ଛାଡ଼ିଯିବ ଯେବେ ଏଥେ ରହିବ କି ଜୀବ । ୫ ।
ଅନା ଅନା ନେତ୍ରାଞ୍ଚଳେ ପିଇଦେଲା ପରି,
ଅଧର ମଧୁ ପି'ବାରେ ଧରି ପରନାରୀ । ୬ ।
ଶୁଣିଣ କୁହାର ତୁଲ୍ୟ କଲା ପାନ୍ଥଯୁବା,
କହେ ଅଷ୍ଟଦୁର୍ଗ ସ୍ୱର୍ଗ ନଗରେ ମଘବା । ୭ ।



(୧୨୦)

## ରାଗ—ତୋଢ଼ି ପରିଜ—ଆଦିତାଳ

ମଦନ ଗୁମାନ କେତେ ଦେଖାଉ ?
ଅମାନବତୀ ତ, ହେଲାଣି ମୋ ମିତ, ନ ମାନଇଁ ତୋତେ ଆଉ । ଘୋଷା ।
ଭୂରୁ ନୀଳସୂନ,—ଚାପରେ ଅଞ୍ଜନ, ମିଳିନ୍ଦମାଳା ସିଞ୍ଜନୀ
ନେତ୍ରଅନ୍ତ ଅରବିନ୍ଦ ମୁଖ ତାର ସାଜିଲା ନିଜେ ମୋ ଧନୀ । ୧ ।
ରସା ବିଦୂଷାର, ମୁଖେ ମିଶି ସାର, ପ୍ରସାଦି ଇନ୍ଦିରା ପାଳି
ପରବ ଶର୍ବରୀ-ବର ଗରବ ମୂଳରୁ ଦେଲାଣି ଟାଳି । ୨ ।
ଯଉବନ ତୋର ଛଡ଼ାଇନେବାକୁ ପଡ଼ିବାରୁ ଆଲୋଚନା
ପିକରବ ପରି ପ୍ରିୟ ସହଚରୀନିକର ବାଚ ରଚନା । ୩ ।
ଗଉରଦେହା ସଉରଭ ସାର କଳା କୁନ୍ତଳ ତମାଳେ
କୁସୁମ ସମୟ ଗିର ସମୁଦୟ ପ୍ରବେଶ ହେଲାଣି ବଳେ । ୪ ।
ସଖୀଏ ବିଶେଷ ବିରଚନ୍ତେ ବେଶ ଗେଲେ ବୋଲିବାର ଉହୁଁ
ମତ୍ତ ଅଷ୍ଟପଦ ନିଚୟ ନିନାଦ ଶ୍ରବଣେ କି ଶୁଣି ନାହୁଁ । ୫ ।
ବୋଲିଅଛୁ ସିନା ଚନ୍ଦନ ବାସନା ବହିବା ମନ୍ଦ ସମୀରେ
କବିରବି ଭାଷେ ତୋ ସମର ଶେଷେ ସହି ହେବ ବଶ ମୋରେ । ୬ ।



(୧୨୧)

## ରାଗ—ଭୈରବୀ—ଆଡ଼ତାଳି

ମଦନ ମୁକୁରନିଭ ବଦନ ଭଲା ରେ । ଘୋଷା ।
ମୋ ଧନର ହୀରାପରି, ପଦନଖର ମାଧୁରୀ
ରଦନରେ କୁନ୍ଦଶିରି ସଦନ କଲା ରେ । ୧ ।
ଉଚ୍ଚ କମନୀୟ ଗିରି, ସୂଚକ ପୀବର ଭାରି
କୁଚ କଳଶରୁ ହାରି ରୁଚକ-ଗଲା ରେ । ୨ ।

ଖ ଲୋକରେ ଆଉ କାହିଁ, ପଲକ ପଡ଼ିଲା ନାହିଁ
ଭଳ କରି ଦେଲେ ଚାହିଁ ଝଲକ ଝୁଲାରେ । ୩ ।
ହସାର ସାକ୍ଷୀ ପୀୟୂଷ, ଆଶାର ସାରସଦୃଶ
ଭାଷା ରସାରମ୍ଭେ ହସ ନାସିକା ଫୁଲାରେ । ୪ ।
ଅଷ୍ଟଦୁର୍ଗ ନାଥ ଭାଷେ, ଇଷ୍ଟଦେବଙ୍କ ସନ୍ତୋଷେ
ଦୁଷ୍ଟତର ମୋହର ସେ କଷ୍ଟ ଘରିଲା ରେ । ୫ ।



(୧୨୨)

## ରାଗ—ବଙ୍ଗଳାଶ୍ରୀ

ମଧୁର ସମୟ ହେଲା ବନେ ବନେ ବରଷିଲା ମଧୁରସ
ପରବ ସମ୍ପୂର୍ଣ୍ଣ ସୋମବଦନାଏ ହେଲେ ସୋମ ପରବଶ । ୧ ।
ଧାତୁକିନୀ ଫୁଲ ଦେଖି ନ ଗଲା କାହାର ଶୁଖି ଧାତୁକି କି
ନିଆଳୀକି ଚାହିଁ ଭଲେ କାମିନୀଏ ଦୂତୀ କଲେଣି ଆଳିକି । ୨ ।
ମଦନରଣକୁ କ୍ଷିପ୍ର ସଜହୋଇ ହୋଇଲେ ପ୍ରମଦ ନର
କରକରଦନା ରତବେଳେ ବୋଲେ ହେ "ଜୀବିତ କର କର" । ୩ ।
ରସମୟ ସବୁ ସ୍ୱାନ୍ତ କରିଦେଲା ତ ବସନ୍ତ ରସମୟ
କିଶଳୟଓଷ୍ଠୀ ଭାଷେ ରତିବନ୍ଧୁ ଥିଲେ ପାଶେ କିଶଳୟ । ୪ ।
ପରଦାରେ କ୍ଷଣେ କ୍ଷଣେ ରସି ଛପନ୍ତି ତରୁଣେ ପରଦାରେ
ଶରଧାରେ ନେତ୍ର ପ୍ରେମ କଲେ ମର୍ମ କାଟେ କାମ ଶର ଧାରେ । ୫ ।
ବକୁଳ କୁଞ୍ଜରେ ରସବତୀ କେ ଅନାଇ ପ୍ରସବ କୁଳକୁ
ମୁକୁଳକୁ ଚାହି ଚିତ୍ତେ ଚୂତେ ପାଳିକି କେମନ୍ତେ ମୁକୁଳକୁ । ୬ ।
ମରମ ବ୍ୟାଜେ କହେ ଆରେ ବିରହୀ ନିବହେ ମରମର
ଭର ମରନ୍ଦ ପରବ ବହିଛି ପ୍ରବାସୀ ଯୁବ ଭରମର । ୭ ।
ମରୁତର ବୋଲାଇ କେ ପଲ୍ଲବ କମ୍ପନା ଲୋକେ ମରୁତରୁ
କରୁ ତରୁଣୀର ଭୂଷା ଗଳିପଡ଼େ ତରୁଣୀ - ପିକ ରୁତରୁ । ୮ ।

ଝରଝର ହୋଇ ରସେ କେ ବୋଲେ ଆଣିଲା ଚିତ୍ତ ଜରଜର
ସରସର କଳେବର ହେଲା ରତି ଖେଦ ସ୍ୱେଦ ସରସର । ୯ ।
ତାତପରି ଜଗଦେବ ଦେବ ଭବ ପରିଭବ ଜାତ ନୋହୁଁ
ସାନୁଗ୍ରହ ହୁଅ ନିତି ଏ ଭୂପତି ଜଗଦ୍ଦେବ ସୁଖୀହେଉ । ୧୦ ।

●

(୧୨୩)

## ରାଗ—ଭୂପାଳ—ଏକତାଳି

ମନ ମୋହନ ମନ୍ତର ତୋର ଭଙ୍ଗୀ
ଆରେ ପ୍ରାଣସଙ୍ଗି । ଘୋଷା ।
କୃପାରେ ମାନସ ରଖାଇଲୁ, ଭୁଜେ ଭୁଜବନ୍ଧା ଶିଖାଇଲୁ,
ଅଳପ ଅଳପ ବଞ୍ଚାଇଣ ବିମ୍ବଅଧରରୁ ମଧୁ ଚଖାଇଲୁ । ୧ ।
ବ୍ରହ୍ମଜ୍ଞାନୀ ଯୋଗୀ ଯୋଗଭୁଲା, ତିଳସୁମନସ ନାସାଫୁଲା,
ପଦ ପଦକରେ ଯାଚି ଦେଉଥାଏ ଶକ୍ରପଦ ମଣିନଥ ଝୁଲା । ୨ ।
ସନ୍ତାପ-ସରିତ ଶୁଖାଇଲୁ, କରେ ପୟୋଧର ରଖାଇଲୁ,
ହେମ ପଣାସାର ପଲ୍ଲବପାଳିରେ ପଚାଇବା ରୀତି ଶିଖାଇଲୁ । ୩ ।
ଅଷ୍ଟଦୁର୍ଗପତି ଭାବେ ଭୋଳେ, ଚକ୍ରବର୍ତ୍ତୀ କଲୁ ଯୁବାକୁଳେ,
ଦାନୀ ହୋଇ ଅଭିମାନୀ ହେଲୁ କାନିପଣନ୍ତେ ପବନ ଯେତେବେଳେ । ୪ ।

●

(୧୨୪)

ମନ ମୋହନ ମନ୍ତର ତୋର ଭଙ୍ଗି ରେ, ଜୀବସଙ୍ଗୀ ।
ଅବନୀ ବନିତା ପଦ କରେ
ପଦକରେ ଯେହୁ ବାଦ କରେ,
ଧରି ସାର୍ଥ କରେ କରକି ମୋକର
ହସ ମିଶା ଭାଷା ପଦକରେ । ୧ ।

(୧୨୪) ପଲ୍ଲବ ପାଳିରେ—ନବପତ୍ର ସମୂହରେ, ପଦ୍ମରାଗ ମଣି—ରକ୍ତବର୍ଣ୍ଣ ମଣି, ଦାନୀ—ପ୍ରୀତି ଦେବାରେ ଦାନୀ, ପବମାନେ—ପବନରେ ।

ସନ୍ତାପ ସରିତ ଶୁଖାଇଲୁ
ଭୁଜ ବନ୍ଧାବନ୍ଧି ଶିଖାଇଲୁ
ଅଳପ ଅଳପ ବଂଚାଇ ବଂଚାଇ
ବିମ୍ବାଧରୁ ମଧୁ ଚଖାଇଲୁ । ୨ ।

କୃପାରେ ମାନସ ରଖାଇଲୁ
କରେ ପୟୋଧର ଲଖାଇଲୁ
ହେମ ପଟା ସାର ପଲ୍ଲବ ପାଳିରେ
ପଟାଇବା ରୀତି ଦେଖାଇଲୁ । ୩ ।

ବ୍ରହ୍ମଜ୍ଞାନ ଯୋଗ ଭଙ୍ଗି ଭୁଲା
ତିଳ ଫୁଲଜିତ ନାସା ଫୁଲା
ଖର୍ବ ଖର୍ବ କରି ଜାଚି ଦେଉଥିଲା
ପଦ୍ମ ରାଗମଣି ନଥ ଝୁଲା । ୪ ।

ଅଷ୍ଟଦୁର୍ଗ ପତି ଭାଷେ ମନେ
ଚକ୍ରବର୍ତ୍ତି କଲୁ ଯୁବାଜନେ
ମାନିନୀ ରେ ଦାନୀ ସାଜିଲୁ ଯା କାନି
ପଶନ୍ତ ସଂଚାଳ ପବମାନେ । ୫ ।

●

## (୧୨୫)

## ରାଗ—ପୂରବୀ

ମନ ମୋହୁଚି ରେ ! ରସବତୀ ନବବାଳା,
ଜନ ନେତ୍ର ମନ—ଖଞ୍ଜନ ପକ୍ଷୀର ଅଠାକାଠି ଯା'ର ଡୋଳା । ୦ ।
ବିରାଜି ଆସୁଚି ଶ୍ରୀମୁଖମଣ୍ଡଳ ପୂର୍ଣ୍ଣଚନ୍ଦ୍ରମାକୁ ବଳି;
ଖେଳାଇ ନୟନ ଚାହିଁଦେବା ମାତ୍ରେ ଦମ୍ଭ-ଗିରି ଦିଏ ଟାଳି । ୧ ।
ଟେକି ଆସୁଅଛି କେଡ଼େ ଆରମ୍ଭରେ କୁନ୍ଦନ ଫରୁଆ-ସ୍ତନ !!
ହୃଦ-ତଡ଼ାଗରୁ ପଦ୍ମକଢ଼ି ପରି, କଲି ଏହି ଅନୁମାନ । ୨ ।

(୧୨୫) କୁନ୍ଦନ ଫରୁଆ—ସୁନା ଫରୁଆ, ତଡ଼ାଗ—ବଡ଼ ପୋଖରୀ, ବଳାରାତି ପଦ—ଇନ୍ଦ୍ରପଦ, ଛେଦ—ଖଣ୍ଡ ଖଣ୍ଡ ।

ଅଳପ ଅଳପ ହସୁଥିଲା ବେଳେ କି ଭାବ ମନରେ ଘେନି
ମୁନିଙ୍କ ତପସ୍ୟା ଶୂନ୍ୟ ହୋଇଯିବ ପଡ଼ିଗଲେ ନେତ୍ର ବେନି । ୩ ।
ଚାଲିଯିବାବେଳେ ଝୁଲି ଧୀରେ ଧୀରେ ଭୁଲିଯାଉଚି ମାନସ;
କେ ବଶ ନୋହିବ ବେଳେ ଦେଖି ? ତା'ର ପାଶେ ହୋଇଥିବ ଦାସ । ୪ ।
ରତି ଦେବାକାଳେ ବଳାଇ ପୀରତି ତୁଛ ବଳାରାତି ପଦ
ଢଳନ୍ତର ନାଥ ଭାଷେ ମନମଥ-ମଦ ନୋହିବ କି ଛେଦ ? । ୫ ।

•

## (୧୨୬)

ମରୁଆ ଗୋ, ଏ ବୟସେ ସହିବ କେ ? ସେ 'ସଧ' ଲେଶେ ଗୋ ! । ୦ ।
ପ୍ରିୟ ଚୁମ୍ବନ ମୁଁ ଭରଜି ନାହିଁ ଜନମୁଁ;
ଲାଗିବାକୁ ଲାଜ, ସେ କି ବଣିଜ ? । ୧ ।
ପରିରମ୍ଭ କଥା ଶୁଣିଲେ ମୋ' ଅଙ୍ଗ ବ୍ୟଥା;
ତେଡ଼େ କଲବଲ ନୋହିଲେ ଭଲ ! । ୨ ।
ଡ଼ରୁଚି ମୁଁ ଶୁଣି, କରଜ ଲୋଚାକେ ପୁଣି
ବିଦାରନ୍ତି ଆଗ, ଏ କି ସୁଆଗ ? । ୩ ।
ନୋହିଲେ ନୋହିବ ନବ ସଙ୍ଗ ଅନୁଭବ,
ରହିବି ମୁଁ ଲୁଚି, ଏବେ ଯାଉଚି । ୪ ।
ଭଣେ ଛୋଟରାୟ, 'ସଖୀ' ଦେଖି ବାଳା ଭୟ
ବୋଧି ବୁଦ୍ଧି କହେ "ଉଚିତ ନୁହେଁ" । ୫ ।

•

(୧୨୬) ସଧ—ଦୁଷ୍ଟାମି ବା ଉତ୍ପାତ, ଲେଶେ—ଟିକିଏ ହେଲେ, ଭରଜି ନାହିଁ ଜନମୁ—ଜନ୍ମରୁ ଅଭ୍ୟସ୍ତ ନୁହେଁ, ବଣିଜ—ଆଚାର ବ୍ୟବହାର, ପରିରମ୍ଭ—ଆଲିଙ୍ଗନ, କରଜ ଲୋଚାକେ—ନଖଗୁଡ଼ିକରେ, ବୋଧି—ପ୍ରବୋଧନା ଦେଇ, ବୁଦ୍ଧି କହେ—ବୃଦ୍ଧି ବା ବାଟ ବତାଇ ଦିଏ ।

## (୧୨୭)

## ରାଗ—କାମୋଦି

ମଲି ମଲି ମୋ ଘର ବୁଡ଼ିଲା ରେ !
ବନ୍ଧୁ-କର୍ଣ୍ଣେ କି କାହୁଁ ପଡ଼ିଲା ରେ ? । ୦ ।
ଅପୂରବ ଚୁମ୍ବନ ଦେଲି ମଜାଇ ମନ, ଇନ୍ଦୁ ବଦନ 'ଧନ'
ମୋଡ଼ିଲା ରେ ! । ୧ ।
ମୋ' ପରେ ତା' କୁରଙ୍ଗ-ଦୃଷ୍ଟି କୃପା ତରଙ୍ଗ ଅମିୟ ରସକୁ
ନ ଛଡ଼ିଲା ରେ ! । ୨ ।
କଲେ ମୁଁ ପରିରମ୍ଭ ପୂରୁବ ପରି କୁମ୍ଭ-ଉରୋଜ ଲଗାଇ
ନ ଭିଡ଼ିଲା ରେ ! । ୩ ।
ଅଷ୍ଟଦୁର୍ଗର ନାହା କହେ "ଏ ରସେ ଯାହା
ବାନ୍ଧବୀ ମୋ ଭାବ ଲୋଡ଼ିଲା ରେ !" । ୪ ।



## (୧୨୮)

## ରାଗ—ବେଲାବଳି

ମସାର କେଶା, ସୁବେଶା, ମଶାର କେଶା ରେ !
କୁନ୍ଦ ଦଶନୀ ସିନା ଭୂସାର ଭୂଷାରେ;
ତୋ'ସ୍ନେହ ମୋ' ଦୁଃଖ ରାଶି 'ତୁଷାର' 'ପୂଷା'ରେ । ୦ ।
ପଞ୍ଚ ବିଶିଖ ସୁଖ ପୂରିତ ଗାତ୍ରା, ଚଞ୍ଚଳ ଶଫରୀ ସହୋଦର ନେତ୍ରା,
ବଞ୍ଚନ ପଟୁତର ବଚନ ବିଚିତ୍ରା ! । ୧ ।
ହାଲକୁ ଏ ଭୁବନେ ନ ଥିବ ତ ଗାରେ; ଲାଲ ଅଧର ରୁଚି ନାହିଁ ଜବାରେ;
ଢାଲ ପରି ମଦନ-ଶରକୁ ନିବାରେ । ୨ ।

(୧୨୭) ଟୀକା—କି କାହୁଁ—କୁଆଡୁ କିଛି ଭୁଲ୍ କଥା, ଇନ୍ଦୁବଦନ—ଚନ୍ଦ୍ରମୁଖୀ, କୁରଙ୍ଗ ଦୃଷ୍ଟି କୃପା ତରଙ୍ଗ—ମୃଗନୟନାର କରୁଣା ରୂପକ ଢେଉ, ଛଡ଼ିଲା—ଢାଳିଲା, ପରିରମ୍ଭ—ଆଲିଙ୍ଗନ, ନାହା—ରାଜା ।

ଯା' ସରସିଜମୁଖୀ ପାଶକୁ ଆସେ, ଭାଷଇ ମୃଦୁ ମୃଦୁ ସୁନ୍ଦର ହାସେ;
ନାଶଇ ଶଶି-ମଦ ବଦନ ବିଳାସେ । ୩ ।
ସାରସ ସଦୃଶ ମୁଖେ ଯଦି ଚୁମ୍ୱେ ବାରଣଗତି ପୂରି ଫୁଲ୍ଲ କଦମ୍ବେ,
ହାର ପରି ମୋ'ର ହା ! ହୃଦୟରେ ଲମ୍ୱେ । ୪ ।
ଯନ୍ତରେ ରଟି କହେ କିଙ୍କିଣୀ ବାଜା—"ସନ୍ତତ ରସ ହେ
ଜଳନ୍ତର ରାଜା !
ମନ୍ତର ପରି ଚିନ୍ତି କରିଚିଟି ତାଜା" । ୫ ।



## (୧୨୯)

ମହୀଚମ୍ପାଗଭା ଧନ୍ୟ ଧନ୍ୟ ଶୋଭାନିଧି ରେ ତୁହି କି ମୋ ସଙ୍ଖାଳି,
ଗୋରୀ ପରମାଣୁମଧ୍ୟା ସିନା ଜାଣୁ ପ୍ରୀତି ପଦାର୍ଥକୁ ପରିପାଳି । ପଦ ।

ନାକ ନାଗ ନରଲୋକେ ଅଳଙ୍କାର, ହୋଇଛନ୍ତି ଯେତେ ଲଳନାପ୍ରବର; ମଣୁଛି ମୋ ମନ ସେମାନେଟି ଧନ, ତୋ ଚରଣତଳେ ନିଉଁଛାଳି । ୧ । ହଟି ମୋ କୋଳକୁ ଆସିବାବେଳକୁ ନିନ୍ଦି ଚନ୍ଦ୍ର ମିଶା ଚନ୍ଦନବୋଳକୁ, ଘସି ଘସି ସ୍ତନ ହସି ହସି ତନୁଲତାକୁ ମୋ ଅଙ୍କେ ଦେଉ ଢାଳି । ୨ । ଅଚେଷ୍ଟ ନିଦକୁ ଶରୀରଭେଦକୁ ଇତର ଦମ୍ପତି ନିଷ୍ଠୁର ହୃଦକୁ, ନିମିଷ ଦିବସ ନିଷେଧ ପ୍ରବାସ ବିଧିକି ଦିଆଉଥାଉ ଗାଳି । ୩ । ମୁଁ ତୋ ଚରଣର କହୁ ଭୂଷା ବରବରନା କହି ତୁ ବୋଲୁ ଏହି ଗିର, କୁଚେ କର ତାଡ଼ି ରସନା କାମୋଡ଼ି ଦେଖାଉ କଣ୍ଠ ରତନମାଳି । ୪ । ସତ୍ୟ କହେ ଶିରୀ ଜଗଦ୍ଦେବ ହରିଚନ୍ଦନ ମହେନ୍ଦ୍ର ନବ କିଶୋରୀ ରେ, ତୋ ପ୍ରଣୟ ହୃଦେ ଘେନି ମହାମୋଦେ ଦୁଃଖ ମୁଖେ ମୁଁ ଲଗାଇ କାଳି । ୫ ।



(୧୩୦)

## ରାଗ—ସୁରଟ, ତାଳ—ଝୁଲା

ମହୀମଣ୍ଡନା ତୁ ନ ମାର ମାର ରେ । ପଦ ।

ଘେନ ତୋ ଅବଧାନେ, ରସିଲି ମୁଁ କି ଆନେ, ତୁ ଥାଉଁ ଥାଉଁ ଏ ସଂସାରସାର ରେ । ୧ । ବରଜି ମଣିପୁଞ୍ଜ, ଅରଜିବାକୁ ଗୁଞ୍ଜ, ଶିରୀଷଅଙ୍ଗୀ, ଅଙ୍ଗୀକାର କାର ରେ । ୨ । କିସ ମାନସେ ଭାଳି, କରଜ କଳି ଚାଳି ଭରତି କଲୁଣି ଅଗାର ଗାରରେ । ୩ । କେଳି ଚଞ୍ଚଳତର ନେତ୍ର ଖଞ୍ଜନୁ ନୀର, ବହେ କାହିଁକି ଆହା ଧାର ଧାର ରେ । ୪ । ଆରେ ରତିପ୍ରତିମା, ଆଚର ଏବେ କ୍ଷମା, ବହିବି ତୋ ହୁକୁମ ଭାର ଭାର ରେ । ୫ । ମୋ ଧନ ହୁଅ ରାଜି, ମଦନବାଣ ବାଜି, ହେଲାଣି ମୋ ହୃଦୟ ଆରପାର ରେ । ୬ । ମୋ ସପତଟି ମଥା ଟେକି ଭାଷ ତୁ କଥା, କହେ ଶ୍ରୀ ଜଗଦ୍ଦେବ ବାରବାର ରେ । ୭ ।

•

(୧୩୧)

## ରାଗ—ରେଗୁପ୍ତ—ଏକତାଳି

ମହୀମଣ୍ଡଳେ ମୋ ବନ୍ଧୁ ଜଣେ ରେ । ଘୋଷା ।

ତା ମୃଦୁ ପଦପଲ୍ଲବ ଶୋଭା ବିଭବରୁ ଲବ
ନାହିଁ ନାହିଁ କାହିଁ ରାମାଗଣେ ରେ ॥ ୧ ॥
ହରମଧା ଦ୍ୟୁତିକି କରୀରାଜ ଗତିକି
ସରି ନିକି ରମ୍ଭାପରି ପଣେ ରେ ॥ ୨ ॥
ବିଷ ସୁଧା ଶାୟକ ଶକ୍ର ସମ୍ଭରିଯାକ
ସମ୍ପାଦି ରଖିଛି ନେତ୍ରକୋଣେ ରେ ॥ ୩ ॥
ପ୍ରଣୟ ସୁରବଲ୍ଲୀ ପ୍ରାଣୁ ଅଧିକ ବୋଲି
ପ୍ରୀତି ରୀତିକି ସେ ଏକା ଜାଣେ ରେ ॥ ୪ ॥
ଯେ'ଟି କୋଟି କଳପ ଆଚରିଥିବ ତପ
ଲାଗିବ ତା' ସବାରୀ ଗହଣେ ରେ ॥ ୫ ॥

(୧୩୦) ଟୀକା—ଗୁଞ୍ଜ—କାଇଞ୍ଚ, କାର—କାହାର ? କରଜ—ନଖ, ଅଗାର—ଗୃହ, ଆରପାର—ଅସ୍ତବ୍ୟସ୍ତ, ସପତ—ରାଣ, ଶପଥ ।

ବେଳେ ତା' ଓଷ୍ଠବିମ୍ବ- ଫଳେ ଯେ ଦେବ ଚୁମ୍ବ
ଧନ୍ୟ ଧନ୍ୟ ତା' ଜୀବନ ଜଣେ ରେ ।। ୬ ।।
ବାଳା ସୁଗୁଣ ଛବି ରସିକାପଣ ଭାବି
ଅଷ୍ଟଦୁର୍ଗ—ପୁରନ୍ଦର ଭଣେ ରେ ।। ୭ ।।



(୧୩୨)

## ରାଗ—ତୋଡ଼ି ଜଙ୍ଗଲା—ଏକତାଳି

ମାନିନୀବର ମାନ ମନୁଁ ହର ରେ ।। ଘୋଷା ।।
ମୃଗମଦ ଲୀଳା ଭୃଙ୍ଗୀ ନୋହିଛି ଅଧର ସଙ୍ଗୀ
ନାହିଁ ମୀନନେତ୍ରୀ ପୀନ ପୟୋଧରେ ହାର ରେ ।। ୧ ।।
ଆରେ କାମ ରସସିନ୍ଧୁ ହେବାକୁ ଭାବିଛି ବନ୍ଧୁ
ତୋ ଅଧର ବନ୍ଧୁଜୀବ ଜୀବ ମଧୁକର ରେ ।। ୨ ।।
ଶରଦ ଚନ୍ଦ୍ରମାମୁଖୀ ଆଲିଙ୍ଗନେ କର ସୁଖୀ
ଏ ସମୟେ ଅଭିନବ-ରତ ମନୋହର ରେ ।। ୩ ।।
କିପାଁ ରେ ରମଣୀବର, ତୋ ନୟନ ଇନ୍ଦିବର
ସରଜୁଛି ଏବେ ନିରତରେ ନୀରଧାର ରେ ।। ୪ ।।
ତୋ ବିହୁନେ ଆନେ ମନ କରିପାରେଁ କିରେ ଧନ !
ଅଷ୍ଟଦୁର୍ଗ ବସୁମତୀ ସ୍ୱର୍ଗ ପୁରନ୍ଦର ରେ ।। ୫ ।।



(୧୩୩)

## ରାଗ—ଆନନ୍ଦ ଭୈରବୀ—ଆଡ଼ତାଳି

ମାନସରୁ ଗୁମାନ ବରଜ ରେ ବନ୍ଧୁଆ !
ଦାସର ଅଭିଳାଷ ଉର ବିକାଶ ସରଜ ରେ । ଘୋଷା ।
ତୋ ରସ ପରିଚୟ ସୁଭାଗ୍ୟ— ଭୋଗକୁ ହୋଇବାକୁ ଯୋଗ୍ୟ
ସେବିଛି ହରିଶଙ୍କମୁଖୀ ମୁଁ ଶଙ୍କରଙ୍କ ପଦ-ପଙ୍କଜ । ୧ ।

କା'ର ଗିରକୁ ସାର କରିଛୁ ରେ ବନ୍ଧୁଆ,
ମାର ମଦ ବିକାରର ଉପକାର କରୁଛୁ ରେ
ବାସବ-ମଣି ସଦୃଶ, କେଶ-ପାଶିନୀ ପରିହରି ସୁବେଶ
ଦାସଜନେ ନିରାଶ କରୁଛୁ, ଏ କି ରେ କିଶୋରୀ ରତନ । ୨ ।
ଆରତି ବର-ବାରଣ ଗତି ରେ ବନ୍ଧୁଆ,
ତାରଣ ଗୁଣ ବାରଣ କର ରସବତୀ ରେ
ଆନ ଅଛିଟି ରଦନ ଚେଳ, ପାନ ବିଡ଼ର ଭରସି ଖେଳ
ଆଚରି ପରିହାର ବିଭବ ମୁଞ୍ଚ ଚଞ୍ଚଳାଞ୍ଚଳ ଦୃଶୀ । ୩ ।
ହାସ ଜନିତ ଭାଷ ସମୁଦାୟ ବନ୍ଧୁଆ,
କେବଳ ଜଗଦ୍ଦେବ ବିନୟ ସେବି ହୃଦୟରେ
ମନ୍ଦ ବିକଚ ରୁଚିର କୁନ୍ଦବୃନ୍ଦ ବରଷିଲା ପସନ୍ଦ
ଚନ୍ଦନଶଶୀବାସିତ ତନୁ ସାର ଦାର ଆର ମୂରତି । ୪ ।



(୧୩୪)

## ଡାଳ - ଆଠତାଳି

ମାନ ସୁମନା, କରି ଦେ ମାନସୁ ମନା ରେ । ଘୋଷା ।

ଗିରିସମ ଜାଇରେ ରାମା, ଗିରିସମ ଜାଇ; ଦେଇ ମୁଁ ପାଇଛି ତୋତେ ଗିରୀଶ ମଜାଇ । ୧ । ନାଗରାଜଗତେ ରେ ରାମା, ନାଗରାଜଗତେ; ମୁଁ ତୋର ବୋଲି ବାଜୁଛି ନାଗରା ଜଗତେ । ୨ । ତୋର ପରିକର ରେ ରାମା, ତୋର ପରିକର; ଆଜି ସିନା ରତେ ମୋତେ ତୋର ପରି କର । ୩ । ଫୁଟିଲେ ନିଆଳି ରେ ରାମା, ଫୁଟିଲେ ନିଆଳି; ଜଳପି ଜଳପି ତୋତେ ଫୁଟିଲେନି ଆଳି ରେ । ୪ । ରମ୍ଭାଜରୁ ବସି ରେ

(୧୩୪) ଟୀକା—ହେ ସୁମନା, ମାନସରୁ ଅର୍ଥାତ୍ ମନରୁ ମାନକୁ ମନା କରି ଦେ, ଅର୍ଥାତ୍ ମନରେ ମାନ ରଖନା । ଗିରିସମ ଜାଇ—ପର୍ବତସମାନ ପ୍ରଚୁର ଜାଇଫୁଲ, ଗିରୀଶ ମଜାଇ—ମହାଦେବଙ୍କୁ ସନ୍ତୁଷ୍ଟ କରି, ନାଗରାଜଗତେ—ଶ୍ରେଷ୍ଠ ହାତୀ ପରି ଗତି ଯାହାର, ନାଗରା—ବାଦ୍ୟବିଶେଷ, ଜଗତେ—ସଂସାରରେ, ତୋର ପରିକର—ତୋ ଚାକର, ନିଆଳି—ଫୁଲ ବିଶେଷ, ଫୁଟିଲେନି—ବିକଶିତ ହେଲେଣି ଓ ଥକିଗଲେଣି, ଆଳି—ସଖୀ, ଜଳପିଜଳପି—କହି କହି,

ରାମା ରମ୍ଭା ଊରୁବସି; ଅଙ୍କେ ଥିଲେ ନ ଗଣେ ମୁଁ ରମ୍ଭା ଉରୁବଶୀ ରେ । ୫ । ନବ ସୁରସା ରେ ରାମା, ନବସୁରସା ରେ; ତୁ ପରା ମୋ ଅଙ୍କ ବିନା ନ ବସୁ ରସାରେ । ୬ । ହରିଚନ୍ଦନକୁ ରେ ରାମା, ହରିଚନ୍ଦନକୁ; ଘେନ ଯଥା ବସନ୍ତରେ ହରିଚନ୍ଦନକୁ । ୭ ।



(୧୩୫)

## ରାଗ—କଳିଙ୍ଗଡ଼ା—ନିଃସାରୀ ତାଳ

ମୋ ଧନ ତ ରୂଷିଲାପରି ଦିଶିଲା ରେ ।। ଘୋଷା ।।

କରମ ଅବଳ ହେବାରୁ କେବଳ ରେ
ପୀୟୂଷ ରସରେ ବିଷ ମିଶିଲା ରେ ।। ୧ ।।

ଭ୍ରମେ ମୋ ମାନସ ଛୁଇଁଥିଲେ ଦୋଷରେ
ପ୍ରଭୁ ତ ସେ, କାହିଁକି ନ କଷିଲା ରେ ।। ୨ ।।

ଅନ୍ୟ ପ୍ରୀତି ବିନା ନ ଜାଣେ ନବୀନାରେ
ତା ମନେ ଗୁମାନକୁ କେ ପେଷିଲା ରେ ।। ୩ ।।

ରସମୟ ବିନା ମୋ ସହାଟି ସିନା ରେ
ତାକୁ ରୋଷ ନଛରେ କେ ତୋଷିଲା ରେ ।। ୪ ।।

ମୁଁ ଯେବେଟି ଦୋଷୀ ମତେ ତ ନ ଭାଷିଲା ରେ
ନଖକୁନ୍ତେ ବସୁଧାକୁ ଭୂଷିଲା ରେ ।। ୫ ।।

ଅଷ୍ଟଦୁର୍ଗପତି ଚିତ୍ତେ ଚିନ୍ତେ ନିତି ରେ
ହସି ଅନାଇଁବ କେହି ସୁଶୀଳା ରେ ।। ୬ ।।



ରମ୍ଭାଊରୁ—ରମ୍ଭୋରୁ, କଦଳୀଗଛ ପରି ଊରୁ ଯାହାର, ରମ୍ଭାଉର୍ବଶୀ—ସ୍ୱର୍ଗବେଶ୍ୟା, ନବସୁରସା—ନୂଆରସିକା, ରସା—ପୃଥିବୀ, ହରିଚନ୍ଦନ—ଆଠଗଡ଼ର ରାଜା ଓ ଉତ୍କୃଷ୍ଟ ଚନ୍ଦନ ।

(୧୩୬)

## ରାଗ—ସିନ୍ଧୁ କାମୋଦୀ—ଏକତାଳି

ମୋ ବନ୍ଧୁକୁ ନ ଦେଖି କୋଳରେ ଦେବ ଗିରୀଶାରି ସାରି
ବିଷମ କୁସୁମ ସମୁଦୟମୟ ବାଣଗଣେ ମାରିମାରି ।। ଘୋଷା ।।
ମୋ ବିଚ୍ଛେଦ ଦିନ ଲେଖାରୁ ଭବନ ଦିଶିବନି ଖାରି ଖାରି ।। ୧ ।।
ଘଉଡ଼ କୋକିଳ, ଛପାଅ ବକୁଳ ବୋଲି ନେତ୍ରେ ଠାରିଠାରି
ପ୍ରିୟସଖୀ ତତି ଜଗିଥିବେ ନିତି ପ୍ରହରକେ ଚାରି ଚାରି ।। ୨ ।।
ଅତି ଯତନରେ ହେଉ ନ ଥିବ ତା ନୟନୁ ନିବାରି ବାରି
ବୋଧୁଁ କହିକହି ଆଉ କେହି ସହୀ ରହିବନି ହାରିହାରି ।। ୩ ।।
ପାରୁ ନ ଥିବେ କେ କୃଶାଙ୍ଗୀର ଗିର ନିଜ ପରିବାରୀ ବାରି
ଚାପଲ ନ ଥିବ ତନୁରେ ତା ନବ-ଉରଜ ଯେ ଭାରିଭାରି ।। ୪ ।।
ଏ ଦୁଃଖ ସିନ୍ଧୁରୁ କେବେ କେବେ ପ୍ରଭୁ ପାପତାପ ତାରିତାରି
ଜଗଦ୍ଦେବ ବୋଲେ ରଖିଲେ ରଖିବେ ଅବା ମଦନାରି ନାରୀ ।। ୫ ।।



(୧୩୭)

## ରାଗ—ସିନ୍ଧୁକାମୋଦୀ—ଏକତାଳି

ମୋର ବନ୍ଧୁ ଚିର ପ୍ରବାସରୁ ଗୋ କାଲି କଲେ ଅବଧାନ
ଜାଣି ଦାସୀ ମନ ଆଣିଲେ ମଣ୍ଡନ ସହିତେ ଅନେକ ଧନ ।। ଘୋଷା ।।
ନବୀନ ସୁବେଶ ଛବି ନର୍ମ ହାସ ବିନୟ ସରସ ଭାଷା
ସୁଷମ ସରୋଜରାଜି ଶେଯସଜ କୁସୁମ ସଜଡ଼ା ଖୋଷା । ୧ ।
ଅଳକର ଭଙ୍ଗୀ ତିଳକର ଅଙ୍ଗୀକାର ବାଟିକାରେ ସ୍ନେହ
ଫୁଲମାନଙ୍କର ବାସ ସୁକୁମାରଗୁଣ ବୀରର ବିରହ । ୨ ।
କଳକଣ୍ଠ ସ୍ୱରେ ଭ୍ରମର ଝଙ୍କାରେ ସଙ୍ଗୀତେ ଶ୍ରବଣ ପ୍ରୀତି
ନିବିଡ଼ାଲିଙ୍ଗନ ସରସ ଚୁମ୍ବନ ଅଭିଳାଷ ପରା ରତି । ୩ ।

ଦର ଦରସ୍ମିତ ସୁଧା ପରିଚିତ ନିରଳସ ଚନ୍ଦ୍ରମୁଖ
ମଦ-ଚନ୍ଦନ ଗନ୍ଧବହ ଲହରୀ ଚନ୍ଦ୍ରିକା ସରଶ ସୁଖ । ୪ ।
ଅଳଙ୍କାର ଧନ ଏଥିରୁ ଯେ ଆନ କଳଙ୍କ ପରି ସେ ସିନା
ଅଷ୍ଟଦୁର୍ଗ ମହୀନାଥ ମୋର ସହି, କଷ୍ଟ କରିଦେଲେ ଚୂନା । ୫ ।



## (୧୩୮)

## ରାଗ—ମୁଖାରି

ମୋ'ର କି ବୁଦ୍ଧି ଆଜ ?
'ନୂଆ ସଙ୍ଗମେ' କେହି ଛାଡ଼ିବି ଲାଜ ? । ୦ ।
ସ୍ୱପନେ କାନ୍ତ-ମୁଖ ଅନାଇଁ ନାହିଁ - (ମୁଁ ତ ଅନାଇଁ ନାହିଁ);
'କେଳି-ତଳପେ' ମିଳି ଖେଳିବି କେହି ? । ୧ ।
'ପ୍ରଦୀପ ମାଳା' ଯେବେ ଦେବି ଲିଭାଇ,
ଭାବିବେ ପରା ''ବାଳା ହୋଇଲା ବାୟୀ'' ? । ୨ ।
ତୁଛାକୁ ପୁରୁଷଙ୍କ ଅଧିକେ ଛଟା;
ବିଧାତା କଲା ଆଣି କି ହଟହଟା !! । ୩ ।
'ଶ୍ରୀରାମଚନ୍ଦ୍ର ଛୋଟରାୟ' ଭଣିଲେ—
'ଆଳୀ' କହିଲା, ''ହେବ କରି ଜାଣିଲେ'' । ୪ ।



## (୧୩୯)

ମୋହନୀ ! ଥରେ ଚାହିଁ ଯା ... ରେ
ଚଞ୍ଚଳ ମନୋହର ଅଞ୍ଚଳ ନୟନେ । ୦ ।
'ରସବତୀମଣି' ପଣେ ଉଡ଼େ ବାନା; ଦିବା-ଦୀପ ପରି କରନା । ୧ ।

(୧୩୮) କେହି—କିପରି, କେଳି-ତଳପ—ରତିକ୍ରୀଡ଼ାର ଶଯ୍ୟା, ଛଟା—ଚାତର, ହେବ କରି ଜାଣିଲେ—ସଙ୍ଗମର ସାଧାରଣ ବିଧି ମାନିଲେ କାର୍ଯ୍ୟ ସମାହିତ ହେବ ।

ଦିଶୁଚି କଳାନିଧି ଶ୍ରୀମୁଖ ଶୋଭା, ଦେଖି ଧନ କୁସୁମ ଗଭା । ୨ ।
ସ୍ନେହ ଜର ଜର ଦରହାସ ଲୀଳାରେ ଶରମରେ ଧନ ମଜ୍ଜରେ ! । ୩ ।
'ନବୀନ' ବିଚାରି ଯେବେ ହୃଦୟ ଶଙ୍କେ,
ନ ବିହର ପଛେ ମୋ' ଅଙ୍କେ । ୪ ।
'ଛୋଟରାୟ' ବୋଲେ ମୁଖ ପୋତି ପଳାନା, ଘେନ
ପରିଜନ ମୁଁ ସିନା । ୫ ।



## (୧୪୦)

## ରାଗ—ସାରଙ୍ଗ—ଏକତାଳି

ମୋହନା, ମୋ ଅଙ୍କକୁ ଆସ ରେ ।। ଘୋଷା ।।
ଦୁଃଖନଦ ଭେଳା, ଶୁଚି ସ୍ମିତ ଖେଳା
ମଧୁରାରୁଣ ରଦବାସରେ । ୧ ।
ନୟନରୁ ବାରି, ପ୍ରସରି ନିବାରି
ଭିଡ଼ିଦେ ଥରେ ଭୁଜ ପାଶରେ । ୨ ।
ଖଳଜନ ବାଣୀ, ହୃଦୟକୁ ହାଣି
ରୁଷନା ଧନ ନିଜ ଦାସରେ । ୩ ।
ତୋ ମଣି କଠାଉ, ବହି ଦିନ ଯାଉ
ନ ଛାଡୁ ମୋର ଏ ମୁହାଁସ ରେ । ୪ ।
ଗିର କର ଆହା, ସରିଲିଟି ଚାହାଁ
ମଦନାନନ୍ଦନିଳ ଝାସ ରେ । ୫ ।
ଚୁମ୍ବନ ବିଧାନେ, ମଧୁରସ ଦାନେ
ହର ମୋ ମରମ ପରାଣ ରେ । ୬ ।

(୧୩୯) ମୋହନା—ମନୋମୁଗ୍ଧକାରିଣୀ, ଅଞ୍ଚଳ ନୟନେ—ଆଖି କୋଣରେ, ଦିବା-ଦୀପ—ଦିବସରେ ଦୀପ କ୍ଷୀଣ ହୁଏ, କଳାନିଧି—ଚନ୍ଦ୍ର, ଶରମରେ—ଲାଜରେ, ନବୀନ—ନୂଆ ପ୍ରେମିକ ବା ପୁରୁଷ ଅର୍ଥରେ, ଶଙ୍କେ—ଶଙ୍କା ଆସେ, ପରିଜନ—ସେବକ ।

ବସୁଦୁର୍ଗ ରାଜା ସୁଖେ କର ତାଜା
ରସିଯା' ତଳପ ବିଳାସ ରେ । ୭ ।



## (୧୪୧)

## ରାଗ—ତୋଡ଼ି—ଏକତାଳି

ମୃଦୁହାସୀ ଦାସୀ ସିନା ହେ । ଘୋଷା ।
ତୁମ୍ଭ ସ୍ନେହ ନିଉନ ହେବାରୁ ହେଲା ମ୍ଳାନ
ଏବେ ସେ ଯେବେ ସହି ନା ହେ । ୧ ।
ବିଧି କଲା ବିଧାନ ଅବଧି କଲେ ଆନ
ସୁନା ସେ ତୁମ୍ଭେ ତ ମିନା ହେ । ୨ ।
କେ ଦେଲା ଉପଦେଶ ନ ଥାଇ ଦୋଷ ଲେଶ
ଯୁବତୀ ଜୀବନ ଘେନା ହେ । ୩ ।
ସଜୁଛି ବିରାଗରେ ଅବନୀ ପରାଗରେ
ଯେ ତୁମ୍ଭଠାରୁ ଅଭିନ୍ନା ହେ । ୪ ।
ଏ କେଡ଼େ ଲୋକହସା ତୁମ୍ଭ ଉସଙ୍ଗ-ଭୂଷା—
ହେବାର ସ୍ମିତ ବିହୀନା ହେ । ୫ ।
ଅଷ୍ଟଦୁର୍ଗେଶ ବୋଲେ ତା' ଭୋଗ ଯୋଗ ଥିଲେ
କର ତା ଗୁମାନ ମନା ହେ । ୬ ।



## (୧୪୨)

## ରାଗ—ପଞ୍ଜାବୀ

ଯା ନ ଘେନିଲା ସେ, ଗାନ-ରସିକା ଆଜ ପାନ ମୋ କରୁ ଦରହାସେ । ପଦ ।
ତନୁ ମଧମା ମୋ ସହି, ଅନୁକମ୍ପିଲା ନାହିଁ, ତନୁ କମ୍ପିଲା ଚାହିଁ ତ୍ରାସେ । ୧ ।

ସଢ଼ିଗଲି କେବଳ, ପଡ଼ି ମୁଁ ଚନ୍ଦ୍ରଚୂଳ-ପର-ଶର ଅନଳ ଝାସେ । ୨ । ତୋ କଞ୍ଜ ସୁନ୍ଦର ପଣ ଜିଣାକ୍ଷି ମୋର, କ୍ଷଣ କଲା ଦୂସ୍ତର ମାସେ । ୩ । କେଉଁ ଦୁଃଖେ ଅଧର ଲଭିଲି ବୟସୀର, ମଉଳିଗଲା ଖର ଶ୍ୱାସେ । ୪ । ଅକପଟରେ ମୋର ନ କଲା ତୋଷଭର, ମକରେ ଚିତ୍ର ଫରମାସେ । ୫ । ବଳ କରିଣ ପ୍ରୀତି, ଫଳ ହେଲା ଏ ଗତି, ଜଳଚର ଭୂନାଥ ଭାଷେ । ୬ ।



## (୧୪୩)

## ରାଗ—ଘଣ୍ଟାରବ—ଝୁଲା

ଯା'ର ମନ ଯହିଁକି ରସେ,
ତା'ର ବିନା ତାକୁ ଆନ ନ ଦିଶେ । ଘୋଷା ।
ଦୁଷ୍ଟ ଚକ୍ର ନକ୍ରାଦି ଥିଲେ,
ନିଦାଘ ତପନ ତାପରେ ମଲେ
ଥିଲେ ହେଲେ ଧୀବର ଜାଲେ
ଦେଖୁ ଦେଖୁ ମୀନ ଜଳକୁ ଭୁଲେ । ୧ ।
ପାଶେ ଥିଲେ ସୁର-ସରିତ,
ବଳଇ କି ତହିଁ ଚାତକ ଚିତ୍ତ ?
ହେଲେ ହେଲେ ଅତି ଆରତ
ଘନ ଜଳ ବିନା ତାର ଜୀବିତ । ୨ ।
ଦେଖ ପତଙ୍ଗକୁ କେମନ୍ତ,
ଅନଳ ପାଶକୁ ଧାଏଁ ନିରତ,
ଗଲେ ହେଲେ ତାର ଜୀବ ତ
ଶୋଚନା ଥାଏ କି ତାର କିଞ୍ଚିତ । ୩ ।
କବିରବି ବୋଲେ ଏ ଭାବ,
ଯେ ଯେତେ କହିଲେ କିସ ହୋଇବ ?
ଯାହାର ଯେମନ୍ତେ ସ୍ୱଭାବ
ପ୍ରାଣ ଗଲେ ହେଲେ ଛାଡ଼େ କି ଭାବ ? । ୪ ।



## (୧୪୪)

## ରାଗ——ତୋଡ଼ି——ଆଦିତାଳ

ଘୋଷା, କରିଛୁ ଆଜ ଓଷା କି ରେ ।। ଘୋଷା ।।

ଏ ଘେନି ବେଣୀ ନାହିଁ ଛପି ରହିଛି କାହିଁ
ଆଶାବତଂସ ହେବା ଖୋଷା କି ରେ । ୧ ।
କୁଶବେଷ୍ଟିଆ ଜୁଡ଼ା ଉପରେ ଦୁବ ବିଡ଼ା
ବସନ୍ତରେ ଅକ୍ଷତ ମିଶା କି ରେ । ୨ ।
କେଶ ଦରଶ ମସି ଚନ୍ଦନ ଟୋପି ଶଶୀ
ସିନ୍ଦୂରରଜ ବିନ୍ଦୁ ପୂଷା କି ରେ । ୩ ।
କଣ୍ଠ କଳିତ ମାଳ କଲା ଆଜ ବିରଳ
ପଟିର ପଙ୍କଲେଖା ଭୂଷା କି ରେ । ୪ ।
ଏହି ନିୟମେ ରହି ରହି ମୋ ପ୍ରାଣସହୀ
ପ୍ରବେଶ ହୋଇଯିବ ନିଶା କି ରେ । ୫ ।
ଶ୍ରୀ ଜଗଦ୍ଦେବ ବୋଲେ ଏବେ ମୁଁ ଅଛି କଲେ
ରମ୍ଭୋରୁ ଆରମ୍ଭୁ ତୁ ରୁଷା କି ରେ । ୬ ।



## (୧୪୫)

ଯୋଷାକୁ ରୁଷା କେ ଶିଖାଇଲେ ରେ । ପଦ ।

ନିର୍ଦ୍ଦୋଷ ନିର୍ମଳ, ସୁଧାରେ ଗରଳ, ଗୋଳିଦେଇ ଖଳ କି ଖାଇଲା ରେ । ୧ । ମୋ ନୟନସୁଖ, ବର୍ଦ୍ଧନ ଶ୍ରୀମୁଖ, ପୀୟୂଷ ମୟୂଖ ଶୁଖାଇଲା ରେ । ୨ । ଇନ୍ଦୀବରୁ ନବ, କମଳ ସମ୍ଭବ, କମଳସମ୍ଭବ ଦେଖାଇଲା ରେ । ୩ । କି ରହିବି ଜୀବେ, ଚନ୍ଦ୍ରମାକୁ ଯେବେ, ଅରୁଣ ରାଜୀବେ ରଖାଇଲା ରେ । ୪ । ଦୋଷ ଥିଲେ ମୋର, ଦୟାବତୀବର, କାହିଁକି ଅଧର ଚଖାଇଲା ରେ । ୫ । ଏ ଘେନି ସବ୍ୟଥ, ଅଷ୍ଟଦୁର୍ଗନାଥ, ସୁଖ ମନୋରଥ ଭୋଖାଇଲା ରେ । ୬ ।



(୧୪୬)

## ରାଗ——ଶଙ୍କରାଭରଣ

ରଞ୍ଜ ନୟନ-ଅଞ୍ଚଳ ଘନ ନୀଳ ଦେହରେ
ବଞ୍ଚନ ସମୁଦଞ୍ଚନ ଧନ ସଞ୍ଚୟନୀ କି ସଞ୍ଚ ଭାବି
ଚଞ୍ଚଳ ଘନ ମୁଞ୍ଚ ଘଞ୍ଚ ମୋହ ରେ । ଘୋଷା ।
ଯାନପୁର ବିତାନରୁ ଅଭିମାନ ଛେଦ ରେ
ଆନ ନ କର ସାନ ବଚନ ମାନ ଆଦରେ,
ଜ୍ଞାନ ପଥରେ ଧ୍ୟାନ କର ତୁ ତାନରେ
ମୁନି ମାନନୀୟ ଯାନ ପଦ ନିଧାନ କର ସୁଗାନ ବାଦ ରେ । ୧ ।
କାଟ କଲୁଷ ଥାଟ ଭୟ କବାଟ ସାଜ ରେ
ଘାଟଟି ଏହୁ ବାଟ ନତୁ ଉଚ୍ଚାଟ ହେଜ ରେ,
ପାଟ ନ କର ଭାଟ ପଣର ହାଟକ ନଟ ନାଟରେ
ହେବ ହାଟଟି ଏହି ପାଟ-ଶେଯ ରେ । ୨ ।
ବାରକ ମୋ ନିବାରଣ ମଣ ସାର ନୀତିରେ
ତାର ତନୁକୁ କାରଣ ପରଦାର ଭୀତିରେ
ମାର ଭୟରୁ ବାର ରମଣୀ ଛାର ଉରଜ ଭାରକୁ ତୁ
ହାର କରି ବିହାର ନ କର ଜାର ଭୀତି ରେ । ୩ ।
ଯେ ବର ମଣୁ ସେ ବପୁ କି ତୋ ଦେବ ଶାନ୍ତରେ,
ସେବକୀ ତୁଲେ ନେବ କି କହ ଏ ବନାନ୍ତରେ,
ଭେବଳ ହେଲେ କେବଳ ତୋର ହେବ ଏ ଘେନି ଦେବଦେବ
କେବଳ ଜଗତଦେବ ବଚନେ ସେବ ତା' ଠାରେ । ୪ ।



## (୧୪୭)

## ରାଗ—ପୂରବୀ

ରସନିଧି ଭଲା ଆଚରିଲା ମୋହପରି ବିଧି ରେ । ପଦ ।

କିଙ୍କିଣୀ ତାଳକୁ ରଚୁଥିଲା, ଝୁଲି ଝୁଲି ନଥ ନାଚୁଥିଲା, ନେତ୍ର ପୁଣ୍ୟଫଳ ପାଚୁଥିଲା, ମୋତେ ବ୍ରହ୍ମପଦ ସୁଖ ଯାଚୁଥିଲା । ୧ । ଅଧୋମୁଖେ ରତ୍ନସାନୁ ଥିଲା, ତା ନିକଟେ ସୁଧାଭାନୁ ଥିଲା ତହିଁ ତିଳଫୁଲ ତଳେ ଝଲମଲ ବୁଲାକି ଝୁଲାକି ମାନୁଥିଲା । ୨ । ଆନେ ତା ଚାକିର ଲବ କାହିଁ, ବିବେକ ବାକି ରହିଲା ନାହିଁ, ବିନ୍ଦୁ ବିନ୍ଦୁ ଝାଳ ସୁନ୍ଦର କପୋଳ-ମୁକୁରେ ମକରୀଲୀଳା ଚାହିଁ । ୩ । ବନ୍ଧୁ ମୋ କି ଲାଜ ଭଜୁଥିଲା, ଥରେ ଥରେ ନେତ୍ର ବୁଜୁଥିଲା, ଥରେ ଥରେ ଚାହିଁଦେଇ ଇନ୍ଦୀବରେ ମଦନଦେବକୁ ପୂଜୁଥିଲା । ୪ । ନୀଳ କୁଞ୍ଚିତ କୁନ୍ତଳତତି, ଭଜୁଥିଲା ଅସ୍ତବ୍ୟସ୍ତ ରୀତି, ମିଶୁଥିଲା ଗଭା କ୍ରମରେ ଖସିବା କୁସୁମ ଶ୍ରୀ ଜଗଦେବ ଧୃତି । ୫ ।

•

## (୧୪୮)

## ରାଗ—କେଦାର—ଆଠତାଳି

ରସାତଳଭୂଷା, ନବରସେ ରସା ରେ ।। ଘୋଷା ।।

ଗାଢ଼େ ଭୁଜେ ଭିଡ଼ି ମୋତେ ବିଦାରି କରଜ-କ୍ଷତେ
ଘଷି ଗଣ୍ଡେ ଗଣ୍ଡକୁ ସୁଧା ବରଷା ରେ ।। ୧ ।।
ନଚାଇ ରୁଚିର ବେଣୀ ବଜାଇ କଟି କିଙ୍କିଣି
ମଡ଼ାଇ କୁଚ ଇନ୍ଦ୍ର ପଦକୁ ନସା ରେ ।। ୨ ।।
ରଚି ବନ୍ଧନ ନାଗରୀ ନିଅ ମୋ ମନକୁ ଧରି
ନୀରେ ନୀର ପରି ଅଙ୍ଗେ ଅଙ୍ଗ ମିଶା ରେ ।। ୩ ।।
ପ୍ରେମଭରେ ଯାଇ ମଜ୍ଜି ନିବିଡ଼ ସୁଖକୁ ହେଜି
ଭାଷି ଇଷି ଧନୁ କାମକରୁ ନ ଖସା ରେ ।। ୪ ।।

(୧୪୭) ଟୀକା—ସାନୁ—ପର୍ବତଶିଖର ବା ଶୃଙ୍ଗ, ସୁଧାଭାନୁ—ଚନ୍ଦ୍ର, ଚାକି—ଦୀପ୍ତି, କପୋଳମୁକୁର—ଗଣ୍ଡଦେଶରୂପ ଦର୍ପଣ, ବୁଲାକି—ନାସିକାର ଅଳଙ୍କାରବିଶେଷ, ମକରୀ—ଗଣ୍ଡଦେଶରେ ଅଙ୍କିତ ଚିତ୍ରବିଶେଷ, କୁନ୍ତଳତତି—କେଶସମୂହ, ବୁଲାକି ଝୁଲାକି—ଦଣ୍ଡିର ବୁଲିବା ।

ଅଷ୍ଟଦୁର୍ଗ ଦଣ୍ଡଧାରୀ ଭାଷେ କାମ ପୂର୍ଣ୍ଣକରି
ରସିକ ସଂସାରେ ମୋ ସୁକୃତ ବିଶା ରେ ॥ ୫ ॥

●

(୧୪୯)

## ରାଗ——ତୋଡ଼ି——ଆଦିତାଳ

ରାମା ! ଚାହୁଁ ଯା ନୟନାନ୍ତେ ଅଳପରେ । ଘୋଷା ।
ଟାଳିଦେବି ମୁଁ ଦୁଃଖପାଳି ଫେରାଇ ମୁଖ
ଗାଳିରେ ହେଲେ ପଦେ ଜଳପରେ । ୧ ।
ଖଣ୍ଡ ମଧୁର ବାଣୀ ମଣ୍ଡ ସ୍ତନେ ମୋ ପାଣି
ଦଣ୍ଡ ଦେଲାଟି କୋଟି କଳ୍ପରେ । ୨ ।
ରେ ବିମ୍ବାଧରାବର ସେବି ନିଶାବାସର
ହେବି ମୁଁ ତୋ କିଙ୍କର କଳ୍ପ ରେ । ୩ ।
ଗଜଗତିକି ସ୍ନେହେ ଶ୍ରୀ ଜଗଦ୍ଦେବ କହେ
ପଣ୍ଡିତା ମଣ୍ଡ କେଳି ତଳପରେ । ୪ ।

●

(୧୫୦)

## ରାଗ——ତୋଡ଼ି——ଆଠତାଳି

ରାମାବର, ଜଳଜନେତ୍ରା ହସି ଦେ'ରେ । ଘୋଷା ।
ଚନ୍ଦ୍ର ଚନ୍ଦ୍ରିକା କ୍ଷୀର କୁନ୍ଦ ସୁଧା ହାଣ୍ଡିର—
ପିଣ୍ଡ ଗରବ ମୁଖେ ମସୀ ଦେ'ରେ । ୧ ।
ମନମଥ ମୁକୁର-ମଣ୍ଡଳ ସହୋଦର
ଗଣ୍ଡ ମୋ ଗଣ୍ଡେ ଥରେ ଘସି ଦେ'ରେ । ୨ ।
ମୋ କର କରକଶ କି ତୋ କୁଚ କଳସ
ରସିକା ଶିଖାମଣି କଷି ଦେ'ରେ । ୩ ।
ରତେ ବଳାଇ ମତି ମୋତେ ଇନ୍ଦ୍ର ସମ୍ପତ୍ତି
ମର୍ତ୍ତ୍ୟଲୋକର ଉରୁବଶୀ ଦେ'ରେ । ୪ ।

କହେ ଶ୍ରୀ ଜଗଦ୍ଦେବ ଯେବେ ମୋ ଦୋଷ ଥିବ
ଗଳେ ତୋ ବାହୁଲତା ରସି ଦେ'ରେ । ୫ ।

●

(୧୫୧)

## ରାଗ—କଳିଙ୍ଗଡ଼ା—ରୂପକ ତାଳ

ରାମା ରାଜିଲା, ବିଶ୍ୱଶୋଭାପୁଞ୍ଜ ଗର୍ବ ଗଞ୍ଜିଲା ।।
ନାକ ନର ନାଗ ନଗରୀ ନାଗରୀ ଦରୀ କି ଭଜିଲା । ଘୋଷା ।
ଧରଣୀ ଦେଶରେ ଧାତା ମାନସରେ କି ଚାରୁ ଚିତ୍ର ଉପୁଜିଲା,
ଏ ଘେନି କି ବାଳା ସ୍ୱର୍ଣ୍ଣ ଚମ୍ପାମାଳା ଶମନ ପିତାଙ୍କୁ ପୂଜିଲା । ୧ ।
ସବୁ ଯୁବାଶ୍ରେଣୀ ମନ ଜିଣି ଜିଣି ମଦନ ମଦକୁ ଭଜିଲା,
ଯତୀନ୍ଦ୍ରଙ୍କସାର ସାରିବ ଏଥର ଅମୋଘ ଆୟୁଧ ସାଜିଲା । ୨ ।
ଝଳି ଚାମୀକର କିରଣ ନିକର ପଙ୍କଜାନନୀର ବାଜିଲା,
ଜଗତ ମହିଳା କଳେବର କଳା-କଳଙ୍କ ଛଡ଼ାଇ ମାଜିଲା । ୩ ।
ଇନ୍ଦୁ ଅରବିନ୍ଦ ଇନ୍ଦୀବର କୁନ୍ଦ ମନ୍ଦାର ମଦ ବରଜିଲା,
ମୁଖ ପାଣି ପାଦ ନେତ୍ର ରଦ ରଦବାସ ସେବାକୁ ନ ତେଜିଲା । ୪ ।
ଜାଣିଲି ମୋ ସୁଖ-ଦୀପ ଚାରିମୁଖ ସ୍ନେହ ସଂଯୋଗରେ ତେଜିଲା,
କହେ ଅଷ୍ଟଦୁର୍ଗନାଥ ଶୋଭା ସ୍ୱର୍ଗ-ଫଳ ଭୋଗେ ମନ ମଜ୍ଜିଲା । ୫ ।

●

(୧୫୨)

## ରାଗ—କାଫୀ

ରାମାରାଜ ! ଆଜ ଏ କି ରେ ? । ୦ ।
ନଚାଇ ଭୂରୁ, ନ ଚାହୁଁ ଦୂରୁ
କିପାଁ ଶ୍ରୀଚନ୍ଦ୍ରମୁଖ ଟେକି ରେ ? । ୧ ।

ସହି ! ମୋ ଶାରି ସହି ନ ପାରି
ଛଳେ ଜଣାଇଁ ଦେଲା କେ କି ରେ ? । ୨ ।
ଦେଉଚୁ ସାରି ଶିଳା ପ୍ରହାରି
ଆହା ! କି ସୁଖ-ସୁଧା-ଠେକି ରେ !! । ୩ ।
କେଳତି ପତି-'କାତି' ମୋ' ଛାତି
କାଟି କଲାଟି ଚେକି ଚେକି ରେ ! । ୪ ।
'ହରିଚନ୍ଦନ' ବିନୟ ଘେନ;
ଘେନି ନଚାଅ ଚିଲ୍ଲି-କେକୀ ରେ ! । ୫ ।



## (୧୫୩)

## ରାଗ—ପୂରବୀ—ଏକତାଳି

ରଣୀ ହୋଇଲି ରେ, ଗୁଣି ତୋର ଗୁଣ ଶ୍ରେଣୀ
ଲୁଣି ମଣିଲିଣି ପୁଣି ପୀୟୂଷକୁ ଶୁଣିଲାଦିନୁ ତୋ ବାଣୀ । ଘୋଷା ।
ଦୁଃଖ ଏ ଅକ୍ଷର ଯୁଗଳକୁ ଦୂର କରିବାକୁ ମୋ କପାଳୁ,
ଶଙ୍ଖ-ଲାବଣ୍ୟନିଧି-କଣ୍ଠୀ ତୁ ସ୍ନେହେ ସଙ୍ଖୁଳାଇବାର କାଳୁଁ । ୧ ।
ଚିତ୍ତ କିଣିବାର ରସଗର୍ଭ ଗିର କେତକୀ ଦଳରେ ଲେଖି,
ପେଷିବା ସଙ୍କେତ ଆରେ ମରକତ କେଶୀ ବାଇ ହେଲି ଦେଖି । ୨ ।
ଲୋଡ଼ି ପ୍ରଣୟ ଯା ସଙ୍ଗୀତେ ମୋହରି ଯୋଡ଼ିବାରେ ଗୀତ ଗାଉ,
ବୁଡ଼ି ବସିବା ଦଶନ ଚିହ୍ନଥିବା ବିଡ଼ିଆ ଯାହା ମଗାଉ । ୩ ।
ଗୁରୁଜନ ଚୟ ତରଜନ ଭୟ ଗୁରୁଜି ଡିଆଁଇ ଦୂରୁ,
ଦୃଷ୍ଟି ପୁରନ୍ଦର ରତନ ପ୍ରକର ବୃଷ୍ଟି ମୋରେ କରିବାରୁ । ୪ ।
ବାଞ୍ଛ ମୋ ଚୁମ୍ବନ ଯା ଦନ୍ତ ବସନ ଦଳ ଦ୍ୱୟ ଦେଉ ଠାରି,
ଜଳନ୍ତର ପତି ବୋଲେ ଧନ ପ୍ରୀତି ଜନମେ ଶୁଝି ନ ପାରି । ୫ ।



(୧୫୨) ରାମାରାଜ—ରମଣୀଶ୍ରେଷ୍ଠା, ଶାରି—ସମୃଦ୍ଧି, ଶିଳା—ପଥର, ସୁଖ-ସୁଧା-ଠେକି—ସୁଖ ରୂପକ ଅମୃତ କଳସ, କେଳତି-ପତି-କାତି—କନ୍ଦର୍ପର କଟୁରୀ, ଚିଲ୍ଲି—ଭୂରୁ, କେକୀ—ମୟୂର ।

## (୧୫୪)

ରୁଷାକୁ ସାର ସାରସଦୃଶା ତ ଶିଖିଲା ରେ । ଘୋଷା ।
ମୁଁ ସାହସୁଁ କେଉଁ ଦୋଷ କରିବା ଦେଖିଲା ରେ,
ତୁଷାର-ମୟୂଖ ମୁଖ ମଣ୍ଡଳ ଶୁଖିଲା ରେ ॥ ୧ ॥
ନିଶାରୁ ମୁଁ ହୋଇଛି ଯେ ତା ସ୍ନେହ ଭୋଖିଲାରେ,
ବିଶାରଦା କି କାଳେ ସୁଖ ଉପେକ୍ଷିଲା ରେ ॥ ୨ ॥
କୃଶାଙ୍ଗୀ କି ଶୁଣିଲା ତା ମନରେ ଲାଖିଲା ରେ
କୁଶାଳିରେ କେଉଁ ଖଳ କୃଶାନୁ ଯୋଖିଲା ରେ ॥ ୩ ॥
ସୁସାର ସରସାକ୍ଷର ଥରେ ନ ଭାଖିଲା ରେ
କି ସାରସାତ୍ମଜ ଦୃଷ୍ଟ ଦଶାରେ ଲେଖିଲା ରେ ॥ ୪ ॥
ଭାଷେ ଜଗଦ୍ଦେବ ସ୍ନେହ ଆଉ କି ରଖିଲା ରେ
ରସାଳସାଧର ମୋ ରସନା ନ ଚାଖିଲା ରେ ॥ ୫ ॥



## (୧୫୫)

ରୁଷା ବରଜ ମୃଦୁ କୃଶାଙ୍ଗୀ ଶିଶୁମୃଗଦୃଶାଟି ବିଚକିଳ ହସାଟି ରେ ।
ଭସାଇ ନ ଦିଅ ସରସ ପ୍ରବର ଅଭରସା ଜଳେ ମୋ ଶୁଭ ଦଶାଟି ରେ । ପଦ ।

ପରାଭବରୁ ମୋତେ ଖରାବ ନ କର ରେ ତରାବରମୁଖି ମୁଁ ତୋ ଶାଟୀରେ, ଧରାମାଣିକ୍ୟଝରା ମଦନ କରେ ମରାଇ ହେବୁ ଲୋକହସାଟି ରେ । ୧ । କ୍ଷମାଜଳଧି ଭିଡ଼ି ଜମାଇ ଉରଜ ଭରମାଚଳରେ ନିଅ ନିଶାଟି ରେ, ଗୁମାନକୁ ନୁହଇ ସମାନ ମୁଁ ତୋହର ତମାଳ କିଶଳୟ କେଶାଟି ରେ । ୨ । ମନା ନ କର ସୁନୟନା ସଦୟ ରସ ଅନାଉଣି କି ବରଯୋଷାଟି ରେ, ଅନାଥ ପରି ଦୀନମନା ହେଉଛି ଧନ ଅନାଇ ନତମୁଖ ବସାଟି ରେ । ୩ । ଅକାରଣେ ସଦ୍ୟୁତି, ଚକା ଲପନ ପୋତି, ନ କାନ୍ଦ

(୧୫୪) ଟୀକା—ସାରସ ଦୃଶା—ପଦ୍ମଫୁଲ ପରି ଦେଖା ଯାଉଥିବା, ତୁଷାର ମୟୂଖ—ଚନ୍ଦ୍ର, କୁଶାଳିରେ—ଦୂବଘାସରେ, କୃଶାନୁ—ନିଆଁ, ସୁସାର—ଅତି ଉତ୍କୃଷ୍ଟ, ସରସାକ୍ଷର—ସରସ କଥା, ଭାଖିଲା—କହିଲା, ସାରସାତ୍ମଜ—ବ୍ରହ୍ମା, ରସାଳସାଧର—ରସ ମୁଗ୍ଧା ପ୍ରେମିକାର ଅଧର ।

(୧୫୫) ଟୀକା—ବିଚକିଳ—ମଲ୍ଲୀ ।

ବସୁମତୀଭୂଷାଟି ରେ, ଜକାଜକି ଚୁମ୍ବନ, ସକାମେ ରଚି ଧନ, ପକାଅ ହରି ମୋର ତୃଷାଟି ରେ । ୪ । ରସାଅ ରସରେ ତ ରସା ହେଉଛି ମଧୁରସା ସଦୃଶ ରସକଷାଟି ରେ, ରସାତିଳକ ହରିଚନ୍ଦନ ଦେବ ଗୋରି ତୋ ଚରଣ ଶରଣପଶାଟି ରେ । ୫ ।

•

(୧୫୬)

ରେ କିଶୋରୀ, ଭରସା କରିଚି ତତେ

ଆନନ ଦେଖିଲେ ଆନନ୍ଦେ ଭାସଇ

ଆନ ନ ରୁଚଇ ମତେ । ୦ ।

ଜଗତେ ଜାଣନ୍ତି ଜଗମୋହିନୀ ରେ

ଜଳରୁ ଜାତ ଜଳଜ

ମନ୍ଥର ଗତିରେ ପଥେ ଜାତ କରୁ

କେତେ ବିକଚ ସରୋଜ । ୧ ।

ନୀଳ ଇନ୍ଦିବର ସେହି ଦିନୁ ଜାତ

ଧାତା କଲାଦିନୁ ସୃଷ୍ଟି

ଚାହିଁଣ ଛଟକେ ପ୍ରତି ଦିଗେ ନୀଳ

କୁମୁଦ କରୁ ତୁ ବୃଷ୍ଟି । ୨ ।

ଜମ୍ବୁନଦ ଆଦି ଯେତେ ପୀତ ଦ୍ରବ୍ୟ

ଯେଝା ଅଙ୍ଗେ ଯେଝା ଶୋଭା

ତୋ ତନୁ ଝଟକ ଯହିଁ ପଡ଼ିଯାଏ

ଦିଶେ ସେ ଗଉର ପ୍ରଭା । ୩ ।

ମନ୍ଦ ହାସ ଯୁତ ଭାଷା ପଦେ କହ

ସୁଧା ବସୁଧାରେ ପୂରୁ

ରାମଚନ୍ଦ୍ର ଦେବ ନୃପ ସ୍ୱର୍ଗ ଭୋଗ

ଇଚ୍ଛା ଆଜ ଠାରୁ ସରୁ । ୪ ।

•

(୧୫୬) ଆନନ—ମୁଖ, ଜଳଜ—ପଦ୍ମ, ନୀଳ ଇନ୍ଦିବର—ନୀଳ କଇଁ, ଜମ୍ବୁନଦ—ସୁନା, ଯୁତ—ମିଶିଥିବା ବା ଯୁକ୍ତ ହୋଇଥିବା ।

## (୧୫୭)

## ରାଗ—ତୋଡ଼ିପରଜ—ଏକତାଳି

ରେ ଜୀବନ, ନବମାଳି କଳି କଳି
ନିଖିଳ ବଲ୍ଲରୀ ବଦନ ଚୁମ୍ବନେ ଆରମ୍ଭିଛି ଅଳି ଅଳି । ଘୋଷା ।
ସୁନ୍ଦର ମାକନ୍ଦ ମୁଖରୁ ମରନ୍ଦ ପଡ଼ିବାରୁ ଗଳି ଗଳି
ରବ ଦମ୍ଭେ ପିକ କି ପରିହାସିକ ବୋଲୁଅଛି ଭଳି ଭଳି । ୧ ।
ଚନ୍ଦନ ଚାହିଁ ତୁ ମଦନ ଭସ୍ମାନ ଆସୁଅଛି ଢ଼ଳିଢ଼ଳି,
ଦୀନ ମୁଖେ କେଳି ଶେଯୁ ଯୁବାପରି ଦୁଇଆଖି ଢଳିଢଳି । ୨ ।
କେଉଁ କେଉଁ ଗ୍ରାବ ସମୁଚୟେ ଦ୍ରାବ ଧନଞ୍ଜୟ ଜଳି ଜଳି,
ବନ ମହୀସ୍ଥଳ କରୁଅଛି ନୀଳ ଜୀର୍ଣ୍ଣ ପର୍ଣ୍ଣ ଦଳି ଦଳି । ୩ ।
କୁସୁମ ସମୟ ଲକ୍ଷ୍ମୀ ସମୁଦୟ ପଡୁଅଛି ଝଟି ଢଳି
କାମିନୀଙ୍କ ମନ ଦୁହିଙ୍କର ମନ ଯାଉଅଛି ଟଳି ଟଳି । ୪ ।
ତରୁଣୀ ଶରଣ ଇତର ମରଣ ହେଉ ବୋଲି ଢଳିଢଳି,
ଯୋଗୀଙ୍କି ପ୍ରହାର କରି କାମକର ରହିଅଛି ଫଳି ଫଳି । ୫ ।
ତୋ କୃପା ସକାଶୁଁ ସୁଖେ ବଞ୍ଚେ ବସୁଦୁର୍ଗନାଥ ଛଳି ଛଳି,
ନ ପଚାରେ ପଞ୍ଚ ନାରାଚକୁ ଲାଞ୍ଚ ଦେଲେ ହେଲେ ଥଳିଥଳି । ୬ ।



## (୧୫୮)

## ରାଗ—ତୋଡ଼ିପରଜ, ଏକତାଳି

ରେ ନୀରଦ ଗରଜି ମରୁଛୁ କେତେ,
ଅରଜି ନାହୁଁ ତ ମୋ ବନ୍ଧୁ ଲଳିତ ଭାବ ବିଭବୁଁ କିଞ୍ଚିତେ । ଘୋଷା ।

ଦେଖୁଛୁ ତ ମୋର ବାଳା ପୟୋଧର ଉପରେ ମୁକୁତାହାର, କେଉଁ ବୁଦ୍ଧିବଳେ ଧରାଧରଚୂଳେ ଲମ୍ବାଉ ସଲିଳଧାର । ୧ । ତ୍ରିଭୁବନେ ସରି ଅଛି କି କିଶୋରୀ ଭୂରୁ

(୧୫୮) ଟୀକା—ନୀରଦ—ମେଘ, ପୟୋଧର—କୁଚ, ଧରାଧର—ପର୍ବତ, ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ, କ୍ଷଣପ୍ରଭା—ବିଜୁଳି, ନୀଳଚୋଳାଚ୍ଛନ୍ନ—ନେଳିଆ ଲୁଗାଦ୍ୱାରା ଆବୃତ,

ଖେଳିବା ଦଣ୍ଡକୁ, ଫୁଲୁଅଛୁ କେତେ ଦେଖାଇ ନିରତେ ଇନ୍ଦ୍ରକୋଦଣ୍ଡ ଖଣ୍ଡକୁ । ୨ । କ୍ଷଣପ୍ରଭା କେଳି ଛାରକୁ ସଙ୍ଖାଳି କରି ଫୁଲୁଅଛୁ ଯାହା, ନୀଳଚେଳାଚ୍ଛନ୍ନ ବାଳା ଅପଘନ ଛବିକି ଅଳପ ଚାହାଁ । ୩ । କରିଅଛୁ କେଡ଼େ ଭରସା ନିବିଡ଼ କରକାବଳି ବରଷା, ଦେଖୁଛୁ ତ କୁନ୍ଦଦରହାସୀ ମନ୍ଦ ସୁନ୍ଦର ମଧୁର ହସା । ୪ । ଅସିତ ଗୁଣରେ ମିଶିତ ମୋ ତୁଲ୍ୟ କେହି ନୋହେ କି ବିଚାରୁ, ମୋ ଧନ କୁନ୍ତଳପାଶ ଇନ୍ଦ୍ରନୀଳମୟ ଚାମରରୁ ଚାରୁ । ୫ । ମୁଁ ବଡ଼ ଶୀତଳ ବୋଲି ଏବେ ସ୍ଥୂଳ ଗରବ ଆଣିଛୁ କହୁଁ; ବୋଲେ ବାଲୁକେଶ ଶରଣନରେଶ ବନ୍ଧୁଗୁଣ ଶୁଣି ନାହୁଁ । ୬ ।



## (୧୫୯)

## ରାଗ—ପୂରବୀ—ଆଦିତାଳ

ରେ ମଞ୍ଜୁଳା, ଧରୁଛି କର-ସାରସ,
ନ ଧରିବୁ ଥିବାଯାକ ମୋର ଜବାଅଧରା ତୁ ରୁଷା ବେଶ ॥ ଘୋଷା ॥
କରୁଥାଏଁ ଅତି ପ୍ରୀତିରେ ମୁଁ ନିତି ନିତି ହର ଦରଶନ,
ନିରତେ ତୋ ମୁଖ ପୀୟୂଷ ମୟୂଖ ହୋଇବାକୁ ପରସନ ॥ ୧ ॥
ତୋ ବଦନ ଦରହାସ ଏକା ମୋର କୋଟି କୋଟି ଟଙ୍କା ସୁନା,
ଓଦରେ ନଜରେ ନ ଆଣଇଁ ଇନ୍ଦ୍ରପଦକୁ ଏ ଘେନି ସିନା ॥ ୨ ॥
ମୋର ସୁଖଶିରୀ ରହୁଥାଏ ପୂରି ତୋ ମନ ଉଲ୍ଲାସେ ମିଶି,
ହେଲେହେଁ ବିମୁଖ ବିଷମ ବିଶିଖ ନ ପାରେ ଏଣୁ ଭରସି ॥ ୩ ॥
ସଜବାଜେ ଚିତ୍ତ ଦେଲେ ତୁ ମୁଁ ମତ୍ତ ହେଉଥାଏଁ ମଦେ ଫୁଲି,
ସେ କାଳ ମାଧୁରୀ ଅବଲୋକ କରି କୃତାର୍ଥ ହୋଇବି ବୋଲି ॥ ୪ ॥
ତୋ କୋଳୁ ଅନ୍ତର ହୋଇଥିଲେ, ଦୂର ହୋଇଥାଏ ଭାଗ୍ୟ ମୋର,
ଅଷ୍ଟଦୁର୍ଗ-ସ୍ୱର୍ଗ ମହେନ୍ଦ୍ର କହଇ ଏଣୁ ମୁଁ ଆୟତ୍ତ ତୋର ॥ ୫ ॥



ଅପଘନ—ଦେହ, କରକାବଳି—କୁଆପଥର, ଅସିତ ଗୁଣ—କୃଷ୍ଣତା, କୁନ୍ତଳପାଶ—କେଶଗୁଚ୍ଛ, ଶରଣନରେଶ—ଆଠଗଡ଼ ରାଜା ।

## (୧୬୦)

## ରାଗ—ପୂରବୀ

ରେ ମଦନ, 'ଗୁମାନ' କେତେ ଦେଖାଉ ?
ଅମାନବତୀ ତ ହେଲାଣି ମୋ' ଧନ, ନ ମାନଇଁ ତତେ ଆଉ । ୦ ।
ଭୂରୂ ନୀଳ ସୂନ ଚାପରେ ଅଞ୍ଜନ ମିଳିନ୍ଦ ମାଳା ଶିଞ୍ଜିନୀ
ନେତ୍ର-ସାରସର ଅନ୍ତଃସାର 'ଶର' ସାଜିଲା ନିଜେ ମୋ' ଧନୀ । ୧ ।
ଗଉର ଦେହାର ସଉରଭ ସାର କଳା କୁନ୍ତଳ ତମାଳେ
କୁସୁମ ସମୟ ଶିରୀ ସମୁଦାୟ ପ୍ରବେଶ କଲାଣି ବଳେ । ୨ ।
ରସା ବିଭୂଷାର ମୁଖେ ମିଶି ସାର ପ୍ରସାଦ ଇନ୍ଦିରା ପାଳି
ପରବ ଶରବରୀଶର ଗରବ ମୂଳରୁ ଦେଲାଣି ଟାଳି । ୩ ।
ଲଡ଼ିବା 'ନା' ତା'ର ଛଡ଼ାଇ ନେବାକୁ ପଡ଼ିବାରୁ ଆଲୋଚନା
ପିକ ରବପରି ପ୍ରିୟ ସହଚରୀ ନିକର 'ବଚ' ରଚନା । ୪ ।
ବାକୀ ଅଛି ସିନା ଚନ୍ଦନ-ବାସନ ବହିବା ମନ୍ଦ ସମୀର;
'କବିରବି' ଭାଷେ 'ତୋ' ସମର-ଶେଷେ
ସେ ତ ହେବ ବଶ ମୋ'ର'' । ୫ ।



## (୧୬୧)

## ରାଗ—ତୋଡ଼ି ପରଜ—ଏକତାଳି

ରେ ମିତଣି, ମଜ୍ଜାକୁ ଭେଦଇ ବ୍ୟଥା
ମିତ୍ରଜନମନ ମାତ୍ର କଲେ ମ୍ଳାନ ମାଡ଼ିଯାଏ ପୁଣି କଥା । ଘୋଷା ।
ଦୂରୁ କିରେ ଆଳି ବୋଲି ନ ସଙ୍ଖାଳି ମୁରୁକି ହାସ ବରଜି
ତଳକୁ ମଉଳି କରି ଚ୍ଛଳିକରି ନ କଲେ ହେଲେ ତରଜି । ୧ ।

(୧୬୦) ଅମାନବତୀ—ଅଭିମାନ ଶୂନ୍ୟା, ସୂନ ଚାପରେ—ପୁଷ୍ପଧନୁରେ, ମିଳିନ୍ଦମାଳା—ଭ୍ରମର ପଙ୍‌କ୍ତି, ଶିଞ୍ଜିନୀ—ଧନୁର୍ଗୁଣ ଅର୍ଥରେ, ଅନ୍ତଃସାର—ଭାର ଭଲ, କୁସୁମ ସମୟ ଶିରୀ—ବସନ୍ତ ଋତୁର ସୌନ୍ଦର୍ଯ୍ୟ, ରସା-ବିଭୂଷା—ପୃଥିବୀର ଭୂଷଣ, ଇନ୍ଦିରା—ଲକ୍ଷ୍ମୀ, ପରବ ଶରବରୀଶ— ପୂର୍ଣ୍ଣିମା ଚନ୍ଦ୍ର, ଲଡ଼ିବା—କଳି କରିବା, ବଚ—ଭାଷା, ବାସନ—ସୁବାସିତ କରଣ ।

ଚନ୍ଦ୍ରିକା ଚନ୍ଦନ କଳପିକସ୍ୱନ କୁସୁମ ଭୃଙ୍ଗ ନିନାଦ
ଲାଗେ ବିଷପରି ଦିବା ବିଭାବରୀ ନ ଛୁଅଁଇ ନେତ୍ରେ ନିଦ । ୨ ।
ଉପାୟ ନ କଲେ ଜଣାଯିବ ବୋଲି ଉପାୟନ କିଛି କରି
ଗେଲ ଗିର ଯେତେ କହିଲେ ଲାଗଇ ଛେଲ ବାଜିଗଲା ପରି । ୩ ।
ଡୋଳା କଞ୍ଜଦଳ ଜଳରୁ ତରଳ ହୋଇଯାଏ କାହୁଁ କାହୁଁ
ନୟନେ ନୟନ ମିଶୁଥାଉ ବୋଲି ଯେତେ ଯତ୍ନେ ଚାହୁଁ ଚାହୁଁ । ୪ ।
ଅଧର ଦଳରେ ନଚାଇ ଛଳରେ ମଧୁର ସରସ ବାଣୀ
ଗଉରବମୟ କଲେ ହେଁ ହୃଦୟ ଠଉର ପଡ଼େ ସେ କ୍ଷଣି । ୫ ।
ସ୍ନେହ ପରା ସ୍ୱାଦୁ ଚିକ୍‌କଣ ପଦାର୍ଥ ହୁଅଇ ଯେବେ ଖଦଡ଼
ଅଷ୍ଟଦୁର୍ଗ ନାଥ ବୋଲେ ଦମ୍ପତିକି କଷ୍ଟ ନାହିଁ ତହୁଁ ବଡ଼ । ୬ ।



(୧୬୨)

## ରାଗ——କାମୋଦୀ——ଯତିତାଳ

ରେ ମୋ ଧନ, ତେଜ ମନୁ ଲାଜ
ହେବୁ କି ମୋ ପରି ଆଜ ରେ ।। ଘୋଷା ।।
ବାହୁ ବନ୍ଧ କାଞ୍ଚିବନ୍ଧ ଚାଲନ୍ତେ ମୋଦରେ
ସ୍ୱର୍ଣ୍ଣରମ୍ଭା ପର୍ଣ୍ଣ ଚରମରେ ବେଣୀଫଣୀ ଖେଳିବ ବାଦରେ । ୧ ।
ତିଳ ସମୁଜ୍ଜ୍ୱଳ ନାସା ନୀଳମଣି ଅଳି
ଫୁଲ୍ଲ ଅରବିନ୍ଦ ହାସେ ମକରନ୍ଦ ଆଶାରେ କରିବ ଅଳି ରେ । ୨ ।
ରଦେ ରଦବାସ ଭିଡ଼ିକରି ବିଧୂନନ
ଆଶ୍ଳେଷରେ ଅପଘନେ ଜମି ମୋର ଗଣ୍ଡେ ମଣ୍ଡିବ ଚୁମ୍ବନ ରେ । ୩ ।
କକ୍ଷମୂଳେ ତୀକ୍ଷ୍ଣ ନଖକ୍ଷତ କଲାବେଳେ
ଜଳଧିରୁ ଝସ ଉଛୁଳିଲା ପରି ହେଉଥିବ ମୋର କୋଳେ ରେ । ୪ ।
ରାମଚନ୍ଦ୍ର ଛୋଟରାୟ ବୋଲେ ସେ ରମଣୀ
ପ୍ରତି ଅଙ୍ଗ ଶୋଭା ଦେଖିବାଭୟରେ ମୋ ନେତ୍ର ବୁଜିବ ପାଣିରେ । ୫ ।



(୧୬୩)

## ରାଗ—ଭାଟିଆରୀ

ରେ ମୋ ଜୀବନ, ମୁଁ କି ମୀନ ମୀନନେତ୍ରା ତୁ ମୋ ଜୀବନ ରେ,
ମୋର ମାନସ ବିହଗରାଜିବନ । ଘୋଷା ।

ସାକରସାର ମଧୁରଭାଷୀ, କାକରକରକିରଣହାସୀ, ନାକରମଣୀକି ଟାକର ମାରୁଛି ତୋ କର ପଇଠ ଧରା ଦାସୀ ରେ । ୧ । କୁସୁମୋତ୍ସବ ବିଚ୍ଛେଦ ଯୁଗୁ, ଲାଗି ଡକାଇତ ଲାଗୁ ଲାଗୁ, ଲଳନାରତନ କଳନା ନ ପଡ଼ି କଳାନାଗବଲ୍ଲୀ ଗେଲେ ମାଗୁ ରେ । ୨ । ଛାମୁରେ ଛାଇ ନ ପଡୁ ବୋଲି, ଛଡ଼ା ହୋଇ ମୁଁ ଯେ ଛିଡ଼ା ହେଲି, ଛୁଇଁଲ ଯେ ବୋଲି ଛଇଳି ହସି ମୋ ଛାତିକି ଝାଁରୋଜେ ଦେଉ ପେଲି ରେ । ୩ । ତୁ କାହା ଦୁଃଖପାସୋରା କି ରେ, ବୋଲି ମୁଁ ପଚାରେଁ ପ୍ରେମିଗିରେ, ତୁମ୍ଭର ବୋଲିବା ଦମ୍ଭରେ ଦମ୍ଭୋଳି କଚାଡୁ ମୋ ଦୁଃଖଗିରି ଶିରେ । ୪ । ମେଲାଣି ହେବି କି ଯେବେ ବୋଲେ, ମୁଁ କି ଜାଣଇ ମା ଭାଷି ଗେଲେ, ମୋ ପିନ୍ଧାବାସ ଶେଷକୁ ଛନ୍ଦିଥାଉ ଅଙ୍ଗୁଳି ଅସ୍ଫୁଟ ଚମ୍ପାଫୁଲେ ରେ । ୫ । ସ୍ମିତ ସୁଧାବିନ୍ଦୁ ଝଡୁଥାଇ, ରତର ପ୍ରସଙ୍ଗ ବଢୁଥାଇ, ଚିତ୍ତ ତୋ ଯହିଁ ଦଉଡୁଥାଇ, ଚାରୁ ଚାହାଣିରୁ ଚିହ୍ନା ପଡୁଥାଇ ରେ । ୬ । ପ୍ରତି ପ୍ରବନ୍ଧେ ମଜାଇ ମଜା, ନିତି ହେଉଛୁ ବାସକସଜା, ଗୋଟିକି ଗୋଟିଏ ରାଣ ଲଘି ନଖି ବୋଲି ଯେ କାହିଁକି ଏଡ଼େ ଲଜ୍ଜାରେ । ୭ । କ୍ଷଣକେ ମୋ ଦୋଷ ଦଶକୋଟି, କ୍ଷମା ନ କଲେ ମୁଁ ସରିଲିଟି, ଅଖଦଡ଼ ଅବଧାନରୁ ଶ୍ରୀଅଙ୍ଗେ ନଖଦନ୍ତ କ୍ଷତ କରଇଟି ରେ । ୮ । ଏ ସ୍ନେହପୀୟୂଷ ବରଷାରୁ, ଏହି ଅନୁରାଗ ଭରସାରୁ, କର ସାରସଲୋଚନା କବିରବି ବଞ୍ଚାଇଛି ତୋତେ ଘରଷାରୁ । ୯ ।



(୧୬୪)

## ରାଗ—ତୋଡ଼ି ପରଜ—ଆଦିତାଳ

ରେ ସଙ୍ଗାତ, ନିଧୁବନେ ମୋହ ପରି,
ରସିବା କାଳରେ ଦିଶି ଯାଉଥିଲା ଧନ ଘନକାଳ ପରି । ଘୋଷା ।
ବାରିଦ ନିଃସ୍ୱନ ପରି ଶୁଭୁଥିଲା ଅରାଜି 'ଉହୁଁ' ବଚନ,
ନାସା ନୀଳମଣି ନିନ୍ଦା କରୁଥିଲା ନୀଳକଣ୍ଠ ନରତନରେ । ୧ ।

ମୋର ଉରଘନେ ଖେଳା କରୁଥିଲା ତା ତନୁବଲ୍ଲୀ ଚପଳା
ପିକକୁଳ ପରି ମୂକ ହେଲା ପଦପଙ୍କଜ ମଞ୍ଜରୀ ବଳା ରେ । ୨ ।
ବଦନଚନ୍ଦ୍ରକୁ ଗ୍ରାସି ଆସୁଥିଲା ଅସିତ ଘନକବରୀ
ମଥା ମୋତି ଛକଜାଲି ଦିଶୁଥିଲା ଅନ୍ଧାରେ ଖଦ୍ୟୋତ ପରି ରେ । ୩ ।
ଝିଙ୍କାରୀ ଝଙ୍କାରପରି ଶୁଭୁଥିଲା ରତନଯୁତ କିଙ୍କଣୀ,
କନକ କଦଳୀଦଳେ ଖେଳୁଥିଲା କି ରଙ୍ଗେ କାଳୀନାଗୁଣୀ ରେ । ୪ ।
ଛିଡ଼ିଯାଏ ମୋତି ବିଞ୍ଚି ହୁଏ କ୍ଷିତି ପତନ କରକାବଳି,
କପୋଳୁଁ କୁସୁମାବଳି ଖସୁଥାଏ ନୀରଦୁଁ ପରି ବକାଳି ରେ । ୫ ।
କଳା ରଟଳା ବାସନ୍ତୀ ଜୀବବନ୍ଧୁ ଗଭା ପୁରନ୍ଦର ଧନୁ,
କଦମ୍ବ ପ୍ରଫୁଲ୍ଲ ସମ୍ପଦକୁ ଚୋରି କରୁଥିଲା ତାର ତନୁ ରେ । ୬ ।
ଶ୍ରମ ସ୍ୱେଦବିନ୍ଦୁ ଛଳେ ଜୀବବନ୍ଧୁ ବରଷିଲା ଘନରସ
ଚଞ୍ଚୁପୁଟେ ବାରି ଧରି ହେଲା ହରିଚନ୍ଦନ ଭୂନାଥ ତୋଷ ରେ । ୭ ।



(୧୬୫)

## ରାଗ—ତୋଡ଼ି ପରଜ—ଏକତାଳି

ରେ ସଙ୍ଗିନୀ, ମନ ଥିଲେ ମଙ୍ଗିଯାଉ
ମତ୍ତଗଜଗତି ମଉନେ ରହିଲେ ମୁଁ କିସ କରିବି ଆଉ । ଘୋଷା ।
ସୂକ୍ଷ୍ମନବସନା ବୁଝି ନାହିଁ କି ସେ ମୀନକେତନର ଦାଉ
ବୁଝିବା ମରଜି ଅଛି ଯେବେ ବୁଝି ମନକୁ ରିଝାଇ ନେଉ । ୧ ।
କହିବୁ ମନମୋହନାକୁ ମୋ'ଠାରେ ଅନୁରାଗ ରଖିଥାଉ
ଏଣିକି ଏଣୀନୟନାର ମୁଁ କିଣା ହେଲିନି ଲାଜ ନ ପାଉ । ୨ ।
ବଧୂ ବଧୂଲୀଅଧରୁ ମଧୁରସ ଏଥର ଥରେ ଚଖାଉ
କାଚ କଳସରେ ଜଳଥିଲା ପରି ଭଙ୍ଗୀ ଆଉ ନ ଦେଖାଉ । ୩ ।
ବତିଶାର୍ଦ୍ଧବୟା ମାୟା ଛାଡ଼ି ଦୟା ବଡ଼ପଣକୁ ଦେଖାଉ
କୁଟୀଳ କେଶୀ ମୋଠାରେ କୁଟୀଳତା ଭାବ ଆଉ ନ ଦେଖାଉ । ୪ ।
ମାରଦର ଖଣ୍ଡାଘାତକୁ ମୁଁ ନିଶ୍ତେଁ କରିଚି ତାକୁ ବଦାଉ
ନୀଳାଦ୍ରି ବିହାରୀ ଶ୍ରୀ ହରିଚନ୍ଦନ ବୋଲେ ଆଶ ନ ଭଙ୍ଗାଉ । ୫ ।



(୧୬୬)

## ରାଗ—ତୋଡ଼ି—ଏକତାଳି

ଲାଜ ବରଜି ଦ୍ୱିଜରାଜ ସୁନ୍ଦରମୁଖୀ
ଆଜ ମୋ ସ୍ନେହ ପରିପାଳିବୁ ରେ ।। ଘୋଷା ।।
ବିନୟ ଘେନି ମୋର, ମୀନନୟନା ମାର
ରଣଦକ୍ଷ କଟାକ୍ଷ ଢାଳିବୁ ରେ । ୧ ।
ବିନା ଲାଜେ ମୋ ଦେହ, ମୀନା ଧରଣୀରୁହ
ସୁନାବଲ୍ଲରୀ ପରି ପାଳିବୁ ରେ । ୨ ।
ଘନ ପରିରମ୍ଭରେ—ଧନ, ମୋହନ ଉରେ
ସ୍ତନ କନକ କୁମ୍ଭ ଟାଳିବୁ ରେ । ୩ ।
ମୁଁ ନର୍ମକାଳେ ନଖ, ମୂନ ଚାଳନ୍ତେ ସୁଖ—
ବଶେ ମୋ ଅଙ୍ଗେ ନଖ ଚାଳିବୁ ରେ । ୪ ।
ମଦନ ଶରକୂଳ କଦନ ତରୁମୂଳ
ମୋ ଧନ ଘନକେଶା ଟାଳିବୁ ରେ । ୫ ।
ଅଷ୍ଟଦୁର୍ଗ ଭୂପର ଦଷ୍ଟ ରଦନାମ୍ବର
ହେବ ଯେ ତହିଁକି ନ ଭାଳିବୁ ରେ । ୬ ।



(୧୬୭)

## ରାଗ—ପୂରବୀ—ତ୍ରିପୁଟା

ଲାବଣ୍ୟସିନ୍ଧୁରେ ବନ୍ଧୁ । ଅଛି ଏ ଦେହଟି ତୋ ସ୍ନେହାନୁବନ୍ଧୁରେ ।। ଘୋଷା ।।
ଯା ନେତ୍ର ଦୃଗନ୍ତ ମୋ ମୁଖେ ବରଷୁ
କାଶ୍ମୀରଗୋରୀ ସୁଖ ସୁଧା ପରଷୁ । ୧ ।
ବିମ୍ବାଡ଼ମ୍ବରୀ ଓଷ୍ଠେ ଚୁମ୍ବ ଯା'ଠାରୁ
ତାଙ୍କୁ ମୁଁ ଜିଣି ପଡ଼େ ସମ୍ବଜାଠାରୁ । ୨ ।
କି ଭାଗ୍ୟ ନ ଦେଉଟି ରଦନ ଚେଲେ
ସରସୋଦୟସ୍ମିତ ବିଳାସ ବେଳେ । ୩ ।

ତାଳିମ ଦେଇ ଭେଟୁ ଯା ଦରହାସେ
ସାଜି ମଦନ ନାଚେ ମୋ ହୃଦଦେଶେ । ୪ ।
ଭାଷଇ ବସ୍ତୁଦୁର୍ଗ ବସୁଧା ପାଳ
ଆସ ଇନ୍ଦିବରାକ୍ଷୀ ମୋ କୋଳେ ଖେଳ । ୫ ।



(୧୬୮)

## ରାଗ—ପୁରି

ଲୀଳାବତୀ ରସେ ରସିଲା; କୋଳେ ବସାଇଲି; ଗେଲେ
ବସିଲା ରେ ! । ୦ ।
ପୀନ ସ୍ତନ ଆଲିଙ୍ଗନୁଁ ଘନ ପୁଲକିତ ତନୁ
କରି ମୋ' ଅଙ୍ଗରେ ରଙ୍ଗେ ମିଶିଲା ରେ ! । ୧ ।
ଅଧର ବିମ୍ବ ଚୁମ୍ବନେ ନ ଧରି ଗୁମାନ ମନେ
ହରଷେ ମୋ' ଗଣ୍ଡେ ଗଣ୍ଡ ଘଷିଲା ରେ ! । ୨ ।
ନଖ ବସୁଁ ଉରୁ-ମୂଳେ ସୁଖସଦନା ବିକଳେ
'ରଖ' ବୋଲି ଗେଲେ "ଇଷି" ଭାଷିଲା ରେ ! । ୩ ।
ରତି ମୁଁ ମାଗନ୍ତେ ରସବତୀ ନ କରି ନିରାଶ
ଲାଜ ଲାଜ ହୋଇ ମନ୍ଦେ ହସିଲା ରେ ! । ୪ ।
ରାମଚନ୍ଦ୍ର ଛୋଟରାୟ କହେ "ଆହା ! ସେ ସମୟ
ମୋତେ 'ସ୍ୱର୍ଗ' ସୁଖମୟ ଦିଶିଲା ରେ !" । ୫ ।



(୧୬୮) ରଙ୍ଗେ—କ୍ରୀଡ଼ାରେ, ଉରୁମୂଳେ—ଜଙ୍ଘ ମୂଳରେ, ରଖ—ଥାଉ ବା ସେପରି କର ନାହିଁ, ସ୍ୱର୍ଗ ସୁଖମୟ—ଅଲୌକିକ ସୁଖପୂର୍ଣ୍ଣ ।

(୧୬୯)

## ରାଗ—କାମୋଦୀ—ଆଦିତାଳ

ଶିରୀଷ କୋମଳା ରେ, ପ୍ରୀତିବତ୍ସଳା ବାଳା ।। ଘୋଷା ।।

ନବ ଅବଳା ଲାଜେ କେଳି ବାହୁଡ଼ା ବିଜେ—
କରନ୍ତେ ଆଳିମାଳା ମିଳି ପାଶେ,
ବେଶ ବିଷମ ରୀତି ଦେଖି ଭଙ୍ଗୀ ଭାରତୀ—
କହନ୍ତି ପରସ୍ପରେ ପରିହାସେ । ୧ ।
କହ ରେ ଚନ୍ଦ୍ରମୁହୀଁ ଯାଇ ଯେ ଦେଇ ନାହିଁ
ଆମ୍ଭେ ସଜାଡ଼ି ଦେବା ସଜବାଜ
ଏ କିସ ମା କେଶରୀ- ଧରା ଶଶାଙ୍କ ସରି
ଶିରୀ ଆଣିଛୁ ଚୋରି କରି ଆଜ । ୨ ।
ଚିତ୍ର ଲାଗୁଛି ଦେଖି ନାହିଁ ଯା ତୋର ସଖି,
କାଲି ଚାଲି ଚପଳ ଲୀଳା ଲବେ,
ଗତି ତୋ ଚକ୍ର ଭଙ୍ଗ ସକାଶରୁ ଅନଙ୍ଗ
ଜୟ ମଙ୍ଗଳ ରଥ ପରି ଏବେ । ୩ ।
ଦନ୍ତେ ଅଧର ପୀଡ଼ି, ନୀଳ କାଞ୍ଚଳା ଭିଡ଼ି
ଲୁଚାଉ ଥାଉ କୁଚ ପରା ସହି,
ସଞ୍ଚାଣ ଚଞ୍ଚୁ ଗଳି ଚକ୍ରବାକ ଯୁଗଳି
ଲୁଚିଲା ପରି ଆଜି ରାଜେ କେହି । ୪ ।
ଆହା ନ ସହୁ ଆମ୍ଭ— ଶିଥିଳ ପରିରମ୍ଭ
ଲେଶ ବତ ହେଲେ ହେଲେହେଁ ଯେତେ,
ମୀନକେତନ ଭଲା, ଦିନକେ କି ନ କଲା
ଛଇଳା ଶିରୋମଣି ସତେ ତୋତେ । ୫ ।
ଏପରି ପରିହାସେ ଲାଜେ ରଦନବାସେ,
ହାସ ମିଶାଇ ବାସ ଦେବା ଭଙ୍ଗୀ,
ନାସା ମଣିମୟୂଖେ ଦିଶି ପୂର ଗବାକ୍ଷେ,
କବିସୂର୍ଯ୍ୟ ଧଇର୍ଯ୍ୟ ଦେଲା ଭାଙ୍ଗି । ୬ ।

●

## (୧୭୦)

## ରାଗ—ପୂରବୀ

ଶୁଝି ନୋହିବ ଯେ, ସୁଝୀନ ବସନା 'ପ୍ରୀତି'
ଯୁଝିବା କାଳରେ ରତିପତି ସଙ୍ଗେ ବୁଝିଚି ଭଲା ତା' ରୀତି । ୦ ।
ଭୟାଳୁ ବିଚାରି ମତେ ସେ ଦୟାଳୁ ମଣି ମାତିଥାଏ ରତେ;
ଅଭୟ ହେବାକୁ କୁଚ-ଶମ୍ଭୁ ସେବା ଅବକାଶ ଦିଏ କେତେ ! । ୧ ।
ଝଲକା ଝଲକ ଆଞ୍ଜିବା ଖଡ଼ଗ ମଲ୍ଲକ ମଣିବି ବୋଲି
ଧୃତି ଖଣ୍ଡନା ମୋ' ଶ୍ରୁତିକି ଫୁଙ୍କିଲା, ପଲକ ପକାଇ ଦେଲି । ୨ ।
କିଙ୍କିଣୀ ମଧୁର ଧ୍ୱନି ଧନୁର୍ଗୁଣ ଟଙ୍କାର ଶଙ୍କା ବିଚାରି
ତାହାର ବିହାର ଭଙ୍ଗୀ ଭାଙ୍ଗିଥାଏ ଗାଢ଼େ ଆଲିଙ୍ଗନ କରି । ୩ ।
ଅୟଚକ୍ର ଲୟ ହେବା ପାଇଁ ମୋ'ର ସିନା ସେ କେଳି ଲାଳସୀ
ଭାବଭୋଳେ ନୀଳ ନଳିନ ଡ଼ୋଳାକୁ ଭାଲେ ଦେଇଥାଏ ଖୋସି । ୪ ।
'ନବ ଦୁର୍ଗରାଣ' ବନ୍ଦନ୍ତି କବରୀ ସ୍ରଜ ବୃଷ୍ଟି ହେଲା ଯେତେ
ବାଣଗଣ ମଣି ତ୍ରାଣ କଲା ପ୍ରାଣମଣି 'ଶେଯ' କରି ମତେ । ୫ ।



## (୧୭୧)

## ରାଗ—ପୂରବୀ—ଏକତାଳି

ସଂଯୋଗୁଁ ପଡ଼େ ପ୍ରମାଦ, ରେ ସଙ୍ଗାତ ।
ରୋଗୀ, ଭୋଗୀ, ଯୋଗୀ, ଚୋର, ଅନୁରାଗୀ
ପାଞ୍ଚକୁ ନ ମାଡ଼େ ନିଦ ରେ । ଘୋଷା ।
ଶୁଭ ଆଗମନେ ବରଷକେ ଦିନେ ନିମିଷ ପରାୟେ ନିଶା,
ଦଇବ ବିମୁଖ ଯୋଗୁଁ ତନୁ ଦୁଃଖ କରାଇଲା ଦୁଷ୍ଟ ଦଶା ରେ । ୧ ।

(୧୭୦) ରତେ—ରତିକ୍ରୀଡ଼ାରେ, ଆଞ୍ଜିବା—ବାହାର କରିବା, ମଲ୍ଲକ—ମଲ୍ଲଯୋଦ୍ଧା, ଧୃତିଖଣ୍ଡନା—ଧୈର୍ଯ୍ୟନାଶିନୀ, ଶ୍ରୁତିକି—କାନକୁ, ବିହାରଭଙ୍ଗୀ ଭାଙ୍ଗିଥାଏ—ଶୋଭବା ଭଙ୍ଗୀ ବଦଳାଇଥାଏ, ଅୟଚକ୍ର—ଭାଗ୍ୟଚକ୍ର, ନବଦୁର୍ଗରାଣ—ନୂଆଗଡ଼ ରାଜା, ସ୍ରଜ—ମାଳାର ଫୁଲ ।

ସୁରତ ଉତ୍ସୁକେ ରତନ ପଲଙ୍କେ ଭୋଗେ ଯାଉଥାଏ ଦିନ,
ତହିଁକି କିଞ୍ଚିତ ହେଲେ ଉପସ୍ଥିତ ସଂସାର ବିଷୟମାନ ରେ । ୨ ।
ଯେଉଁ ମାନସରେ ଧିଆନ ବଶରେ ହେଉଥାଇ ବ୍ରହ୍ମଜ୍ଞାନ,
କରି ସଙ୍କଳପ ଅଡ଼ିଲେ ଅଳପ ବାନ୍ଧବୀର ଅଭିମାନ ରେ । ୩ ।
ଚଉପାଶେ ଚାହିଁ ଚଞ୍ଚଳତା ବହି ପଶେ ଇତର ତତ୍ତ୍ୱର,
ନିଶୀଥର କାଳେ ପରନାରୀ କୋଳେ ଥିବାକାଳେ ତା ପତିର ରେ । ୪ ।
ନିଯୋଗ ଯୋଗାଇ ଗୁପତ ସୁରତ ବାଞ୍ଛାରୁ ସଙ୍କେତ ସ୍ଥାନ,
ଭଜନ୍ତେ ହରଷେ କବିସୂର୍ଯ୍ୟ ଭାଷେ ତହିଁରେ ସପତ୍ନୀ ଜନ ରେ । ୫ ।

•

## (୧୬୨)

ସଙ୍ଗିନୀ, ବରଜ ଗୁମାନ
ସରଜ କେଳି ବିଧାନରେ ।

ପାଞ୍ଜି ସ୍ମର ସାଜି ଶର ଭଜି ଅଭିମାନ
ଗରଜି ତରଜେ ଅରଜି ନେବାକୁ
ମୋର ଜୀବନ ନିଦାନ ରେ । ୧ ।

କରଜ ଦାଉକୁ ନିକି ଧରଣୀ ଭାଜନ
କେହି ସହିପାରେ ବିବେଚନା ଥରେ
ନ କଲୁ ତ ଅବଧାନରେ । ୨ ।

ମରଜିକି ଥରେ ମୋ ନ କଲୁ ଅନୁମାନ
ପରଜି ପରଶୁ ଅଜରାଜ ଗର
ସରଜିବା ଦାସ ଜନରେ । ୩ ।

ଉଣା ଯେବେ କଲି ଉରରୁହ ମରଦନ
ବର ବରନାରେ କ୍ଷମା ନିକି ଥରେ
ନ କରିବୁ କି ତୋ ଧନରେ । ୪ ।

(୧୬୨) ବରଜ—ଛାଡ଼, କରଜ—ନଖ, ପରଜି—ଧାରୁଆ କରି, ପରଶୁ—କୁଠାର, ଅଜରାଜଗର—ବିଷ, ଉରରୁହ—ସ୍ତନ, ପୁରନ୍ଦର—ଇନ୍ଦ୍ର (ଏଠାରେ ରାଜା ଅର୍ଥରେ) ।

ଅଷ୍ଟଦୁର୍ଗ ପୁରନ୍ଦର ବିନୟ ବଚନ
ରାଜିକଲା ଟେକି ରାଜୀବ ଲପନ
ଖେଳାଇ ଖଂଜନୟନରେ । ୫ ।

●

(୧୭୩)

## ରାଗ—ମୁଖାରୀ—ଏକତାଳି

ସରସ ଯେତିକି ରେ ବନ୍ଧୁ ବିରସ ତେତିକି ରେ । ଘୋଷା ।
ନାଗରୀ ମୁକୁଟ ହୀରା, ଉନ୍ମାଦ ପ୍ରେମ ପସରା
ସୁରତ-ରଙ୍ଗିଣୀ ଠାଣି, ଉହୁଁ ଉହୁଁ ଇଷିବାଣୀ
(ପଢ଼ି) ନାହିଁ ନାହିଁ ମହୀମଣ୍ଡଳେ ସହୀ ପରି
ପରିଣତ-ବିମ୍ବାଧରୀ ଧରାଶୀରି
କରୀନ୍ଦ୍ରବରଗତି ସଙ୍ଗତ ଜଗତୀରେ
ଗତି ମୋ ରତିପଣ୍ଡିତା ରମଣୀମଣି । ୧ ।
ଆସେ ହୋଇ ରହରହ, ହାସେ ମଣ୍ଡୁଥାଏ ଦେହ
ମୁଖେ ବାସଶେଷ ଦେବା, ପଛକୁ ଘୁଞ୍ଚି ଆସିବା
(ପଢ଼ି) ଭେଟ ହେଲେ ଚାରି ନେତ୍ର, ପୁଲକେ ପୂରଇ ଗାତ୍ର
ଗଣ୍ଡେ ମଣ୍ଡଇ ପାଣିକି, ତୋଳା ଢଳା ଚାହାଣୀକି । ୨ ।
ବସାଇଲେ କୋଳେ ଭୋଳେ, ଚୁମ୍ବନେ ଅଧର ତଳେ
ପ୍ରକମ୍ପଇ ଗଣ୍ଡପାଳି, ଆହା ସେ ଶ୍ରୀମୁଖ ଝଳି
(ପଢ଼ି) ଜବାଧରେ ମନ୍ଦହାସ, ହୃଦୟ କରି ଉଲ୍ଲାସ
ତୁଳିଲେ ସାରସ ଶଶୀ, ସରସ ଲପନ ଦିଶି । ୩ ।
ସୁଧା ମଧୁର ନିଗଡ଼ା, ପାନେ ଆନ ଧ୍ୟାନ ଛଡ଼ା
ସେ ଯେଉଁ ମଧୁରାଧର, ମୃଦୁ ଭାଷାର ସଞ୍ଚାର
(ପଢ଼ି) ଶ୍ରୀ ମୁକୁନ୍ଦଦେବ ଚିତ୍ତ, ବିଚାରୁଥାଇ ସତତ
ମଣ୍ଡଳ ଉଚ୍ଚାଟ ମନ୍ତ୍ର, ହୋଇଛି କି ପୁଷ୍ପବନ୍ତ । ୪ ।

●

## (୧୭୪)

## ରାଗ——ଗୁଣ୍ଡକିରୀ——ଏକତାଳି

ସେ କି ପୁରୁଷରେ ଜମା——ରସରୀତି ଶ୍ରବଣରେ ଯା'ର ନାହିଁ ପ୍ରେମା ।।
ନୁହନ୍ତି ଯାଚକେ ମାଗି ଯା'କୁ ପୂର୍ଣ୍ଣକାମା
ମଣ୍ଡି ନାହିଁ କ୍ଷିତି ଯାର କୀରତି ଚନ୍ଦ୍ରମା । ୧ ।
ଅଙ୍କେ ଧରି ଛାମାପରି କାମାତୁର ରାମା
ରତିରେ ଯେ ହରୁ ନାହିଁ ତୁହିନ ତ୍ରିଯାମା । ୨ ।
ହରି ଗୁଣଗଣ ପ୍ରସରଣେ ଶ୍ରୁତିସୀମା
ରହୁ ନାହିଁ ଅଙ୍ଗ ଯାର ସପୁଲକ ରମା । ୩ ।
ଦାତାପଣ ନାହିଁ ଯାର ଥାଉ ଥାଉ କ୍ଷମା
ବଳବନ୍ତ ହୋଇ ଯାର ନାହିଁ ପୂର୍ଣ୍ଣ କ୍ଷମା । ୪ ।
ଯେ ତେଜି ବିପ୍ରଙ୍କୁ ଦ୍ରାକ୍ଷା କରେ ଖର ଛିମା
କଣ୍ଠୀରବ ଜୟ ଇଚ୍ଛି ପୋଷଇ ସରମା । ୫ ।
ଯେ ବରଜି ଯାଏ ଯୁବାକାଳେ ପ୍ରିୟତମା
ଛାର ମଧୁକରେ ବନ୍ଧୁ ଅଧର ଉପମା । ୬ ।
ଭିକ ହୋଇ ନାହିଁ ଯାର ବଚନେ ପଟିମା
କହୁଥାଇ ସଦମ୍ଭେ ଯେ ସ୍ୱଗୁଣ ଗରିମା । ୭ ।
ନୟନରେ ପଡ଼ିଗଲେ ଯା ଅଙ୍କ ସୁଷମା
ନୋହେ ଯେବେ ସସମ୍ଭ୍ରମା ସୁତନୁ ମଧ୍ୟମା । ୮ ।
କରି ନାହିଁ ଅନୁଗ୍ରହ ଯାକୁ ସିନ୍ଧୁଜେମା
ଯା'କୁ ଚାହିଁ ଅରିମୁଖ ନ ଭଜେ କାଳିମା । ୯ ।
ଭାଷେ ଜଗଦ୍ଦେବ ଚଇତନ୍ୟଚନ୍ଦ୍ରନାମା
ବସୁଦୁର୍ଗ ଧରାମରାବତୀର ସୁତ୍ରାମା । ୧୦ ।



## (୧୭୫)

## ରାଗ—ମୁଖାରୀ

ସେ କି ସାରାସାର ଜାଣେ,

ପ୍ରୀତି ରୀତି ନ ପାଳେ ଯେ ଅଣୁ ପରମାଣେ । ପଦ ।

ରାଜମାର୍ଗ ଛାଡ଼ି ଉଠେ ଅବାଟ ଉଠାଣେ, ଦ୍ୱିଜସଙ୍ଗ ବିବର୍ଜି ଯେ ମିଶଇ ପଠାଣେ । ୧ । ଶୁକଶାରୀ ମାରି ପଳ ଯେ ଦିଏ ସଞ୍ଚାଣେ, ଯେ କୁନ୍ଦନେ ଖଞ୍ଜେ ମଣି ନ ବସାଇ ଶାଣେ । ୨ । ଫଳ ବିନା ଅତି ଲୋଭ ରଖି ଛାର ପ୍ରାଣେ, ଜଳଧିରେ ଯେ ନ ପଡ଼େ ପ୍ରିୟଜନ ରାଣେ । ୩ । ତାହାକୁ କି କଳାବତୀ ନଜରକୁ ଆଣେ, ବିନ୍ଧା ହୋଇ ନାହିଁ ଥରେ ଯେ କୁସୁମବାଣେ । ୪ । କନକ ବନିବ ବୋଲି ରୀତି କି ରସାଣେ, ସତ୍ୟବୁଦ୍ଧି କରୁଥାଏ ଯେ ଶଶ-ବିଷାଣେ । ୫ । ଯେ ବାମା ଅଧର ମଧୁ ବସନରେ ଛାଣେ, ମୃଦୁଳ ମାଳତୀମାଳା ହୀରାମୁନେ ହାଣେ । ୬ । ଯେ ଲେଖି ସୁଚିତ୍ରପଟ ସମରପେ କାଣେ, ମାଗିବା ଲୋକର କରେ ନ ଦିଅଇ ମାଣେ । ୭ । କନକ କୁଡୁଆ ଥାଉ ଯେ ପିଏ ପିହାଣେ, ଜାଇ ଥାଉଁ ଗିରିମଲ୍ଲୀ ଯେ ଲଗାଏ ଘ୍ରାଣେ । ୮ । କର୍ଣ୍ଣ ଯେ ସମର୍ପି ନାହିଁ ଭ୍ରମରେ ପୁରାଣେ, ହରିଙ୍କି ଯେ କରି ନାହିଁ ମୂଳ ପରିତ୍ରାଣେ । ୯ । କହେ ଜଗଦ୍ଦେବ ଶିକ୍ଷା ହେଲେ ହେଲେ ଟାଣେ, କେ କାହା ସ୍ୱଭାବ ଛାଡ଼େ ପରାଣ ପ୍ରୟାଣେ । ୧୦ ।



## (୧୭୬)

ସେ ଗଜେନ୍ଦ୍ରଗତି ମୋତେ ପ୍ରତି ଦିଶେ ଦିଶିଲା । ପଦ ।

ଏ ଜଗତେ ଭାବ ଯେତେ, ନ ରହିଲା ମୋର ଚିତ୍ତେ, ଯାହାକୁ ଚାହିଁଲେ ସେ ତ ତାହା ପରି ଦିଶିଲା । ୧ । ସହଜେ କାନ୍ତିରେ ତୋରା, ଧଇଲେ ନ ଦିଏ ଧରା, ମାର ମାରଗଣ ଗାଢ଼େ ମରମରେ କଷିଲା । ୨ । ମୁଁ ତାହାର ପ୍ରୀତି କିଣା, ହେବାରୁ ଅଧିକେ ବଣା,-ମୃଗାକ୍ଷୀର ବିନା ଆନେ ମନ ମୋ ନ ରସିଲା । ୩ । ଅତି ଯତ୍ନ କରି ବଳେ, ଶୟନ କରିବା କାଳେ, କ୍ଷଣେ ହେଲେ ନିଦ୍ରା ମୋ ଈକ୍ଷଣକୁ ନ ଆସିଲା । ୪ । ବୋଲେ

(୧୭୫) ଟୀକା—ପଳ—ମାଂସ, କୁନ୍ଦନ—ସ୍ୱର୍ଣ୍ଣ, ରୀତି—ପିତଳ, କନକ—ସୁନା, କାଣେ—ଅନ୍ଧକୁ, ଶଶବିଷାଣ—ଠେକୁଆ ଶୃଙ୍ଗ (ଅସମ୍ଭବ ବସ୍ତୁ) ।

ଅଷ୍ଟଦୁର୍ଗେଶ୍ୱର, ତା ପାଶୁ ହେବାରୁ ଦୂର, ଦିନକୁ ଦିନ ମଦନ ଜୀବନକୁ ଶୋଷିଲା । ୫ ।



## (୧୭୭)

## ରାଗ—ବରାଡ଼ୀ—ଆଦିତାଳ

ସ୍ନେହ ଥିବା ଦେହର ନୁହେଁ ପ୍ରାଣ ପ୍ରାଣ
ସେହି ସ୍ନେହୀ ଦେହୀ ତାର ପରିତ୍ରାଣ । ଘୋଷା ।
ପଉଗଣ୍ଡ ଯିବାଯାଏଁ—ଅପ୍ରକଟ ହୋଇଥାଏ
ପ୍ରାଣ ସହବାସ ସ୍ନେହୀ ବୋଲି ଜାଣ । ୧ ।
ହୃଦୟ ନଦେ ସେ ସ୍ନେହ—କଳାକ୍ଷଣେ ଅବଗାହ
କରେ କେଡ଼େ ଉନ୍ନତକୁ କି ନୁଆଁଣ । ୨ ।
ସାନ ବଡ଼ ବିବେଚନା—ଆନ ହୋଇଯାଏ ଚୂନା
ମାନ ଧନ ଜନର ମନରେ ଟାଣ । ୩ ।
ପ୍ରକାରେ ନ ଥିଲେ ରୋଧ—ପ୍ରଣୟ ବଡ଼ ସୁବୋଧ
ଅଳପକେ ତା ପରି ସେ ଅବୁଝାଣ । ୪ ।
ଗୁରୁଜନ ଗରଜନ—ଶୁଣନ୍ତି ନଗରଜନ
ପ୍ରତି ରଜନୀ ଜାଗର ହଇରାଣ । ୫ ।
ଅଷ୍ଟଦୁର୍ଗ ନାଥ ଭାଷେ—ଯେ ହାରଇ ଜିଣଇ ସେ
ପ୍ରବଳ ଯାହା ପକ୍ଷରେ ପଞ୍ଚବାଣ । ୬ ।



## (୧୭୮)

ସୁନାଗୋରି ରେ ନାଗରୀ ଏ କି ଆଜି । ପଦ ।

ଆସିଛି ଆଶାରେ, ଦାସୀ ପରିବାରେ, କୁସୁମଭୂଷାରେ ଦେବି ବୋଲି ସାଜି । ୧ । ଧୀରା ମୋର କୋଳେ ବିରାଜ ଗୋ ଲୋଳେ ଦିଅଇ ପନିରେ ମୁଖଚନ୍ଦ୍ର

ମାଜି । ୨ । ଦୋଷ ନାହିଁ ଲେଶେ, ରୋଷବୁହା ବେଶେ, ବସାଇଛି ତୋତେ ବନ୍ଧୁ କେଉଁ ପାଜି । ୩ । ଏଡ଼ି ମନୁ ଦମ୍ଭ, ଭିଡ଼ି ପରିରମ୍ଭ, ଦେଇ ମୋତେ ରଖ ରାଜୀବାକ୍ଷିରାଜି । ୪ । କରୀନ୍ଦ୍ରଗମନା, ସରିଲିଟି ଅନା, ମଦନପଠାଣ ବାଣରାଜି ବାଜି । ୫ । ଅଷ୍ଟଦୁର୍ଗେଶ୍ୱର କଷ୍ଟମିଶା ଗିର ଶୁଣି ଗଲା ମହିଳାର ମାନ ଭାଜି । ୬ ।

•

(୧୭୯)

## ରାଗ—ମୁଖାରୀ—ତ୍ରିପଟା

ସୁରସବତୀଟି ରେ, ମୋହ ସପତଟି ରେ । ଘୋଷା ।

(ପଡ଼ି)

ଭାଷ ଭାଷ ମୃଦୁହାସ ମଧୁର କରି—କରୀଗତି ଚନ୍ଦ୍ରାନନୀ କନକଗୋରୀ
ଗତ ନିଶି ବିପରୀତ ରତିରେ ମୋହପରି
ହେଲୁ ଯା ମନ କି ଲାଗିଲା ସେ ସମୟରେ ।
କଙ୍କଣ ହେବାରୁ ମୂକ—କିଙ୍କିଣୀ ଦେଲା କି ଡାକ
ଦୀପକୁ କିପାଁ ଚଞ୍ଚଳେ—ବଞ୍ଚିଲୁ ଦୁକୂଳାଞ୍ଚଳେ

(ପଡ଼ି) । ୧ ।

ଆଣନ୍ତେ ମୁଁ ସେ ପ୍ରସଙ୍ଗ—ପୁଲକିଲା କି ଶ୍ରୀଅଙ୍ଗ
ଚମକିଲା କି ମଦନ—ଭୂପତି କେଳି ସଦନ

(ପଡ଼ି) । ୨ ।

ହେଲା କି ମୋର ଯୁଗଳି—ଶିଖେ ଗଙ୍ଗାଧାରା ଦୋଳି
ଭ୍ରମରକୁ ପଙ୍କେରୁହ—ଚୁମ୍ବିଲା କି ବହି ସ୍ନେହ

(ପଡ଼ି) । ୩ ।

ସେ ଚାରୁ ଚିତ୍ର ଭୁଲାକି—ଦରଭରୁ କମ୍ପିଲା କି
ଭାଷେ ଜଳନ୍ତର ନାଥ—ପୂରିଲା କି ମନୋରଥ

(ପଡ଼ି) । ୪ ।

•

(୧୮୦)

## ରାଗ—ପିଲୁ—ଝୁଲା

ହସି ଦେଇଛି ଯେ ରସିକା ରଖିଛି ମନେ ।
ରୁଷିଲା ପରି ତା' ଶଶୀଜିତମୁଖ ଦିଶିଯାଏ ଦିନେଦିନେ ।। ଘୋଷା ।।
ସବିନୟ ପ୍ରେମଗୀତ ମୋହପାଇଁ କବି ଅଭିମାନେ ଭଣି
ଶାବକ ମୃଗାକ୍ଷୀ ସଖୀଙ୍କି ଘେନାଇଁ ଭାବ କହିବାର ଗୁଣି । ୧ ।
ମୋଦେ ବାସ ଟେକି ମୁଁ ଦେବା ନଖର ଲାଞ୍ଛନ ତା ଉରମୂଳେ
ନିରେଖିବା କାଳେ କି ରେଖା କି ଧନ, ବୋଲି ପଚ୍ଛୁଁ ଧରି କୋଳେ । ୨ ।
ବିବିଧ ଚାଟୁରେ ନୀବି ଧରିବାରୁ ଚଳି ମୋତେ ଉଠି ବସି
ଛଳେ ଚପଳେ ବିଢେ କରୁଁ ଦଇବବଳେ ପଡ଼ିବାରୁ ଖସି । ୩ ।
ଅଳସ ଲାଗିବାପରି ମୁଁ ରଚିବା ଛଳେ ଶୟନର କାଳେ
ସଦନେ ପଦ ନ ଶୁଣାଇ ଆସି ମୋ ବଦନ ଚୁମ୍ବିବା ବେଳେ । ୪ ।
ଯାମିନୀ ମୁଖେ ମୁଁ କାମିନୀ ବେଶରେ ଯିବାର ନ ଜାଣି ହସି
ସ୍ନେହରେ ନିଆଲୀ ଆସ ବୋଲି ମୋର ଦେହରେ ଯିବାର ମିଶି । ୫ ।
ପୁରତେ ଭଲେ ତ ଉଭାହୋଇ ଲାଜେ କରୁଥାଏ ନାହିଁ ନାହିଁ
ସୁରତେ ସୁନ୍ଦର ଜଘନ ନିରେଖି ତେଣେ ତା' ଶ୍ରୀମୁଖ ଚାହିଁ । ୬ ।
ମୋ ନାଥ କାମନା ପୂର ବୋଲି ଦେବୀ ଛାମୁରେ କର ପଲ୍ଲବ
ଟେକି ଦେଉଁ ଶିରେ ଉରଜ ମଣ୍ଡଳ ଅନାଇଁ ଶ୍ରୀ ଜଗଦ୍ଦେବ । ୭ ।

●

(୧୮୧)

## ରାଗ—ଇମନ୍

ହୀରକ ଦଶନା ମୋ' ପଦକ-ହୀରା ରେ ! । ୦ ।
ଅଙ୍କାରୋହା ହେବା ଦେଖି ଶଙ୍କା ମୁଁ କରେ ନିରେଖି
''ରାମା ଶିରୋମଣି-ସ୍ନେହ ଗଲା ପରା'' ରେ ! । ୧ ।

(୧୮୧) ହୀରକ ଦଶନା—ହୀରା ଭଳି ଦନ୍ତଯୁକ୍ତା, ପଦକହୀରା—ମାଦ୍ଦାରେ ଥିବା ପଦକର ହୀରା ସଦୃଶ, ଅଙ୍କାରୋହା—କୋଳାଗତା, ଅନ୍ତର କରଇ—କାଢ଼ି ପକାଏ, 'ହୃଦହାରା—କଣ୍ଠରେ ଥିବା ମାଳା, ଶିକ୍ଷାଧୀରା—ଶିକ୍ଷାପ୍ରାପ୍ତିରେ ପଣ୍ଡିତା ।

କରୀବର ଗତି 'ରତି'-କାଲେ ମୋ' ଛାତିରେ ମାତି
ଅନ୍ତର କରଇ ତା'ର ହୃଦ-ହାରା ରେ ।। ୨ ।
ଶିରୀଷ କୋମଳା ବାଳା ବାହୁରେ ମଣ୍ଡି ମୋ ଗଳା
ରସୁଥାଏ ରସବତୀ ମୋ'ର ପରା ରେ । ୩ ।
ପଙ୍କଜ ଲୋଚନା ଆସି ଭାଷନ୍ତେ 'ସ୍ମିତ' ପ୍ରକାଶି
ଚାହିଁ ବିଚାରେ ''ମୋ' ସମ ନାହିଁ ଧରାରେ'' । ୪ ।
'ଛୋଟରାୟ ନୃପବର' ଭାଷେ ଅତି ଦୁଃଖେ ଗିର—
ଦେଖିବି କି ସତେ 'ସୁଖ' ଶିକ୍ଷା-ଧୀରା ରେ ? । ୫ ।



(୧୮୨)

## ରାଗ—ତୋଡ଼ି ପରଜ

ହେ ସରସେ, ମଉଳି ଗଲେହେଁ ଜୀବ ।

ମଉଳି ନ ଯିବା ଜବାଅଧରାକୁ ଅଭୋଗରେ କେ ତେଜିବ । ଘୋଷା ।

ସେହି ନିକି ଯୁବା ତା ଜୀବନ ଯିବା ଉଚିତ ଜନ ଧିକ୍କାରେ, ଯା ଭୋଗୁଁ ସୁହାସୀ ନୁହଇଟି ବାସି କୁସୁମମାଳା ପ୍ରକାରେ । ୧ । କୁବେରକୁମରଦ୍ୱୟ ସୁରପୁର ଗଣିକାକୁ ପରି ଧରି, ରସବଶ ହେଲା ଜନ ସିନା ଭଲା ଦଶବଦନର ପରି । ୨ । ଚନ୍ଦ୍ରଚୁହାଁ ସୁଖ ବଡ଼ କି ତା ମୁଖ ଦେଖା ବଡ଼ ବିତୁ ବିତୁ, ମଧୁର ଅଧର ପିଇ ପୟୋଧର ଉରେ ଦେଇ ଭିତୁ ଭିତୁ । ୩ । ଅର୍ଭକ ଗର୍ଭକ କେତକୀ ଦଳରେ ପ୍ରେମଲେଖ ଚଳୁ ଚଳୁ, ହେଉ ପଛେ ବାଧ ସେ ଥିବା ସଉଧ ଗବାକ୍ଷରେ ଗଳୁ ଗଳୁ । ୪ । ଅଷ୍ଟ ଦୁର୍ଗନାଥ ବୋଲେ ମନୋରଥ ତା ବିନା ଆନେ କାହାରେ, ତାଠାରୁ ନିରାଶ ନ ଲଭି କି ନାଶ ଯାଇ ମାର ତରୁଆରେ । ୫ ।



(୧୮୨) ମଉଳି ନ ଯିବା ଜବାଅଧରା—ଅମ୍ଳାନ ଜବାଫୁଲ ପରି ଅଧର ଯାହାର, ଅର୍ଭକ—ଶିଶୁ, ତରୁଆର—ଖଣ୍ଡା ।

## (୧୮୩)

ହେ ସୁନ୍ଦର, ଏହା ପୁଣି ଦେଖାଗଲା ।
ଶିରୀଷ ଦେହାକୁ ଆହା ନ ବୋଲିବ
ବୋଲି କାହା ପ୍ରତେ ଥିଲା । ୦ ।
ଯା ଅଙ୍ଗେ ସରାଗେ ପରାଗ ପକାଇ
ବ୍ୟଥା ପାଇଁ ପରା ଡର
ସେ ଅଙ୍ଗେ ରୋମକେ କାଣ୍ଡେ କାଣ୍ଡେ ଏବେ
ମଣ୍ଡୁ ଅଛି ଫୁଲଶର । ୧ ।
ହଁସୁଲି ତୁଳୀରେ ଶୁଆଇ ନ ଦିଅ
ହୃଦ ବିନା ପରାଣକୁ
ଧରା ଧୂଳି ଏବେ ତୂଳି ଶେଯ କଲା
ଆଶା କିବା ବଂଚିବାକୁ । ୨ ।
ଯା ପଦ ଲାକ୍ଷାରେ କକ୍ଷା କରିଥାଅ
ଭିନ୍ନ ନୋହିବାକୁ ଲବେ
ତା ନେତ୍ର ପଥରେ ସ୍ୱପନେ ହେଁ ଥରେ
ନ ଆସିବ ତୁମ୍ଭେ କେବେ । ୩ ।
ଯା ନାମ ମନ୍ତର ପରି ନିରନ୍ତର
ଅନ୍ତରଗତରେ ଜପ
ତା ପ୍ରେମ ପାଶୋରା ପସରା ବାଢ଼ିଲ
ଏହି ବଡ଼ ମହାପାପ । ୪ ।
ଯା ଦୁଆର ଆଶ ପାଶେ ଭ୍ରମି ଯାଅ
ଥରେ ହେଲେ ନ ଦେଖିଲେ
ତା ଦଶା ମୁଁ ପୁଣି କହି ଆସୁଅଛି
ରାମଚନ୍ଦ୍ର ଦେବ ବୋଲେ । ୫ ।



(୧୮୩) ରୋମକେ—ପ୍ରତ୍ୟେକ ରୋମରେ, କକ୍ଷା—ଗୃହ ମଣ୍ଡନ, ଅନ୍ତରଗତରେ—ଅନ୍ତର୍ଗତେ ।

( ୧ )

## ରାଗ—ଭୈରବୀ, ଆଦିତାଳ

ଅଛି ଏତେ ମନୋରଥ କରି ରେ, ସହଚରୀ । ପଦ ।
ତମାଳ ମହେନ୍ଦ୍ରମଣି ଅପଘନ,
ପରିରମ୍ଭକୁ କି ଅଟେ ମୁଁ ଭାଜନ,
କେବଳ ଡାକିବ ଥରେ ସେ ମୋହନ, ମୁରଲୀ ମୋ ନାମ ଧରି । ୧ ।
ଯାଉ ଯାଉ ବାଟେ ଭେଟିଲେକ ରାଧା,
ତାଙ୍କୁ ଦେଖି କୃଷ୍ଣ ହୋଇଲେକ ଶ୍ରଦ୍ଧା,
ଯମୁନାର ତଟେ, ବୃନ୍ଦାବନ ଘାଟେ, ଡାକିକରି ମନେ ତୋରି ରେ । ୨ ।
ଶ୍ୟାମ-ସଙ୍ଗ ରଙ୍ଗଭାବ ରସକେଳି,
ଲଭିବାକୁ ମୁଁ କି ଛାର ଏତେ ଭଳି
ଏତେ ଭଳି ଦେଖିଥିବି ଥରେ ନୀପକୁଞ୍ଜ କେଳି ବିଜୟ ଶୋଭା ମାଧୁରୀ । ୩ ।
ଜଣାଉଛି ଜଗଦେବଙ୍କ ଛାମୁରେ,
ଚାରୁ ଭୃରୁଭଙ୍ଗୀ ବିଳାସ ମଦରେ,—
ଅଳପ ମୋଠାରେ ପକାଇ ଦେବାରେ କରୁଣାକଟାକ୍ଷ ହରି । ୪ ।

●

( ୨ )

ଅତସି-ଗୋରା, ଆଉ ନ ଚାହାଁରେ ।
ନିରତେ ଜଗି ଯମୁନା-ରାହା ରେ । ୦ ।

ମରମକୁ ଜାଣି, ଦେ' ପଛେ ହାଣି,
ଶ୍ୟାମ ଦାରୁଣ ବଡ଼ ତୋ' ଚାହାଣି ରେ ! । ୧ ।
ବ୍ରଜ ବିଟ ରାଜା ତୋ' ବେଣୁ ବାଜା
ପ୍ରାଣ ଘେନୁଚି, ବେଗେ ଏଥୁ ଯା ଯା ରେ ! । ୨ ।
ହେଲେ ହେଁ ଗୁଆଳୀ, ମୁଁ କୁଳପାଳୀ
ନେଲେ ନେବୁ ପଛେ ଧନ ସଂଖାଳି ରେ ! । ୩ ।
ଦେଉଛି ଯେ ନାରୀ ଆବୁର ସାରି
କାଲିକି ହେବଟି ବ୍ରଜେ ଗୁହାରି ରେ ! । ୪ ।
ବିରହ ବିଳାସେ କୁଞ୍ଜ ନିବାସେ
ଶ୍ରୀ ଛୋଟରାୟ ଦେବ ରସେ ଭାଷେ ରେ ! । ୫ ।



(୩)

## ରାଗ—କାଫି, ଏକତାଳି

ଅନା ଅନା ଥରେ ଥରେ ରସି ରସିକାରେ । ପଦ ।

ଇନ୍ଦିରାକୁ ନିନ୍ଦି ଇନ୍ଦୀବର ବନିକାରେ, ବନ୍ଦଇ ମୁଁ ନୀଳଜଳ ଜନମ ଧିକ୍‌କାରେ । ୧ । ମୀନମାନେ ଜାଲେ ମରି ସରନ୍ତୁ ବିକାରେ, ସଞ୍ଚରୁ ତୋ ନେତ୍ର ଚିତ୍ରକେଳି ଶିବିକାରେ । ୨ । ଭ୍ରମରମଣ୍ଡଳୀ ସରୁ ଝଙ୍କାର ଡକାରେ, ଷଡ଼ାଣୁଗ ପଦଛତି ସ୍ମରକୁ ଟେକା ରେ । ୩ । ଆସ ମୁଁ ମଣ୍ଡିବି ଗଣ୍ଡ ସୁମ କରକାରେ, ସ୍ତନ କନକ କଲଶ ମୂଳ କରକା ରେ । ୪ । ହଗିଗିରେ ହରିଣାକ୍ଷୀ ଲାଜେ ଧାତିକାରେ, ଛପିଗଲେ ଜଗଦ୍ଦେବ ଚିତ୍ତ ଲତିକାରେ । ୫ ।



(୨) ଅତସୀଗୋରା—ପେଶୀ ଗଛର ବର୍ଣ୍ଣଧାରୀ, ବିଟ—କାମୁକ, କୁଳପାଳୀ—ପତିବ୍ରତା, ଆବୁର (ଆବ୍ରୁ)—ଇଜ୍ଜତ୍, ସାରି—ଶେଷ କରି ।

(୪)

## ରାଗ—ମୁଖାରୀ, ତାଳ—ଆଠତାଳ

ଅନା ଅନା ରେ ମୋତେ, ବସୁଧାକୁ ଅନାଅ ନା ରେ ।
କେଉଁ ଖଳ ଜନ କହିଛି କି ମନମୋହନା କିଛି ମୋହ ନାଁ ରେ । ପଦ ।

ଖଳଭାଷିତକୁ, ସରସ ଚିତ୍ତକୁ, ଆଣିବୁ ନାହିଁ ନବୀନା ରେ; ଘେନ ତ କ୍ଷିତିରେ କେ ରସେ ରୀତିରେ ସୁନ୍ଦର କୁନ୍ଦନ ବିନା ରେ । ୧ । ମୋ ଅଙ୍କ ପର୍ଯ୍ୟଙ୍କ ଛାଡ଼ି ହରିଣାଙ୍କ-ବଦନା ତଳେ ବସ ନା ରେ; ଇନ୍ଦୁକରକାନ୍ତି ପଟଳୀ ନିନ୍ଦକ କୁନ୍ଦକଳିକାଦଶନା ରେ । ୨ । ଆଳିଏ ଥିବାରେ ଚାଳିଦେଲି ଯାହା ଦଶନାୟରେ ରସନାରେ, କ୍ଷିତିକି କରଜେ ମୋ ବନ୍ଧୁ ଚିରୁ ଯେ ଏତିକି ମୋ ଦୋଷ ସିନା ରେ । ୩ । ପରଖି ଦେବାର ଦୋଷୀକି ସୁନ୍ଦର ନ ରଖି ମନେ କୁହନା ରେ, ଅସ୍ତ କରି ବୃଥା ସଉଭାଗ୍ୟ କଥା ମସ୍ତକ ପୋତି ରହନା ରେ । ୪ । ଆଦର ଚାଦରପରି ପରିଜନେ ଆଦର ଊଣା କର ନା ରେ; କର୍ମ୍ମ କଉତୁକ ଝଲକାମଣ୍ଡନା ଚମ୍ପକ ବରବରନା ରେ । ୫ । ହରି ଚାଟୁ ଘେନି ହେଲେ ଅମାନିନୀ ପରିଣତଚନ୍ଦ୍ରାନନା ରେ । ଅଷ୍ଟଦୁର୍ଗଲେଖାଧିପ ହେଲେ ଲେଖା ତୁଷ୍ଟ ପ୍ରମୁଦିତମନା ରେ । ୬ ।



(୫)

## ରାଗ—ଆନନ୍ଦ ଭୈରବ

ଅନା ନା ଗୋ ! ଶ୍ୟାମ ଗୋରାକୁ
ରାଧେ ! ସକଳ ବାମା ଜାତିହରାକୁ ।
ଯହିଁ ସେ କାମ ବିଜୟ-ପତାକା ସମୟମୟ
ଗୁରୁ ଗୁରୁଜନ ଭୟ, ତହୁଁ ବିରହ ଉଦୟ । ୦ ।

---

(୪) ଟୀକା—ବସୁଧାକୁ ଅନାଅ ନା ରେ—ପୃଥିବୀକୁ ଚାହାଁ ନା, ଘେନତ କ୍ଷିତି ... ବିନାରେ—ସୁନ୍ଦର ସୁବର୍ଣ୍ଣ ଛଡ଼ା ଏ ପୃଥିବୀରେ କିଏ ରୀତିରେ ଅର୍ଥାତ୍ ପିତ୍ତଳରେ ରସିପାରେ କି ? ଇନ୍ଦୁକର ... ଦଶନାରେ—ଚନ୍ଦ୍ରକିରଣ ଅପେକ୍ଷା ମନୋହର ଓ କୁନ୍ଦଫୁଲର କଢ଼ି ପରି ଦଶନ ଯାହାର, ହରିଣାଙ୍କ ବଦନା—ଚନ୍ଦ୍ରମୁଖୀ, କରଜ—ନଖ, କୁହନା—କୋପ, କର୍ମ୍ମକୌତୁକଝଲକ-ମଣ୍ଡନା—ମନୋହର ସଚଳ କର୍ଣ୍ଣଭୂଷଣ ଭୂଷଣ ଯାହାର, ପରିଣତଚନ୍ଦ୍ରାନନା—ପୂର୍ଣ୍ଣଚନ୍ଦ୍ରବଦନା ।

ତନୁ-ତାତି ହେବ ବିଶାଳ;
କାଳେ ଧରିବୁ ପାଣି-କଞ୍ଜେ କପାଳ;
ନେବୁ ନିଳୟ ତେଜି କୁଞ୍ଜେ ତୁ କାଳ;
ହେବୁ କେବଳଟି କଳକଣ୍ଠ ନିନଦୁଁ ବିକଳ । ୧ ।
'କଳା' ପ୍ରୀତି ଛାଡି ଦୁରନ୍ତ;
କେବେ ନୁହଇ କୁନ୍ଦଦନ୍ତି ! ସେ ସ୍ୱନ୍ତ;
ଘେନ ଭ୍ରମର ରୀତି ଯାହା ଦୃଷ୍ଟାନ୍ତ,
ତୋହଠାରେ ନୟନାନ୍ତ ଥିଲେ, ଆନେ ଥିବ ସ୍ୱାନ୍ତ । ୨ ।
ଦେଖିଅଛୁ ଯେ ବାଲକାଳେ
ଖେଳି ଦନୁଜ-ଦାରା ଦାରୁଣ କୋଳେ,
ଚୁମ୍ବି ଗରଳ ବୋଳା 'ଉରଜ' ହେଳେ
ପ୍ରାଣ ପକାଇଲା ପିଇ, ତା'ଠାରେ କି ମନ ଦେଇ ! । ୩ ।
ଯା' କନିଷ୍ଠ କୋଟିରେ ରହି,
ତେଡ଼େ ଶିଖରୀ ବର ଅଣ୍ଟିଲା ନାହିଁ !
ଯେଡ଼େ ପୃଥୁଳ ହେଲେ ରେ ଚାନ୍ଦମୁହିଁ !
କେହି ସହିବ ତା' ପଞ୍ଚ ଅଙ୍ଗୁଳି-ଦାଉ ତୋ'କୁଚ ? । ୪ ।
ଜାନୁ ଯୁଗଳ ଚାଲି ବୟସେ
ଦେଖି ବିଷମ ଧୂର୍ତ୍ତ ରୀତି ବିଶେଷେ,
ଯହିଁ 'ଯଶୋଦା' ବାନ୍ଧିଲେ ରୋଷେ,
ସେ ଯାମଳ ତରୁଠାରୁ ଦୃଢ଼ତର କି ତୋ' ଉରୁ ? । ୫ ।
କୁଳ-ଶୀଳ-ଲାଜ-ବଡ଼ାଇ
ଆଳି ନିବହ-'ସଙ୍ଗ'-ଅଙ୍ଗୁ କଢ଼ାଇ

(୫) ଜାତିହରା—କୁଳଭ୍ରଷ୍ଟକାରୀ, ସମୟମୟ—ସବୁ ସମୟରେ, ତନୁତାତି—ଦେହର ଉତ୍ତେଜନା, ପାଣିକଞ୍ଜେ—ପଦ୍ମହସ୍ତରେ, କଳକଣ୍ଠ ନିନଦୁଁ—କୋକିଳର କୁହୁ-ରବରୁ, କଳାପ୍ରୀତି—କାମକଳାରେ ଆସକ୍ତ, ଦୁରନ୍ତ—ଦୁଷ୍ଟ, ସ୍ୱନ୍ତ—ଆପଣାର, ନୟନାନ୍ତ—ତୋରା ଚାହାଣି, ସ୍ୱାନ୍ତ—ଆନ୍ତରିକତା, ଦନୁଜଦାରା—ରାକ୍ଷସୀର ସ୍ତ୍ରୀ ପୂତନା, କନିଷ୍ଠ କୋଟିରେ—କାଣି ଆଙ୍ଗୁଠିରେ, ଶିଖରୀବର—ବଡ଼ ପର୍ବତ ଗୋବର୍ଦ୍ଧନ, କେହି—କିପରି, ଚାଲି ବୟସେ—ଚାଲି ଶିଖିବା ବୟସରେ, ବଡ଼ାଇ—ବଡ଼ପଣ, ଆଳିନିବହ ସଙ୍ଗ—ସଖୀମାନଙ୍କ ସହ ଏକତ୍ର ବାସ, ସହଜ ଦେହ—ଭାଇ ଭଉଣୀଙ୍କ ଦେହ ।

ଦେବ ସହଜ 'ଦେହ'-ସ୍ନେହ ଛଡ଼ାଇ;
ତହିଁରେ କି ମନୋରଥ ? କହେ 'ଜଳନ୍ତର'-ନାଥ । ୬ ।



(୬)

## ରାଗ—ତୋଡ଼ି, ଏକତାଳି

ଅନାରତ ସରସମନା ମୋ ଧନ କିସ ମନାସି ପରିଜନେ ରୁଷିଲା ରେ,
ନିଶାରମଣଜୟ ବିଶାରଦବଦନ ନବାରୁଣ ସଦୃଶ ଦିଶିଲା ରେ । ଘୋଷା ।

ବଳାହକ ଗରବ,-ଦଳାକୁନ୍ତଳେ ନବ, କଳାପ ସୁମୁଖି ନ ଖୋସିଲା ରେ, ଢଳାଗୁଣ ମୋହନ, ଚଳାଚଳ ନୟନ,-ଦଳାନ୍ତରୁ ତ ବଳ ଖସିଲା ରେ । ଘୋଷଯାକ ଭିତରେ, ମୋ ସଙ୍ଗମ ଇତରେ, ଅଛି କି ନାହିଁ ତ ନ କଷିଲା ରେ, ଦୋଷ ବିନା ଏପରି ରୋଷ କଲେ କି ପରିଜନ ବଞ୍ଚିବ ଘେନି ସୁଶୀଳା ରେ । ୨ । ଯେଉଁଦିନୁ ମୋତେ ସେ କଉତୁକିନୀ ରସେ ନେତ୍ରାନ୍ତ ବରଛିରେ ଭୁଷିଲା ରେ, ପଉରୁଷ ମୋହର ନଉକରି ତାହାର ଚରଣ ମାଜିବାର ସୁଶୀଳା ରେ । ୩ । ଦିବା ସମୟେ ଦିନେ ବିବାସ କଲି ମନେ କିବା ସତତ ତାହିଁ ଘୋଷିଲା ରେ, କାହିଁକି ଧରଣୀ, ଚାହିଁ କିଶୋରୀମଣି, ଗୁମାନକୁ ମାନସେ ପୋଷିଲା ରେ । ୪ । କହେ ବସୁ ଦୁର୍ଗେଶ ଅହେତୁକ ତା ରୋଷ, ଶହେ ଗୁଣରେ ସମୁଲ୍ଲାସିଲା ରେ, ପ୍ରାଣ ନେବାକୁ ମୋର, ବାଣ ମୀନରଥର ଶାଣରେ ନିରନ୍ତର କଷିଲା ରେ । ୫ ।



(୭)

## ରାଗ—ନାଆଟାକୁରଞ୍ଜା,

ଅନୁପମ ହାସି, ତୁ ମୋ' ମନୁଁ ଯିବୁ କେହି ରେ ? । ୦ ।
ନିଦେଶୁଁ ଭୂପର କାଲି ଗଲି ଦୂରେ ରହି ରେ !
ଚାରି କଳା ତୋ' ବିଚ୍ଛେଦ ପାରିବି କି ସହି ରେ ? । ୧ ।

(୬) ଅନାରତ—ସର୍ବଦା; ପରିଜନ—ଭୃତ୍ୟ; ନିଶାରମଣ ଜୟବିଶାରଦବଦନ—ଚନ୍ଦ୍ରକୁ ଜୟକରିବାରେ ଯେଉଁ ମୁଖ ନିପୁଣ; ନବାରୁଣ—ବାଳସୂର୍ଯ୍ୟ; ବଳାହକଗର୍ବଦଳା—ମେଘର ଗର୍ବ ଧ୍ୱଂସକାରୀ, ଅର୍ଥାତ୍ ଅତିକଳା; କଳାପ—ମୟୂର ପୁଚ୍ଛ; ଘୋଷ—ଗଉଡ଼ ଗା; ବରଛି—ବର୍ଚ୍ଛା; ମୀନରଥ—କନ୍ଦର୍ପ ।

ମହୀଚକ୍ର ଯାକରେ ମୁଁ ରହିଲେ ହେଁ ଚାହିଁରେ !
ନିଶି-ଦିବା ଆନ ମତେ ଦିଶିବ ତ ନାହିଁ ରେ ! । ୨ ।
ଅପେତ ଭୋଗ ମୁଁ କେଉଁ ତପେ ଥିଲି ଦାହି ରେ !
ମନରେ ତ ଅଛୁ ପ୍ରାଣଧନ, ଅବଗାହି ରେ ! । ୩ ।
ଅନନ୍ତ ମୋଦ ବର୍ଷିବା 'ଘନ' ତୁ ମୋ' ସହି ରେ !
ତୋ'ର ବିନା କି ନାଚିବ ମୋ ସୁଖ ବରହୀ ରେ ? । ୪ ।
କରିଥିବାରୁ ତୁ ଦେହ ପରି ମୋତେ ସ୍ନେହୀ ରେ !
ଚାରୁ ମୁଖ ଚାହିଁ ଦୁଃଖ ପାରୁ ନାହିଁ କହି ରେ ! । ୫ ।
'ହରି'-ଗିରେ ଶରଦ-ଶର୍ବରୀ-ନାଥମୁହିଁ ରେ !
ଜଗଦେବ କହେ ସ୍ନେହେ ଦ୍ରବିଗଲେ ବହି ରେ ! । ୬ ।



(୮)

ଅରଜିବି ପଛେ ଜନ ଅପଖ୍ୟାତିକି ଗୋ,
ବରଜିବି କେହି ଘନଶ୍ୟାମ ପ୍ରୀତିକି ଗୋ । ଘୋଷା ।

ତେଜି ଜାଇଦଳ ଶେଯ, ଘନସାର ମଳୟଜ, କରିବ କେ ରାଜୀବଦଳକୁ ଗତିକି ଗୋ । ୧ । ତା ସୁନ୍ଦର ମନ୍ଦ ହାସ, ରୁଚିର ଭ୍ରୂବିଳାସ, ଛାଡ଼ି ଆଡ଼ିବ କେ ଫୁଲବାଣେ ଛାତିକି ଗୋ । ୨ । ପଦକୁ ପୁରନ୍ଦରର, କରିଦେବି କରି ଛାର, ନିତି ନିତି ତା ସୁରତେ ମାତିକି ଗୋ । ୩ । ତେଜିଣ କୋଣ ଚାହାଣି, ପୀୟୂଷ ମଧୁର ବାଣୀ, ସହିବ କେ କାମରାଜ ଝଳି କାତିକି ଗୋ । ୪ । କରି ଗାଢ଼େ ପରିରମ୍ଭ, ତା ଅଧର ପକ୍ୱ ବିମ୍ବ, ପିଇଥିବି ପାହିଯିବା ଯାଏ ରାତିକି ଗୋ । ୫ । ବୋଲେ ବସୁଦୁର୍ଗପତି, ଧ୍ୟାନ କରି ତା ମୂରତି, ନାମ ଭଜନରେ ହେବି ଯତି କି ଗୋ । ୬ ।



---

(୭) ନିଦେଶୁଁ ଭୂପର—ରାଜାଙ୍କ ଆଦେଶ ହେତୁ, ଚାରିକଳା—ଚାରି ପକ୍ଷ ବା ଦୁଇମାସ, ମହୀଚକ୍ର ଯାକରେ—ପୃଥିବୀ ସାରା, ଅପେତ ଭୋଗ—ଛାଡ଼ିଥିବା ବିଳାସିତା, ଘନ—ମେଘ, ସୁଖବରହୀ—ସୁଖ ରୂପକ ମୟୂର, ଶରଦ ଶର୍ବରୀ ନାଥମୁହୀଁ—ଶରଦଚନ୍ଦ୍ରବଦନା, ଗିରେ—କଥାରେ ।

(୯)

## ରାଗ—ପୂରବୀ

ଅରଜିଥିବାର ପ୍ରୀତି, ବରଜି ଦିଅନ୍ତି ମନୁଁ କେହି ରୂପେ ପରୁଷ ପୁରୁଷଜାତି । ପଦ ।

ମନୁ ସରିଯିବା ଯାଏ ଚାଟୁ ବାଣୀ ଭଣି ଦୂତୀପାଣି ଧରି, ତନୁ ସରିଯାଏ ଭଜିବା ଆଶାରେ ଅନୁସରି ଅନୁସରି । ୧ । ମୁରଲୀ ବଜାଇ ନିତି ନିତି ଯାଇ ସଉଧକୁ ଲାଗି ଲାଗି, ବେଶ ହୋଇ ନଟ ନଦୀତଟବଟବନବାଟ ଜଗି ଜଗି । ୨ । ଚାଲିଯିବା ମାର୍ଗ ଚରଣଲାଞ୍ଛନ ବାଲି ଗଉରବେ ତୋଳି, ଦେଇ ଶତ ଚୁମ୍ବ ପୁଲକାବଲମ୍ବ ହୋଇ ଶିରେ ବୋଳି ବୋଳି । ୩ । ତୋତେ ତ ଗୋଚର ପେଶି ଶିଶୁଚର ଯେତେରୂପେ ମନଧରା, କରେ ଦେଇ ମଞ୍ଜୁକୁସୁମପୁଞ୍ଜରେ ସଜାଡ଼ି ସଜାଡ଼ି ଝରା । ୪ । ପରସନ ହେବା ନୋହିବା ସନ୍ଦେହୁଁ ପରଶନ ଦେଖି ଦେଖି, ଅମ୍ଳାନ କେତକୀପ୍ରସୂନ ଦଳରେ ପ୍ରେମଲେଖ ଲେଖି ଲେଖି । ୫ । ଦେବୀବାଣୀ ଶୁଣି କହିଲେ ମିତଣୀ ଅଷ୍ଟଦୁର୍ଗ ନାଥ ବୋଲେ, ହେଲେ ହେଲେ ବାମ ଶ୍ରମ ଲଭି ପ୍ରେମ ଉଚିତ ସେ ଶ୍ୟାମ ତୁଲେ । ୬ ।

●

(୧୦)

## ରାଗ—କାମୋଦୀ, ତାଳ—ଝୁଲା

ଅଲଂଘ୍ୟ ହେବାରୁ ମୋ ରାଣ ପରାଣବନ୍ଧୁ ଯାହା ଦିନେ ଦିନେ । ସହଜେ ଦୟାଳୁ ଗୁଣ ପରିପାଳୁ ମୋହପରି ନିଧୁବନେ ରେ, କିଶୋରି, ସେ କାଳେ ଯେଉଁ ସମ୍ପତ୍ତି, ତଳପ ଦୀପ ମୋ ମନ ନେତ୍ର ନିଶା ଏମାନେ କିଛି ଜାଣନ୍ତି ରେ । ୧ । ଶ୍ରୀହସ୍ତ କଞ୍ଜଚରଣ ଆଭରଣନିବହ ହେବାରୁ ମୂକ, ରତନମେଖଳା କ୍ଷୁଦ୍ର ଘଣ୍ଟିମାଳା, ହୁଏ, ମହା

(୯) ପରୁଷ ପୁରୁଷଜାତି—ନିଷ୍ଠୁର ପୁରୁଷଜାତି; ତନୁ ସରିଯାଏ—ଦେହ ଶୁଖିଯାଏ: ସୌଧ—କୋଠାଘର; ଚରଣଲାଞ୍ଛନ ବାଲି—ପାଦଚିହ୍ନ ଲାଗିଥିବା ଧୂଳି; ପୁଲକାବଲମ୍ବ—ରୋମାଞ୍ଚାବଲମ୍ବୀ ଅର୍ଥାତ୍ ରୋମାଞ୍ଚିତ; ମଞ୍ଜୁକୁସୁମପୁଞ୍ଜରେ ସଜାଡ଼ି ସଜାଡ଼ି ଝରା—ସୁନ୍ଦର ଫୁଲମାନଙ୍କଦ୍ୱାରା ଫୁଲତୋଡ଼ା ସଜାଡ଼ି; ପରଶନ ଦେଖି ଦେଖି—ପ୍ରଶ୍ନ ଦେଖି ଅର୍ଥାତ୍ ଜ୍ୟୋତିଷିକ ଗଣନା କରି କରି; ପ୍ରସୂନ—ଫୁଲ; ବାମ—ପ୍ରତିକୂଳ ।

(୧୦) ନିଧୁବନ—କାମକ୍ରୀଡ଼ା, ତଳପ—ଶଯ୍ୟା, ବାବଦୂକ—ବହୁଭାଷୀ, ମାତ୍ର ଏଠାରେ ଶବ୍ଦାୟମାନ, କମ୍ବୁ—ଶଙ୍ଖ, ପନୀର—ସୁବାସିତ ଜଳ, ଅଲେଖ—ଅନିର୍ବଚନୀୟ, ଘନସାର—

ବାବଦୂକ ରେ, କିଶୋରୀ, ପକାଇ ତ୍ରିପଟା ତାଳ, ଅଧୋମୁଖ ସୁନା କଳସ ଉପରେ ନଚାଇ ନକ୍ଷତ୍ରମାଳ ରେ । ୨ । ମଣିମୟ ନଥ ନାଟୁଆ ତାହାକୁ ବିବାଦେ ଜିଣିମା ପାଞ୍ଚେ, କମ୍ବୁଶିରେ ମାର ଦରପଣ ରଖି, ତହିଁ ତିଳଫୁଲ ନାଚେ ରେ, କିଶୋରି, କି ମୋଦେ ଲଜ୍ଜାନାଗରୀ, ଦେଖୁଥାଇ ନାଟ ତା ପକ୍ଷ୍ମକବାଟ ଆଢ଼ ଆଢ଼ ପେଲା କରି । ୩ । ନୀଳମେଘୀ ଶାଢ଼ୀ ଗଲା ପରି ଭିଡ଼ି ଖସାଇ ଲହସା ଖୋସା, ରଜତ ମୁଦ୍ରିକା ବିଞ୍ଚୁଦେଲା ପରି ସେ ସମୟ ମନ୍ଦହସାରେ, କିଶୋରି, ରତି ମନମଥ ଦୁହେଁ, ପନୀର ପିଚିକା ଖେଳୁଥିଲା ପ୍ରାୟେ ସ୍ୱେଦ ବିନ୍ଦୁ ଦିଶେ ଦେହେ ରେ । ୪ । ବେଳକୁ ବେଳ ବ୍ୟାକୁଳ କରିବାରେ ନାରାଚେ ପଞ୍ଚବିଶିଖ, ଅଲେଖ ସୁଖ ଆସ୍ୱାଦନେ କମ୍ପାଇ ଦେଲା ବେଳେ ଚନ୍ଦ୍ରମୁଖ ରେ, କିଶୋରି, ମୁକୁତା ଜାଲି ତାଟଙ୍କ, ଦୋହଲିବା ଦେଖି ଦୂର ହୁଏ ଆଖି ପୂର୍ବର ଦୁରିତପଙ୍କ ରେ । ୫ । ଚୁମ୍ବାଇ ଚୁମ୍ବି ମୋ ଅଧର ବଦନେପୀଡ଼ି ନେତ୍ରକଞ୍ଜ ଖୋସି, ଅତୁଲ୍ୟ ଅମୂଲ୍ୟ ଝଳି ଝଲମଲ ଗଣ୍ଡକୁ ମୋ ଗଣ୍ଡେ ଘଷି ରେ, କିଶୋରି, ଯାହା ଭାଷୁ ମଲି ଇଷି, ଅଖଣ୍ଡପ୍ରମୋଦ ପ୍ରବାହେ ମୋ ହୃଦ ଅନାୟାସେ ଯାଏ ଭାସି । ୬ । ଘନସାର ବାସ ପ୍ରଖର ନିଃଶ୍ୱାସ ଶରମଭରୁ ପ୍ରସରେ, ନିଦାଘେ ଲୁଳିଲା ନବୀନ ମଞ୍ଜରୀ ପରି ଢଳି ମୋର ଉରେ ରେ, କିଶୋରି, ଦେଇଅଛୁ ସୁଖ ଯେତେ, ତୋ ପଦରାଜୀବେ ଅଳତା ହେଲେ ମୁଁ ସୁଝିବି ଅବା କିଛିତେ ରେ । ୭ । ଏପରି ସମ୍ପତ୍ତି ଛାଡ଼ି ଆସି କ୍ଷିତି ବନଧର ନଦୀ ଦେଶେ, ମୋ ହୃଦୟ ଫାଟି ନ ଗଲା ଯାହାଟି, ବନିଛି ନିଶ୍ଚେଁ କୁଳିଶେ ରେ, କିଶୋରି, ଲୋଡ଼ିଲେ ଆଉ କେ ଦେବ, ବ୍ରଜ ବରଜିଲା ଦିନୁ ସେ ଗଲାଣି କହେ ଶ୍ରୀମୁକୁନ୍ଦଦେବ ରେ । ୮ ।



## (୧୧)

## ରାଗ—ଚିନ୍ତା କେଦାର

ଆଉ ଏ "ଚାଟୁ ବାଣୀ" କାହିଁକି ? ସବୁ 'ସ୍ନେହ' ମୁଁ ଜାଣି ନାହିଁ କି ? । ୦ ।
ଆହେ ଗୋବିନ୍ଦ, କପଟ ମୂରତି ! "ସୁଧା" ରେ ଉଦର ହେଲେ ଭରତି,
ଥିଲେ ଭଲ ବୁଦ୍ଧି, ଆଉ ଛାର 'ଦଧି-ସର'କୁ କେବେ ଚାହିଁ କି ? । ୧ ।

---

କର୍ପୂର, ଚନ୍ଦନ; ଲୁଳିଲା—ମ୍ଳାନ ହୋଇ ଯାଇଥିବା; ବନିଛି—ତିଆରି ହୋଇଛି, କୁଳିଶ—ବଜ୍ର, ରଜତମୁଦ୍ରିକା—ରୌପ୍ୟମୁଦ୍ରା, ଟଙ୍କା ପ୍ରଭୃତି ।

(୧୧) ଛାପି ରାତି—ଲୁଚି ରହି, ଜାତି ଲତିକା—ଜାଇଫୁଲ ଲତା, ଫୁଟୁକି—ଆଙ୍ଗୁଳିରେ ଶବ୍ଦ କରିବା, ଲୁଠିବାରୁ—ମାଟିରେ ଗଡ଼ିବାରୁ, ଯାବକ—ଅଳତା ।

ଅଛି କି ଅବଧାନେ ? ଯେଉଁ କାଳେ ଛାପି ରାତି ଜାତି ଲତିକା ମୂଳେ
ଧରୁଁ ମୋ'ର ହାତ "ରଖ ଉମାନାଥ !" ବୋଲି ଯେ ପଡ଼ ଚିହିଁକି ? । ୨ ।
ଅହର୍ନିଶି ନିଦ ନ ଥିବ ପରା ? ଅଳସୀ ହେଉଥିବ ଜବାଧରା,
ଆସୁଥିବ ହାଇ, ଅବିଳମ୍ୱେ ଯାଇ "ଫୁଟୁକି" ଠୁକ ତହିଁକି । ୩ ।
'ଶ୍ରୀ ରାମଚନ୍ଦ୍ର ଛୋଟରାୟ' ଭଣେ ଲୁଠିବାରୁ 'ବାଳାମଣି'-ଚରଣେ
ଲାଗିଚି ଯାବକ ବୋଳ ମଥାଯାକ, ଏ 'ଦଣ୍ଡ' ଦେଲା କେହି କି ? । ୪ ।



(୧୨)

## ରାଗ—କାମୋଦୀ, ତାଳ—ଆଠତାଳି

ଆଉ କି ସହୀ ସହି କରିବ ଗୋ, କହି ମହତ ସିନା ସରିବ ଗୋ । ଘୋଷା ।

ଶ୍ୟାମଗୁଣ ପରକ୍ଷି, ଚିତ୍ତ ଭିତରେ ସଖି, ରଖିଲାଣି କିପରି ଭାରିବ ଗୋ; ମିଶି ଗଲାଣି କ୍ଷୀର,—ଭାଣ୍ଡରେ ଯେବେ ଖାର, ଛାଣି କେ ସ୍ୱାଦୁ ବାରି ପାରିବ ଗୋ । ୧ ।
ବୁଝିଲାଣି ମରଜି, ଆଉ କି ହୋଇ ରାଜି, ନିକୁଞ୍ଜେ ତୋ ସଙ୍ଗେ ବିହରିବ ଗୋ;
ସୁଧାରେ ବିଷ ଦେଇ ଯତ୍ନେ ଛାଣିଲେ ନେଇ, ତହୁଁ କି ମଧୁ ଆଉ ଝରିବ ଗୋ । ୨ ।
ଦେଲାଣି ସ୍ନେହ ଭାଙ୍ଗି ତୋଠାରୁ ସେ ଶୁଭାଙ୍ଗୀ ଆଉ କି ତୋ ବୋଲ ସେ କରିବ ଗୋ;
ଛେଦି ପାଦପମୂଳ, ସିଞ୍ଚିଲେ ନେଇ ଜଳ, ସେ କି ନବପଲ୍ଲବ ଧରିବ ଗୋ । ୩ ।
ଅଷ୍ଟଦୁର୍ଗ ଅବନୀପତି ଭାଷେ ସଜନି ଆଉ କି ତୋ ଦୁଃଖ ସେ ହେରିବ ଗୋ;
ପରଖଦେବା ଲାଗି, କଲାଣି ଯେବେ ପାଞ୍ଚ, ପଞ୍ଚବାଣକୁ ସେ କି ଡରିବ ଗୋ । ୪ ।



(୧୩)

## ରାଗ—କାଫି—ଝୁଲା

ଆଉ ଗମାର ମାରକୁ କେ' ମାନେ ରେ । ପଦ ।

ସହୁ ସେ ନ ସହୁ କହୁଅଛି ଅଭିମାନେ
ମୋର ହେଲେ ଡର ନାହିଁ ଧ୍ୟାନେ ରେ । ୧ ।

ତୋରା କର୍ପୂରହାସି ! ତୁ ପରା ଅବଧାନେ
ରଖିଲୁନି ଯେବେ ସନ୍ନିଧାନେ । ୨ ।
କହିଲେ ହେଁ ମୋ ଭାଗ୍ୟ ନ ସହି ଖଳଜନେ
ଧନ ଯେବେ ନ ଶୁଣିଲୁ କାନେ । ୩ ।
ପହୁଡ଼ ଛୁ ଯାହା ଦେଇ ବଳି ଅବସାନେ
ମସ୍ତକ ମୋ ହସ୍ତ ଉପଧାନେ । ୪ ।
ରସନିଧି ! ଯାହା ମୋ ତରସ ଅନୁମାନେ,
ତୋଷୁ ବିମ୍ବ ଓଷ୍ଠ ଚୁମ୍ବଦାନେ । ୫ ।
କିଶୋର କିଶୋରୀ ଚାରି ପଦକଞ୍ଜ ଧ୍ୟାନେ
କହେ ଜଗଦ୍ଦେବ ସାବଧାନେ । ୬ ।



(୧୪)

## ରାଗ—ପୂରବୀ, ଆଠତାଳି

ଆଉ ଟିକାକୁ ଗୋ, ଆଉ ଦଣ୍ଡକୁ ଗୋ, ବୃଥା କଥାକୁ ଗୋ,
କାହିଁକି ଦୁଃଖ ରୁଷଣା ?
ଶ୍ୟାମ ମୋର ଜୀବବନ୍ଧୁ ବୋଲି, ଯିବ
ଏହି ଶ୍ରୀମୁଖରୁ ଶୁଣା । ୦ ।

ସରଦାର ମଧୁ ଫରମାସିଲାନି ନିକୁଞ୍ଜମନ୍ଦିର ମଣ୍ଡା,
ଅନଙ୍ଗ-ରଙ୍ଗ ରଙ୍ଗସ୍ଥଳେ ଉଡ଼ିବ ଶୃଙ୍ଗାର ମଙ୍ଗଳ ଧଣ୍ଡା । ୧ ।
ସରମ ସମୟ ସମ ରସମୟ ସବୁ ରୂପେ ହୋଇବାକୁ,
ନିଜ ଜୟ ହେତୁ ଧ୍ୱଜ କରିବୁ ତୁ କୋମଳ ରୋମଲତାକୁ । ୨ ।
ନବୀନ ଘନ ଶ୍ୟାମଳ କୃଷ୍ଣ ପକ୍ଷେ ଚନ୍ଦ୍ରାଭିଖ୍ୟା ନ ଦିଶିବ,
ସ୍ମର ସହଚର ସାବୟବ ଲଂଘି ବନମାଳିକା ବାସିବ । ୩ ।
ତଦନନ୍ତର ତୁ ମୋଠାରେ କରୁଣାରସ ସିଞ୍ଚ ବା ନ ସିଞ୍ଚ,
ମିଳିବ ତୋ ପଦ-କଞ୍ଜକୁ ଶିଖଣ୍ଡମୟ ଚୂଳାଞ୍ଚଳ ଲାଞ୍ଛ । ୪ ।

ମିଳିବାକ୍ଷଣେ ତୋ ପୀୟୂଷ ମଧୁର ମୁଖସୁବାସ ରାଜୀବ,
ମୁରଲୀ ଚୁମ୍ବନ ମୁରଲୀ-ମୋହନ ମନରୁ ପାଶୋରା ଯିବ । ୫ ।
ଗଉର ବରନା ଗଉରବ ମନା କରି ମନ କଲୁ ତା'ରେ,
ବଣିକହରାରି ମଜାଇବ ହରି ମଣି କନକଲତାରେ । ୬ ।
ରସି ସଖିଗିରେ ହସି ରାଧା ଧୀରେ ଭାଷିଲେ ସ୍ନେହେ ଯା'ମ ଯା',
ରଚିଲେ ନିଃସର୍ଗ ଧୀର ଅଷ୍ଟଦୁର୍ଗ ବସୁଧା-ବଳୟ ରାଜା । ୭ ।

•

(୧୫)

## ରାଗ—ପୂରବୀ

ଆଉ ଟିକାକୁ ଗୋ, କାହିଁକି ଦୁଃଖ - ରୁଷଣା ?
''ଶ୍ୟାମ ମୋ'ର ଜୀବ ବନ୍ଧୁ'' ବୋଲି ଯିବ ଏହି ଶ୍ରୀମୁଖରୁ ଜଣା । ୦ ।
ସରଦାର 'ମଧୁ' ପରମାଶିଲାଣି ନିକୁଞ୍ଜ - ମନ୍ଦିର ମଣ୍ଡା,
ଅନଙ୍ଗ-ରଣ-ରଙ୍ଗ ସ୍ଥଳେ ପଡ଼ିବ ଶୃଙ୍ଗାର ମଙ୍ଗଳ ଧଣ୍ଡା । ୧ ।
ସମ ରସମୟ ସମର ସମୟ ସବୁରୂପେ ହୋଇବାକୁ
ନିଜ ଜୟ-ହେତୁ କେତୁ କରିବୁ ତୁ କୋମଳ ଲୋମ-ଲତାକୁ । ୨ ।
ନବୀନ ଘନଶ୍ୟାମ କୃଷ୍ଣ ପକ୍ଷେ ଚନ୍ଦ୍ରାଭିଖ୍ୟା ନ ଦିଶିବ,
'ସ୍ମର' ସହଚର ସମୟ ନ ଲଂଘି ବନ ମଲ୍ଲିକା ବାସିବ । ୩ ।
ତଦନ୍ତରେ ତୁ ମୋ' ଠାରେ କରୁଣାର ରସ ସିଞ୍ଚ ବା ନ ସିଞ୍ଚ,
ଯାଚିବ ତୋ' ପଦ-କଞ୍ଜକୁ ଶିଖଣ୍ଡମୟ ଚୂଳାଞ୍ଚଳ ଲାଞ୍ଚ । ୪ ।
ମିଳିବା କ୍ଷଣି ତୋ' ପୀୟୁଷ-ଅଧର-ମୁଖ-ସୁବାସ-ରାଜୀବ
ମୋହିତ ମୋହନ ମୁରଲୀ ଖୁରଳି ମନରୁ ପାସୋରି ଯିବ । ୫ ।

---

(୧୫) ସରଦାର ମଧୁ—ଋତୁରାଜ ବସନ୍ତ, ଧଣ୍ଡା—ମାଳା, ସମର ସମୟ—ରତିକ୍ରୀଡ଼ାର ବେଳ, କେତୁ—ପତାକା, ଲୋମଲତା—ନାହି ଉପରେ ଓ ତଳେ ଥିବା ଲୋମାବଳୀ, ଚନ୍ଦ୍ରାଭିଖ୍ୟା—ଚନ୍ଦ୍ରର ଶୋଭା, ସ୍ମରସହଚର ସମୟ—ରାତ୍ରି କାଳର କେଳି ସମୟ, ଖୁରଲି—ବଂଶୀ ବଜାଇବା ଭଙ୍ଗୀ, ବଣିକ ହରାରି—ବେପାରୀ କନ୍ଦର୍ପ, ହରିମଣି—ଶ୍ରୀକୃଷ୍ଣ ରୂପକ ମଣି, ନିସର୍ଗ ଧୀର—ସ୍ୱଭାବତଃ ନମ୍ର ।

ତା' ଉର-ବିହାର-ଗଉରବ ବିନା ହୋଇ ମନ କଲେ ତୁ ରେ !
ବଣିକ-ହରାରି ମିଳାଇବ 'ହରି'-'ମଣି' 'କନକ ଲତା' ରେ । ୬ ।
ହସି ସଖୀଗିରେ ରାଧା ଧୀରେ ଭାଷିଲେ "ତୁହି ଯା ମ, ଯା"
ରଚିଲେ ନିସର୍ଗ ଧୀର ଅଷ୍ଟଦୁର୍ଗ ବସୁଧା ବଳୟ - ରଜା । ୭ ।

•

## (୧୬)

## ରାଗ - ମୁଖାବରି

ଆଗୋ ସଖି ! ଭଜିବି ମୁଁ ସେ ନୂଆ ନଟକୁ । ୦ ।
ହେଲେ ହେଁ ଲୋକହସା, ନିତି କରିବି ବସା
କଳିନ୍ଦ ଗିରି ସୁତା - ତଟକୁ । ୧ ।
ବୁଲିବି ବନେ ବନେ ତା' ତୁଲେ ପ୍ରତିଦିନେ ;
ଯେ ଯେତେ ପାରେ ତେତେ ଅଟକୁ । ୨ ।
ମତେ ଅବା ନ ସହି ଡକାଇ ନେଉ କେହି
ଭଟକୁ ଆଣି କଂସ - କଟକୁଁ । ୩ ।
କେ ଦେଲେ ଦେଉ ଗାଳି ; କରିବି ତା' ସଙ୍ଗାଳି
ହଟକୁ ଶିଖଣ୍ଡ ମୁକୁଟକୁ । ୪ ।
ପଡ଼ି ଶ୍ରୀପଦ-ତଳେ ଟାଣି ଆଣିବି ବଳେ
ନିକୁଞ୍ଜ - ମଧ୍ୟ ଫୁଲ ଖଟକୁ । ୫ ।
ବୋଲେ ଶ୍ରୀ ଛୋଟରାୟ ନିରତେ ମୋ ହୃଦୟ
ଘଳେ ସେ 'ନୀଳମଣି' ଝଟକୁ । ୬ ।

•

(୧୬) କଳିନ୍ଦଗିରିସୁତା—ଯମୁନା ନଦୀ, ତେତେ ଅଟକୁ (ପାଠାନ୍ତର—ମୋତେ ଅଟକୁ) —ଥାକଟ କରୁ ବା ଅଟକାଉ, ଭଟକୁ — ଭାଟକୁ, ହଟକୁ—ଦୁଷ୍ଟାମିକୁ ।

(୧୭)

ଆଗୋ ପ୍ରିୟ ସଖି ! ପ୍ରାଣପ୍ରିୟଙ୍କୁ ପାରିଲୁ ଟିକି ଦେଖି । ଘୋଷା ।
ରସେ ଉଲୁସାଇ ଚିତ୍ତୁଟିକି
ଘେନିବା ସମୟେ ଗୀତୁଟିକି ।
କି ତୁଣ୍ଡି ପାରିବ ଚନ୍ଦ୍ରିକା ତାହାର
ମିତୁଟିକି କୁନ୍ଦ ସ୍ମିତୁଟିକି । ୧ ।
ଥାଏ ମୋର ମନ୍ଦ ମୁଁ ବିବେକୀ
ପ୍ରାଣ ତୁଲେ ହୋଇଗଲି ବିକି ।
ଢାଳିଟି ନିକଟେ ଅନାଇ ଦେଲିଟି
କାଲି ଟିକିଏ ସେ ଚାଲିଟିକି । ୨ ।
ଶ୍ରୁତିରେ ତାର ଚରିତ୍ରୁ ଟିକି
ଶୁଣୁଥିଲେ ହେଲେ ମୁଁ ନିତିକି ।
କି ବୁଦ୍ଧିରେ ସତୀ ମତିହରା ମୋର
ଧୃତି କରିଦେଲେ ଟିକିଟିକି । ୩ ।
ବୋଲେ କବିରବି ତୁହିଟିକି
ଗେଲେ ତାଙ୍କୁ ରାଧେ ଚିନ୍ତୁଟିକି ?
ପାଲେ ଯା ପକାଇ ନିଏ ସେ ଡକାଇ
ଚୋରି କରି ମନ ବିଭୂଟିକି । ୪ ।

●

(୧୮)

## ରାଗ ମୁଲତାନି—ଆଡ଼ତାଳି

ଆଜ ଏ ରୁଷାରେ, ପାଳିଲି ନାହିଁ କି ତୋର ହୁକୁମ ସୁସାରେ । ପଦ ।

ହେଲୁ ଯେ ଗଣ୍ଡମଣ୍ଡିତ-କର ସାରସାରେ, ତୋ ବିନା ଅଛି କେ ମୋର ଭରସା ରସାରେ । ୧ । ଚିନ୍ତାମଣି ପରା ତୁ ମୋ ଚିତ୍ତ ଘରଷା ରେ, ତିନ୍ତାଅ ନା କୁଚକୁମ୍ଭ ଅଶ୍ରୁ ବରଷାରେ । ୨ । ସହି ସରିଲିଟି ହର-ଅହିତ ତୃଷାରେ, ବନ୍ଦ ପଦ୍ମସ୍ମିତ ମକରନ୍ଦ

(୧୮) (ଶେଷ ପଦ)—କୃଷ୍ଣଙ୍କ ବିନୟରୂପ ହିମସ୍ପର୍ଶରେ ଦେବୀଙ୍କ ମାନ ପଦ୍ମ ଅବସ୍ଥାକୁ ପ୍ରାପ୍ତ ହେଲା ଅର୍ଥାତ୍ ମାନ ସଙ୍କୁଚିତ ହୋଇଗଲା ।

ପରଷାରେ । ୩ । ଗୁଣାମ୍ବୁଧି ଥରେ ସ୍ମର ସମରେ ରସା ରେ, ଭଣାଯାଉ ତୋର ଗଣା ନ ଯା ନିରାଶା ରେ । ୪ । ଜଗଦ୍ଦେବ ବୋଲେ ଶ୍ୟାମ ବିନୟ ତୁଷାରେ, ଶଙ୍କିଲା ଦେବୀଙ୍କ ମାନ ପଙ୍କଜ ଦଶା ରେ । ୫ ।



## (୧୯)

## ରାଗ—ମଲ୍ଲୁଆ

ଆଜ ଏ କି ଗୁମାନ ରେ (ଚନ୍ଦ୍ରାନନା)
ଦେଖି ନାହିଁ ସ୍ୱପନରେ । ପଦ ।

ସୁନ୍ଦର ରଦବାସ, ମନ୍ଦାରଦଳେ ହାସ,-କୁନ୍ଦକୁ ପରକାଶ, କୁନ୍ଦାନାଙ୍ଗି ମୋ ଧନି,(ପଡ଼ି) ତୁ ସିନା ମୋର ପ୍ରାଣ, ରମଣୀଗଣ ରାଣ, ରାଣ ଅଛଟି ମାଣ,-ବକ ମୃଗାକ୍ଷୀ ଜାଣ ଦାରୁଣ ସ୍ମରରାଣ, ଶାଣଦିଆ ତୀକ୍ଷଣ, ବାଣଗଣରେ ନିଶ୍ଚେଁ ନେବଟି ଏ ପରାଣ । ୧ । ଚାରୁ ଚମ୍ପକଦେହା ରେ, ଚନ୍ଦ୍ରାନନା, କାହୁଁ ଶିଖିଲୁ ଏହା ରେ, ଅଶ୍ରୁ ପ୍ରସରିବାର, ମହୀକି ଚିରିବାର, ଆଜନ୍ମ ପରିଚାର, ସଂସାର ସାରିବାର । ୨ । ମର୍ମ ଗଲାଟି ଫାଟି ରେ, ଚନ୍ଦ୍ରାନନା, ମାରମାର୍ଗଣଧାଟୀରେ, ବନ୍ଧୁଆ ସରିଲିଟି, ତୋ କୀର୍ତ୍ତି ପରିପାଟୀ, ରୋପିବାର ଲତାଟି, ମୂଳୁ ନ ପକା କାଟି । ୩ । ଦୋଷ ଦେଖି ତୁ ଦଣ୍ଡ ରେ, ଚନ୍ଦ୍ରାନନା, ମଣ୍ଡନା କର ଗଣ୍ଡରେ, ବାହୁପାଶେ ନିତାନ୍ତେ, ବାନ୍ଧିବା ବସନାନ୍ତେ, ଓଷ୍ଠ ବିଦାରି ଦନ୍ତେ, ଭୂଷ କରଜ-କୁନ୍ତେ । ୪ । ଆରମ୍ଭିଲେ ତୁ ରୁଷା ରେ, ଚନ୍ଦ୍ରାନନା, ଭରସା କେ ମୋ ରସାରେ, ତେଜିଲେ ତୁ ମୋ କୋଳ, କେତେ ମୋ ଧୃତି ବଳ, ସହେ କି କରବାଳ, କେଳି-କମଳ ଦଳ । ୫ । ଶ୍ୟାମ ବିନୟଭାଷାରେ, ଚନ୍ଦ୍ରାନନା, ମନ୍ଦ ମଧୁରହସା ରେ, ଭାଷିଲେ ପ୍ରିୟବାଣୀ, ରସେ ସେ ସୁଲକ୍ଷଣୀ, ରସିଲେ ମନ ଜାଣି, ଶ୍ରୀ ଛୋଟରାୟ ଭଣି । ୬ ।



(୧୯) ରମଣୀଗଣରାଣ—ନାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ରଦବାସ—ମନ୍ଦାରଦଳେ—ଓଷ୍ଠରୂପ ମନ୍ଦାରଫୁଲରେ, ହାସକୁନ୍ଦକୁ—ହାସ-ରୂପ କୁନ୍ଦଫୁଲକୁ, କୁନ୍ଦନାଙ୍ଗି—ସ୍ୱର୍ଣ୍ଣାଙ୍ଗି, ମାଣବକ—ଶିଶୁ, ରାଣ—ରାଜା, ପରିଚାର—ଚାକର,ମାରମାର୍ଗଣାଧାଟୀ—କନ୍ଦର୍ପଶରସମୂହ, ରସା—ପୃଥିବୀ, କେଳି-କମଳ-ଦଳ—ପ୍ରୀତିପଦ୍ମପାଖୁଡ଼ା, କରବାଳ—ଖଣ୍ଡା ।

(୨୦)

## ରାଗ—ବେହାଗଡ଼ା—ଆଦି

ଆଜ ରସବତୀଙ୍କର ରାଜା । କୋଳୁ ନ ଯା ରେ । ୦ ।
ସରିଯିବି ସିନା ସୁନାଗୋରି । ଦୁଃଖ ବେଳାରେ,
ଥରେ ଆଉ ତୋ ରସପାତରେ ମୋତେ ଭିଜା ରେ । ୧ ।
ଦୁହିଁଙ୍କ ନାମେ ଡିଣ୍ଡିମ ବାଜୁ ବ୍ରଜ ବଜାରେ,
ଅସରସ ଲୋକ କି କରିବ ନିନ୍ଦି ହଜାରେ । ୨ ।
ଉଣାଯାଉ ଗଣା ଯା ଅଦୃଷ୍ଟ ଦୁଷ୍ଟ ରଜାରେ,
କରନ୍ତୁ ଦୂରନ୍ତେ ଲେଖା ମୋ ରସେ ଗରଜାରେ । ୩ ।
ଦେହମହୀ ପୂରିଛି ପୂଲକ ବ୍ୟାଜ ଗଜାରେ,
ଏ ସମୟେ ସ୍ମରାନଳ ଝାସରେ ନ ଭଜା ରେ । ୪ ।
ଶ୍ରୀମତୀ ଏପରି ହରି ଭାରତୀ-ଭାନୁଜା ରେ,
ବୁଡ଼ିଗଲା ପରି ଅଙ୍କେ ବିରାଜିଲେ ଲଜାରେ । ୫ ।
କୃପାକରି ବସୁଦୁର୍ଗ ବସୁନ୍ଧରା ରଜାରେ,
ସ୍ମିତକୁଳେ ରସିଲେ ମଦନ ମହାପୂଜାରେ । ୬ ।



(୨୧)

## ରାଗ—ଖମ୍ବାଜ, ଆଦିତାଳ

ଆଜି ମଦନ ସାଜିକି ନାଗର କର ରାଜି ରେ ।। ଘୋଷା ।।
ଲଘିଂଲ ଯା ଶଙ୍କା ଗୁରୁଭୟ ବନ-ରାଜିରେ ।
ରସସିନ୍ଧୁ ତଟରେ ସଞ୍ଚରୁ ମନ ବାଜି ରେ । ୧ ।
ରସବତୀ ଚକ୍ରବର୍ତ୍ତୀ ଯଶକୁ ନିହାଜି ରେ,
ଭୁଲାଇ ମୂଲାଇ ଯାନ ଦେବି ସିନା ସାଜି ରେ । ୨ ।
ପରିକର ନାଶ ମଣି ତାର କରେ ମାଜି ରେ,
ଧରଣୀ ମଣ୍ଡନା ବେଶ ଦେବ ସୈନ୍ୟ ସାଜି ହେ । ୩ ।

ଭାଷେ ଜଗଦ୍ଦେବ ଶ୍ୟାମ ବାଣୀ ଡକା ବାଜି ରେ,
ହଜିଗଲା ରାଜୀବାର ଶଙ୍କା ଭାନିତାଜି ରେ । ୪ ।

•

(୨୨)

ଆରେ ସଖି, କହିଲୁ କି ଶ୍ୟାମ ଆଗେ
ବୁଡ଼ି ସୁଆଗେ । ୦ ।

ରାଧା ଆମ୍ଭ ତୁଲେ କାଲି ନିକୁଞ୍ଜ ପୁଞ୍ଜରେ ବୁଲି
ପୁଲକି ତମାଳ ବଲ୍ଲୀ ଶାଖାକୁ ଭିଡ଼ିଲା ବୋଲି । ୧ ।
ବାଳ କାଳୁ ତୁ ମୋ ଜଥା ବୋଲି ସିନା ମନ ବ୍ୟଥା
କହିଲି ଛୁଆଇଁ ମଥା ମନେ ନ ରଖି ସେ କଥା । ୨ ।
ମନକୁ ନ ଭର ଯାଇ ତୋତେ କି ନ ସମଂଜାଇ
କରଜ ଦେଲି ବଜାଇ ଛାର ଏ କଥାକୁ ଯାଇ । ୩ ।
ପଟେ ମୁଖଚନ୍ଦ୍ର ତାର ଚନ୍ଦ୍ରରେ କରି ତିଆର
ଚାହିଁଣ ଶିରୀ ସମ୍ଭାର ଗେଲେ ଥରେ ଚୁମ୍ବିବାର । ୪ ।
ସେ ଦିନ ଦିବସ ଯାକ କାନେ ଶୁଣି ବଂଶୀଡାକ
ତା ପ୍ରଣୟେ ରଖି ଟାକ କରିବା ପ୍ରସଙ୍ଗଯାକ । ୫ ।
ନ ଜାଣନ୍ତି ଆନ ଆଳୀ ତତେ ସିନା କଲି ଅଳି
ତା କଠଉ ତଳ ଧୂଳି ଆଣିଲେ ହୋଇବି ବୋଲି । ୬ ।
କହେ ଛୋଟରାୟ ଭାବ ପ୍ରକାଶିତ ନାହିଁ ଲବ
ଆନ ଆଗେ ମନୋଭାବ ପାଇଲେ ସେ କାହୁଁ ଠାବ । ୭ ।

•

(୨୨) ଜଣେ ସଖୀପ୍ରତି ଆଉ ଜଣେ ସଖୀର ଉକ୍ତି, ବଲ୍ଲୀ—ଲତା, ଜଥା—ସାଥି, କରଜ—ହାତର ନଖ, ପଟେ—ଗଛ ବକଳରେ, ଚନ୍ଦ୍ରରେ—କସ୍ତୂରୀରେ, ଲବ—ଟିକେ ମାତ୍ର ।

(୨୩)

## ରାଗ—ପୂରବୀ, ଏକତାଳି

ଆରେ ହେମଦେହା,

ତୁ ତ କୁହାଉ ରସିକା, କହୁ ଏହା ରେ ॥ ପଦ ॥

ମୋହନ ପୁଣି ସେ ହସୁଥିବ, — ବାହାର ଭିତରେ ଦିଶୁଥିବ,

ନର ନାଗ ନାକେ ବରବରନା କେ, ପର ଉପଦେଶେ ରୁଷୁଥିବ । ୧ ।

ଭାଙ୍ଗି ଧୃତି ଚନ୍ଦ୍ର ଚାହୁଁଥିବ—ନାଟୁଆ ନେତ୍ରାନ୍ତେ ଚାହୁଁଥିବ,

ସେ ଖେଳା ଭ୍ରୂବଲ୍ଲୀ, ଚାହିଁଦେବି ବୋଲି, ବିବେକ ସେକାଳେ କହୁଥିବ ।

ତା ଶିଖଣ୍ଡ ଚୂଡ଼ା ଝଲକରେ—ପଡ଼ିଲେ ଦୃଷ୍ଟି ଅପଲକରେ,

ମହୀଲୋକେ ରାମା, କେ ହୀନକରମା, କେହି ନ ପୂରିବ ପଲକରେ । ୩ ।

ସଞ୍ଜବେଳ କଞ୍ଜ ପରି ରହି—କରରୁହ ମୁନେ ଚିରି ମହୀ,

ମନମଥ ମନ, ମଥକୁ ପଥକୁ, ନୟନର ନ ଆଣିବି କେହି । ୪ ।

ସକପଟ ମନେ ପୋତି ମଥା—ନ କହିବ ଯେଉଁ କ୍ଷଣ କଥା,

ସକଳ ସୁକୃତ ଫଳ ମୂରତିକି, ସେ କ୍ଷଣୁଟି ନୋହିବ କି ବୃଥା । ୫ ।

କହନ୍ତେ ଏପରି ସୁଦଶନା—ସହଚରୀ ହୋଇ ସହି ସିନା,

ଅଷ୍ଟଦୁର୍ଗ ନାଥ କହନ୍ତି କହିଲେ, ତୋ ମରଢି କଷୁଥିଲି ସିନା । ୬ ।



(୨୪)

## ରାଗ—ଭୈରବୀ, ଆଠତାଳି

ଆହା କି ଭାଲେ ଲିହି—ଥିଲା ଦାରୁଣ ବିହି

ହେବାକୁ କାମେ ଦହି ଗୋ । ପଦ ।

କ୍ଷଣେ ହେଲେ ଅନ୍ତର—ନୋହି ପାଶେ ଚାକର—ପରି ସେବିଥିବାର ଗୋ

କୁଳିଶୁଁ ବଳି ଚିତ୍ତ, ମୋଠାରେ ପ୍ରାଣନାଥ,

କରିବାର ଉଚିତ ହେଲା କି ଗୋ ସଙ୍ଘାତ । ୧ ।

ନିତି ନିଶା ବାସରେ, ଶୟନ ଆବାସରେ, ଥିଲା ପରି ପାଶରେ ଗୋ
ଉରେ ଜମାଇବାକୁ, କୋଳକୁ ଆଣିବାକୁ
ଚାଟୁ କଲା ବେଳକୁ; ଆଉ ନ ଦେଖିବାକୁ । ୨ ।
ଏ ବିରହ ବେଦନା, ସହିବାକୁ ନବୀନା, ଅଛି କେ ମୋହ ବିନା ଗୋ
ସନ୍ତାପ ଅକୂପାର, ଗଣ୍ଡେ ନ ମଜ୍ଜିବାର
ଜନେ ହେବାକୁ ପାର ଥିଲେ କହ ବିଚାର । ୩ ।
ମୋହନ ଅନା ଥରେ,—କୃପା ହୃଦ ପଥରେ ନଇଲେ କିପାଁ ଥରେ ଗୋ
ଦୁଃଖେ କବିସବିତା, ଭାବେ ଶୁଣ ଲଳିତା !
ଏ କାଳେ ଏତେ ଚିନ୍ତା ବିହିଲା ଗୋ ବିଧାତା । ୪ ।



(୨୫)

ଆହା କି ଶୋଭା ତୋ ଠାଣିରେ
ପରଭୃତ ରୁତ ବାଣୀରେ,
ସହି ତୋତେ ମହୀ ପୁଣ୍ୟବଳୁ ବହି
ଅବତରାଇଛି ଆଣିରେ । ୦ ।

ଜଗତୀ ପାବନ ହେବ
ବୋଲି ଅବା କେଉଁ ଦେବ
ବୋଲାଉଚି ଧନ୍ୟ କି ତତେ ଲାବଣ୍ୟ
ପୀୟୂଷ ପୂରରୁ ଛାଣି ରେ । ୧ ।

ନାଗରେ, ନାକେ, ଭୂତଳେ
ନାହିଁ ଯା ତୁଳା ଭୂତଳେ
କି ପଦାର୍ଥ ତୁଟି ଦ୍ୱୀପ ରିପୁ କଟି
ଅନୁମାନେ ନୁହେ ଜାଣି ରେ । ୨ ।

(୨୫) ପରଭୃତ ରୁତ—କୋଇଲିର କୁହୁ ଧ୍ୱନି, ଜଗତୀ—ପୃଥିବୀ, ନାଗରେ—ପାତାଳରେ, ନାକେ—ସ୍ୱର୍ଗରେ, ସୁରେଶେ—ଇନ୍ଦ୍ରକୁ, ସମଦାକ୍ଷ—ସଇଜ ।

ମୁଁ ମାତ୍ର ମାଗୁଛି ଏତେ
ପରକ୍ଷି ନ ଦେଇ ମତେ
ନମଣ୍ଡିବୁ ଗଣ୍ଡ ଘଳକୁ ଅଖଣ୍ଡ
ସୁଷମ ପଲ୍ଲବ ପାଣିରେ । ୩ ।

କାହିଁକିଟି ସେ ସୁରେଶେ
ଖାତର କରିବ ଲେଶେ
ଖେଳଯିବ ଯାହା ସୁଖେ ଚମ୍ପା ଦେହା
ତୋ ଭୂରୂ ନଚା ଚାହାଣିରେ । ୪ ।

ଅଷ୍ଟଦୁର୍ଗ ନାଥ ବୋଲେ
ଘନଶ୍ୟାମ ଗିରେ ବୋଲେ
ସମଦାକ୍ଷ ହସା ସ୍ନେହ ରସେ ମିଶା—
ମିଶିହେଲେ ଠାକୁରାଣୀରେ । ୫ ।



(୨୬)

ଆହା ବଂଚିବ କେହି
ଶରଦରବିନ୍ଦ ନେତ୍ରା ଚାନ୍ଦମୁହିଁ । ୦ ।
ଉରେ ନ ପହୁଡ଼ିଲେ ନ ଯାଏ ନିଦ
ଦୂରେ ଏବେ ପ୍ରାଣସହି ପଞ୍ଚବାଣ ଟାଣ ସହି
ରହିଲା ବିହିଲା ବିହି ଏ ବିପଦ । ୧ ।
ହେବନି ଧୂସର ଗାତ୍ରୀ ଧାତ୍ରୀରଜେ
ନବନୀତ ସୁକୁମାରୀ ଅବନୀ ତଳପେ ସରି
ଯିବନି ତ ପୂର୍ବଶିରୀ ନ ଥିବ ଯେ । ୨ ।
ଶ୍ୱାସ ସଉରଭ ଲୋଭୀ ଭୃଙ୍ଗ ଯୁବା
ମୁଖ ନିକଟ ଭ୍ରମିରେ ସ୍ୱପକ୍ଷ ଜାତ ସମୀରେ
ଉଡ଼ାଇ ନେବ କି କୃପାଙ୍ଗୀକି ଅବା । ୩ ।

(୨୬) କେହି—କିପରି, ଶରଦରବିନ୍ଦ—ଶରତ୍‌କାଳୀନ କଇଁ ଫୁଲ, ଧାତ୍ରୀ—ପୃଥିବୀ, ହଂସରଥ—ବ୍ରହ୍ମା, ଚନ୍ଦ୍ରକଚୂଡ଼ାବତଂସ—ମୟୂର ପୁଚ୍ଛ ଥିବା ମଥାର ମୁକୁଟ ।

କି ବସିବା ବଳ ଥିବ ଆଉ ତାର
ଶିବ ଶିବ ନାମ ମୁଖେ ସଖୀ ରଟୁଥିବେ ଦୁଖେ
ଘେରି ଗୋରୀ ଚାରି ପାଖେ ନିରନ୍ତର । ୪ ।
ମୋହ ଅବସାନେ ମୋର ପ୍ରୀତି ଚିନ୍ତି
ତରୁଣାଧୀଶ୍ୱର ମୋତେ କରୁଣାରୁ କହେ କେତେ
ଦୂର ବୋଲୁଥିବ ଏତେ କୁନ୍ଦଦନ୍ତୀ । ୫ ।
ଅନୁକୂଳ ହେବ ଯେବେ ହଂସରଥ
ଧନକୁ ମୋ ବନ ମାଳା ସହଚରୀ ପରି ଗଳା
ଭରଣ କରି ପୂରିବ ମନୋରଥ । ୬ ।
ପରବାସ ନ ରଖିବି ଅଭିଳାଷେ
ଚନ୍ଦ୍ରକଚୂଡ଼ାବତଂସ ଚିନ୍ତିଲେ ଏପରି କଂସ
ନଗରେ ବସୁଦୁର୍ଗେଶ ଗୀତେ ଭାଷେ । ୭ ।

•

(୨୭)

## ରାଗ—ଇମନ କଲ୍ୟାଣୀ—ଆଠତାଳି

ଆହା ! ମୃଦୁଦେହା ବରସ୍ନେହକୁ ତୁ ତୁଡ଼ିଲୁ । ୦ ।
ହଜାରବାର ଯମୁନା— ନ ଯା' ବୋଲି କରେଁ ମନା
ଯାହା, ସୁଖ ରାହା ତେଜି ତା ହାବୁଡ଼େ ପଡ଼ିଲୁ । ୧ ।
ମୁଁ ଜାଣେ ତା ସଙ୍ଗ-ରସେ, ନ ଥାଏ ତୋ ମନ ଲେଶେ,
କାହିଁ ଦୋଷ ନାହିଁ ଥରେ ଚାହିଁ ଦେଇ ସଢ଼ିଲୁ । ୨ ।
ତତେ ତ ଥିବ ଗୋଚର ସେ ତ କିତବଙ୍କ ବର
ଲାଭ ବିନା ଯା ଭରସି, ତା ଭରମେ ବୁଡ଼ିଲୁ । ୩ ।
ଅବସାନେ ଏହି ଫଳ, ଅଛି ବୋଲି ଢଳଢଳ-
ଦିଶୁଥିଲା, ଶିଶୁପରି କି ସୁଖକୁ ତଡ଼ିଲୁ । ୪ ।
କହେ ଅଷ୍ଟଦୁର୍ଗ ନାହା ଅହେତୁରେ ଏବେ ଯାହା
ଧରାଦେବୀ-ଝରା ! ତାହା ସରାଗରେ ଗଡ଼ିଲୁ । ୫ ।

•

(୨୮)

## ରାଗ—କଲ୍ୟାଣୀ, ଏକତାଳି

ଆହେ ବଂଶୀଧର ! ତନୁ-ଅଙ୍ଗୀର ହେଲାଣି ଅଙ୍ଗୀକାର ହେ । ପଦ ।
ଏତିକି ଆୟତ୍ତ ପଦ୍ମିନୀର—ବାହାର ହୁଅଇ ଭେଦି ନୀର ।
ହୁଅଇ କି ହାସ, ବଦନେ ବିକାଶ, ନ ଲାଗିଲେ ପ୍ରଭାକର-କର । ୧ ।
ଲୋଡ଼ା କରେ ଭୃଙ୍ଗ ମଧୁପାନ—ନ ଥାଏ କି ପୁଷ୍ପ ସମାଧାନ
ସ୍ୱଇଚ୍ଛାରେ ନେଇ, ତା ପାଶେ ରଖାଇ, ବୋଲଇ କି ମଧୁ ପାନ କର । ୨ ।
ହେବାଠାରେ ପୂର୍ଣ୍ଣ ଚନ୍ଦ୍ରୋଦୟ—ନୁହଇ କି କୁମୁଦିନୀ ପ୍ରିୟ
ଚନ୍ଦ୍ର ସିନା ନିଶା, ଅନ୍ତର ନିରାଶା କରଇ ଦଇବ ରସଭର । ୩ ।
ଛାଡ଼ି କୂପ, ନଦୀ ସରୋବର—ରହିବା ଆୟତ୍ତ ଚାତକର
କିପରି ସେ ପାନ, କରିବଟି ବନ, ନ ବରଷୁ ଜଳଧର ନୀର । ୪ ।
ଜଣାଉଛି ଜଗଦ୍ଦେବ ଗିର—ଥାଏ ହୋଇ ମୂକ ପିକବର
କରେ ଆଗମନ, ଋତୁଙ୍କ ରାଜନ, ନ କରେ କି ଗାନ ମନୋହର । ୫ ।



(୨୯)

## ରାଗ—ସାବେରୀ, ଆଠତାଳି

ଏ କି ରୁଷା ରେ ଖଞ୍ଜନଦୃଶା, ସୁନ୍ଦର କୁନ୍ଦ—ପସନ୍ଦ ସ୍ମିତ ବିନା ରେ । ପଦ ।
ବାରବାନି ଚାମିକର ଦେହା, ବାରଣେନ୍ଦ୍ର ଗମନା ସୁସ୍ନେହା—
ସାର ସରିଲାଟି ଚାହିଁ ଏହା—
ମାରଦର ନାଶକୁ ତୁ ସିନା ଭରସା ରେ । ୧ ।
ଦୋଷ କରିବାର ନାହିଁ ଜାଣି—ଏ ସକାଶୁଁ ଗଣ୍ଡେ ଆଜ ପାଣି
ମୋ ସପତଟିରେ ବୀଣାବାଣୀ—
ରୋଷକାରଣ କହି ଦରିଆରେ ଭସା ରେ । ୨ ।
ଧନାଧିକ ତୁ ମୋର ଜଗତେ—ଘନାନୀଳ କୁନ୍ତଳା ସୁଚିତ୍ତେ
ଅନା ସଦୟ ନେତ୍ରପ୍ରାନ୍ତେ ମୋତେ—
ମନା ନ କର, କର କରୁଣା ବରଷାରେ । ୩ ।

ଭାରି ଉରଜା ମୋ ସୁଖ ରାହା, ମାରି ପକାଅ ସେ ଯିବ ସୁହା
ବାରିଝର ନୟନୁ ନ ବୁହା—
ଚାରି ଧରମ ହେବଟି, ତୋ ରସେ ରସା ରେ । ୪ ।
ସ୍ମିତ ବିଳସୁଥିଲେ ତୋ ମୁଖେ—ଶରମୁଖେ ଖାତର ନ ରଖେଁ
ଇତରଙ୍କୁ ସୁଖୀରେ ନ ଲେଖେଁ—
ନିତମ୍ବିନୀ ବର ରସକେଳିଲାଳସା ରେ । ୫ ।
ହରି ମୁଖୁଁ ଏ ଭାରତୀ ଝରି—କରି ଶ୍ରବ ଅବତଂସ ପରି
ଭରି ମନକୁ ମୋଦେ କିଶୋରୀ—
ହରିଚନ୍ଦନ ଭଣେ ସୁଖେ ନେଲେ ନିଶାରେ । ୬ ।



(୩୦)

## ରାଗ—ଖମ୍ବାଜ, ଏକତାଳି

ଏ ରଜନୀ ବ୍ରଜବନ୍ଧୁଙ୍କୁ, ଗୋପିନାଥଙ୍କୁ, ରଖିଲେ କେଉଁ ସଜନୀ । ପଦ ।
ତାମ୍ବୁଳ ପୁଣି ଅଳାଇଚରେ—ଭାଙ୍ଗି ରଖିଥିଲି ଯତ୍ନ କରେ
ଚୁଆ ଚନ୍ଦନରେ କର୍ପୂର ମିଶାଇ, ବୋଳିବାକୁ କୃଷ୍ଣ ଶ୍ରୀଅଙ୍ଗରେ । ୧ ।
ଜାଳିଣ ସୁରତ୍ନ ଦୀପାବଳି—ଉଜାଗରେ ନିଶି ପୁହାଇଲି
ନାନା ସୁବେଶରେ ବେଶ ମୁଁ ସାଜିଲି—
କା' ପୁରେ ରହିଲେ ବେଣୁପାଣି । ୨ ।
ମୁଁ ଦୁଃଖୀ ହୋଇଲି ଅଭାଗିନୀ—କୃଷ୍ଣ ମୋ ପୁରେ ନଇଲେ ପୁଣି
ନାନା ଜାତି ପୁଷ୍ପେ ଶେଯ ଶେଯାଇଲି—
ମାଧବ ରଖିଲେ କେ ତରୁଣୀ । ୩ ।
କହେ ଶ୍ରୀଚନ୍ଦନ ଏହି ଗିର—ଶ୍ରୀମତୀ ଶ୍ରୀକୃଷ୍ଣ ବିରହର
ଟାଳିବାରୁ ଶଠ ନଟବର କଣ—
କିଶୋରୀ ହୋଇଅଛନ୍ତି ମାନୀ । ୪ ।



(୩୧)

## ରାଗ—ଝଂକୋଟି, ଏକତାଳି

ଏ ବସନ୍ତ ଦିନେ ଯେ ବସନ୍ତି ମାନେ, ସେ ବଧୂ ନୁହନ୍ତି ଶୀଳା । ପଦ ।
କଳ କୋକିଳ ରୁତ—ଗାନେ ମନ୍ଦ ମରୁତ
ଆଚରୁଛି ହୋଇ ଖେଳା ଗୋ । ୧ ।
ସବକୁଳ ବାସନ୍ତୀ—ସର୍ବମାଳା ଦଂଶନ୍ତି
ଅନାଇଁ ରୋଳମ୍ୱ ଲୀଳା ଗୋ । ୨ ।
ଏଡ଼େ ସୁଖ ସମୟ—ନ ଘେନେ ପ୍ରାଣପ୍ରିୟ
ସଙ୍ଗେ କେ ରଚିବ ହେଳା ଗୋ । ୩ ।
ଏକାଳେ ରତିବନ୍ଧୁ—ଶୀଳା ମନ୍ମଥ ବନ୍ଧୁ
ଭିତରୁ ତରିବା ଭେଳା ଗୋ । ୪ ।
ସ୍ନେହୀରେ ଯେ ଟି ମାନ—କରେ ତାହାର ସ୍ତନ
ନିରସ ମାଟିର ଟେଳା ଗୋ । ୫ ।
ନୋହି ପ୍ରଣୟ ବଶ—ରୁଷିବାର ସାହସ
କେବଳ ଦେଉଳ ଶିଳା ଗୋ । ୬ ।
ଶ୍ରୀ ଜଗଦ୍ଦେବ ଭଣେ—କୃଷ୍ଣକଥା ନ ଶୁଣେ
ସେ ଶ୍ରୁତି ନୁହେ, ସେ ବିଳା ଗୋ । ୭ ।



(୩୨)

## ରାଗ—ସିନ୍ଧୁକାମୋଦୀ, ତ୍ରିପୁଟା

ଏହି ଦୋଷ ସହି, ମୁଁ ତହିଁରେ ଗୋ, ବାଛିଚି ସୁଖଦ ରତି
କରିବା ବେଳରେ ଯୁବତୀ ଜୀଇବା ମରିବାର ନ ଜାଣନ୍ତି । ପଦ ।
କେ କାହାକୁ କେଡ଼େ ନିବିଡ଼େ ନ ଭିଡ଼େ ପୂରିଥିବାଠାରେ ସ୍ନେହ
କରି କି ଏପରି ଯହିଁ ନୋହେ ପରିଚୟ କେ କାହାର ଦେହ । ୧ ।

ମୁଁ ସହଜ ଭୀରୁ ନ ସହଇ ଉରୁ ଭିଡ଼ା ମୋତେ ବାଧେ ବଡ଼
ମୋହ ନିମନ୍ତେ ସେ ଦେହକୁ କରନ୍ତି ଲୋହ ନିର୍ମିତ ନିଗଡ଼ । ୨ ।
ଚିବୁକ ଅଧର ଗଣ୍ଡ ଚୁମ୍ବିବାରୁ ସଂସାରେ ଥିବା କଥାଏ
କେ ଜାଣେ ଏମନ୍ତ ପ୍ରପଦୁ ସୀମନ୍ତ ଯାଏ ପୁଣି ସୁଧା ଥାଏ । ୩ ।
ଶୁଭେ ଅର୍ଦ୍ଧକ୍ଷଣ ଚରଣାଭରଣ ରଣ—ଡିଣ୍ଡିମ ବାଜଣା
ପୁଣି ମୋର ଚେ଼ତା କାହିଁ ରହେଟି ତା ସେହି ନାଗରକୁ ଜଣା । ୪ ।
ତହୁଁ ଯେତେବେଳେ ଠଉରାଇ କୋଳେ ଭିଡ଼ିଥାନ୍ତି ନନ୍ଦସୁତ
ତେବେହେଁ ପଳାଇ ଯିବାକୁ ବଳାଇ ପାରଇ ନାହିଁ ମୋଚିତ୍ତ । ୫ ।
ସଖୀ ଠାକୁରାଣୀ ଶ୍ରୀମୁଖୁ ଏ ବାଣୀ ଶୁଣି ସ୍ନେହେ ଚୁମ୍ବ ଦେଲେ
ଅଷ୍ଟଦୁର୍ଗ ଧରାମଣ୍ଡଳୀ ଅମରା-ବତୀ ନାଥ ରସେ ବୋଲେ । ୬ ।



(୩୩)

## ରାଗ—ବେଗଡ଼ା, ଏକତାଳି

ଏହି ସେହି କି ମୋ ସହି, ସତ କହଟି । ପଦ ।
କହିବାକୁ ଜିହ୍ୱାଞ୍ଚଳ କରୁ କରୁ ତୁ ଚ଼ଞ୍ଚଳ
ସ୍ମରସର୍ପ କଲାନି ରସନା ଲହଲହଟି । ୧ ।
ଅନନ୍ୟତୁଲ ଏ ଦ୍ୟୁତି ଅନାଇ ସେ କେଉଁ ସତୀ
ଠଉରିବ ନଉକରି କରିବାରେ ନ ହଟି । ୨ ।
ଏହା କରି କି ଗୋ ଯଶ-କୁସୁମମାନଙ୍କ ବାସ
ବାସବ-ନିବାସଯାଏ ଯାଉଥାଏ ଚ଼ହଟି । ୩ ।
ଏପରି ନିଶ୍ଚେ ସଞ୍ଚିତ ହୋଇଛି ରେ ପ୍ରାଣମିତ
ଅଲୀକଲୀନ ସେ ଅବିଗ୍ରହ ରବିଗ୍ରହଟି । ୪ ।
କବିରବି ରାୟଗୁରୁ କହୁଥାନ୍ତି ରେ ରମ୍ଭୋରୁ
ଏହାଙ୍କ ଭଜନୁ ଆନ ନାହିଁ ସୁଖାବହଟି । ୫ ।



(୩୪)

## ରାଗ—ମରୁଆ, ଏକତାଳି

କଙ୍କେଳିମୂଳ ସଙ୍କେତ ଅତି ପ୍ରତିକୂଳ । ପଦ ।

ସଶିଖଣ୍ଡଚୂଳ, ତୁଲେ ପଞ୍ଚେ ଖେଳ, ସାହସେ ମାତ୍ର ପ୍ରବଳ ରେ । ୧ ।

ନିଧୁବନ ଲୋଳ—ତୋ ପଦକମଳ

ବାଜିଲେ ହେବ ସେହି ଖେଳ ରେ । ୨ ।

ଅକାଳେ ତା ଡାଳ, ମାନଙ୍କର ଢାଳ

ହେବଟି ସମୂକୂଳ କୂଳରେ । ୩ ।

ସେ କ୍ଷଣେ ଗୋକୁଳ—ମଧ୍ୟେ ହେବ ଠୁଳ

ତୋହରି ନାମେ କଳକଳ ରେ । ୪ ।

ସହି ମହୀତଳ ଯାକେ ତୋ ପାତଳ

ଲାବଣ୍ୟ ଲବେ କାହିଁ ତୁଳ ରେ । ୫ ।

ଅଷ୍ଟଦୁର୍ଗ ପାଳ ଭଣେ ଶୁଣି ନୀଳ—

ବାସିନୀ ହେଲେ ରାଜକୁଳ ରେ । ୬ ।



(୩୫)

## ରାଗ—ଖମ୍ବାଜ, ଏକତାଳି

କଦମ୍ବ କାନନରେ କିସ ଦିଶିଲା ରେ

ଦିଶିଲାକ୍ଷଣି ବିବେକ ଖସିଲା ରେ

ମନ କଲି ବେଗେ ଧାଇଁ, ଘନଘନ ଶ୍ୟାମ ଧାୟୀ,

ବନବନ ବୁଲୁଥିବି ବୋଲି ସୁଶୀଳା ରେ । ପଦ ।

ଶୃଙ୍ଗାର ମଙ୍ଗଳ ବିମୋହନ ବେଶ—ମସାର ସାର ନୀଳିମା ସୁଧାରସ

ଶରଦ ରଜନୀ କର—ନିକର ଭାନୁ ପ୍ରକାର

ଏ ସବୁ କି ସେ ଧାତେ ମିଶିଲା ରେ । ୧ ।

ଭେରୀ, ତୂରୀ, ବୀଣା ଶୁଣା ଅଛି କାନେ—ଶୁକ ପିକରୁତ ଗୋପ ଉପବନେ
ଜଗତୀ ହେଲା ବିଧୂର—କି ଧ୍ୱନି ସେ କି ମଧୁର
ହୃଦୟ ନବବଧୂର ଦଂଶିଲା ରେ । ୨ ।
ନିନ୍ଦେ ବରନଟ ଖଞ୍ଜରୀଟ ଖେଳ—ଇନ୍ଦିବର କି ସେ ନୀଳ ମହୋତ୍ପଳ
ତହୁଁ ଜନମି ଅନନ୍ତ—ବିଶେ ବିଷାଇବାକୁ ତ
ଧୃତିକି ରଙ୍ଗେ ନିରତ ଭୂଷିଲା ରେ । ୩ ।
କିଶୋର ସମୟ ପରି ହେଲା ଜଣା—କି ଯୋରିଷ ମାତ୍ର ଅବା ହେବ ଊଣା
ମଦନ କୋଟି ସମ୍ଭାର-ସଦନ କରି ତାହାର
ପଦ ନଖ ଅଞ୍ଚଳରେ ବସିଲା ରେ । ୪ ।
କଲା ମୋତେ ବାଇ ଯହୁଁ ଦେଲି ଚାହିଁ—ଗଲା ମହତ ମୋହର କାହିଁ ନାହିଁ
ଭଲା ମନୋହର ଦିଶେ—ଲଲାମ ଉପରେ କି ସେ
ଅଖଣ୍ଡ ଶିଖଣ୍ଡଝରା ଖୋସିଲା ରେ । ୫ ।
ଅଷ୍ଟଦୁର୍ଗ ପୁର ପୁରନ୍ଦର କହେ—ଯିବା କି ସଙ୍ଗାତ ଦେଖି ମିଶି ଦୁହେଁ
ନିନ୍ଦିଲେ ନିନ୍ଦିବେ ଜନେ—ତାର ସେବନେ ସେ ବନେ
ରହିବି ତହିଁ ମୋ ମନ ରସିଲା ରେ । ୬ ।



## (୩୬)

## ରାଗ—ସାବେରୀ, ଆଠତାଳି

କର କ୍ଷମା ରେ, ରତି-ପ୍ରତିମା ତୁ, କର କ୍ଷମା ରେ,
ଜଣା ନ ଥିଲା ମାଜଣା, ହେବେ ବୋଲି ଜେମା । ଘୋଷା ।
କେଉଁ ପ୍ରତିହାରିଣୀ କି ଦାସୀ,
କହିଥାନ୍ତା ଯେବେ ଧାଇଁ ଆସି,
ତା ନ ମାନି ପଶିଥିଲେ ଝାସି,
ମାନ ଉଚିତ ମୋଠାରେ ତନୁମଧ୍ୟମା ରେ । ୧ ।
ବାରି ପାରି ନାହିଁ ରେ ସୁକେଶୀ,
ବାରି ମଧ୍ୟେ ତୁ ଥିଲୁ ବିଳସି,

ଚାରିପାଶେ ଘେରିଥିଲେ ଦାସୀ,
ଭାରି ନିତମ୍ବ ସ୍ତନ-ଜଘନ-ସୁଷମା ରେ । ୨ ।
ଭିଡ଼ି ରଦନେ ବସନାଞ୍ଚଳ,
ତଡ଼ିଲ୍ଲତାରୁ ହୋଇ ଚଞ୍ଚଳ,
ବଳାଶିଞ୍ଜିତ କରି ପ୍ରବଳ,
ପଳାଇ ଯା ମଣ୍ଡିଦେଲୁ ମଣ୍ଡପ ସୀମାରେ । ୩ ।
ଦାଉ ପାଇ ମୁଁ ହେଜିଲି ଏବେ,
ଆଉ ଏପରି କରିବି ଯେବେ,
ସାରିଦେବୁ ମୋତେ ପରାଭବେ,
ବାରିଜାକ୍ଷୀ ପୀନସ୍ତନେ ଆଜକ ଜମା ରେ । ୪ ।
ଶୁଣି ଶ୍ରୀକୃଷ୍ଣ ବିନୟ ବାଣୀ,
ହରଷରେ ସେ ରମଣୀମଣି,
ନିଧୁବନ ରଚିଲେ ସେକ୍ଷଣି,
ବୋଲେ ବସୁଦୁର୍ଗ ବସୁନ୍ଧରା-ସୁତ୍ରାମା ରେ । ୫ ।



(୩୭)

## ରାଗ—କେଦାର, ତ୍ରିପୁଟା

କରିବ କି ରାଜି, ଚନ୍ଦ୍ରାନନୀ ଆଜି,
ମୋ ଅଙ୍କେ ବିରାଜି ଖେଳିବାକୁ,
ସମରେ ନ ଭାଜିବାର ମାର ପାଜି,
ମଜ୍ଜା ବଳ ରାଜି କଳିବାକୁ । ଘୋଷା ।
ମୋର ଅନଙ୍ଗପ ପୂରବର ତପକଳାପ—
କଳପବଲ୍ଲରୀ ସେ ଗୋରୀ,
ହେଲା କି ଏଥର ମୋ ମନୋରଥର
ସମୁଚିତ ଫଳ ଫଳିବାକୁ । ୧ ।

ନବୀନ ବିଳାସବତୀ ସେ ତ ତ୍ରାସ—
ଲତା ଦୁଇପାଶ ମଧ୍ୟେ ତା ନିବାସ,
ମୋହପରି ପାଞ୍ଚୁଅଛି ମୁଁ ଯେ କାଞ୍ଚୁ
କିଙ୍କିଣୀ ନିଚୟ ଚାଳିବାକୁ । ୨ ।
ଅଭିନବ କ୍ରୀଡ଼ା କଲେ ଗାଢ଼ ଭିଡ଼ା
ଅନୁଭବରୁ ତ ଲଭୁଥିବ ବ୍ରୀଡ଼ା,
ହେବ ଅନୁକୂଳ କି ଉରୁ ଦୁକୂଳ—
ତଳଛଳେ ପାଣି ଚାଳିବାକୁ । ୩ ।
ଶିଶୁ-କଳାକର-ଚୂଡ଼ାମଣିପର
ଅମଳରୁ ଜ୍ଞାନ ନ ଥିବ ମୋହର,
ପାରିବି କି ବାରି ନିକି ସୁକୁମାରୀ
ଶ୍ରୀଅଙ୍ଗ ଲତାଟି ଲୁଳିବାକୁ । ୪ ।
ରଦନ-ବସନ ବିମ୍ବକୁ ଦଶନ—
ଅଞ୍ଚଳେ ପୀଡ଼ିତେ ହେବି ସୁଧାସମ,
କୁନ୍ଦବିକଶନ ତା ମନ୍ଦହସନ
ଦୁଇ ଶୋଭା ନେତ୍ରେ ତୋଳିବାକୁ । ୫ ।
କହେ ବଳଦେବ କବିରବି ନବ—
ନଟବର ଚିନ୍ତି ପ୍ରିୟାସଙ୍ଗୋତ୍ସବ,
ମିଳି ସଖା ବ୍ରଜେ ମୋଦେ କଲେ ବିଜେ,
କୁଞ୍ଜରୁ କୁସୁମ ତୋଳିବାକୁ । ୬ ।



(୩୮)

## ରାଗ—ଝଁଝୌଟୀ—ବେହଡ଼ା ଏକତାଳି

କରିବା କି ବୁଦ୍ଧି ଶ୍ୟାମ ଛାଣିଲାଣି ପୁଣି ଲୋ । ୦ ।
ସୁନା ସରୋରୁହ ଲତା ହୋଇବାର କୁସୁମିତା
ସଞ୍ଚାରିବାର ଚଞ୍ଚଳେ ଚଞ୍ଚରିକ ଶ୍ରେଣୀ ଲୋ । ୧ ।

ଖଣ୍ଡରସ ସରସରେ ନ ରସେ ସତ ରସରେ
ଅରୁଚି କରୁଚି ପୀୟୂଷକୁ ମଣି ଲୁଣି ଲୋ । ୨ ।
କିଶୋରୀର ରଦାମ୍ବର ଧ୍ୟାନେ ପୁଣି ପୀତାମ୍ବର
ଉପରେ ପକ୍ୱ ବିମ୍ବର ଚୁମ୍ବେ ଗଣି ଗଣି ଲୋ । ୩ ।
କୁଚକୁ ଚିତ୍ତରେ ଧ୍ୟାୟି ଚୁଚୁକ ଉରେ ଲଗାଇ
ଲୋଚନ ବୁଜୁଛି ପରିରମ୍ଭ ସୁଖ ମଣି ଲୋ । ୪ ।
ନବଲତାକୁ ନିବିଡ଼େ ପ୍ରବଳ ଉନ୍ମାଦେ ଭିଡ଼େ
ପ୍ରାଣେଶ୍ୱରୀ ହା କିଶୋରୀ ! ବୋଲି ହୁଏ ଗୁଣି ଲୋ । ୫ ।
ଆମ୍ଭ ଆଳିର ତ ବେଶ ଉଚିତ ହେଲା ବୟସ
ଧରି ହୃଦେ ମଣ୍ଡିବ କି ହରି ନୀଳମଣି ଲୋ । ୬ ।
ଅଷ୍ଟଦୁର୍ଗ ପୁରନ୍ଦର କହେ ଦୁହଁ ଯୋଡ଼ି କର
ଭୀରୁ ମଦ-ଗଜକୁ ତା ଭୃରୁଭଙ୍ଗୀ ଶାଣି ଲୋ । ୭ ।



(୩୯)

## ରାଗ——ନଟ——ଝୁଲା

କଳାକୁଶଳା ରେ ସତେ କହିଲା କି ସଖି ?
ତୋ ବିନା ମୋ ସ୍ନେହ ଆନେ ଥିଲା ପରି ଦେଖି । ପଦ ।
ନୂତନାମ୍ବୁଦମଣ୍ଡଳିକି କି ଚାତକାଣ୍ଡଜ ତେଜଇ,
ଭୂତଳେ ସରସୀଜଳେ ନିକି ତା ତୃଷା ଭାଜଇ ।
ସ୍ୱର୍ଣ୍ଣଦୀକୂତଲୀଳ ହଂସ କି କୂପକେଳିକି ସାଜଇ,
ଏକର କି ଆନ ନାରୀ ଚିବୁକେ ବାଜଇ । ୧ ।
ତୋ କୃପାତରୁ ମୋ ମଦୋନ୍ନତି ଶାଖି-ମୌଳି ନ ମାଇଲା,
କୌତୁକେ ରଚିବାର ପାଟବ ମୋ ପରା ଜନ ମାଇଲା ।
ମାନସେ ଅନୁମାନ ସେ ପରିହାସିନୀ ଜନ ମାଇଲା,
ପଙ୍କଜ ବାନ୍ଧବେ ତ କଳଙ୍କ ଜନମାଇଁଲା । ୨ ।

ତଥ୍ୟ ମାନି ଅତଥ୍ୟ ଭାଷି ତ ପୋତନା ମୁଖ ମାନରେ,
ବାହାକୁ ପ୍ରବଳାଇ ଦେ ପରିରମ୍ଭବୈଭବ ଦାନରେ ।
ତୋଷ ମୋ ରସନାକୁ ତୋ ମଧୁରାଧ ମୃତ ପାନରେ,
ରସ ଧନ, ମଦନମର୍ଦ୍ଦନ ବିଧାନ ରେ । ୩ ।
ରସରଙ୍ଗିନୀ ଆସ ସୁନ୍ଦରୀ ହାସକୁନ୍ଦ ବିକାଶରେ,
ବାସବାଶ୍ରୟ ବାସ ଭାଗ୍ୟ ବିଳାସ ଦେ ନ ବିନାଶରେ ।
ଭାସମାନ ଜବାଧରା କି ନିରାଶରେ ନିଜ ଦାସରେ,
ଅନ୍ତରାୟ ନ ରଚ ମୋ ସୁଖାଭିଳାଷରେ । ୪ ।
ଆଧିକାତର ନନ୍ଦନନ୍ଦନ ଚାରୁପାଟବ ବାଣୀରେ,
ରାଧିକା ସୁଗୁଣାଧିକା ସ୍ୱକପୋଳକୁ ନିଜ ପାଣିରେ ।
ଛାଡ଼ିଲେ ରଖିବାର ମାନସମୋହନ ସ୍ମିତ ଠାଣିରେ,
ବନ୍ଦେ ଅଷ୍ଟଦୁର୍ଗନାଥ ଲୁଠି ଧରଣୀରେ । ୫ ।



(୪୦)

## ରାଗ—ବିଲୋହୋରି—ଝୁଲା

କଲା ଭଲା ଅଭିସାର; ଲାଘବ ଏକା ସାର ରେ । ୦ ।

ସକପଟ ପଟୁ ଚାଟୁରେ କରଇ ସଦୃଶ ଉର ଭୂଷାରେ
ବଞ୍ଚାଇ ନାରୀକି ସାରି ଯା ଦିଅଇ ଏ ଗୁଣ ବଡ଼ ଅସାର ରେ । ୧ ।
ଦଣ୍ଡକ ରାତିରୁ ଜଗି ଜଗି ହେଲା, ମଣ୍ଡନ ମଣି ତୁଷାର
ପରମ ଡରେ କି କିଶୋରି ପଳାଏ ଚରମବେଳେ ନିଶାରେ । ୨ ।
ବାସି ହୋଇ କୁନ୍ଦହାସୀ ବେଶ ଯେବେ ଉଦୟ ହେଲା ପୂଷାର
କି ଚିତ୍ର ବିଚିତ୍ର ବିଳାସନିଧିର ପ୍ରବଳିବାର ରୁଷାର ରେ । ୩ ।
ଚାଲିବ ଦାଣ୍ଡରେ କାଲି ବରଯୋଷା କେହି ହୋଇଲାଟି ସାର
ସହିମାରୁ ଡରୁ ନ ଥାଏ ଯେ ତାର ମହିମାରୁ ଭରସାର ରେ । ୪ ।
ଏତେ ଯତନେ ଯା ସେ ଟଭାସ୍ତନାର ଭେଟ ହେଲା ଅସୁସାର
ଏହି ଏକା ପରା ଫଳ ଶ୍ୟାମପଦ ତଳ ଶରଣପଶାର ରେ । ୫ ।

ସଖୀଙ୍କି କେ ଚନ୍ଦ୍ରମୁଖୀ କହିବାର ହରି ପ୍ରସଙ୍ଗ ପ୍ରସାର
କରିଛି ହରିଚନ୍ଦନ ଜଗଦ୍ଦେବ ମୁକୁଟ ତଟମସାର ରେ । ୬ ।

•

(୪୧)

## ରାଗ—କେଦାର, ତାଳ ରୂପକ

କହ ରେ ଜୀବସଙ୍ଗିନୀ ! ତୋ ମନ ଘନଶ୍ୟାମରସେ ବଳିଲା କି ।

ପଦେ ପଦେ ସୁଖଦେବା ପ୍ରେମ ଲେଖ ମିଳିଲା କି ବାଞ୍ଛା ଫଳିଲା କି । ପଦ ।

ତରଣିଜାକୂଳ, ନୀପମୂଳସ୍ଥଳ, କୁତୂହଳରୋଳ, ଏ ତୋ ନେତ୍ରାଞ୍ଚଳ, ମୋହନ ବିଗ୍ରହେ, ଅକପଟ ସ୍ନେହେ, ଢଳିଲା କି ଚିତ୍ତ ଚଳିଲା କି । ୧ । ପୁରଦଳନାରି ଅମଳେ ତୁ ଘାରି ହେଉଥିଲୁ ନାରୀମଣି ମନୋହାରୀ, ଧଇର୍ଯ୍ୟ ସରୋଜ ବନନୀଳ ଗଜ ଦଳିଲା କି ତହୁଁ ଲୁଳିଲା କି । ୨ । ଅବସର ଦଣ୍ଡକରେ ସେ ଶିଖଣ୍ଡ-ମଣ୍ଡନ ଅଖଣ୍ଡ ନୟନାନ୍ତ ଦଣ୍ଡ, ତୋ ମରଜି ବକ୍ର ବସୁନ୍ଧରା ଚକ୍ର ନଳିଲା କି ସବୁ କଳିଲା କି । ୩ । ଏ କି ଚମତ୍କାର, ସେ ତ ସୁକୁମାର, ଶୃଙ୍ଗାର ମଙ୍ଗଳମୂରତି କିଶୋର, ତାହା ମନ ମୁନ ତୋ କଠିନ ସ୍ତନ ଗଳିଲା କି ଏଥୁଁ ବଳିଲା କି । ୪ । ରଜତେ ରଜତ ଶାତକୁମ୍ଭେ ଶାତକୁମ୍ଭ ସିନା ଝଳେ ଜଗତେ ବିଦିତ, ଜମ୍ବୁନଦସାର ତଳରେ ମସାର ଝଳିଲା କି ତାପ ଟଳିଲା କି । ୫ । ଜଗଦ୍ଦେବ ବାଲୁକେଶ ବସୁନ୍ଧରା-ବଳୟ ଅମରପତି ବୋଲେ ତ୍ୱରା, ଖେଦ-ତମିରକୁ ମୁଦ କଉମୁଦୀ ଗିଳିଲା କି କାଳ ମିଳିଲା କି । ୬ ।

•

(୪୨)

## ରାଗ—ଶ୍ୟାମ କଲ୍ୟାଣ, ଆଡ଼ତାଳ

କହ କି ହେଲା, ସହି କି ହେଲା, କପଟ ରୁଷାରେ । ପଦ ।

ନ ଚାହିଁ ପୁଣି ତାଙ୍କ, ଶ୍ରୀମୁଖହରିଣାଙ୍କ, ସଖି ଆଖି ରଖିଲୁ ରସାରେ । ୧ । ଛାମୁ ନଜର ମଣି,-ମୟ ମଣ୍ଡନଶ୍ରେଣୀ, ବୁଣି ଦେଲୁ ପୁଣି ମୃଗଦୃଶା ରେ । ଚରଣେ ପୁଣି ଦଳି ପକାଇ ଦେଲୁ ଚଳି ତୁ ସୁନ୍ଦର କୁସୁମ ଭୂଷା ରେ । ୩ । ଦେଖି ତୋ ରୁଷା ରୀତି

---

(୪୧) ପୁରଦଳନାରି ଅମଳେ—କନ୍ଦର୍ପଭୋଳରେ; ନଳିଲା—ନଳଦ୍ୱାରା ମାପିଲା; ମସାର—ଇନ୍ଦ୍ରନୀଳମଣି; ଜମ୍ବୁନଦସାର—ସୁବର୍ଣ୍ଣ; ଶାତକୁମ୍ଭ—ସୁବର୍ଣ୍ଣ ।

(୪୨) ଶ୍ରୀମୁଖହରିଣାଙ୍କ—ଶ୍ରୀମୁଖଚନ୍ଦ୍ର; ରସା—ପୃଥିବୀ; ଗିରିଧର—ଶ୍ରୀକୃଷ୍ଣ;

ଗିରିଧରଙ୍କ ଧୃତି ଥିଲା କି ହୋଇଲା ଅତି କୃଶାରେ । ମୃଦୁ ଶ୍ୟାମଳ ଗୋରା ଝାଉଁଳିଗଲେ ପରା ହର-ପର-ଶର-ଜ୍ୱର ତୃଷାରେ । କରୁ ଏହି କଟାକ୍ଷ ମଣ୍ଡିଦେଲା କି କାଳ ପୂର୍ବଦିଗ ପର୍ବତକୁ ପୂଷା ରେ । ୬ । ଶ୍ରୀ ଜଗଦ୍ଦେବ ବୋଲେ ତେବେ କଲୁ କି ହେଲେ ବେଳେ ଧରି କୋଳେ ତାଙ୍କୁ ସୁସାରେ । ୭ ।



## (୪୩)

କହି ନାହିଁ କି ପହିଲୁ ତତେ ରେ । ୦ ।
ନାହିଁ କରେ ଯହିଁକି ଚାହିଁ କରି ତହିଁକି
ବର ଯୋଷା ନ ରସିଲୁ ହିତେ ରେ । ୧ ।
ବଂଚାଇ ନୀପତରୁ ନଚାଇବାର ଭୂରୁ
ସଖୀ ତା ନ ରଖିଲୁ ଚିତ୍ତେ ରେ । ୨ ।
ନଗର ଯାକେ ହଟା ନାଗର ପୀତ ପେଟା
ତୋ ଲାଗି ରେ ଥିଲାକି ବିଭାତେରେ । ୩ ।
କୀର ଖିଆ ବିମ୍ବର କି ରଖି ଆଡ଼ମ୍ବର
ଦଶନ ବସନରେ ନିରତେ ରେ । ୪ ।
ତାହା ସଙ୍ଗମେ ଅତି ସାହସ ନୁହେଁ ନୀତି
ହତ ସତୀ ବ୍ରଜ ଯାହା ସ୍ମିତେ ରେ । ୫ ।
ନିତ୍ୟ ହେବ କି ସ୍ନେହ ସତ୍ୟ ମୋ ଧନ କହ
ନ ପାରିବୁ ଛପାଇଲେ ମତେ ରେ । ୬ ।
ରାଧା ଏ ଗିରା ଶ୍ଳେଷ ଘେନି କଲେ ଆଶ୍ଳେଷ
ଅଷ୍ଟ ଦୁର୍ଗନାଥ କହେ ଗୀତେ ରେ । ୭ ।



ହରପରଶର—କନ୍ଦର୍ପଶର; ପୂଷା—ସୂର୍ଯ୍ୟ ।

(୪୩) ବରଯୋଷା—ଶ୍ରେଷ୍ଠ ଯୁବତୀ, ପେଟା—ଲୁଗା, ବିଭାତେରେ—ପ୍ରଭାତରେ, କୀର—ଶୁଆ, ସତୀ ବ୍ରଜ—ବ୍ରଜପୁରର ନାରୀ ।

(୪୪)

## ରାଗ—ଜୌନପୁର ତୋଡ଼ି ତାଳ ଆଠତାଳି

କହି ନାହିଁ କି ରେ ପହିଲୁ ତୋତେ ମୋ ଚାଲି,
ମହୀମହିଳା ପରି ମୋ ଦୋଷ ପ୍ରାଣସହି ସହିନେବୁ ବୋଲି । ପଦ ।
ନବ ଛଇଲା ରେ ନାହିଁ କି ତୋ ଦିବ୍ୟ ଅବଧାନେ ତହୁଁ ଲବ,
ପରିରମ୍ଭକାଳେ ଜଣାଇଥିଲି ଯା ଧରି ତୋ ପାଣିପଲ୍ଲବ । ୧ ।
ଛୁଆଇଁ ନ ଦେଇ ଯେ ଚାରୁ ଚିବୁକ ନୁଆଇଁ ବସିଛୁ ମଥା,
କି ବନଜନେତ୍ରୀ ନ ଜାଣୁ ଏ ତ ମୋ ଜୀବନ ଘେନିବା କଥା । ୨ ।
ଚୁମ୍ବାଇ ମୋତେ ତୋ ଶ୍ରୀମୁଖ ମୋ ମୁଖ ଚୁମ୍ବୁ ପରା ଅନୁରାଗେ,
ଅନା! ଥରେ ଏବେ ସଡ଼ିଗଲିନିଟି ଅନାଥ ପରି ତୋ ଆଗେ । ୩ ।
ବିଧୁବଦନାରେ ଏତିକି ମୋ ଦୋଷ ନିଧୁବନେ ବାରମ୍ବାର,
ବସନ ନ ରଖି ପ୍ରତି ଅଙ୍ଗ ଚୁମ୍ବି ଦଶନଅଙ୍କ ଦେବାର । ୪ ।
ମୋକ୍ଷ ହୋଇଯାଏ ଚେତନାର ବନ୍ଧୁ ତୋ ସଙ୍ଗମେ ମାର ମୋଦେ,
ସାରସରସାରେ ଘେନ ତ ମୁଁ ଜଗି ପାରଇ କି ପ୍ରତି ପଦେ । ୫ ।
ସାଧାରଣେତର ଶ୍ୟାମଚନ୍ଦ୍ର ଗିର ରାଧା ପିଅନ୍ତେ ଶ୍ରବଣେ,
ଅଷ୍ଟଭୂତି ପରି ଆଲିଙ୍ଗନ କଲେ ଅଷ୍ଟଦୁର୍ଗନାଥ ଭଣେ । ୬ ।

•

(୪୫)

## ରାଗ—କାମୋଦୀ

କହିବାକୁ ସଙ୍ଗିନୀ ତୋ ଆଗେ ଲୋ ଲାଜେ ତୋଳି ନୁହେ ମଥା । ସାଧିବାକୁ ମନ ଥିଲେହେଁ ପ୍ରାଣକୁ ବାଧିବା ଯାଏ କି କଥା । ଘୋଷା ।

ଦେଖୁଛୁ ତ ମିତ ଚୁମ୍ବିବାର ମତ୍ତ ମିଳିନ୍ଦ ସୂନସମାଜ, ପିଏ କି ବଲ୍ଲରୀ ଗୋଟିଯାକ ଧରି ଘେନ ତ କି ଲୋକଲାଜ । ୧ । ଜଳି ଯାଇଥିବା ଦେବତାଟା ଅବା

(୪୫) ମିଳିନ୍ଦ—ଭ୍ରମର; ସୂନସମାଜ—ପୁଷ୍ପସମୂହ; ବଲ୍ଲରୀ—ଲତା;

ଅଳି କରୁଥାଏ କେତେ, ବଳି ଦେବାକୁ କି ତାକୁ ଏତେ ସରି ଦଳି ଦେଉଥାନ୍ତି ମୋତେ । ୨ । କଞ୍ଜମଞ୍ଜରୀରେ କୁଞ୍ଜରର ହେଲେ କିଛି ଅନୁରାଗ ଥିବ, ଅଞ୍ଜନନିଭର କୁଞ୍ଜ କଳଭର ଚିତ୍ତେ ନାହିଁ କୃପା ଲବ । ୩ । ରଖ ରଖ ବୋଲୁ ବୋଲୁ କି ଖର ସେ ନଖର ଶିଖର କେଳି, ନୁହଇ ମୋ ଦେହ ଅଳପ ତଳପ ତଳକୁ ଛୁଇଁବା ଭଳି । ୪ । ଯା ଚରଣ ଧରି ଜଣାଉ ଏପରି ଆଚରଣ ପରିପାକ, ପୁଣି କି ଭଙ୍ଗୀରେ ନବନୀତାଙ୍ଗୀ ରେ ବୋଲି ପଡୁଥାଏ ଡାକ । ୫ । କହି ଏ ରୂପରେ ପ୍ରଣୟ କୋପରେ ପୂରାଉ ସୁଖ ସୁକେଶୀ, ଛପି ଶୁଣୁଥିଲେ ତାପିଞ୍ଛ-ଶ୍ୟାମଳଛବି-ଦେଲେ ଉଚ୍ଚେ ହସି । ୬ । ସେ ସରସ ପଳାଉଣୀ ବେଳ ବଳାକଳାପକିଙ୍କିଣୀ ରବ, ଧ୍ୟାନେ ଜ୍ଞାନେ ସେବି କି ସୁଖାନୁଭବୀ ହେବେ ନୃପ ଜଗଦ୍ଦେବ । ୭ ।



## (୪୬)

କହି ମହତ୍ତ୍ୱ ସିନା ସରିବ ଗୋ  
ଆଉ କି ସହୀ ସହି କରିବ ଗୋ । ୦ ।  
ଶ୍ୟାମ ଗୁଣ ପରଖି  
ଚିତ୍ତ ଭିତରେ ସଖୀ  
ରଖିଲାନି କିପରି ଭରିବ ଗୋ  
ମିଶି ଗଲାନି କ୍ଷୀର  
ଭାଣ୍ଡରେ ଯେବେ କ୍ଷାର  
ଛାଣି କେ ସ୍ୱାଦୁ କରି ପାରିବ ଗୋ । ୧ ।  
ଦେଲାଣି ସ୍ନେହ ଭାଙ୍ଗି  
ଶ୍ୟାମଠାରୁ ଶୋଭାଙ୍ଗୀ  
ତା ବୋଲ ଆଉ ସେ କି କରିବ ଗୋ

କଞ୍ଜମଞ୍ଜରୀ—ପଦ୍ମକଢ଼ି; କୁଞ୍ଜର—ହାତୀ; ନଖର—ନଖ; ତାପିଞ୍ଛ ଶ୍ୟାମଳ—ତମାଳ ପରି ଶ୍ୟାମବର୍ଣ୍ଣ ଶ୍ରୀକୃଷ୍ଣ ।

(୪୬) ସହି କରିବ—ସ୍ୱୀକାର କରିବ, ରଥାଙ୍ଗ—ଚକ୍ରବାକ, ତ୍ରିଯାମା—ରାତି, ପଞ୍ଚବାଣ—କନ୍ଦର୍ପ ।

ଛେଦି ପାଦକ ମୂଳ
ଛିଞ୍ଚିଲେ ତହିଁ ଜଳ
ନବ ପଲ୍ଲବ ସେ କି ଧରିବ ଗୋ । ୨ ।
ବିଶାଖା ସହଚରୀ
ଗଲାନି ତ ଓହରି
ଆଉ କେ ସାହସକୁ କରିବ ଗୋ
ଗଲାଣି ଯେବେ ଦିବା-
କାଳ ରଥାଙ୍ଗ ଯୁବା
କାମ ତାପ କେ ହରି ପାରିବ ଗୋ । ୩ ।
ଗଲା ତ ସରି ଅନୁ—
ରାଗ ନାଗରୀ ମନୁ
ଶ୍ୟାମ କଟାକ୍ଷ କିସ କରିବ ଗୋ
ସରିଗଲା ତ୍ରିଯାମା
ଏବେଟି ସେ ଚନ୍ଦ୍ରମା
ଆଉ କି ତତ୍ତ୍ୱ କରିପାରିବ ଗୋ । ୪ ।
ଅଷ୍ଟଦୁର୍ଗ ଅବନୀ-
ପତି ବୋଲେ ସଜନୀ
ଆଉ କେ ଶ୍ୟାମ ଦୁଃଖ ହରିବ ଗୋ
ପ୍ରାଣ ଦେବାକୁ ଲାଞ୍ଚ
କଲାଣି ଦେବ ପାଞ୍ଚ
ପଞ୍ଚବାଣକୁ ସେ କି ଡ଼ରିବ଼ ଗୋ । ୫ ।



## (୪୭)

କା ମନେ ଥିଲା ଏ କଥା ଗୋ,
ଶ୍ୟାମ ଅଙ୍ଗସଙ୍ଗ ହେବ ଅନ୍ୟଥା ଗୋ । ପଦ ।
ସ୍ୱପ୍ନ ହୋଇବ ଶିଖଣ୍ଡମଣ୍ଡନ, ନୋହିବ ନେତ୍ର ବିପଦଖଣ୍ଡନ ଗୋ । ୧ । ସସ୍ମିତ

କୋମଳ ସରସ ଭାଷା, ଶୁଣିବେ ମଥୁରା ନଗର ଯୋଷା ଗୋ । ୨ । ପଙ୍କଜବାସିନୀ ପ୍ରିୟା ଯାର ସେ, ମଜ୍ଜିଯିବ ବୋଲି କୁଜୀଟା ପାଶେ ଗୋ । ୩ । ଭାଜି ହେଉଥିବ କାମ ଦହନେ, ରାଜୀବ ପଦ ନ ଲଦିବା ସ୍ତନେ ଗୋ । ୪ । କସ୍ତୂରୀମିଶା ନୀଳୋତ୍ପଳ ବାସ, ବ୍ରଜମଣ୍ଡଳେ ହେବ ଇତିହାସ ଗୋ । ୫ । ସ୍ମରଜ୍ୱର ଶୋଷେ ଜୀବନ ଯିବ, ମଧୁରାଧର ଢୋକେ ନ ମିଳିବ ଗୋ । ୬ । କେ ଜାଣିଥିଲା ଏ ଦଣ୍ଡ ପହିଲେ, ଅଷ୍ଟଦୁର୍ଗ ନରନାଥ କହିଲେ ଗୋ । ୭ ।



## (୪୮)

## ରାଗ—ତୋଡ଼ି ଜଙ୍ଗଲା, ଆଦିତାଳ

କା ମନେ ଥିଲା ବନ୍ଧୁ ଏ କଥା ଗୋ
କଳା ଅଙ୍ଗ ସଙ୍ଗ ହେବ ଅନ୍ୟଥା ଗୋ । ପଦ ।
ସଜ୍ଜିତ ମୃଦୁଳ ସରସ ଭାଷା
ଶୁଣିବେ ମଥୁରାନଗରୀ ଯୋଷା ଗୋ । ୧ ।
ସ୍ୱପ୍ନ ହୋଇବ ଶିଖଣ୍ଡ ମଣ୍ଡନ
ନୋହିବ ନେତ୍ର କିପରି ଖଣ୍ଡନ ଗୋ । ୨ ।
କସ୍ତୂରୀ ନୀଳୋତ୍ପଳ ମିଶା ବାସ
ବ୍ରଜମଣ୍ଡଳେ ହେବ ଇତିହାସ ଗୋ । ୩ ।
ପଙ୍କଜବାସିନୀ ଦାସୀ ଯା ରସେ
ମଜ୍ଜିଯିବେ ବୋଲି କୁବ୍‌ଜୀଟା ରସେ ଗୋ । ୪ ।
ସ୍ମର ଜ୍ୱରେଶେଷେ ଜୀବନ ଯିବ
ମଧୁରାଧର ଢୋକେ ନ ମିଳିବ ଗୋ । ୫ ।
ଭାଜି ହେଉଥିବା କାମ ଦହନେ
ରାଜୀବ ପଦ ନ ଲଦିବା ସ୍ତନେ ଗୋ । ୬ ।
କେ ଜାଣିଥିଲା ଏ ଦଣ୍ଡ ପହିଲେ
ଅଷ୍ଟଦୁର୍ଗ ଧରାଧୀଶ କହିଲେ ଗୋ । ୭ ।



## (୪୯)

## ରାଗ-—ଇମନ କଲ୍ୟାଣ, ଆଠତାଳି

କାଳିନ୍ଦୀକୂଳକୁ ମୋର ସଙ୍ଗାଳି ନ ଯା ରେ । ପଦ ।

ଯା ଶିରେ ଚନ୍ଦ୍ରିକାଚୂଳ, ରଙ୍ଗସ୍ଥଳ ନୀପମୂଳ, ତା ନୟନ ଅଞ୍ଚଳଟି ଜ୍ଞାନହନ୍ତା ରେ । ୧ । ନବ ଯୁବତୀଙ୍କ ଜାତି, ନେବ ବୋଲି କେତେ ଜାତି, ସୁଆଗ ଜାଣଇ ସେ ନାଟୁଆ ରଜା ରେ । ୨ । ଜାମ୍ବୁନଦଘଟେ ବାରି, ଆଣନ୍ତୁ ତୋ ପରିବାରୀ, କୃପ ଉପକଣ୍ଠେ ଶ୍ରୀଅଙ୍ଗକୁ ମଜା ରେ । ୩ । ଏହି ପୁରେ ତୋ କାମନା, ଭରତି ହୋଇବ ସିନା, ଶ୍ୟାମ ଅଙ୍ଗସଙ୍ଗ ଡର ଥିଲେ ମଜାରେ । ୪ । ତା ବେଣୁନିସ୍ୱନ ଦୂରୁ, ଜନମାଉଛି ଦେହରୁ, ନୀପଫୁଲ ପରିରେ ପୁଲକଗଜା ରେ । ୫ । ନ ଛପାଅ ମନ ଥିଲେ, ବନ୍ଦି କବିରବି ବୋଲେ, ସୁଖେ ବ୍ରଜମଣ୍ଡଳେ ଡିଣ୍ଡିମ ବଜା ରେ । ୬ ।



## (୫୦)

## ରାଗ——ଶାବେରୀ, ଆଠତାଳି

କାହା ପ୍ରୀତିରେ, ମଜ୍ଜି ରହିଲେ ସଜନି ! ଆଜ ରଜନୀରେ । ପଦ ।

ବାସ କୁସୁମ ମଣ୍ଡାଇ ବାସେ—ବାସ ତାମ୍ବୁଳ ଭାଙ୍ଗି ହରଷେ
ରତ୍ନଦୀପ ଜାଳି ଚଉପାଶେ
ଶେଯ ସଜାଇଲି ପାଖୁଡ଼ା ସେବତୀରେ । ୧ ।
ମୁଁ ହୋଇଥିଲି ଦିବ୍ୟବେଶ—ଚାହୁଁ ଚାହୁଁ ନିଶୀ ହେଲା ଶେଷ,
ସେ କି ମୋ ଠାରୁ ଅଟେ ସୁରସ
କେଡ଼େ ମହାପାତକୀ ମୁଁ ଏହି ଧରିତୀରେ । ୨ ।
ମୁଁ ଯେ କରିଥିଲି କେଡ଼େ ଆଶା, ପାଇ କେଉଁ ରମଣୀ ଭରସା
ବୃଥା ହୋଇଗଲା ମୋର ଆଶା
ଭୃଙ୍ଗ ପରାୟେ ପର-ପୁରୁଷଙ୍କ ମତି ରେ । ୩ ।
ରାମଚନ୍ଦ୍ର ଛୋଟରାୟ କହେ, ଯାହା ହୋଇଗଲା ସେ ସମୟେ
ଶେଷମୁଖେ ଆଉ କହି ନୁହେ
ଆଣିଦେବି ବ୍ରଜରାଜ କିଶୋର ରାତ୍ରିରେ । ୪ ।



(୫୧)

(କୃଷ୍ଣଙ୍କ ପ୍ରତି ଯଶୋଦା)

## ରାଗ—ମୁଖାରୀ—ଆଠତାଳି

କାହିଁକି ଆଜ ସୁନ୍ଦର କାନ୍ଦ
ମଲି ମୁଁ ଆହା ମୋ ଶ୍ୟାମଳ ଚାନ୍ଦ । ୦ ।
ସଜଳ ଦିଶୁଛି ନେତ୍ରାରବିନ୍ଦ,
ଅରୁଚି ଦନ୍ତବାସ କୁରୁବିନ୍ଦ । ୧ ।
କେ କଲା ତୁମ୍ଭ ତୁଲେ କଳି ଦ୍ୱନ୍ଦ
କହ କରିଦେବା ସେବା ବାସନ୍ଦ । ୨ ।
ଆହା ମୋର ମନ ନୟନାନନ୍ଦ,
ଚଳି ହେଲେ କି ତୁମ୍ଭ ତାତ ନନ୍ଦ । ୩ ।
ଅଳିରେ କରୁ ଗୃହକୃତ୍ୟ ବନ୍ଦ
ଧନ ବିନା ମୁଁ ନ ବୋଲେ ଗୋବିନ୍ଦ,
ଆ' ମୋ ଚାନ୍ଦ ହସ ମନ୍ଦ ମନ୍ଦ
ଦେବି ନବନୀତ ମିଶାଇ କନ୍ଦ । ୫ ।
ପାଇ ତୋହ କୃପା ସୁଧା-ନିସ୍ୟନ୍ଦ,
ହେଉ ବାଲୁକେଶ ଦେଉ ପସନ୍ଦ । ୬ ।

●

(୫୨)

## ରାଗ—କଲ୍ୟାଣ—ଆଦିତାଳ

କାହିଁକି ନଇଲେ ଶ୍ୟାମ ଏ ଯାମିନୀ ସଖି ରେ । ୦ ।
ମଣ୍ଡନ କେଳିବାସରେ ଥିଲି ତୋଷରେ
ଖଣ୍ଡନ କଲେ ମୋ ସୁଖ ନ ଆସି ମାତି କା ପୁରେ । ୧ ।
ଉଲ୍ଲାସେ ମୁଁ ବସିଥିଲି ଦିବ୍ୟ ବେଶରେ, ସଖି ରେ,
ଭଲା ସେ ନାଗରବର ବିହିଲେ ସନ୍ତାପ ମୋରେ । ୨ ।

ରଜନୀକର ମିଶାଇ ଗନ୍ଧସାରରେ, ସଖି ରେ,
ସଜାଇ ମୁଁ ରଖିଥିଲି ଆସିବେ ବୋଲି ମୋ ପୁରେ । ୩ ।
ଶେଯାଇ ଫୁଲ ଶେଯରେ ଥିଲି ତୋଷରେ, ସଖି ରେ,
ମଜାଇ ତୁ ନ ଆଣିଲେ ଜୀବ ଯିବ ମାର ଶରେ । ୪ ।
ଆଣ ଯା ବେନୁପାଣୀଙ୍କି ଶ୍ରୀମତିଙ୍କ ରେ, ସଖିରେ,
ଭଣେ ରାମଚନ୍ଦ୍ର ଦେବ କୃଷ୍ଣଙ୍କୁ ଗୁଣି ମନରେ । ୫ ।



(୫୩)

## ରାଗ—ପୁରୀକଲ୍ୟାଣ, ଏକତାଳି

କାହିଁକି ମା କାହିଁକି ଗୋ,
କାହିଁକି ସେ ଚାହିଁ ରହିଲେ ମୋତେ ଆଜ । ୦ ।
ନ ଥିଲି ମୁଁ ଏକା ଜଣେ, ଥିଲା ତ ମୋର ଗହଣେ
ରସ ରୂପବତୀଙ୍କ ସମାଜ । ୧ ।
ମୋ ପ୍ରିୟ ସଖୀ ବୋଲାଇ, ପ୍ରିୟ ବଚନେ ଭୁଲାଇ
ଆଚରିଛି କି ଗୋ କିଛି ବ୍ୟାଜ । ୨ ।
ମୁଁ ପରାଧୀନା ଯୁବତୀ, କୁଳ—ଶୀଳ—ଲାଜବତୀ
ମୁଁ କେ, କେ ସେ ବ୍ରଜ ଯୁବରାଜ । ୩ ।
ଜନ ବଦନେ କେ ହାତ, ଦେବ ହେବ ଏଥୁଁ ଖ୍ୟାତ
ପ୍ରୀତି ହେଲା ପରା ଏ ନିଆଜ । ୪ ।
ଜଗଦ୍ଦେବ ବୋଲେ ଗୀତେ, ତେତିକି ବେଳରୁ ମୋତେ
ବୁଡ଼ାଇ ଦେଉଛି ବଡ଼ ଲାଜ । ୫ ।



(୫୪)

## ରାଗ——ବେଗଡ଼ା——ଏକତାଳି

କାହିଁକି ଲପନ ଇନ୍ଦୁ ଶୁଖାଇଛୁ ରସସିନ୍ଧୁ,
କହ ମୋ ପରାଣବନ୍ଧୁ ରେ । ୦ ।
ତୁ ପରା ମୋ ଗଳାମାଳା ପୀରତି-ପଦ ଶୃଙ୍ଖଳା
ନଳୀନାକ୍ଷି ପ୍ରେମଶୀଳା ଅପରାଧ ବିନା ବାଳା । ୧ ।
ବାଳିକାମଣି ମଉନ ବରଜି ରଙ୍କ ରତନ
ଅରଜି ଗୁମାନ ଧନ ସରଜି ଏକା ମଉନ । ୨ ।
ନବୀନ ତମାଳ କେଶୀ ସବିନୟ ମୃଦୁଭାଷୀ
କି ମନାସି ଦରହାସୀ ବିମନା ରତି ଲାଳସୀ । ୩ ।
ତରୁଣାଙ୍ଗୀ ପ୍ରିୟ ସହି, ଅରୁଣାଧରୀ ସୁସ୍ନେହୀ
କରୁଣା ଅପାଙ୍ଗ ଫେଇ ଶରଣାଗତେ ନ ଚାହିଁ
ଦ୍ୱିଜ କବିରବି ଭାଷେ ଗଜପତି ବାହୁପାଶେ
ବାନ୍ଧିବା ଉଚିତ ଦାସେ ବ୍ରଜରମଣୀ ନିର୍ଦ୍ଦୋଷେ । ୫ ।

●

(୫୫)

## ରାଗ——ଖମ୍ବାଜ——ଏକତାଳି

କାହିଁରେ ମନ ନାହିଁଟି ହେ ମୋହନ,
ଚାହିବାବେଳୁ ଏ ପାଣି । ୦ ।
ଆଣିଲ କିପରି ତା ମନ-ସଫରି ନେତ୍ରାନ୍ତ ବଡ଼ୀଶେ ଟାଣି । ୧ ।
ସେହି କାଳଟାକି ସ୍ମର ପୀଡ଼ିଲା କି ରଖିଥିବା ଶର ଶାଣି । ୨ ।
ଆଜଯାଏ ରାଧା ନେତ୍ରପ୍ରୀତି ବାଧା ପାରି ନ ଥିଲାଟି ଜାଣି । ୩ ।
ମୁଁ କାହା ଆୟତ୍ତ ନୁହଇ ରେ ମିତ ବୋଲି ଯେ ହୁଏ ବଖାଣି । ୪ ।
ସ୍ୱମନୋରଥର ପୂରଣ ଏଥର କରିଦିଅ ରସ ଛାଣି । ୫ ।

ପ୍ରବଳିଲା ନନ୍ଦ ସୁତଙ୍କ ଆନନ୍ଦ ଶୁଣି ଲଳିତାଙ୍କ ବାଣୀ । ୬ ।
ଅଷ୍ଟଦୁର୍ଗ-ପତି ଦେଲେ ହରିସ୍ତୁତି-ଖଡ଼ଗେ ଦୁରିତ ହାଣି । ୭ ।



## (୫୬)

## ରାଗ—କାମୋଦୀ, ତାଳ—ଏକତାଳି

କାହିଁରେ ମନ ସହି, ପ୍ରସନ୍ନ ହେଉ ନାହିଁ, ଏଥିକି କହ ମୋର ଗତିକି ରେ; କି କରି ଅରଜିବି, କି କରି ବରଜିବି, ସେ ନବ ଘନଶ୍ୟାମ ପ୍ରୀତିକି ରେ । ପଦ ।

ଯୁଗଠାରୁ ଅଧିକ ହୋଇଲାନି ପଲକ, କେମନ୍ତେ ସମ୍ଭାଳିବି ଧୃତିକି ରେ । ତ୍ରିଭୁବନମୋହନ ବିଷମ ବଂଶୀସ୍ୱନ କାହୁଁ ଚୁମ୍ବିଲା ମୋର ଶ୍ରୁତିକି ରେ । ୧ । ଇନ୍ଦ୍ରନୀଳକପାଟପୁଟରୁଚି ସେ ନଟବର ମୁକୁଟମଣି ଛାତିକି ରେ । ମାସସେ ଭାବି ଭାବି କ୍ରମେ କି ଛାଡ଼ି ଦେବି କୁଳବରତ ଜାତିନୀତିକି ଗୋ । ୨ । ଗରଳ ଗିଳି ଅବା ରବିନନ୍ଦନା ସେବା-ବିଧିରେ ବଳାଇବି ମତିକି ଗୋ । ଅବା ଶ୍ୟାମ ସଙ୍ଗତି ଲଭି ସୁଭାଗ୍ୟବତୀ ମଣ୍ଡଳେ ଟେକାଇବି ଛତିକି ଗୋ । ୩ । ନିକୁଞ୍ଜେ ସତେ ବେଳେ ଘେନି ବସିବି କୋଳେ ସେ ନବକିଶୋର ମୂରତିକି ଗୋ । ପରତେ ନାହିଁ ମୋର କରତେ ମଦନର ବସି ପାରିବି କି ବରତିକି ଗୋ । ୪ । କହେ ଶ୍ରୀ ଛୋଟରାୟ ନୃପତି କୁବଳୟନେତ୍ରେ ଲପନ-ନିଶାପତିକି ଗୋ । ଦେଖାଇ ଦେଇ ଥରେ ଏବେ ଭାଗ୍ୟପଥରେ ପକାଇ ନେବେ ଅକୀରତିକି ଗୋ । ୫ ।



## (୫୭)

କି ଘେନି ମନେ ରୁଷ୍ଟୁଥାଉ ମତେ ଦିନେ ଦିନେ (ପଦ)
ମୋ ସଖି ପରା ତୁହି ରୋଷ କାହିଁକିରେ ସହୀ
ଦୋଷ ତ ମୁଁ କରି ନାହିଁ ଧ୍ୟାନେ (୧)

(୫୬) ଇନ୍ଦ୍ରନୀଳକପାଟ ପୁଟରୁଚି—ଇନ୍ଦ୍ରନୀଳମଣିରେ ତିଆରି ହୋଇଥିବା କବାଟ ଆବରଣ ଶୋଭା; ରବିନନ୍ଦନା—ଯମୁନା; ଗରଳ—ବିଷ, କରତେ—କରତନାମକ ଅସ୍ତ୍ରରେ, କୁବଳୟ—ନୀଳ ପଦ୍ମ, ଲପନ—ମୁଖ, ଲପନନିଶାପତିକି—ମୁଖଚନ୍ଦ୍ରକୁ ।

କା ଲାଗି ନିଜ ବେଦନା ମୋ ଲାଘବ ଧନ ବିନା
ଥିଲା ପରି ଅନାଉଣି ଆନେ (୨)
ଆରେ ମୋ ଜୀବର ଧନ ବାରେ ତୋଷ ମୋର ମନ
କାଲି ପରି ଆଲିଙ୍ଗନ ଦାନେ (୩)
ରେ ପ୍ରଣୟବତୀ ଝରା ତୁ ପ୍ରମୋଦେ ଫୁଲୁ ପରା
ମୋ ପ୍ରଶଂସା ପଡ଼ିଗଲେ କାନେ (୪)
ଦଣ୍ଡ ହେଲାଟି କଳପ ମଣ୍ଡ ମୋ ଅଙ୍ଗ ତଳପ
ଖଣ୍ଡ ତୁଲ୍ୟାଧରୁ ଦେଇ ପାନେ (୫)
ଅଷ୍ଟଦୁର୍ଗ ନାଥ ଭାଷେ କପଟେ ଶ୍ରୀମତୀ ରସେ
କୃପା କଲେ ବିହର ତୁ ଯାନେ (୬)

●

(୫୮)

## ରାଗ—କରୁଣା ଶ୍ରୀ

କାହୁଁ କି ହେଲା ? କେ କି କହିଲା ରେ ?
ମହିଳା ମୋ' ଠାରେ 'ହେଳା' ଥୋଇଲା ରେ ! । ୦ ।
ଥିଲେ ମୁଁ ଯାହାର ପାଖେ, ରସେ ନିଜେ ସ୍ୱର୍ଗ ସୁଖେ,
'ସେ' ମୁଠା ଲୁଆଇଁ ଦୁଃଖେ ରହିଲା ରେ ! । ୧ ।
ମୋ'ର କି 'ଭାଗ୍ୟ-ବିଭବ-କୁସୁମ ବଲ୍ଲୀ ପଲ୍ଲବ'
କିଶୋରୀ 'ଗୁମାନ-ଦାବ' ଦହିଲା ରେ !! । ୨ ।
ପରାଣୁଁ ଅଧିକ ସ୍ନେହ ପରମ୍ପରା ଅନୁଗ୍ରହ
ପାସୋରି ଦେଲା; ଏ ଦେହ ସହିଲା ରେ ! । ୩ ।
କି କି ମୋ' ନାମରେ କହି, କେ କଲା ଭାଗ୍ୟ ବିରହୀ,
ତା'କୁ ଏ ବସୁଧା କେହି ବହିଲା ରେ ? । ୪ ।

(୫୮) ହେଳା ଥୋଇଲା—ଅଶ୍ରଦ୍ଧା ଦେଖାଇଲା, ଗୁମାନଦାବ—ଅଭିମାନ ରୂପକ ଅଗ୍ନି, କେହି—କିପରି, ମାନେ—ଅଭିମାନକୁ ।

ଏପରି ଶ୍ରୀ ରାଧା ମାନେ 'ହରି' ଘେନିବାର ଧ୍ୟାନେ
'ଅଷ୍ଟଦୁର୍ଗ ନାଥ' ମନେ ଗାଇଲା ରେ ।। ୫ ।



(୫୯)

## ରାଗ—ପୂରବୀ—ଆଠତାଳି

କିଣା ପରା ନିକୁଞ୍ଜ-ବିଳାସୀ, ରେ ବୀଣାଭାଷୀ । ୦ ।
ବାମନୟନା ରେ, କଲୁ କି ନିରାଶ, ଶ୍ୟାମ ଶ୍ରୀମୁଖେ ତ ନାହିଁ ଆଉ ହାସ
ଝାମ ନ ଯାଉ ସେ ଏବେ ରଦବାସ, ଚଖାଇ କର ଉଲ୍ଲାସୀ ରେ । ୧ ।
କଳନା କର ତ କି ଅପରାଧରେ, ଲଳନାମଣି ବଳନା ଏ ବିଧିରେ
ଜଳଜାକ୍ଷ ଚାଲ ଚାଲ ତୁ ସଧୀରେ, ଦରହାସ ପରକାଶି ରେ । ୨ ।
କାହିଁ ଛପିଅଛି ମୁରଲୀ ବାଜଣା, ନାହିଁଟି ଆଜ ତ ଶ୍ରୀଅଙ୍ଗ ମାଜଣା
ଚାହାଁ ସହିଅଛି ସହି ! ତୋ କରୁଣା, ବୀଣାଜିଣା ମୃଦୁଭାଷୀ ରେ । ୩ ।
ଭଣେ କବିରବି ଶୁଣ ଏ କପଟ, କ୍ଷଣେ ବରାକ୍ଷୀ କର କୃପା ପ୍ରକଟ
ଜଣେ ତ ଅଟେ ସେ ନାଟୁଆମୁକୁଟ, ତା' ଚରଣତଳେ ଦାସୀରେ । ୪ ।



(୬୦)

କି ନ କରେ ପ୍ରେମରୀତି ରେ, ସଜନି ।
ସେ ଶ୍ୟାମ ଅନୁସରଣେ ସଖି ମୋର ହେଉଛି ଯେତେ ଅନୀତି ରେ । ଘୋଷା ।
ଶିରୀଷ କୁସୁମ ତାଡ଼ନରେ ସହୀ ମେଳେ ଯେ ମୋହକୁ ଯାଇ,
ସେ କରକାମିଶା ପ୍ରଖର ବରଷା ସହି ତୋରା ତୋରା ଯାଇ । ୧ ।
ଉଠେ ଯେ ସଜନୀ କରେ କର ଦେଇ ଦେହଳି ଲଙ୍ଘିବାପାଇଁ,
ସେ କଣ୍ଟା ଅବାଟ ନିଗଡ଼ ନିପଟ ନ ମାନି ସଙ୍କେତେ ଯାଇ । ୨ ।

(୬୦) କରକା—କୁଆପଥର, ଦେହଳି—ଏରୁଣ୍ଡିବନ୍ଧ, ଦ୍ୱାରବନ୍ଧ ।

ଦିବସେ ଯେ ଡରେ ସହଚରୀ ମେଳେ ତମଧାମେ ନ ପଶଇ,
ସେ ବିଜୁଳୀ ଦେଖା ହୋଇଣ ଅଶାଖା ନିତି ବୃନ୍ଦାବନେ ଧାଇଁ । ୩ ।
ଭିତ୍ତିରେ ଚିତ୍ରରେ ଲେଖା ଉରଗରେ ଭୟେ ଯେ ନ ଦିଏ ପାଣି,
ସେ ଶାର୍ଙ୍ଗ ଶେଷରେ ତନୁ ଛପାଉଛି ଫଣିମଣି ତେଜ ଜାଣି ରେ । ୪ ।
କବିରବି ବୋଲେ ସେ ମୋହନଛବି ଯେ ଦେଖେ ନୟନ ଭୁଲେ,
କହିଲେ କି ବାଳୀ ମାନିବ ଏ କଥା ବୃଥା ହେବ କଥା ତୁଲେ । ୫ ।



(୬୧)

## ରାଗ——ବାହାର——ଝୁଲା

କି ଭଙ୍ଗୀରେ ଆଇଲା ରେ ନୂଆ ଛଇଲା । ୦ ।

ମୋ ଧନ ରଙ୍ଗେ ମଦନସଙ୍ଗେ
ଲଢ଼ିବା ଛଡ଼ିଯାକ ଧଇଲା । ୧ ।
ତାହା ମାଧୁରୀ ସୁଧା ନିର୍ଝରୀ
ନେତ୍ରେ ପାତକ ପଙ୍କ ଧୋଇଲା । ୨ ।
ମୋ ମନ ଚୋରି କରି କିଶୋରୀ
ସ୍ତନ କନକ ଘଟେ ଥୋଇଲା । ୩ ।
ବନ୍ଧୁଆ ମୋର କେଡ଼େ ସୁନ୍ଦର
ଶ୍ରୁତି ମଣ୍ଡନ ଦୋହଲାଇଲା । ୪ ।
ସରସ ସ୍ମିତ ସୁଷମାରୁ ତ
ଚନ୍ଦ୍ରମା ଛବିକି ଛପାଇଲା । ୫ ।
ସେ କୃଶକଟୀ କଟୀରେ ରଚି
କିଙ୍କିଣିକି କିଣି ପକାଇଲା । ୬ ।
ଅଷ୍ଟଦୁର୍ଗେଶ ରଚିବା ରସ
କୃଷ୍ଣଚରଣକୁ ଡକାଇଲା । ୭ ।



(୬୨)

## ରାଗ—ଶଙ୍କରାଭରଣ—ଆଦିତାଳ

କି ରେ ବିପଞ୍ଚିବାଣୀ,
ବଞ୍ଚାଇଲୁ ମୋର ଦୋଷ ଜାଣି ରେ । ୦ ।
ସଞ୍ଚରିଲି କି ବିନା ନିର୍ଦ୍ଦେଶରେ,
ମଞ୍ଚରେ କାହାକୁ ଦେଖି ଚଞ୍ଚଳ କଲିକି ଆଖି
ଅଞ୍ଚଳକୁ ରସିଲି କି ବିଦେଶରେ । ୧ ।
ଚଞ୍ଚରୀକ ପରି କି ମୁଁ ହେଲି ଲୋଳ,
ପଞ୍ଚମ ପଞ୍ଚମାର୍ଗଣାକ୍ଷୀରେ, ଦୁର୍ଗୁଣ ନ ଦେଖି
ହୋଇଲୁ କି ଅବା ସୁଖେ ପ୍ରତିକୂଳ । ୨ ।
ମନମଥ ମଦଲାଗି ହୃଷ୍ଟ ମୋର,
କେତେବେଳେ ରଖେ ଜ୍ଞାନ ଜ୍ଞାନ ନ ଥିବା ଦଶନ
ବସନେ କଲେ କି ରଦବ୍ରଣ ତୋର । ୩ ।
କୁଚ ଯୁଗଳ ତ କଲୁ ଗିରିଗରୁ,
ଏକା ନୁହେଁ ଆଲିଙ୍ଗନ ଧରିବାରୁ ତ ବିଧାନ
ଲାଗିଥିବ ନଖ ମୂନ ଧରୁ ଧରୁ । ୪ ।
ନ ଜାଣେ ନଜିକେ ଥିଲା ସଖୀ ତୋର
ଖସାଇ ନିତମ୍ବବିମ୍ବ— ଅମ୍ବର ରଚିଲି ଚୁମ୍ବ
ଏହିକି ରେ ଦୋଷ ବିମ୍ବଓଷ୍ଠୀ ମୋର । ୫ ।
ବ୍ରଜବନ୍ଧୁ ଚାଟୁବାଣୀ ବିଳସିଲେ,
ହସି ହାରତୁଲେ ଅଙ୍ଗି- କାର କଲେ ଗଉରାଙ୍ଗୀ
ଅଷ୍ଟଦୁର୍ଗ ପୁରନ୍ଦର ବୋଲେ । ୬ ।



(୬୩)

## ରାଗ—ପଞ୍ଚମ ବିରାଡି—ଆଠତାଳି

କିଶୋରୀମଣିଙ୍କ ମନ—ମାନରୁ ହେବାରୁ ମ୍ଳାନ
ମୋହନ ମୂରଲୀପାଣି ଜାଣି ।
ମୁଞ୍ଝ୍ ଅବିଳମ୍ବେ ରୁଷା—ହେବାପରି ଅଙ୍କଭୂଷା
କହନ୍ତି ସାକୂତ ଚାଟୁବାଣୀ
ରେ ମୃଦୁଳାଙ୍ଗୀ;
ନଉକରି କରିବାର ଦାସ—ନିତି ନିତି କରୁଥାଏ ଦୋଷ
ପ୍ରଭୁ ଯେବେ କରେ କ୍ଷମା-ପ୍ରସରଇ ନିରୂପମା-
ମୃତ-କର-ବରାବର ଯଶ । ୧ ।
ଦିବାରତ ଆଚରଣେ—କିବା ବ୍ରତ ନିଷ୍ଠା ରାଣେ
ନିବାରିବାରୁ କି ଘେନି କାହୁଁ
ଅନାଇଲା ପରି ବିଶ୍ୱମ୍ଭରାକୁ ଦୁର୍ଗୁଣ ନିଃସ୍ୱ
ବିଶ୍ୱାସୀ ଜନକୁ ଚାହୁଁ ଚାହୁଁ
ରେ ରସାଳସା,
ଦଣ୍ଡିବୁ ତୁ ଅବଶ୍ୟ ମୁଁ ଜାଣେ—ନ ଦଣ୍ଡ ମାତ୍ରକ ଫୁଲବାଣେ
ତୋ କରେ ଯେଉଁ ଦଣ୍ଡନ—ସେ ମୋ ବିଗ୍ରହ ମଣ୍ଡନ—
ମଣି ବୋଲି ମନକୁ ମୁଁ ଆଣେ । ୨ ।
ସତେ ମୁଁ ଦୋଷର ସୀମା—ରତିପ୍ରତିମା ତୁ କ୍ଷମା—
କରିଛୁ କି ଆଣ ମାନସକୁ
କହିଲେ କୁନ୍ଦ-ଦଶନା—ଲଜ୍ଜିତ ହୋଇବୁ ସିନା
ଦଣ୍ଡ ବଳିପଡ଼ିଛି ଦୋଷକୁ
ରେ ଶୋଭାନିଧି,
କୁଚଗିରି ମଧ୍ୟେ ରଖି ରୁନ୍ଧି—ନିଜ ଭୁଜପାଶେ ଦୃଢ଼େ ବାନ୍ଧି—
ପକାଇ ଦେବାରେ ନିଶା—ଗୋଟିଯାକ ଯେଉଁ ଦଶା
ବସନ ସରିକି ନାହିଁ ପିନ୍ଧି । ୩ ।

ଚିବୁକ, ଅଧର, ଗଣ୍ଡ ଦଶନରେ ଖଣ୍ଡ ଖଣ୍ଡ
କରିଛି କି ନାହିଁ ସତ କହ
କରରୂହ ଶିତକୁନ୍ତ—ମୂନରେ ଜୀବିତ ମିତ,
ଚିରି ପକାଇଛୁ ମୋର ଦେହ
ରେ ବାଳୀମଣି,
ଉଭାନେ ପକାଇ ତଳେ ମୋତେ—ଉତୁଙ୍ଗ ଉରଜ ପରବତେ
ଅକରୁଣ ହୋଇ ଉର—ଛେଚି ପକାଉ ଯେ ମୋର
ନାହିଁ କି ଅଳପ ହେଲେ ଚିତ୍ତେ । ୪ ।
ମୋତେ ଅଚେତନ ଦେଖି ଶରଦଚନ୍ଦ୍ରମାମୁଖୀ
ରଦାମ୍ବରୁ କିସଟି ପିଆଉ
ସଚେତ ହୋଇଲେ ପୁଣି—ପ୍ରହାରିବି ବୋଲି ମଣି
କର୍ଣ୍ଣ ଫୁଙ୍କି ପରା ତୁ ଜୀଆଉ
ରେ କଳାବତୀ,
ସହିଥାଏ ଯେ ଏତେ ଫଜିତ—ସେ କି ହୁଏ ଦଣ୍ଡକୁ ଲଜ୍ଜିତ
କଲେ ହେଲେ ତୁ ଅନ୍ତର—କ୍ଷମା ସରସୀରେ ତୋର
ଅନାରତେ ରହିବି ମଜ୍ଜି ତ । ୫ ।
ଅଷ୍ଟଦୁର୍ଗ ଧରାପତି—ଶ୍ୟାମଚନ୍ଦ୍ର ପଦେ ନିତି
ବନ୍ଦି ମହା ଆନନ୍ଦରେ ଭାଷେ,—
ଏପରି ସରସତର ଚାତୁର୍ଯ୍ୟ ଗର୍ଭକ ଗିର
ଚୁମ୍ବିଦେଲେ ଯହୁଁ ଶ୍ରୁତିପାଶେ
ସେ ବିମ୍ବାଧରା
ସମ୍ଭାଳି ନ ପାରି ଅଟହାସେ-ଘନସାର ପରାଗ ବରଷେ
ଘନେ ଶମ୍ପାପରି ସ୍ନେହେ—ମିଶି ଘନଶ୍ୟାମ ଦେହେ
ମଣ୍ଡିଲେ ଯମୁନା ତଟ ରସେ । ୬ ।

●

(୬୪)

## ରାଗ—ତୋଡ଼ିପରଜ

କିଶୋରୀ, ଲାଜେ କିମ୍ପା ପୋତୁ ମଥା
ନୁଚାଉ ଯେ ରସ-ବିଚକ୍ଷଣ ମୁଖ
ନାହିଁ କି ସେ ମନ କଥାରେ (ପଦ)
ବୟସ ସିନା ପନ୍ଦର ପୂରି ନାହିଁ
ଗୁମାନେ ତ ନୋହୁ ଊଣା
କହୁଥାୟେ ସବୁ ଚାଲିବା ଗରବୁ
ତୋ ମଣି ବଳା ବାଜଣା ରେ (୧)
ପ୍ରତି ପଦନ୍ୟାସେ ଈଶି ଈଶି ଭାଷେ
ବିଳାସ କେତେ ଦେଖାଇ
ବିଷମ ବାଣକୁ ନିଦ୍ୟାସୀ ଖାଇବା
ଅଭିମାନ ଥାଉଁ ଥାଉଁ ରେ (୨)
ମୁକୁତା ଦଶନା ତନୁମାତ୍ର ସିନା
ଶିରିଷ କୁସୁମ ସମ
କଟାକ୍ଷ ତ ଗିରିବରକୁ ବିଦାରି
ମାରିବା ପରି ବିଷମ ରେ (୩)
ପଦେ ପରିହାସେ ମୁଖ ମଣ୍ଡି ହାସେ
ପଳାଇ କେତେ ଆଗରୁ
ମୋର ବି ପୂରତ ସୁରତ ସାଧନେ
ପାଇଲି ମନ୍ତ୍ର ଆଗରୁ ରେ (୪)
ମୂରୁଖ ସଖୀକି ନାନା ପ୍ରବନ୍ଧରେ
ନଚାଇବା ଗୁରୁ ତୁହି
ଅଷ୍ଟଦୁର୍ଗନାଥ କହେ ଯେବେ ନୋହେ
କହ ତ ମୋ ମୁଖ ଚାହିଁ ରେ (୫)

●

## (୬୫)

## ରାଗ—କେଦାର, ଆଠତାଳି

କି ସମୟେ ଜରତୀ ଆସି କି ସୁଖେ ଦେଲା କରତି ରେ । ୧ ।
ମନୋରଥ ପଥ ସଞ୍ଚାରି ପଦାର୍ଥ ମିଳନ୍ତେ କରଲାଗକୁ ରେ
ଦୂରେ ଥାଉ ଜନ୍ମ ଯଉବନ ଦୁଇ ସଫଳ ହୋଇବା ଭୋଗରେ
ଉରେ ଜମାଇ ସମ୍ପାଦି ନ ପାରିଲି ତା ଶ୍ରୀଅଙ୍ଗ ଅଙ୍ଗରାଗରେ । ୨ ।
ଛନ ଛନ ହେଉଥିଲା କୋଳେ ନୀଳ ଘନକେଶା ବରବଧୂ ରେ
ମନପୂରା କରି ପିଇ ନ ଥିଲି ତା ବଧୂଲୀ ଅଧର ମଧୁ ରେ । ୩ ।
ରହିଲାବେଳେ ମୋ ଭୁଜାନ୍ତେ ସେ ମହୀମହିଳା ଚମ୍ପାଚଉଁରୀରେ
ଖର ନଖର ଖେଳାଇ ତା କୁଚେ ମୋ କର ନ ଥିଲା ଠଉରି ରେ । ୪ ।
ନବାରମ୍ଭ କାମ କେଳି ଭଙ୍ଗୁ ଶ୍ୟାମସୁନ୍ଦର ବିବଶ ହେଲେ ରେ
ଜବାରୁଣ ତାଙ୍କ ଶ୍ରୀଚରଣ-କଞ୍ଜ ଭାବି ଜଗଦେବ ବୋଲେ ରେ । ୫ ।

●

## (୬୬)

## ରାଗ—କଳହଂସକେଦାର—ଝୁଲା

କେଡ଼େ ସୁନ୍ଦର ତୋ ଠାଣି ରେ
ପରଭୃତ ଗତ ବାଣୀ ରେ
ସହୀ ତୋତେ ମହୀ ପୁଣ୍ୟବଳୁ ବିହି
ଅବତରାଇଛି ଆଣି ରେ । ୦ ।
ଲୋଚନ ହୃଦୟ ଥିବ ବଚନେ ଝରେ କରିବ
କେଉଁ ନିରକ୍ଷର ତୋ ଗଣନା ବର—
ସୀମନ୍ତିନୀ ସାମନ୍ତାଣୀ ରେ । ୧ ।
ଜଗତୀ ପାବନ ହେବ ବୋଲି ଅବା କେଉଁ ଦେବ
ବୋଲାଉଛି ଧନ୍ୟ କି ତୋତେ ଲାବଣ୍ୟ—
ପୀୟୂଷ ପୁରରୁ ଛାଣି ରେ । ୨ ।

କାହିଁକିଟି ସେ ସୁରସେ, ଖାତର କରିବ ଲେଶେ
ଖେଳିଯିବ ଯାହା ଦେହେ ଚମ୍ପାଦେହା
ତୋ ଭୂରୁନଟା ଚାହାଣି ରେ । ୩ ।
ନାଗରେ, ନାକେ, ଭୂତଳେ ନାହିଁ ଜଣେ ତୁଳା ତିଳେ
କି ପଦାର୍ଥ ତୁ ଟି କି ପରିପାକଟି
ଅନୁମାନେ ନୋହେ ଜାଣି ରେ । ୪ ।
ମୁଁ ମାତ୍ର ମାଗୁଛି ଏତେ, ପରଖି ନ ଦେଇ ମୋତେ
ନ ମଣ୍ଡିବୁ ଗଣ୍ଡସ୍ଥଳକୁ ଅଖଣ୍ଡ—
ସୁଷମ ପଲ୍ଲବ-ପାଣି ରେ । ୫ ।
ଅଷ୍ଟଦୁର୍ଗନାଥ ବୋଲେ ଘନଶ୍ୟାମ ଗିରେ ଗେଲେ
ସମନ୍ଦାକ୍ଷହସା ସ୍ନେହରସ ମିଶା—
ମିଶି ହେଲେ ଠାକୁରାଣୀ ରେ । ୬ ।



(୬୭)

## ରାଗ—କେଦାର, ଆଠତାଳି

କେଡ଼େ କଉତୁକୀ କଳାଚାନ୍ଦ ଲୋ । ପଦ ।

କେଉଁ ଯୁବତୀକି ନେଉ ନାହିଁ ଝିଙ୍କି ତା ନୟନ ଫାନ୍ଦ ଲୋ । ୧ । କୁଚେ ଥାଏ କର ବଦନେ ମଧୁର ହସିତ ଶୁଖିଲା କାନ୍ଦ ଲୋ । ୨ । କର୍ଣ୍ଣକୁବଳୟ ଉଞ୍ଚାଇ ପ୍ରଣୟ-କୋପୁଟି କେଡ଼େ ପସନ୍ଦ ଲୋ । ୩ । କା ମନ ନ ମୋହେ ସେ କିଶୋର ନୁହେ ଶୃଙ୍ଗାରଭୂରୁହ କନ୍ଦ ଲୋ । ୪ । କମନୀୟ କେକୀ-ଝାଲରିଆ ସେ କି ଜଗତୀ ନୟନାନନ୍ଦ ଲୋ । ୫ । ଅଷ୍ଟଦୁର୍ଗନାଥ ତାଙ୍କ ପାଦପାଥରୁହ ମରନ୍ଦ ମିଳିନ୍ଦ ଲୋ । ୬ ।



(୬୭) ପାଥରୁହ—ପଦ୍ମ, ମରନ୍ଦ—ମକରନ୍ଦ, ମିଳିନ୍ଦ—ଭ୍ରମର ।

(୬୮)

## ବେହାଗ—ଏକତାଳି

କେତେ କହିବି ଜଞ୍ଜାଳି ରେ ମୁଁ ଅଳି ତୁ ତ କଞ୍ଜାଳି ରେ
ନ ବୋଲି ନିରସ, ଜନ୍ମା ମୋ ହରଷ, ମକରନ୍ଦରସ ଢାଳି ରେ ।। ପଦ ।।
ନଚାଅ ଭୂରୁ ଯୁଗଳ—ପଚାଅ ମୋ ପୁଣ୍ୟ ଫଳ
ସଞ୍ଚାଅ ଅମନ୍ଦ-ସୁଖ ବ୍ରହ୍ମାନନ୍ଦ ସରସ ନେତ୍ରାନ୍ତ ଚାଳି ରେ । ୧ ।
ଧାରା ଜବାଦନ୍ତ ବାସୀ—ବିରାଜ ମୋ କୋଳେ ଆସି
ଉରଜ ଶଙ୍କରେ, କସ୍ତୂରୀ ପଙ୍କରେ, ସମର୍ପିବି ପରା ଢାଳି ରେ । ୨ ।
ପାଞ୍ଚି ଚିତ୍ତେ ରତିଠାଣି—କାଞ୍ଚି ଚଞ୍ଚଳ କିଙ୍କିଣି
ବାଜି ବାଜି ଧୀରେ, ରାଜୀବାକ୍ଷି ଧୀ ରେ, ଆଜି ମାନସ ଦେ' ଝାଳି ରେ । ୩ ।
ରଚ ରେ ମତ୍ତ ସିନ୍ଧୁର—ଗତି ପ୍ରବନ୍ଧ ବନ୍ଧୁର
ହେବାର ସୁରତି, କରିବା ଭରତି, ମଦନ ବଦନ କାଳି ରେ । ୪ ।
ଶୁଣି ଏ ଶ୍ୟାମ ଭାରତୀ—ହସି ରସିଲେ ଶ୍ରୀମତୀ
ଭଣେ ଜଗଦ୍ଦେବ, ମନୋଭବ ଗର୍ବ, ଉଡ଼ାଇଲେ କରତାଳି ରେ । ୫ ।

●

(୬୯)

## ରାଗ—ମୁଖାବରୀ—ଆଡ଼ତାଳି

କେ ସରିକି ପ୍ରଭୁପଣେ ନୀଳାଦ୍ରି-କେଶରୀକି !
ଯାହାଠାରେ ଦୀନ ଦୟା ପୂରିଅଛି ନଖଠାରୁ ଶିଖା ସରିକି । ପଦ ।
ଯା' ପଦକଞ୍ଜ ଅଙ୍ଗୁଷ୍ଠ-ନଖ ଫିଙ୍ଗି ଦୁନ୍ଦୁଭି ଅସ୍ଥି ଶିଖରୀକି
ବାଳୀ ବଳମୁଖେ କାଳି ଦେଇ ରାଜପଦ ଦେଲେ ମିତ୍ର ହରିକି । ୧ ।
ଚାପଳପ୍ରବଣ ନବ ଶ୍ରୀଚରଣ ପଦ୍ମ ଜିଣି ଯାର ତରୀକି
ରାକ୍ଷସ ଭବସମୁଦ୍ରରୁ ତାରିଲେ ଶକଟ ସ୍ୱରୂପଧାରୀକି । ୨ ।
ଯାହାଙ୍କ ଉଦାର ବନ୍ଧନରୁ ଦର ଫିଙ୍ଗିଦେଇ ଦୟା ବାରିକି
ଯାମଳ ତରୁକୁ ଯାନରେ ବସାଇ ପେଷିଲେ ଦିବ୍ୟ ନଗରୀକି । ୩ ।

ଯାହାଙ୍କର ଛାତି ଛନ୍ନକରି କ୍ଷିତିସୁର ଅପରାଧ ଗିରିକି
ତାଙ୍କ ପଦଜାତ ଲାଞ୍ଛନକୁ ନେଲେ କଉସ୍ତୁଭମଣି ସରିକି । ୪ ।
କରି ପରିରମ୍ଭ ଯାହା ବାହାସ୍ତମ୍ଭ ସୁଦାମା ଦାରିଦ୍ର୍ୟ ଭାରୀକି
ନାଶି କନକେ ମଣ୍ଡିଦେଲେ ତାହାଙ୍କ ପରି ପଦ-ପରିଚାରୀକି । ୫ ।
ଜାଣିବାରୁ ଯାହା ଶ୍ରବଣ ଦ୍ରୁପଦ ଜେମା ବିପତ୍ତି ଲହରୀକି
ପୁଆଇଲେ ଦୁଃଶାସନ ବସନ ବିଦୂରୀକରଣେ ତାହାରିକି । ୬ ।
କେବଳ ସହାୟ ହୋଇ ନାହାନ୍ତି ସେ ପଣ୍ଡୁରାଜକୁଳ ନାରୀକି
ଜଗତ ଭରିଲେ ଯଶେ ଉଦ୍ଧରିଲେ ଅରି ଧରି ବରକରୀକି । ୭ ।
ନେତ୍ର ଯାହାଙ୍କର ଚଞ୍ଚଳ କପଟେ ପ୍ରସାରି କରୁଣା ଫରିକି
ଦବାଇଲେ ଉରୁ ଖଡ୍‌ଗେ ବ୍ରଜଭୀରୁଙ୍କର ଶମ୍ବରା ବଇରୀକି । ୮ ।
ବାରନାରୀ ବାଳତୁଲେ ଫୁଲମାଳ ଦେଲାକାଳେ ଧଣ୍ଡଧାରୀକି
ଶିଖା ଯାହାଙ୍କର ଶୁଣିଲେ କିଙ୍କର ମହାବିପତ୍ତି ଗୁହାରିକି । ୯ ।
ଭୋଗ କରୁ କରୁ ଅଷ୍ଟଦୁର୍ଗ ପରା ସ୍ୱର୍ଗ ତୁଲ୍ୟ ଧରାଶିରିକି
ଚିତ୍ତେ ଶ୍ରୀ ବାଲୁକେଶ୍ୱର ଦେବଲୋକେ ସୁଖଦ ବୋଲି ଯା ଧରିକି । ୧୦ ।



## (୭୦)

କେହି ସରି କି ପ୍ରଭୁ ପଣେ ନୀଳାଦ୍ରି-କେଶରୀକି,
ଯା ଠାରେ ପୂରିଛି ଦୁଃଖୀଜନଦୟା ନଖଠାରୁ ଶିଖା ସରିକି । ପଦ ।

କି କହିବା ଆଉ ତାଙ୍କ ଶ୍ରୀଚରଣ ଅନୁସରଣ ଚାତୁରୀକି, ବଜାଉଛନ୍ତି ବିଭୀଷଣ ଆଗରେ ଜଗତ ବିଜୟତୂରୀକି । ୧ । ସାନକୁ ବଡ଼ କରିବାରେ ଉଡ଼ାଇଅଛନ୍ତି ଧ୍ୱଜ ମଞ୍ଜରୀକି, ଦେଖ ନାଗ ନର ଗନ୍ଧର୍ବ କିନ୍ନର ଉପରେ ଧ୍ରୁବ ନଗରୀକି । ୨ । କି କହିବି ତାଙ୍କ ପୀରତି କରିବା କୀରତିଚନ୍ଦ୍ର ମାଧୁରୀକି, ରଙ୍କ ବିପ୍ରପାଦ ଧୁଆଇ ଯା ଦେଲେ ରମାକରେ ରତ୍ନଝରିକି । ୩ । କ୍ଷମାସାଗର ଯେ ତାହାଙ୍କୁ ଭଜିଲେ କାଳ କିଙ୍କରଙ୍କୁ ଡରିକି, ବୋଲେ କବିସୂର୍ଯ୍ୟ ଆନ ଉପାୟକୁ ପେଲିଦିଅ ଗିରିଦରୀକି । ୪ ।



## (୭୧)

## ରାଗ—ମୋହନା, ଆଦିତାଳ

କୁଞ୍ଜନିଳୟଭୂଷା, ଅଞ୍ଜନ ପୁଞ୍ଜ ମସାର ଘନକେଶା,
କଞ୍ଜଚନ୍ଦ୍ରମଦଗଞ୍ଜନାସ୍ୟରୁଚି, କୁଞ୍ଜର-ଗତି ମନୋରଞ୍ଜନବେଶା । ପଦ ।

ଆସ ମୋ କୋଳରେ ବିରାଜ, ଦାସର ସରିକି କରି କି ଲାଜ ବାସକୁ ପରିକର ଆଜ, ନାଶ ଦୁଃଖ ସମାଜ, ଧନ ମୋତେ ବାସବାଦି ପରିହାସ ଚତୁର କର, ବରବରନାବର ନାଗରୀରାଜ । ୧ । କୁନ୍ଦ ସୁନ୍ଦର ଦଶନାଳି ସୁନ୍ଦରୀମଣି ତୁ ମୋର ସଙ୍ଗାଳି, ଚନ୍ଦନ ସଉରଭପାଳୀ, କୁନ୍ଦନମୟମାଳି, ବୃଷରବି-ନନ୍ଦିନୀନ୍ଦ୍ରମଣି ମଞ୍ଜୁଭୁଜଗଭୂରୁ, ଚଳ ନୟନାଞ୍ଚଳ ଦେ ଥରେ ଢାଳି । ୨ । ମାର ରଖିଛି ଶର ଶାଣି, ତାର ତ ଚରିତ ଅଛୁ ପରା ଜାଣି, ସାରକୁ ଘେନିଯିବ ଛାଣି, କାର ସେ ରଖେ ଠାଣି, ମୋର ହୃଦୟ ତାର ହାର ହୁଅ ଆରେ ସୁଗୁଣବତୀ ରତିଚତୁରା ନବ ପଲ୍ଲବପାଣି । ୩ । କାଞ୍ଚନଗଉରୀ ବିଚାର, ବଞ୍ଚନବିଧିକି ବିରଚିବାର, ମୁଞ୍ଚ ଧନ ମୁଁ ପରିଚାର, ମଞ୍ଚରେ ତ ତୁ ସାର, ଅବିରତ ପଞ୍ଚବାଣ ରଣକୌଶଳ ପରିଚୟ କର ସୁରସାବର ସାର୍ଥରେ ମୋର । ୪ । ଏପରି ନବଘନଶ୍ୟାମ, ଚାଟୁ ବିରଚି ଲଭୁ ବିରାମ, ସସ୍ମିତତରୁଣୀ ଲଲାମ, ପୂରିଲେ ହରିକାମ, ନୃପ ଜଗଦ୍ଦେବ ସେ ସମୟ ବେଶ ଲଳିତ ପଦ୍ମ ଯୁଗଳୀଜଳଜାବଳୀଦାମ । ୫ ।



## (୭୨)

## ରାଗ—କେଦାର କାମୋଦୀ, ଆଡ୍ଡତାଳି

କୁନ୍ଦକଳିଦଶନା, ନନ୍ଦନନ୍ଦନ ଶୋଭାକୁ ଅନା ଗୋ । ୦ ।
ଇନ୍ଦ୍ରନୀଳସାର ଶରୀର ଏହାର କଟିତଟପେଟ ସୁନା ଗୋ
ତ୍ରିଭଙ୍ଗୀରେ ଉଭାହେବା ଛବିକି ମୁଁ ଲୁଚି ହୋଇଯାଏଁ କି ନା । ୧ ।
ଶରଦଚନ୍ଦ୍ର ବିମ୍ବରେ ଏ ଦ୍ୟୁତିରୁ ନାହିଁ ବୋଲି ଅଧଚିନା ଗୋ
କମ୍ପୁଛି ଅଖଣ୍ଡ ଶିଖଣ୍ଡ ମଣ୍ଡନ ମୁକୁଟ କପଟବାନା ଗୋ । ୨ ।

---

(୭୧) ମସାର—ଇନ୍ଦ୍ରମଣି, କଞ୍ଜ—ପଦ୍ମ, କୁଞ୍ଜର—ହାତୀ, ବୃଷରବିନନ୍ଦିନୀ—ବୃଷଭାନୁକନ୍ୟା ।

ମଧୁର ଅଧର ବଧୂଳୀକି ତହିଁ ମୂରଲୀ ମୋହନ ସ୍ୱନା ଗୋ
କହି କହି କୁଳବ୍ରତ ଲତାମୂଳ ଏହି ଟାଳୁଅଛି ସିନା ଗୋ । ୩ ।
ଶ୍ରୀଅଙ୍ଗ ଛୁଇଁ ଆସିବା ମରୁତର କରୁଅଛି ଆଶ୍ୱାସନା ଗୋ
ମୃଗମଦସାର ଦଳ ଇନ୍ଦିବର ମିଶାମିଶି ସୁବାସନା ଗୋ । ୪ ।
କୁଙ୍କୁମ ଚନ୍ଦନ ମୃଗମଦ ଘନସାର ଶିର ଗୋରୋଚନା ଗୋ
ଏହାଙ୍କୁ ସେବି କୃତକୃତ୍ୟ ହେବାକୁ କରିଛି ଧାତା ରଚନା ଗୋ । ୫ ।
ଜଗତୀ ଧୃତି ବିଧ୍ୱଂସ ନୁହଇ ଏ ନେତ୍ରାଞ୍ଚଳ ଖେଳ ବିନା ଗୋ
ବୋଲେ ଜଗଦ୍ଦେବ ଏଥୁଁ ମନୋଭବ ମାର୍ଗଣ ଗଣ କି ଶୁଣା ଗୋ । ୬ ।



## (୭୩)

କୃପାନିଧି ! କଟାକ୍ଷ କର ମୋ' ଠାରେ । ୦ ।
କମଳା - ରମଣ, ଆହେ ନାରାୟଣ, ଶରଣ ପଶୁଚି ପା'ରେ । ୧ ।
ତୁମେ ପ୍ରଭୁ ଥାଉ 'ନାଥ' ମହାବାହୁ,
ଆଉ ଭଜିବି କାହାରେ ? । ୨ ।
ତୁମେ ପରା ହରି ଉଦ୍ଧରିଲ 'କରୀ'
'ନକ୍ର' ହାଣି ଚକ୍ର ଘା' ରେ ? । ୩ ।
କାହାର ବିପଦ ତୁମ ପଦ୍ମ-ପଦ
ହରିନାହିଁ ଟି ରସାରେ ? । ୪ ।
ନୃପ ଛୋଟରାୟ ହେଉ ଗତଭୟ
କୃପା - ସୁଧା ବରଷାରେ । ୫ ।



(୭୩) କଟାକ୍ଷ କର—ଟିକିଏ ଦୃଷ୍ଟି ପକାଅ, ପା'ରେ—ପାଦରେ, ମହାବାହୁ—ବଳୀୟାରଭୁଜ ବା ଶକ୍ତିମାନ୍, କରୀ—ହସ୍ତୀ, ନକ୍ର—କୁମ୍ଭୀର, ଚକ୍ର ଘା'ରେ—ଚକ୍ର ଆଘାତରେ, ରସାରେ—ସଂସାରରେ ।

(୭୪)

## ରାଗ—କାମୋଦୀ—ଝୁଲା

କୃଷ୍ଣଚନ୍ଦ୍ର, ବନକୁ ନ ଯିବୁ ରେ ଧନକୁ ମାଗୁଛି ଏତେ
ଦେଖିଲି ପାପ ସପନ ଆଜ ଅଜଗର ଗିଳୁଥିଲା ତୋତେ । ପଦ ।
ବଗତନ କରି ଜଗାଅ ବାଛୁରୀ ଘରଧନ ସବୁ ଦେଇ
କର ଧରିକରି ମାଗୁଛି ମୁଁ ତୋତେ ଏ ପୁରୁ ନ ଯିବୁ କାହିଁ । ୧ ।
ବତା କେଉଁକଥା ଦେଇ ନାହିଁ ଧାତା କି ନାହିଁ ନନ୍ଦ ସଦନେ
ଦୁଃଖୀର ସଙ୍ଗାଳି ଦୁଃଖୀ ପରା ହୋଇ ବୁଲିବୁ ଘୋର କାନନେ । ୨ ।
କାଢ଼ିବ ପୁରୁଣା ଧନ ତା' ସରିଲେ ବାଢ଼ିବ ଦଧି ପସରା
ତେଜିବି ନାହିଁ ମୋ ଆଖି ପାଖୁ ତୋତେ ତୁ ମୋର ଦୁଃଖ-ପାସୋରା । ୩ ।
ଲଜ୍ଜା ଘରାନ୍ତରେ ଥିବାର ଲୋକର ମଜ୍ଜାରେ ଅଳପ ଭୀତି
ହଜାରେ ଲୋକ ଥିଲେ ହେଲେ ଆମ୍ଭର ବଜାରେ ବିକିବା ଜାତି । ୪ ।
ପୋଡ଼ିଯାଉ ପଛେ ଏ ଘର ସମ୍ପତ୍ତି ପୋଡୁ ଏ ପାପ ସଦନ
ଭଣେ ରାମଚନ୍ଦ୍ରଦେବ ଛୋଟରାୟ ତୁ ସିନା ମୋ ସର୍ବଧନ । ୫ ।

•

(୭୫)

## ରାଗ—ଏମନ କଲ୍ୟାଣ, ତାଳ—ଆଡ଼ତାଳ

ଗଜଗତେ ଏ ଜଗତେ ତୁ କାହାର ଚମ୍ପାଝରା ରେ । ପଦ ।

ନୟନ ମୋର ଏ ଭୂଲୋକରେ, ମନ ନାଗ ନାକ ଦ୍ୱିଲୋକରେ, ବୁଲୁଛି ଯେ, ଭୁଲୁଛି ଯେ, ନାହିଁ ନାହିଁ ତୋର ପରା ରେ । ୧ । କି ତପ କରିଛି କେତେ ଯୁଗ, ଜିତପଙ୍କଜ ତୋ ପଦଯୁଗ, ସୁହାସି ରେ, ଯାହା ଶିରେ ଧରୁଅଛି ବସୁନ୍ଧରା ରେ । ୨ । ମୁଖ ସିତପଞ୍ଚଦଶୀପତି, ଲାବଣ୍ୟ ନିକୁରମ୍ବର ଶ୍ରୁତି, ଶେଷ କହି, ଶେଷ ନୋହି, ହୋଇଅଛି ତ ଅଧୁରା ରେ । ୩ । ସୁରଶିଖରିଗରବଚୋର, ଉରସିଜକୁମ୍ଭ ବାଳା ତୋର,

(୭୫) ଗଜଗତେ—ଗଜଗମନେ, ନାଗଲୋକ—ପାତାଳ, ନାକ—ସ୍ୱର୍ଗ,

ନବତନୁ, ନବତନୁ ଲତା ଭାଜି ଯିବ ପରା ରେ । ୪ । ବନ୍ଧୁଜୀବ-ବନ୍ଧୁ ଦନ୍ତବାସ, ବନ୍ଧୁ ହେବାବେଳେ ମନ୍ଦହାସ, ପୀୟୂଷର, ସରସାର, ସ୍ୱାଦୁ ପାଇ ଯାଏ ଧରାରେ । ୫ । ଏ ଶୋଭା ଦେଖିଛି ଯେଉଁ ଆଖି, ସେହି ସେହି ସିନା ତହିଁ ସାକ୍ଷୀ, ଗିରେ କିସ କହି ଶେଷ ହେବ ମୋ ଦୁଃଖପାସୋରା ରେ । ୬ । ଅଷ୍ଟଦୁର୍ଗେନ୍ଦ୍ର ସେକାଳେ ଭଜେ, ଶ୍ୟାମ ଗିରେ ସପ୍ରଣୟ ଲାଜେ, ବସି ମଥା ପୋତି କଥା ନ କହିଲେ ବିମ୍ବାଧରା ରେ । ୭ ।

•

## (୭୬)

## ରାଗ—ଭୈରବୀ, ଆଦିତାଳ

ଗଲା ତ ଅନୁରାଗ ଜଣା ଯା ଯା ମୋହନ ଯା । ପଦ ।

ଯା ପଦ ଅଲକତ ଶିଖଣ୍ଡ ମଣ୍ଡି ସୁରତିସୁଖ ଅଖଣ୍ଡ ଦେଇଛି ସେ ବରତୁଳ ଉରଜାକୁ ତାକୁ ଭଜ ଯା । ୧ । ଯା ସଙ୍ଗେ ମାତି ରଜନୀଯାକ, ସେହି ରସକୁଶଳାକୁ ଡାକ, ମୋ ନାମରେ ବୋଲି ନିଳୟ ମୁରଲୀ ବାଜା ନ ବଜା । ୨ । ଆଳି ନ ବିହ ବିଟକିଶୋର, ଗାଳି ନ ଶୁଣ ବଦନୁ ମୋର, ଚରଣ ନ ଧର ତୁ ମଧୁନଗର ରାଜା ବଣଜା । ୩ । ଭାଷଇ ଜଳନ୍ତର ମହୀନ୍ଦ୍ର, ନନ୍ଦନିଳୟ ଗଗନଚନ୍ଦ୍ର, ବରଜି ସୁନୟ କରୁ ଠୀ ବିନୟ, ନାହିଁ କି ଲଜ୍ଜା । ୪ ।

•

## (୭୭)

## ରାଗ—ଖଣ୍ଡକାମୋଦୀ

ଗଲା ସବୁ ସରି ରେ, ନବକିଶୋରି । ପଦ ।

ଯାହା ଶ୍ୟାମ ଅଙ୍ଗ ଚୁମ୍ବି ଆସିବା ସମୀର, ଛୁଇଁଲେ କେବଳ ହୋଇ ରସ ଜରଜର, ପୁଲକେ ଭରତି କରୁ ମୃଦୁ କଳେବର, ସେ ଯେବେ ହୋଇଲେ ପର । ୧ । ଯାହା ବେଣୁ ଶୁଣି ଏକା ଧାଇଁ ନିଶୀଥରେ, ବୋଲି ନାହୁଁ ଦିନେ ଆସ ଯିବା ମିଶି

---

ସିତପଞ୍ଚଦଶୀପତି—ପୂର୍ଣ୍ଣଚନ୍ଦ୍ର, ନିକୁରମ୍ବ—ସମୂହ, ଅଧୁରା—ଅକ୍ଷମ, ସୁରଶିଖରୀ—ସ୍ୱର୍ଣ୍ଣାଦ୍ରି, ନବତନୁ—ହେ ନୂତନାଙ୍ଗି, ଦନ୍ତବାସ—ଅଧର, ବନ୍ଧୁଜୀବବନ୍ଧୁ—ବନ୍ଧୁଲିଫୁଲ ସଦୃଶ ।

(୭୭) ପୁଲକ—ରୋମାଞ୍ଚ; ଥରେ—କମ୍ପେ; ବିଗ୍ରହ—ବିବାଦ; ସୁମ—କୁସୁମ, ଫୁଲ ।

ଥରେ, ହୃଦ ମଦନ ବିଭବ ସମୁଲ୍ଲସି ଥରେ, ବିଗ୍ରହ ତାହା ସାଥରେ । ୨ । ଦୂତୀ କର ଧରି କହି ଘେନାଇ ଘେନାଇ, ନୀପ ନିକୁଞ୍ଜ ପୁଞ୍ଜକୁ ଅନାଇ ଅନାଇ, ଦିନ ହରୁ ସୁମଝରା ବନାଇ ବନାଇ, ମୀନନେତ୍ରା ଯାହା ପାଇଁ । ୩ । ସ୍ତନେ ଇଦି ଚୁମ୍ବିବାର ଯା ପାଦକମଳେ, ମନେ ବାଞ୍ଛିବା କୁବେରବାମାଙ୍କୁ ନ ମିଳେ, ଚୁମ୍ବିଲେ ସେ ତୋ ପଦ ଚନ୍ଦ୍ରକଚୂଳାଞ୍ଚଳେ, ଚାହିଁ ଦେଲୁ ନାହିଁ ହେଳେ । ୪ । ରସବତୀ ଭଳି ନୋହୁ ଏ ଅପସନ୍ଦର, ଆସ ଏବେ ଯିବା କେଳିମଞ୍ଜରୀ ମନ୍ଦିର, ବନ୍ଦନ କରଇ ମୃଦୁ ପଦାରବିନ୍ଦର, ତୋଷ ଶ୍ୟାମଳ ସୁନ୍ଦର । ୫ । ଅଷ୍ଟଦୁର୍ଗନାଥ କହେ ହୋଇ ଅଭିଳାଷୀ, ମିତଣୀ କଥିତ ବଚନରେ ଶ୍ରୁତିପାଶୀ, ଲମ୍ପଟ ହେବାରୁ ହୋଇ ଦରସ୍ଫୁଟହାସୀ, ବିଜେ କଲେ ବୀଣାଭାଷୀ । ୬ ।



(୬୮)

## ରାଗ—ତୋଡ଼ି—ଏକତାଳି

ଗାନ-ପଣ୍ଡିତା ମୋ ସୁଖରାଶି ରେ,
ମାନ ମାନସରୁ ଯାଉ ଖସି ରେ ।
ପାନ ପିକଦାନୀ ଧରାରେ ଗୁମାନୀ,
ହୋଇ କି ମହୀକି ଚାହିଁ ବସି ରେ । ପଦ ।
ମନ୍ଦାରଅଧରା କୁନ୍ଦହାସୀ ରେ,
ମନ୍ଦାକିନୀ ଧ୍ୱନି ଗର୍ଭେ ଝାସି ରେ ।
ଫନ୍ଦା କରି ତୋତେ, ହୋଇଛି ନିରତେ
ଜଣେ ତୋ ଚରଣକଞ୍ଜ ଦାସୀ ରେ । ୧ ।
ଅଗାଧ ହୃଦୟ ଘନକେଶୀ ରେ,
ଲଗାଇ ମୋ'ଠାରେ ଅଙ୍କମସୀ ରେ,
ଭଗାରି କେ ମୋର, ଶ୍ରୀଛାମୁରେ ତୋର
ଜଣାଇଛି ଯେବେ ଦିଅ କସି ରେ । ୨ ।

ମୋ ସଙ୍ଗାଳି ବୀଣାଜିଣାଭାଷୀ ରେ,
ଦୋଷ ଥିଲେ ଦଣ୍ଡ ଫରମାସୀ ରେ,
କି ସକାଶୁଁ ରୁଷା ଆଚରି ସୁଦୃଶା,
ମୋ ସମ୍ପଦ ପଦ ଦେଉ ନାଶି ରେ । ୩ ।
ଚୁମ୍ବିଅଛି କି ତୋ କର୍ଣ୍ଣପାଶୀ ରେ,
ହେବି ବୋଲି ଆଉ ପରବାସୀ ରେ,
ତୋ କଠାଉ ରାଣ ଅଛି ରେ ପରାଣ
ଧନ, ସେବିଥିବି ବାରମାସୀ ରେ । ୪ ।
ଘନନୀଳକେଶା ଚାରୁବେଶୀ ରେ,
ଅନାଇଁ ନେତ୍ରାନ୍ତେ ଥରେ ଆସି ରେ,
ବନାଇଁଦେ, ମୋର କୁଭାଗ୍ୟକୁ ଉର—
ସ୍ଥଳେ ପୀନସ୍ତନ ଘଟ ଠେସି ରେ । ୫ ।
ଏ ବିନୟୁଁ ମୋଦ ସୁଧାରାଶି ରେ,
ଦେବୀ ରୁଷି ନୋହି, ଗଲେ ଭାସି ରେ,
ସେବି ସେ ଯୁଗଳ ଚରଣ କମଳ,
ସେ ହରିଚନ୍ଦନ ହେଲେ ତୋଷି ରେ । ୬ ।



(୭୯)

## ରାଗ—ମୂଳତାନୀ, ଆଠତାଳି

ଗୁମାନ ବହନା ରେ, ମୋହନା ରେ !
ମୁଁ ଦେହଧରି ବିହରୁଛି ତୋହ ନାଁ'ରେ । ପଦ ।
ଡରିଲି କି ନାହିଁ ତୋର କରିବା ମନା ରେ
ମହିଳା ମଣିକି କେ ମିଛ କହିଲା ମୋ ନାଁ'ରେ । ୧ ।
ତୁଟିଗଲେ ତୋ କରୁଣା ଗୋଟିଏ ଚିନାରେ
କରୀନ୍ଦ୍ରଗତି ମୁଁ ଦୁଃଖେ ସରିବି ସିନା ରେ । ୨ ।
ବର ତୁ ସବୁ ରସିକାବରବରନା ରେ
କର କୃପାମନେ ମା‍ ଉର ଭରନା ରେ । ୩ ।

ଜାଣୁ ତ ଘେନେ ମୁଁ ତୋତେ ପ୍ରାଣୁ ଅଭିନ୍ନା ରେ

ସରୁ ମଧ୍ୟା ଲେଖା ନୁହ କରୁଣା-ହୀନା ରେ । ୪ ।

ଭାଷେ ଜଗଦ୍ଦେବ ଶୁଣି କିଶୋରୀ ବିନା ରେ

ରମା ରସିକଙ୍କୁ କଲେ ସମାନ ମିନା ରେ । ୫ ।

•

(୮୦)

## ରାଗ—ଇମନ କଲ୍ୟାଣ—ଆଦିତାଳ

ଗୁମାନ ମାନସୁ ତେଜ ନିଜ ଦାସରେ

ଜମାଅ ମାଳତୀ ମୃଦୁଦେହେ ହାସରେ । ପଦ ।

ରସନିଧି ଦାୟାଲୁ ତା ଯଶ ପରକାଶରେ,

କର ମୋର ଉସଙ୍ଗେ ନିବାସ ରେ । ୧ ।

ଧନ, ମହା ସୁଖଲତା ଲଭିଲାଟି ନାଶରେ,

ମନମଥ ଧନଞ୍ଜୟ ଝାସରେ । ୨ ।

ଦୁଃଖ ତପତ ମୋ ବକ୍ଷସ୍ଥଳଙ୍କୁ ଆଶ୍ୱାସରେ,

ସ୍ତନ ସୁଧା କଳଶ ବିନ୍ୟାସରେ । ୩ ।

ଚମ୍ପାଗଉରବେହା ମୋର ବିନା ଦୋଷରେ,

କମ୍ପକୁ ନ ପାଳ ରଦବାସରେ । ୪ ।

ରଚି ଶୁଚି ସ୍ମିତ ନବମଲ୍ଲୀ ସମୁଲ୍ଲ ସରେ,

ଶୁଭାଙ୍ଗୀ ଭାରତୀ ପଦେ ଭାଷ ରେ । ୫ ।

ମଣ୍ଡିଲେ ଶ୍ରୀମତୀ ହରିଗିର ଶୃତିପାଶରେ,

ତୋଷେ ବସୁଦୁର୍ଗ ଧରାଧୀଶ ରେ । ୬ ।

•

(୮୧)

## ରାଗ—ମୁଖାବରୀ—ଆଡ଼ତାଳି

ଗୋ, ତା' ତୁଲେ ହେବ କେ' ସମ
ଯେ ସୁଧାସ୍ୱାଦୁ ବିଷରୁ ବିଷମ । ପଦ ।
ରାଜୀବ ଅଜୀବ ଯା ପଦଭ୍ରାନ୍ତି
ନିନ୍ଦିବ ଇନ୍ଦିବରକୁ ଯା' କାନ୍ତି । ୧ ।
ମୁଖଜିତ ହୋଇ ଯାର ଶିଖଣ୍ଡ
ସେବିଛି ହୋଇ ଶଶୀ ଖଣ୍ଡ ଖଣ୍ଡ । ୨ ।
ମଦନ ମଦନ ହୋଇବ ଲବ
ଆନ ସମାନ ସଂସାରେ କେ ହେବ । ୩ ।
ସ୍ମର ସମର ସମୟ ପାଟବେ
ତରୁଣୀ ତ ଗଣୀ ତା'ଠାରୁ ହେବେ । ୪ ।
କେବଳ ସେ ବଳ ନୁହେଁ ଆମ୍ବର
ଜଗତୀର ଗତିଟି ପୀତାମ୍ବର । ୫ ।
ଅଷ୍ଟଦୁର୍ଗସ୍ୱର୍ଗମଘବା ଭଣେ
କଷ୍ଟ ଦୂର ହୁଏ ଯାହା ବିଷୟେ । ୬ ।

●

(୮୨)

## ରାଗ—ପୂରବୀ

ଗୋ ରସନାଟି, କୃଷ୍ଣନାମ ଛାଡ଼ି ଆନେ ରସ ନା ଟି । ଘୋଷା ।

ଅଟକ ନ ରହି ଅଳସରେ, ରଟ ରଟ ଚଳ ବିଳାସରେ । କୃଷ୍ଣ କେଶବ କେଶି-କଂସ-ଦଳନ ବଲ୍ଲବୀଜନବଲ୍ଲଭ ହରେ । ୧ । ଉପଳ ଶାକର ରସଫେଣା, ମଧୁ

(୮୨) ରସନା—ଜିଭ; ବଲ୍ଲବୀ—ଗୋପୀ; ଉପଳ—ଏକପ୍ରକାର ପଣା; ତାମରସନେତ୍ରାରଦବାସ—ପଦ୍ମଲୋଚନା ସ୍ତ୍ରୀର ଅଧର; ତରସ—ପୂର୍ଣ୍ଣଇଚ୍ଛା, ଅଭିଳାଷ; କଳାକର—ଚନ୍ଦ୍ର; ବିରାଜଧ୍ୱଜ—ବିଷ୍ଣୁ; ସୁରଭିକ୍ଷୀର—କାମଧେନୁର ଦୁଧ ।

ମଧୁରସା ସରପଣା, ସୁଧା ତାମରସ-ନେତ୍ରା ରଦବାସ, ଏ ସବୁ ଶ୍ୟାମ ନାମରୁ ଊଣା । ୨ । ମକରନ୍ଦ ପକ୍ୱ ଚୂତ ରସ, ପ୍ରବାହେ ନ ରଖେ ତୁ ତରସ, ବିଲକ୍ଷଣ ହରିନାମଙ୍କ ମାଧୁରୀ, ଇତର ସକଳ ଗତରସ । ୩ । ବୃନ୍ଦାବନବ୍ୟୋମ କଳାକର, ବିରାଜଧ୍ୱଜ ହେ ବିଶ୍ୱମ୍ଭର, ଅଜ ବାସୁଦେବ ମୁକୁନ୍ଦ ମାଧବ, ଗୋବିନ୍ଦ ବୋଲି କୀର୍ତ୍ତନ କର । ୪ । ଖଣ୍ଡ ମରିଚ କର୍ପୂର ଚୂରି, ଦେଲେହେଁ ସୁରଭି-କ୍ଷୀରେ ଭରି, ଶ୍ୟାମ ରମଣୀୟ ମୋହନବିଗ୍ରହ, ନାମର କଳାକୁ ନୋହେ ସରି । ୫ । ବୋଲ ବୋଲ କଂସନିସୂଦନ, ଜୟ ଜୟ ଦେବ ଜନାର୍ଦ୍ଦନ, ଅଷ୍ଟଦୁର୍ଗପତି କହିବା ଭାରତୀ ଇଷ୍ଟ ସୁଧାରସ ପରି ଘେନ । ୬ ।



## (୮୩)

## ରାଗ—ପୂରବୀ—ଆଡ଼ତାଳି

ଗୋ, ସେ କି ଧରି ଦୂତୀ ପାଣି,
ସହିବ ସେ ଲାଘବ କହିବ ଚାଟୁବାଣୀ । ପଦ ।
ଯା'କର ପଙ୍କଜେ ଭ୍ରମେ ଲଭିଲେ ସରଣ
ଚାକର ହେବାକୁ ହେବ ଶକ୍ରର ତରସ । ୧ ।
ହେଲେ ହେଲେ ଭୁବନ ମୋହନ ବିଶାରଦ
ଶୁଣି ଯାହା ବାଣୀ ବୀଣା ଛାଡ଼ିବେ ନାରଦ । ୨ ।
ଯେ ରାଜି କରଇ କୋଟି ସଂଖ୍ୟକ ସବତେ
ବ୍ରଣ ଲେଶ ନ ଦିଶଇ ନଖଦନ୍ତ କ୍ଷତେ । ୩ ।
ନ ଚାହୁଁ ଯେ ଚାହୁଁଥାଏ ସ୍ନେହେ ନେତ୍ରାଞ୍ଚଳେ
ଚାହିଁ ନ ଚାହିଁବା ଭଙ୍ଗୀ ପ୍ରକାଶଇ ଛଳେ । ୪ ।
ଶ୍ରୀମତୀ ସଖୀଙ୍କି କେଉଁ ସହଚରୀ ଭାଷେ
ଶ୍ରୀହରିଚନ୍ଦନ ଜଗଦ୍ଦେବ କହେ ତୋଷେ । ୫ ।



(୮୪)

## ରାଗ—ଧନାଶ୍ରୀ

ଘେନ ଘେନ ମନ ଘନସମ ଶ୍ୟାମଳିଆକୁ,
ପିଲାଟି ଦିନୁ ପୂତନା ପ୍ରାଣକବଳିଆକୁ । ପଦ ।

ବରଙ୍କୁ ଗୋପୀଙ୍କର ମକରକୁଣ୍ଡଳିଆକୁ, ଅଖଣ୍ଡଚନ୍ଦ୍ର ସୁନ୍ଦର ମୁଖମଣ୍ଡଳିଆକୁ । ୧ । ମଦଗଜଗମନକୁ କଦମ୍ବମୂଳିଆକୁ, ମଖଶାଳାଭିଖାରୀକୁ ଶିଖଣ୍ଡଚୂଳିଆକୁ । ୨ । ସମୁଦ୍ରକୁ କରୁଣାର ଯମୁନାକୂଳିଆକୁ, ଗୀତ ନଟ ଲମ୍ପଟକୁ ପୀତଦୁକୂଳିଆକୁ । ୩ । ବଲ୍ଲବେନ୍ଦ୍ରନନ୍ଦନକୁ ପଲ୍ଲବମାଳିଆକୁ, ଭଜେ କବିରବି ତାହାଙ୍କର ପା'ତଳିଆକୁ । ୪ ।

•

(୮୫)

## ରାଗ—ତୋଡ଼ି—ରୂପକ

ଚନ୍ଦନ - ଗନ୍ଧବହ ବହିଲା ରେ । ପଦ ।

କିଂଶୁକ ସୂନଚୟ ଜ୍ୱଳିତ ଧନଞ୍ଜୟ
ବିପ୍ରଯୋଗୀ ହୃଦୟ ଦହିଲା ରେ । ୧ ।
ଚୂତ ମୁକୁଳିତର-ଜନିରେ ତର୍ଜି ସ୍ୱର
କାହାର ଭୟଙ୍କର ନୋହିଲା ରେ । ୨ ।
ବିରହୀକୁଳ କଲ କଲ କରି କବଳ
କରିବ କି କୋକିଳ କହିଲା ରେ । ୩ ।
ନବମାଳିମଞ୍ଜରୀ ନବ ପ୍ରସୂନ ଶିରି
ମିତ, ତୋ ସ୍ମିତପରି ମୋହିଲା ରେ । ୪ ।
ହୁଙ୍କାର ମାତ୍ରେ ଦାବ ଦେଇ ମଦରେ ଲମ୍ବ
ତୋ ସ୍ନେହୁ ମୋ ଗରବ ସରିଲା ରେ । ୫ ।
ଅଷ୍ଟଦୁର୍ଗେଶ ଭାଷେ ଶ୍ୟାମବାଣୀ ବିଳାସେ
ହସି ରସିଲେ ବ୍ରଜମହିଳା ରେ । ୬ ।

•

(୮୬)

## ରାଗ—ସାରଙ୍ଗ

ଚନ୍ଦ୍ରବଦନା ସ୍ନେହେ କହ ରେ କାହାର ହାରମଣି ତୁ । ପଦ ।

ତୋର ଚରଣ ନଖର ଗଣ,
ଶରଦୁଦିତ ତାରା କିରଣ
ପରମ୍ପରା ସୁସମରୁ କଣ,
ବରବାମା ବୃନ୍ଦେ ନାହିଁ ଏ ବ୍ରଜ ସହରେ । ୧ ।

ବଳାହକରୁ କବରୀ କଳା,
କଳାକର - ବିମ୍ବ ମୁଖ ତୁଛା
କଳା ମାତ୍ର ନାହିଁ ରେ ଅବଳା,
ବଳା ବଳୟ କି ଗତୁ ଭୂଷାନିବହ ରେ । ୨ ।

ତନୁବର୍ଣ୍ଣ ବଳିଛି କୁନ୍ଦନୁ,
ତନୁ - କଟିଟି କି ଯିବ ମନୁ
ଅନୁମିତ ହୁଏ ମଣିସାନୁ,
ସ୍ତନୁ ଭଣା ହୋଇବ, ଏ ତହୁଁ ଦୁର୍ବହ ରେ । ୩ ।

ଯଉବନମଦ ଚାଲି ଲବ,
କେଉଁ ବନ ମଦଗଜେ ଥିବ
କଉତୁକର ତୁ ତ ଅର୍ଣ୍ଣବ,
ନତ - ବନ୍ଧୁ କି ତୁ ସ୍ୱର ସିନ୍ଧୁ ପ୍ରବାହ ରେ । ୪ ।

ପଟାଟୋପେ ଲୋକେ ନିରଉମ,
ଛଟା କଟାକ୍ଷରୁ କି ବିଷମ
କଟିଟିନୁଟା କି ହେବ ସମ,
ସଟାବଟା ନ କର ରୋଷେ ମୋ ଆଗ୍ରହରେ । ୫ ।

ଧନ ହୁଅ ଯାହାର ତାହାର,
ମୁଁ ତୋ ଚାକରୁଁ ନୁହେଁ ବାହାର

ମୁଖ ପଙ୍କଜ ମଉଳା ହାର,
ଦେଖୁଚି କି ମୋତେ, ମଜ୍ଜାଅ ଦେହରେ । ୬ ।

ବସୁଦୁର୍ଗ ପୁରନ୍ଦର ଭାଷେ,
ଶ୍ୟାମସୁନ୍ଦର ବାଣୀ ବିଳାସେ
ଲାଜେ ମଜ୍ଜିବାର ମହୀ ବାସେ,
ହସି ପଳାଇଲେ ମହା - ମଦନ ମୋହରେ । ୭ ।



(୮୭)

## ରାଗ—ସାରଙ୍ଗ, ଆଦିତାଳ

ଚନ୍ଦନବାସି କୁନ୍ଦବରହାସି ରେ । ପଦ ।

କରୁଣାମୟ ବରୁଣାଳୟ ହୃଦୟା ଘନକେଶି ରେ, ପରାପତ ତୁ ମତେ, ହେଲୁ ପରା ନିରତେ ହରାଘ୍ରିଭଜନରୁ କାଶୀରେ । ୧ । ଶରଣାଙ୍କିତ ଅରୁଣାମ୍ବୁଜଚରଣା ଦୂଭାଷି ରେ, ଧରା ତରୁଣୀ ଶିର, ୯ରା ରତନ ମତେ କରା ଆଜ ତୋ ନିଜ ଦାସୀ ୀ । ୨ । ମଦନେଷୁଜକଦନେ ଗଳି ଭାସି ରେ, ତରୀ ପରି ଅଙ୍କରେ, କରି ବେଡ଼ତରେ ପରିରମ୍ଭରେ ରଖ ଆସି ରେ । ୩ । ଲଳନାବର ତୁଳନା ପରିକଳନା ଗୁଣରାଶି ରେ, ଅନା ଅନା ଚପଳା, ନୟନାନ୍ତରେ ତୁ ମଦନାହବକୁ ଫରମାସି ରେ । ୪ । କରି ବନ୍ଦନ ହରିଚନ୍ଦନ କହେ କୁଞ୍ଜବିଳାସି ରେ, ରୁଷା ବରଜି ମୃଗଦୃଶା ପଡ଼ିଲେ ମୃଦୁ ମସାରନିଭ ଭୁଜପାଶୀ ରେ । ୫ ।



(୮୮)

## ରାଗ—କାମୋଦୀ, ତାଳ—ଏକତାଳି

ଚରଣାୟୁଧବୃନ୍ଦ ରଟିଲା ରେ ଅରବିନ୍ଦ ହିଁ ବନ୍ଧୁ ଫୁଟିଲା ରେ,
କର କରୁଣା ବୋଲି ଯେତେ ଚାଟୁ ରଚିଲି
ଗୁମାନ ଗଣ୍ଠିଟି ନ ଫିଟିଲା ରେ । ଘୋଷା ।

ଖଟବଟ ମୁଦ୍‌ଗର, ପ୍ରହାରି କୋଟି ମୋର, ମୋଦପୀୟୂଷ ଘଟି ପିଟିଲା ରେ; ପିଶାଚ ସ୍ବର ଆସି, ଦେବାରୁ ମୋତେ ଗ୍ରାସି, ନିଶା ଚରମଦଶା ଘଟିଲା ରେ । ୧ । ରାତିତିମିରତତି ଗଲେ ଯେ ପ୍ରୀତିପ୍ରତିବନ୍ଧକ ଅନ୍ଧକାର ଘଟିଲା ରେ; ନ ବୁଝିଲୁ ଗୁହାରି, ତୋ ରୁଷା ଯେ ମୋହରି ପରାଣ ଲୁଟିବାକୁ ହଟିଲା ରେ । ୨ । ଲୋଚନରେ ଲୋଚନ, ସଙ୍ଗମେ ଯେଉଁ ଦିନ, ରଚଇ ଅନ୍ତରାୟ ଜଟିଳା ରେ; ତ୍ରୁଟି ହେଲେ ବରଷୁଁ, ଏବେ ମୋର କି ଦୋଷୁଁ, କୁଟିଳାକ୍ଷି ତୋ ସ୍ନେହ ତୁଟିଲା ରେ । ୩ । ଭରମରମ୍ୟଦେହା, ଚରମ କଲୁ ଯାହା, ଜାଣିଲି ମୋ କରମ ଫାଟିଲା ରେ; ସକାମ କରି ମାରି, ପକାନ୍ତୁ ସୁକୁମାରୀ, ନ କାଟନ୍ତା ଏ ଯେତେ କାଟିଲା ରେ । ୪ । କିଶୋରୀଙ୍କର ମନମୀନକୁ ଏ ବଚନ-ମିଷ ବଡ଼ିଶଲାଠି ଛାଟିଲା ରେ; ଅଷ୍ଟଦୁର୍ଗ ଭୂପତି, ମିଳିନ୍ଦ ସେ ଦମ୍ପତି, ପଦାବ୍ଜ ମକରନ୍ଦ ଚାଟିଲା ରେ । ୫ ।



(୮୯)

## ରାଗ—ତୋଡ଼ିପରଜ—ଆଡ଼ତାଳି

ଚଳି ହେଲା କି ବଳି ଶୋଭିନୀ ରେ ।। ପଦ ।।

ପାଳିଥିଲା ମୋ ମିତ ଦିନେ ମୋ ପାଇଁ ବ୍ରତ
ଧରି ଯେ ଚୁମ୍ବିଲି ଥର ତିନି ଗୋ ।। ୧ ।।

ତୋହ ଆଗେ ବସାଇ ଗେଲେ ନୀବୀ ଖସାଇ
ଦେଲି ଯା ଅଛି କି ମନେ ଘେନି ଗୋ ।। ୨ ।।

ଅନୁପ୍ରବାସ କଥା, ଛାଡ଼, ଛୁଅଁ ମୋ ମଥା
ବୋଇଲା ସେ ମୁଁ ହେଲି ଯା ତୁନି ଗୋ ।। ୩ ।।

ଋତୁ ସମୟ ବୋଲି ଜାଣି ଜାଣି ଧଇଲି
ମନା କରୁଥିଲା ଗଲା ବନି ଗୋ ।। ୪ ।।

---

(୮୮) ଚରଣାୟୁଧ—କୁକୁଡ଼ା; ଅରବିନ୍ଦ—ପଦ୍ମ; ମୋଦପୀୟୂଷଘଟି—ଆନନ୍ଦରୂପ ଅମୃତର କଳସ; ତତି—ସମୂହ, ତ୍ରୁଟି ହେଲେ ବରଷୁଁ—କ୍ଷଣକାଳ ବର୍ଷକ ପରି ହୁଏ; ଭର୍ମ—ସୁବର୍ଣ୍ଣ; ମନମୀନକୁ—ମନରୂପ ମାଛକୁ; ବଚନ-ମିଷ-ବଡ଼ିଶ-ଲାଠି—କଥାରୂପ ବନଶୀଖଡ଼ା; ମିଳିନ୍ଦ—ଭ୍ରମର ।

ସବାରେ ଗଲି ଦିନେ, ଧନ ମନ ଗହନେ
ଯା ଲାଗିଲା ସ୍ବର ଯୋଗିଧୂନି ଗୋ ।। ୫ ।।
ସଭୟ ନିରନ୍ତର ହୁଏ ମୋ ହୃଦନ୍ତର
ସେ ଯେ ମୋର ସୁଖର ଖଣି ଗୋ ।। ୬ ।।
ଏପରି ଶ୍ୟାମଗିରେ ହସି ସଖୀ ତୁହାରେ
କହେ ଅଷ୍ଟଦୁର୍ଗ ମହୀଯାନି ଗୋ ।। ୭ ।।



(୯୦)

## ରାଗ—ଶାବରୀ, ଏକତାଳି

ଚାହାଁ ନିକୁଞ୍ଜ ବିଳାସୀକି ରେ
ନିରତ ଲୀଳାଭିଳାଷୀକି
ବ୍ରଜ ବାରିରୁହ ନୟନାନିବହ ହୃଦୟ-ସ୍ଥଳ ନିବାସୀକି ରେ । ପଦ ।

ପଦ ପଙ୍କରୁହଯୁଗ ଖେଳକୁ—ଅଖଣ୍ଡ ଶିଖଣ୍ଡ ଶିଖୀଚୂଳକୁ
ଧୃତି କରତନ ଦ୍ୟୁତି ନରତନ ବିଲୋକ ମାଳା ତୁଳସୀକି ରେ । ୧ ।

ଅତି ଦୂରେ ଥାଉ ଏହାଙ୍କ ସେବା—ତେତେ ସୁକୃତ କେ କରିଛି ଅବା
ଦେବେନ୍ଦ୍ର ଯୁବତୀ ହେବେ ଭାଗ୍ୟବତୀ ଭଜିଲେ ଏହାଙ୍କ ଦାସୀକି ରେ । ୨ ।

ଚୁମ୍ବି ଏ ଶ୍ୟାମ ସୁନ୍ଦର ଅଧରେ—ଲଦି ଏ ମୃଦୁ ପୀନ ପୟୋଧରେ
ଦିନ ହରିବାର ହେବ ଶତବାର ଗଙ୍ଗାରେ ନ ଥିଲେ ଝାସିକି ରେ । ୩ ।

ମିତରେ ଚିର ସ୍ଥିର କରି ଦେଖ—ଜିତ ଶତ ଶୀତ ମୟୂଖ ମୁଖ
ହେଲେ ସ୍ମିତ ସିତସୂନସମ ଚିତ୍ତ ନ ଯିବ ବିବେକ ଭାସିକି ରେ । ୪ ।

ଅମୋଘାସ୍ତ୍ର କରି ଏହାଙ୍କୁ ପାଇ—ମକର-ଚରମ ଚଢ଼ା ସିପାହୀ
ବିଶ୍ୱ ବଶ୍ୟ ଭଲେ କରି ନ ପାରିଲେ ସେ ହୋଇଯିବ ସନ୍ୟାସୀ କି ରେ । ୫ ।

ରଚେ ବସୁଦୁର୍ଗ ବସୁଧାପତି—ଆଳିଙ୍କି କେଉଁ ଗୁଆଳି କହନ୍ତି
ସତେ ଅଛି ପୁଣ୍ୟ କୋଳେ ଏ ଲାବଣ୍ୟନିଧି ବିଳସିବେ ଆସିକି ରେ । ୬ ।



(୯୧)

## ରାଗ—ମୋହନା, ଆଡ଼ତାଳ

ଚାହିଁ କି ନାହିଁ କେହି ମୋହନ ହାସ ଗୋ, କେହି ତା ମନ୍ଦହାସ,
କାହିଁକି ଏକା ମୋତେ ଏ ପରିହାସ । ପଦ ।

କେଉଁ ସତୀ ସେ ପୁଟ ଭେଦନେ ଅଛି ନଟବର ସ୍ନେହୁଁ ନିପଟ ହୋଇ ନିରାଶ । ୧ । ଡାକ ତ ସେ ଯୋଷାକୁ, କହୁ କାହା ନାସାକୁ, ବାଜି ନାହିଁ ସେ ବନମାଳିକା ବାସ । ୨ । ଲୋଡ଼ି ଶ୍ୟାମ ପ୍ରୀତିକି, ଘଟକ-ଯୁବତୀକି, କେ କହୁ ନାହିଁ ଧରି ଦଶନେ ଘାସ । ୩ । ତୋ ସ୍ନେହୁଁ ନିଶୀଥରେ, ବନଦୁର୍ଗପଥରେ, ଗତାଗତରୁ ଥିବ ପଦେ ପରାସ । ୪ । ଡାକୁଁ ଯାହା ମୁରଲୀ, ସ୍ୱାମୀକି ପେଲି ଠେଲି, ଧାବନବଶେ ଖସେ ନିତମ୍ବ ବାସ । ୫ । ଶ୍ରୀ ଜଗଦ୍ଦେବ ଭଣେ, ରାଧାବାଣୀ ଶ୍ରବଣେ, ଆଳିଏ ହସି ଦେଲେ ଅଙ୍କ ନିବାସ । ୬ ।

•

(୯୨)

## ରାଗ—ତୋଡ଼ି, ଆଠତାଳି

ଚାହିଁଛି ମାତ୍ର ଶିଖଣ୍ଡ ଲୋ, ସଖି ମୁଁ, ତୁଛା ଅପବାଦେ ଚମକି ପଡୁଛି ଏ ବ୍ରଜ ବଜାର ଦାଣ୍ଡ ଲୋ । ଚିକ୍କଣ-ଶ୍ୟାମଳଚନ୍ଦ୍ର ନିକଟକୁ ଚାଲି ନାହିଁଟି ପହଣ୍ଡ ଲୋ, ସଖି ମୁଁ । ପଦ ।

ଚପରାସିଚୟ ପେଷି କଂସରାୟ ନିର୍ଦ୍ଦୋଷେ ନେବ କି ଦଣ୍ଡ ଲୋ । ୧ । ଚଳୁଆ ଯେ ବଡ଼ ମୋହର ଗଉଡ଼ ଶୁଣିଲେ ହେବ ପ୍ରଚଣ୍ଡ ଲୋ । ୨ । ସଖୀ ଥିଲେ ମୋର ପରଶନ୍ତେ ନୀର ତାଙ୍କ ଯୋଗୁଁ ଲଣ୍ଡଭଣ୍ଡ ଲୋ । ୩ । ଚୋରି ଯେବେ କରିଥିଲି ମୁଁ ତାଙ୍କରି ଚୁମ୍ବିଛି କି ଚାରୁ ଗଣ୍ଡ ଲୋ । ୪ । ଅଷ୍ଟଦୁର୍ଗ ଭଣି ଶୁଣ ଠାକୁରାଣୀ ଶ୍ୟାମ ପଦକଞ୍ଜେ ମଣ୍ଡ ଲୋ । ୫ ।

•

---

(୯୧) ପୁଟଭେଦନ—ନଗର, ନିଶୀଥରେ—ଅର୍ଦ୍ଧରାତ୍ରରେ, ନିତମ୍ବ—କଟିର ପଶ୍ଚାଦ୍‌ଭାଗ ।

(୯୩)

## ରାଗ—ପୂରବୀ—ଝୁଲା

ଚାହିଁ ଜାଣଇଁ ଗୋ, ନାହିଁ ନାହିଁ ଶ୍ୟାମ ସରି
ସହି, ତା ନୟନ-ଅୟନ-ଅମିୟ ରସ ଢାଳିଦେଲା ପରି । ପଦ ।
ପ୍ରଫୁଲ୍ଲ ପଙ୍କଜ ଅଙ୍କରୁ ପାଟଳୀ କୁସୁମ ପାଶେ ବିହରି
ବିକାଶ ନବ ଇନ୍ଦିବର ଯୁଗଳେ ଅଳି ଚଳୁଥିଲା ପରି । ୧ ।
ଗଜରାଜଗତି ଜଗତ ଯୁବତୀରାଜ ବିନୟ ବିଚାରି
ଭୂରୁ ଚାପେ ଶୂନ୍ୟ ନାରାଚ ମଦନରାଜ ସାଜିଥିଲା ପରି । ୨ ।
କମନୀୟ କଳାବତୀଙ୍କ ଉରଜ କୁମ୍ଭଯୁଗ ଲକ୍ଷ୍ୟ କରି
ହୀରକ ଝକମକରୁ ମରକତ ଗୁଳି ବାହାରିବା ପରି । ୩ ।
ସୁନ୍ଦର ବନ୍ଧୁକ ଅଧରେ· ମଧୁର କୁନ୍ଦମନ୍ଦହାସ ଧରି
ରସବତୀ ଗଣେ ଗରଳ ପୀୟୂଷ ରସ ବୋଳିଦେଲା ପରି । ୪ ।
ହଜାଇଣ ଜାତି କୁଳ ସତୀରୀତି ବିବେକ, ମତି, ଚାତୁରୀ
ପରିଣତ ବିମ୍ବ-ଅଧରାଙ୍କ ଦମ୍ଭ ତରୁ ଛେଦିଦେଲା ପରି । ୫ ।
ଶ୍ରୀହରିଚନ୍ଦନ କହଇ ନବୀନ ରସାଳସା ନେତ୍ରେ ହରି
ଅଳପ ଯତନେ ପୀରତି ରତନେ କିଣି ପକାଇଲା ପରି । ୬ ।



(୯୪)

## ରାଗ—କାମୋଦୀ—ଆଠତାଳୀ

ଚାହିଁଲା ରେ, ମନ ମୋହିଲା ରେ । ପଦ ।
ଜଳଖେଳା-ଶଫରୀ—ନୟନା ସୁନାଗୋରୀ
ସତେ ମହେନ୍ଦ୍ର ଶୀରି—ମୋତେ ଯାଚିଲା ପରି । ୧ ।
ଆଜ କି ତପବଳେ-ଜଳବାହୁଡ଼ା ବେଳେ
ପ୍ରିୟ ସଖାଙ୍କ ମେଳେ—ବିରାଜି କି ଚପଳେ । ୨ ।
ପରବ ସମୁଦିତ—ଶତ ମୟୂଖଜିତ—
ମୁଖେ କି ମନ୍ଦସ୍ମିତ—ମଣ୍ଡି ମୋ ପ୍ରାଣମିତ । ୩ ।

ମଦନ ମୁଖେ କାଳି—ଦେବାକୁ ନିକି ଭାଳି

ମୋ ଗଳା ମଣିମାଳି—କୃପା ଅପାଙ୍ଗ ଢାଳି । ୪ ।

ବିରଞ୍ଚିଲେ ଶ୍ରୀହରିଚନ୍ଦନ ଶ୍ରୀକିଶୋରୀ

ବ୍ରଜନବରେ ହରି—ହୟକୁ ଫେରି ଫେରି । ୫ ।



## (୯୫)

## ରାଗ—କାମୋଦୀ

ଚାହିଁବୁ ଯେବେ ଶ୍ୟାମ ଦ୍ୟୁତିକି ରେ, କାହିଁ ହଜାଇ ଦେବୁ ମତିକି ରେ । ନାହିଁ ବୋଲିବା କଥା, ଜାଣିବୁ କି ସର୍ବଥା, ଆଉ କି ସମ୍ଭାଳିବୁ ଧୃତିକି ରେ । ଘୋଷା ।

ଏ ନଗରେ ଏଣିକି, ଭ୍ରମେ ଚୁମ୍ବିବ ନିକି, 'ସତୀ' ଏ ଦୁଇ ବର୍ଣ୍ଣ ଶ୍ରୁତିକି ରେ, ସତେ ପ୍ରାଣମିତରେ ତା ସେବାରୁ ଇତରେ ଯୁବତୀଜନମକୁ ଗତିକି ରେ । ୧ । ଯେବେ ସେ ହେବ କୋଳେ, କଳାବତୀ ମଣ୍ଡଳେ, ନ ଟେକିବୁ କି ଶ୍ୱେତ ଛତିକି ରେ, ଚୁମ୍ବିନେ ତା ବଦନ-କଞ୍ଜଟି ଗୁରୁଜନ ଗଞ୍ଜନ ଲଭିଲେହେଁ କ୍ଷତି କି ରେ । ୨ । ଭବନ ମଣି ବିଂ ସେ ନବ ଯୁବା ପାଶ, ରବିନନ୍ଦନାତୀର କ୍ଷିତିକି ରେ, କି ସୁଖ ଇନ୍ଦ୍ର ଅଙ୍କେ, ନନ୍ଦନେ ନିଃଶଙ୍କେ ଆରୋହିଲେ ଅଭ୍ରମୁପତିକି ରେ । ୩ । ଅବା ତା ପଥେ ଯିବା, ଜାଣି କଳପି ଥିବା, ତା ପଛେ ଯେତେ ପରାଭୂତିକି ରେ, ମୋହନସ୍ମିତ ଅବଲୋକେ ପାସୋର ଯିବ ନ ଆଚରିବ କି ବିନତିକି ରେ । ୪ । ଶୁଣି ଶ୍ରୀଠାକୁରାଣୀ, ଚିତ୍ର ମଣିଲେ ଜାଣି, ନ ଥିଲାପରି ହରିପ୍ରୀତିକି ରେ, ସେ କାଳେ ଦୁଇ ସଖୀ, କୃପା କଲେ ସୁମୁଖୀ, ମୁକୁନ୍ଦଦେବ ଗଜପତିକି ରେ । ୫ ।



(୯୫) ରବିନନ୍ଦନା—ଯମୁନା, ଅଭ୍ରମୁପତି—ଐରାବତ ହାତୀ ।

(୯୬)

## ଶଙ୍କରା ଭରଣ—ଆଠତାଳି

ଚିଉନ୍ତୁ ଯେବେ ପାଇଲା କର, ହିତକୁ ସିନା କହୁଛି ଚାକର । ୦ ।
ତନୁ ଚୀନ ଚେଲ ଯାହା ସମାନ, ଅନୁଚିତ ତାହାଠାରେ ଗୁମାନ । ୧ ।
ଖଳ କୁଗିର ଗଉରବେ ରସି, ତଳକୁ ହୋଇବାର ମୁଖଶଶୀ । ୨ ।
କାହିଁ କି ଶୁଣି କିସ ଆଭାଷିଲା, କାହିଁକିଟି ଏତେ କଥା ଆସିଲା । ୩ ।
ଖଞ୍ଜନ ମଞ୍ଜୁଳ ନେତ୍ର ନିବାର, ଅଞ୍ଜନ ମିଶା ଅଶ୍ରୁ ବହିବାର । ୪ ।
ନ ଧର ରେ ରସ କଳପଲତା, ଅଧର ପାନ ଦାନ କୃପଣତା । ୫ ।
ଶ୍ରୀହରି ବିନୟେ କିଶୋରୀ ତୋଷେ, ବିହରିଲେ ହରିଚନ୍ଦନ ଭାଷେ । ୬ ।

●

(୯୭)

## ରାଗ—ଖମ୍ବାଜ—ଝୁଲା

ଜଗତ କରତା ନାଥ ମିଛେ ହରି ବୋଲାଇଛ
ଅନ୍ତରେ କପଟ ରଖି କ୍ଷିତିରେ ଦାତା ହୋଇଛ । ପଦ ।

ଦେଲ ଯାହା ନେଲ ତାହା—ନ ଜାଣ କି ଚଉବାହା !
ଏଥକୁ ଭାର୍ଗବୀନାହା, ପତାକା ଯା ଉଡ଼ାଇଛ । ୧ ।

ବଳୀରାଜା ଦାନକାଳେ—ତାକୁ ଚାପିଲ ପାତାଳେ
ଗୋପେ ସୁଦାମାକୁ ବଳେ ଅଇଶ୍ୱର୍ଯ୍ୟ ଦିଆଇଛ । ୨ ।

ଗୋପୀଙ୍କ ବସ୍ତ୍ର ଗୋକୁଳେ—ଚୋରିକଲ ଆବହେଳେ
ଦ୍ରୌପଦୀ ଆତଙ୍କ କାଳେ, କୋଟି ବସ୍ତ୍ର ଦିଆଇଛ । ୩ ।

ଶୁକ୍ର ମନ୍ତ୍ରୀ ନେତ୍ରେ କୁଶ—ମାରି ଲଭିବାର ଯଶ
ଧୂଳିଖେଳେ ପୀତବାସ, ଅନ୍ଧେ ଲୋଚନ ଦେଇଛ । ୪ ।

କଂସର ଯେ କୁବଳୟା—ତା'ଠାରେ କରିଣ ମାୟା
ଗଜକୁ କରିଣ ଦୟା, ଚକ୍ରେ କୁମ୍ଭୀର ହାଣିଛ । ୫ ।
ହୃଦୟ ବଡ଼ କଠିନ—କମଠ ପୃଷ୍ଠରୁ ଟାଣ
ବଳଦେବକୁ କଷଣ, ଭୁଜତିଳେ ରୁହାଇଛ । ୬ ।



(୯୮)

## ପୂରବୀ ଏକତାଳି

ଜଣାଗଲା ତୋ ମରଜି ବୀଣାଜିଣା-ବାଣୀ ରେ । ଘୋଷା ।
ସଙ୍ଗିନୀଙ୍କ ସଙ୍ଗେ ସ୍ନେହ ପିଙ୍ଗିଦେଇ ପାଣିରେ
ତନାବି ନଜିକେ ଆଚରିଲୁ ଯା ପଛାଣି ରେ । ୧ ।
କେତେ କଷ୍ଟେ ଧାତା ତୋତେ ଅଛିଟି ନିର୍ମାଣି ରେ
ଲେଖା ତୁ ସୁରେଖା ଏକା ରସିକା ସିହାଣୀରେ । ୨ ।
ପାଉଁଜି-ମଞ୍ଜିର ପଦାଙ୍ଗଜ ରବ ଠାଣିରେ
ବଜାଇଲୁ ଯା ବିଜୟଡ଼ିଣ୍ଡିମ ନିଶାଣି ରେ । ୩ ।
ମହିଳା ମହେନ୍ଦ୍ରଭୂତି ଦେଲୁ ମୋର ହାଣି ରେ
ସରସ ସ୍ୱର-ସମର ସମର୍ଥ ଚାହାଣି ରେ । ୪ ।
ବୋଲେ ହରିଚନ୍ଦନ ଭୂ-ପୁରନ୍ଦରମଣି ରେ
ଯଦୁମଣି ବାଣୀ ବଶ ହେଲେ ଠାକୁରାଣୀ ରେ । ୫ ।



(୯୯)

## ରାଗ—ରେଗୁପ୍ତ, ତାଳ ଆଠତାଳି

ଜଣାଥିଲା କି ମୋତେ ଏ ରୀତି ଗୋ, ଛଣାସୁଧା ସରପଣାରୁ ମଧୁର ଲାଗୁଥିଲା ଶ୍ୟାମପ୍ରୀତି ଗୋ । ଘୋଷା ।

ଲୁଣି ମଣିଲିଣି ମଧୁଝରକୁ, ଶୁଣି ତା ବିଷମ ବଂଶୀସ୍ୱରକୁ, କି ବାଉ ହୋଇଲି ନିଭାଇବି ବୋଲି ସ୍ମର-ଧନଞ୍ଜୟ-ହେତି ଗୋ । ୧ । ମହୀତଳେ ଯେତେ ଧୂର୍ତ୍ତ ପୁରୁଷେ, ସହି ସବୁରି ପରମଗୁରୁ ସେ; ଦୂରୁ ସେ ସ୍ନେହକୁ ଜୁହାରି ମୁଁ ହାରି ରହିଅଛି ଲଭି ଭୀତି ଗୋ । ୨ । ତାରତମ୍ୟ ସେ ନ ଜାଣେ ନିପଟ, ତାର ତନୁ ଗୋଟିଯାକ କପଟ, କଳାବତୀକୁଳ ମାରଣେ କେବଳ କରିଅଛି ପରିଚିତି ଗୋ । ୩ । ଆସିବି ମୁଁ ବୋଲି ଦେଇ ଭାଷାକୁ, ବାସି କଲା ଯେ ମୋ ଫୁଲଭୂଷାକୁ, ତୁ ହେଲେ ପହିଲୁ ଥରେ ନ କହିଲୁ ସେ କିତବର ଅନୀତି ଗୋ । ୪ । ନିଚୋଳରେ ହେଲାନି ମୋ ଅରୁଚି, ପୀତପଟ ସେ କାହିଁକି ଧରୁଛି, ତାହାରି ସଦୃଶ ପିନ୍ଧୁଥାଉ ବାସ ଯା ତୁଲେ ମାତୁଛି ନିତି ଗୋ । ୫ । ଶୁଣି ଏପରି ସନ୍ତୋଷ ଗିରକୁ, ନିଜ ନୟନେ ଥକାଇ ନୀରକୁ, ଆଳି ପ୍ରବୋଧିଲେ କିଶୋରୀକି ବୋଲେ ଅଷ୍ଟଦୁର୍ଗ ଧରାପତି ଗୋ । ୬ ।



## (୧୦୦)

## ରାଗ—ଭାଟିଆରି

ଜବାଧରା, ରାଜ ଭଟ-ହାତେ ପଛେ ଯିବା ଧରା ରେ ।
ରସି ରସେ ଯଶ ରଖିଯିବା ଧରାରେ । ୦ ।
କର ନାନା କେଳି ମିଳି ରାସେ ଡରନା ଗୁରୁଜନକୁ ଲେଶେ
ବରନାଗରି, ଯା, କରନା ମନା ସୁଲଭ ତୋ ବିଭ୍ରମ ପରକାଶେ । ୧ ।
ବଜାର ମଧ୍ୟରେ ଜନ ଗାଉ ରଜାର ସମାଜେ ପଡ଼ିଯାଉ
ହଜାର ଆକଟ ହେଲେ ବି ପ୍ରକଟ କରିବା, ଡରିବା ନାହିଁ ଆଉ । ୨ ।
ଅଦକ୍ଷ ତ ନୋହି ଯାଉ ଦେଖା ରଦକ୍ଷତ ନଖଶିଖରେଖା
ଭୁଲାଇ ବଚନେ ତୁଲାଇ ଦେବାର ଲେଖିଅଛି ଦୁଇ ଭାଲେ ଲେଖା । ୩ ।

---

(୯୯) ସ୍ମରଧନଞ୍ଜୟହେତି—କନ୍ଦର୍ପ ରୂପ ଅଗ୍ନିର ଶିଖା, ପରିଚିତି—ପରିଚୟ, କିତବ—କପଟୀ, ନିଚୋଳ—ପ୍ରଚ୍ଛଦପଟ, ଘୋଡ଼ିହେବା ଲୁଗା; ଆଳି—ସଖୀ ।

(୧୦୦) ରାଜଭଟ—ରାଜଉଆସର ଦ୍ୱାରପାଳ, ସମାଜେ—ସଭାରେ, ରଦକ୍ଷତ—ଦାନ୍ତ ଚିହ୍ନ, ନଖଶିଖରେଖା—ନଖାଗ୍ରର ଚିହ୍ନ, ତଳପ—ଶେଯ, ଜଳପ—କଥା, ବଳପ—ଇନ୍ଦ୍ର, ରାଜାଧିପୟ—ଗଙ୍ଗାଜଳ, ଖୁଣିବା—ନିନ୍ଦିବା, ଶ୍ରୁତିକି—କାନକୁ, ଶିଞ୍ଜିତ—ଧ୍ୱନି, ବଂଶୀନିନାଦ - ଭୁଜଙ୍ଗୀ—ବଂଶୀଧ୍ୱନି ରୂପକ ସର୍ପିଣୀ ।

ତଳପ ସଙ୍ଗମ ବେଳେ ତୋର          କଳ ପଦାମୃତ ଝରଝର
ଜଳପ ଅଳପ ଶୁଣିଲେ ମଣନ୍ତି ବଳପର ସମ୍ପତ୍ତିକି ଛାର । ୪ ।
ରାଜାଧିପଯକୁ ଖୁଣିବାକୁ          ବାଜାବୃନ୍ଦ ନିନ୍ଦା ଭଣିବାକୁ
ଖଞ୍ଜ ରଖିଅଛି ଶ୍ରୁତିକି ତୋ ପଦ ମଞ୍ଜୀର ଶିଞ୍ଜିତ ଶୁଣିବାକୁ । ୫ ।
ଏପରି ନିଶି ପ୍ରସରି ବଂଶୀନିନାଦ-ଭୁଜଙ୍ଗୀ ଦେଲା ଦଂଶୀ
ଅଷ୍ଟଦୁର୍ଗ ନେତା ବୋଲେ ହତଚେତା ହେଲେ ଗତିଜିତ କଳହଂସୀ । ୬ ।



## (୧୦୧)

ଜବାଧରୀ, ଯିବା ଆସ ତାଙ୍କୁ ଅନୁସରି । ଘୋଷା ।

ଜପୁଥିବା କେତେ ଶିବନାମ ବସି
          ଜୀବ ଯିବାଭଳି ହେଲୁଣି ତ ଦିଶି
ଜଳପିବା ବଳ ନାହିଁ କଳଭାଷୀ ଯାଉ ପଛେ ମାନ ସରି ରେ । ୧ ।
ଜାଣି ଜାଣି ଶ୍ୟାମପ୍ରେମ-ଜଳଧିରେ
          ଯେତେ ଉପଚାର କଲେହେଁ ସଧୀରେ
ଜାଣୁ ଜାଣୁ ଅବଗାହନ ବିଧିରେ ଯିବ ବେଦନା କିପରି ରେ । ୨ ।
ଜଳ ସିଞ୍ଚି ତଳେ ପଲ୍ଲବ ତଳପେ
          ଜାଇଦଳେ ବିଞ୍ଚି ପହୁଡ଼ିଲେ ଆପେ
ଜାଣୁଚୁ ତା ଜୀବ ଯିବାର କି ରୂପେ ଜମ୍ବୁନଦସାର ଗୋରୀ ରେ । ୩ ।
ଜାତ କରେ ସ୍ୱଷ୍ଟ କର୍ପୂର ଚନ୍ଦନ
          ଜଳଜ-ଜଳକୁ ପକାଇବା ଆଣ
ଜନମିବ ତହୁଁ ରସ ବିଲକ୍ଷଣ ବଳିବ ଦେଖେ କିପରି ରେ । ୪ ।
ଜୀବ ଥିଲେ ସିନା କରିବି ଗୁମାନ
          ଯାଉଛୁ ତ ସରି ହୋଇ ହୀନମାନ
ଯାହା ଦିଶିଲାଣି ଚନ୍ଦ୍ରମାବଦନ ଜାଣେ ଦରପଣ ଧରି ରେ । ୫ ।
ଜଳଜ-ବାନ୍ଧବ-ନନ୍ଦନା ତଟରେ
          ଜମ୍ବାଳି ନୀଳ ନିଉଛାଳି ଖଟରେ
ଜମିଆସେ ଯେହ୍ନୁ ରାତି ପ୍ରକଟରେ ଜଗଦେବ ବୋଲ କରି ରେ । ୬ ।



(୧୦୨)

## କୋଳାହଳ—ଆଠତାଳି

ଜାଣି ନାହିଁ କି ମୁଁ ଶ୍ୟାମ-ସ୍ନେହ ଗୋ ।। ଘୋଷା ।।

ଆଉ କି ଜଣାଥିଲେ କହ ଶୁଣିବି ଭଲେ

ତା' ଚରିତ ମୋ ଆଗେ ନ କହ ଗୋ । ୧ ।

ଏଥର ମିଶି ସହି ! ନ'ଥର ସହି ସହି

ପଥର କରିଛି ମୁଁ ଏ ଦେହ ଗୋ । ୨ ।

ମୃଦୁ ଗିରେ ମଣାଇଁ ବଳିଆଇ ଜଣାଇଁ

କ୍ରୋଧାନଳେ ମୋ ହୃଦ ନ ଦହ ଗୋ । ୩ ।

ରଚୁଥିଲେ ତା' ପ୍ରୀତି ସେ ସୁଖ, ସେ ବିପତ୍ତି

ତୁହି ଭୋଗ କର, ତୁହି ସହ ଗୋ । ୪ ।

କେତେ ଯତନ କରି କନ୍ଦନ-ନଦୀ ତରି

ଅଛି ମୁଁ ବରଜି ମହାମୋହ ଗୋ । ୫ ।

ଅଛି କି ତାହା ଦତ୍ତ ନଖକ୍ଷତ ରହିତ

ଏ ନଗରେ ନାଗରୀ ନିବହ ଗୋ । ୬ ।

କଳା କିଶୋର ପ୍ରେମ ହିମାନିଠାରୁ ହିମ

ପ୍ରଳୟାନଳରୁ ଡହ ଡହ ଗୋ । ୭ ।

ଅଷ୍ଟଦୁର୍ଗେଶ ଭାଷେ ଶୁଣି ଲଳିତା ହସେ

କହିଲେ ମୋ ସଖୀ ଦୁଃଖୀ ନୁହ ଗୋ । ୮ ।



(୧୦୩)

## ଖମାଚ—ଏକତାଳି

ଜାଣିଲି ଠିକ ପିକବାଣୀ ରେ ! ତୋ ବିବେକଠାଣି

ଏ ଚାହାଣୀରୁ ଆଜ ରେ । ଘୋଷା ।

ଦେଖି ଭଲେ ମୋ ନେତ୍ର ହୋଇଯାଉ ପବିତ୍ର
ଅବା ନବୀନା ବିନା ଲାଜରେ । ୧ ।
ଧନ ରେ ! ଧନ୍ୟ ଧନ୍ୟ ତୋ ଶ୍ରୀମୁଖ-ଲାବଣ୍ୟ
ନାହିଁ ଶାରଦ ଦ୍ଵିଜରାଜରେ । ୨ ।
ମୋତେ ଅବଲୋକନ ଦେବାକୁ ଏ ବିଧାନ
ନିକୁଞ୍ଜ ଆଗମନ ବ୍ୟାଜରେ । ୩ ।
ଭେଟ ତ ମୁଁ ହେଲିଣି ଆଉ ଦୂତୀଙ୍କି ଘେନି
କି ଫଳ ଆପେ ତୁ ନିଆଜ ରେ । ୪ ।
ମୁଁ କରିବା ସେବାରେ ସମ୍ମତି କରିବାରେ
ମାର ବାରଣ ବେଶ ସାଜ ରେ । ୫ ।
ଏ ଅଷ୍ଟଦୁର୍ଗନାଥ ସୁଚିର ମନୋରଥ
ଭରି ଦୃଷ୍ଟ ଦଣ୍ଡକୁ ମାଜ ରେ । ୬ ।



(୧୦୪)

## ପୂରବୀ—ଆଠତାଳି

ଜୀବସଙ୍ଗିନୀ ରେ ଯହିଁ ରିପୁ ଫୁଲଚାପ—
ନାହାର ବାହାର ବାହାରେ କାହାର ଯତନ ଏ ତନୁତାପ । ପଦ ।
ଚୁମ୍ବାଇ ବଦନେ ପ୍ରତିଚୁମ୍ବଦାନେ ନ ଚୁମ୍ବି ପ୍ରିୟ ଶ୍ରୀମୁଖ
ଗଲାନି ଭଲା ନିତମ୍ବିନୀ ମଣିରେ କହ ତ କାହାର ଦୁଃଖ । ୧ ।
ଜାଣୁ ତ ବଣାମୃଗାକ୍ଷୀ ଏ ବୟସେ ସାକ୍ଷୀ ଏ ମନକୁ ମନ
ରତିବନ୍ଧୁ ବିନା ବଞ୍ଚିବ ନବୀନା କି ରୂପେ ଯାମିନୀ ଦିନ । ୨ ।
ଚନ୍ଦ୍ରିକା ଚନ୍ଦନ ଚନ୍ଦ୍ରପରାଗରୁ ଜାଣି ଯାହାର ଅଭେଦ
ସେ ରମଣ ଛାତି ଶୀଳ ସୁପାତିର ବିନା କି ଲାଗଇ ନିଦ । ୩ ।

ଯାହା ଚାଟୁରୁଚି ଘେନୁଥିଲେ ଲୁଚି ଯାଉଥାଏ ଶଶୀ ଶିରି
ତହିଁମାନେ ହଟି କାହିଁକି ଗଲାଟି ବସୁଧା ଚରମ ଚିରି । ୪ ।
ଗଣ୍ଡ ଇବି ସ୍ତନ ତକିଆରେ ଘନଶ୍ୟାମ ପହୁଡ଼ିବେ ନାହିଁ
ବରଜିଣ ତାଙ୍କୁ ଆମ୍ଭ ଜୀଇବାକୁ ଉପାୟ ଅଛି କି ନାହିଁ । ୫ ।
ଚାଲୁଁ କେଳି ନିକୁଞ୍ଜକୁ ଶ୍ରୀମତୀଙ୍କି ସଖି କହିବାର ସ୍ନେହେ
ବାଲୁକେଶ ରଣରଣ ଅଷ୍ଟଦୁର୍ଗ ଭୂନାଥ ପ୍ରିୟକୁ କହେ । ୬ ।

●

(୧୦୫)

## ବିଲାହାରି—ଆଠତାଳି

ଠକଙ୍କ ରୀତିକି ଛାଡ଼ ହେ ଶଠ,
ଠଉରାଇଲୁଁ ତୁମ୍ଭ ପଢ଼ା ପାଠ । ୧ ।
ଠରାରେ ଦେଖାଇ ଯମୁନା ତୁଠ
ଠକି ତ ରଖିଲନି ଥର ଆଠ । ୨ ।
ଠ-ବରତୁଲ ଚନ୍ଦ୍ରାନନ ଓଠ
ଠଣ ତ ଲାଗିଲାନି ବଡ଼ ମିଠ । ୩ ।
ଠ-ନେତ୍ର ହୋଇଥିବାରୁ ଗରିଷ୍ଠ
ଠକାଇଲେ ଜଗଦେବ ସପଠ । ୪ ।

●

(୧୦୬)

## ରାଗ—କାମୋଦି, ତାଳ—ଆଦି

ତଣ୍ଟାରେ ଜାଣି ଜାଣି ପଡ଼ିଲି ରେ ! ଘଣ୍ଟା ପଥକୁ ଯା' ମୁଁ ଛାଡ଼ିଲି ରେ !
କଣ୍ଟା ନିରୁଦ୍ଧ ଘାଟୀ ସଞ୍ଚାରୀ କ୍ଳେଶ ଧାଟୀ ବଣ୍ଟା ନେବି ମୁଁ
ବୋଲି ଅଡ଼ିଲି ରେ ! । ୦ ।

(୧୦୬) ତଣ୍ଟାରେ—ସଂକଟରେ, ଘଣ୍ଟା ପଥ—ଭଲ ଚଲାରାସ୍ତା, କ୍ଳେଶ ଧାଟୀ—କଷ୍ଟକର

ମରିଚ, ଘନସାର, ଉତ୍ପଳ, କ୍ଷୀର-ସର ବିନା ତ
ପିଚୁମର୍ଦ୍ଦ ଛୋଡ଼ିଲି ରେ ।
ଅଟ୍ଟ କୁଟ୍ଟିମ ମୂର୍ଦ୍ଧ ସ୍ଥଳ ଖେଳ ସଂଶ୍ରନ୍ଧ ନୋହି
ଦୁର୍ଗନ୍ଧ ଗାଡ଼େ ବୁଡ଼ିଲି ରେ ।। ୧ ।
ଜମ୍ଭାରାତି ପ୍ରେରିତ ଦମ୍ଭୋଳି ଦୃଢ଼ାଘାତ ବଞ୍ଚାଇବାକୁ
ଛାତି ଆଡ଼ିଲି ରେ ।
ସମ୍ଭାଳିବାକୁ ବଳ ନ ଥିବାରୁ କେବଳ କର ତଳେ
କପାଳ ତାଡ଼ିଲି ରେ ।। ୨ ।
ଦେବ ପ୍ରାସାଦ ମତି ଜନମିବାରୁ ନିତି ବଲ୍ମୀକ ଦେଖି
କର ଯୋଡ଼ିଲି ରେ !
କର୍ମଠ ଧର୍ମଦକ୍ଷ ସାକ୍ଷାତେ ରାଜଶିଖ ନିତ୍ୟ ନିବାସ
ବେଶ୍ମୁଁ କାଢ଼ିଲି ରେ ।। ୩ ।
ହଂସୁଲି ତୁଳ ତଳ୍ପ ପାସୋରି ଦେଇ ଅଳ୍ପ ଲୋକଙ୍କ ପରି
ତଳେ ଗଡ଼ିଲି ରେ !
ରାଧା ରମଣ ଘନଶ୍ୟାମ ବୋଲିବା ଜନ ଦେଖି ସକ୍ରୋଧେ ଦନ୍ତ
ଭିଡ଼ିଲି ରେ ।। ୪ ।
ସମ୍ଭାଷଣ ନ କଲି 'ରମ୍ଭା' ସଦୃଶ ବଲ୍ଲୀ ଦେହାକୁ ଦୂରୁଁ
କ୍ରୋଧେ ଛାଡ଼ିଲି ରେ !
ଚାଟୁ ଗିରେ ଆଶ୍ୱାସି ଜରତୀ ବହିର୍ଦାସୀମାନଙ୍କ
ଅଙ୍କ ସ୍ଥଳେ ଜଡ଼ିଲି ରେ ।। ୫ ।
ବନ୍ଧୁ କ୍ଷମାସରସୀ ହେବ ଅନ୍ୟାଭିଳାଷୀ ମୁଁ ଅରଣ୍ୟରେ
ପଶି ରଡ଼ିଲି ରେ !

---

ଧାଡ଼ି, ଘନସାର—କର୍ପୂର, ପିଚୁମର୍ଦ୍ଦ—ନିମ୍ବ, ଅଟ୍ଟ କୁଟ୍ଟିମ ମୂର୍ଦ୍ଧ ସ୍ଥଳ—ମଣିଖଚିତ ଉଚ୍ଚ ଅଟ୍ଟାଳିକା ଥିବା ସ୍ଥାନ, ଗାଡ଼େ—ଖାତରେ, ଜମ୍ଭାରତି—ଇନ୍ଦ୍ର, ଦମ୍ଭୋଳି—ବଜ୍ର, ଆଡ଼ିଲି—ପତାଇ ଦେଲି, ବଲ୍ମୀକ—ଉଇ ହୁଙ୍କା, ରାଜଶିଖ—ସମ୍ରାଟ, ବେଶ୍ମୁ—ଗୃହରୁ, ହଂସୁଲି ତୁଳି ତଳ୍ପ—କଅଁଳ ତୁଳା ଶେଯ, ଦନ୍ତ ଭିଡ଼ିଲି—ଦାନ୍ତ କଡ଼ମଡ଼ କଲି, ଜରତୀ—ବୁଢ଼ୀ, କ୍ଷମାସରସୀ—କ୍ଷମା କରିବାରେ ପୁଷ୍କରିଣୀ ଭଳି ଉଦାର, କବି-ଅର୍ଯ୍ୟମା—କବିସୂର୍ଯ୍ୟ, ବିଡ଼ିଲି—ପରୀକ୍ଷା କଲି ।

କହେ କବି ଅର୍ଯ୍ୟମା "ମୁଁ ଦୋଷ କଲେ କ୍ଷମା ଦେବ କି ନାହିଁ" ?
ବୋଲି ବିଡ଼ିଲି ରେ ! । ୬ ।



(୧୦୭)

## କେଦାର—ଏକତାଳି

ତମାଳନୀଳକେଶା ଗୁମାନେ ରହନା ରେ । ଘୋଷା ।

ପରବସୁଧା-କଳାକରବଦନ ବାଳା,
ନବ-ପଲ୍ଲବ କରେ ବହନା ରେ । ୧ ।
ତୁ ମୋତେ ଦେବା ଶିରୀ ଦେଖି ସହି ନ ପାରି
କେ କିସ କହିଲାଟି ମୋହ ନାଁ'ରେ । ୨ ।
ଯେତେ ଚାତୁରୀ-ହୀନ ହୋଇଲେ ହେଲେ ଜନ
ଜୀବନେ କରଇ କି କୁହନା ରେ । ୩ ।
ଦଳେ ଅଧରବିମ୍ବ-ଫଳେ ଯା ଦେଲି ଚୁମ୍ବ
ଏହି ଦୋଷକୁ ରୋଷ ବହନା ରେ । ୪ ।
ଅହିତ ମାର ଦାଉ ସହି ନ ପାରେ ଆଉ
ଗଲା କଥା ତ ଗଲା ତୁ ଅନାଁ ରେ । ୫ ।
ଭଣିଲେ ଜଗଦେବ କହନ୍ତି ଶ୍ରୀକେଶବ
ନୋହିବା ପରି ଗୋରୀ କହନା ରେ । ୬ ।



(୧୦୮)

## କାମୋଦୀ—ଆଠତାଳି

ତାକୁ ହୁଏ କି ରକ୍ଷି, ତମସ୍ତମାଳ ସ୍ତୋମ ସୁକେଶୀ ରେ । ଘୋଷା ।
ତିଳକ ତୁଳେ ତୁଳନା ଥାଇ ନାହିଁ ମୂରତି ଯାହା ସଦୃଶୀ ରେ
ତନୁ ଗୋଟିକଯାକ ଜନ୍ମାଏ ପୁଲକ କୁଳ ନାଶନ ଯା' ବଂଶୀରେ । ୧ ।

ତପନ ଶିଶୁମଣ୍ଡଳୀ ପରି ଯାଉଁ ଯା ଶିଖଣ୍ଡ ଚୂଡ଼ା ଦିଶି ରେ
ତରୁଣୀଙ୍କ ଶାଟୀ ଗ୍ରନ୍ଥି ପରିପାଟୀ ଭିତୁ ଭିତୁ ପଡ଼େ ଖସି ରେ । ୨ ।
ତଟେ ଭାନୁଜାର ଶୋଭାମୃତ ଯା'ର ବରଷନ୍ତେ ଲିସି ଲିସି ରେ
ତହିଁରେ ତରୁଣୀ ଶ୍ରେଣୀ ମନ ପୁଣି ନ ଯାଇ ରହେ କି ମିଶି ରେ । ୩ ।
ତରଳ ମଞ୍ଜୁଳ ଚିତ୍ର ନେତ୍ରାଞ୍ଚଳ ଅଳପ ଗଲେ ବିଳସି ରେ
ତକ୍ଷଣରେ ବିକି ନୋହିବ ବିବେକୀ ହୋଇ କି ତେଡ଼େ ସାହସୀ ରେ । ୪ ।
ତର୍କିବ ତାହାରି ଧୃତିପଣୁ ହାରି ହେଲେ ତା ଭଙ୍ଗୀ ସାରସୀରେ
ତାଳୁଯାଏ ମଜ୍ଜିଯାଇ ନ ସମଝି କେ ମାନୀ ହେବ ଭରସି ରେ । ୫ ।
କଥା କହୁଥିବ ଶ୍ୟାମ, ପୁଣି ଥିବ ମଥାପୋତି ଯୋଷା ବସି ତେ
ଚାହୁଁ ଚାହୁଁ ତାହା କ୍ରମ କହୁଥାଉ କାହୁଁ କି ଗୁଡ଼ାଏ ଆସି ରେ । ୬ ।
ତରଣୀଜା ତୀରେ ତରୁଣୀ ଜାତିରେ ନୋହିବ କେ ତାହା ଦାସୀ ରେ
ବସୁଦୁର୍ଗ ମହୀନାଥ କହେ ସହି ହୋଇ ଏ ବ୍ରଜନିବାସୀ ରେ । ୭ ।



## (୧୦୯)

## କାଫି—ଏକତାଳି

ତା ମରଜି ଭରଜି ତୁ ତ ହେଉ ବଣା ରେ
ସେ କି କରିବ ଦୂତୀକି ଜଣାମଣା ରେ । ଘୋଷା ।
ତହୁଁ ଦିପତରୁହାରେ ପଞ୍ଚରୋପ ତରୁ ହାରେ
ଗଲେ ପଛେ ଯିବ ଉତ୍ତମାଙ୍ଗ ହଣା ରେ । ୧ ।
ଯିବ ବୋଲି ସେ ପଥରେ ଶତ ଶପଥରେ ଥରେ
ପିଇଲୁ ନି କି ତା ଗିର-ସରପଣା ରେ । ୨ ।
ଥିଲେହେଁ ପୂରିତ ରସ ମୋ ସଖୀ ପୀୟୂଷରସ
ଛୁଇଁବ କି ଛ'ଥର ନୋହିଲେ ଛଣା ରେ । ୩ ।
ତୁମ୍ଭେମାନେ ସିନା ନିଶୀ ଅଭିସାର-ରସେ ରସି
କରେ ରୁନ୍ଧିପାରେ ବିଷଧର ଫଣାରେ । ୪ ।

ବାଳା ଅଭିମାନ-ମନା ନୁହେ କାହାର ଅଧୀନା
ଲାଘବ ମୁଣ୍ଡରେ ପରମାସେ ଠଣା ରେ । ୫ ।
ଛାଡ଼ି ସବୁ କପଟକୁ ବିଟ ମଣି ମୁକୁଟକୁ
ବାଳା ପଦକଞ୍ଜ ତଳକୁ ଅଣା ରେ । ୬ ।
ବସୁ ଦୁର୍ଗନାଥ ବୋଲେ ଘନଶ୍ୟାମ ମନ ଥିଲେ
ଆସିଣ ଲାବଣ୍ୟଧନେ ହେଉ କିଣା ରେ । ୭ ।



## (୧୧୦)

## ରାଗ—କଳହଂସ କେଦାର

ତାର ଗିରେ କି ବିଶ୍ୱାସ, ତାର ସ୍ନେହେ କି ବିଶ୍ୱାସ,
ତାର ପରେ କି ବିଶ୍ୱାସ, ଯାର ଜାରବିଳାସ ଗୋ । ପଦ ।

ବୋଲେ ଶତ ଥର ଶପଥରେ ମୋର ଆନେ ନାହିଁ ଅଭିଳାଷ, ହୋଇଥାଏ ବୋଲି ଚନ୍ଦ୍ରାବଳୀ କେଳିନିକୁଞ୍ଜ କୁସୁମବାସ ଗୋ । ୧ । ଦନ୍ତବାସେ ସତୀ ଯୁବତୀଙ୍କ ଜାତି ନେବା ଭଙ୍ଗୀମିଶା ହାସ, କଥାକୁ ଶାଶୁଙ୍କ ମଥାକୁ ଛୁଅଇଁ ଏପରି ଯାହା ସାହସ ଗୋ । ୨ । ପ୍ରତି ରାତି ନାରୀମଣିର ରମଣେତରରେ ବଳାଏ ମୁହାଁସ, ପାଚେରୀ ଡେଇଁବା ଆପଦୁ ଯା ପଦକଞ୍ଜତଳ ପରାସ ଗୋ । ୩ । ହୁଏ କେଡ଼େ ପ୍ରିୟ ଗିରେ ସବିନୟ ପ୍ରକାଶି ମୋହନ ରସ, ମୁରଲୀ ବଜାଇ ଡାକେ ଯହୁଁ ଯାଇ-ଆଚରେ ବଡ଼ ନିରାଶ ଗୋ । ୪ । ମୁଁ ନଗର ଯୁବରାଜ ବୋଲି ଅବଲେପରେ ବହେ ଉଲ୍ଲାସ, ଯେ ପୁଣି କପଟେ ଲୁଚି ନଦୀତଟେ ଲୁଟଇ ପାଲଟା ବାସ ଗୋ । ୫ । ତେବେ ହେଲେ ଏ କି ଚିତ୍ର ଧିକ ତାର ଧନ ଜୀବନ ନିବାସ, ଅଷ୍ଟଦୁର୍ଗପୁରନ୍ଦର ବୋଲେ ଯାର ଗତି ନୁହେ ପୀତବାସ । ୬ ।



(୧୧୦) ଜାରବିଳାସ—ଉପପତି ରୂପେ ବିହାର, ଶପଥରେ—ରାଣରେ, ଦନ୍ତବାସ—ଅଧର, ମୁହାଁସ—ଅଭିମାନ, ରମଣେତରରେ—ଅନ୍ୟ ପତିଠାରେ, ପାଦକଞ୍ଜ—ପାଦପଦ୍ମ, ଅବଲେପ—ଗର୍ବ ।

(୧୧୧)

ତାର ସୁଆଗ ଗୋ, ନୂଆ ଗରଳରୁ ବଳେ
ଛୁଆ ଗଜପର ସେ କୁଳ ଦ୍ୱୀପର
ତୁ ଆଗ କସି ଯା ବେଳେ
ଜମ୍ଭା ହିତ କର ଦମ୍ଭୋଳି ପ୍ରକର
ସମ୍ଭାଳି ହୋଇବ କିଛି
ଜୃମ୍ଭାହୀନ ଶ୍ୟାମ ନେତ୍ରାନ୍ତ ବିକ୍ରମ
ସ୍ମରଣ ପ୍ରାଣ ହରୁଛି । ୧ ।
ଭୂରୁ ଭଙ୍ଗି ତାର ଦୂରୁ ବନିତାର
ଲୁରୁଛି ଧୃତି ପସରା
ଦ୍ୱିଖଣ୍ଡ କରୁଛି ବିବେକକୁ ଯାହା
ଅଖଣ୍ଡ ଶିଖଣ୍ଡ ଝରା ! । ୨ ।
କରୀରଜା ଚୁମ୍ବୁ ଗାନ ରସେ ସର୍ବ
ଶରୀର ଭରେ ପୁଲକେ
ପିଇବ ଯେ ବଧୂ ତା ଓଷ୍ଠ ବିଚ୍ଛେଦେ
ଜୀଇଁବଟି କିଏ ଲୋକେ । ୩ ।
ସ୍ମିତକୁ ଚାହିଁ ତା ମୋହନ ମୁରଲୀ
ଗୀତକୁ ଶୁଣିଲେ କାନେ
ଉରୁ ଜଡ଼ିମାକୁ ଚୁମ୍ବିବ କଂପନ
ଗୁରୁଜନେ ଥିବା ସ୍ଥାନେ । ୪ ।
ଯେ ବାର ବାମା ସେ ପାରିବ ତା ତୁଲେ
ହେବାର ଟାପରା ଟାହି
ରଖି ମନେ ତାକୁ ଘାଣ୍ଟି ହୋଇବାରେ
ସଖୀ ମତେ ଲୋଡ଼ା ନାହିଁ । ୫ ।

(୧୧୧) ଛୁଆ ଗଜପର—ସାନ ସିଂହ, ଦ୍ୱୀପର—ହାତୀର, ଦମ୍ଭୋଳି ପ୍ରକର—ବଜ୍ର ସମୂହ, ଜୃମ୍ଭା—ଆଳସ୍ୟ, ଲୁରୁଛି—ଲୁଟି କରୁଛି, ଧୃତି—ଧୈର୍ଯ୍ୟ, କରୀରଜା—ବଂଶୀ, ଉରୁ—ଜଂଘ, ବଲ୍ଲବ ବାମା—ଗୋପାଳ ସ୍ତ୍ରୀ ।

ନିଶ୍ୱାସ ମାତ୍ରକ ରହିଲା ଉଭାରୁ
ବିଶ୍ୱାସ ଜାଣି ନାହିଁ କି ?
ଯା ଶିବ କରିବେ ହେବ ଜାଣୁ ଜାଣୁ
ଭାଷିବ ପ୍ରାଣୀ କାହିଁକି ? । ୬ ।
ପଲ୍ଲବ ତଳେ ପହୁଡ଼ି ଦୁଃଖେ ଏହା
ବଲ୍ଲଭ ବାମା କହିଲେ
କଷ୍ଟ ଜାଣି ଦୁଃଖୀ ହେଲେ ପ୍ରାଣ ସଖୀ
ଅଷ୍ଟଦୁର୍ଗ ନାଥ ବୋଲେ । ୭ ।



## (୧୧୨)

## ରାଗ—କାମୋଦୀ

ତେଣ୍ଡାରେ ଜାଣି ଜାଣି ପଡ଼ିଲି ରେ, ଘଣ୍ଟାରବ ପଥ ମୁଁ ଛାଡ଼ିଲି ରେ ।

କଣ୍ଟା ନିରୁଦ୍ଧ ଘାଟୀ, ସଞ୍ଚାର କ୍ଳେଶ-ଧାଟୀ, ବଣ୍ଟା ନେବି ମୁଁ ବୋଲି ଅଡ଼ିଲି ରେ । ପଦ ।

ମରୀଚ ଘନସାର, ଉପଳ କ୍ଷୀର ସର, ବିନା ତ ପିଚୁମର୍ଦ୍ଦ ଲୋଡ଼ିଲି ରେ, ହଟକୁଟିମମୂର୍ଦ୍ଧ ସ୍ଥଳ-ଖେଳ-ସଂଶ୍ରଦ୍ଧ, ନୋହି ଦୁର୍ଗନ୍ଧ ଗର୍ତ୍ତେ ବୁଡ଼ିଲି ରେ । ୧ । ଦେବପ୍ରାସାଦମତି ଜନମିବାରୁ ନିତି, ବଲ୍ମୀକ ଦେଖି କର ଯୋଡ଼ିଲି ରେ, କର୍ମଠ ଧର୍ମଦକ୍ଷ ସାକ୍ଷର ବିପ୍ରମୁଖ୍ୟ ନିତ୍ୟନିବାସ ବେଶ ପୋଡ଼ିଲି ରେ । ୨ । ଜମ୍ଭାହିତପ୍ରେରିତ ଦମ୍ଭୋଳି ଦୃଢ଼ାଘାତ ବଞ୍ଚାଇବାକୁ ଛାତି ଆଡ଼ିଲି ରେ, ସମ୍ଭାଳିବାକୁ ବଳ ନୋହିବାରୁ କେବଳ କରତଳେ କପାଳ ତାଡ଼ିଲି ରେ । ୩ । ହଂସୁଲି ତୂଳିତଳ୍ପ ପାସୋରି ଦେଇ ଅଳ୍ପ ଲୋକଙ୍କ ପରି ତଳେ ଗଡ଼ିଲି ରେ, ରାଧାରମଣ ଘନଶ୍ୟାମ ବୋଲିବା ଜନ ଦେଖି ସକ୍ରୋଧେ ଦନ୍ତ ଭିଡ଼ିଲି ରେ । ୪ । ସମ୍ଭାଷଣ ନ କଲି ରମ୍ଭସଦୃଶବଲ୍ଲୀଦେହାକୁ ଦୂରୁଁ

(୧୧୨) ତେଣ୍ଡା—ଜଞ୍ଜାଳ, ଘଣ୍ଟାରବପଥ—ରାଜମାର୍ଗ, ଘାଟୀ—ପାର୍ବତୀୟ ପଥ, ସଞ୍ଚାରକ୍ଳେଶଧାଟୀ—ବୁଲିବା କ୍ଳେଶସମୂହ, ଘନସାର—କର୍ପୂର, ଉପଳ—ପଣା, ପିଚୁମର୍ଦ୍ଦ—ନିମ୍ବ, ହଟକୁଟିମମୂର୍ଦ୍ଧସ୍ଥଳଖେଳସଂଶ୍ରଦ୍ଧ ନୋହି—ପ୍ରସ୍ତରାଦିବଦ୍ଧ ସୁପ୍ରଶସ୍ତ ବିହାରସ୍ଥଳରେ କ୍ରୀଡ଼ା କରିବାକୁ ଅଭିଳାଷ ନ କରି, ପ୍ରାସାଦ—ମନ୍ଦିର; ବଲ୍ମୀକ—ହୁଙ୍କା; ସାକ୍ଷର—ବେଦଜ୍ଞ, ବିଦ୍ୱାନ; କର୍ମଠ—

ଦେଖି ତଡ଼ିଲି ରେ, ଚାଟୁଗିରେ ଆଶ୍ୱାସି ଜରତି ବହିର୍ଦାସୀମାନଙ୍କ ଅଙ୍କଘଳେ ଜଡ଼ିଛି ରେ । ୫ । ବନ୍ଧୁ କ୍ଷମାସରସୀ ହୋଇ ଅନ୍ୟାଭିଳାଷୀ ଅରଣ୍ୟରେ ପଶି ମୁଁ ରଡ଼ିଲି ରେ, କହେ କବିଅର୍ଯ୍ୟମା ମୁଁ ଦୋଷ କଲେ କ୍ଷମା ହେବ ନାହିଁ କି ବୋଲି ବିଡ଼ିଲି ରେ । ୬ ।



## (୧୧୩)

### ମୋହନା—ଆଡ଼ତାଳି

ତୁଚ୍ଛା କଥାକୁ ଆନ କାହିଁକି ଏତେ ରେ ବନ୍ଧୁ ! କାହିଁକି ଏତେ ?
ମୋ ଛାର ସ୍ନେହୁ ସୁଖ ହୋଇ କେତେ । ଘୋଷା ।
ଧନ ହେ, ତୁମ୍ଭ ସ୍ନେହ— ଧନେ କିଣା ଏ ଦେହ
ମୋ ଅଧିକୃତି ଏଥି ନାହିଁ କିଛିତେ । ୧ ।
ବ୍ରତବାସରେ ହେଲେ ଆପଣ ଅଳି କଲେ
ସେବା ହାଜର ହେଉଥାଏ ନିରତେ । ୨ ।
X X X X ଅଙ୍ଗରାଗ, ଚନ୍ଦନ
ଏସବୁ ଜାଣ ପ୍ରାଣ ତୁମ୍ଭ ନିମିତ୍ତେ । ୩ ।
ଏତିକି ଏକା ହୁଡ଼ ଲାଜ ଲାଗଇ ବଡ଼
ହୋଇ ନ ପାରେ ତୁମ୍ଭ ପରି ଚରିତେ । ୪ ।
ଶୁଣି ଏ ରାଧାଗିର ଚୁମ୍ବିଲେ ଶ୍ରୀକିଶୋର
ଅଷ୍ଟଦୁର୍ଗ ଭୂବର ରଚିଲେ ଗୀତେ । ୫ ।



କର୍ମକାଣ୍ଡନିପୁଣ; ବେଶ୍ମ—ଗୃହ; ଜମ୍ଭାହିତ—ଇନ୍ଦ୍ର; ଦମ୍ଭୋଳି—ବଜ୍ର, ବଲ୍ଲୀଦେହା—କୋମଳାଙ୍ଗୀ; ଜରତୀ—ବୃଦ୍ଧା; ବହିର୍ଦାସୀ—ଚାକରାଣୀ; ଅର୍ଯ୍ୟମା—ସୂର୍ଯ୍ୟ ।

## (୧୧୪)

## ବେହାଗ—ଏକତାଳି

ତୁମ୍ଭେ ସିନା ପାର ଗୋ ରଜନୀ-ବିହାର
ମୋର ସେ ନଟକୂଟଙ୍କୁ ଜୁହାର ଗୋ । ପଦ ।
ପରିଚୟ କରିଛ ଯଶୋଦାସୁତ ସଙ୍ଗରେ
ହରିଛ ଯମୁନାକୂଳେ କାଳ ନାନା ରଙ୍ଗରେ । ୧ ।
ଘର-ଜନ ଗରଜନ ପରିଭବ ସହିବ
ବରଜ ନଗରଜନ ବଦନ ନ ଚାହିଁବ । ୨ ।
ନୀରଜରୁ ନିରଜରୁ ଜରୁ ପ୍ରତି ପ୍ରତୀକେ
ସ୍ମରଜରୁ ସରିଯାଉଥିବ ନିତି ନିତି କେ । ୩ ।
ଆସିବେ ସେ ବୋଲି ଭୁଲି ଭାସି ଆଶା-ସାଗରେ
ବାସି ବେଶ ହେବାଯାଏ ବସିବାର ଜାଗରେ । ୪ ।
ବନ୍ଦେ ତରଳତା ଛାଡ଼ି ମନ୍ଦେତର ଆଦରେ
ବସୁଦୁର୍ଗ ବସୁନ୍ଧରାଧୀଶ ରାଧାପଦରେ । ୫ ।



## (୧୧୫)

## ପୁରିକଲ୍ୟାଣ—ଆଦିତାଳ

ଥରେ ଅନାଁ ରେ ମୋହନା ତେଜି ମାନ । ୦ ।
ଧନ ମୁଁ ସ୍ନେହରେ ଜନମୁଁ ଦେହରେ
ଭଜି ନାହିଁଟି ତୋହରିଠାରୁ ଆନ । ୧ ।
ସୁଧାଗତ ରସ, ମୁଁ ଧାତା ତରସ-
ମଣି ଲୋଡ଼େ ମୁଁ ତୋ ଦନ୍ତବାସ ପାନ । ୨ ।

ସରୁ ମଧ୍ୟା ମତେ, ନ ରୁଚେ କିଛିତେ
ତୋ ବଚନ ବିନା ବେଣୁ ବୀଣା ଗାନ । ୩ ।
ଚାହିଁଲେ ତୋ ଗତି, କାହିଁ ବୋଲେ ପ୍ରୀତି
ନ ଚାହେଁ ମୁଁ ଲୀଳାଳସ-ହଂସଯାନ । ୪ ।
ପିକଭାଷୀ ହସ, ନ କର ନିରାଶ
ମୋହର ଅଛିଟି କୋଟି କୋଟି ଆନ । ୫ ।
ଶ୍ୟାମ ଚାଟୁଗିରେ, କାମବଶେ ଧୀରେ
ହସି ରସେ ରାଧା ହେଲେ ସାବଧାନ । ୬ ।
ଅଷ୍ଟଦୁର୍ଗେଶ୍ୱର, କଷ୍ଟ ପରିହର
କଲେ ଶ୍ରୀ କିଶୋର ବନି ସେ ବିତାନ । ୭ ।



## (୧୧୬)

ଦିଅ ପଛେ ଗାଳି ରେ, ଦୁଃଖୀସଙ୍ଗାଳି । ୦ ।
ଅନେକ ଦିନରୁ ଆଶା ଅଛି ସମୁଲ୍ଲାସ
କନକଗଉରୀ ତୋର ସ୍ୱାଦୁ ରଦବାସ
ପୀୟୂଷ-ପାନରୁ କରିବାକୁ ତୃଷା ନାଶ
ପୂରି ଚିର ଅଭିଳାଷ ରେ । ୧ ।
ମନମଥ ଅମଳରେ ଘୁମାଇ ଘୁମାଇ
ସ୍ତନଘଟ ଯୁଗଳ ମୋ ଛାତିରେ ଜମାଇ
ଘନକୁନ୍ତଳା ତୋ କୃପାଧରକୁ କିମ୍ପାଇ
ମହାସୁଖ ଜନମାଇ ରେ । ୨ ।
ସହି ସହିପାରୁ ନାହିଁ ମୁଁ ମାର ବଡ଼ାଇ
ପ୍ରସରୁଛି ଯା ପ୍ରତାପ ପତାକା ଉଡ଼ାଇ
ରଣ ଧରଣୀରେ ତାକୁ ତା'କରୁ ଛଡ଼ାଇ
ଆଜ ଦେବା ଘଉଡ଼ାଇ ରେ । ୩ ।

ମୋ ସପତଚି ରେ ମନମୋହନ ମୂରତି
ରସବତୀ ଅଙ୍ଗେ କର ମୋ ଅଙ୍କ ଭରତି
ଥିଲେ ଏବେ ସମ୍ଭାଳିବା ପୀଡ଼ାରୁ ବରତି
କରି ସିନା ପୁଣି ରତି ରେ । ୪ ।
ମଦନମୋହନ ବାଣୀ ଶୁଣି ସବିଳାସେ
ବଦନ ନୁଆଁଇ ଲାଜ-ମିଶାମିଶି ହାସେ
ରଚିଲେ କିଶୋରୀ ସେ ସମୟ ତାପ ନାଶେ
ଅଷ୍ଟଦୁର୍ଗନାଥ ଭାଷେ ରେ । ୫ ।



(୧୧୭)

## ରାଗ—ଦେଶାକ୍ଷ—ତ୍ରିପୁଟା

ଦିନେ ଦିନେ କାହିଁକି ରୁଷେ,
ଧନ ! ମନ ତେଡ଼େ ନାହିଁକି ରସେ । ଘୋଷା ।
ଅଭିନବ ଏ ଯଉବନ ଦେହଛବି କୁସୁମ-ବନ
ଗୁଣଗଣମୟ କଦନ ଏଥିରେ ତ ରୁଷା କ୍ଷଣେ ବରଷେ । ୧ ।
ଘେନିଛି ମୁଁ ମାନସେ ଏହା ନୁହେଁ ନାରୀ ସେ ମୃଦୁଦେହା
ସେ ପରଶମଣି ମୁଁ ଲୁହା ମୁଁ ସୁନା ବନିଛି ତା' ରମ୍ୟରସେ । ୨ ।
କାମମଦ ପ୍ରବାହେ ପଡ଼ି ଦନ୍ତେ ଦନ୍ତ ଦୃକୁଳେ ଭିଡ଼ି
ଦେଇଥିବି ରଦନ ପୀଡ଼ି ବସିଲା ଦିଶିଲା କି ଆଦରଣେ । ୩ ।
ପ୍ରିୟସଖୀ ଆଗେ ଏ ଗିର କହେ ଅଷ୍ଟଦୁର୍ଗ ଭୂବର
ରମାରୀତି ବିଚାରି ମୋର ମେରୁତୁଲ୍ୟ ଧୃତି ହୁଏ କି ରସେ । ୪ ।



(୧୧୮)

## ରାଗ—କେଦାର—ଆଠତାଳି

ଦେଖ ଦେଖ ସଙ୍ଗାତ୍, ନନ୍ଦନନ୍ଦନ ଚନ୍ଦନଯାତ ଲୋ । ପଦ ।
କି ମାନୁଛି ଦିବ୍ୟମୋତି ଝାଲରିଆ ବିମାନମାନଙ୍କେ ରହି ଲୋ
ପଞ୍ଚ ମହାଜନେ ମଞ୍ଚମଣ୍ଡଳରେ ପାପ ଦେଉଛନ୍ତି ଦହି ଲୋ । ୧ ।
ଚାହିଁ ଏ ମଦନମୋହନ ବଦନ ଚନ୍ଦ୍ରଶୋଭାସୁଧା ଚାଖି ଲୋ
କୁଣ୍ଡଳୀମଣ୍ଡଳ ପ୍ରଭୁ ଆଖଣ୍ଡଳ ଲୋଡୁଛନ୍ତି ଲକ୍ଷ ଆଖି ଲୋ । ୨ ।
ଅହିନାଥଙ୍କ ସହିତେ ଆସିଛନ୍ତି ବହୁ ବିଷଧରଚୟ ଲୋ
କେ ସେ ଫଣାମଣି କେ ମଶାଲଶ୍ରେଣୀ ହେଉନାହିଁ ପରିଚୟ ଲୋ । ୩ ।
ଗଉଦ ନ ବାଧୁ ବୋଲି ଶ୍ରୀଅଙ୍ଗକୁ ଚଉଦ ଲୋକ ସହିତେ ଲୋ
ଅମରଙ୍କ ଶ୍ରେଣୀ ଚାମର ଆଢ଼େଣୀ ଆଲଟ ଖଟନ୍ତି କେତେ ଲୋ । ୪ ।
ମାପ ଅଛି କି ଏ ସୁଷମା ରମାର ଯା'ପରି ନୁହଇ ତିଳେ ଲୋ
ଯା' ପାଦକଞ୍ଜ କଞ୍ଜସୁତ ବନ୍ଦେ ସେ ଚାପରେ ଖେଳୁଛି ଜଳେ ଲୋ । ୫ ।
ନେବେ ମନ୍ଦିରକୁ ଏବେ ସୁନ୍ଦରକୁ ସହି ସଙ୍ଗତେ ବୁଲାଇ ଲୋ
ଅଳ୍ପ ଯେବେ ହସିଦେବେ କେ ସୁକେଶୀ ରହିବ ସତୀ ବୋଲାଇ ଲୋ । ୬ ।
ବାଜାରାଜି ତୁଲେ ବାଦ କରି ଗେଲେ ଗରଜେ ସିନ୍ଧୁ ଅମନ୍ଦେ ଲୋ
ଅଷ୍ଟଦୁର୍ଗପତି କର ଯୋଡ଼ିଛନ୍ତି ତଳେ କି ସୁନ୍ଦର ବନ୍ଦେ ଲୋ । ୭ ।



(୧୧୯)

## ରାଗ—କାମୋଦୀ

ଦେବି ମୁଁ ପରାଣକୁ ବରଜି ଗୋ ।
ବୁଝ ତୁ ଥରେ ଶ୍ୟାମ ମରଜି ଗୋ ।
ପିଇ ଜୀଇବି ବୋଲି, କେତେ କଷ୍ଟରେ ଥିଲି, ପୀୟୂଷ ରସପାନ ସରଜି ଗୋ;
ସହି ମୋତେ ନ ସହି, ପାରିଚି ତହିଁ ନେଇ, କେ ଦେଲା କାଳକୂଟ ପରଜି ଗୋ । ୧ ।

ଧନଜୀବନଚୟ, ପ୍ରିୟ ବାନ୍ଧବ ଭୟ, ଜାତି ମହତ୍ତ୍ୱ ଆଶା ବରଜି ଗୋ; ସଜନି କୋଟିକାମ, ଦିଗ୍ରଞ୍ଜିଣୀ ଶ୍ୟାମ, ସଙ୍ଗତେ ଥିଲି ପ୍ରେମ ଅରଜି ଗୋ । ୨ । ମୋ ଠହୁଁ ରୂପବତୀ, କେଉଁ ବ୍ରଜଯୁବତୀ, ଧନ୍ୟ ତା ପ୍ରୀତିରେ ସେ ଭରଜି ଗୋ; ଫିଟାଇ ନେଲା ମନ, ମୋହଠାରୁ ମୋହନ, ସାଇଁବାଠାରେ ସ୍ମର ଦରଜି ଗୋ । ୩ । ଚଞ୍ଚଳ ବିଦ୍ୟୁଲ୍ଲେଖା, ସହିତେ ଦେଇ ଦେଖା, ବିରହୀ ସମୁଦାୟ ତରଜି ଗୋ; ଶ୍ରୀ ଜଗଦ୍ଦେବ ଦୁଃଖ, କହେ ସଜନି ଦେଖ, ଘୋଟି ଆସୁଛି ଘନ ଗରଜି ଗୋ । ୪ ।



(୧୨୦)

## ରାଗ—କେଦାର—ଆଦିତାଳ

ଦୁର୍ବାଦଳ ଶ୍ୟାମ ହେ,
ଦୁର୍ବାଦ ଲଭିବାକୁ କି ଏସବୁ ଉଦ୍ୟମ ହେ । ୦ ।
ଜଗାଇ ରଖିଲ ନିଶୀଥିନୀ ତିନି ଯାମ ହେ
ଭଗାରି ହସାଇ ଦେଲ ତୁମ୍ଭେ କି ଉଦ୍ଦାମ ହେ । ୧ ।
ଭେଶହାସୀ ବେଶବାସୀ କରାଇବା କ୍ରମ ହେ
ଯା ହେତୁରୁ ପ୍ରବଳଇ ଯୁବା କି ସେ ଯମ ହେ । ୨ ।
ନୋହିଥାନ୍ତ ଏକା ଯେବେ ଜଗଦଭିରାମ ହେ
ମହୀରେ ମହିଳା କେ ସ୍ମରନ୍ତା ତୁମ୍ଭ ନାମ ହେ । ୩ ।
ମାରି ମାରି କରି ବିଭାବରୀ ଅବିରାମ ହେ
ଭାରୀ-ଯଉବନାକୁ ଯେ ସାରିଦେଲା କାମ ହେ । ୪ ।
ନିଃଶ୍ୱାସୁଁ ସତ୍ରାସ ହେଲେ ନ କଲ ମରମ ହେ
ବିଶ୍ୱାସଘାତୀ ଗୁଣରେ ତୁମ୍ଭେ ନିରୁପମ ହେ । ୫ ।
ଫୁଲେଁ ମଦେ ଘେନି ହୃଦେ ତୁମ୍ଭ ଦମ୍ଭ ପ୍ରେମ ହେ
ଏବେ କହିବ ମୋ ସହୀ କାହା ଆଗେ ଢମ ହେ । ୬ ।
ଶୁଣି ହସିଦେଲେ ରସିକଙ୍କ ସାର୍ବଭୌମ ହେ
ବାଲୁକେଶ ଦେବ ବୋଲେ ମହୀନାଥୋତ୍ତମ ହେ । ୭ ।



(୧୨୧)

ଧନ ଜାଣନ୍ତି ଗୋ ମନର ଭିତର ଚାଲି,
ଅନଳସ ଚନ୍ଦ୍ରାନନ କେଡ଼େ ସୁଖ ଜନମାଇ ଦେଲେ କାଲି । ଘୋଷା ।
ଜଣାଗଲା ଏକା ବଣାମୃଗାକ୍ଷୀଙ୍କି ବ୍ରଜବନ୍ଧୁ ପରିତ୍ରାଣ
ରଖିଥିବା ପ୍ରିୟସଖୀ ତାଙ୍କୁ ସୁଖ ଦେବାପାଇଁ ଏକା ପ୍ରାଣ । ୧ ।
ହରୁଥିବା ଦିନ ନିଶା କରି ଘନଶ୍ୟାମ ସେବାକୁ ଆଜୀବ
ଚୁମ୍ବୁଥିବା ମହାପ୍ରମୋଦରେ ତାହାଙ୍କର ଚରଣ ରାଜୀବ । ୨ ।
ଗୁରୁଜନ ତରଜନରୁ ନଡ଼ର ସୁରୂପବର୍ତ୍ତିଏ ଆଉ
କୁଳରୁ ଅନ୍ତର କରିଦେଲେ ଡର ମୂଳରୁ ଉପୁଡ଼ି ଯାଉ । ୩ ।
କେ କର କା'ତୁଣ୍ଡେ ଦେଉଥାଏ ଦାଣ୍ଡେ ରାଣ୍ଡେ କରୁଥାନ୍ତୁ ନିନ୍ଦା
ବାରିଜନେତ୍ରର ପରିବାଦ ବରନାରୀଜନମର ଫନ୍ଦା । ୪ ।
କେ କି ବୋଲୁ ଘୋଷେ ପାଶୋରି ନୁହେଁ ସେ କେକୀଝାଲରିଆ ଚୂଳ
କିଛି ନୁହେଁ ବିଉ ବାନ୍ଧବୀ ଜୀବିତ ଶ୍ୟାମପ୍ରେମ ଏକା ମୂଳ । ୫ ।
ଅପବାଦ ଭୟ କିଶୋର ପ୍ରଣୟ ଦୁହେଁ ଭୁଜଙ୍ଗ ନକୁଳ
ଅଷ୍ଟଦୁର୍ଗ ହରିହୟଙ୍କର ହରି ଚରଣାମ୍ବୁଜ ସକଳ । ୬ ।



(୧୨୨)

## ରାଗ—ତୋଡ଼ି ବଙ୍ଗଳା—ଏକତାଳି

ଧନ ହେ, ଘନଶ୍ୟାମ ଗୋରା
ନୂଆ ନାଟୁଟିଏ ଦେଖିବା ପରା ହେ । ଘୋଷା ।
ତାଳି ବଜାଇବେ ବଲ୍ଲବ ବାମା
ବିଜେ କରିଛନ୍ତି ଦେଖିବେ ମାମା ହେ । ୧ ।
ଆମ୍ଭ କଦନ ରମ୍ଭା ପରଶୁଟି
କାହିଁ ଲାଜଲାଜ-ନୁଆଁ ହସୁଟି ହେ । ୨ ।

ମୋ କର ଧରାଧର ଧରଧର
 ଦେବିଟି ଖଣ୍ଡ ଘର ଘରଘର ହେ । ୩ ।
ଜଳଜ ପାଖେ କଳ ହଂସରୁତ
 ହେଉ ମଞ୍ଜୁଳ ମଞ୍ଜୀର ସିଞ୍ଜିତ ହେ । ୪ ।
କି ରମ୍ୟ ଭଙ୍ଗୀ ନାଚିଯାଉ କି ନା
 ତା ତା ଥେଇ ତା ଧିନା ଧିନା ହେ । ୫ ।
ଶ୍ରୀକୃଷ୍ଣଚନ୍ଦ୍ର ଏପରି ନାଚିଲେ
 ଅଷ୍ଟଦୁର୍ଗ-ପୁରନ୍ଦର ରଚିଲେ ହେ । ୬ ।



## (୧୨୩)

### ରାଗ——କାମୋଦୀ——ଝୁଲା

ଧରାଶିର ଚମ୍ପାଝରା ରେ, ଧନ ମୁଁ ତୋ କିଣାଜନ ପରା ରେ । ଘୋଷା ।
ତୁ ରୁଷିଲେ କାହିଁ ମୋ ସୁଖ, ବନ୍ଧୁ ତୋର ଏକା ଶ୍ରୀମୁଖ
ଅଗତିର ସୁଧା ମୟୂଖ; ସୁରନାରୀଙ୍କ ମୁଁ ମଣେ ତୋରା ରେ । ୧ ।
ରଚି ସ୍ମିତ ସୁଧା ବରଷ, ଖଚ ବଚନରେ ନରସ
ଅଚଳ ମୋ କୁହାରେ ରସ, ଶୁଖିଲାଟି ତୋ ଗୁମାନ ଖରାରେ । ୨ ।
ମହୀ ଚାହିଁ ହୋଇ ବିରସ, କହି ନୋହେ ମୋହିବା ବେଶ
ବହିବାରୁ ମୋରେ ବିରସ, ମାନିଲା କି ପିକଦାନୀ-ଧରାରେ । ୩ ।
ମହୀ ଉତପତି କ୍ଷିତିକି, ଜଣାଉଛି ନିତିନିତିକି
ତୋର ମୋର ପ୍ରୀତିରୀତିକି ସାକ୍ଷୀ ସିନା ଏକା ଆଖିଠରା ରେ । ୪ ।
ଅଷ୍ଟଦୁର୍ଗ ଭୂପତି ଭଣି, ବିନତିଶ୍ରୀ ଶ୍ରୀମତୀ ଶୁଣି
ଧରି ଶ୍ୟାମ ମହେନ୍ଦ୍ର ପାଣି ମିଶାଇଲା ଉରେ ଭୂଷାହାରାରେ । ୫ ।



## (୧୨୪)

## ରାଗ—ପଞ୍ଚମବରାଡ଼ି, ତାଳ—ତ୍ରିପୁଟା

ଧନ୍ୟ ହେ ନବକିଶୋର, ସତୀ-ଧୃତିଧନଚୋର, ନିଖିଳ ନାଗର ଶିରୋମଣି; ତୁମ୍ଭ ସଦୟ ମାନସ, କୁଳିଶରୁ କରକଶ, ବୋଲି ନ ଥିବାରୁ ଆମ୍ଭେ ଜାଣି ହେ, ଶ୍ୟାମବନ୍ଧୁ, ଆମ୍ଭ ସଖି ଲଭିଲା କି ଦଶା, ଦମ୍ଭେ ଉଭା ହେବା ନାହିଁ ଆଶା, ଦେଲେ ତରୁଣ କେଶରୀ କୋଳେ କୁରଙ୍ଗୀ କିଶୋରୀ, ଦିଶଇ କି ବଞ୍ଚିବା ଭରସା ହେ । ୧ । ତୂଳି ତଳପ ଶେଯାଇ, ଦେବାର କୋମଳ ଜାଇ ଦଳ ଯାହା ଅଙ୍ଗେ ବସେ ବୁଡ଼ି; ମରକତ ଅରଗଳ ବଳିଷ୍ଠ ବାହୁ ଯୁଗଳ, ଲଗାଇ କେଡ଼େ ନିବିଡ଼େ ଭିଡ଼ି ହେ, ଶ୍ୟାମବନ୍ଧୁ, କି ଚଞ୍ଚଳ ଭାବ ଥିଲା କାଲି, ବାଜି ତୁମ୍ଭ ଅଙ୍ଗ ସଙ୍ଗଭାଲି, ଭଗ୍ନଚକ୍ର ମନମଥ ବିଜୟୀ ମଙ୍ଗଳ ରଥ, ଗତିରୀତି ଚୋରାଇଛି ଚାଲି ହେ । ୨ । ଯେଉଁ ଅଧର ପଲ୍ଲବେ ଲେଖାଇ ନ ଦିଏ ଲବେ, ମୃଗମଦପଙ୍କେ ଲୀଳାଭୃଙ୍ଗୀ; ତୁମ୍ଭ ମହିମାରୁ ଅଙ୍ଗୀକାର କରିଛି ଶୁଭାଙ୍ଗୀ, ତହିଁ ଶୁଆଖିଆ ବିମ୍ବ ଭଙ୍ଗୀ ହେ, ଶ୍ୟାମବନ୍ଧୁ, କିଶୋରୀକି କରି କଳବଳ, ତୁମ୍ଭ ସୁଖ ତୁମ୍ଭେ ଲୋଡ଼ା କଲ, ହେମ ନବନୀତ ବଲ୍ଲୀ କେହି ସହିବଟି ବୋଲି, ହୃଦୟରେ ଦୟା ନ ବହିଲ ହେ । ୩ । ମହାମହୀଧର ଧରି, କଳା ଆତପତ୍ର ପରି, ଯେଉଁ କର ସେ ମୃଦୁ ବୟସେ; ସେ କରରେ ଯେବେ ଘନ-କେଶା ସମର୍ପିଲା ସ୍ତନ, କି ବିଚିତ୍ର ଦଳାଦଳି ରସେ ହେ, ଶ୍ୟାମବନ୍ଧୁ, ଫିଟି ତୁଟି ଯାଇଛି କାଞ୍ଚଲି, ସଞ୍ଚାରଣ ଚଞ୍ଚୁ ପୁଟ ଗଳି, ଲୁଳିଯିବା ଚକ୍ରବାକ-ମିଥୁନମାଧୁରୀଯାକ, ବାଳା ପୟୋଧରେ କରେ କେଳି ହେ । ୪ । ଅନ୍ୟାୟ ତିମିର ହଂସ, ଭୋଜବଂଶ ଅବତଂସ କଂସ ଶାସୁଅଛି ବସୁମତୀ; ତୁମ୍ଭେ ଧନବନ୍ତ ଘର କୁମର ହୋଇ ତୁମ୍ଭର ମାନସେ ନୋହିଲା ଲବେ ଭୀତି ହେ, ଶ୍ୟାମବନ୍ଧୁ, କିଶୋରୀକି କରି ବଟାବଟି, ଅସମ୍ଭବ ଭାବେ ହଟାହଟି, ଫିଟାଇ ନିତମ୍ବପେଟୀ ନିବିଡ଼ ନୀବିକବାଟି, ମଦନମନ୍ଦିର କଲ ଲୁଟି ହେ । ୫ । ଥରକେ ତ ଜଣାଗଲା, ଏଣିକି କି ରୂପେ ଭଲା, ପାଇବ ମୋ ପ୍ରିୟସଖୀ ପାଶ; ବୁଝିବା ତୁମ୍ଭର ବଂଶୀ, କିପରି ବିବେକଧ୍ୱଂସୀ, କେମନ୍ତ ମୋହନ ମନ୍ଦହାସ ହେ, ଶ୍ୟାମବନ୍ଧୁ, କେଡ଼େ ତୁମ୍ଭ ବିଚକ୍ଷଣ ଭାବ, ସବୁ ତ ଏଥର ଜଣାଯିବ, ବୋଲେ ମହୀପତିଶ୍ରେଣୀ-ମୁକୁଟ ମସ୍ତକମଣି ଗଜପତି ଶ୍ରୀମୁକୁନ୍ଦଦେବ ହେ । ୬ ।



(୧୨୪) ତରୁଣକେଶରୀକୋଳରେ—ଯୁବକ ସିଂହ କୋଳରେ, ମରକତଅରଗଳ—ମରକତମଣିରେ ତିଆରି ହୋଇଥିବା କୀଳଣି, ଭାଲି—ଅସ୍ତ୍ରବିଶେଷ (ଭଲ୍ଲାସ୍ତ୍ର), ମୃଗମଦ—କସ୍ତୁରୀ, ଆତପତ୍ର—ଛତା ।

## (୧୨୫)

## ରାଗ—କାନଡ଼ା ଝୁଲା

ନଚାଇଲା ଯାହା ସେ, ଭୂରୁଚାପ ଚପଳ ଚମରୀଦୃଶା । ପଦ ।

ମୋ ଧଇର୍ଯ୍ୟ ମୃଗକୁ ପାଞ୍ଚ, ନୟନାନ୍ତ ବରଛି ଆଞ୍ଚ, ବନ୍ଧୁଆ ବନ୍ଧୁକ ବନ୍ଧୁ ଅଧରରେ ବନ୍ଦି କରି କୁନ୍ଦ ପସନ୍ଦହସା । ୧ । ମୁନିଜନମାନସଭୁଲା, ଭଲା ମୋତି ଝଲକଝୁଲା, ବାସବରତନ ନଥ ନରତନ ରସିକା ନାସିକା-ପୁଟ ଉଲ୍ଲସା । ୨ । ଧନ୍ୟ କାମ ଅମୋଘ ଶର, ମନ-କାରାଭଙ୍ଗୀ ତାହାର, କନକାଚଳ ତ ଛନକା ହୋଇବ ସ୍ତନକାନ୍ତି ଦେଖି କାହା ଭରସା । ୩ । ଅଳଂକୃତ ନିତମ୍ବ ପରି ଶୋଭା ଲୋଭେ ଅଳପ ଫେରି, ଅନାଇଲା ବେଳେ ବିବେକ ଦଳିଲା କି ବେକତଳିଆ ଲହସା ଖୋସା । ୪ । ଛଣା ସୁଧା ବାଣୀ ବିଭ୍ରମ, ଢଣା କଲା ସେ ସବୁ କ୍ରମ, ଏଣିକି ଚରମେ ବେଣୀକି ଫଣୀକି ପରି ଖେଳାଇବ ବରସାଉସା । ୫ । ଅଷ୍ଟଦୁର୍ଗ ମହେନ୍ଦ୍ର ଭଣେ, କିଶୋରୀଙ୍କ ଶୋଭା ବୀକ୍ଷଣେ, ଅଖଣ୍ଡ ଶିଖଣ୍ଡମଣ୍ଡନ ମଦନପଦନଦେ ଭାସି କଲେ ପ୍ରଶଂସା । ୬ ।



## (୧୨୬)

## ରାଗ—କାମୋଦୀ—ଏକତାଳି

ନବନୀରଦ ନୀଳଦେହ ମୁଖେ ଚୁମ୍ବନ ଦିଅ ମାଧୋଇ । ଘୋଷା ।

ତୋର ସୁଧାଧର-ପାନ ନ କରିଣ ନ ରୁଚଇ ମୋତେ ଏ ଚନ୍ଦ୍ରଚନ୍ଦନ
ନିରୁପମାନ ସୁଧାକରାନନ ମନ୍ଦମନ୍ଦ ହାସ ଶୋଭନ
ଧରଣୀଧର ଧର ମୁରଲୀ ମୋହନ ପ୍ରାଣଧନ ତୁ ତୋଷ ମନ । ୧ ।
ଦେଖ ଏ ବସନ୍ତକାଳ, ମନ୍ଦମନ୍ଦ ଏ ମଳୟାନିଳ
ଏ ପଞ୍ଚବାଣ ଚଳ ଚଣ୍ଡକାଣ୍ଡ, ଖଣ୍ଡ ଖଣ୍ଡ କରି କାଟୁଛି ପିଣ୍ଡ
ଗୋପିକା ଜନ ଦୁଃଖ ହାରଣ, ମନ୍ଦଗତି ଜିତ ମତ୍ତବାରଣ
ମନ୍ଦତନୁଜସ୍ୱ ଉଭୟ ଧାରଣ ନାଥ ମୋହର ବିରହ କାରଣ । ୨ ।

(୧୨୫) ବନ୍ଧୁକବନ୍ଧୁ ଅଧର—ରକ୍ତବର୍ଣ୍ଣ ବନ୍ଧୁକ ପୁଷ୍ପ ସଦୃଶ ଓଷ୍ଠ ।

ପ୍ରାଣନାଥ ଏ ତୋ ରୀତି, ମୁଁ ଯେ ନ ଜାଣି କଲି ପୀରତି
ଏ ଚନ୍ଦ୍ରକିରଣ ଅନଳ ସମାନ, ଛାଡ଼ ପ୍ରାଣନାଥ ଏ ତୋ ମାନ
ଶୁଣ ନାଗରବର ଏ ମୋର ଉତ୍ତର
ତୋ ବିରସ ଅଭିମାନ ଦୂର କର
ନିତ୍ୟକରୁଣା କର ହେ ମନସାଗର
ମୋ ବିନୟ ଘେନ ଘେନ ରସିକବର
ଶୁଣି ସନ୍ତୋଷ ମୁରଲୀପାଣି ରାଧେ କହନ୍ତି ମଧୁର ବାଣୀ
ଅଷ୍ଟଦୁର୍ଗ ନୃପ ଜଗଦ୍ଦେବ ଭଣି
ରକ୍ଷାକର ମୋତେ ପ୍ରଭୁ ଚକ୍ରପାଣି । ୩ ।



(୧୨୭)

## ରାଗ—ସାରଙ୍ଗ

ନବୀନା, ତୁ ମୋ'ର ପରିତ୍ରାଣ ରେ ! । ୦ ।
ଠିକ ପିକବାଣି ! ମୁଁ 'ମୀନ', ତୁ 'ପାଣି',
ମୁଁ 'ଚକୋର', 'ବିଧୁ'ଟି ତୁ ଜାଣ ରେ ! । ୧ ।
ତୁ 'କିରଣମାଳୀ', 'ସରସିଜ' ପାଳି
ଧନ ! ମୋ' ମନଟିକ ଛାଣ ରେ ! । ୨ ।
ମୋ' ସୁଖ ଯେ ନାଶେ, ତୋ'ର ଦୋରେହା ସେ;
ବନ୍ଧୁ, ତୋ' ଏପରି ନିଶାଣ ରେ ! । ୩ ।
ତୁ ରୁଷିଲେ ସାରିଦେବ ଗିରୀଶାରି;
କମ୍ପୁଚି ନିଶିତ କୃପାଣ ରେ ! । ୪ ।

(୧୨୭) ପିକ ବାଣି—ରେ କୋମଳ ସ୍ୱର ଭାଷିଣୀ, କିରଣମାଳୀ—ସୂର୍ଯ୍ୟ, ସରସିଜ ପାଳି—ପଦ୍ମକୁ ସମ୍ଭାଳି, ଦୋରେହା—ଦ୍ରୋହୀ ବା ଶତ୍ରୁ, ଗିରୀଶାରି—ଶିବ ଶତ୍ରୁ କନ୍ଦର୍ପ, ନିଶିତ—ଶାଣିତ, ପରୁଷ ବିଳାସୀ—କର୍କଶ ଆମୋଦରେ ଆସକ୍ତ, ରତୀଶ—କନ୍ଦର୍ପ,

ପରୁଷ ବିଳାସା, ଖଳ ଜନ ଭାଷା
ରତୀଶର ଶର-ବିଷାଣ ରେ ! । ୫ ।
'ହରି' ଗିରୁଁ 'ବାଳା' ହେଲେ ଲୀଳା-ଲୋଳା,
ଭଣିଲେ ବସୁଦୁର୍ଗ-ରାଣ ରେ ! । ୬ ।

●

(୧୨୮)

## ଝୁଂଝୋଟୀ—ଆଦିତାଳ

ନାରୀବରମଣି ନିବାର ସୁନୟନ ବାରିରୁହରୁ ତ ବାରି ରେ । ୦ ।
ରସନିଧି ନବୀନା, ତୋ ଦନ୍ତବାସ ବିନା
ସୁଧାକୁ ଗଣଇଁ ଖାରି ରେ । ୧ ।
କି ଦୋଷୁଁ ମୁଖ ପୋତି ମଣୁଛୁ ରେ ସୁଦନ୍ତି
ଧରାକୁ ନଖଶିଖ ଗାରି ରେ । ୨ ।
କି ମୋ ଭାରକୁ ବହି ନ ପାରୁ ପ୍ରାଣସହି
କୁଚାଚଳରୁ କି ସେ ଭାରି ରେ । ୩ ।
ହୁଅ ଶ୍ରୀମୁଖଶଶୀ ଟେକ ଅଳପ ହସି
ମୋ ଅଙ୍କ-ଜଗତୀ-ବିହାରୀ ରେ । ୪ ।
ଉଗ୍ର ନିସର୍ଗ ମାର ନିଗ୍ରହ ଜାଣି ତୋର
ଦେଲାଟି ଶରସାରେ ସାରି ରେ । ୫ ।
କଳାବତୀ-ଲଲାମ କରୁଣାରେ ମୋ ନାମ
ଲେଖାଇ ଦିଅ ପରିଚାରୀ ରେ । ୬ ।
ଛ-ଦୁଇ ଦୁର୍ଗପତି କହେ ଶ୍ୟାମ ମିନତି
ଘେନ ରସିକା ମନୋହାରୀ ରେ । ୭ ।

●

ଶର ବିଷାଣ—ଶିଂଘ ତିଆରି ଶର, ଲୀଳାଲୋଳା—ରତିକ୍ରୀଡ଼ା ପାଇଁ ଆଗ୍ରହୀ, ବସୁଦୁର୍ଗ ରାଣ—ଆଠଗଡ଼ ରାଜା ।

(୧୨୯)

## ରାଗ—ବରାଡ଼ି—ଆଦିତାଳ

ନାହିଁ କରି ନାହିଁ ତ ମୁଁ କାହିଁକି ଗୋ ରାଣ । ଘୋଷା ।

ତାଙ୍କ ସୁଖ ପାଇଁ ସିନା ଶଙ୍କରଙ୍କ ଉପାସନା
ଏ ଦେହ, ଏ ଭୋଗ, ଏ ପରାଣ । ୧ ।

ଶ୍ୟାମ ମୋର ଉନ୍ମାଦକ ଶ୍ୟାମ ମୋ ଗଳାପଦକ
ଶ୍ୟାମ ତ ମୋ ହୃଦ-ପଞ୍ଚବାଣ । ୨ ।

ବ୍ରଜବନ୍ଧୁ ମୋ ରତନ ମୋ ସେବାର ବରତନ
ସେହି ତ ମୋ ବରତ ବସାଣ । ୩ ।

ମନ ଜାଣି ଅଛି ଭଜି ଜାଣି ଜାଣି ମୋ ମରଜି
ଧନ ମୋର କେଡ଼େ ଅବୁଝାଣ । ୪ ।

ଦୁଃଖ ଥିବ ପରା ମନେ ତାଙ୍କ ପଦକଞ୍ଜ ସ୍ତନେ—
ଲଗାଇ ଚୁମ୍ବାଇ ଦିଅ ଆଣ । ୫ ।

ନୃପ ଜଗଦ୍ଦେବ ଭାଷେ ମୋ ବେଶ ସେ, ମୋ ଶୋଭା ସେ
ତାହା ବାହାରେ କେ ପରିତ୍ରାଣ । ୬ ।



(୧୩୦)

ନାହିଁ ସୁଷମା ପରି ତୋ ଶୋଭାର ରେ । ୦ ।

ମଜାରୁ ମୋ ସଙ୍ଗମରେ ଲଜ୍ଜାକୁ ନିବାର ସୁନାଗୋରୀ ମୁଁ ତୋ ପରିଚାର ରେ । ୧ ।

ନିଶି ଦିବା ମିଶିଥିବା ନୋହିବୁ ବାହାର ରେ
ତୁ ରମଣୀ ମୋର ମଣିହାର ରେ । ୨ ।

ସଜନୀ ନିରେଖି ତୋ ମୁଖ ରଜନୀ ନାହାର ରେ
ସହି ଧୃତି ରହିବ କାହାର ରେ । ୩ ।

ସିତରଶ୍ମିକଳା ମୃଦୁ ଭିତର ବାହାର ରେ
ଜିତ ହୁଏ ସ୍ମିତରୁ ନିହାର ରେ । ୪ ।

ବାଣୀ ବୀଣାପାଣି ଟେକି କରିବେ ଜୁହାର ରେ
ରଚନୁ ତୋ ବଚନକୁ ହାତରେ । ୫ ।
ଶ୍ୟାମ ଭଣି ପ୍ରେମବାଣୀ ସେ ବରରୋହାତରେ
ଅଙ୍କ କଲେ ସଙ୍ଗତ ବାହାର ରେ । ୬ ।
ଏ ସମୟେ ବସୁଦୁର୍ଗ ସରବ-ସଂହାର ରେ
ନାଥ ହୃଦେ ବିହିଲେ ବିହାର ରେ । ୭ ।



## (୧୩୧)

ନିକୁଞ୍ଜବିଳାସି ହେ, ନିରୂପମ ହାସୀ ନିଶ୍ଚେ ଗଲା ଭାସି ହେ ! । ୦ ।
ପୂରୁବରେ କାଶୀ-ସରିତରେ ଝାସି
ହୋଇଥିଲା ପରା ତୁମ ହେବ ନିବାସୀ ହେ ? । ୧ ।
କେତେ ସୁଖରାଶି !! କି ବିଚାରି ନାଶି
ଛଳେ ନିରପରାଧୀର ଗଳେ ଦେଲ ଫାଶୀ ହେ । ୨ ।
ନିଧୁବନବାସୀ ହେବା ଅଭିଳାଷୀ
ଯେଟି ହୋଇଥିଲା, ତାହା 'ବେଶ' କଲ ବାସି ହେ ! । ୩ ।
ପ୍ରଣୟ ପିପାସୀ ପ୍ରଖର ନିଶ୍ୱାସୀ
ହେଲା ଯେ, ମୋହନ ! ତୁମେ କେଡ଼େ ଅବିଶ୍ୱାସୀ ହେ ! । ୪ ।
କୃପା ସୁଧାରାଶି କେ ଦେଲା କି ଗ୍ରାସି ?
ଛାଡ଼ି ଚାପ-ଶର 'ସ୍ମର' ହେଲା କି ସନ୍ନ୍ୟାସୀ ହେ ? । ୫ ।
ଏବେ ହେ, ଆଶ୍ୱାସି ରଖ ବାରମାସି
ଅଷ୍ଟଦୁର୍ଗନାଥକୁ ସେବାରେ ଫରମାଶି ହେ ! । ୬ ।



(୧୩୧) ନିରୂପମହାସୀ—ଅପୂର୍ବ ହ୍ରାସ ପ୍ରକାଶିକା (ରାଧା), କାଶୀ ସରିତରେ—ଗଙ୍ଗା ନଦୀରେ, ନିବାସୀ—ସହବାସୀ, ନିଧୁବନବାସୀ—ରତିକ୍ରୀଡ଼ାରତା, ସ୍ମର—କନ୍ଦର୍ପ, ଫରମାଶି—ଆଜ୍ଞା ଦେଇ ।

## (୧୩୨)

ନିଖିଳ ବିମୋହର
ନିଦାନ ତୁ ମୋହର
ମାନସ ବନ୍ଦୀ ହେବା କାରା । ୦ ।
ତ୍ରିଲୋକ ତାମରସ—
ନେତ୍ରା, କୁଚ କଳଶ
କନକ ବିନିର୍ମିତ ହାରା । ୧ ।
ପ୍ରସନ୍ନମୁଖୀ ସ୍ମର
ରସନିଧି ମୁଁ ତୋର
ବଶ୍ୟ ନୋହିବାକୁ କି ଚାରା । ୨ ।
ଘନେ ଚପଳା ପରି
ଖେଳ ମୋ କୋଳେ ଗୋରୀ
ମ୍ଳାନିବେ ନଭେ ଚନ୍ଦ୍ର ତାରା । ୩ ।
ରାଜି କର ନ କର
ଆଜି ଅଧରୁ ତୋର
ପିଇବି ଢୋକେ ସୁଧା ଧାରା । ୪ ।
ଅଷ୍ଟଦୁର୍ଗ ଭୂପତି
କହେ ଶୁଣି ଶ୍ରୀମତୀ
ରଚିଲେ ଅପାଙ୍ଗ ଇସାରା । ୫ ।



## (୧୩୩)

## ରାଗ—ଆରାବୀ

ନିନ୍ଦା ନ ଲଭ ସଖୀ ରେ, ମନ୍ଦାରଅଧରା ଧୀରା ଆଜନ୍ମସୁଖୀ ରେ ।
କୁନ୍ଦସୂନ ଶରଦିନ୍ଦୁ କିରଣଗଣ ସୁନ୍ଦରହସରୁଚିବୃନ୍ଦଲଳିତମୁଖି ରେ ॥

(୧୩୨) ତାମରସ—ପଦ୍ମ, ଅପାଙ୍ଗ ଇସାରା—ଆଖିଠାର ବା ନେତ୍ରକୋଣର ଇଙ୍ଗିତ ।
(୧୩୩) କୁନ୍ଦସୂନ—କୁନ୍ଦଫୁଲ; ଘୋଷା—କ୍ରୋଧ; ମସାରକେଶା—ଇନ୍ଦ୍ରନୀଳପରି କେଶ ଯାହାର; ନାଳିକ—ପଦ୍ମ; ବାରିରୁହପରିହାରୀ—ପଦ୍ମକୁ ପରାସ୍ତ କରୁଥିବା; ଥାରି—ସ୍ଥିର;

ଚିରକାଳରୁ ମୁଁ ତୋର, କୁଞ୍ଜ ମନ୍ଦିର, ମଣ୍ଡନପ୍ରିୟ କିଙ୍କର, ରୋଷାବେଶେ ନିର୍ଭର, ଘୋଷା ମନେ ନ ଧର, ଯୋଷାମଣି ମସାର, କେଶାସାର ନ ସାର, ଭାଷ ଅତନୁ ବିଳାସ, ନିଧି ପରକାଶ, ରୁଚିର ବିକାଶ, ମଦହରହାସ, ନବ ନବ କାଶ-ଯୁତ ରଦବାସବତୀ ନିଜ ଦାସ ସଦୃଶ ଜନେ । ୧ । ମଥା ନୁଆଇଁ ନ ବସ, ଦୁଃଖେ ନ ମଜ୍ଜି ନ ଯାଉ ନିଶା ଦିବସ, ଆଲିଙ୍ଗନରେ ରସ, ନାଳିକନିଭବାସ ଅଙ୍ଗିନୀ ନ ପ୍ରକାଶ, ଦାଶନାଶ ଅଯଶ, ବାରିରୁହ ପରିହାରୀ ନୟନରୁ ଚାରି ପ୍ରହରେ ଝେ଼ ବାରି ଜନମୁଛି ନାରୀମଣିକି ବିଚାରି ସବୁ ସୁଖ ସାରି ଥାରି ହେବି ମୁଁ କେହି । ୨ । ତେଡ଼େ ପୀରତି ପାସୋରି, କିଶୋରୀବର, ବିହିଲୁ ଯା ଏତେ ସରି, ଘେନିଲୁ ପର ପରି, ପାରୀନ୍ଦ୍ରମଧା ଗୋରୀ, ନାରୀନ୍ଦ୍ର ଧରାଶିରୀ, ଶିରୀଷ ସୁକୁମାରୀ, ଢାଳ ପୃଥୁଳ ବିଶାଳ ରୁଚି ହରିତାଳ ସୁଘଟିତ ତାଳସ୍ତନି ରେ କଟାଳ ନ କରଟି କାଳପୁରୁଷ କରାଳ ସ୍ମରକରବାଳ ବଦନେ ଦେଇ । ୩ । ଶୁଣି ଶ୍ରୀମତୀ ହସିଲେ, ଜଗଦ୍ଦେବ ଧରଣୀନାଥ ଭାଷିଲେ, ଦେହେ ଦୁହେଁ ମିଶିଲେ, ଆନନ୍ଦ ବରଷିଲେ, ମାରକୁ ଭରସିଲେ, ତାର ଶରେ ରସିଲେ, ଶମ୍ବଧରମଣି ଜାମ୍ବୁନଦ ବିଧୁ ବିମ୍ବ ଯୁଗ ଘନ ଚୁମ୍ବ ବିଭବରୁ ଶମ୍ବରପରକଳମ୍ବ ସମୁଦାୟ ଡମ୍ବର ଦଳିଲେ ଲମ୍ବ ଚିକୁରବତୀ । ୪ ।



## (୧୩୪)

ନିରତ ମୁଁ ମନେ ମଣୁଛି ରେ
ପ୍ରମୋଦ ଗଜେନ୍ଦ୍ରଗତି । ୧ ।
ଦେହ ବହି ମଞ୍ଜ ପୁରେ ସଂଚରୁଛୁ
ତୁ କାବ୍ୟ ସରସ ରୀତି ।
ବିଜେ କଲା ବେଳେ ମଣ୍ଡନ ସିଂଚିତ
ଲମ୍ବ ଆଡ଼ମ୍ବରେ ତୁହି
ଘଉଡ଼ି ଦେଉ ଯା ମନ କର୍ଣ୍ଣ ଦୁଃଖ
'ଗଉଡ଼' ଏ ଘେନି ତୁହି । ୨ ।

---

ପାରୀନ୍ଦ୍ର—ସିଂହ; କରବାଳ—ଖଡ଼୍ଗ; ଶମ୍ବଧରମଣି—ଇନ୍ଦ୍ରମଣି; ଜାମ୍ବୁନଦ—ସୁବର୍ଣ୍ଣ; ଶମ୍ବରପର—କନ୍ଦର୍ପ; କଳମ୍ବ—ଶର; ଡମ୍ବର—ଆଡ଼ମ୍ବର ।

ଚରଣାଦି ଅବ- ଯବର ବିନ୍ୟାସ
ଲଳିତ ବିଳାସୁ ଜାଣି
'ବଇଦର୍ଭ' ନବ, କେତକୀ ଗର୍ଭକ
ଗର୍ଭ ଚଉରୀ ସୁବେଣୀ । ୩ ।

ମୋ ଅଙ୍ଗ ବିଳାସେ 'କିଳକିଂଚିତ'ର
ତିଳକ କୃତ ତୋ ଭଙ୍ଗି
ଆଉ କେ 'ପାଞ୍ଚାଳୀ' ବୋଲାଇବ ଭାଳି
କହ ତ ମୋ ପ୍ରାଣ ସଙ୍ଗୀ । ୪ ।

ବେଣୁ ବୀଣା ଜିଣା ମୃଦୁ ମୃଦୁ ବାଣୀ
ମୋ ବନ୍ଧୁ ଭାଷୁ ଯାହାଟି
ନିକଷାଟି କଟି- ମଣ୍ଡନା ରେ ମଣେ
ଅତୁଳ ଟିକି ତୁ 'ଲାଟୀ' । ୫ ।

ରସ ତୋ ଜୀବନ ଆଧାୟକ ବନ—
ରୁହାକ୍ଷୀ ମତେ ଗୋଚର
ପ୍ରବନ୍ଧ ରଚନା କଲେ ହେବି ସିନା
ମୁଁ ଆଳଙ୍କାରିକ ତୋର । ୬ ।

ଶୋଭାଙ୍ଗୀ ଏ ଭଙ୍ଗୀ ଗିର ହରି ମୁଖୁ
ଶୁଣି ହସି ସଂକୋଚିଲେ
ଅଷ୍ଟଦୁର୍ଗ ତ୍ରିପି— ଷ୍ଟପ ପୁରନ୍ଦର
ପୁଲକେ ଗୀତି ରଚିଲେ । ୭ ।

●

(୧୩୪) କାବ୍ୟ ସରସ ରୀତି—ସାହିତ୍ୟବିଦ୍ୟାର 'ରୀତି', ଗଉଡ଼—ଗୌଡ଼ୀ ରୀତି, ବଇଦର୍ଭ—ବୈଦର୍ଭୀ ଭୀତି, କିଳକିଞ୍ଚିତ—ଏକ ଶୃଙ୍ଗାରୀ ଭାବ, ପାଞ୍ଚାଳୀ—ପାଞ୍ଚାଳୀ ରୀତି, ଲାଟୀ—ଲାଟୀ ରୀତି, ନିକଷା—କଷଟିପଥର, ବନରୁହାକ୍ଷୀ—ପଦ୍ମନେତ୍ରା, ତ୍ରିପିଷ୍ଟପ—ସ୍ୱର୍ଗ ।

(୧୩୫)

## ରାଗ—ସିନ୍ଧୁ କାମୋଦୀ—ରୂପକ

ନିରନ୍ତର ମୁଁ ମନେ ମଣୁଛି ରେ ପ୍ରମୋଦ ଗଜଗତି,
ଦେହ ବହି ମଞ୍ଜୁପୁରେ ସଞ୍ଚରୁଛୁ ତୁ ସରସ କାବ୍ୟରୀତି । ଘୋଷା ।
ବିଜେ କଲାବେଳେ ମଣ୍ଡନ ସିଞ୍ଜିତ ଲମ୍ବ ଆଡ଼ମ୍ବର ବହି
ଘଉଡ଼ି ଦେଉ ଯା କର୍ଣ୍ଣ ମନ ଦୁଃଖ ଲଉଡ଼ିଏ ଘେନି ତୁହି । ୧ ।
ଚରଣ ଆଦି ଅବୟବ ବିନ୍ୟାସ ଲଳିତ ବିଳାସୁଁ ଜାଣି
ବଇଦର୍ଭୀ ନବ କେତକୀ ଗର୍ଭକ ଗର୍ଭ ଗଉରୀ ସୁବେଣୀ । ୨ ।
ମୋ ଅଙ୍କବିଳାସେ କିଳକିଞ୍ଚିତରୁ ତିଳକୀକୃତ ତୋ ଭଙ୍ଗୀ
ଆଉ କେ ପାଞ୍ଚାଳୀ ବୋଲାଇବ ଭାଳି କହ ତ ମୋ ପ୍ରାଣସଙ୍ଗୀ । ୩ ।
ବୀଣା-ବେଣୁଜିଣା ମୃଦୁମୃଦୁ ବାଣୀ ମୋ ବନ୍ଧୁ ଭାଷୁ ଯାହାଟି
ନୀଳ ଶାଟୀକାଟି ମଣ୍ଡନାରେ ମଣେ ଅତୁଳାଟି କି ତୁ ଲାଟି । ୪ ।
ରସ ତୋ ଜୀବନ ଅଧାୟକ ବନରୁହାକ୍ଷୀ ମୋତେ ଗୋଚର
ପ୍ରବନ୍ଧ ରଚନା କଲେ ହେବି ସିନା ମୁଁ ଆଳଙ୍କାରିକ ତୋର । ୫ ।
ଶୁଭାଙ୍ଗୀ ଏ ଭଙ୍ଗୀ ଗିର ହରିମୁଖୁଁ ଶୁଣି ହସି ସଙ୍କୁଚିଲେ
ଅଷ୍ଟଦୁର୍ଗ ତ୍ରିପିଷ୍ଟପପୁର ପୁରନ୍ଦର ଏ ଗୀତ ରଚିଲେ । ୬ ।



(୧୩୬)

## ରାଗ—କାମୋଦୀ, ତାଳ—ଏକତାଳି

ନିରତେ ମୁଁ ଅଟକୁ ଅଟକୁ ଗୋ, ଗିର ନ ଦେଇ ଶ୍ରୁତିତଟକୁ ଗୋ, କି ରସ ଲୋଭେ ଇନ୍ଦିବରନେତ୍ରା କାଳିନ୍ଦୀ ତଟକୁ ଧାଇଁଥାଏ ହଟକୁ ଗୋ । ଘୋଷା ।

ଛଇଳାକୁ ପୁଚ୍ଛ ତ, ଆପଣେ ପରା ଶତପୁଟହାଟକୁ ବଳି ଝଟକୁ ଗୋ, କି ଦିଶିଲାଣି ତନୁ ନ ମାନି ଗଲା ଦିନୁ ବଂଶୀବଟ ନିକଟ ଭେଟକୁ ଗୋ । ୧ । କେ

(୧୩୬) ଅଟକୁ ଅଟକୁ—ଅଟକାଉଁ ଅଟକାଉଁ, ବନ୍ଦ କରୁଁ କରୁଁ; କାଳିନ୍ଦୀତଟକୁ—ଯମୁନାକୂଳକୁ, ଶତପୁଟହାଟକୁ—ଅତି ଉଜ୍ଜ୍ୱଳ ସୁବର୍ଣ୍ଣକୁ; ରାଜ-ହଂସୁଳି ତୁଳି ଶେଯ—

କହୁଅଛି ଧାଇଁ ବୁଝି ଆସୁ ତ ଯାଇ ଗୋପ ମଥୁରା ବେନି ହାଟକୁ ଗୋ । କେଉଁ କିଶୋରୀ ଭଲ ହେଲାନି ଚାହିଁ ଝଲମଲ ଚନ୍ଦ୍ରକଟାରୁ ନାଟକୁ ଗୋ । ୨ । କପଟେ କଳି କରୁଥାଏ ଏ କରଭୋରୁ ଶ୍ୟାମଗୁଣ କହିବା ଭାଟକୁ ଗୋ, ଭଜୁଥାଏ ତା ଦେହସଙ୍ଗୀ ସମୀର ସ୍ନେହବଶରୁ ବାତାୟନ ତଟକୁ ଗୋ । ୩ । ଇଚ୍ଛା ନ କଲା ରାଜହଂସୁଲିତୂଳି ଶେଯ ବିଛଣାପଡ଼ା ଦନ୍ତଖଟକୁ ଗୋ । ଗୁପତେ ଫରମାସୀ ଅଣାଉଛି ସୁକେଶୀ; କମଳକିଶଳୟ କୂଟକୁ ଗୋ । ୪ । ଏବେ ହେଲେ ଏ ଭୀରୁ ନ ନିବର୍ତ୍ତିଲେ ଉରୁ-ସ୍ତମ୍ଭେ ବନ୍ଧାଇ ପୀତପଟକୁ ଗୋ, ହେଉ ଆବୁର ଧ୍ୱଂସ ଦେଖାଇ ଦେବା କଂସକଟକୁ ଆସିବାର ଭାଟକୁ ଗୋ । ୫ । ଏହା ଚରଣକଞ୍ଜ ତୁମ୍ଭି ଜାଣିଛି କୁଞ୍ଜ ମନ୍ଦିରେ ସେ ବିଟମୁକୁଟକୁ ଗୋ, ଲାଗାଇ ଦେଇଥିବି ଏଣିକି ତ ମୁଁ କବିତପନ ମନ-ମଧୁଲିଟକୁ ଗୋ । ୬ ।

•

## (୧୩୭)

## ରାଗ—ପୁରିକଲ୍ୟାଣ—ଆଠତାଳି

ନିଶୀଥରେ ମିଶି ଥରେ ଧନ, ଖେଳିବାଟି ଆଜ ରେ । ଘୋଷା ।
ଆରୋହି ଦୁହିଙ୍କ ମନୋରଥ, ମାତୁଛି ଯେ ମଦେ ମନମଥ
କେ ପାରିବ କେ ହାରିବ, ହେବ ସେ ନ୍ୟାୟ ନିଆଜ ରେ । ୧ ।
ତୋ କୁଚ ତ ଅତି କରକଶ, ତହିଁ ଖେଳାଇ ମୋ କର କଷ
ଯା'କୁ ଜିଣିବାକୁ ମଣିସାନୂ ନ ବଳାଏ ଓଜ ରେ । ୨ ।
ସମଝାଇ ରସ ପରିପାକ, ଚୁମ୍ବିବି ଯେ ଶ୍ରୀଅମୁଷ୍ଠିଯାକ
କଦାଚିତେ ଦିବ୍ୟଚିତ୍ରେ ଧନ, ନ ସଞ୍ଚିବୁ ଲାଜ ରେ । ୩ ।
ମୁକୁରେ ମୋ ଦନ୍ତବ୍ରଣ ଚାହିଁ, ରସିକାରାଜ ରୁଷିବୁ ନାହିଁ
ପ୍ରେମରସେ ଅମରଷେ ମନେ ରଖିବୁ ବ୍ୟାଜ ରେ । ୪ ।
ଜଗଦେବ କହେ ଶ୍ୟାମବାଣୀ ରସିକା ଶ୍ରୀମନ୍ତମଣି ଗୁଣି
ଦରହାସ ପରକାଶ କଲେ ମୁଖ ଦ୍ୱିଜରାଜରେ । ୫ ।

•

ରାଜଭୋଗଯୋଗ୍ୟ ସୁକୋମଳ ତୁଳାଗଦି, ବାତାୟନ—ଝରକା, ଦନ୍ତଖଟ—ହାତୀଦାନ୍ତରେ ନିର୍ମିତ ଖଟ, କମଳକିଶଳୟକୂଟ—ନୂଆ ପଦ୍ମପତ୍ରସମୂହ, ଆବୁର—ମହତ୍ତ୍ୱ ।

(୧୩୮)

## ରାଗ——କାଫି——ଆଡ଼ତାଳି

ନିହାରହାସୀ ତୁ ଟି ମୋର ସଙ୍ଗାଳି ରେ । ଘୋଷା ।
ମୁଁ ପୂରୁବେ କେତେ ବ୍ରତ ଥିଲି ପରିପାଳି
ଗୁନ୍ଥିଛି ଯା ତୋତେ ଗଳାମାଳି ରେ । ୧ ।
ଚଉଦ ଭୁବନେ ବିଳସିବା ଦ୍ୟୁତି ପାଳି
ତୋ ଚରଣତଳ ନିଉଛାଳି ରେ । ୨ ।
ନ ଥିଲେ ତୁ ମୋଠାରେ କଟାକ୍ଷସୁଧା ଢାଳି,
ତାପାନଳ ଦିଅନ୍ତାନି ଜ୍ୱାଳି ରେ । ୩ ।
ତୋ ଭରସାରୁ ମୁଁ କରତାଳି ଧରି ଚାଳି,
ଦେଉଛି ମଦନ ମୁଖେ କାଳି ରେ । ୪ ।
କି ସ୍ନେହେ ତନୁରେ ତନୁ ଦେଉ ଧନୀ ଝାଳି
ମୋ ଶିରମଣ୍ଡନ ତୋର ଗାଳି ରେ । ୫ ।
ଶ୍ୟାମଗିର ଶୁଣି ସଙ୍କୁଚିଲେ ବ୍ରଜବାଳୀ
ବସୁଦୁର୍ଗନାଥ ଭଣେ ଭାଳି ରେ । ୬ ।



(୧୩୯)

## ରାଗ——ସୁରଟ-ଏକତାଳି

ନିତି ନିତି ନୂତନା ସେ ନାଗରୀମଣି
ତାକୁ ନିକି ମହୀ-ମହିଳାରେ ଗଣି । ଘୋଷା ।
କେବେ କି ଭଙ୍ଗୀରେ ଉଭା, କେବେ ଝରା କେବେ ଗଭା
କି ଜୁଡ଼ା ସେ, କି ଖୋସା ସେ, ସେ କି ବେଣୀ ରେ । ୧ ।
ଜିତ ଶୀତ ମୟୂଖରୁ ସୁନ୍ଦର ତା' ଶ୍ରୀମୁଖରୁ
କେତେବେଳେ କି ରସରେ ଗିର ଶୁଣି ରେ । ୨ ।
ମୋ ସଙ୍ଗେ ମିଳି ଶରଧା ଲାଗେ ମୋତେ ସେ ବସୁଧା-
ମଣ୍ଡନା ଅଧରୁ ସୁଧା-ସାର ଲୁଣି ରେ । ୩ ।

ନ ସରେ ବାସର ଗଣ ଅସର ରସ ନିପୁଣ
ଚାତୁର୍ଯ୍ୟନିଧିର ଗୁଣ ଗୁଣିଗୁଣି ରେ । ୪ ।
ସରଙ୍ଗେ ମୋ ଜୀବସଙ୍ଗୀ ନବନୀତ ମୃଦୁଳାଙ୍ଗୀ
କେତେବେଳେ କେଉଁ ଭଙ୍ଗୀ ଅନାଉଣି ରେ । ୫ ।
ହରିଚନ୍ଦନ ଗଚିଲେ, ହରି ବିଦେଶ ପାଖିଲେ
ପାଇବି କି ହେବ ଶିବକୃପା ପୁଣି ରେ । ୬ ।



## (୧୪୦)

ପଚାର କେ ଆଣିଛି ଗଜଗତିକି ସେ ମୋ ଏ ଜଗତୀକି । ଘୋଷା ।

କି ସୁନ୍ଦର ଦରହସିତ, ଶୀତକରକର ଲଳିତ, ଦଶନବସନ ନବ ଜବାସୂନ ଉପରେ କେ ରଖି ଦେଲା ମୋତିକି । ୧ । ଆହା ତାହା ଚାହାଣି ଠାଣି, ବଣାମୃଗ ନ ପାରେ ଆଣି, ମଳିନ ନୋହିବା ନଳିନ ଯୁଗଳେ ଅଳି କରୁଥିଲା ଚଳି ରତିକି । ୨ । ସ୍ଫୁଟ ତିଳକୁସୁମ ନାସା, ଫୁଟ ଫୁଲା ସରସ ଭାଷା, ଆଳୀକି ଆଳାପି ଚାଳି ଦେଉଥିଲା ପ୍ରତି ପଦରେ କେଳତିପତିକି । ୩ । ହେମରମ୍ଭା ତରୁ ଊରୁକୁ, ପ୍ରେମରଙ୍କ ନଟ ଭୂରୁକୁ, ରୁଚକ ରୁଚିର କୁଚକଳଶକୁ ଚାହିଁ ହଜାଇବେ ଯତି ମତିକି । ୪ । ଇଷ୍ଟତମା ସଖିଙ୍କି ରସେ, ଅଷ୍ଟଦୁର୍ଗ ମହେନ୍ଦ୍ର ଭାଷେ, ମୋଦେ କୋଳେ ବସି ପଦେ କହୁ ହସି ମୋ ସବତଟି ସେ ରସବତୀକି । ୫ ।



## (୧୪୧)

## ରାଗ—ଇମନ କଲ୍ୟାଣ, ଆଢ଼ତାଳ

ପର ମଣି ତ ରମଣୀ ଦେଲୁ କରମଣି ଛାଡ଼ି ରେ । ଘୋଷା ।

ମୋ ଜୀବନ କାହିଁ ହଜାଇଲି, ଖୋଜି ଆଣି ଦିଅ ଆଳି ବୋଲି, ଜଳପୁଛୁ, ବିଳପୁଛୁ, ଏବେ ଉରେ କର ତାଡ଼ି ରେ । ୧ । ଜାଣି ତୋହର ମାନସ ବ୍ୟଥା, ଆଣିଥିଲୁ

(୧୪୦) ଜଗତୀ—ପୃଥିବୀ; ଶୀତକରକରଲଳିତ—ଚନ୍ଦ୍ରକିରଣ ପରି ମନୋହର, ଦଶନବସନ—ଅଧର; ନବଜବାସୂନ—ନୂଆ ମନ୍ଦାରଫୁଲ, କେଳତିପତି—କନ୍ଦର୍ପ, ରୁଚକ—କଣ୍ଠାଭରଣ, ହାର; ସବତ—ରାଣ ।

ଭାଳି କେତେ କଥା, ଘନପ୍ରଭା ସୂନଗଭା, ଅତି ଯତନେ ସଜାଡ଼ି ରେ । ୨ । ବିମ୍ବ ରଦନାମ୍ବରା ରେ ଧନ, ନିମ୍ବଦଳ ଦ୍ରବେ ଦେଇ ମନ, ସୁଧାଧାରା, ମୁଧା ଧରା-ତଳେ ଦେଲୁ ତ ଅଜାଡ଼ି ରେ । ୩ । ଗୋପ ଯୁବରାଜ ଶିରୋମଣି, ତୋ ପଦକଞ୍ଜ ଚୁମ୍ବିଲା ପୁଣି, ଭୁଜେ ଧରି, ତୁ ଯେ ହରିଣାକ୍ଷୀ ନ ରଖିଲୁ ଭିଡ଼ି ରେ । ୪ । ଯାହା ପାଇଁ ଶିବ ପୂଜୁଥାଉ, ତାହାଙ୍କ ପ୍ରିୟାଙ୍କୁ ଭଜୁଥାଉ, ତାଙ୍କ ଦୁଃଖ କରି ସୁଖ, ମୂଳ ଦେଲୁ ତ ଉପାଡ଼ି ରେ । ୫ । ବୋଧି କହେ ଅଷ୍ଟଦୁର୍ଗନାହା, ବୁଦ୍ଧିହୁଡ଼ରୁ ତ ହେଲା ଏହା, ଏବେ ଚାଲ, ନନ୍ଦଲାଲ ମନୁ ମାନ ଦେବା ଝାଡ଼ି ଗୋ । ୬ ।

●

## (୧୪୨)

### ରାଗ—ଖମ୍ବାଜ - ଝୁଲା

ପୀରତି ଲଗାଇ ଶ୍ୟାମ, ଦୂରଦେଶ ତୁ ନ ଯା'ରେ । ଘୋଷା ।

ମୁହିଁ କରି ନାହିଁ ଦୋଷ, ଅକାରଣେ ତୁ ନ ରୁଷ
ପୀୟୂଷ ବଚନ ଭାଷ, ତୋଷ କର ମତିକି ରେ । ୧ ।
ଏ ମୋ ନବ ଯଉବନ, ମାନହୀନ କଲେ ଧନ
ଏ ଯୁବା ବୟସେ କାନ୍ତ ନ ଚିରା କ୍ଷିତିକି ରେ । ୨ ।
ବାଲି ଯେ ତବତି ପାଇ, ଲୋଡ଼ିଲେ ବୃକ୍ଷର ଛାଇ
ଆହା ବୋଲିବାକୁ ସାହା ନ ଥିବଟି କେହି କି ରେ । ୩ ।
ଆପେ ରୋପିବା ବୃକ୍ଷର, ଶ୍ରୀହସ୍ତେ କାଟିଲେ ଚେର
ଦାଣ୍ଡେ ହେବ ଅସୁନ୍ଦର ତୋ ମନକୁ ତୁ ବୁଝା ରେ । ୪ ।
ସୂର୍ଯ୍ୟର କିରଣ ଲାଗି, ହେଉଥିବି ଦୁଃଖଭୋଗୀ
ଦାସୀଗଣମାନେ ଜଗି, ବୋଳୁଥିବେ ଚନ୍ଦନରେ । ୫ ।
କହେ କବିସୂର୍ଯ୍ୟ ଦାସ, ବାଲ୍ୟକାଳୁ ତୋତେ ଆଶ
ପୀରତି ପାଶୋରା ମନ୍ତ୍ର ମୋତେ ତୁ ତ ଦେଇଯା'ରେ । ୬ ।

●

(୧୪୧) କରମଣି—ହସ୍ତସ୍ଥିତ ମଣି; ଢଳପୁଛୁ—ବୃଥା ଅନେକ କଥା କହୁଅଛୁ; ବିଳପୁଛୁ—କାନ୍ଦୁଛୁ; ଉରେ—ବକ୍ଷରେ; ସୂନ—ଫୁଲ; ମୁଧା—ବୃଥା; ତାହାଙ୍କ ପ୍ରିୟା—ଶିବଙ୍କର ପ୍ରିୟା, ପାର୍ବତୀ ।

## (୧୪୩)

## ରାଗ—ମରୁଆ-ଝୁଲା

ପୋଡୁ ପର ଅନୁରାଗ—ତହୁଁ ଭଲ ତନୁତ୍ୟାଗ ଗୋ । ଘୋଷା ।
ଜଗାଇ ମାରଇ ରାତିଯାକ କେଳି-ଅଗାରେ ଲଗାଇ ବାଗ ଗୋ
ଦଗା ଦେଇ ମୋତେ ଭଗାରି ହସାଇ ଲଗାଇ କଳଙ୍କ ଦାଗ ଗୋ । ୧ ।
ସରୁ ବାସ ମେରୁ ଗରୁ ହୋଇଯାଏ ନ ରୁଚେ ଆହାର ଆଗ ଗୋ
ରସି ଚାହୁଁ ଚାହୁଁ ନୀପ ଉପରକୁ ଖସି ପଡ଼େ ଫୁଲ ପାଗ ଗୋ । ୨ ।
ଓଟାରିଲେ ହେଲେ ଗୁରଜନଙ୍କର ତରଜନମୟ ଟାଗ ଗୋ
ମନମଥ-ଶର ଘନଶ୍ୟାମଳର ହୋଇଯାଏ ଲାଗଲାଗ ଗୋ । ୩ ।
ଜଳନ୍ତର ପତି ବୋଲେ ଆଗୋ ଦୂତୀ ଶ୍ୟାମରେ ନୁହ ବିରାଗ ଗୋ
ତାଙ୍କୁ ଭଜିବାରୁ ମରମରେ ମାରୁ ପଛେ ମନମଥ ନାଗ ଗୋ । ୪ ।



## (୧୪୪)

## ରାଗ—ତୋଡ଼ି, ତାଳ—ରୂପକ

ପ୍ରମଦକୁଞ୍ଜର-ରାଜଗତି ରେ, ତୁ ମୋ ଓଜଗଣ ଏ ଜଗତୀରେ
ମୋଠାରେ କରୁଣା ଆଚରିଲେ ଊଣା ବୋଲାଇବୁ ନାହିଁଟି ଏ କ୍ଷିତିରେ ।।
ରତିପଣ୍ଡିତା, ମୁଁ ଚଣ୍ଡୀପତିରେ—ଚଢ଼ାଇ ଚମ୍ପକ ଶୁଦ୍ଧମତିରେ
ତୋ ଚରଣ ଦାସ ବୋଲାଇବା ଯଶ - କୁସୁମେ କରିଛି ପରିପନ୍ଥୀରେ । ୧ ।
ଆଭୀର ନଗରୀ ଶୋଭା ଭୂତିରେ, ଗଭୀର ହୃଦୟା ଦୟାବତୀ ରେ ।
ବ୍ରଜେ ଥିବା ଆଉ ମିଳବ ଯେ କାହୁଁ ତୋହ ପରା ପ୍ରଭୁ ବସୁମତୀରେ । ୨ ।
ବଣାମୃଗନେତ୍ରା ଆଗେ ଭାତିରେ—ଜଣାଇଁ ନ ଜାଣେ ସବିନତିରେ
କରିଛି ମୁଁ ଅନୁମାନରେ ସୁତନୁ ପରସନ୍ନ ଏନାହୁ ଅତି ସ୍ତୁତିରେ । ୩ ।

ନିପଟ କପଟଶୂନ୍ୟ ପ୍ରୀତିରେ—କରିବାରୁ ତୁମ୍ଭ ଅଙ୍ଗୀକୃତିରେ
ଟେକାଇଛି ସୁଖ-ଦାୟିନୀରେ ଦେଖ ସରସେନ୍ଦ୍ର ପଦ ଶ୍ୱେତଛତୀରେ । ୪ ।
ଶ୍ୟାମବାଣୀ ବିଳସନ୍ତେ ଶ୍ରୁତିରେ, କିଶୋରୀ ଢମିଲେ ଲାଜେ ଛାତିରେ
କିଶୋର କିଶୋରୀ କର କୃପାଭର ଅଷ୍ଟଦୁର୍ଗ ବସୁମତୀ-ପତିରେ । ୫ ।

•

(୧୪୫)

**ରାଗ—କଲ୍ୟାଣ—ଏକତାଳି**

ପ୍ରାଣସଜନୀ, ଘେନି ରାଣକୁ ଗୋ
ଆଣ ଯାଇ କିଶୋର-ରାଣକୁ ଗୋ ॥
ଶାଣ ଦେଇ ମଦନ, ବାଣଗଣରେ ପୁଣ,
ଜାଣ ନେବଟି ଆଜ ପ୍ରାଣକୁ ଗୋ ।
ଅକଳଙ୍କ ଶରଦ, ପରବ-ବିଧୁ ମଦ-
ଦଳନ ମୁଖ-ଦରପଣକୁ ଗୋ
ଦେଖାଇ ଥରେ ମୋତେ, ଅଧରୁ ମଧୁ ଯେତେ,
ଚଖାଇ କରା ପରିତ୍ରାଣକୁ ଗୋ । ୧ ।
ତାହାରି ଦୟାବଳ, ମଣିମୟ ମଞ୍ଜୁଳ-
ସ୍ତମ୍ଭ ଭୁଜ ପରିରମ୍ଭଣକୁ ଗୋ
ଟାକି ରହିଛି ମନ, ଢାଳିଣ ଅପଘନ,
କରିବି ଚୁମ୍ବ ବରଷଣକୁ ଗୋ । ୨ ।
ଦ୍ରାକ୍ଷା ମଧୁ ମଧୁର, ସାକ୍ଷାତେ ଚାଟୁଗିର,
ବିଖ୍ୟାତ କରି ମୋ ଶ୍ରବଣକୁ ଗୋ
ଭିକ୍ଷା କରେ ସୁରତ, ଲକ୍ଷ ବିଧି ସବତ,
କକ୍ଷା କି ହେବ ସତୀ ପଣକୁ ଗୋ । ୩ ।
ମଦନ ଅମଳରେ, ରଦନକ କ୍ଷତରେ,
କଦନ ଯେତେ ଦେହ ଟାଣକୁ ଗୋ

ଭାଙ୍ଗିବା ଯାଏ ସହି, ଇଙ୍ଗିତେ ଦେବି ନାହିଁ,
'ନାହିଁ' ଭଙ୍ଗୀର ଆଚରଣକୁ ଗୋ । ୪ ।
ଅଭିନବ ମୁଦିର, ଶୋଭାକୁ ତ ନଜର,
ଗଭୀର ସେ ହଂସର ସ୍ନାନକୁ ଗୋ
କରିବା କାଳେ ଲଜ୍ଜା, ବରଜି ଦେଇ ମଜ୍ଜା,
ହେଲାଣି ତ ମଜ୍ଜିବା ଜଣକୁ ଗୋ । ୫ ।
ଚାରୁ ଚନ୍ଦ୍ରକ ଚୂଳ, ଶୋଭା ନେତ୍ର ଯୁଗଳ,
ଚାହିଁ କଲି ଚଣ୍ଡୀବରଣକୁ ଗୋ
ଅନୁକମ୍ପା କି ହେବ, ନାହିଁ କି ଜଗଦ୍ଦେବ,
ପିତଳର ଗୁଣାର ଶୁଣାକୁ ଗୋ । ୬ ।



(୧୪୬)

## ରାଗ—କୁମ୍ଭକାମୋଦୀ, ତାଳ—ଆଦି

ପ୍ରିୟସଖି କରିବି କି ବୁଦ୍ଧି ଗୋ, ଗଲିନି ମୁଁ ଲାଜେ ସଡ଼ି । କେଉଁ ଗୁଣେ ରସି ନିକୁଞ୍ଜବିଳାସୀ ମୋ ସ୍ନେହେ ଅଛନ୍ତି ବୁଡ଼ି । ଘୋଷା ।

ମୁଁ ତ ଯଉବନ ଗୁମାନେ ମଦନ-ମନ୍ଥର ଚାଲି ନ ଜାଣେ; ମୋତେ ଜଳକେଳିଅଳସୀ ମରାଳୀଗମନା ବୋଲନ୍ତି କେଣେ । ୧ । ବ୍ରଜେ କେତେ ବାମା ନାହାନ୍ତି ସୁଷମା ସମ୍ଭାରେ ରମ୍ଭାରୁ ବଳି; ସେ ଶିଖଣ୍ଡଚୂଳ ନୟନଅଞ୍ଚଳ ଆନେ ତ ନ କଲା କେଳି । ୨ । ମୁଁ ଚାହିଁ ନ ଜାଣେ, ଲବେ ନେତ୍ରକୋଣେ ନଚାଇ ଭୂରୁକୁ ଗେଲେ; ତେବେ ପୀତପଟ ନଟଖଞ୍ଜରୀଟ-ନୟନା ମୋ ନାମ ଦେଲେ । ୩ । ମନ ଜାଣିବାକୁ ଯେଉଁ ଦିନ ଭଲେ ନ ମଜାଇ କଣ୍ଠଭୂଷା; ବିଗୁଣ ନ ଘେନି ଦ୍ୱିଗୁଣ ସେ ଦିନ କରନ୍ତି ଶୋଭା ପ୍ରଶଂସା । ୪ । ଏଥୁଁ ଅବା ଖେଦ ହେଉଛି କି ମୋଦ ନ ଜାଣନ୍ତି ଆନ ସଖୀ; କ୍ଷିତିପତିବୃନ୍ଦ-ମୁକୁଟ ମୁକୁନ୍ଦଦେବ କେବଳ ମୋ ସାକ୍ଷୀ । ୫ ।



(୧୪୬) ନିକୁଞ୍ଜବିଳାସୀ—ଶ୍ରୀକୃଷ୍ଣ; ମନ୍ଥର—ଧୀର; ମରାଳୀ—ହଂସୀ; ସୁଷମା—ଶୋଭା; ରମ୍ଭା—ସ୍ୱର୍ବେଶ୍ୟା; ଶିଖଣ୍ଡଚୂଳ—ମୟୂରପୁଚ୍ଛଧାରୀ; ଖଞ୍ଜରୀଟନୟନା—ଖଞ୍ଜରୀଟ ପକ୍ଷୀପରି ଚଞ୍ଚଳ ନୟନ ଯାହାର ।

## (୧୪୭)

## ରାଗ——କରୁଣାଶ୍ରୀ

ପ୍ରିୟ ସଜନି ରେ ! ମରା ଯିବା ପରା ଶ୍ୟାମ-ଗୋରା ପ୍ରୀତି ଘେନି ! । ୦ ।
ଟାଣି ଘେନି ଯାଉଛି କେ ଅଖିଳ ଇନ୍ଦ୍ରିୟ ?
ଜାଣି ହେଉ ନାହିଁ କି ହେଉଚି ଟି ହୃଦୟ !! । ୧ ।
'ମାନସ' ଅଶନ - ଭୂଷା - ବେଶେ ନ ମିଶିଲା;
ପ୍ରତିଦିଗେ ନୀଳମଣି ମୟୂଖ ଦିଶିଲା । ୨ ।
ଲଗାଇବ କି ବଲ୍ଲବ ଜାତିରେ ଦୂଷଣ
ସେ କେଳି କଦମ୍ବକୁଞ୍ଜ - ମଣ୍ଡପ-ଭୂଷଣ ? । ୩ ।
ତନୁରୁ 'ପତନ', ନେତ୍ର ଯୁଗଳରୁ 'ନିଦ'
ଦୂର କରାଇଲାଣି ସେ ନାଟୁଆ - ନୀରଦ । ୪ ।
ତେଣେ 'କୁଳ ଧର୍ମ' ବୋଲି ଅଛି ଏକ 'ଦଣ୍ଡ';
ଏଣେ ନାଚୁଅଛି ହୃଦେ ଆନତ ଶିଖଣ୍ଡ । ୫ ।
ଚୂରୁଅଛି ଅଭିଳାଷ ମହୀଧର ଚୂଳ
ଗୁରୁଜନ - ଗରଜନ - କୁଳିଶ କନ୍ଦଳ । ୬ ।
ମଜ୍ଜ ତରୀ ମୋଦ - ସରିତରେ ଅଛି ଚାଲି;
'ଲଜ୍ଜା' ପ୍ରତିକୂଳ ବାତ ଆଣୁଅଛି ପେଲି । ୭ ।
ଜାଳି ଦେଉଅଛି 'ବଳ' - ବନ ସ୍ମର - ଦାବ;
ଭାଳି ଭାଷେ ଅଷ୍ଟଦୁର୍ଗନାଥ 'ଜଗଦ୍ଦେବ' । ୮ ।



(୧୪୭) ଅଖିଳ——ସମସ୍ତ, ଅଶନ - ଭୂଷା - ବେଶେ——ଭୋଜନ - ଅଳଙ୍କାର ସାଜସଜ୍ଜାରେ, ନୀଳମଣି ମୟୂଖ——ଶ୍ରୀକୃଷ୍ଣର ଶ୍ୟାମଳ ଆଭା, ବଲ୍ଲବ ଜାତି——ଗୋପାଳ ଜାତି, ପତନ——ଉଦ୍‌ଯୋଗ ବା ପ୍ରଚେଷ୍ଟା, ନାଟୁଆ ନୀରଦ——ନୀଳ ମେଘ ବର୍ଣ୍ଣର ନାଟୁଆ ଶ୍ରୀକୃଷ୍ଣ, ଆନତ ଶିଖଣ୍ଡ——ଅବନତ ମୟୂରଚୂଳିଆ ଶ୍ରୀକୃଷ୍ଣ, ଗରଜନକୁଳିଶ——ବଜ୍ରକନ ଗର୍ଜନ, ମଜ୍ଜତରୀ——ମଜ୍ଜିତ ପ୍ରେମର ଜାହାଜ, ସ୍ମରଦାବ——କାମାଗ୍ନି ।

## (୧୪୮)

## ରାଗ—କାମୋଦୀ, ଏକତାଳି

ଫୁଲ ମଲ୍ଲୀହାସୀ ରେ, ଏତେ ତୁ କି ସାହସୀ । ପଦ ।

ଶୁଣିଥିବୁ ନୂତନା ଗରସ୍ତନା ପୂତନା, ଲଭିଲା ଅରିଷ୍ଟରେ ସୁଖ ଯେଡ଼େ; ତାକୁ ସୁଧା ମଧୁର ଗୁଣବନ୍ତ ଅଧର, ପିଆଇବାକୁ କିପାଁ ବାଞ୍ଛା ଏଡ଼େ । ୧ । ସାତ ବରଷୁଁ ଯାର, ଅଣ୍ଟିଲା ନାହିଁ କର, କମଳ କନିଷ୍ଠକୁ ଗୋବର୍ଦ୍ଧନ; ପଡ଼ିବୁ ତା ହାବୁଡ଼େ, ପୁଣି କାହିଁକି ଏଡ଼େ, ଉନ୍ନତ କୁଚାର୍ପଣେ ଅଭିମାନ । ୨ । ଚିରବଚାରୁ ପେଟ, ହେବାକାଳେ ଶକଟ, ହେଲାଟି ଯାହା ସେ ବିଲୋଳ ମୃଦୁ; ନ ଥିଲା କିଛି ଜଣା, ଏବେ ଯାଉଛି ଶୁଣା ତୁ ପୁଣି ଚୁମ୍ବି ତହିଁ ସ୍ତନେ ଲଦୁ । ୩ । ଚମରୁନେତ୍ରା ଶତ, ଚେଳ ଚୋରି ପଣ୍ଡିତ, ବୋଲି ପ୍ରସରୁଅଛି ଯାହା ନାମ; ଏକାକିନୀ ଅବଳା, ଚେଳହରଣ ଲୀଳା, କି ଚିତ୍ର ଚିନ୍ତିଲେ ସେ ଘନଶ୍ୟାମ । ୪ । ହରିଣାକ୍ଷିରେ ନାନା ହରି ଗନ୍ଧକୁ ଯା ନା, ବୋଲି ଯେ କହୁଥାଉଁ ବାରବାର; ତନୁମଧ କିଶୋରୀ, ମନୁ ଦେଇ ପାସୋରି, ସେ ସ୍ନେହ ସମ୍ପାଦୁଛୁ ଭାର ଭାର । ୫ । କହିଲେ ବସୁଦୁର୍ଗ, ବସୁଧାଚନ୍ଦ୍ର ସ୍ୱର୍ଗ ମହେନ୍ଦ୍ର ସଖୀ ମୁଖୁଁ ଶୁଣି ଏହା; ରଚି ସବ୍ରୀଡ଼ ହାସ, ଶ୍ରବଣ ଅବତଂସ, ଡରାଇ ଉଞ୍ଚାଇଲେ ଚମ୍ପାଦେହା । ୬ ।

●

## (୧୪୯)

## ରାଗ—ଗୁଜରୀ

ବନ୍ଧୁ ଅଦୋଷେ, ରସନା ରୋଷେ, ଧରୁଛି ପଙ୍କଜପାଣି । ଘୋଷା ।

ଜନମରୁ ବୀଣାବଚନୀ ମୁଁ ଊଣା ଜନ କି ନ ଜାଣୁ ତାହା ରେ, ସ୍ମର-ଶର ଧାରେ, ସରିଲିଟି ବାରେ, ଧନ ତୁ ନ ବୋଲୁ ଆହା ରେ । ୧ । କରିଥିଲୁ ପରା, ମୋତେ ଜବାଧରା, ଜଣେ ତୋ ଚରଣ ଦାସୀ ରେ, ଟିକିଏ ବିକଳା ହେଉ ନାହୁଁ କଳାକୁନ୍ତଳା ନୂଆବୟସୀ ରେ । ୨ । ଅରଜିଛି ତୋତେ, ବନ୍ଧୁ କେତେ କେତେ ଜନ୍ମେ

(୧୪୮) ଗରସ୍ତନା—ବିଷପୂର୍ଣ୍ଣ ସ୍ତନ ଯାହାର, ଚମରୁନେତ୍ରା—ମୃଗନୟନା ।

(୧୪୯) ବୀଣାବଚନୀ (ସଂ)—ମଧୁରଭାଷିଣୀ; ସ୍ମର-ଶର ଧାରେ—କନ୍ଦର୍ପ ବାଣର ଧାରରେ; ଜବାଧରା—ଜବାଫୁଲ ପରି ଅଧର ଯାହାର ।

ତପ କରି କାଶୀରେ, ତୁ ଚିତ୍ତ ପଥର କଲେ ତ ଏଥର, ଭଗାରିଏ ଦେବେ ହସି ରେ । ୩ । ସଖୀବନ୍ଧା ବେଣୀ ଫେଡ଼ି କୋଳେ ଆଣି, ନ ଦେଲେ ମୁଁ ଖୋସା ଖୋସି ରେ, କୃପା ଥାଉଁ ଚିତ୍ତେ, ତୁହି ପରା ମୋତେ, ଗେଲେ ବସୁଥାଉ ରୁଷି ରେ । ୪ । ତେଡ଼େ ବଡ଼ ସ୍ନେହ, କି ଦୋଷରୁ କହ, ତୋ ମନୁ ଯାଉଛି ଖସି ରେ, ଜଗଦ୍ଦେବ ବୋଲେ, ଶ୍ୟାମ ଜଣାଇଲେ ପଡ଼ି ଦୁଃଖ ଜଳରାଶିରେ । ୫ ।



## (୧୫୦)

## ରାଗ—ବେଗଡ଼ା—ଏକତାଳି

ବନ୍ଧୁଜୀବାଧରା ଭୂଣିର ଝରା ଆରେ । ଘୋଷା ।

ସୁନ୍ଦର ସରସସ୍ମିତ— ଅଧରେ କରି ସଞ୍ଚିତ
ପ୍ରସରାଇ ଦେ' ସୁଧାକୁ ବସୁଧାରେ । ୧ ।

ଲାଗି ତୋ ଗହଣେ ସହି, ମାଗିବାର ସିନା ଏହି
ଅନାଇଁ ମୁଁ ନାହିଁ ବିନା କରୁଣାରେ । ୨ ।

ଘେନି ମୋ ବିନୟ ଆଜି ରାଜିବାକ୍ଷୀ କର ରାଜି
ରଣରଣ ଧରଣୀ ଖେଳକୁ ବାରେ । ୩ ।

ଅବଲମ୍ବ ତୋତେ କରି ଭବାରି ପୁରୁ ନ ଡ଼ରି
ମୋହନାରେ ଠଉରିଛି ତୋହ ନାଁ ରେ । ୪ ।

ନିଖିଳ ସୁଖ ସମାଜ ନାଶନରୁ ମାନ ଲାଜ
କରି ଚାମରକେଶା କି ପରିଚାରେ । ୫ ।

ହରି ଗିରେ ଶ୍ରୀବଲ୍ଲଭୀ ହରଷେ ଗଲେ ପଲ୍ଲବି
ନୃପ ଜଗଦ୍ଦେବ ଭଣେ ଶରଧାରେ । ୬ ।



(୧୫୧)

## ରାଗ—ଏମନ କଲ୍ୟାଣ—ଆଦିତାଳ

ବନ୍ଧୁ ମୋ ଲାବଣ୍ୟସିନ୍ଧୁ କେବଳ ଧନ୍ୟ ସିନ୍ଧୁର ଗତି ଗଣନାରେ । ଘୋଷା ।

ଜମ୍ବୁ ଦଳନ-ଗଜ କୁମ୍ଭରୁ ତା ଉରଜ
ଊଣା କି ଗୋଟିଏ ଚିନାରେ । ୧ ।

ମନ୍ଦ ମଧୁର ହାସେ ଚନ୍ଦ୍ରିକାକୁ ଯାହା ସେ
ରୁନ୍ଧଇ କୁନ୍ଦଦଶନା ରେ । ୨ ।

ଇନ୍ଦୁକୁ ନିଜାନନେ ନିନ୍ଦୁଛି ପ୍ରତିଦିନେ
ସିନ୍ଦୂରାଧରା ନବୀନା ରେ । ୩ ।

ପଞ୍ଚ ନାରାଚ କୁନ୍ତ ଚଞ୍ଚଳ ତା ନେତ୍ରାନ୍ତ—
ମୂନରୁ ହୋଇବ ଖୂନା ରେ । ୪ ।

କୁନ୍ଦନିବିଡ଼ା ଚାରୁ କୁନ୍ଦନ ପ୍ରତିମାରୁ
ସୁନ୍ଦର ମୋ ଧନ ସିନା ରେ । ୫ ।

ବର କିଶୋରୀ ମୋତେ ତରକି ମୃଦୁଚିତ୍ତେ
ସୁନାରେ କରଇ ମିନା ରେ । ୬ ।

ଅଷ୍ଟଦୁର୍ଗେଶ ଭାଷେ ଶ୍ୟାମ ଏହା ମାନସେ
ଚିନ୍ତିଲେ ଯମୂନା କିନାରେ । ୭ ।

•

(୧୫୨)

## ରାଗ—କାଫି, ଏକତାଳି

ବନ୍ଧୁ, ବାରିଲେକ ମୋତେ ଗୋ । ଘୋଷା ।

ଦୁଃଖସମାଜ ହଜିଲା ଆଜ ଦିନ କି ସୁପ୍ରଭାତ ସତେ ଗୋ । ୧ ।

ମୁଁ ଛାଣି ନାହିଁ ଦେଲେ କି ଚାହିଁ ଖେଳ ଅଞ୍ଚଳ ନୟନାନ୍ତେ ଗୋ । ୨ ।
ମୁରଲୀଧର ରମ୍ୟଅଧର ମନ୍ଦେ କି ମଣ୍ଡିଥିଲେ ସ୍ମିତେ ଗୋ । ୩ ।
ମୁଁ ଅସଂଯତ ଥିଲି ଯେ ମିତ କିସ ବିଚାରିଥିବେ ଚିତ୍ତେ ଗୋ । ୪ ।
ମୁଁ କି କରନ୍ତି ରେ କୁନ୍ଦଦନ୍ତୀ ଯେବେ ସେ ଦେଖନ୍ତେ ଏକାନ୍ତେ ଗୋ । ୫ ।
ଥରେ ମଧୁର ତାଙ୍କ ଅଧରପାନ ଦିଆଇବୁ କି ମୋତେ ଗୋ । ୬ ।
ପୂତ ନିଃସର୍ଗରୁ ଦୁଇ ଦୁର୍ଗ ମହୀ-ମହେନ୍ଦ୍ର ବୋଲେ ଗୀତେ ଗୋ । ୭ ।



## (୧୫୩)

## ରାଗ—ଘଣ୍ଟାରବ

ବନ୍ଧୁ ! ମୋ' ମନେ ସ୍ନେହ ନାହିଁ କି ରେ ? । ୦ ।
ଚରମେ ଯେ ଅପସର, ଛାମୁରେ ଯେ ତୋ' ମୁକୁର ରେ !
ତାହାକୁ ନ ଚାହୁଁ ଆଜି କାହିଁକି ରେ ? । ୧ ।
ଏ ବ୍ରଜେ ପ୍ରମାଦେ ହେଲେ ଇତର ତରୁଣୀ ତୁଲେ ରେ !
ଲାଗିଲି ବୋଲି ଟାପରା ଟାହି କି ରେ ? । ୨ ।
କଦାପି କାମ ଅମଳେ ଓଷ୍ଠେ ଦନ୍ତ ବ୍ରଣ ହେଲେ
ଅପରାଧ ଘେନୁ ଥାଇ ତା'ହି କି ରେ ? । ୩ ।
ଦୋଷ ହେଲେ କ୍ଷମା କର କେଳତି ପ୍ରତିମା ମୋ'ର,
ଦାସ ନାଶ-ରସେ ଅବଗାହି କି ରେ ? । ୪ ।
ଅଷ୍ଟଦୁର୍ଗନାଥ ଭାଷେ 'ଶ୍ୟାମ' କହିଲେ ସହାସେ ରେ !
''ଏବେ ହେଁ ନ ଦେବୁ ଥରେ କାହିଁକି ରେ ?'' । ୫ ।



(୧୫୩) ଚରମେ—ମସ୍ତକରେ, ଅପସର—ତକିଆ, ମୁକୁର—ଦର୍ପଣ, ପ୍ରମାଦେ—ଭ୍ରମରେ, କଦାପି—କେତେବେଳେ, କାମଅମଳେ—କାମୁକତାରେ, କେଳତି ପ୍ରତିମା—ମୋ ପାଖରେ ରତିଦେବୀ ସଦୃଶା, ନାଶରସେ ଅବଗାହି—ବିନାଶ ରୂପକ ଜଳରେ ବୁଡ଼ି ।

(୧୫୪)

ବନଜାନନୀ ମନ ଜାଣି ତ ଲୀଳା ବିହିଲା ରେ,
ଧନ ଯା' ନିଧୁବନଯାକର ପୀଡ଼ା ସହିଲା ରେ ! । ୦ ।
କରକଶ କୁଚ ଅଚଳ ମୂଳ ଖର କରୋରୁହ-ଶିଖର ଖେଳ
କୁସୁମବିଶିଖ ରଣ-ରସ-ସୁଖ-ଧାରା ବହିଲା ରେ ! । ୧ ।
ମିଶି ମିଶି ଜିତ ତରୁଣ କୀର "ଇଷି-ଇଷି ରଖ ମଳିଟି" ଗିର
ହସି ହସି ରସି ରସି ନିଶିତ ନେତ୍ରାନ୍ତେ କହିଲା ରେ ! । ୨ ।
ସ୍ମର ସମର ସଦୃଶ ବିଳାସ ପରସନ୍ନ ମୁଖ ସରସ ହାସ
ଦରଶନଭର ହରଷ ମନ ନିଶାନ୍ତେ ରହିଲା ରେ ! ୩ ।
ରଜନୀ ଚରମ ସମୟ ଜାଣି ଗଜନିଭଗତି ସରସ ବାଣୀ
ଅଜନିତ ରତି ରଣ ରଙ୍ଗେ ମୋ' ଅଙ୍ଗେ ଶୋହିଲା ରେ ! । ୪ ।
"କରୀଗତି, କର ପୀରତି" ଚିନ୍ତି 'ହରି' ମନରେ ଏପରି ଧରନ୍ତି;
କରି ଅନୁମତି ବସୁଦୁର୍ଗ କ୍ଷିତି-ପତି କହିଲା ରେ ! । ୫ ।



(୧୫୫)

## ରାଗ—କନଡ଼ଗୌଡ଼—ଆଠ ତାଳି

ବରନାଗରୀ, ଆଜ ଥରେ ହେବୁ ମୋ ପରି ରେ । ୦ ।
ଦୀପ ଥିଲେ କି ପରୁଆ ରେ ପ୍ରାଣବନ୍ଧୁଆ !
ଘେନ ତୁ ମୁଁ ତୋର କି ପରୁଆ ରେ ? । ୧ ।
ବିବସନ ବେଶୁଁ କି ଲାଜ, ରେ ରସିକାରାଜ !
ଦିବସ କାଳ ତ ନୁହେଁ ଆଜ ରେ । ୨ ।

(୧୫୪) ବନଜାନନୀ—ପଦ୍ମମୁଖୀ, ନିଧୁବନ ଯାକର—ସମୁଦାୟ ରତିକ୍ରୀଡ଼ାର, ଅଚଳ—ପାହାଡ଼, କରୋରୁହ-ଶିଖର ଖେଳ—ରତିକାଳୀନ ନଖ କ୍ଷତ, କୁସୁମବିଶିଖ—କନ୍ଦର୍ପ, ରଣରସ ସୁଖଧାରା—ରତିକ୍ରୀଡ଼ାର ସୁଖ ବା ଆନନ୍ଦଧାରା, କୀର—ଶୁଆ, ଗିର—ଭାଷା, ନିଶିତ ନେତ୍ରାନ୍ତେ—ତୀକ୍ଷ୍ଣ କଟାକ୍ଷରେ, ସ୍ମର ସମର—ରତିକ୍ରୀଡ଼ା, ନିଶାନ୍ତେ—ରାତି ଶେଷରେ, ଚରମ ସମୟ—ଶେଷ ବେଳ, ଗଜନିଭ ଗତି—ହାତୀ ପରି ଧୀର ଗତି, ଅଜନିତ—ଉତ୍ପାଦିତ ନ ହୋଇଥିବା ।

ରତ୍ନ କଳାପ କିଙ୍କିଣି, ରେ ତରୁଣୀମଣି !
କେ ଆସିପାରେ କି ତାହା ଶୁଣି ରେ । ୩ ।
ବୁଜିଥିବି ମୁଁ ମୋ ଆଖି, ରେ ବଣା ମୃଗାକ୍ଷୀ !
ଚାହିଁଲେ ମୋ ଅଙ୍ଗେ ଯିବୁ ଲାଖି ରେ । ୪ ।
ଦେଖାଇବି ଦରପଣ ରେ ତୁ ରଣରଣ-
ରଣେ କର ବାହାଦୁର ପଣ ରେ । ୫ ।
ଶ୍ୟାମ ଗିରେ ବାଳା ରସେ, ବ୍ରୀଡ଼ା ବିଳାସେ
ବସୁଦୁର୍ଗ ପୁରନ୍ଦର ଭାଷେ ରେ । ୬ ।



(୧୫୬)

## ରାଗ—ହୁସେନ୍, ଆଦିତାଳ

ବରନାରି ! ଗୁମାନ ମନେ ଧର ନା ରେ । ପଦ ।

ଅମ୍ବୁଜ ନେତ୍ର ସାଞ୍ଜନ, ଅମ୍ବୁ ନ ବରଷ ଧନ, କମ୍ବୁକଣ୍ଠି ଜାମ୍ବୁନଦ ବରନା ରେ । ୧ । ନ ଖେଳ ମୋ କୋଳେ ରସେ, ସଖେଦେ ମାନସରୋଷେ, ନଖେ ଧରା ଚିରିବାର କର ନା ରେ । ୨ । କର ବଦନେ ପ୍ରକାଶ, ପରବ ଚନ୍ଦ୍ରିକା ହାସ, ଗରବ ଗିରିକି ମୋର ଚୂର ନା ରେ । ୩ । କୀରାଧିପଭାଷୀ ଆସ, ବିରାଜୁ କୁଞ୍ଜନିବାସ, ଧୀରା ମୋରେ ନିରାଶ ଆଚର ନା ରେ । ୪ । ଅନ୍ତର ରଖି ଭିଡ଼ିବି, ଯନ୍ତର ହୋଇ ଜଡ଼ିବି, ଦନ୍ତର ବ୍ରଣ ନୋହିବ ଡର ନା ରେ । ୫ । ଗାଳି ପଛେ ଦିଅ ପଦେ, ମାଳି ହୁଅ ତୁ ମୋ ହୃଦେ, କାଳିନ୍ଦୀରେ ପଡ଼ିବାର କର ନା ରେ । ୬ । ରାଧାକୃଷ୍ଣ ପଦ ଭାବି, ବିରଚିଲେ କବିରବି, ନରନାଥ ଜଗଦ୍ଦେବଙ୍କର ନାଁ ରେ । ୭ ।



(୧୫୭)

## ରାଗ—କାମ୍ୱୋଜୀ—ଏକତାଳି

ବର୍ଜି ନ ପାରେଁ ଘନଶ୍ୟାମ ପ୍ରୀତି ଗୋ । ଘୋଷା ।
ସରସିଜମୁଖୀ ଚାହୁଁ, ବରସିଜ ମୁଖେ କହୁ,
ମରଜି ହୁଅଇ, ଯାଉ ପଛେ ଜାତି ଗୋ । ୧ ।

ଗେଲେ ଚାଟୁ କହିବାର, ମଲେ ନ ଯିବ ପାଶୋର
ହେଲେ ହେଉ ଏ ବଜାରେ ଅପଖ୍ୟାତି ଗୋ । ୨ ।
ଗୁରୁଜନ ତରଜନା, କରୁଥିବେ କି ଶୋଚନା
ସରୁ ଦିନ କେବଳ ତା ରସେ ମାତି ଗୋ । ୩ ।
ନିନ୍ଦିଲେ ନିନ୍ଦିବେ ଜନେ, ଇନ୍ଦିବର ନେତ୍ରମୁନେ
ବିନ୍ଧିଦେଲେ ସମ୍ଭାଳି ପାରେ କି ଛାତି ଗୋ । ୪ ।
ପରଜନ ବୋଲେ ପଡ଼ି, ମରମରୁ ଦେଲେ ଛାଡ଼ି
ଦରଜିଆ କରିଦେବ ରତିପତି ଗୋ । ୫ ।
ପତି ଅଷ୍ଟଦୁର୍ଗ ଭଜେ, ନିତି ତାର ପଦରଜେ
ପତି ସିନା ଉଗ୍ରସେନା ନୃପତି ନାତି ଗୋ । ୬ ।



(୧୫୮)

## ରାଗ—ରଣବିଜେ

ବଳା ନା ସ୍ନେହ କଳାନାଗରେ, ସରିଯିବୁଟି ରଜନୀ ଜାଗରେ । ଘୋଷା ।
ଦେଖୁଛୁ ତ ଗର୍ବକୁଟିଳ ଚାଲି, ଭୁଜଙ୍ଗପୁଙ୍ଗବ ମୁଁ ସିନା ବୋଲି । ୧ ।
ତାହାର ଅତି ପ୍ରୀତି କଳାପୀରେ, ତହୁଁ ବହଇ ତା କଳାପ ଶିରେ । ୨ ।
ମୁରଲୀଧ୍ୱନି ଦମ୍ଭ ଗରଜନ, କେ ସହିବ ନୋହି ମୋହିତ ମନ । ୩ ।
କଲେ ତା ଭୋଗେ ଅଭିଳାଷ ଲବ, ଅଣ୍ଟିବ ନାହିଁଟି ବନପଲ୍ଲବ । ୪ ।
ଘାରି ହୋଇ ସରିଯିବୁ ସଦନେ, ବଂଶୀ ଦେବ ଯେବେ ବଂଶୀବଦନେ । ୫ ।
କବିମାର୍ତ୍ତଣ୍ଡ ରାୟଗୁରୁ କହେ, ଗଜ ଚରମେ କାହା ସ୍ନେହ ନୋହେ । ୬ ।



(୧୫୮) ଭୁଜଙ୍ଗପୁଙ୍ଗବ—ସର୍ପଶ୍ରେଷ୍ଠ ଓ ବିଟଶ୍ରେଷ୍ଠ, କଳାପୀ—ମୟୂର ଓ ବିରହିଣୀ, ଗଜଚରମ—ହାତୀପିଠି ।

## (୧୫୯)

## ରାଗ—ପୂରବୀ

ବଂଶୀଧାରୀ, ସରି ଯିବନି ଜୀବନେ କିଶୋରୀ ହେ । ଘୋଷା ।
ବିରହରେ ସଖୀ ହୋଇଛି କାତର, ସରୁ ସରିଲାଣି ସରୋଜ ପତର,
ଦେଖିଲି ସଖୀର କଣ୍ଠରେ ମାତର, ଜୀବନକୁ ଅଛି ଧରି ହେ । ୧ ।
ଲାଗୁ ନ ଥିଲା ମୋ କରକୁ ନାଟିକା, ସଜନୀମାନେ ଦେଖି ହେଲେ ତାଟକା,
ଧାଇଁ ଅଇଲି ନ ସହି ତାଙ୍କ ଡକା, ଥିବ କି ଯିବନି ସରି ହେ । ୨ ।
ନାସାଗ୍ରେ ତୂଳା ଦେଲେ ତତପର, ନ ଚଳିଲା ପରି ଦିଶିଲା ନାଗର,
ସଜନୀମାନେ ବସିଣ ସେହି ପୁର, ହା ରାବରେ ଥିଲେ ପୂରି ହେ । ୩ ।
ତୁମ୍ଭ ଭଳି ଯେବେ ନୋହିଲା ପାତର, ପଚାରୁଛି ଶ୍ୟାମ ନ ଦିଅ ଉତ୍ତର,
ଅନ୍ତର୍ଗତେ ଯେବେ ଥିଲାଟି ଅନ୍ତର, ଚିତ୍ତ କିପାଁ କଲ ଚୋରି ହେ । ୪ ।
ଲାଗିଥିଲେ ଜବାଧରୀର ସେବାରେ, ଆସ ହେ ରାଜୀବନେତ୍ର ଯିବା ବାରେ,
ହଟି ବସିଅଛି ପରାଣ ନେବାରେ, ପାପୀ କାମ ଯମ ସରି ହେ । ୫ ।
ଦିନବନ୍ଧୁ ଥାଉଁ ବିରହ-ତୁଷାର, ନାଶ କଲେ ପଦ୍ମିନୀକି ଏ ଅସାର,
ବୋଲେ କବିରବି ସାର କି ଅସାର, ହସିବେ ସିନା ଭଗାରି ହେ । ୬ ।



## (୧୬୦)

## ରାଗ—ତୋଡ଼ି—ଆଠତାଳି

ବାଜିବା-ଭୂଷା ପଦରାଜୀବ ଯୁଗଳରେ
ଆଜି ବରବରନା ଭରନା ରେ । ଘୋଷା ।
ଛଣା ମଧୁବଚନା ଜଣାଣ ବୋଲି ସିନା
ଜଣାଇ ଦେବେ ସେ ତୋହର ନାଁ ରେ

ଦଳା କସ୍ତୂରୀ ଘନେ ବୋଳାଅ ଅପଘନେ

ଧଳା-କଳାପ ମନେ ଧରନା ରେ । ୧ ।

ନିକୁଞ୍ଜକୁ ସଜନୀ ଆଜ ଯିବା ରଜନୀ

ମୁଁ ଆଗେ ଅଛି ପଛେ ଡରନା ରେ । ୨ ।

କହେ ଶ୍ରୀ ଜଗଦ୍ଦେବ ନିନ୍ଦା ସଫଳ ହେବ

ବ୍ରଜେ ତୋ ନାମେ ବଂଶୀଧର ନାଁ ରେ । ୩ ।



(୧୬୧)

## ରାଗ—ସାବେରୀ—ଏକତାଳି

ବାରବାର ତୁ ପରିଚାର-ଜନକୁ ଗୋରୀ ନ ମାର ସ୍ମର-ଶର ଧାରରେ ।।

ଭରମ ବଶେ ହେଲେ—ମୋର ଦୋଷ ଦିଶିଲେ

କରନ୍ତୁ ସିନା ପ୍ରତିକାର ରେ । ୧ ।

ଅମ୍ଭୋଜନେତ୍ରା ଜାଣ—ଦମ୍ଭୋଳିର କଷଣ,

ଯୋଗ୍ୟ କି କିଶଳୟ ଛାର ରେ । ୨ ।

ଅଗାଧ ନୋହୁ ମାନ—ଲଗା ମୋ ଉରେ ସ୍ତନ

ଅଗାର ନ ପୂରାଅ ଗାର ରେ । ୩ ।

ଘେନ ଧନ ମାନସେ—ଯେ ନଳିନୀକୁ ହସେ

ସେ ନୟନୁ କି ଅଶ୍ରୁଧାର ରେ । ୪ ।

ସଲିଳ ଗତି ଭଙ୍ଗୀ—ବଲ୍ଲୀ କମନୀୟାଙ୍ଗୀ

ମଲିଚି ମଦନ ବେଜାରରେ । ୫ ।

ଶ୍ରୀ ଜଗଦ୍ଦେବ ଭାଷେ—ଶ୍ୟାମ ବିନୟ ତୋଷେ

କିଶୋରୀ କଲେ ଅଙ୍ଗୀକାର ରେ । ୬ ।



## (୧୬୨)

## ରାଗ—ମୁଖାରୀ

ବାଳାବର ରେ, ଶଙ୍ଖକଣ୍ଠି ତୁ ସଙ୍ଗାଳି ମୋର ରେ । ନ ଥାଇ ତୁ କୋଳେ କି ସମ୍ଭାଳିବଳେ ଇନ୍ଦ୍ର ହେଲେ ସୁରେଶ୍ୱର ରେ । ଘୋଷା ।

ଚନ୍ଦ୍ରମା ଚନ୍ଦନ କଳକଣ୍ଠ ସ୍ୱନ ମିଳିନ୍ଦବୃନ୍ଦ ଝଙ୍କାର ରେ । ଏବେ ମୁଁ କଟାକ୍ଷ ଫିଙ୍ଗୁ ନାହିଁ ପକ୍ଷ ହେବାରୁ ତୁ ଅହଙ୍କାର ରେ । ୧ । ସୁରଭି ଋତୁ ତା ମରୁତ ମରୁ ତ ଜୀଉ ତ ସେ ମୋ କିଙ୍କର ରେ । ତରୁଣୀ ତୋତେ ମୋ ଧନ କଲେ ଯହୁଁ କରୁଣାନିଧି ଶଙ୍କର ରେ । ୨ । ଅସୁର ସୁରଙ୍କ ରମ୍ୟ ଦ୍ରବ୍ୟ ରଙ୍କ ପଣ ଶୁଣି ସିନ୍ଧୁ କୂର ରେ । ମୋ ପାଇଁ ତୁ ଲୁକି ଯତନେ ଥିଲୁ କି ଲାବଣ୍ୟ ପୀୟୂଷପୂର ରେ । ୩ । ସୁଲକ୍ଷଣ ବଧୂମାନଙ୍କର ମଧୁ ଥାଏ ଜାଣି ରଦାମ୍ବର ରେ । ପୂରିଅଛି ତୋର ପ୍ରପଦୁଁ ଚିକୁରପାଶ ଯାଏ ସୁଧାଝର ରେ । ୪ । ଫୁଲା ମନମଥ ଗୁଲାମରୁ ମୋର ଏଣିକି ଆଉ କି ଡର ରେ । ଝୁଲା ମଞ୍ଜୁଳ ତୋ ଲଲାମ ଛବି କି ସଲାମ ସହସ୍ରେ ଥର ରେ । ୫ । ଏପରି ପ୍ରଶଂସାମୃତ ସ୍ଫୁରୁ କଂସାହିତ ମୁଖଶଶଧର ରେ । ଅଷ୍ଟଦୁର୍ଗପତି ରଚିଲେ ଶ୍ରୀମତୀ ସଙ୍କୁଚିଲେ ଲଜ୍ଜାଭର ରେ । ୬ ।



## (୧୬୩)

## ରାଗ—କାନନଗୌଡ଼ା, ତାଳ—ତ୍ରିପୁଟା

ବିଧାତା କି ନ କରଇ ଗୋ,
ଏକେ ନବୀନ ପ୍ରୀତି, ତହିଁ ବିଦେଶେ ପତି
ଏ ତ ଘୋର ବିପତ୍ତି ଏଥି ମୋର କି ଗତି । ପଦ ।

ମନେ ଥିଲା ଯାହା ତାହା ନୋହିଲା ଗୋ, ଯାହା ନ ଥିଲା ତା ମନେ ହେଲା ଗୋ; ଏବେ ପିକବଚନ, ମନ୍ଦ ମଧୁ ପବନ, ମଧୁର ଭୃଙ୍ଗସ୍ୱନ ଦହୁଛନ୍ତି ଜୀବନ । ୧ ।

---

(୧୬୨) କଳକଣ୍ଠସ୍ୱନ—କୋକିଳଶବ୍ଦ, ମିଳିନ୍ଦବୃନ୍ଦ—ଭ୍ରମର ସମୂହ, ସୁରଭିଋତୁ—ବସନ୍ତକାଳ, କିଙ୍କର—ଚାକର, ପୀୟୂଷପୂର—ଅମୃତ ପ୍ରବାହ, ରଦାମ୍ବର—ଅଧର, କଂସାହିତ—ଶ୍ରୀକୃଷ୍ଣ, ଶଶଧର—ଚନ୍ଦ୍ର ।

ଆଲିଙ୍ଗନେ ମୋର ଅନ୍ତର 'ଡ଼ରେ ଗୋ, ପ୍ରିୟ ନ ରଖନ୍ତି ତରେ ହାର ଗୋ; ଏବେ ମଧୁରେ ପୂରି ରହିଲା ବନଗିରି, ଆହା ମୋତେ ପାସୋରି ରହିଲେ ମଧୁପୁରୀ । ୨ । ପ୍ରିୟ ଥିଲେ ଏ ମଧୁ ରଜନୀ ଗୋ, କେଉଁ ସୁଖ ନ ଦିଏ ସଜନି ଗୋ, କହି ମୋତେ ବଚନ କରନ୍ତେ ସେ ଗମନ ତାଙ୍କ ପଛେ ଦହନ, ନ ଗଲା ଏ ଜୀବନ । ୩ । ଯେବେ ହେଲେ ଏ ଜୀବନ ଯାଉ ରେ, ପ୍ରୀତିଭଙ୍ଗ କଳଙ୍କ ନ ଥାଉ ରେ, ଚିନ୍ତି ଏବେ ସେ ରୀତି, ଫାଟି ଯାଉଛି ଛାତି, ନ ସରେ ଦିବାରାତି ପ୍ରୀତି ହେଲା ବିପତ୍ତି । ୪ । ଏହା କରମରେ ମୋର ଥିଲା ଗୋ, ପ୍ରୀତି ଏତେ ସରିକି ତ ଗଲା ଗୋ, ଏସନେ ସଖୀ ଶୁଣି, ଦୁଃଖେ କହନ୍ତି ବାଣୀ, ଆସିବେ ବେନୁପାଣି, ହରିଚନ୍ଦନ ଭଣି । ୫ ।



(୧୬୪)

## ରାଗ—ସାବେରୀ, ଏକତାଳି

ବିଧାତା ରେ, କି କାଳେ କି ଦଣ୍ଡ ଦେଲୁ ଆଣି,

ମୁଁ ଯିବି ବୋଲି ବିଦେଶ ବନ୍ଧୁ ଛାମୁରୁ ନିଦେଶ ନେବାକୁ କହିବି କେହି ବାଣୀ । ଘୋଷା ।

ଯେବେ ମୁଁ ପ୍ରବଳ ଦୁଃଖ-ଭରରୁ ଶୁଖାଇ ମୁଖ, ମାନସ ଯୋଡ଼ିବି ଜାଣି ପାଣି, ପଲକେ ଜୀବନ ଧରି ପାରିବ କି ସେ କିଶୋରୀ-ସୀମନ୍ତମଣିଙ୍କ ସାମନ୍ତାଣୀ । ୧ । ପ୍ରଳୟ ସମୟ ଭୟ କମ୍ପାଇ ଦେବ ହୃଦୟ, କି ବଞ୍ଚିବ ତେଡ଼େ ମୃଦୁ ପ୍ରାଣୀ, ସେହିକ୍ଷଣି ଯିବ ଭାଜି, ରୋହିଣୀରମଣରାଜି, ରାଜୀବାକ୍ଷୀଜିଣା ମୁଖ ଠାଣି । ୨ । ଥରାଇ ଓଷ୍ଠପଲ୍ଲବ, ଚରଣ ନଖେ ଚିରିବ ଧରଣୀ ବରଷି ନେତ୍ରୁଁ ପାଣି, ମାନସ ସରରୁ ତାର, ସନ୍ତାପଧୀବର ବର, ଧଇର୍ଯ୍ୟ ଝଷକୁ ନେବ ଛାଣି । ୩ । ଆଚରୁ ଏହା ଯା ମନ୍ଦ, ଏଥିରୁ ବଡ଼ ପସନ୍ଦ, କରେ କରି କୃପାଣକୁ ଶାଣି, ନ ଥାଉ ଥାଉ ବା ଦୋଷ, ଲଭ ବା ଯଶ ଅଯଶ, ଦେବାର ଶିରକୁ ମୋର ହାଣି । ୪ । ପରାର୍ଦ୍ଧାଧିକ ମୋହର ଠାରୁ ତ ବଳେ ମୋହର, ପ୍ରାଣପ୍ରିୟା ବୋଲି ଜାଣି ଜାଣି, ଦେହେ ପ୍ରାଣ ବହି ରହି, ତା ଛାମୁ ଛାଡ଼ିବି କେହି, କହେ ଜଗଦ୍ଦେବ ଭୂପମଣି । ୫ ।



(୧୬୪) ଝଷ—ମାଛ, କୃପାଣ—ଖଡ୍ଗ, ମୋହର—ସ୍ୱର୍ଣ୍ଣମୁଦ୍ରା ।

## (୧୬୫)

## ରାଗ—ମୁଖାରୀ, ତାଳ—ଆଠତାଳ

ବିମ୍ବାଧରା ରେ, ବିଶ୍ୱମ୍ଭରା ଦେବୀ ଚମ୍ପାଝରା ରେ ।

ବନ୍ଧୁ ତୁ ମୋ ଛାଡି ବିଭୂଷଣ ମୋତିସୋରି କି ଦୁଃଖପାସୋରା ରେ । ପଦ ।

ବଳାରାତି ବଇଜୟନ୍ତ ପ୍ରାସାଦ ବିଳାସିନୀମାନେ ତାରା ରେ, ବେଶସୁରସିକା ତୁ ଶରଦରାକା-ରଜନୀ ଚନ୍ଦ୍ରମା ପରା ରେ । ୧ । ବିଲୋକି ଯା ମୋତେ ଉଠି ଲାଜସ୍ମିତେ ହେଉ ରମ୍ୟରଦାମ୍ବରା ରେ, ବିଶେଷରେ ପୂତ କରୁ କି ରେ ମିତ ମୋ ମାର୍ଗକୁ ସୁଧାଛରା ରେ । ୨ । ବିଧିରେ ଗିରିଜାରମଣଙ୍କ ପୂଜା କରି ଚମ୍ପାପରମ୍ପରାରେ, ବୋଲାଏ ମୁଁ ବରବରନାପ୍ରବର ତୋ କରପଇଠ ଧରା ରେ । ୩ । ବୀଣା-ବାଦନ-ପ୍ରବୀଣା ପଣରେ ତୋ ଗଣନା ପ୍ରଥମ ଗିରା ରେ, ବିଶ୍ୱବିମୋହନ ଗୁଣେ ତୁ ମୋ ଧନ ଧୀରାଙ୍କ ଲଲାମ ହୀରା ରେ । ୪ । ବୋଲେ ଜଗଦେବ ସଙ୍କୋଚନ୍ତେ ବାଳା କିଶୋରଙ୍କର ପଚରାରେ, ବିଜେ ହେଉ ବଲ୍ଲୀମନ୍ଦିରକୁ ବୋଲି ଆଳୀ କହେ ଆଖିଠରା ରେ । ୫ ।



## (୧୬୬)

## ରାଗ—ତୋଡ଼ି ପୁନ୍ନାଗ—ଝୁଲା

ବିଳାସିନୀ ଶିରଗଭା,

ବେଶ ବିନା ହେଲେ ୰ସୁଧାମଣ୍ଡଳେ ବିଞ୍ଚି ଦେଉଥାଉ ଶୋଭା । ଘୋଷା ।

ବୋଲନ୍ତି ଯେ ଇନ୍ଦୁ ଇନ୍ଦୁ,

ବଦନ ସୁଷମା ସମ ସେ କି ହେବ ସ୍ମିତେ ତା ବୃନ୍ଦକୁ ନିନ୍ଦୁ । ୧ ।

---

(୧୬୫) ବିଶ୍ୱମ୍ଭରା—ପୃଥିବୀ; ଚମ୍ପାଝରା—ଚମ୍ପାଫୁଲର ଗୁଚ୍ଛ; ମୋତିସୋରି—ମୋତିହାର; ବଳାରାତି—ଇନ୍ଦ୍ର; ବର—ଶ୍ରେଷ୍ଠ; ବଇଜୟନ୍ତ—ବୈଜୟନ୍ତ ବା ଇନ୍ଦ୍ରପୁରୀ; ରାକା—ପୂର୍ଣ୍ଣମୀ; ରମ୍ୟରଦାମ୍ବରା—ସୁନ୍ଦର ଅଧରବିଶିଷ୍ଟା; ସୁଧାଛରା—ଅମୃତ ସେଚନ; ଚମ୍ପାପରମ୍ପରାରେ—ଚମ୍ପାଫୁଲ ସମୂହ ଦ୍ୱାରା; କର ପଇଠ—ହାତ ଭାର ।

ଦେଶାଦ କି ନୀଳୋତ୍ପଳ
ବିଶ୍ବକେତୁ ବାଣାବଳିରୁ ବଳେ ତୋ ବକ୍ରେ ନୟନାନ୍ତ ଖେଳ । ୨ ।
ବାସବ-ମଣି କିରଣ,
ବାସହୀନ କେଶତୁଲ୍ୟକୁ କି ଛାର ପାମର ଚାମରଗଣ । ୩ ।
ବକ୍ଷୋଜ କୁମ୍ଭ ଯୁଗଳି,
ବଡ ବଡ଼ ଗିରି ବଡ଼ାଇକି ଚ୍ଛୁରି ପକାଉଅଛି ପ୍ରବଳି । ୪ ।
ବନ୍ଧୁକ-ବନ୍ଧୁ ଅଧରା
ବର୍ଣ୍ଣନ୍ତି ଉଦର ଟିକିଏ ହେଲେ ସେ ତୋହଠାରେ ନାହିଁ ପରା । ୫ ।
ବିସ୍ତରତର ନିତମ୍ବ
ବନିବ ଅବନୀ ଚାମୀକର ଯେବେ ହେବ ବାଣ ଅନୁବିମ୍ବ । ୬ ।
ବଡ଼ ମୃଦୁ ପାଣି, ପାଦ,
ବିଭାତର ଧଢ ଲାଲ କି ଲାଲଜ ବ୍ରଜତୁଲେ କରେ ବାଦ । ୭ ।
ବଲ୍ଲୀଗୃହ ସାମନ୍ତାଣୀ
ବାଣୀବକ୍ରଠାଣି ନ ପାରନ୍ତି ଜାଣି ତୋର ବାଣୀ ଠାକୁରାଣୀ । ୮ ।
ବସିଥିଲେ ମାତ୍ର କୋଳେ
ବ୍ରହ୍ମବଳପର ଦୁଇପଦ ମୋର ପଡ଼ିଥାଏ ପଦତଳେ । ୯ ।
ବ୍ରଜେନ୍ଦ୍ର ନନ୍ଦନ ଗେଲେ
ବ୍ରୀଡ଼ାରସେ ପଡ଼ି ରାଧା ଗଲେ ବୁଡ଼ି ନୃପ ଜଗଦେବ ବୋଲେ । ୧୦ ।

●

(୧୬୭)

**ରାଗ——ସାବେରୀ**

ବୁଡ଼ି ପ୍ରୀତିରେ, ହୁଡ଼ି ପଡ଼ିଗଲି ପରମାଦେ ଅତି । ପଦ ।

ମନ ଛନ ଛନ ନିରନ୍ତରେ, ନ ରହିଲା ଆନ ବିଷୟରେ, ପୂର୍ଣ୍ଣ ବେନି ନେତ୍ର ନୀରଭରେ, କ୍ଷୀଣ ହୋଇଗଲା ଅତି ତନୁ ନିତି ନିତି । ୧ । ନ ପାଇଲି ମୁଁ ସୁଖକୁ

ଲେଶେ, ଅନୁଭବ ଦୁଃଖ ତ ବିଶେଷେ, ନିମିଷକ ତ ହେଲା ବରଷେ ଶୁଣି ରହିଲିଣି ଲାଜେ ପୁଣି ଅପଖ୍ୟାତି । ୧ । ଦଗ୍ଧ ହେଲା କାମାନଳେ ଦେହ, ସହି ନୁହେ କି କରିବି କହ, ଦଣ୍ଡ ଦଣ୍ଡକେ ହେଉଛି ମୋହ, ରହୁ ନାହିଁ କେତେ ରୂପେ ବୋଧ କଲେ ଧୃତି । ୩। ହେଲି ଜୀବନରେ ମୁଁ ନିରାଶ, ଦେଲି ଭଗାରିଙ୍କ ମୁଖେ ହାସ, ନେଲି ଅକାରଣେ ଏ ବୟସ, ହାସ ବିଳାସ ବେଶରେ ରହୁ ନାହିଁ ମତି । ୪ । ବସୁଦୁର୍ଗ ଭୂପ ରସେ ଭଣି, ଏହା ବିଚାରେ ଗୋପ ରମଣୀ, ଆହା ବିହି କି ବିହିଲା ଆଣି, ଜାଣି ନ ପାରିଲି ବେନୁପାଣି କୂଟ ରୀତି । ୫ ।

●

(୧୬୮)

## ରାଗ—ଧନାଶ୍ରୀ

ଭଜ ଭଜ ମନ, 'ବ୍ରଜ'-ମହିଳା ମୋହନକୁ,
ଶକୁନ୍ତ-ସନ୍ତତି ମହୀ-ମହେନ୍ଦ୍ର ବାହନକୁ । ୦ ।
ବ୍ରଜପୁର ପୁରନ୍ଦର ମନ୍ଦିର ମଣ୍ଡନକୁ,
ଦଣ୍ଡଯୋଗ୍ୟ ସୁରଶତ୍ରୁ ମଣ୍ଡଳ ଖଣ୍ଡନକୁ । ୧ ।
ଯଦୁ ବଂଶ ଅବତଂସ ଅମୂଲ୍ୟ ରତନକୁ,
ଭୂମି-ଆଦି ଚତୁର୍ଦ୍ଦଶ ଲୋକ ନିକେତନକୁ । ୨ ।
'ହର' କରି ନ ପାରନ୍ତି ଯା'ର ଦରଶନକୁ,
ମହାପାପ ଧନଞ୍ଜୟ ପୁଞ୍ଜ ନବଘନକୁ । ୩ ।
ତାପଭୟ-ତୃଣଚୟ ପ୍ରଳୟ ଦହନକୁ,
ମୁନି-ଜନ ମନ ମୃଗ ତମାଳ ଗହନକୁ । ୪ ।
ସେହି ପ୍ରଭୁ କୃପାରୁଚି ଧରି ସ୍ୱର୍ଗେ ସ୍ଥାନକୁ
ରାମଚନ୍ଦ୍ର ଦେବ ବୋଲେ "ନ ଭଜ ରେ ! ଆନକୁ ।" । ୫ ।

●

(୧୬୮) ଶକୁନ୍ତ ସନ୍ତତି ମହୀମହେନ୍ଦ୍ର—ପକ୍ଷୀ ସନ୍ତାନ ଗରୁଡ଼ାସନ, ପୁରନ୍ଦରେ ମନ୍ଦିର—ଇନ୍ଦ୍ରଭୁବନ, ସୁରଶତ୍ରୁ—ଅସୁର, ମଣ୍ଡଳ—ସମୂହ, ଚତୁର୍ଦ୍ଦଶ ଲୋକ—ଚଉଦ ଭୁବନ, ମହାପାପ-ଧନଞ୍ଜୟ—ମହାପାପ ରୂପକ ଅଗ୍ନି, ଗହନ—ବଣ ।

(୧୬୯)

ମଜ ମନ ! 'ମଧୁ'ହାରୀରେ ମଞ୍ଜୁଳ କୁଞ୍ଜ-ବିହାରୀରେ,
ମଦନ-ମଦସାଳସା ଗୋପ-ଯୋଷା-ମୋହନ, ମୁରଲୀଧାରୀରେ । ୦ ।
ମୁନି-ମାନସ ସଞ୍ଚାରୀରେ, ମକର କୁଣ୍ଡଳ-ହାରୀରେ,
ମୟୂର ଚନ୍ଦ୍ରକ ଚାରୁ ଚୂଳେ, ଲୋକ ନିବହ-ଶୋକ ନିବାରୀରେ । ୧ ।
ମଲ୍ଲ, ଦିତି-ସୁତମାରୀରେ, ମହୀଭାର ଦୂରକାରୀରେ,
ମହେନ୍ଦ୍ର ରତନ ଶ୍ୟାମଳ ଶ୍ରୀଅଙ୍ଗେ, ମଖଶାଳାର ଭିକାରୀରେ । ୨ ।
ମିଥ୍ୟା ପ୍ରପଞ୍ଚ ଭଗାରିରେ, ମନୁଭବ ଅବତାରୀରେ,
ମହାପାପ ଯାକ ପ୍ରବଳ ଅନୀକ ଛଟାଛେଦ ତରବାରୀରେ । ୩ ।
ମନୀଷୀ ମତାନୁସାରୀରେ ମହିମ-ବାରଣ-ବାରିରେ,
ମହୀରାୟ 'ଛୋଟରାୟ'ର ମାନସ-ମୀନ ସମୁଦୟ-ବାରିରେ । ୪ ।



(୧୭୦)

## ରାଗ—ପୂରବୀ—ଆଠତାଳି

ମନ୍ଦ ବାରଣଗତି କିଶୋରୀବର,
ପଦବାରିଲେ ମଣ୍ଡ ଲତା-ମନ୍ଦିର, ଧନ ରେ । ୦ ।
ନୀଳ ତନୁରେ ଘନେ ଚପଳା ରଙ୍ଗେ
ମିଳି ତରୁଣୀମଣି ଶ୍ୟାମ ଶ୍ରୀଅଙ୍ଗେ । ୧ ।
ପଚା ରତନେ ମିଶା ପରିରମ୍ଭରେ
ନଟା ରସିକା, ପୃଥୁ କୁଚକୁମ୍ଭରେ । ୨ ।

---

(୧୬୯) ମଧୁହାରୀ—ମଧୁ ରାକ୍ଷସ ବିନାଶକାରୀ, ମଦନମଦସାଳସା—କାମନିଶାରେ ନିବିଷ୍ଟା, ମକର କୁଣ୍ଡଳହାରୀ—ମକର କୁଣ୍ଡଳ ଓ ହାର ପିନ୍ଧିଥିବା, ମୟୂରଚନ୍ଦ୍ରକ—ମୟୂରପୁଚ୍ଛ, ଲୋକନିବହ—ଲୋକସକଳ, ଦିତିସୁତମାରୀ—ଦୈତ୍ୟକୁଳ ବିନାଶକାରୀ, ମଖଶାଳା—ଯଜ୍ଞମଣ୍ଡପ, ମନୁଭବ—ବ୍ରହ୍ମାଙ୍କ ପୁତ୍ର, ପ୍ରବଳ ଅନୀକ—ବଳିଷ୍ଠ ଯୋଦ୍ଧାକୁଳ, ଛଟା ଛେଦ—ବଢ଼ିମାକୁ କାଟିବା, ମହିମବାରଣବାରି—ମହତ୍ତ୍ୱ ରୂପକ ହସ୍ତୀ ପକ୍ଷରେ ଜଳ, ମହୀରାୟ—ରାଜା ।

ଅରୁଣାଧରୁ ସୁଧା ପିଆଇ ଦିଅ
କରୁଣାନିଧି କିଛି ଦିଆଇ ଦିଅ । ୩ ।
ଯଉବନ ସମ୍ପତ୍ତି ତୁଲେ ଲାବଣ୍ୟ
ହେଉ ବସୁଧା ଲୋକେ ତୋହର ଧନ୍ୟ । ୪ ।
ଆକାର-ହୀନ ମାର ଜୟ ପତାକା
ରାକା-ରମଣମୁଖୀ ଛଡ଼ାଇ ପକା । ୫ ।
ଚାଲୁଁ କେଶରୀମଧ୍ୟା ଧୀରେ ଏ ଗିରେ
ବାଲୁକେଶ୍ୱର ନୃପ ବର୍ଣ୍ଣନା କରେ, ଧନ ରେ । ୬ ।



## (୧୭୧)

ମନ୍ଦରାଦ୍ରି ଉରଜା କୁନ୍ଦକଳି କରଜା,
ସୁନ୍ଦରୀ ରାଜା ଅନା ଫେରି ଅନା ରେ । ଘୋଷା ।
ସମ୍ପଦ ତୁହି ମୋର ଚମ୍ପକ ମଦଭର,
ସମ୍ପାକ ଅଙ୍ଗ ସଙ୍ଗ ଦେଉ କି ନା ରେ । ୧ ।
ଶଙ୍କର ପରତୀକ୍ଷ କଙ୍କ ପତ୍ରକୁ ଲକ୍ଷ୍ୟ
ପଙ୍କଜାକ୍ଷି ମୋ ବକ୍ଷ ହେବ କି ନା ରେ । ୨ ।
ବିମ୍ବବିଜୟୀ ରଦନାମ୍ବରରେ ସେ ମୋଦ
ଚୁମ୍ବକୁ ମୋ ଭରସା ଦେଉ କି ନା ରେ । ୩ ।
ମୋତେ ଅନ୍ତର କରୁ ଆରେ ହେମ ରମ୍ଭୋରୁ,
ଅନ୍ତରଙ୍ଗ କେ ଅଛି ତୋହ ବିନା ରେ । ୪ ।
ଭାଷଇ ଜଳନ୍ତର-ବାସବ କୃଷ୍ଣଗିର
ରାସମଣ୍ଡନା ଶୁଣି ତୋଷମନା ରେ । ୫ ।



(୧୭୨)

## ରାଗ—ଆହାର, ଆଠତାଳ

ମନ୍ଦ ମଳୟାନିଳ ବହିଲା, ଚନ୍ଦ୍ରବଦନା ଦୂରେ ରହିଲା । ପଦ ।

ଖାଇ ନୂଆ ଚୂତ ବକୁଳକୁଳ, କଳକଣ୍ଠ କରେ ଯାଃ କଳକଳ, କରି କଳକଳ ପ୍ରବାସୀ ବିକଳ କରିବ ବୋଲି ବୋଇଲା । ୧ । ଅଙ୍କଜଗତିରେ ପଙ୍କଜମୁଖୀ, ପହୁଡ଼ିଲେ ମୋର ହୁଏ ଯେ ସୁଖୀ, ମୃଦୁ ସରସିଜ କିଶଳୟ ଶେଯ ଧନକୁ ଯୋଗ୍ୟ ହୋଇଲା । ୨ । ଆହା ତାହା ସାହା ବାରେ ମୋତେ, ବନରୁ ଚମ୍ପକମାଳା କିଞ୍ଚିତେ, ମନମଥବଶେ ଏବେ ସେ ଅବଶେ ଦୁଃସହ ଦୁଃଖ ସହିଲା । ୩ । ପଲ୍ଲବକୁ ଦଣ୍ଡଧର ରସନା, ବଲ୍ଲୀରୁ କିଶୋରୀ ମଣିବ ସିନା, କିଂଶୁକସ୍ତବକ ଅନଳ ଯାବକ ତୁଲ୍ୟ ତ ଦେହ ଦହିଲା । ୪ । ଭଣିଲେ ଅଷ୍ଟଦୁର୍ଗ ପୁରୁହୁତ, ଦୁଃଖ ତେଜିଲେ ବ୍ରଜରାଜସୁତ, ମୃଦୁଳ କନ୍ଦଳୀ ବ୍ରଜେ ଦେଲେ ଦଳି ହେବାର ବିହି ବିହିଲା । ୫ ।



(୧୭୩)

## ରାଗ—ଭୈରବୀ—ଆଡ଼ତାଳି

ମନ୍ଦହାସେ ସନ୍ଦେହକୁ ରଖା ଏ ମାନସେ ରେ । ଘୋଷା ।

ମୁଁ କୁଳବଧୂ ମୋ ପାଶକୁ ନ ଆସ, ବୋଇଲେ ସେ ଯାହା ମୁଖେ ଦେଇ ବାସ
ଶରଦଚନ୍ଦ୍ରରୁ ନବ ସୁଧାରସ ଛାଣିଲା ପରି ଆଭାସେ ରେ । ୧ ।
ଉଛୁର ହେଲାଣି ବେଳ ହେ ମୋହନ, ନିରୋଧ ନକର ମୋହର ଗମନ
ବୋଲି ଲୀଳାବତୀ ଖେଳାଇ ନୟନ ଫେରି ଅନାଇବା ବେଶେ ରେ । ୨ ।
ଯାଅ ଚନ୍ଦ୍ରାବଳୀ ପାଶେ ଘନଶ୍ୟାମ, ବିନ୍ଧୁଛି ତୁମ୍ଭଙ୍କୁ ଯେବେ ଏବେ କାମ
ବୋଲି ସେ ଯେ ନବ ବନ୍ଧୁକ ବିଦ୍ରୁମ କୋକନଦ ରଦବାସେ ରେ । ୩ ।
ଯାଉଛି ହେ ହରି ତୁମ୍ଭର ପାଶରୁ, ନିବରତ ମୋର ସୁରତ ଆଶରୁ
ବୋଲିଣ ବାଣୀ ସଙ୍ଗତେ ଚାରୁତରୁ ଭଙ୍ଗେ ଅଙ୍ଗୀକାର ବଶେ ରେ । ୪ ।

(୧୭୨) କନ୍ଦଳୀ—ଭୂଇଁ କଦଳୀ, ପୁରୁହୁତ—ଇନ୍ଦ୍ର, ଦଣ୍ଡଧର—ଯମ, ଯାବକ—ଅଳତା ।

କହେ ଜଗଦ୍ଦେବ ଶ୍ୟାମକୁ ରାଜୀବ-ନୟନା ଦେଖାଇ ବିଚକ୍ଷଣ ଭାବ
କପଟ ପଟକୁ ଆଚ୍ଛାଦିବା ଭାବ ନିର୍ମଳ ସୁଧା ପରଶେ ରେ । ୫ ।

●

(୧୭୪)

## ରାଗ—ସୁରଟ

ମନ ଜମି ଯା, ସିନ୍ଧୁଜେମା ପ୍ରାଣଧନେ, ସିତପଙ୍କଜନୟନେ । ପଦ ।

ରମ୍ୟଯାନପଦକରେ, ମୁନି ହୃଦ ପଦକରେ । ୧ । ଶରଣାଗତ ବନ୍ଧୁରେ, କରୁଣା ସୁଧାସିନ୍ଧୁରେ । ୨ । ଦୀନଜନ ବିଭବରେ, ନୀଳାଦ୍ରି କଣ୍ଠୀରବରେ । ୩ । ଦଳିତ କଳୁଷପୁଞ୍ଜେ, ଇନ୍ଦ୍ରବନ୍ଦ୍ୟ ପଦକଞ୍ଜେ । ୪ । ନିଗମ କୁଞ୍ଜ କୁଞ୍ଜରେ, ଭବ ଭୟାଳୁ ପୁଞ୍ଜରେ । ୫ । ଛୋଟରାୟ ଦେବ କହେ, ଦୁଃଖତମର ବିଗ୍ରହେ । ୬ ।

●

(୧୭୫)

ମନ ବିନା, ତ ନବୀନା, ଆନ ଛଳେ ନ ଖେଳିଲା ରେ । ପଦ ।
ମଞ୍ଜୀର ମଞ୍ଜୁ ଶିଞ୍ଜିତ କାଳେ ଥରୁଥିଲା ଝରା କି ଚଞ୍ଚଳେ
ମନମଥ, ରଣରଥ, ପରି ସିନା ସେ ଚଳିଲା ରେ । ୧ ।
ଶ୍ରୁତିମୋତି ଝୁମ୍ପ କମ୍ପୁଥିଲା, ତାକୁ ନେତ୍ରାଞ୍ଚଳ ଝାମ୍ପୁଥିଲା
ଧରାଚକ୍ର, ମୋତେ ଶକ୍ର—ରାଜଧାନୀରୁ ବଳିଲା ରେ । ୨ ।
ମାନସରେ କି ସଙ୍କଳପିଲା, ହସି ଆଳିକି କି ଆଳପିଲା
ମୋ ଆଡ଼କୁ, ଚିଆଡ଼କୁ ପରି କଟାକ୍ଷ ଚାଳିଲା ରେ । ୩ ।

---

(୧୭୪) ଜମି ଯା—ଏକୀଭୂତ ହୋଇ ଯା, ସିତ—ଶୁକ୍ଳ, ରମ୍ୟଯାନପଦକର—ଚକ୍ରଧାରଣକାରୀ ।

(୧୭୫) ଚିଆଡ଼—ଶର, ବାଣ ।

ଜଗତି ଯୁବତୀ ଚମ୍ପାଗଭା, ଜନନୟନମଣ୍ଡନ ଶୋଭା
କିଶୋରୀ ସେ, କି ସୋରିଷେ, ହେଲେ ସ୍ମରଣ ଟଳିଲା ମା । ୪ ।
ଆଦରଶ ସେ ସୁନ୍ଦରୀଙ୍କର, ତା ଦରଶନ ଲାଭରୁ ମୋର
ମରମରେ, ମାର ମାରେ, ତହୁଁ ହୃଦୟ ଜଳିଲା ରେ । ୫ ।
ଜଗଦ୍ଦେବ ବୋଲେ ଶ୍ୟାମଚିତ୍ତ, ଜାଣି ଜଣାଇଲେ କେହି ମିତ
ତୁମ୍ଭ କାମ, ସ୍ମରଦ୍ରୁମ, କୃଷ୍ଣ ଅବଶ୍ୟ ଫଳିଲା ରେ । ୬ ।

•

(୧୭୬)

'ମନ' ବିନା ତ ନବୀନା ନ ଖେଳିଲା ଆନେ । ୦ ।
ଶିଶୁ ଶଫରୀ ଚଞ୍ଚଳ ସୁନୀଳ ଲୋଚନାଞ୍ଚଳ
ନଚାଇ କି ଅନାଏଁ ଗୁମାନେ ? । ୧ ।
କି ସୁନ୍ଦର ବର କମ୍ପା ତାଟକ ମୁକୁତା ଝୁମ୍ପା
ଅବତଂସ 'ଇନ୍ଦୀବର' ମାନେ । ୨ ।
ମୋ ଚାଟୁ ପାଟବେ ରସି କେଉଁ ଦିନୁଁ ସ୍ନେହେ ହସି
ତୋଷିଲା ଅଧର-'ମଧୁ' ପାନେ । ୩ ।
କରି ମୋ' ତୁଲେ ବିବାଦ କି ମାନବ କଣ୍ଠ-ନାଦ
ମିଶାଏ ମୁରଲୀ ମୃଦୁ ଗାନେ ? । ୪ ।
ଜରତୀର 'ନେତ୍ର' ତୁଲେ 'ବାସର' ବିଧ୍ୱଂସ ହେଲେ
ମିଳନ୍ତା ମୋ ଅଙ୍କେ ସବୁ ସ୍ଥାନେ । ୫ ।
ଅଷ୍ଟଦୁର୍ଗନାଥ ବୋଲେ ଏତେ ଚିନ୍ତି ଆରୋହିଲେ
'ହରି' 'ରାଧା'-ସଉଧ-ସୋପାନେ । ୬ ।

•

(୧୭୬) ମନ ବିନା ... ଆନେ—ଅନ୍ୟ ପ୍ରକାରେ ନୁହେଁ, କେବଳ ମନ ମଧ୍ୟରେ ଖେଳିଲା, ଶିଶୁ ଶଫରୀ—ସାନ କେରାଣ୍ଡି ମାଛ, ଅବତଂସ—କର୍ଣ୍ଣଭୂଷଣ, ଇନ୍ଦୀବର—ନୀଳକଇଁ, ମାନେ—ଶୋଭା ପାଏ, ଜରତୀ—ବୃଦ୍ଧା ଶାଶୁ ଅର୍ଥରେ, ବାସର ବିଧ୍ୱଂସ ହେଲେ—ଦିନ ଶେଷ ହୋଇ ରାତ୍ରି ଆସିଲେ ।

(୧୭୭)

ମନ ମଜ୍ଜି ଯା ରେ, ବ୍ରଜ ମହିଳାନାଥରେ ।
ପରଚଣ୍ଡ ଯମଦଣ୍ଡ ହେବ ମନା ଥରେ । ୦ ।

ପୀତ ପେଶଳ ବାସ ସୁସ୍ୱର ଗୀତ କେଳି କଳାପରେ
ଧୃତ ବଲ୍ଲବ ମଣ୍ଡଳୀ ପୁରୁ-ହୂତ ଲୋଚନ ପାପରେ
ନୂତନାର୍ଭକ କୌତୁକାହତ ପୂତନା ଭବ ତାପରେ
ହୃତ ଜଗତ୍ତ୍ରୟ ଭୟକୃତ ବିଳାପରେ । ୧ ।

ଅଙ୍ଗଣାନ୍ତର ରିଙ୍ଗଣେ ସ୍ମିତ ଲଙ୍ଗଳାୟୁଧ ସଙ୍ଗରେ
ସଙ୍ଗତୈବ୍ରଜ ବାଳକୈର୍ଭୁଜ ସଙ୍ଗତେ କୃତ ଭଙ୍ଗରେ
ଭଙ୍ଗି ଖେଳଦ ପାଙ୍ଗ ବର୍ଦ୍ଧିତ ରଙ୍ଗ ଯୋଷିଦନଙ୍ଗରେ
ମୁନି-ମନ-ସରସୀ-ବିଳାସ-ଚକ୍ରାଙ୍ଗରେ । ୨ ।

ହଂସଜାତଟ କେଳି ଲମ୍ପଟ ବଂଶଜାତ ନିନାଦରେ
ପଙ୍କଜ ପ୍ରତିମାନନେ କଳି ପଙ୍କଲୋପ କୃତାଦରେ
ଜମ୍ଭବୈରି ଶିରୋମଣି ପରି-ରମ୍ଭ ଶୋଚିତ ପାଦରେ
କଳିତ ସେବକ ଲୋକବର ପ୍ରସାଦରେ । ୩ ।

ମଞ୍ଜୁ ବଞ୍ଜୁଳ ବଲ୍ଲୀ ନଭୃତ କୁଞ୍ଜ ମନ୍ଦିର ପୁଞ୍ଜରେ
ଅଞ୍ଜନାଶିତ ଭାଷି ବିଦ୍ରୁମ ମଞ୍ଜରୀକୃତ ପୁଞ୍ଜରେ
କଞ୍ଜସମ୍ଭବ ଦେବ ମାନସ ଖଞ୍ଜରୀଟକ ପଞ୍ଜରେ
ରମାସ୍ତନ ଯୁଗ ସୁକୃତ ପୁଞ୍ଜରେ । ୪ ।

---

(୧୭୭) ପେଶଳ—ମନୋହର, କଳାପ—ସମୂହ, ବଲ୍ଲବ—ଗୋପାଳ, ପୁରୁହୂତ—ଇନ୍ଦ୍ର, ନୂତନାର୍ଭକ—ନୂଆ ଶିଶୁପୁତ୍ର, ଅଙ୍ଗଣନ୍ତର—ଘର ବାହାରେ, ରିଙ୍ଗଣେ—ଚଲାବୁଲାରେ, ଲଙ୍ଗଳାୟୁଧ—ବଳରାମ, ପାଙ୍ଗ—ମନ୍ତ୍ରଶକ୍ତି, ଯୋଷିତ୍ + ଅନଙ୍ଗରେ = ଯୋଷିଦନଙ୍ଗରେ—ରମଣୀ ପ୍ରେମରେ, ହଂସଜାତଟ—ଯମୁନାତଟ, ଜମ୍ଭବୈରି—ଇନ୍ଦ୍ର, ବଞ୍ଜୁଳ ବଲ୍ଲୀ—ବେତସ ଲତା, ସୂନ—ଫୁଲ, କୌଣପ—ଅସୁର, ଗାଧରେ—ଲୋଭରେ, ଦୀଧିତି—କିରଣ, ପିଚଣ୍ଡରେ—ପେଟରେ, ଦୃଗନ୍ତରେ—ଦୃଷ୍ଟିରେ ।

କୁନ୍ଦ ସୁନସ-ମାନ ମାଦକ ମନ୍ଦହାସ ଯୁତାଧରେ
ଦ୍ୱନ୍ଦ୍ୱ କଳ୍ପିତ ମନ୍ଦପାଦପ କନ୍ଦ କୌଣପ ବାଧରେ
ଚନ୍ଦନାଗୁରୁ ସାର ସୌରଭ ବୃନ୍ଦ ସଂପଦଗାଧରେ
ବଂଶବଟ ନିକଟ ନାଟୁଆ ବେଶ ଧରେ । ୫ ।

ଚଣ୍ଡ ଦୀଧିତି ମଣ୍ଡଳ ଦ୍ୟୁତି କୁଣ୍ଡଳାଂଚିତ ଗଣ୍ଡରେ
ମଣ୍ଡଳୀଭବ ଦଣ୍ଡ ପୁଷ୍ପକ ରୁଣ୍ଡ ତୁଲ୍ୟ ପିଚଣ୍ଡରେ
ହଣ୍ଡ ମାନସ ମୁଲ୍ଲସ ଭୁଜ ଦଣ୍ଡ ନିର୍ଜିତ ଶୁଣ୍ଡରେ
ଭୁବନ ମଣ୍ଡଳ ନୀଳରତନ ଖଣ୍ଡରେ । ୬ ।

ଅନ୍ତରଂଗତ ଭାବ ମନ୍ଥକ ସନ୍ତତାର୍ଦ୍ର ହୃଦନ୍ତରେ
ଅନ୍ତକୋଭବ ଭୀତି ବାରଣ ମନ୍ତ୍ରନାମ୍ନି ସୁଶାନ୍ତରେ
କ୍ଷାନ୍ତ ପାତକୀ ଯତ୍ର ସନ୍ତତି ମନ୍ତ କାନ୍ତ ଦୃଗନ୍ତରେ
ନୃପ ରାମଚନ୍ଦ୍ର ବୋଲେ ନିରନ୍ତରେ । ୭ ।



(୧୬୮)

## ରାଗ—ବେଗଡ଼ା—ତ୍ରିପଟା

ମନୋହାରୀ ହାରି ନ ଯିବା ପରି ଆଚର
ନ ଯିବାରୁ ବାରିଜାକ୍ଷ ହେ କରେଁ ଗୋଚର । ଘୋଷା ।
ମଧୁଗନ୍ଧ ଲୋଭୀ ଭ୍ରମରେ କୁସୁମ ଚୁମ୍ବିବା କ୍ରମରେ
ଚୁମ୍ବିବଟି ବିନା ଶ୍ରମରେ, କାମ ସମରେ । ୧ ।
ସୁକୁମାରୀ ସେ ନ ଡରିବ ଆଶ୍ୱାସୀ ଅଙ୍କରେ ଧରିବ
ସୁରତନୁ ଯେବେ ବରିବ, ଚେଳ ହରିବ । ୨ ।
ପଡ଼ି ଅସଙ୍ଗତି କଦନେ ଘାରି ଯେ ହେଉଛି ମଦନେ
ବ୍ରଣ ନୋହିବଟି ବଦନେ, ରଦଛଦନେ । ୩ ।
ଭୁଜାନ୍ତେ ସେ ଯେବେ ପଡ଼ିବ ମୃଦୁଳ ସ୍ୱରସେ ଜଡ଼ିବ
କୁସୁମହାର ନ ଛିଡ଼ିବ, ଯେବେ ଭିଡ଼ିବ । ୪ ।

ଜଗଦ୍ଦେବ ବୋଲେ ଗୀତରେ ଏପରି ଆଜି ଇଙ୍ଗିତରେ
ଶ୍ୟାମ ସଙ୍କୋଚିଲେ ଚିତ୍ତରେ, ଦରସ୍ମିତରେ । ୫ ।



(୧୭୯)

ମନୋହାରୀ ରେ
ନିୟମରେ ତ ମୁଁ ନାହିଁ ହାରି ରେ ।
ପରଖିବାରେ ତ ଜାଣିଛୁ, କାହିଁକି
ନ ରଖିବୁ ନଉକରିରେ । ୦ ।

ଜସିତ ଅଛି ମୁଁ ମତେ ତୋ ରୋମାଳୀ
ଅସିତ ଭୁଜଙ୍ଗୀ ଧରିରେ
ସମ୍ଭାଳିଛି ଦେହ ତୋ କୁଚ ସ୍ୱୟମ୍ଭୂ
ଶମ୍ଭୁ ଯୁଗ ଛୁଇଁ କରିରେ । ୧ ।

ଅଲଗା କରି ଚୁମ୍ବଇ ପାନ ବୋଳ
ନ ଲଗାଇ ଗୁଣ୍ଡ ଭରିରେ
ଏଟି ଏକ ଦିବ୍ୟ ବିଧି ଜାଣ ନବ୍ୟ
ପୁଟ ପୁରଟ ଗଉରୀରେ । ୨ ।

ମୋହ ପାଇଁ ଓଷା ନିୟମକୁ ଯୋଷା-
ରତନ ଥିଲୁ ଆଚରି ରେ
ଅଧର ମଧୁ ମୁଁ ପିଇଦେଲି ସିନା
ଅଧରମକୁ ନ ଡରି ରେ । ୩ ।

ସପରାଗ ତଳେ ନ ପହୁଡ଼ ମୋର
ଅପରାଧ ଥିଲା ପରିରେ
ହରଇ ପଛକେ ରଖ ସାଢ଼ିଲାଗି
କରାଇବାର ଚାକରିରେ । ୪ ।

(୧୭୯) ଅସିତ ଭୁଜଙ୍ଗୀ—କଳା ସର୍ପିଣୀ, ସ୍ୱୟମ୍ଭୂ—ଶିବ, ପୁରଟ—ସୁନା, ବସୁଦୁର୍ଗପତି—ଆଠଗଡ଼ ରାଜା, ବଲ୍ଲବ-କିଶୋରୀ—ଗୋପାଳୁଣୀ ।

ବସୁଦୁର୍ଗ ପତି ଭାଷେ ଏ ଭାରତୀ
ହସ ବଲ୍ଲବ କିଶୋରୀରେ
କହି ଭଲା ମନ ମୋହି ପାରେ ଧନ
ବୋଲେ ଗେଲେ ସ୍ନେହେ ପୂରିରେ । ୫ ।



## (୧୮୦)

## ରାଗ-କାମୋଦୀ, ତାଳ—ଏକତାଳୀ

ମନା ମୁଁ କରୁଥିଲି ଏହାକୁ ଗୋ; ଅନା ନା ବୋଲି ବନରାହାକୁ ଗୋ,
ଅନାଦର ମୋ ଗିରେ, କଲା ଯେ ଏବେ ସ୍ମରେ,
ଲଭିଲା ଦୁଃଖ ହେଲା କାହାକୁ ଗୋ । ଘୋଷା ।

କୁଞ୍ଜ ସଞ୍ଚାରୀ ଶ୍ୟାମ, ଦେବତା ପରାକ୍ରମ, ଜାଣେ ବଳଇ ରତିନାହାକୁ ଗୋ; ସାହସୁଁ ସିନା ସୁଖୀ, କି ଯୋଗେ ଦେଲା ଯୋଖି, ନବନୀତେ ତପତ ଲୁହାକୁ ଗୋ । ୧ । ଯେବେ ଏ ଚାନ୍ଦମୁହାଁ, ଶ୍ରବଣ ଦେଇ ନାହିଁ, ନାଟୁଆ ଚାଟୁ ବଂଶୀକୁହାକୁ ଗୋ; ତେଜି ହଁସୁଲିତୂଳି, କରନ୍ତା କି ସଙ୍ଖାଳି, ସଳିଳସିଞ୍ଚା ସର୍ବଂସହାକୁ ଗୋ । ୨ । ଗହବ ଚମ୍ପା ଧଣ୍ଡା, ନିର୍ମିତ ଗଜଶୁଣ୍ଡା-ଦଣ୍ଡକୁ ନିନ୍ଦି ଚାହିଁ ଯାହାକୁ ଗୋ; ବିଶେଷେ ବିସନାଳ ଦିଶିଲାଣି ପୃଥୁଳ, ଆଉ କାହିଁଛି ସେହି ବାହାକୁ ଗୋ । ୩ । କଳାକେଶରୀ ବାଳୀ, ଧୃତି-ଦନ୍ତୀକୁ ଦଳି, ଦେଲାଣି ଆସି ମନୋଗୁହାକୁ ଗୋ; ଥରକେ ଯେବେ ଲୋକ, ନୋହିଲା ଜାଗରୂକ, କହିବା କେତେ ତୁହା ତୁହାକୁ ଗୋ । ୪ । କବିମିହିର ରାୟ, ଗୁରୁ କହଇ ଭୟ, ଲାଗୁଛି ଦେଖି ଚିତ୍ତେ ଏହାକୁ ଗୋ; ଜାଣି ପାରିଲେ କଂସ, ପେଷି କରିବ ଧ୍ୱଂସ, ଜଟିଳାସୁତଘରବୁହାକୁ ଗୋ । ୫ ।



(୧୮୦) ରାହା—ପଥ, ହଂସୁଳି ତୂଳି—କୋମଳଶଯ୍ୟା, ସର୍ବଂସହା—ପୃଥିବୀ, ଗହବ—ଗହଳିଆ, ଗଜଶୁଣ୍ଡାଦଣ୍ଡ—ଚମ୍ପାଫୁଲରେ ନିର୍ମିତ ଗଜଶୁଣ୍ଡାକୃତି ପୁଷ୍ପରଚନା ବିଶେଷ, ବିସନାଳ—ମୃଣାଳ ।

(୧୮୧)

## ରାଗ—ବିଳାହୁରି—ଆଦିତାଳ

ମସାରକେଶା ସୁଦୃଶା ଗଲି, କଳାକୁଶଳା କୋମଳା ଅଛ ଚାହାଁ ରେ
ବଳା ଅବଳା ଭୂଷା ମୋ ସୁଖ ରାହାରେ । ଘୋଷା ।
ମାଖନତନୁ ଶ୍ରୁତି ପାଖରେ ଭାଷି—ଆଖରେ କପଟ କଲା ଖଳ ଆସି
ତା ଖଟକୁ କଲୁ ହୃଦୟ ବିଳାସୀ କହିବି କାହାରେ ? । ୧ ।
ଖଞ୍ଜନ ମଦଉର-ଭଞ୍ଜନ ନେତ୍ରୀ—କଞ୍ଜ ସମୁଦୟ ସୁବାସିତ ଗାତ୍ରୀ
ଅଞ୍ଜନ ନିଭଚିକୁରା ରସଗାତ୍ରୀ ଗଲାଟି ଜାହା ରେ । ୨ ।
ସାସସିତ ମଦନବାଣ କଟାକ୍ଷା—ଢାସ ନୁହଟି ଅବୁଝାଣ ସୁଦକ୍ଷା
ଆଣ କରିବି ପରମାଣ ପରୀକ୍ଷା ହିରଣ୍ୟଦେହା ରେ । ୩ ।
ଅମ୍ବର କଟି ସରୁ ଚୁମ୍ବନ ଦାନେ—ବିମ୍ବ ସଦୃଶ ଦଶନାମ୍ବର ପାନେ,
ଶମ୍ବର ଦଳନ କଳମ୍ବକୁ ଧାନେ ନ ମିଳୁ ସାହାରେ । ୪ ।
ନନ୍ଦ ତନୟ ପଟୁ ଚାଟ-ବିଳାସେ କୁନ୍ଦକୁ ରସନିଧି କଳିଲେ ସେ
ବନ୍ଦନ କରି ହରିଚନ୍ଦନ ଭାଷେ ଏ ରସେ ଏହା ରେ । ୫ ।



(୧୮୨)

## ରାଗ—ବଙ୍ଗଳାଶ୍ରୀ

ମାନ ଅବା ଲାଜ, ନ ଜାଣିଲି ଆଜ, ମୁଖଚନ୍ଦ୍ର ନୁଆଇଲୁ ।
ଆନ ପକାଇଲି ଅନେକ ମୋ ଗିର କାନପାଖକୁ ନ ନେଲୁ ରେ । ୧ ।
ଦୋଷ ଦେଖି ଯେବେ ନେତ୍ରେ ତେବେ ସିନା ରୋଷ ଅଙ୍ଗୀକାର କରି,
କି ସକାଶରୁଟି ମୋ ସକଳ ଭାଗ୍ୟ ମୋଷ ରଖିଲୁ ଚତୁରୀ ରେ । ୨ ।
ପିଆଇ ନ ଦେଲୁ ଅଧର, ଉରଜେ ଦିଆଇ ନ ଦେଲୁ ପାଣି,
ପିଆଇ ବାସ ମଦନମୁଖୁଁ ମୋତେ ଜୀଆଇବୁ କେହି ପୁଣି ରେ । ୩ ।
ଛକାଇ ସନ୍ଧିକି ସନ୍ଧିରେ ନିବିଡ଼େ ଜକାଇ ନ ଦେଲୁ ଦେହ,
ଧକାଇଲୁ ନାହିଁ କେଳିରୁ ପଛକୁ ପକାଇ ଦେଲୁ ମୋ ସ୍ନେହ ରେ । ୪ ।

ଗିରୀଶ-ପର-ଦଣ୍ଡରୁ ରେ କେତକୀଗୋରି ସରିଲି ମୁଁ ସିନା,
ଶିରୀଷସରି ଶରୀର ଉଡ଼ାଇଲୁ ପୁରୁଷଘାତିନୀବାନା ରେ । ୫ ।
ମଦନମୋହନ ବଚନେ ଶ୍ରୀମତୀ ସଦୟ ହାସ ରଚିଲେ,
ସେ ସମୟ ଛବି ଭାବି ଭାବି କବିରବି ରାୟଗୁରୁ ବୋଲେ ରେ । ୬ ।

•

## (୧୮୩)

ମାନସ ତୁ ଭଜ ରେ, ଆନ ସବୁ ତେଜ ରେ,
କୋଶଳେଶ ଲୋଚନ ଘନ ସାରକୁ,
ରୋଷହତ ଲଙ୍କେଶ ମୁଖରକୁ,
ତମାଳ ସଦୃଶ୍ୟକୁ, ଚନ୍ଦ୍ରନିଭାସ୍ୟକୁ,
ବାସର କର କୁଳ ଜଳଧି ସୁଧାଶଂକୁ,
ନବ ଚାମିକର କବଚାଭରଣକୁ
ବାରିଧି ଶୟନକୁ, ବାରିଜ ନୟନକୁ । ୦ ।
ଚଣ୍ଡ କୋଦଣ୍ଡ ଧରଙ୍କୁ, କ୍ରତୁ ରକ୍ଷା ଚତୁରଙ୍କୁ । ୧ ।
ତ୍ରିଜଗତୀ ମଣ୍ଡନଙ୍କୁ, ଅଜଗବ ଖଣ୍ଡନଙ୍କୁ । ୨ ।
ତ୍ରିଶିରା ପ୍ରାଣନାଶୀଙ୍କୁ, ଋଷି ରାଶୀ ଉଲ୍ଲାସୀଙ୍କୁ । ୩ ।
ସାତକୁମ୍ଭମୟ ରଙ୍କୁ, ଘାତ କୁଶଳ ଶରକୁ । ୪ ।
ମରଣାହତ କାଳକୁ, ଶରଣାଗତ ପାଳଙ୍କୁ । ୫ ।
ଅମୁଦ୍ର କୃପା କେତୁକୁ, ସମୁଦ୍ର ସେତୁ ହେତୁକୁ । ୬ ।
ଅନୁଜ ସ୍ନେହଶୀଳକୁ, ଦନୁଜ ମର୍ମ କିଳଙ୍କୁ । ୭ ।
କବିରବି ରାୟଗୁରୁକୁ, ଅବିରତେ କୃତୋଦ୍ଧାରକୁ । ୮ ।

•

(୧୮୩) ଚନ୍ଦ୍ରନିଭାସ୍ୟକୁ—ଚନ୍ଦ୍ର ପରି ମୁଖକୁ, ଚାମିକର—ସୁନା, କ୍ରତୁ—ଯଜ୍ଞ, ଅଜଗବ—ଶିବଧନୁ, ସାତକୁମ୍ଭମୟରଙ୍କୁ—ସୁନାମୃଗକୁ, ଅମୁଦ୍ର—ପ୍ରକାଶ୍ୟ ।

(୧୮୪)

## ରାଗ—ତୋଡ଼ି ପରଜ—ଏକତାଳି

ମାନସ ପ୍ରପଞ୍ଚରୁ ବଞ୍ଚି ପଳା,
ଜାଣୁ ତ ଏ ଜୀବ-ଗତି ଅତି ରଙ୍ଗ ତରଙ୍ଗପରି ଚଞ୍ଚଳା ରେ । ଘୋଷା ।
କଳିନ୍ଦଜାକୂଳେ ଜଙ୍ଗମ ତମାଳେ ମୋ ନେତ୍ର ଖଞ୍ଜନ ଖେଳା
ସ୍ମର ସ୍ମର ବ୍ରଜବାମା ଜନମନ-ମୋହନ କନକ ଚେଳା ରେ । ୧ ।
ଲବ୍‌ଧ ମୋହ ଘୋର ଅକୂପାର ପାର ପରମ ସୁନ୍ଦର ବେଳା
ଦେଖ ତ ଶରଣ କଂସାରି ଚରଣ ସଂସାର ତାରଣ ଭେଳା ରେ । ୨ ।
ଲାଲ ପାଲିକି ମଶାଲ ଶାଲ ହର ସଗୋତ୍ର ପୁତ୍ର ଅବଳା
ବିଷୟ ବାସନା ବିଷମ ଏହି ତ ତହିଁ ତୁ ମତି ନ ବଳା ରେ । ୩ ।
କରି ହରିନାମ ସ୍ତୋମ ମତି ଦାମ ମନୋହର ମୋର ଗଳା
ପରିହରି କୂଟ ଧରି ଧୀରେ କାଟ ଏ ମୋହ ଲୌହ ଶୃଙ୍ଖଳାରେ । ୪ ।
ଆନନ୍ଦେ ଗୋବିନ୍ଦପଦ-ଅରବିନ୍ଦ ଭୃତ୍ୟଜନେ କର ମେଳା
କହେ ରାମଚନ୍ଦ୍ର ଛୋଟରାୟ ଦେବ ନ କରଟି କେବେ ହେଳା ରେ । ୫ ।



(୧୮୫)

## ରାଗ—କେଦାର, ତାଳ—ସରିମାନ୍

ମିତ ଆମ୍ଭ ଶ୍ୟାମବନ୍ଧୁ ଚାଲି କି ରସେ ଗୋ । ଘୋଷା ।

ଅଖଣ୍ଡ ଶୋଭାମଞ୍ଜୁଳ, ଶିଖଣ୍ଡମଣ୍ଡନ ଚୂଳ, ଖଞ୍ଜେ କି ଜନନେତ୍ରକୁ ପରଶେ ଗୋ । ୧ । ରସପୀୟୂଷଲହରୀ, ପରି ତା ବାଣୀ ନିର୍ଝରୀ ଜଗତୀ ମନୋମଞ୍ଜରୀ କୀର ସେ ଗୋ । ୨ । ନୋହେ କୁସୁମ କମାଣ, ତା ନେତ୍ର ବାରିଜ କୋଣ, ମାର ମାରଗଣଗଣ ବରଷେ ଗୋ । ୩ । ତା ମୋହନ ସ୍ମିତ ଶିରୀ, ତୁଲେ ସୁର ଚନ୍ଦ ପରି, କୁନ୍ଦର ସୁନ୍ଦରପଣ କରଷେ ଗୋ । ୪ । ଶରଦ ରଜନୀ ଈଶ ମୋହେ ତା ମୁଖ ନିବାସ,

(୧୮୫) କମାଣ—ଧନୁ, ମାରଗଣ—ମାର୍ଗଣ ବା ଶର, ତରସ—ଉଦ୍‌ବେଗ ।

ସେ ତ ଲଭୁଅଛି ନାଶ ଦରଶେ ଗୋ । ୫ । କୃପାମୟ ଅବତାର, ରମା ଇଷ୍ଟ ଦେବତାର, ହେଲେ ଦିନ ନେବ ତାର ସ୍ୱରଶେ ଗୋ । ୬ । ଲାଭ ହେଉ ନୋହୁ ଅବା, ଅବସର ପୁହାଇବା, ତା ପଦତଳ ଚୁମ୍ବିବା ତରସେ ଗୋ । ୭ । କହଇ କବିତପନ, ଧାଉଥିଲେ ତା ଲପନ ସ୍ୱର୍ଗସୁଖେ ତ ମୋ ମନ ନ ରସେ ଗୋ । ୮ ।



(୧୮୬)

## ରାଗ—ତୋଡ଼ିପରଜ—ଏକତାଳି

ମିତ, ଏ କିଏ ସେ ଲୋ ମୋ ମନ ରହିଲା ଲାଖି
ଭାଲୁଣୀ ପରାୟେ କାଳିଆ ମୁହଁକୁ ଚାଲୁଣୀ ପରାୟେ ଆଖି । ଘୋଷା ।
ପଣ୍ଡା-ରନ୍ଧା ଭାତ ତିଉଣକୁ ଯେବେ ଆଖିରେ ଦିଅଇ ଦେଖି
ଭଣ୍ଡାରି ବହନ୍ତି ବ୍ରାହ୍ମଣେ ନେଇଣ ତାହାକୁ ଦିଅନ୍ତି ଚାଖି । ୧ ।
ନିରତେ ପୁରତେ ବସିଛି ଯାହାର ଦ୍ୱିଗୁଣ ଶାଗୁଣପକ୍ଷୀ
ଲୋକମାନେ ତାର ପାଦେ ଖଟିଥାନ୍ତି କେଉଁ ଗୁଣ ସତେ ଦେଖି । ୨ ।
ଭେଣ୍ଡା ଭେଣ୍ଡା ଦୁଇ ଭାଇଙ୍କି ବସାଇ ସିଂହାସନ ଦୁଇପାଖି
ଜଗତଯାକର ମନ ମୋହୁଅଛି ବନହଳଦିଆ ମୁଖୀ । ୩ ।
କବିରବି ବୋଲେ ଇହ ପରଲୋକ କରିପାରନ୍ତି ସେ ସୁଖୀ
ନାମ ଜପୁଥିଲେ ପାପ ପୁଣି ଯଶ କରଣ ନ ପାରେ ଲେଖି । ୪ ।



(୧୮୭)

## ରାଗ—କୁମ୍ଭକାମୋଦୀ—ଏକତାଳି

ମିତ, ଚିତ୍ତ ଭିତରେ ମୋହର ଗୋ
ଭୀତିରେ ହୋଇଛି ପୂରା ।
ଫିଟାଇ ସାଜି ମୋ କବରୀକି ହରି
ଚିଟା ହେଉଥିବେ ପରା ।। ଘୋଷା ।।

ବାସନ୍ତୀକ ବେଶ ରଚିବା ଆଗ୍ରହେ
ଆସନ୍ତି ଶ୍ୟାମଳ ଯୁବା,
ନାରୀ ତ ମୁଁ ଭାରୀ ନୋହେ ନ ନିବାରି
ଶ୍ରୀହସ୍ତ ଘେନେ ଯା ସେବା ।। ୧ ।।
ବଳୟ ପହଞ୍ଚି ଗନ୍ଧଭୂଷା କାଞ୍ଚି
ହେଲେହେଁ ନୋହିଲା ବୋଲେ
ଅଳିକରି ଯାହା ଢଳିପଡ଼େ ଉର—
ସ୍ଥଳୀ ଅପସରେ ଗେଲେ ।। ୨ ।।
ଅଙ୍ଗଦ ମଧ୍ୟରେ ବସି ନାହିଁ ବୋଲି
ରଙ୍ଗ ଦଳ ଶୋଣମଣି,
ବାସ ହାସ ତା ନ ଦେଇଛି ଛିଣ୍ଡାଇ
ଯାହା ସଜଡ଼ାଏ ପୁଣି ।। ୩ ।।
ଗର୍ଭକେ ଦେଖି ମୋ ଅର୍ଭକେ ହସିବେ
ବୋଲି ରଚୁ ମିଛ କାନ୍ଦ
ତହିଁ ଅଖାତର ନ କରି ଖାତର
ହୁଅନ୍ତି ଯା ନୀଳଚାନ୍ଦ ।। ୪ ।।
ଅଷ୍ଟଦୁର୍ଗେଶ୍ୱର ଜାଣି ମୋ ଦୋଷର
ନାହିଁ ଗଣନା ପ୍ରମାଣ
କ୍ଷମା ନ କରିବେ ତମାଳ ଶ୍ୟାମ କି
ବୋଲି ଘାଣ୍ଟିହୁଏ ପ୍ରାଣ ।। ୫ ।।

●

(୧୮୮)

## ରାଗ—ତୋଡ଼ିପରଜ—ଝୁଲା

ମିତ, ତୁନି ହୋ ଲୋ ତୁ ତ ଅନୁଭବୀ ନୋହୁ,
[illegible]ବାତ ସୁଖ, ତା ବିଚ୍ଛେଦ ଦୁଃଖ ଯେ ଜାଣେ ସେ ଆସି କହୁ ।। ଘୋଷା ।।

ଅନୁବରତେ ତ ପରଶ ହେଲାଣି ବନଜ ପଲ୍ଲବାବଳି
ଘନଶ୍ୟାମ ନାମ ବିନା ଦୁଃଖାନଳେ ମନ ଯାଉଅଛି ଜଳି ।। ୧ ।।
ଲାକ୍ଷା ତ ସାକ୍ଷାତ ଲାଗିଛି ଭାଲରେ ତା ଖ୍ୟାତ କରିବ କେତେ
ବିଷ ମକରନ୍ଦ ହେଲାଣି ବୋଲି ଯା କିସ ସମଝାଉ ମୋତେ ।। ୨ ।।
ଚୋକୀଟାମାନଙ୍କ ଆଗ ସରିକି ମୁଁ ଟେକି ପାରୁ ନାହିଁ ମଥା
ଟେକି ଦେଲେ ଭୁଲି ଫୁଲିଯିବି ବୋଲି ଏ କି ସଟାବଟା କଥା ।। ୩ ।।
ଝଲି ଝାଲି କେତେ ମରମରେ ମୋର ବଳିଆଇ କହୁଥାଉ
ଖୁଆ-ଦଣ୍ଡଖିଆ ଖରାପ କ୍ଷୀରରେ ସୁଆଦ ଥାଏ କି ଆଉ ।। ୪ ।।
ଝଡ଼ିପଡ଼ି ସଢ଼ି ଯାଉଛନ୍ତି କେତେ କୁସୁମ ଚୟନେ ଚାହିଁ
ଫୁଲ ପାନରଙ୍କ ମନଟା ମୁଁ ତାଙ୍କ ଆଡ଼କୁ ଅନାଉଁ ନାହିଁ ।। ୫ ।।
ନୀଳାଚଳ ଚୂଳ ପ୍ରସାଦରୁ ହେଲେ ଟେକିଥିଲେ ତିନିଥାଳି
କବିରବି ରାୟଗୁରୁଙ୍କ ପରି କେ ପ୍ରୀତି ନ ଜାଣନ୍ତି ପାଳି ।। ୬ ।।



(୧୮୯)

## ରାଗ—କୁମ୍ଭକାମୋଦୀ

ମିତ, ହିତ ଯେତେ ତୁ କହିଲୁ ଗୋ, ଚିତ୍ତ ତା ନ ମଣେ ସୁଖ,
ପରମ ପଦବୀ ଲଭିଲେହେଁ ଯେବେ କରମରେ ଅଛି ଦୁଃଖ । ଘୋଷା ।
ମୋହନ ମନ୍ତର ଜାଣୁ ତୁ ଆହୁରି ମୋ ମନ କରିବୁ ବଶ,
ସରି ତ ଗଲା ହରିଣାକ୍ଷୀବୃନ୍ଦରୁ ଶ୍ୟାମ ସଉଭାଗୀ ଯଶ । ୧ ।
ବିଷରେ ପୀୟୂଷ ବୁଦ୍ଧି କରିବାର ଫଳ ହେଲା ଏତେ ସରି,
ପିଶାଚ-ସ୍ବର ବଦନେ ପଡ଼ି ହେଲି ନିଶା-ଚକ୍ରବାକୀ ପରି । ୨ ।
ଝଲି ମୋର ମରଜିରେ ପୁଣି କେତେ ବଳିଆଇ କହୁଥାଉ,
ଖୁଆଦଣ୍ଡଛୁଆଁ ଖରାପ କ୍ଷୀରରେ ସୁଆଦ ଥାଏ କି ଆଉ । ୩ ।

ଅପ୍ରିୟ ହେଲେ ତାହାରି ବୋଲାଇବା ଆଶା ସିନା ପରିତ୍ରାଣ
କହିବାରୁ ଏହା ସହି ରହିଥାଏ ନିକି ସେହି ଦ୍ରୋହୀ ପ୍ରାଣ । ୪ ।
କହେ ଅଷ୍ଟଦୁର୍ଗ ମହୀଦମ୍ଭ ସ୍ୱର୍ଗ ମହେନ୍ଦ୍ର ଶ୍ରୀଜଗଦ୍ଦେବ
ଯିବା ଶମନପୁରକୁ ଯେବେ ନାକନିବାସରୁ କିସ ହେବ । ୫ ।



(୧୯୦)

## ତୋଡ଼ି ଜଙ୍ଗଲା—ଆଡ଼ତାଳି

ମିଶିଲୁ ଯେ ଆଜ ନିଶିରେ ଶଶୀମୁଖି !
କି ଶିଖିଲୁ ଶ୍ୟାମଠାରୁ ।। ଘୋଷା ।।
ହୋଇ ମଦମୟ ଛାଡ଼ିଲୁ କି ଭୟ ଗୁରୁଜନ ଗ-ରହାରୁ,
ଗାଢ଼ ଆଲିଙ୍ଗନ ଜାଣିଲୁ କି ଧନ ରାଜି ତେଜି ବରହାରୁ ।। ୧ ।।
ମୁରଲୀ ନିରତେ ଡାକିଲା କି ତୋତେ ଦ୍ରବାଏ ଯେ ଗିଳାଦାରୁ
ତେତେ ବିମର୍ଦ୍ଦନ ହେଲା କି କୁଦିନ ପ୍ରବଳତର ବିକାରୁ ।। ୨ ।।
ଦଳିବାକୁ ମାର ବୀର ଅହଙ୍କାରେ ସେ ପାରନ୍ତି କି ତୁ ପାରୁ,
ଲୁଚା ଅନାଦର ଛଦ ଦନ୍ତକ୍ଷତ ଦିଶୁଅଛି ସିନା ଗାରୁ ।। ୩ ।।
ଦେବୀ ଦମ୍ଭ ରୋଷେ ଚାହିଁଲେ ସହାସେ ଆଳୀ ଏପରି ପଚାରୁଁ
ଏକାଳେ ଛ ଦୁଇ ଦୁର୍ଗନାଥ ଯାଇ ତାଙ୍କ ଚରଣେ ଜୁହାରୁ ।। ୪ ।।



(୧୯୧)

## ରାଗ—ତୋଡ଼ି—ଆଠତାଳି

ମୁନିମୋହନା, ତୁନି ହୁଅ ନା । ଘୋଷା ।
ଆରେ ବିଧୁବଦନେ ବୃଥା ନିରସ ମନେ
ବାସେ ବନ୍ଦି-ବିଧାନେ ବହନା ରେ । ୧ ।

ଗୁରୁଜନ-ଜରତି ଜ-ରେ-ଜନରୀତି
ଚାରୁତୁଲ୍ୟ ଭାରତୀ ସହନା ରେ । ୨ ।
ମରକତ ମାଧୁରୀ ତନୁ କନକ ଗୋରୀ
ମିଳାଇବା ସୁନାରୀ ମୋହନା ରେ । ୩ ।
ଅତସୀ ଅଭିରାମ ନବନୀରଦ ଶ୍ୟାମ
ବନ୍ଧୁଆରେ ତୁ ବାମ ବିହନା ରେ । ୪ ।
ବରଜି ତା' କୁଞ୍ଜକୁ ଅରଜିଣ ମୁଞ୍ଜକୁ
ଚିନ୍ତାରସ ପୁଞ୍ଜକୁ ଦହନା ରେ । ୫ ।
ପ୍ରୀତିବଲ୍ଲରୀ କନ୍ଦା ଟାଳିବା କରି ଫନ୍ଦା
ନିରସବତୀ ନିନ୍ଦା କହନା ରେ । ୬ ।
କହେ ଶ୍ରୀ ଜଗଦ୍ଦେବ କଞ୍ଜନୟନେ ଲବ
କରୁଣାର ଅଭାବ ବହନା ରେ । ୭ ।

•

(୧୯୨)

## ରାଗ—ମୁଖାରୀ, ତାଳ—ଆଠତାଳି

ମୁଁ ହାରିଲି ହେଉ ଏତିକି ଗୋ, ଜୁହାରିଲି ଶ୍ୟାମ ପ୍ରୀତିକି ଗୋ; ଗୁହାରି କରିବି କାହା ଆଗେ କେତେ ଲୁହାରେ ବନାଇ ଛାତିକି ଗୋ । ଘୋଷା ।

ଦେହକୁ ସମରପି ପ୍ରାଣ ତୁଲେ, ସ୍ନେହକୁ ସମ୍ପାଦିବା ସିନା ଭଲେ, ଏ ହଟହଟାରେ କେ ମରିବ କରି ସଙ୍ଗାଳି ବିଶ୍ୱାସଘାତୀକି ଗୋ । ୧ । ନିୟମ କରି ନ ପାଳଇ ଯାହା, କି ଅମଳଖିଆ କରଇ ତାହା, ଦିଅ ମୋତେ ଗାଳି ପଛେ ମୁଁ ନ ପାରେ ପୁରୁଷ ପୁରୁଷ ଜାତିକି ଗୋ । ୨ । ଦୁଆଗଲା ଶାଳୀବନେ କି ରଙ୍ଗ, ସୁଆଗ ନ ଥିବା ଜନେ କି ସଙ୍ଗ, ମୁଁ ଆଗ ବିବେକ ହୁଡ଼ି ହୃଦୟକୁ ସମର୍ପିଲି କାମ-କାତିକି ଗୋ । ୩ ।

(୧୯୨) ପରୁଷ—ନିଷ୍ଠୁର; ଦୁଆଗଲା—କଟା ହୋଇଥିବା; ସୁଆଗ—ସ୍ନେହ; ଅମଳ—ନିଶା; କାମକାତି—କନ୍ଦର୍ପର ଅସ୍ତ୍ର; ଅତପଃଶୀଳା—ଯେ ତପସ୍ୟା କରି ନାହିଁ, ଅପୁଣ୍ୟବତୀ; ତପତି—ଉତ୍ତାପ ।

ହଟିଲା ରାଧାର ଏ କଞ୍ଜନେତ୍ର, ଘଟିଲା ମୋ କର୍ମେ ଏ ଦଶା ମାତ୍ର, ଜଟିଳା ଜାଣିଲେ ସଂସାରୁ ସରିବି ପାଇ ଘୋର ଅପଖ୍ୟାତିକି ଗୋ । ୪ । ଶତ ପଦରେ ପଦେ ନାହିଁ ସତ, ସତ ପରି ହୋଇବାରୁ ପ୍ରତୀତ, ଅତପଃଶୀଳା ମୁଁ ଅନୁଭବ କଲି ଏ ତପତି ଉତପତ୍ତିକି ଗୋ । ୫ । ଶିଖଣ୍ଡଚୂଳିଆର ଗୁଣ ତୁଲେ, ଏ ଖଣ୍ଡ ଅଛି ବୋଲି ଜାଣିଥିଲେ, ଅଖଣ୍ଡ ବିଶ୍ୱାସ କରନ୍ତି କି ଭଲେ ଜଗଦ୍ଦେବ ଏ ଭାରତୀକି ଗୋ । ୬ ।



## (୧୯୩)

## ରାଗ—କୋଳାହଳ—ଆଦିତାଳ

ମୋତେ ଯା ମହିଲା ମୋହିଲା
ସତେ କି ମୋ ଭାଗ୍ୟ ନୋହିଲା । ଘୋଷା ।
ତା ସରସ ଅନାଉଣି ସାରସ ହେବ କି ଲାଭଣି ।। ୧ ।।
ଦେଖି ନ ଥିଲି, ଥିଲା ଶୁଣା ଲକୁଚ ତ କୁଚର ଊଣା ।। ୨ ।।
ଆଳିକି ଭାଳି ଯା ଭାଷିଲା ମୋ କଥା ପରି ଆଭାସିଲା ।। ୩ ।।
ସତେ କି ସେ ଅଧର ବିମ୍ବ ଭରତି କରିବ ମୋ ଚୁମ୍ବ ।। ୪ ।।
ମଧୁରାଧରା ସେ ପ୍ରବୀଣା ଅଧୁରା ନ କରୁ ମୋ କିଣା ।। ୫ ।।
ଏହି ଭାବନା ବନମାଳୀ ହୃଦୟସ୍ଥଳେ କଲେ ମାଳି ।। ୬ ।।
ନୟନେ ରହିଲା ଶୋଭା ସେ ବସୁଦୁର୍ଗର ନୃପ ଭାଷେ ।। ୭ ।।



## (୧୯୪)

## ରାଗ—ତୋଡ଼ିପରଜ—ଝୁଲା

ମୋ ଧନଟି, ଉସାଇ ଦିଅଇ ସୁଖେ
ରସାଇ ଜାଣିଲେ ଭୁଜେ ଭିଡ଼ି ଅଙ୍କେ ବସାଇ ଚୁମ୍ବି ଶ୍ରୀମୁଖେ ।। ଘୋଷା ।।
ସୁଞ୍ଜାବେଳ ନୀଳ-କଞ୍ଜ ପରି କରି ମନ୍ଦାକ୍ଷ ମଞ୍ଜୁଳ ଆଖି
ବରଜେ ଜମାଇ ଭିଡ଼ି ମୋ ଅଧର ଅଳପ ଚାଖି ।। ୧ ।।

ନଖ-ରେଖରେ ଖେଳାନ୍ତେ ମୁଁ ପୁଲକ ମାଂସଳ ମୃଦୁଳ ଅଙ୍ଗେ
ରଖ ରଖ ଇଷି ସରିଲିଟି ଭାଷି ଚମକୁ ଥାଇ କି ରଙ୍ଗେ ।। ୨ ।।
ଭାଷା ଭଙ୍ଗୀ ରଙ୍ଗେ ଇତର ପ୍ରସଙ୍ଗେ ପ୍ରକାଶଇ କେତେ ଠାଣି
ଆଶ ବାସ ବେଶ ଦରଶନରେ ମୋ ଆଶ ପ୍ରବଳିବା ଜାଣି ।। ୩ ।।
ମୋ ପରି ହେବୁ କି ବୋଲି ମୁଁ ତ୍ରିଲୋକୀ ଗର୍ଭେ ଯାହା ତୁଳା ନାହିଁ
ମୋତେ ଛାନିଗୋରୀ କେହି ତୁମ୍ଭପରି ହେବି ବୋଲି ରସି ଚାହିଁ ।। ୪ ।।
ପଦ-ଭୂଷା ମୂକ ହୋଇ, ବାବଦୂକ କଳାପ ହୋଇବା ବେଳେ
ବୁଡ଼ାଯାଏ ମୋର ବୁଡ଼ାଯାଏ ପରଂ-ବ୍ରହ୍ମାନନ୍ଦ ସୁଖ-ଜଳେ ।। ୫ ।।
ଶିଖଣ୍ଡ ଶେଖର ଭାବି ବୃଷକରମାଳି ଜେମାଙ୍କ ଚାତୁରୀ
ହୋଇବାର ହୃଷ୍ଟ ବିରଚିଲେ ଅଷ୍ଟଦୁର୍ଗନାଥ ଚିତ୍ତେ ଧରି ।। ୬ ।।



## (୧୯୫)

## ରାଗ—ତୋଡ଼ି ପରଜ

ମୋ ବନ୍ଧୁଟି ବାଇ ହୋଇଯାଏ ସିନା,
ପାଇଯାଏ ଯେବେ ମୋର ଆଚରଣ ପ୍ରଶଂସା ଫୁଲବାସନା । ଘୋଷା ।

ନ ରୁଚିଲା ପରି ବ୍ୟାଜେ କରେ ମୁଖ ସୁରୁଚିର ଶରଦିନ୍ଦୁ, ଚୁମ୍ବିଲେ ଶ୍ରବଣସୀମାକୁ ମୋ ଗୁଣ ପୀୟୂଷରୁ ଏକ ବିନ୍ଦୁ । ୧ । ବଳୟାବଳି ଅଙ୍ଗଦ ମଣିଚୁଡ଼ି ଚିହ୍ନ ବୁଡ଼ି ରହେ ଦେହେ, ଏପରି ସେ ପରିଣତ ବିମ୍ବାଧରା ସଖୀକି ଭିଡ଼ଇ ସ୍ନେହେ । ୨ । ଜାଣି ବାର ବାର ବାରଣେନ୍ଦ୍ରକର ଗରବ ଦଳିବା ଊରୁ, ମୃଦୁ ଇଷି ଇଷି ଉଚାରେ ପ୍ରେୟସୀ ତରୁଣ ସୁଗୁଣଗୁରୁ । ୩ । ମୋହର ପ୍ରବେଶ ପ୍ରତୀତିରୁ ବେଶ-ରସିକା ପଡ଼େ ଚମକି, ସେ ସମୟେ ରାକା ପ୍ରଦୋଷ ଜଳଧି ହେବ ତା ହୃଦସମ କି । ୪ । ଚିବୁକେ ଚନ୍ଦନ ଶ୍ରବଣେ ଅଞ୍ଜନ କଣ୍ଠେ କରେ ଲାକ୍ଷା ବୋଳ, ବ୍ୟସ୍ତ କରି କ୍ରମ ଭାସଇ ବିଭ୍ରମ-ସିନ୍ଧୁ କଲ୍ଲୋଳେ

(୧୯୫) ଆଚରଣପ୍ରଶଂସାଫୁଲବାସନା—ବ୍ୟବହାର ଓ ପ୍ରଶଂସାରୂପ ଫୁଲ ବାସନା, ବ୍ୟାଜେ—ଛଳରେ, ମୁଖ-ସୁରୁଚିର-ଶରଦିନ୍ଦୁ—ମୁଖରୂପ ସୁନ୍ଦର ଶରଚ୍ଚନ୍ଦ୍ର । ପରିଣତବିମ୍ବାଧରା—ପାଚିଲା କଇଁଣିକାକୁଡ଼ି ପରି ଅଧର ଯାହାର, ବାରବାର—ଥରକୁ ଥର, ବାରଣେ[illegible]

କେବଳ । ୫ । ବୋଲେ ଅଷ୍ଟଦୁର୍ଗଧରା ଦମ୍ଭ ସ୍ୱର୍ଗପୁର ପୁରନ୍ଦର ଗୀତେ, କିଶୋରୀଙ୍କ ପ୍ରେମ ଘେନି ଘନଶ୍ୟାମ ପ୍ରମୁଦିତ ହେଲେ ଚିତ୍ତେ । ୬ ।

●

## (୧୯୬)

ମୋ ଭାଲେ ଥିଲା କି ଲିହି,
କଳି ମଲ୍ଲୀ ରୋପଣ, ତହୁଁ ଜନ୍ମିଲା ତୃଣ,
ଚିନ୍ତା ରତନଗଣ ହେଲା ପାଷାଣ କଣ । ଘୋଷା ।
ଚୂତ ଫଳିଲା ନାଗରଙ୍ଗ, କଟିମେଖଳା ହେଲା ଭୁଜଙ୍ଗ,
ତଟିନୀ ତଟେ ବାସ, କରି ନ ଗଲା ଶୋଷ,
ପିଇବାର ପୀୟୂଷ-ପାନରେ ହେଲା ବିଷ । ୧ ।
ମଧୁଶାକର ହେଲା ନିମ୍ବ, ରବି ପରି ହେଲା ଚନ୍ଦ୍ରବିମ୍ବ,
ଧାତାର କି ବିବେକ, ଚଞ୍ଚୁଜିତ କିଂଶୁକ,
ପଢ଼ା ପଣ୍ଡିତ ଶୁକ, ହେଲା ମୋ ଦ୍ରୋଣ କାକ । ୨ ।
ମନ୍ଦାକିନୀରେ ନିମଜ୍ଜିଲି, ନିନ୍ଦା କାହିଁକି ଅରଜିଲି,
ଚଢ଼ିଲି ମେରୁଚୂଳ, ଭୋଗ ହେଲା ଅତଳ
ବ୍ରହ୍ମଜାତି ପାତଳ, ହୀରା ହେଲା ପିତଳ । ୩ ।
ଆଉ ନ ରଖିବି ନବୀନା, ଜୀବନ ଯିବ ତାଙ୍କ ବିନା,
ଏ ଚିନ୍ତାର ମନ୍ଦିର, ହେଲେ ଶ୍ୟାମସୁନ୍ଦର
ବନ୍ଦଇ ଜଳନ୍ତର ଅବନୀ ପୁରନ୍ଦର । ୪ ।

●

---

ଉରୁ—ହାତୀ ଶୁଣ୍ଡଠାରୁ ମନୋହର ଜଙ୍ଘ । ରାକାପ୍ରଦୋଷ ଜଳଧି—ପୂର୍ଣ୍ଣିମା ସନ୍ଧ୍ୟାର ସମୁଦ୍ର ।

(୧୯୬) ଲିହିବା—ଲେଖିବା, ନାଗରଙ୍ଗ—ନାରଙ୍ଗ ନାମକ ଅମ୍ଳଫଳ ବିଶେଷ, ମେଖଳା—ଅଣ୍ଟାସୂତା, ଭୂଜଙ୍ଗ—ସାପ, ପୀୟୂଷ—ଅମୃତ, ଚଞ୍ଚୁଜିତ କିଂଶୁକ—(ଶୁକର ବିନ୍ଧ୍ୱେକ୍ଷଣ୍ଡ), ଯାହାର ଥଣ୍ଟ ପଳାସ ଫୁଲଠାରୁ ଅଧିକ ଲାଲ; ଦ୍ରୋଣକାକ—ଡାମରାକୁଆ, [illegible] ଗଙ୍ଗା ।

## (୧୯୭)

ମୋହିଲା ରେ ବରମହିଳା ରେ । ପଦ ।

ନୂଆ ମୃଦୁ ଜଳପ,-ବତୀରସକଳପ,-ବଲ୍ଲୀ କି ସଂକଳପ, କରି ଚାହିଁ ଅଳପ । ୧ । କରି ଭୂରୁ ନର୍ତ୍ତନ, ନ ଚାହୁଁ ସଖୀଜନ, ସ୍ନେହମୟ ମୋହନ ହାସେ ଧନ ମୋ ଧନ । ୨ । ପୂରୁବେ ମହାବ୍ରତେ, ଶିବା ଶିବଙ୍କୁ କେତେ, ସେବିଥିଲି କି ସତେ, ସ୍ନେହେ ବାଳା ମତେ । ୩ । କେବଳ ମୋ ବିବେକ, ହରି ନାହିଁ ସେ ପିକ-ବାଣୀର କଉତୁକ, ଜଗତୀ ଗୋଟିଯାକ । ୪ । ସତେ, କି ବନ୍ଧୁ ସଞ୍ଜ-ବେଳେ ମଣ୍ଡିବ କୁଞ୍ଜ, ବନୀ ଅବନୀ କଞ୍ଜ-ନେତ୍ରାର ଛବିପୁଞ୍ଜ । ୫ । ଅଷ୍ଟଦୁର୍ଗେଶ ଭାଷେ, କିଶୋରଙ୍କ ଶୋଭା ସେ, କିଶୋରୀ ଦେଖି ତୋଷେ ଭାବିଲେ ସଙ୍ଗ ଆଶେ । ୬ ।



## (୧୯୮)

### ରାଗ—ନାଟକୁରଙ୍ଗ

ଯାଉଛି ମା, ଆଉ ନ ପାରେ ତାକୁ ଟାକି । ପଦ ।

ସଂବେଶ ବେଶ ଭୋଜନେ, ଲୋଡ଼ି ମୋତେ ଗୁରୁଜନେ, ଚଳି ହେଉଥିବେ ପରା ଡାକି । ୧ । ନିତି ଧରି ଦୂତୀ କର, ଯତନେ ଅରଜିବାର, ଚୋରି ପୀରତିରେ ଏ କି ଚାକି । ୨ । ହଜାର ହଜାର ଯାର, ପ୍ରଣୟବତୀ ବଜାର, ତହୁଁ କେହି ରଖିଥିବ ଢାକି । ୩ । ବ୍ରଜୁ ହୁଅନ୍ତେ ବାହାର, ତା ପଦପଙ୍କଜ କା'ର, କୁଚାଚଳେ ରହିଥିବ ଠାକି । ୪ । ତୁଚ୍ଛାକୁ ତ ଶ୍ୟାମ ପ୍ରୀତି-ଲମ୍ପଟୀ ବୋଲି ମୋ ଖ୍ୟାତି, ନ ରହିବ ପୁଣି ସିନା ବାକି । ୫ । ଅବଶ୍ୟ ତ ଜୀବ ଯିବ, ନେଲେ ନେବ ମନୋଭବ, ରଖିଲେ ରଖିବେ ଶ୍ରୀ ପିନାକୀ । ୬ । ଜଗଦ୍ଦେବ ଭାଷା ଶୁଣି, ଆଳି କହିଲେ ମୁଁ ଆଣି, ଏବେ ଭେଟାଇଲେ କି ହେଲା କି । ୭ ।



---

(୧୯୮) ସଂବେଶ—ନିଦ୍ରା, ଚାକି—ଚତୁରତା, ଶ୍ରୀପିନାକୀ—ମହାଦେ[illegible]

(୧୯୯)

## ରାଗ—ତୋଡ଼ିବଙ୍ଗଳା, ଆଡ଼ତାଳି

ଯା ଯା ମୋ ପାଶରୁ

ସେ ଶ୍ୟାମନାଗର ନଟ ନାମ ନ ଧର ମୋ ଆଗେ ଲୋ । ଘୋଷା ।

ଘେନି ତୋ ଉପଦେଶ ହେବାରୁ ବୁଦ୍ଧିନାଶ ପଡ଼ିଥିଲି ଥରେ ତା ଭାଗେ ଲୋ । ୧ । ତ୍ରିଜଗତୀରେ ଗତି ନ ଥିବାର ଯୁବତୀ ବୁଡ଼ିବ ତାର ଅନୁରାଗେ ଲୋ । ୨ । ସଞ୍ଜବେଳରୁ କଞ୍ଜ ଫୁଟିବାଯାଏ କୁଞ୍ଜଗୃହେ ତୋ ତୁଲେ ପରା ଲାଗେ ଲୋ । ୩ । ସେ ଧୂର୍ତ୍ତ ପୀତପଟ ପେଟେ ଯେତେ କପଟ ବିଷ ନ ଥିବ ତେତେ ନାଗେ ଲୋ । ୪ । ମୋ ପରି ଲାଜହୀନ ନୋହିବା ନାରୀଜନ ଗର ଗିଳନ୍ତା ସେହି ଲାଗେ ଲୋ । ୫ । ଅଷ୍ଟଦୁର୍ଗଭୂପତି ବୋଲେ ହେବ ଭରତି କେ ବୃଥା ଅକୀରତି ଦାଗେ ଲୋ । ୬ ।

●

(୨୦୦)

## ରାଗ—କେଦାର, ତାଳ—ଏକତାଳ

ଯେବେ ନବଘନ ଶ୍ୟାମ ବଂଶୀସ୍ୱନ ନିଶୀଥରେ ଥରେ ଶୁଣାଯିବ ।

ସଖି ସୁଖେ ବନେ ମୋଦମୟ ମନେ ବିହରିବୁ ତୋର ଊଣା ଯିବ । ଘୋଷା ।

ପ୍ରସରିବ ମତ୍ତ ମିଳିନ୍ଦ ସଙ୍ଗୀତ କଳପିକରୁତ ମଳୟମରୁତ; ଚରାଚର ଲୋକ ଧରାରେ ପୁଲକ ପରାନନ୍ଦ ବୀଜ ବୁଣାଯିବ । ୧ । କଳିନ୍ଦଜାକୂଳ ବିପିନ ବକୁଳ ମଞ୍ଜୁଳମଞ୍ଜରୀ ନିଳୟ ବଳୟେ ଗୋ, ସୁରଭି ସୁଷମ ବିବିଧ କୁସୁମମୟ ଚନ୍ଦ୍ରାତପ ଟଣାଯିବ । ୨ । ଆମ୍ଭେମାନେ ଘେରିଥିବୁଁ ପରିଚାରୀ ଜନ ପରି ଚାରିଦିଗରେ ତୋହରି, ଲକୁଟକୁଟାରେ ନୃପ ଉପଚାରେ ଏ ପଦ ପହଣ୍ଡ ମଣାଯିବ । ୩ । ହେବ ସ୍ମରବଳଜନ୍ୟ ମହୋତ୍କଳ, ଶୃଙ୍ଗାର ମଙ୍ଗଳମୟ ବନସ୍ଥଳ, କଳାବତୀ କୁଳବ୍ରତତରୁମୂଳ ଜଟାତଟୀଠାରୁ

(୧୯୯) ତ୍ରିଜଗତି—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; କଞ୍ଜଫୁଟିବାଯାଏ—ସକାଳଯାଏ, ନାଗେ—ଗୋଖର ସର୍ପରେ ।

(୨୦୦) ଊଣା—ଅଳ୍ପତା, ହୀନତା; ମିଳିନ୍ଦ—ଭ୍ରମର, କଳପିକରୁତ—କୋଇଲିର ମଧୁର ଗୀତ, କଳିନ୍ଦଜାକୂଳ ... ନିଳୟବଳୟେ—ଯମୁନା କୂଳବର୍ତ୍ତୀ ବକୁଳବୃକ୍ଷମାନଙ୍କର ମନୋହର ଲତାସମୂହରେ, ସୁରଭି ସୁଷମା—ସୌରଭପୂର୍ଣ୍ଣ, ଚନ୍ଦ୍ରାତପ—ଚାନ୍ଦୁଆ, ପରିଚାରୀ ଜନପରି—ଭୃତ୍ୟ [illegible]—ଛେଉଟ, ଜଟା—ବୃକ୍ଷର ଅବରୋହ, ତଟୀ—ତୀର, ମୂଳ;

ହଣାଯିବ । ୪ । କିଶୋର ଅରୁଣ ପଙ୍କଜ ଚରଣ ସ୍ତନେ ଲଗାଇବା ତା ତୁଳେ ଗାଇବା, ବ୍ରଜବରାରୋହା ସମୁଦୟ ମହାଧନ୍ୟ ମୂର୍ଦ୍ଧନ୍ୟରେ ଗଣାଯିବା । ୫ । ଅଷ୍ଟଦୁର୍ଗପତି କହେ ଗୋ ସୁଦତି ଦୁଇ ହୃଦସ୍ନେହ ପୀୟୂଷପ୍ରବାହ, ବଇଶାଖ ରାକାରଜନୀରେ ଏକା ଛଣା ଗଲା ପରି ଜଣାଯିବ । ୬ ।



## (୨୦୧)

## ରାଗ—ସୁରଠ—ଏକତାଳି ।

ରତାନ୍ତରେ ନତାନ୍ତରେ ହେଲେ କେଡ଼େ ଅଳି ଲୋଳ ଗୋ । ଘୋଷା ।
ଶିଥିଳ କବରୀ ବାନ୍ଧୁ ବାନ୍ଧୁ, ତରତରେ ଶାଢ଼ୀ ପିନ୍ଧୁ ପିନ୍ଧୁ
କୋଟି ରାଣ ବୋଲି ପ୍ରାଣବନ୍ଧୁ ଭିଡ଼ି କଲେ କୋଳ ଗୋ । ୧ ।
'ଇସି ମଲି, ରଖ' ବୋଲୁ ବୋଲୁ, କର ସରସିଜେ ପେଲୁ ପେଲୁ
ନଖ-ଶିଖ-ଖେଳ ସୁଖ କରାଇଲେ ପରବଳ ଗୋ । ୨ ।
ତ୍ରିବିଧ ବିନୟ କରୁ କରୁ, ଚରଣ ପଲ୍ଲବ ଧରୁ ଧରୁ
ଦନ୍ତକ୍ଷତ ପରିଚିତ କରିଦେଲେ ଗଣ୍ଡସ୍ଥଳ ଗୋ । ୩ ।
ନ ପାରଇ ବୋଲି କହୁ କହୁ, ମୋ ଦେହ ବଞ୍ଚାଇ ରହୁ ରହୁ
କାମ ଅନଳରେ ଶ୍ୟାମ ହେଲେ ଅତି ଅସମ୍ଭାଳ ଗୋ । ୪ ।
କହେ ଅଷ୍ଟଦୁର୍ଗ ଧରା ନାହା, ଶୁଣି ସଖି ଜଣାଇଲେ ଏହା
ପ୍ରିୟସହି, ତୋର ସେହି ମନୋରଥ ଲତା ଫଳ ଗୋ । ୫ ।



## (୨୦୨)

## ରାଗ—ରେଗୁପ୍ତ—ରୂପକ ତାଳ

ରତି ମୂରତି ଶ୍ୟାମ ପ୍ରୀତିରେ ନ ଜାଣୁ ପରା ପରମାଣୁମଧ୍ୟା ରେ । ଘୋଷା ।
ଖଣ୍ଡେ ଦୂରକୁ ଦିଶେ ମଞ୍ଜୁଳ, ଗଣ୍ଡେ କାହାର ତାମ୍ବୁଳ ବୋଳ
ମଣ୍ଡେ କି ଚିହ୍ନ ଦନ୍ତ ଦୁକୂଳ, ଦଣ୍ଡେ ବସି ଦେଲୁ କି ରସ ପରିଚିତି ରେ । ୧ ।

---

ବ୍ରଜବରାରୋହା ... ଗଣାଯିବ—ବ୍ରଜନାରୀମଣ୍ଡଳୀ ମଧ୍ୟରେ ଅତି ଧନ୍ୟ ବୋଲି ପ୍ରଥମେ ପରିଗଣିତ ହେବା । ସୁଦତି—(ସଂବୋଧନ) ସୁନ୍ଦର ଦନ୍ତପଂକ୍ତି ଯାହାର, ରାକା—ପୂର୍ଣ୍ଣିମ

ନୀବି ନିବିଡ଼ତା ନାହିଁ କିଛି, ଲିଭି ଅଛି ମୃଗମଦ ମାଛି
ଢାବିତେଶ ତୋହର ଶ୍ରୀ-ବକ୍ଷି କି ବିହିଲେ ବଦ ମଦ-ଦ୍ୱିରଦ ଗତିରେ । ୨ ।
ମୁଁ ଟିକିଏ ହେଲେ ଶୁଣିଥାଏଁ, ଲୁଟିଗଲା କି ଲାଜ ଥୋକାଏ
ଲୁଟିବାରେ ମାର ପୁରଯାଏ ଫୁଟି ଝଡ଼ିଗଲା କି ସେଫାଳିକା ତତି ରେ । ୩ ।
ସୁଖ ଲୋଭରୁ ବନ୍ଧୁକାଧରା, ରଖ ବୋଲି ନାହୁଁ ଥରେ ପରା
ନଖ କ୍ଷତେ ହେଜା ତନୁପୂରା ଅଖଣ୍ଡିତ କଲ କି କାମିତ ସନ୍ତତି ରେ । ୪ ।
କି ସାହସ କଲୁ ପତେ ଆଳି, ନିଶାଯାକ ଜାଗରେ ପ୍ରବଳି
କଷା ଦିଶୁଛି ନେତ୍ର ଯୁଗଳ ହସା ଲାଗୁଛି ଆଜ ଅନାଇଁ ତୋ ଦ୍ୟୁତି ରେ । ୫ ।
ତୁଳି ତଳପ ବରଜି ଫୁଲ ଧୂଳି ସମାଜ କି ଶେଯ କଲ
ଗୁଳି ବାଜିଲା ପରି ତ ଗଲ ଲୁଳି ଯାଇଛି ଅଳକମୋତି ସୀମନ୍ତିରେ । ୬ ।
ଆସେଚନକ ଆଜ ଏ ଶୀରି, ବାସେ ଉତ୍ପଳ ମିଶା କସ୍ତୁରୀ
ନାଶେ ମାନସ ବ୍ୟଥା ବଲ୍ଲରୀ ଭାଷେ ବସୁଦୁର୍ଗ ଧରାବଳୟ ପତି ରେ । ୭ ।



## (୨୦୩)

## ରାଗ—ପୂରବୀ—ଆଡ଼ତାଳି

ରସଦାର ସଦା ନଉକରିକି ମୁଁ କରିଅଛି ମୂଳ ଫନ୍ଦା ।
ଭୂଷଣାରୁ ଶୁଣାଯିବ ସିନା ଏବେ ଧରଣୀ ମଣ୍ଡଳେ ନିନ୍ଦା । ୧ ।
ରସି ବରଷିବ କରୁଣା ପୀୟୂଷ ବେଳକୁ ବେଳ ସେ ବୋଲି
ଭରସାଭର ସାର କରି ମୁଁ ମୋଦ ଅମଳରେ ଝୁଲୁଥିଲି । ୨ ।
ମାନସେ ମାନ ଶେଷ ରଖି ନିରତେ ତେଡ଼େ ପଣ୍ଡିତା ଛଇଳା
ଦିନ ବଦନ ବରୋବର ହୋଇଲା ବୃଥା କାଳ ବଞ୍ଚାଇଲା । ୩ ।
ତରଳତର ଲକ୍ଷଣ ଯୋଗ ଚଳଚିଲ୍ଲୀ ନର୍ତ୍ତନ ପଣ୍ଡିତା
ବନିତା ବନିତାର ହେବ ମଞ୍ଜରୀକି ଜାଣି ହେଲା ଖଣ୍ଡିତା । ୪ ।
କରକ କରକଶ ପୀନ ଉତ୍ତୁଙ୍ଗ ରୁଚିର ସ୍ତନା ମୋ ଧନ
କିରତୀ କି ରତିଶର ପ୍ରକାଶିବା ବିଚାରି କରିଛି ମନ । ୫ ।
ମଦନ ମଦ ନ ଥିଲେ ଜାଗି ମନେ ନ ଥାଏ ମୋ ମନେ ଧୃତି
[illegible] କି ଶୋରିଷକେ ହେଲେ ମତେ ଦେଖାଇଲା ପୂର୍ବ ଦ୍ୟୁତି । ୬ ।

ପ୍ରଭାତେ ପ୍ରଭା ତେଜିବା ଶରଦରୁ ଭିନ୍ନ ଋତୁ ଶୀତକର
ପରାୟେ ପରା ଏବେ ମୁଖ୍ୟ କରିଛି ପାଈଁ ମୋ ନାଶ ବିଚାର । ୭ ।
ସାରସ ସାର ସମୂହ ଶୋଭା ଜୟ ଧୁରନ୍ଧର ଲୋଚନରୁ
ବାରି ନିବାରି ନିପଟ ହସିବାର ପାଶୋରି ଦେଲା ରମ୍ଭୋରୁ । ୮ ।
ତଳପ ତଡ଼ପକା ହଂସତୂଳୀରେ କଠିନତା ଅବା କେଡ଼େ
ସହୀ ନ ସହି ନରମ କାଳେ ଲୁଳେ ସେ ତନୁ ଧରାରେ ସଢ଼େ । ୯ ।
ରୁଷିଲାରୁ ଶିଳା ଭାବକୁ ଶ୍ରୀଅଙ୍ଗେ ବହିଲା ନୂଆ ଛଇଳା
ମହିଳା ମହୀଲାୟକ ହୋଇବାରୁ ଏ ଅନୁମାନ ହୋଇଲା । ୧୦ ।
କରି ଚାକରି ଚାରି ଯାମ ଜାକରେ ଅନାରତେ ସାବଧାନେ
ଚାଲିଲେ ଚାଲି ଲେଶେ ହେଲେ ଖସଇ ପ୍ରଭୁକି ତା ମନେ ଘେନେ । ୧୧ ।
ଏବେ ତ ଏବେ ତ ହେଲା ମୋ ଚରମେ ଏଣିକି କ୍ଷମା ସୁନ୍ଦର
ରସଭାର ସଭା ପଦେ କହୁ କହେ ଅଷ୍ଟଦୁର୍ଗ ପୁରନ୍ଦର । ୧୨ ।



## (୨୦୪)

## ରାଗ—ସୋମ

ରସନିଧି ହେ ! ଭଲ ପ୍ରୀତି କଲ ଭୁଲାଇ;
ଅଶକତ ନ କଲେ କି "ବଶ କଲା" ବୋଲାଇ ? । ୦ ।
କଲ କି କରମ !! ସାରିଥିଲ ଅମଳକ କି ?
ସଂସାରେ ଥିବା ରୀତିରୁ ଝଲକିଲେ ଭଲ କି ? । ୧ ।
ତା' ତନୁ-ଶିରୀଷେ ଦଳିଦେଲ କଟୁ କୁଳି ଗୋ !!
ପଡ଼େ ପରା ପହୁଡ଼ିଲେ ତୂଳି ଶେଯେ ଲୁଳିଶେ ସେ ? । ୨ ।
ଖଣ୍ଡ ଖଣ୍ଡ କରଜେ ସେପରି ଏକା ଦଣ୍ଡ କି ?
ଧରିତ୍ରୀମଣ୍ଡନାର ସେ ଗଣ୍ଡ ନୁହେ ଖଣ୍ଡ କି ? । ୩ ।

(୨୦୪) ଅମଳକ—ମାଦକ ଦ୍ରବ୍ୟ, ଝଲକିଲେ—ଟଳିଗଲେ, ଲୁଚି—ଝାଉଁଚି, କରଜେ—ହାତନଖରେ, ସ୍ମର-ସମରଜ ଶ୍ରମ—ରତିକ୍ରୀଡ଼ାରୁ ଜାତ କ୍ଳାନ୍ତି, ଭ୍ରମରଙ୍କ କ୍ରମରେ—ଭଅଁରଙ୍କ ସଦୃଶ, ଅଙ୍ଗରାଗ ବାସ—ଦେହର ଚନ୍ଦନ କୁଙ୍କୁମାଦିର ସୁରଭି, ଲଜ୍ଜାମଦ—ଅତିଶୟ ଲଜ୍ଜା ଭାବ ।

'ସେ' ପରେ ହୁଏ କି ସ୍ମର-ସମରଜ ଶ୍ରମରେ ?
ଚୁମ୍ବିଥା'ନ୍ତ ପଙ୍କଜକୁ ଭ୍ରମରଙ୍କ କ୍ରମରେ । ୪ ।
ତା' ଶ୍ରୀଅଙ୍ଗ ରାଗ ବାସ ଯାଉଚି ତ ଚହଟି;
କେଉଁ ପ୍ରକାରକୁ ଆଉ ନ ହଟିଲ ? କହ ଟି । ୫ ।
ଶ୍ୟାମ ଶୁଣି ଲଜ୍ଜା ମଦ ବହିବାର ଚିତ୍ତରେ
ଜଗଦ୍ଦେବ ଧାୟେ ଚିନ୍ତି ମନରେ ଏ ଗୀତରେ । ୬ ।

●

## (୨୦୫)

ରସିକାମଣ୍ଡଳୀ ମଥାଝରା ରେ, ବସିଛୁ ତ ଭୂଷି ବସୁନ୍ଧରାରେ,
ଖସି ପଡ଼ିଲାଟି ଦେଲା ପରି କାଟି ଧୃତିଲତିକାଟି ମନୁ ଦ୍ୱରାରେ । ପଦ ।

କହିଛି ଛାମୁରେ କେ କି ଧୀରାରେ, ମହୀରେ କରିଛୁ ନଖଗିରାରେ, ଅହିତ ମୁଁ ନୁହେ, ଅଦୋଷେ ନିଗ୍ରହେ ନ ଦଣ୍ଡ ତୁ କୃପାନିଧି ପରା ରେ । ୧ । ଦୁଃଖକୁ ମୋହର ତୁ ପାସୋରା ରେ, ମୁଖଚନ୍ଦ୍ର ଟେକି ବିମ୍ବାଧରା ରେ, ସୁଖ-କୁସୁମାଳି, ନ ଯାଉ ମଉଳି, ବନ୍ଧୁ ତୋ ଗୁମାନ-ତୀବ୍ର ଖରାରେ । ୨ । ବଣା ମୃଗନେତ୍ରା ନାରୀହୀରା ରେ, ଗଣାଗଲିଣି ମୁଁ ତୃଷାତୁରା ରେ, ଛଣା ରସଝରି, ଥାଉ ଥାଉ ପୂରି, ତୋ ଉରଜ ବ୍ୟାଜ ସୁନାଗରା ରେ । ୩ । ମଦନମଦୁଆ ଇଟ ଛୁରାରେ, ମୋ ଧନ ମୁଁ ଯିବି ସିନା ମରା ରେ, କନ୍ଦନ ବିଧ୍ୱଂସ ନ କଲେ ତୁ ହଂସବିଜୟିଗମନା ଶୋଭାକାରା ରେ । ୪ । ହରି ବିନତିର ମନୋହରା ରେ, ପୁରୀରେ ରୋଷକୁ ହସି ଜରାରେ, ହାରିଲେ କଷ୍ଟ ସିନ୍ଧୁ ତରିବା ଅଷ୍ଟଦୁର୍ଗ ସ୍ୱର୍ଗରାଜା ମନ ପୂରା ରେ । ୫ ।

●

## (୨୦୬)

### ରାଗ—କାଫୀ

ରସିଲା, ମୋ' କୋଳେ ଧନ ବସିଲା ରେ ! । ୦ ।
ଉରେ ଜମାଇଁ ତା' ଉଚ୍ଚ ଉରୋଜ ହେମ-ଲକୁଚ
ନିବିଡ଼େ ଭିଡ଼ିଲି, 'ଇସି' ଭାଷିଲା ରେ । ୧ ।

---

([illegible]) ଉଚ୍ଚ ଉରୋଜ—ଉନ୍ନତ ସ୍ତନ, ହେମ ଲକୁଚ—ସୁନାର ଜେଉଟ ଫଳ (ସ୍ତନ ସହିତ

ସଂଖାଳି ତା'କୁ ବିଚାରି, ରଙ୍କାଳି ଛଡ଼ା ଆଚରି
ଚୁମ୍ବିଲି ଶ୍ରୀମୁଖେ ଆଖି ଖୋସିଲା ରେ ।। ୨ ।
ରହସ୍ୟ ଅଙ୍ଗମାନଙ୍କ ଜାଣି ଦେଲି କରଜାଙ୍କ
ଚମକି ଅଳପ ଲାଜେ ହସିଲା ରେ ।। ୩ ।
ଇଭ ଗତି ନିଭ ଗତି କି ଭଗତିରେ ମୋ' ପ୍ରୀତି
ପାଳିବା ବିଳାସାଦାନେ ତୋଷିଲା ରେ । ୪ ।
ସେ ନବ ରସିକାରାଜ ସବୁ ଅଙ୍ଗୁ ନେଇ ଲାଜ
ନିବିଡ଼ ନୀବିରେ ଏକା ପୋଷିଲା ରେ ।। ୫ ।
ପ୍ରିୟା ନବ ସଙ୍ଗୋତ୍ସବ ଘେନିବାର ଶ୍ରୀ କେଶବ
ବସୁ ଦୁର୍ଗେଶକୁ ଧାନେ ଦିଶିଲା ରେ ।। ୬ ।



(୨୦୭)

## ରାଗ—ବଙ୍ଗଳାଶ୍ରୀ—ଝୁଲା

ରହି ବିଦେଶରେ ଦଇବବଶରେ ବଲ୍ଲଭ ନୃପ କୁମର
ରତିପତି ଭୀତି ବଳରୁ ବୋଲନ୍ତି ଆହା ବିଳାସିନୀ ବର । ୦ ।
ରଣରଣ ଶର ଦମ୍ଭୋଳି ପ୍ରକର ବରଷାରୁ ନିରନ୍ତର
ରକ୍ଷା କେ କରିବ ମୋର ରେ ପଲ୍ଲବ-ଅଧରା ବିନା ତୋହର । ୧ ।
ରଙ୍କ ମୁଁ ସୁଭାଗ୍ୟବଶୁଁ ଅରଜିବା ଚିନ୍ତାମଣି କରି ଦୂର
ରସବତୀ ରାଜା ତୁ ସଖି ପରଜା ଏକାଳେ ହେଲି ଅନ୍ତର । ୨ ।
ରଥପରି ମନମଥର ଆସନ୍ତେ ହୋଇ ମଛର ମଛର
ରଟିବ କିଙ୍କିଣୀ କାହାରଟି ଶୁଣି ଲଭିବି ମୁଁ ମୋଦଭର । ୩ ।
ରଜ ନିକରେ କୁସୁମ ମାନଙ୍କର କରି ଦେହକୁ ଧୂସର
ରଜନୀକର ମୟୂଖେ ବିହରିବି କୁଞ୍ଜେ ଧରି କାହା କର । ୪ ।

ତୁଳନା), ରଙ୍କାଳି—ଲୋଭୀ, କରଜାଙ୍କ—ହାତନଖର ଚିହ୍ନ, ଇଭ—ହସ୍ତୀ, ନିଭ—ଭଳି ବା ସଦୃଶ, ବିଳାସାଦାନେ—ରତିକ୍ରୀଡ଼ାରେ, ନବ ସଙ୍ଗୋତ୍ସବ—ଆଦ୍ୟ ମିଳନ ଉତ୍ସବ ।

ରସି କାହା ପରିରମ୍ଭ ତୁମ୍ଭେ ହରିବିଟି ଯାମିନୀ ବାସର
ରତେ ରସି କାହା ତୁଲେ ହେବି ମହାସୁଖାମୃତ-ଜରଜର । ୫ ।
ରଙ୍ଗ ତାମରସ ପଦ ଲାକ୍ଷାରସ ଚିତ୍ରେ ସାଜନ୍ତେ ତାହାର
ରସିକ ଚକ୍ର ଚୂଡ଼ାମଣି ହୋଇବ ମୋ ପଦତଳେ ନଜର । ୬ ।
ରଚି ନିଧୁବନ ଅବସାନେ ଧନ, ଧରି କୁସୁମ ଚାମର
ରଖି ମୋତେ ଉରେ ବିଞ୍ଚୁ ପରା ଧୀରେ ଏବେ ସାରିଦେଲା ସ୍ମର । ୭ ।
ରଦନ ଅମ୍ବର ସୁପକ୍ୱ ବିମ୍ବର ସ୍ୱାଦୁ ନ ପାଇ ଏଥର
ରଦ ହେବା ପରି ଲାଗିବାରୁ ଡରି ହୋଇଲାଣି ଥରଥର । ୮ ।
ରତ୍ନ ପରିଚିତ ସୁକୃତ ସଞ୍ଚିତ ହେବା କଣ୍ଠ ଅଳଙ୍କାର
ରସାମଧ ଶୀରି ତୁ ଯେ ମୋର କରି ନ ପାରିଲି ଅଙ୍ଗୀକାର । ୯ ।
ରମଣୀୟତର ପୟୋଧରେ ତୋର ନ ଖେଳାଇଲି ନଖର
ରମଣୀ ଅତର ସୁବାସିନୀ ମୋର ଜନମ ବଡ଼ ଅସାର । ୧୦ ।
ରହରେ ଏପରି ଚିନ୍ତିଲେ ଶ୍ରୀହରି ପ୍ରିୟାଙ୍କ ଗୁଣ ପ୍ରକର
ରଚିଲେ ହରଷରେ ହରିଚନ୍ଦନ ଜଗଦ୍ଦେବ ନୃପବର । ୧୧ ।



## (୨୦୮)

ରାଜି ନ କଲା ଆଜି ପ୍ରବୀଣା ହେ । ୦ ।
ପ୍ରୀତି ପାଶୋରା ପଣ
ତାହାଠାରେ ଆପଣ
କି କରିଛ ତା ତୁମ୍ଭଙ୍କୁ ଜଣା ହେ । ୧ ।
ବିନୟେ ଧରି ପଦ
କରାଅ ବଶମଦ
ପୁଣି ସୁଖମୁଣ୍ଡେ ଠୁକ ଠଣା ହେ । ୨ ।

(୨୦୮) ଠୁକ—ଆଘାତ କର, ଠଣା—ଢୁସା ବା ହାତ ଆଙ୍ଗୁଳି ଗଣ୍ଠିଦ୍ୱାରା ମାଡ଼, ରାହି[illegible]ରେ ଜନ୍ମୁଥିବା, ଖଦା—ମଇଳା ।

ସ୍ୱର୍ଗ ପୀଠେ ବସାଇ
ପୁଣି ଜାଣ ଖସାଇ
ଏ ଗୁଣେ ଆପଣ ନୁହ ଊଣା ହେ । ୩ ।

ଦେବାର ଇନ୍ଦ୍ରପଦ
ହରି, ଦିଅ ବିପଦ
ନିତ୍ୟ ନୋହିବାରୁ ଏ କରୁଣା ହେ । ୪ ।

ରାତି ରାତିଜା କ୍ଲେଶ
କହି ବହିଲା ରୋଷ
ଯହୁଁ ତୁମ୍ଭ ଗୁଣ ନୁହେଁ ଗଣା ହେ । ୫ ।

ଆପଣ ଯା ଅସାର
କଥାକୁ ଘେନ ସାର
ନ ସମଂଛ କେ ପାଣି କେ ପଣା ହେ । ୬ ।

ଦୁଃଖେ ସେ ଦିନ ହରେ
ଆପ୍ଣଙ୍କ ସ୍ନେହରେ
ଖଦା ଥାଇ ନ ଥିବାରୁ ଛଣା ହେ । ୭ ।

ଭଣିଲେ ଜଗଦ୍ଦେବ
ଜାଣିଏ ବାଣୀ ଭାବ
ହେଲା ଶ୍ୟାମବନ୍ଧୁ ବୁଦ୍ଧି ବଣା ହେ । ୮ ।

●

(୨୦୯)

ରାଣ ଅଛିଟି ରେ କିଶୋରୀ ପ୍ରମଦାବର
ତଳପେ ଅଳପ ରହରେ କଳପ-
ଲତା ମୋ ହୃଦୟ ହାର (ପଦ)
ଯାମିନୀ ଚରଣ କାଳେ ଯେ ରକମ



କି ବୋଲି ବାଣୀ ନ ଶୁଣ।
କଳାକରଚୂଡାହତ ଶର ପୀଡ଼ାକୁ କର ଊଣା (୧)
ହର ସିନା ଘନକେଶୀ ନିଧୁବନ ବିହିତ ନଖକ୍ଷତକୁ
ସହିବାକୁ ସହୀ ହେଲା ମୋର ସହୀ
ତୋର ଦୋ ଦୃଢ଼ ଘାତକୁ (୨)
ଚଞ୍ଚଳ ନୟନା ରଦାଞ୍ଚଳ ସିନା ପ୍ରଦାନ କରିବୁ ଥରେ
ଟେକି ଉରବର ଜାକତ ମୋହର ହାର ପରଶ ମରେ ରେ (୩)
ନାହିଁ କି ଧରମ କରିଛନ୍ତି କାମ କୁଚଚକ୍ର ନୀଳ ଛାଇ
ସ୍ୱରୂପ ପରି ରେ ନିବିଡ଼ ଶ୍ଳେଷରେ ଆଉ ମୁଁ ପଡ଼ିବି ନାହିଁ (୪)
ଘଟ ପତି ଉଟ ଥନକୁ ନିପଟ ଦଳି ଦେବି ନାହିଁ ଆଉ
ହାଟକ ଝଟକ କରନା କଟକ ଶୋଭା ରେ ଦେବୁ ଦାଉ (୫)
ଗିରିବରଧାରୀ ଶୁଣି ଶିରୀମତୀ ହେଲେ ଅତି ରତି ମତି
ଅଷ୍ଟଦୁର୍ଗ ପତି ବୋଲେ ସେ ଦମ୍ପତି ପାଦେ ନ କର ପୀରତି (୬)

●

## (୨୧୦)

ରାତି ପାହିଗଲା ହେ ହାତୀ, ହୁଅ ଅପହୁତ୍ ତେଜ ସୁପାତି । ପଦ ।

ହେମ ହେଲା ଉରମୁକୁତା, ପାନକଳ ଲାଗିଲା ପିତା, କରଟ କୁମ୍ଭାଟ ଚମକି ରଟନ୍ତି ବାଜିଲା ଅରୁଣ କିରଣ କାନ୍ତି । ୧ । ଛୁଇଁ ଗଙ୍ଗଶିଉଳି ବନ, ବହିଲାଣି ମୃଦୁ ପବନ, ରଥାଙ୍ଗ ଦମ୍ପତି, ହୃଦୟରୁ କିଛି ଦୂର ହୋଇଲାଣି ବିରହ ତାତି । ୨ । ବିକସିଲେ କୁମୁଦ ନିଦ, ଅଳିକୁଳ ହେଲେ ପ୍ରମୋଦ, ଲାଗିଲାଣି ଭୟ, ସଙ୍ଗିନୀ ନିଶ୍ଚୟ, ଇଙ୍ଗିତରେ ଘେନି ଯିବେ ମୋ ଜାତି । ୩ । ମନ ମୋର ଧୃତି ନ ଟଳୁ, ଧନ ମୋତେ ମେଲାଣି ମିଳୁ, ରାଧା ନନ୍ଦସୁତ ମାତିଲେ ବୋଲି ତ ତୁଛାକୁ ଏ ବ୍ରଜମଣ୍ଡଳେ ଖ୍ୟାତି । ୪ । ଜଳନ୍ତର ଭୂପତି କହେ, ଅଙ୍ଗରାଗ ଅଛି ମୋ ଦେହେ, ଅତି ସେ ନଜରୁ ହେମ ଉରୋଜରୁ ଶିଥିଳାଇ ଦିଅ ଅଳପ ଛାତି । ୫ ।

●

¹ଟ—କୁଆ, ସୁପାତି—ଶେଯ ।

(୨୧୧)

## ରାଗ—ଗୁଜ୍ଜରୀ—ତିପଟା

ରାଧେ, ଅନଙ୍ଗ ରଙ୍ଗ ରଣକୁ ଆଜ ସାଜ ରେ,
ରାଜ ବଦନ ମାଜ ସଖି ସମାଜରେ,
ମନୁ ଲାଜ ତେଜ ହାଜର ଜରିତାଜ ଧରି ବିରାଜ ଆଜ ରେ । ୦ ।
ମଞ୍ଜୁଳତର କୁଞ୍ଜ ନିଳୟ ମଣ୍ଡ ଆଦରେ,
କଞ୍ଜ କୁସୁମ ଗଞ୍ଜନ କମନୀୟ ପାଦରେ,
ଅଞ୍ଜନ ରୁଚି ପୁଞ୍ଜ ବିହଗ ପଞ୍ଜରନିଭ
କୁଞ୍ଜରେନ୍ଦ୍ରରଞ୍ଜନ ଶୁଣ ଗର୍ବିତ ମତ ନିର୍ବିବାଦରେ । ୧ ।
କୁଞ୍ଜ ସଦୃଶ ସୁନ୍ଦରତର ମନ୍ଦହାସୀ ରେ,
ଚନ୍ଦନ ଘନସାର ସକଳ ବୃନ୍ଦବାସୀ ରେ,
ନନ୍ଦ ନିଳୟ ଚନ୍ଦ୍ରମୁଖ ପସନ୍ଦ ସୁଅରବିନ୍ଦ-
ସ୍ୟନ୍ଦ ନିର୍ଗତ ମକରନ୍ଦର ହୁଅ ଯା ପିପାସୀ ରେ । ୨ ।
ମୁଞ୍ଚ ସୁଦନ୍ତୀ ରଞ୍ଜନ ନିଶୀ ରଚ ଖେଳ ରେ,
କୁଞ୍ଚିତ ଭୂରୁ ଭଙ୍ଗୀ ଛିତ ବିରଚ କୁଳ ରେ,
ଚଞ୍ଚଳ ନୟନାଞ୍ଚଳ ମିଶି ସଞ୍ଚିତ ମଦଚଞ୍ଚ-
ରୀକ ସଞ୍ଚରୁ ନବ କାଞ୍ଚନ ନିଭ ଚାରୁଚେଳରେ । ୩ ।
ଶାନ୍ତରସ ପିଚିଣ୍ଡିଳମତି ମନ୍ତ୍ର ପାଳି ରେ,
ସୀମନ୍ତ ମଣି ସୁକୁନ୍ତଳ ମତି ତୁ ଆଳି ରେ
ଦନ୍ତକ ତୃଣବନ୍ତ କରୁ ନିରନ୍ତର ସେ ଦୁରନ୍ତ
କାମକୁନ୍ତ ସଦୃଶ ପାଣିରୁହ ନିତାନ୍ତ କେଳି ରେ । ୪ ।
ବାରଣଗତି ହାର ରେ କୁଚଭାର ମଣ୍ଡ ରେ,
ନିବାର ମୁଦିର ବାର ତନୁରୁ ମାରଦଣ୍ଡରେ,
ଆରକତ ସୁସାରସ ବାରବାର ବିଜୟୀ ସାର—
ପଦଦ୍ୱନ୍ଦକୁ ଭାବି ବନ୍ଦଇ କବିମାରତଣ୍ଡ ରେ । ୫ ।

●

## (୨୧୨)

## ରାଗ—ଶଙ୍କରାଭରଣ

ରାଧେ ରସିକାରାଜ, ତୋ ପ୍ରବୀଣାପଣ ଜଣାଯିବ ଆଜ,

ନନ୍ଦର ତନୟ ପୁରନ୍ଦର ମଣି ମକରନ୍ଦ ଲିଟ ତୁ ଅରବିନ୍ଦଟି ସୁନ୍ଦରି । ପଦ ।

ହେବା ଦିନୁ ସ୍ତନ ପୀନ କରକଶ, ମଦଗତେ ବସୁନ୍ଧରା ମଣ୍ଡଳିକି ମଣୁ ପରା, ଏବେ ଧରାଧରଧରା କରେ କସ । ୧ । ଭିନ୍ନ ସଖୀ ଦେହେ ସ୍ନେହେ ଜଡ଼ିବାର, ଭିନ୍ନ ସେ ଶିଖଣ୍ଡଚୂଳ ମରକତ ଅରଗଳ, ବଳିଷ୍ଠ ବାହୁ ଯୁଗଳ ଭିଡ଼ିବାର । ୨ । ଆମ୍ଭେ ସିନା ପ୍ରଭୁ ବୋଲି କରୁ ଭୀତି, ତୁ ଯାହା କଲେ ତା ସହୁ, କ୍ଷମା କରିବେ ସେ କାହୁଁ ବାମାଗର୍ବ-ଚନ୍ଦ୍ର ରାହୁ କଳାହାତୀ । ୩ । କି ହେବ ମନ୍ଦିରେ ଭୂରୁ ନଚାଇଲେ, ଯଶ ହେବ ସେହି କାଳେ ନଟ-ମୁକୁଟକୁ କୋଳେ, ନଚାଇ ସେ ରସେ ବଳେ ରୁଚାଇଲେ । ୪ । ମୃଦୁ ତନୁ ବୋଲି କେ ଛାଡ଼ିବ ଆଉ, ଅଙ୍କୁ ଯିବାଯାଏ ଶାନ୍ତ ହୋଇବ ନାହିଁ ଯେ ଦାନ୍ତ, କରରୁହ-ପ୍ରାନ୍ତକୁନ୍ତ ଖେଳା ଦାଉ । ୫ । ବୋଲେ ଅଷ୍ଟଦୁର୍ଗନାଥ ଜଗଦ୍ଦେବ, ସଖି ପରିହାସ ଶୁଣି ଲାଜେ ହସି ଠାକୁରାଣୀ, ମନେ କଲେ ହେଲେ ପୁଣି ବୁଝାଯିବ । ୬ ।



## (୨୧୩)

ରାମାରାଜ ରେ, ସତେ ରୁଷି ନାହୁଁ ତୁ ଯେ ଆଜ ରେ

ଆଡ଼ରୁଷାରୁ ତ      ଜାଡ଼ରୁ ସାରସ

ପରି ହୁଅଇ ମୋ ଓଜରେ । ୦ ।

ଅନ୍ତଃସ୍ମିତ ରୁଚି      ଅଳପ ସ୍ଫୁରୁଚି

ରମ୍ୟ ମୁଖ ଦ୍ୱିଜରାଜରେ

ଟେକୁ ଯେଉଁ ମଥା      ପଦେ ହେଲେ କଥା

କହୁ ନାହୁଁ ଏ କି ବ୍ୟାଜରେ । ୧ ।

(୨୧୩) ସାରସ—ପଦ୍ମ, ଓଜ—ତେଜ, ଦ୍ୱିଜରାଜ—ଚନ୍ଦ୍ର, ବ୍ୟାଜରେ—କପଟରେ, ଆନ—[illegible] ଲୋକୁଟାରେ—ଦୀନହୀନ ବ୍ୟକ୍ତିଠାରେ, କୁତ୍ସା—ଅପନିନ୍ଦା, ସନ୍ଦୋହ—ସମୂହ, ନି[illegible]ିବା ।

କି କଳ ବୀଣା ତୁ ନୂତନା ହେବାରୁ
ବିକଳ ହେଉଛୁ ଲାଜରେ
ଆନ ଅଛିଟି ଏ ବିନୟ ବଚନ
ମାନ ମୋ କୋଳେ ବିରାଜ ରେ । ୨ ।

ଲୋକୁଟାରେ ବ୍ରୀଡ଼ା ନ ଧରି ଅଧରୁ
ଢ଼ୋକୁଟାଏ ଦେଇ ସାଜରେ
ତୋର ଶତ ମାନ, ଶଙ୍କା, କଳଙ୍କକୁ
ଛଡ଼ାଇ ମୋ ମନ ମାଜ ରେ । ୩ ।

ଦୋଷ ବିନା ତୁଚ୍ଛା ରୋଷ କଲେ କୁଚ୍ଛା
ନେବୁ ଛଇଲା ସମାଜରେ
ମନ୍ଦେ ହସ ମୋର ସନ୍ଦେହ ସନ୍ଦୋହ
ନାଶି ମୋଦକୁ ନିଆଜ ରେ । ୪ ।
ଅଷ୍ଟଦୁର୍ଗନାଥ ବିରଚିଲେ ଏହା
ବୋଲୁ ବ୍ରଜ ଯୁବରାଜରେ
ମଜ୍ଜିଗଲା ଲଜ୍ଜା ସ୍ନେହ ଜଳଧିରେ
ଦେବୀଙ୍କ ମନ ଜାହାଜରେ । ୫ ।



(୨୧୪)

## ରାମା—କେଦାର—ରୂପକ ତାଳ

ରାମା ରଥାଙ୍ଗ ଦମ୍ପତି ରତେ ରସିଲା ରେ । ଘୋଷା ।
ସଞ୍ଜାରୁ ବନ୍ଦିଲି ତୋତେ କଞ୍ଜ ବିକାଶ ପର୍ଯ୍ୟନ୍ତେ
ଅଞ୍ଜନାଶ୍ରୁ କେବଳ ବରଷିଲା ରେ । ୧ ।
ନୋହେ ସେ କଞ୍ଜବିକାଶ ଅହେତୁରେ ବନ୍ଧୁ ରୋଷ
ଜାଣିବେ କି ସେ ସାରସ ହସିଲା ରେ । ୨ ।

ତୃଷାର ହେଲା ମଣ୍ଡନ ସୁସାର ପଦେ ବଚନ
ତୋ ସାରସ ବଦନୁ ନ ଖସିଲା ରେ । ୩ ।
ସେବା ନ ଘେନି ଆନନ୍ଦ ହେବାର ଏ ପରିବନ୍ଧ
ଜବାଧରା କି ପସନ୍ଦ ଦିଶିଲା ରେ । ୪ ।
ଯା' ତୁଲେ ରତି ଶରଣ କରୁ ତୋ ମୃଦୁ ଚରଣ
ନ ରଖିଲା ସେ ଶରଣ ପଶିଲା ରେ । ୫ ।
ଭଣା କରିବାରୁ ପ୍ରେମ ହଣାଇ ଦେଲେ ଉତ୍ତମ—
ପରି ମୋର ମତିକି ଆଭାସିଲା ରେ । ୬ ।
କହେ ଅଷ୍ଟଦୁର୍ଗ ପତି ଶୁଣି କିଶୋର ଭାରତୀ
ହୋଇଲେ ଅମନାବତୀ ସୁଶୀଳା ରେ । ୭ ।

●

(୨୧୫)

## ରାଗ—ତୋଡ଼ି ପରଜ

ରେ କିଶୋରି, ତୁ ଲୋଡ଼ୁଅଛୁ ମାଡ଼କୁ,
ନାହିଁ କରୁ କରୁ ଚାହିଁଲୁ କାହିଁକି ଶ୍ୟାମଳ ଚାନ୍ଦ ଆଡ଼କୁ ରେ । ପଦ ।

ମୋରେ ତ ନଜର ନ ଦେଉ ନଜର ନ ଦେଉ ଯେ ବିଶାଖାରେ, ବୃଥା ନିତି ରସେ କି ଥାଏ ତୋର ସେ ତମାଳ ତରୁ ଶାଖାରେ । ୧ । ଆନ ମହାଧନ ବିବିଧ ବସନ ଛାମୁରୁ ନେଉଛି ମାଗି, ତୋର ତ ଜୀବିକା ହୋଇଅଛି ଏକା କଳାମେଘି ଶାଢ଼ୀ ଲାଗି ରେ । ୨ । ତଳପ ପରି ଅନଳପ ସୁରଭି ଫୁଲ ଝଡ଼ି ପଡ଼େ ତଳେ, ମତ ସୀମନ୍ତିନି ! ମଣି ମିଶାଇଛୁ ଅତସୀ-କୁସୁମ ଦଳେ । ୩ । ଗଣି ନୋହିବାର ମଣିଭୂଷା ଅଛି ତହିଁକି ନ ଚାହୁଁ ଢାଳେ, ଗଳାଇ ଦେଇ ଗୁନ୍ଥିଛୁ ମନୁଟିକି କଳାଇନ୍ଦୀବର ମାଳେ । ୪ । ଜଳାବାଟେ ହେଲେ ବଳାହକେ ଚାହିଁ ପୁଲକେ ହେଉ ଭରତି, କଳା ବୋଲି ସ୍ନେହେ ଦଳା ମଳୟଜ ବୋଳାଉ ଯା ଅଙ୍ଗେ ନିତି । ୫ । ମାରି ଜାଣିଅଛୁ ବାରିଜାକ୍ଷି ହସି ସର୍ବ ଅବତଂସ ଫୁଲେ, କଷ୍ଟ ପାଇବୁ ତୁ କାହାର କି ଯିବ ଅଷ୍ଟଦୁର୍ଗନାଥ ବୋଲେ । ୬ ।



●

(୨୧୬)

## ରାଗ—ତୋଡ଼ିପରଜ—ଏକତାଳି

ରେ କିଶୋରି, ନ ସହିବୁ କେ ସହିବ ?
ନ ସହିଲେ ଶ୍ୟାମ ମୂରତି ପୀରତିବଲ୍ଲୀ ଫଳ କିସ ହେବ ? ଘୋଷା ।
ଦେଖୁଛୁ ତ ଯେଉଁ ରୂପେ କୁସୁମକୁ ଦେଉଅଛି ଅଳି ଦଳି,
ବାମ ଅଙ୍ଗେ ଦକ୍ଷ ଅଙ୍ଗ ବାରିଜାକ୍ଷ କରେ ସିନା ଅଳି ଦଳି । ୧ ।
ବ୍ରଜରାଜ ସୁତ ମୃଦୁପୁରୁହୂତ ମଣି ବିରଚିତ ଚୂତ,
ପୁରଭିଦରୀଦର୍ପଣ-ଗଣ୍ଡସ୍ଥଳା ସୁରଭି ଇନ୍ଦିରା ତୁ ତ । ୨ ।
ହଜାରେ ନିଷେଧି ଜଣାଇଲେ ହେଲେ ନ ଜାଣି ଆପଣା ବାଧ,
ଯାହା କଳାବତୀ, ଘେନି ବସିଥାଉ ତାହା କଲା ଅପରାଧ । ୩ ।
ହର-ପରିପନ୍ଥୀ ଦେବାବେଳେ ଗୁନ୍ଥି ମନରେ ମନ ଗଳାଇ,
କହିଲୁ କି ପ୍ରିୟସଖି, ମୁଦେ ପଦେ ପହିଲୁ ଦେଲୁ ବଳାଇ । ୪ ।
ଆନ ସହାୟ କେ ଅଛି କି ଭୂଲୋକେ ମାନସରେ ବିଚାରିଲେ,
ତା ଚରଣ ସିନା ଶରଣ ସେ ନାନା ଆଚରଣ କଲେ ହେଲେ । ୫ ।
ଶୁଣି ଆଳି ବାଣୀ ହସି ଠାକୁରାଣୀ ନିମଜ୍ଜି ରହିଲେ ସ୍ନେହେ,
ତୁଷ୍ଟ ହେଲେ ସହୀ ଶ୍ୟାମଚନ୍ଦ୍ରମୁହିଁ ଅଷ୍ଟଦୁର୍ଗ ନାଥ କହେ । ୬ ।



(୨୧୭)

## ରାଗ—ତୋଡ଼ି ପରଜ, ଆଦିତାଳ

ରେ କିଶୋରି, ପଛେ ଛୁଇଁବୁ ମୋ ତନୁ,
ପାସୋରି ପକାଅ ନୀପଅନାଉଣି ସୁଆଗ ତୋ ଆଗ ମନୁ । ଘୋଷା ।
ମାତିଲା ନିକୁଞ୍ଜେ ଜଣାଯାଇ କୁଞ୍ଜେ ବୋଲି ହେଉଛି ଖବର,
ନୋହି ମନ୍ଦାଦର ଏ ଅପବାଦର ଅପାୟ ଉପାୟ କର ରେ । ୧ ।

(୨୧୭) ନିଆଜ—ଅନୁମାନ, ତାଡ଼ି—ପିଙ୍ଗିଦେଇ, ପୋପାଡ଼ି ।

ହିତକୁ ଛାଡ଼ି ମୁଁ ନ କହେ ମୋ ପ୍ରାଣମିତକୁ କଦାପି ଆନ,
ଚିତ୍ତକୁ ନ ଆସୁ ଆସୁ ତା ମୁରଲୀ ଗୀତକୁ ନ ଦିଅ କାନ ରେ । ୨ ।
ନ ଜାଣିଲା ପରି ଇନ୍ଦୀବରଧରୀ ଚୁମ୍ବୁ ଯେ ଅନବରତ,
ହର ତୋତେ କୃପା କରନ୍ତୁ ମଦନକରତ ମୁଖୁଁ ବରତ ରେ । ୩ ।
ଧନ ମାନରେ ତୋ ଅଙ୍ଗେ ଯେ ପୂରିଛି ବନମାଳିକା ବାସନା,
ଛାଡ଼ିବି ମୁଁ ଆଜ ଏ କଥା ନିଆଜ ପହିଲେ କହିଲେ ସିନା ରେ । ୪ ।
କାହିଁକି ହେଲାଟି ଏପରି ପଲ୍ଲବ ତଳପରେ ସଢ଼ି ଦେହ,
ଜନେ ଯେ ପୁଚ୍ଛିବେ ତହିଁକି ଜବାବ ଜଳପ ଅଳପ ରହ ରେ । ୫ ।
ସହଚରୀ ପରିହାସୁ ହସି ଗୋରୀ ତାଡ଼ି ଅବତଂସଫୁଲେ,
ସେ ସମୟ ଛବି ଚିନ୍ତି ଚିତ୍ତେ କବିରବି ରାୟଗୁରୁ ବୋଲେ ରେ । ୬ ।

●

## (୨୧୮)

## ରାଗ—ତୋଡ଼ି ପରଜ

ରେ କିଶୋରି, ରୁଷିବାର ସିନା ଜାଣୁ,
ରସ-ଜଳଧିରେ ଅବଗାହି ଧୀରେ, ତହୁଁ ତ ସାର ନ ଛାଣୁ ରେ । ଘୋଷା ।

ରମଣୀୟ ଜାଣି, ରସି ଯହିଁ ପୁଣି, ନ ଡରି ପରିବାଦକୁ; ରୋଷ ଅଙ୍ଗୀକାର କରି କି ତାହାର ଅଳପ କଥା ପଦକୁ । ୧ । ରତ୍ନ ତ ମୃଦୁଳ, ନୋହେ ତାକୁ ଅଳଙ୍କାରକୁ ନିକି ନ ଆଣି; ରସିକାଙ୍କ ଶିଖାମଣି ଘେନୁ ଶିଖା ଶିଖି ତୁହି କାହୁଁ ଶୁଣି ରେ । ୨ । ରଜତ ବ୍ୟକତ, ହେଲେ ଯଦି କ୍ଷତ, ହୁଅଇ ଆସେଚନକ; ରଦାଗ୍ର ସ୍ପରଶ ଅବା କେଡ଼େ ଦୋଷ ନ କରି ଚିତ୍ତେ ବିବେକ । ୩ । ରତିଈଶରଣ ଯାହାର ଶରଣ ଦେଖିଥିଲେ ତାକୁ ନେତ୍ରେ; ରହନ୍ତୁ କି ଲାଜ କ୍ରୋଧେ ଜମି ଆଜ ଭୁଜେ ଭିଡ଼ି ଦେବା ମାତ୍ରେ । ୪ । ରଙ୍କରତନ ଲାଭକୁ ପରି ଏବେ ରଚି ଯତନକୁ ଭଲେ; ରମ୍ୟ ଶ୍ୟାମଛବି କିଶୋରରେ କବିରବି ରାୟଗୁରୁ ବୋଲେ । ୫ ।

●

(୨୧୮) ଆସେଚନକ—ତୃପ୍ତିକାରକ, ରଦାଗ୍ର—ଦାନ୍ତ ଅଗ ।

(୨୧୯)

## ରାଗ—ତୋଡ଼ି ପରଜ—ଏକତାଳି

ରେ କିଶୋରି, ଲାଜେ ପୋତୁ କେତେ ମଥା ।।
ଲୁଚାଉ ଯେ ରସ ବିଚକ୍ଷଣା ଜଣା ନାହିଁକି ତୋ ମନ କଥା ରେ । ଘୋଷା ।
ବୟସ ସିନା ପନ୍ଦର ପୂରି ନାହିଁ, ଗୁମାନେ ତ ନୋହୁ ଊଣା,
କହୁଥାଏ ସବୁ ଚାଲିବା ଗରବୁଁ, ତୋ ମଣି-ବଳା ବାଜଣା ରେ । ୧ ।
ପ୍ରତି ପଦ ଚାଲି ଇସି ଇସି ଭାଷି ବିଳାସ କେତେ ଦେଖାଉ,
ବିଷମ ବାଣକୁ ବିଦ୍ୟା ଶିଖାଇବା ଅଭିମାନ ଥାଉ ଥାଉ ରେ । ୨ ।
ମୁକୁତା-ଦଶନା ତନୁ ମାତ୍ର ସିନା ଶିରୀଷ କୁସୁମ ସମ,
କଟାକ୍ଷ ତ ଗିରିବରକୁ ବିଦାରି ପାରିବା ପରି ବିଷମ ରେ । ୩ ।
ପଦେ ପରିହାସେ ମୁଖ ମଣ୍ଡି ବାସେ ପଳାଉ କେତେ ଆଗରୁ,
ମୋର-ଏ ବିଚାର ସୁରତ ସାଧନେ ପାଇଲି ମୁଁ ନୂଆ ଗୁରୁ ରେ । ୪ ।
ମୂରୁଖ ସଖୀଙ୍କି ନାନା ପ୍ରବନ୍ଧରେ ନଚାଇବା ଗୁରୁ ତୁହି,
ଅଷ୍ଟଦୁର୍ଗ ନାଥ କହେ ଯେବେ ନୋହେ କହ ମୋ ମୁଖକୁ ଚାହିଁ ରେ । ୫ ।



(୨୨୦)

## ରାଗ—ପୂରବୀ—ଝୁଲା

ରେ ବନ୍ଧୁଆ, ଅଛି ପରା ଅବଧାନେ
ନୋହୁ ନବସଙ୍ଗ ଦୁହେଁ ଯେ ଅନଙ୍ଗ ବଶ ହୋଇଲାଇଁ ଦିନେ । ଘୋଷା ।
ବେଣୀ ବାମସ୍ତନ କନକ କୁମ୍ଭକୁ ଆଣି ଫିଟାଇ ଫିଟାଇ,
ଗେଲାଇ ବିଜେ କରିବା ବେଳେ ଧାତା ଦେଲା ଯେ ଭେଟ ଘଟାଇ । ୧ ।
ଚାରୁଚନ୍ଦ୍ର ଜିଣା ବଦନକୁ ଟେକୁଁ ଚାରି ଚକ୍ଷୁ ମିଶିଗଲା,
ସ୍ନେହ ଆନନ୍ଦ ମନ୍ଦାକ୍ଷ ସୁଖମୟ ସେକ୍ଷଣେ ଯେ ଦିଶିଗଲା । ୨ ।

ମନୋରଥ ପଥ ସଞ୍ଚାରି ପଦାର୍ଥ ହୋଇଗଲା ନୀର ସରି,
ମନ୍ଦହାସ ଯେ ଜନ୍ମିଲା ଦୁହିଙ୍କର କୁନ୍ଦ ଉପହାର ପରି । ୩ ।
ପୁଲକ କମ୍ପ ସମ୍ପଦ ଲମ୍ପଟ ହୋଇବାରୁ ଚାରି ବାହା,
ନ ସମ୍ଭାଳି ପରିରମଣ ଆରମ୍ଭେ ବଳିଲାଇଁ ଆମ୍ଭେ ଯାହା । ୪ ।
ଜରତି ପାଶରୁ ଜଣେ ଆସି ହେଲା ଭରତି ନୋହୁଁ ସେ ରସ,
ସକଳ ସୁଖ ସମ୍ପତ୍ତି ହଜି ଯେଡ଼େ ବିକଳ ହେଲା ମାନସ । ୫ ।
ପଳାଇଲୁ ବଳା ଝୁମୁଝୁମୁ କରି ଲାଜରେ ନୁଆଁଇ ମଥା,
କହେ ଅଷ୍ଟଦୁର୍ଗ ନାଥ ସେ ସମୟେ ମୋହର ଯେଉଁ ଅବସ୍ଥା । ୬ ।



(୨୨୧)

## ରାଗ—ପୂରବୀ—ଏକତାଳି

ରେ ବନ୍ଧୁ, ଉଣା ତ ନାହିଁ ଚାକିରୀ,
ଗୁଣାମ୍ବୁନିଧିରେ ଶୁଣାଗଲା ଆଜି ମତେ ତୁ ରୁଷିଲା ପରି । ଘୋଷା ।
ହେଜ ମାନସେ ତୋ ପହୁଡ଼ ସମୟେ ଶେଜ ମୋ ହୃଦୟ ପରା
ଜାମ୍ବୁନଦସାର ଗୋରୀ ରେ ମୁଁ ତୋର ତାମ୍ବୁଳ-ଡାବକ ଧରା । ୧ ।
ଗଇରିକ ଚିତ୍ର ଉରଜେ କରିବା ସଇରିନ୍ଧ୍ରୀ ତ ମୁଁ ତୋର,
ସଙ୍ଗୀତ ସମୟେ ମୁଁ ବୀଣାବାଦକ ସଂଗାତା, ନୁହଇ ପର । ୨ ।
ବେହରଣ ବେଳେ ତୁ ମୋତେ କରିବା ମେହରବାନି ବିଶେଷ
ସ୍ନେହର କ୍ରମକୁ ଘେନିଲେ ମୁଁ ତୋର ଦେହର ଏକ ପ୍ରଦେଶ । ୩ ।
ଶାଢ଼ୀ ଲାଗି ବେଳେ ସ୍ନେହ ମୋହଠାରୁ ଛାଡ଼ିଲାକି ବିନା ଦୋଷୁଁ,
ଖାଲି ସରିକରି ମୋ ହୃଦପଟକୁ କାଲି ସରିକି ତ ରସୁ । ୪ ।
ତଳପ କେଳିରେ ନିଉନ ଜାଣିଲେ ଅଳପମାତ୍ର ତୋ ସ୍ନେହ,
ରହିବି କି ଦେହ ବହିବି ସେ ଦଣ୍ଡ ସହିବି କାହିଁକି କହ । ୫ ।
ନ ସମଝେ ଯାହା ଉଲମନ୍ଦ ମହା-ବିଷମ ଫୁଲ-ଧନବା
[illegible] ଯାଇଥିବି ଅଧରେ ମୋ ଦନ୍ତ ବୁଡ଼ିଯାଇଥିବ ଅବା । ୬ ।

ଶ୍ୟାମ ନର୍ମ ଗିର ଭାବ ଘେନି ବର ବାମନୟନା ହସିଲେ
ହରିଚନ୍ଦନ ଶ୍ରୀଜଗଦ୍ଦେବ କହେ ପରିରମ୍ଭରେ ତୋଷିଲେ । ୭ ।



(୨୨୨)

## ରାଗ—ତୋଡ଼ିପରଜ

ରେ ମୋ ବନ୍ଧୁ, ଶିଶୁବଣାମୃଗଦୃଶା ।

ଦିଶୁଥାଉ କୃପାମୟ, ପୁଣି ଯାହା ରୁଷୁ ସେ କେମନ୍ତ ରୁଷା । ଘୋଷା ।

ରସୁଥାଉ ଥାଉ କୋଳୁ ମୋର ପୁଣି ଖସି ମଣୁ ବସୁମତୀ; ବସୁ ମୁଖଚନ୍ଦ୍ର ନୁଆଇଁ ଯାହାଟି କଷୁଥାଉ କି ମୋ ଧୃତି । ୧ । ହସୁଥାଉ କୋଳେ ଖେଳି ଯେତେବେଳେ ବସୁ କୋଟି ଦେଉ ଗଣି; ନ ଶୁଣୁ ଚାଟୁ ଶତକୁ କାହିଁକି ମୋ ଅସୁ ଘେନିବାକୁ ପୁଣି । ୨ । ଠେସୁଥାଉ ଉରେ ଉରୋଜକୁ ସମୁଲ୍ଲାସୁଥାଉ ସ୍ମିତେ ଗଣ୍ଡ; କି ଶୁଣି କାଟି ଦେଉ ସେ ସୁଖସ୍ୱର୍ଗ ନିଶୁଣୀଟି ଏ କି ଦଣ୍ଡ । ୩ । ମିଶୁଥାଉ ସ୍ନେହେ ନିମଜ୍ଜି ମୋ ଦେହେ କି ସୁଖେ ପୁଣି କି କୋପୁଁ; ତ୍ରିଶୂଳମଣ୍ଡିତକରପରିପନ୍ଥୀ-ଇଷୁ ମୁଖେ ସମରପୁ । ୪ । ପଶୁପ-ମହେନ୍ଦ୍ର ନନ୍ଦନ ଭାରତୀ ରସୁଁ ରାଧା ସଙ୍କୋଚିଲେ; ବସୁଦୁର୍ଗ ସ୍ୱର୍ଗପୁରନ୍ଦର ଭାବବଶୁଁ ଏ ଗୀତ ରଚିଲେ । ୫ ।



(୨୨୩)

## ରାଗ—ତୋଡ଼ି ପରଜ

ରେ ରମଣୀ ଗୁରୁଜନେ ଯେବେ ଭୀତି,

ପୂରୁବରୁ ନୀଳ ପରବଚନ୍ଦ୍ରରେ ବହିଲୁ କାହିଁକି ପ୍ରୀତି । ପଦ ।

ସିନ୍ଧୁ ତ ଗଭୀର ଅଛନ୍ତି କୁମ୍ଭୀର ଅହି ମହାମୀନଶ୍ରେଣୀ, ତହୁଁ ତ ରତନ ଲଭନ୍ତି ଯତନ କରି କେହି କେହି ପୁଣି ରେ । ୧ । ମଳୟରେ ଅହିବଳୟ ତ ରହିଥିବାର ସକଳ

(୨୨୨) ବସୁକୋଟି—ଅସଂଖ୍ୟ ରତ୍ନ; ତ୍ରିଶୂଳମଣ୍ଡିତକରପରିପନ୍ଥୀ—ମହାଦେବଙ୍କ ଶତ୍ରୁ ଅର୍ଥାତ୍ କନ୍ଦର୍ପ; ଇଷୁ—ବାଣ; ପଶୁପ-ମହେନ୍ଦ୍ର—ଗଉଡ଼ଙ୍କ ରାଜା ଅର୍ଥାତ୍ ନନ୍ଦ ।

ଜାଣି, କାହିଁକି ପଣ୍ଡିତେ ବସୁଥାନ୍ତି ସତେ ଗନ୍ଧସାରସାରେ ପୁଣି ରେ । ୨ । କଣ୍ଟକନିଚୟ ସକାଶରୁ ଭୟ ଲଭେ ଯେବେ ଶିଳୀମୁଖ, ହେଉଥାଏ ସେ କି ବଟାରେ କେତକୀ ଲତିକାର ପାଖ ପାଖ ରେ । ୩ । ହରିଚକ୍ରଧାରା ପରାକ୍ରମୁଁ ପରା ହେଲେ ହେଲେ ଖଣ୍ଡ ଖଣ୍ଡ, ଛାଡ଼ିଲା କି କହ ସୁଧାରୁ ଆଗ୍ରହ ବିଧୁନ୍ତୁଦ ଗ୍ରହ ତୁଣ୍ଡ ରେ । ୪ । ମୋହନ ବିଷମ ପଦାର୍ଥରେ ପ୍ରେମ ନ ଛୁଆଁଇବାର ଭଲ, ବଧୂ ବଣ୍ଟୁ କରି ଇତରରୁ ଡରିବାର ବଡ଼ କଲବଲ ରେ । ୫ । ବୁଡ଼ିଗଲେ ହେବ ଏକା ଶେଷଦେବ ଭୁବନକୁ ଅହିମୁଖ, କହେ ଜଳନ୍ତର-ମହୀ ପୁରନ୍ଦର ଓହୋରିଲେ କାହିଁ ସୁଖ ରେ । ୬ ।



## (୨୨୪)

ରେ ସଙ୍ଗାତ ! କାହା ମନେ ଥିଲା ଯେହା
ଯାହା ଲେଖି ଥାଯେ ବିହି ଭାଲ ପଟେ କି ନ ଯାଯେ ଦେହସୁହା (ପଦ)
ସୁମନସ ବୃନ୍ଦ ମକରନ୍ଦ ସ୍ୱାଦୁ ବିଶାରଦ ଯହିଂ ଅଳି
ତହା ସର୍ପି ଆଶା ଲଭିବାକୁ ଦିଶା
ନୋହିଲା ଚମ୍ପକବଲ୍ଲୀ ରେ (୧)
ରାଜୀବ ଗଗନ ତଟେ ନବଘନ
ଧରି ସେ ବଳାକା ମାଳି
କରିବ ଆରେ ବୋଲି ହୃଦାନ୍ତର
ମଧ୍ୟରେ ଚପଳା ଖେଳାରେ (୨)
କୁମୁଦିନୀ ବାଳା ପ୍ରକାଶି ସ୍ୱଲୀଳା
ବଶ କରି କଳାକର
ନିଜାଙ୍ଗ ଭିନ୍ନ ଚନ୍ଦ୍ରିକା ବଦନ
କରାଇବ ବୋଲି ଦୂର (୩)
ନିମଜ୍ଜିବା ଜନ କଲୁ ଅପହାରି
ଯଉଁ ସୁର ନଦୀବାରି
ଗତି କର ଆଶା ସମ୍ଭବ ଦୃଦଶା
ଲେଶ ନପାରୁ ସଂହାରି (୪)

(୬୨୩) ଶିଳୀମୁଖ—ଭ୍ରମର, ବିଧୁନ୍ତୁଦ—ରାହୁ ।

ଅଟନ୍ତି ଯେ ବୀକ୍ଷେ ତା ଶିଖରମଣି

ଶିଖିବେ ସେ ଶିକ୍ଷାବୁଦ୍ଧି

ବୋଲେ ଜଗଦ୍ଦେବ ଶ୍ୟାମରେ ନିରାଶ

ହେବ ବୋଲି ରସନିଧିରେ (୫)



(୨୨୫)

## ରାଗ—ତୋଡ଼ି ପରଜ

ରେ ସଙ୍ଗାତ, ଏତିକି ମୋ ସଙ୍କଳପ

କିଶୋର କିଶୋରୀ ଅନାଇଁବେ ଧରି ଅଧରେ ହାସ ଅଳପ । ପଦ ।

ମୁଁ କୋଟି କଳପ କରି ନାହିଁ ତପ, ଏ ଭରଷା ହେବ କାହୁଁ, ଭିଡ଼ିବ ସୁନ୍ଦରତର ପୁରନ୍ଦର ମଣିମାଳା ରମ୍ୟ ବାହୁ । ୧ । ଦେଇ ନାହିଁ ସର ସାଚି ପାଚିବାର ତା ମଧୁରସା ହବନେ, ଚୁମ୍ବିବି ତାହାଙ୍କ ମୁଖ ହରିଣାଙ୍କ ନିକି ନିକୁଞ୍ଜଭୁବନେ । ୨ । ଶଙ୍କର ଗିରିଜା ପଙ୍କଜାଙ୍ଘ୍ରି ପୂଜା କରି ନାହିଁ ଗଙ୍ଗାକୂଳେ, ମରକତ ମାର ମୂରତି ସୁନ୍ଦର ଖେଳିବ କେହି ମୋ କୋଳେ । ୩ । ଖଞ୍ଜି ନାହିଁ ମଣି ମାଳିକାଧରଣୀ ସୁର ସୁନ୍ଦରୀଙ୍କ ଗଳେ, କିପାଁ କଞ୍ଜନେତ୍ର ମୃଗମଦଚିତ୍ର ହେବ ମୋ କୁଚ ଯୁଗଳେ । ୪ । ନ ଥିବାରୁ ଭାଗ୍ୟ ନୁହଇ ତ ଯୋଗ୍ୟ ଲୋଡ଼ିବି କି ଆନ କଥା, ମୋହନ ପଙ୍କଜ ପଦଚିହ୍ନ ରଜ ଚୁମ୍ବୁଥାଉ ମାତ୍ର ମଥା । ୫ । ବଡ଼ଭୀ ତନାବୀ, ପାଶେ କରିଥିବି ରଜନୀ ବାସର ସ୍ଥାନ, ଚରଣମଣ୍ଡନ ମୁରଲିକା ସ୍ୱନସୁଧା ପିଉଥିବ କାନ । ୬ । କେଉଁ ରୂପେ ହେଲେ, ସେ କୃପା ନୋହିଲେ ତମାଳେ ଦେବି ଦଉଡ଼ି, ଜଳନ୍ତର କ୍ଷିତିଚକ୍ରବଳାରାତି କହଇ ସନ୍ଦେହ ଛାଡ଼ି ରେ । ୭ ।



(୨୨୫) ମଧୁରସା—ମିଷ୍ଟ ଖାଦ୍ୟବିଶେଷ, ହବନ—ଯଜ୍ଞ, ବଡ଼ଭୀ ତନାବୀ—କୋଠାଘର ଝରକା, ବଳାରାତି—ଇନ୍ଦ୍ର ।

(୨୨୬)

## ରାଗ—ପୂରବୀ—ତ୍ରିପୁଟା

ରେ ସଙ୍ଗାତ, କେ ଜାଣିଥିଲା ଏ କଥା ?
ହଜାଇବି ମତି ମୋର ଏଡ଼େ ସତୀବରତ ହେବ ଅନ୍ୟଥା । ଘୋଷା ।
ଶୁଣି ତରଣୀଜାତଟେ ବଂଶୀ ବାଜା ହେବାରୁ ମୁଁ ଅନୁମାନ
କେହି ଆଗୁଁ ଜାଣି ବଳିବେ ସରଣୀ ପକାଇ ଅସଂଖ୍ୟ ଆନ । ୧ ।
ଥରେ କୃପା କର ବୋଲି ବାରମ୍ବାର ଲୁଟିବେ ଚରଣ ତଳେ
ମନେ କରି ମୋତେ କୋଳ ଆଚରିବେ ଉଠ ବୋଲି ଦେବାକାଳେ । ୨ ।
ଗୋଟିଏ ଚୁମ୍ବିବି ବୋଲି ଭାଷି, ଦେବେ କୋଟିଏ ଚିବୁକେ ଚୁମ୍ବ
ପୁଣି ଦଶନାନ୍ତେ ନିବିଡ଼େ ଫାଡ଼ିବେ ମୋ ରଦନାମ୍ବର ବିମ୍ବ । ୩ ।
ଛୁଇଁଦେବି ସିନା ବକ୍ଷକୁ ବୋଲନ୍ତେ ଥରେ ଅଙ୍ଗୀକାର କଲି
ମୋ କୁଚଶମ୍ଭୁର ସେ ନଖାଙ୍କଚନ୍ଦ୍ର ଖଣ୍ଡ ଭୂଷା ହେବ ବୋଲି । ୪ ।
ସେ ରୂପ ପ୍ରକାଶ ନିରୂପମ ହାସ-ବିଳାସ ଭୂରୁ କମାଣ
ଦେଖୁଁ ଦେଖୁଁ ନେତ୍ରେ ମୋ ସକଳ ଗାତ୍ରେ ବିନ୍ଧିବ ମଦନବାଣ । ୫ ।
ବଳିବ ମୋ ତାପ ଝୁମିଯିବି ପାପ ଅନଙ୍ଗ ଅମଳ ବଶେ
କରତି ମୋ ଦମ୍ଭ ମନୋରଥ କୁମ୍ଭ ଭରତି କରିବେ ରସେ । ୬ ।
ମୋ ପରାଣ ଅଟୁ ବୋଲି ଅକପଟୁ କହିଲିଟି ସହି ତୋତେ
ଚିତ୍ତେ ଥିବ ତୋର ଜଳନ୍ତର ନରନାଥ ବିରଚିଲେ ଗୀତେ । ୭ ।

●

(୨୨୭)

## ରାଗ—ତୋଡ଼ିପରଜ, ତାଳ—ରୂପକ

ରେ ସଙ୍ଗାତ, ତୋ ବୋଲେ ବସନ୍ତି ମାନେ,
ଶିଖଣ୍ଡଶେଖର ସ୍ନେହୁଁ ଆଶା ମୋର ତୁଟାଇ ପାରନ୍ତୁ ଧାନେ । ପଦ ।

ଖଳଜନବାଣୀ ସତ୍ୟ ପରି ମଣି ନ ଚାହିଁଲେ ହେଲେ ମୋତେ, ଘେନ ଚାରୁତର ମୁଖ- [illegible] ମୁଁ ନ ଚାହିଁବି କେମନ୍ତେ । ୧ । ଜାଣିଅଛି ଧ୍ରୁବ ମୋଠାରେ ପୂରୁବ ପରି

ନାହିଁ ହରି ସ୍ନେହ, ହେଲେ ହେଲେ ଯେବେ ମୁରଲୀବିରାବେ ପୁଲକନ୍ତା ନାହିଁ ଦେହ । ୨ । ଚନ୍ଦ୍ରକ ଲଲାମେ ଦେଖଇ ମୁଁ ପଛେ ଅନ୍ୟ ପଦ ଲାକ୍ଷା ରାଗ, ଇନ୍ଦ୍ର-ନୀଳମଣିମୟ ନ ଦିଶନ୍ତା ଯେବେ ମୋତେ ପ୍ରତିଦିଗ । ୩ । ଆହାର ବିହାର ନିଦ୍ରା ବେଶ ବିଷ ହେଉ ତାକୁ ମୁଁ ନ ଗଣେ, ତା ଦରଶନେ ଅନାଦର ବିହିଲେ ଅରୁଚି ନୁହନ୍ତା ପ୍ରାଣେ । ୪ । କାମୋଦୟ ଘନେ ଆମୋଦ ବର୍ଦ୍ଧନେ ତା ମୋହନ ମୃଦୁ ହାସ, ବଶ ନ କରାଇ ଯେବେ ଠଉରାଇ ଦିଅନ୍ତା ଧଇର୍ଯ୍ୟ ଲେଶ । ୫ । କେ କହୁଛି ତୋତେ ହୋଇଛି ନିକୁଞ୍ଜନିଳୟ ଦୁଆର ମନା, କେ କହେ ତୁ ବେଣୁପାଣି ପ୍ରାଣ ଏଣୁ ନିଶ୍ଚୟ ଜାଣିଲେ ସିନା । ୬ । ଅଷ୍ଟଦୁର୍ଗଧରାନାଥ କହନ୍ତି ସେ ଚତୁରମାନଙ୍କ ରଜା, ସରଣୀ ତାର କଳିଲେ ସିନା ହେବ ଧରଣୀନ୍ୟସ୍ତ କରଜା । ୭ ।

●

(୨୨୮)

## ରାଗ—ତୋଡ଼ିପରଜ—ଆଦିତାଳ

ରେ ସଙ୍ଗାତ, ତୁ ତ ଅନୁଭବୀ ନୋହୁ,
ସ୍ନେହଜାତ ସୁଖ ତା' ବିଚ୍ଛେଦ ଦୁଃଖ ଯେ ଜାଣେ ସେ ଆସି କହୁ । ଘୋଷା ।
ଅନୁବରତେ ଶରଣ ହୋଇଲା କି ବନଜ ପଲ୍ଲବାବଳି,
ଘନଶ୍ୟାମ ନାମ ବିନା ଦୁଃଖାନଳେ ମନ ଯାଉଅଛି ଜଳି । ୧ ।
ଚୋକୀଟାମାନଙ୍କ ଆଗସରିକି ମୁଁ ଟେକି ପାରୁ ନାହିଁ ମଥା,
ଟେକି ଦେଲେ ଭୁଲି ଫୁଲିଯିବ ବୋଲି ଏ କି ସଟାବଟା କଥା । ୨ ।
ସାକ୍ଷାତରେ ଲାକ୍ଷା ଦେଖିଛି କପୋଳେ ତା ଖ୍ୟାତ କରିବି କେତେ,
ବିଷ-ମକରନ୍ଦୁ ବଳି ପଡ଼ିଲାଣି କି ସମୁଝାଉଛୁ ମୋତେ । ୩ ।
ଟଳାଟଳି ହୋଇ ମରମରେ ମୋର ବଳିଆଇ କହୁଥାଉ,
ଖୁଆଦଣ୍ଡଖିଆ ଖରାପ କ୍ଷୀରରେ ସୁଆଦ ଥାଏ କି ଆଉ । ୪ ।
ନୀଳଚଳଚୂଳ ପ୍ରସାଦରୁ ହେଲେ ଟେକିଥିବ ତିନି ଥାଳି,
କବିରବି ରାୟଗୁରୁ ବୋଲେ ପ୍ରୀତି ଦଗାଦିଆ ବନମାଳୀ । ୫ ।

●

(୨୨୭) ଧାନେ—ଅଳ୍ପ ପରିମାଣରେ, ମୁଖ-କଳାକର—ମୁଖଚନ୍ଦ୍ର, ଧ୍ରୁବ—ନିଶ୍ଚିତ, ମୁରଳୀବିରାବେ—ବଂଶୀଧ୍ୱନିରେ, ଚନ୍ଦ୍ରକଲଲାମେ—ମୟୂରପୁଚ୍ଛ ଭୂଷଣରେ ।

(୨୨୯)

## ରାଗ—ତୋଡ଼ି ପରଜ, ତାଳ—ରୂପକ

ରେ ସଙ୍ଗାତ, ଦରିଦ୍ରନିଧିଙ୍କ ଦ୍ୟୁତି,
ଦେଖୁଥିଲେ ଦେଖୁଥିବାକୁ ମୋ ମନ ଧାଉଁଥାଏ ନିତି ନିତି । ଘୋଷା ।

ଦଶନ ବସନ ପଲ୍ଲବରେ ମଲ୍ଲୀ ରଖି ଦରସ୍ମିତ ଛଳେ; ଦଣ୍ଡକୁ ଦ୍ୟୁମଣି ଅସ୍ତ ହେବା ଜାଣି ବନୁ ବାହୁଡ଼ିବା ବେଳେ । ୧ । ଦକ୍ଷ କରେ ଧରି ମୋହନ ଚାତୁରୀ ବିଶାରଦ ବେଣୁଦଣ୍ଡ; ଦକ୍ଷେତର ପଦପଙ୍କେରୁହ ଯୁଗେ ମଣ୍ଡିଦେଲା କାଳେ ଦାଣ୍ଡ । ୨ । ଦେଇ ସାନ୍ଦୀପନି ମୁନୀନ୍ଦ୍ର ନନ୍ଦନେ ତା ଦକ୍ଷ କର ସାହସ; କୁତୁକେ ଶ୍ରୀଦାମ ପରିହାସକ୍ରମ କରିବା ବେଳେ ପ୍ରକାଶ । ୩ । ଦଳିତ ଲଳିତ ହରିତାଳଦେହ ସଉଧ ତନାବୀ ଚାହିଁ; ଦୁର୍ମଦ ବିଳାସେ ନାଚିବା ଲୀଳା ସେ ଲୋକତ୍ରୟେ ନାହିଁ ନାହିଁ । ୪ । ଦିଶିବ ଦୁଇଟା ନୟନକୁ କେତେ ମାଧୁରୀ ମୁଖଚାନ୍ଦର; ଦମ୍ୟଖୁରଉଡ଼ା ଭୂପରାଗବୁଡ଼ା ଶ୍ରୀଅଙ୍ଗଟି କି ସୁନ୍ଦର । ୫ । ଦଶପୁର ଘେରି ଚାଲନ୍ତି ବାଛୁରୀ ବଲ୍ଲବବାଳକ ଜନ; ଦେଖିବାକୁ ସେ ସମୟ ବାଲୁକେଶ ଜଗଦ୍ଦେବ କରେ ମନ । ୬ ।



(୨୩୦)

## ରାଗ—ତୋଡ଼ି ପରଜ—ଏକତାଳି

ରେ ସଙ୍ଗାତ, ନିନ୍ଦିଲେ ନିନ୍ଦିବେ ଲୋକେ,
ନୂଆ ବାରିବାହ ନୀଳ ଦେହ ସ୍ନେହ ବରଜିବି କି ପଲକେ । ଘୋଷା ।
କହି ଦିବାରାତି ବତାଇ ସୁନୀତି ଯେ ଯେତେ ମୋତେ ନିବାରୁ,
ମନକୁ କେ ମନା କରିବ ଯମୁନା ତଟକୁ ନିତି ଯିବାରୁ । ୧ ।
ମୋର ଏହି ମନ ହରୁଥିବି ଦିନ ହରିଗୁଣ ଗୁଣି ଗୁଣି,
କିଶୋର ରତନ କର ନିକେତନ-ବଂଶୀ ଗୀତ ଶୁଣି ଶୁଣି । ୨ ।

(୨୨୯) ଦ୍ୟୁମଣି—ସୂର୍ଯ୍ୟ, ଦକ୍ଷ କରେ—ଡାହାଣ ହାତରେ, ପଙ୍କେରୁହ—ପଦ୍ମ, ତନାବୀ—ଝରକା, ଦମ୍ୟ—ବାଛୁରି, ବଲ୍ଲବ—ଗଉଡ଼, ଭୂପରାଗ—ପୃଥିବୀର ଧୂଳି ।

ବଢ଼ି ଅକୀରତି କୁଳବତୀ ରୀତି ଭାଙ୍ଗିଲେ ପଛେ ଭାଙ୍ଗିବ
ବାଙ୍ଗିବାରୁ ନନ୍ଦସୁତର ସମନ୍ଦହାସିତ ମୁଖ ରାଜୀବ । ୩ ।
ମୋତେ ପଛେ ଗୁରୁଜନେ ରୋଷେ ଘରୁ ଘଉଡ଼ି ଦିଅନ୍ତୁ ପେଲି,
ଯାଇ ନିକୁଞ୍ଜକୁ ଖାଇ କି ଅମଳ ବାଇ ହୋଇଗଲା ବୋଲି । ୪ ।
ଆସୁଥିବି ଛଳ କରି ନିତି ଜଳ ନେବାକୁ ରବିସୂତାରୁ,
ନଟ ବେଶଧର ଅଧରୁ ମଧୁର ମଧୁ ପିଇଲା ଉଭାରୁ । ୫ ।
ଜଗଦେବ ଭାଷେ ଆନ ତ ନ ଦିଶେ ମୋର ଏ ତାପ ଭଙ୍ଗକୁ,
କରିଛି ଶରଣ ଏଣୁ ସେ ତରୁଣମଣି ଶ୍ରୀଅଙ୍ଗ ସଙ୍ଗକୁ । ୬ ।

●

## (୨୩୧)

ରେ ସଙ୍ଗାତ, ପ୍ରୀତିରୁ ନାହିଁ ମାଦକ
ଛାଡ଼ିବି ବୋଇଲେ ଛାଡ଼ି ତ ନୁହଇ
ହରଇ ଧୈର୍ଯ୍ୟ ବିବେକ । ୦ ।

କୁଳବତୀ ଅତି ହେଲେ ହେ ଯୁବତୀ
ହଜାଇ ହେମନ୍ତ ଯାକ
ଗୁରୁଜନ ଭୟ ଛାଡ଼ି କରେ ଲୟ
କେବଳ ହୃଦ ପଦକ । ୧ ।

ଘେରିଥିଲେ ଜନ ଡ଼େରିଥାଇ କର୍ଣ୍ଣ
ଶୁଣିବାକୁ ପ୍ରୀତିଡ଼ାକ
କହିବା ଲୋକକୁ ପ୍ରଶ୍ନ କରୁଥାଏ
ନୋହିବାରେ ପରିପାକ । ୨ ।

ଭସା ଏ ପ୍ରଳାପ ହସାଏ ଭଗାରୀ
ଲସାଇ ପକାଏ ଟେକ
ମଜାଇଲେ ମନ ଦେଖାଏ ସ୍ୱପନ
କରାଇ ଆକୁଳ ଶୋକ । ୩ ।

(୨୩୧) ହେମନ୍ତ—ହିମ୍ମତ, ଲସାଇ ପକାଏ—ନଷ୍ଟ କରିଦିଏ, ସିତା—ସାକର, କଂସାରି—ଶ୍ରୀକୃଷ୍ଣ, ପାବକ—ଅଗ୍ନି ।

କ୍ଷଣେ ହେଲେ ଭିନ୍ନ ନ ରୁଚଇ ଅନ୍ନ
ପିତା ହୁଏ ସିତା ଶାକ
ପାଇଲେ ହେଁ ନିନ୍ଦା କରେ ତାକୁ ଫନ୍ଦା
ହେଉଥାଏ ଦକ ଦକ । ୪ ।

ସଂସାରୀ ହେଲେ ତ କଂସାରି ପଦରେ
ନ ରଖେ କେହୁ ଆଟକ
ବୋଲେ ଜଳନ୍ଧର- ପତି ହେ ଶ୍ରୀମତୀ
ତା ଜନ୍ମ ପୋଡୁ ପାବକ । ୫ ।



(୨୩୨)

## ରାଗ—ପୂରବୀ—ଆଡ଼ତାଳି

ରେ ସଙ୍ଗାତ, ମକରଧ୍ୱଜ ବଦନେ
ଜନମେ ହରଷ ଦିନେ ଦିନେ ବେଶ ହେଲେ ସିନା ଭିନ୍ନେ ଭିନ୍ନେ । ଘୋଷା ।
ଭଙ୍ଗୀ ଲାବଣ୍ୟ ତଟିନୀ ନାଥ ବଡ଼ ରଙ୍ଗିଲା ସେ ନନ୍ଦପୁଅ
ରଙ୍ଗ ଶାଲୁ ଯୋଡ଼ି ଅଙ୍ଗକୁ ଉହାଡ଼ି ବଙ୍ଗଦେଶ ବେଶ ହୁଅ । ୧ ।
ଅକ୍ଷିଣ ମଣ୍ଡନ ଦକ୍ଷିଣ ଦେଶର ବେଶରେ ଶରଧା ବଳୁ
ବ୍ୟାପାରି ନିରାନ୍ତ୍ର ନୀବିବନ୍ଧେ ବ୍ରଜ ବାନ୍ଧବ ଅଙ୍ଗୁଳି ଚାଳୁ । ୨ ।
ଜରି ବୁଟାଦାର ଖିନିଖାପ ସାର କୁଞ୍ଚ ମହୀଯାଏ ଲମ୍ବୁ
ମଡ଼ିଆଳ ଦେଶ ଛଡ଼ିଆ-ଡମ୍ବରୁ ଶ୍ୟାମ ତୋ ଚରଣ ଚୁମ୍ବୁ । ୩ ।
ପାଇଜାମା ଜାମା ବନ୍ଧ ବକ୍ଷ ଲିମା ହସ୍ତିନୀ ମସ୍ତକ ଟାଲି
ଘନଶାଳ ମାଳା କୁସୁମ୍ବା ପଗଡ଼ି ଖସି ଖସି ଆଲବେଲି । ୪ ।
ଜଗଦେବ ବୋଲେ କିଶୋରୀ ଭାଷିଲେ ହସି କି ଫଳ ବଶରୁ
ବେଶ ବିନା ଜୀବିତେଶଙ୍କର ଅନୁରାଗ ଏବେ ସରୁ । ୫ ।



## (୨୩୩)

## ରାଗ—ତୋଡ଼ିପରଜ

ରେ ସଙ୍ଗାତ, ରୁଷି ମୁଁ ବସିଲି ଗେଲେ, ମନ ମନସିଜ ଚକ୍ଷୁ ମୁଖ ଭୁଜ ଏମାନେ ମୋ ଶତ୍ରୁ ହେଲେ ରେ । ଘୋଷା ।

ଦେଲି ଯେ ଗୁମାନ ଲାଞ୍ଛ ତୁ ଚଞ୍ଚଳ ନୁହ ମନ ବୋଲି କହି, କେବେ ନ ଛୁଇଁଲା ସେ ବ୍ରଜ ଛଇଳା ଶୋଭା ସମ୍ପତ୍ତିରେ ରହି ରେ । ୧ । ରଖ ଧୃତି ମୋର ବୋଇଲି ଯେ ଛାର ମାରକୁ ପାଣି ପ୍ରସାରି, ବିନ୍ଧି କୋଟି କୋଟି ବାଣ ନେଲା ହଟି ଦେଲା ମୋ ଆବୁର ସାରି ରେ । ୨ । ତଳ କଲି ମଥା ଜାଣି ଚପଳତା-ସମ୍ପନ୍ନ ବୋଲି ମୋ ଡୋଳା, ନ ପଡ଼ି ଧରାରେ ମୁରଲୀଧରାରେ ରସି ରସି କଲା ଖେଳା ରେ । ୩ । ଏ ପାପ ଲପନ ଦିଶୁ ଥାଏ ଆନ ବେଳେ ସାଭିମାନ ପରି, ଜାଣି ସେହି କାଳ ରହିଲା କେବଳ ହାସ ଉଲ୍ଲାସରେ ପୂରି ରେ । ୪ । ଭିଡ଼ି ଯେ ରଖିଲି ତେବେ ଭୁଜବଲ୍ଲୀ ତାହାରି ଆଶ୍ଲେଷେ ଟାକି, ଟେକି ଯେ ହୋଇଲା କାଳେ ନ ରହିଲା ସ୍ତନମୂଳଚେଳ ବାକି ରେ । ୫ । ବୋଲେ ଶ୍ରୀମୁକୁନ୍ଦଦେବ ଅତି ଯତ୍ନେ ବୁଜିଲି ନୟନ ପୁଣି, ଜାଣେ କି ମନ୍ତର ହେଲା ମୋ ଅନ୍ତରଗତ ସେହି ନୀଳମଣି ॥



## (୨୩୪)

## ରାଗ—ପୂରବୀ

ରେ ସଙ୍ଗାତ, ସମ୍ଭାଳି ନ ପାରେ ଆଉ,

ଅମ୍ଭୋରୁହାକ୍ଷର ଖେଳା କଟାକ୍ଷର ଦମ୍ଭୋଳିରୁ ବଡ଼ ଦାଉ । ଘୋଷା ।

---

(୨୩୩) ମନସିଜ—କନ୍ଦର୍ପ, ମୁଁ ରୁଷି ବସିବାବେଳେ ମୋ ମନ, କନ୍ଦର୍ପ, ମୋ ଚକ୍ଷୁ, ମୁଖ ଓ ଭୁଜ—ଏହି ପାଞ୍ଚୋଟି ମୋର ଶତ୍ରୁ ହେଲେ ଅର୍ଥାତ୍ ମୋ ରୁଷି ବସିବା କାର୍ଯ୍ୟ ଏମାନେ ବ୍ୟର୍ଥ କରିଦେଲେ (ତଳ ପାଞ୍ଚପଦରେ କ୍ରମାନ୍ୱୟରେ ଏମାନଙ୍କ କାର୍ଯ୍ୟ ବର୍ଣ୍ଣନା କରାଯାଇଅଛି), ଆବୁର—ମହତ୍ତ୍ୱ, ମୁରଲୀଧରା—ଶ୍ରୀକୃଷ୍ଣ, ଲପନ—ମୁଖ, ସାଭିମାନ—ଅଭିମାନଯୁକ୍ତ, ଭୁଜବଲ୍ଲୀ—ବାହୁଲତା, ଆଶ୍ଲେଷ—ଆଲିଙ୍ଗନ, ଚେଳ—ବସ୍ତ୍ର ।

ଦୂରରୁ ପଡ଼ି ବୁଡ଼ିଯାଏ ହୃଦରେ ଲୋଡ଼ିଲେ ନ ଦିଶେ ଆଉ, ମରମରେ ପଶି ଦରମରା କରେ ସରସ ସ୍ମରଣ ନୋହୁ । ୧ । ଶବଦ ନ ଥାଇ ସ୍ତବଧ କରାଇ ସେ କି ରତି-ରଣ-ସାହୁ, ମିଆଦ ଟାଳିଲା ପିଆଦା ପରାଏ ମାର ଝିଙ୍କେ ଆସୁ ଯାଉ । ୨ । ନବଘନ ଅଙ୍ଗ ବିଶେଷ ତରଙ୍ଗ ରଙ୍ଗ ଦିଶେ ଦାଉ ଦାଉ, ସୁଦିନ କୁଦିନ କରାଏ ଦୁର୍ଦ୍ଦିନ ଥରେ ଅନାଉଁ ଅନାଉଁ । ୩ । ଗଲେ ହେଲେ ଜାତି ମହତ୍ତ୍ୱ ସମ୍ପତ୍ତି ଫିଟି ତୁଟି ଲୁଟିଯାଉ, ଗଜପତି ଭାଷି ହୁଅ ତାଙ୍କ ଦାସୀ ପିଣ୍ଡେ ପ୍ରାଣ ଥାଉ ଥାଉ । ୪ ।



## (୨୩୫)

## ରାଗ—ତୋଡ଼ି ପରଜ

ରେ ସଙ୍ଗାତ, ସରିଗଲି ଲାଜେ ଆଜ,

କରି ବିଲୋକନ କାଲି କେହି ଘନଶ୍ୟାମ ମୁଖ-ଦ୍ୱିଜରାଜ । ଘୋଷା ।

ସେ ଶୋଭା ଉଦିତ ସମ୍ଭୋଗରେ ଚିତ୍ତ ପୂରା ନ ଥିବାରୁ ମୋର; ରଜନୀ ରଥାଙ୍ଗୀ ଭଙ୍ଗୀ ସିନା ଅଙ୍ଗୀକାର କରେ ନିରନ୍ତର ରେ । ୧ । ନୀଳ ସୁଧାସିନ୍ଧୁ ପରି ତ ମୋ ବନ୍ଧୁ ଦିଶୁଥାନ୍ତି ଗୋଟିଯାକ; କେବଳ ଅଧର ଚୁମ୍ବିବାରୁ ମୋର ନ ରହଇ ତ ବିବେକ ରେ । ୨ । ମୁଁ ରତିଭବନ ଭିତରେ ମୋହନ ମୂରତିକି ଯତ୍ନେ ଲେଖି; ଚୁମ୍ବୁଥିଲି ରଙ୍କ ପରି ହରିଣାଙ୍କ ତୁଲ୍ୟ ମୁଖେ ବୁଜି ଆଖି ରେ । ୩ । ମୋହିତ ହେବାରୁ ସେ ସୁଖ ଅମଳେ ନୋହିଥିଲି ସାବଧାନ; କେହି ଆସି ଶ୍ୟାମ ଚୁମ୍ବିଲେ ଚରମଦେଶେ ରହି ମୋ ବଦନ ରେ । ୪ । ଲେଖାରେ ହେଲେ ତ ଲେଖାମାନଙ୍କରେ ଲେଖାରେ ନୋହି ସେ ଠାଣି; ଝଟ କରି ଅବା ଲିଭାଇ ଦିଅନ୍ତି ଅଟକି ରହିଲା ପାଣି ରେ । ୫ । ଯାହା ହେଲା ମୋର ବାହାର ଭିତର ମନ୍ଦାକ୍ଷ ଭୟରେ ପୂରି; ଅଷ୍ଟଦୁର୍ଗ ହରିହୟ ବୋଲେ ଚୋରି ଧରା ପଡ଼ିଗଲା ପରି ରେ । ୬ ।



---

(୨୩୪) ଅମ୍ଭୋରୁହାକ୍ଷ—ପଦ୍ମନେତ୍ର, ଦମ୍ଭୋଳି—ବଜ୍ର, ଅଙ୍ଗବିଶେଷ ତରଙ୍ଗ ରଙ୍ଗ—ଅଙ୍ଗର ବିଶେଷ ଲାବଣ୍ୟ ମାଧୁରୀ ।

(୨୩୫) ଦ୍ୱିଜରାଜ—ଚନ୍ଦ୍ର, ରଜନୀରଥାଙ୍ଗୀଭଙ୍ଗୀ—ରାତିରେ ଚକ୍ରବାକୀ ପରି ବ୍ୟାକୁଳ; ହରିଣାଙ୍କ—ଚନ୍ଦ୍ର, ଚରମଦେଶ—ପୃଷ୍ଠଭାଗ, ଲେଖାମାନଙ୍କରେ—ଦେବତାଙ୍କ ମଧ୍ୟରେ; ମନ୍ଦାକ୍ଷ—ଲଜ୍ଜା; ହରିହୟ—ଇନ୍ଦ୍ର, ଏଠାରେ ରାଜା ।

(୨୩୬)

## ରାଗ—ତୋଡ଼ି ପରଜ

ରେ ସଙ୍ଗାତ, ସେ ସିନା ବସିବ ରୁଷି

ସେ ଶିଖଣ୍ଡଚୂଳ ନୟନ-କୁନ୍ତରେ ଦିନେ ନୋହିଥିବ ଭୁଷି । ପଦ ।

ତରଣିଜା ତଟ, ସରଣିରେ ଭେଟ, ଯେ ରମଣୀ ହୋଇ ନାହିଁ; ନୀଳ ବାରି-ବାହ-ଦଳନ ବିଗ୍ରହ ଅଳପ ନ ଥିବ ଚାହିଁ  ରେ । ୧ । ରସିକା-ବୃନ୍ଦରେ, ବସି ଆନନ୍ଦରେ, ରସି ଶ୍ୟାମ ପ୍ରେମ ଗୁଣ; ଯେ ଶୁଣି ନ ଥିବ, ବସୁଧାରେ ଥିବ, ପଶୁରୁ ହୋଇ ଅଜାଣ ରେ । ୨ । ବସାଇଣ ପାଶେ, ରସାଇ ହରଷେ, ହସାଇ ଉତ୍ସୁକ ମନେ; ପୀଡ଼ାଇ ଓଷ୍ଠକୁ, ଭିଡ଼ାଇ ଅଙ୍ଗକୁ, ଜଡ଼ାଇ ନ ଥିବ ଦିନେ ରେ । ୩ । ବସନ ଲୁଟିଆ, ରସବିନୋଦିଆ, ରସରେ ନ ଥିଲେ ରସି; ଦୂରରୁ ଦୁର୍ଲ୍ଲଭ, ମୁରଲୀର ରବ, ଶ୍ରବଣେ ନ ଥିଲେ ପଶି ରେ । ୪ । ଜଳନ୍ତର ଇନ୍ଦ୍ର ନୃପ ରାମଚନ୍ଦ୍ର, ଛୋଟରାୟ ରସେ ଭଣି; ସ୍ମର-ତରୁଆର ଧାରରେ ଶରୀର ଥରେ ନୋହିଥିଲେ ହାଣି ରେ । ୫ ।



(୨୩୭)

## ରାଗ—ତୋଡ଼ିପରଜ—ଆଦିତାଳ

ରେ ସଙ୍ଗିନୀ, କାହାର ନୁହଁଇ କେହି

ଜାଣିଥିବୁ ଯେହି ଯାହାର ତଳପେ ଯାହାର ହୁଅଇ କେହି । ଘୋଷା ।

ପ୍ରୀତି ପ୍ରତିବନ୍ଧୁ ଯାହା ମଣି ବନ୍ଧୁ ଓହରି ପଡ଼ଇ ନାଡ଼ି

ଭାସିଯାଏ ଶୋକ ସିନ୍ଧୁରେ ବିବେକ ତାହାକୁ ମାତ୍ର କି ଛାଡ଼ି । ୧ ।

ସ୍ୱାଦୁମୟ ଗୋଟି ଜାକୁ ଜାକୁ ଯେ ଟି ନ ଘେନଇ ଆଗପଛ

ସ୍ନେହ ଅବାହାର ଜୀବିତ ଯାହାର ତାହା ବିନା ସବୁ ମିଛ । ୨ ।

ଏ ମୋହର ଲକ୍ଷ ମୋହରେ ଏ ପକ୍ଷ ଏହା ଘେନି ଏତେ ଶ୍ରମ

ଏହା ଜଳ୍ପିବାର ସୁଖ କଳ୍ପିବାର କ୍ରମରେ ଏ ସବୁ ଭ୍ରମ । ୩ ।

ପ୍ରୀତିଭଙ୍ଗ କ୍ଷଣ ସ୍ୱପ୍ରାଣ ପ୍ରମାଣ ତୁଲ୍ୟ ନ ଘେନନ୍ତି ଜନେ
ଏଣୁ ନିଜେ ତୋର ଯାକ ଜାଣ ପର କେବଳ ଘେନିଲେ ମନେ । ୪ ।
ଏପରି ଶ୍ରୀମତୀ ଶ୍ରୀମୁଖ ଭାରତୀ ଶୁଣି ହେଲେ ସଖୀ ସୁଖୀ
ବନ୍ଦିଲେ ଶ୍ରୀ ହରିଚନ୍ଦନ କିଶୋରୀଙ୍କର ପଦେ ଚିତ୍ତ ରଖି । ୫ ।



## (୨୩୮)

## ରାଗ—ତୋଡ଼ି ପରଜ, ଏକତାଳି

ରେ ସଜନି ଆଜ ତୋର ଏ କି ରୀତି
ଗଭାଫୁଲ ପାଦେ ମରଦିଲେ ମଦେ ଲଭି ସିନା ଅକୀରତି ରେ । ପଦ ।

ଯାହା ପାଇଁ ତପ, କ୍ଳେଶରେ ପ୍ରତିପ, ଚନ୍ଦ୍ରପରି ମ୍ଳାନ ହେଉ, ଏବେ ସେ ଶରଣ, ପଶିଲେ ଚରଣ-କମଳେ ତ ପେଲି ଦେଉ ରେ । ୧ । ଥରେ ଯା କଟାକ୍ଷ ଲକ୍ଷ୍ୟ ହେଲେ ଲକ୍ଷ ଇନ୍ଦ୍ରପଦ ମଣୁ ଊଣା, ତାହାକୁ ନିଷେଧୁ କେଉଁ ଅପରାଧୁ ନ ବହି ଲବେ କରୁଣା । ୨ । ଲୋଡ଼ି ଯାହା ପ୍ରୀତି ଧରୁଥାଉ ଦୂତି କର ବଡ଼ପଣ ଛାଡ଼ି, ବିନୟେ ସେ ପୁଣି ଧରୁଛନ୍ତି ପାଣି ରୋଷେ ଦେଉଛୁ ଛିଞ୍ଚାଡ଼ି । ୩ । ଯାହା ଦେଖା ଆଶେ, ନ ଛାଡୁ ନିମିଷେ, ସଉଧ ପଞ୍ଜର ପାଖ, ତା ଚାଟୁ ଚାତୁରୀ ନ ରୁଚିଲା ପରି କାହିଁକି ମୋଡୁ ଶ୍ରୀମୁଖ । ୪ । ଯାହା ରସେ ରସି ନିକୁଞ୍ଜକୁ ନିଶି ନିବିଡ଼ ଅନ୍ଧାରେ ଯାଉ, ସେ କିଶୋର କୋଳେ ଧରୁଛନ୍ତି ତିଳେ ଭିଡ଼ି ହୃଦେ ନ ଜଡ଼ାଉ । ୫ । ଚିନ୍ତାମଣି କରଗତ ହେଲା ପରି ହୋଇଲେ ହେଲେ କିତବ, ମୁରୁଛିବ ଧନ କି ନନ୍ଦନନ୍ଦନ କହେ ଶ୍ରୀମୁକୁନ୍ଦଦେବ । ୬ ।



## (୨୩୯)

## ରାଗ—ପୂରବୀ

ରେ ସୁମୁଖି ! ପଚାରୁଚୁ କେଉଁ ଭଲ ?
ଏଣିକି ଜୀବନ ଥିଲେ ହେବ ମନ ଏହିପରି କଳବଲ । ୦ ।

(୨୩୯) କୁଳିଶ ବିଳାସ ଦାଉ—ବଜ୍ରପାତର ଦାଉ, ଲାକ୍ଷା—ଅଳତା, ଲଲାମ—ମଥା

ଗିରି-ଶିରେ ପରି ଶିରୀଷରେ ହେଲା କୁଳିଶ ବିଳାସ ଦାଉ;
କ୍ଷୀର ସରେ ତିକ୍ତ କଟୁ ହେଲା ଯୁକ୍ତ, କି ରସ ତହିରେ ଆଉ ? । ୧ ।
ରଞ୍ଜି ଲଳିତ ଚରଣ ଦଣ୍ଡେ ଲାକ୍ଷା ଖଞ୍ଜି ଲଲାମକୁ ମୁଣ୍ଡେ
ସଂଖାଳି ମୁଁ କରିଥିଲି ଯାହାକୁ, ସେ ସଂଖୁଳିଲା ନାହିଁ ତୁଣ୍ଡେ ! । ୨ ।
ଗୁରୁଜନ ମନା କଲେ ହେଲେ ଛପି ପୂର୍ବୁଁ ଯେବେ ବିଜେ କରି
ସରୋବର ତୀରେ ଦେଖାହେବା ସୁଖ ବରାବର ଗଲା ସରି । ୩ ।
ନାହିଁ ଯେ ଆଉ ସେ ଚାହିଁବାର ସ୍ନେହ କୁଞ୍ଜର ପଞ୍ଜର ପାଶେ,
ଚାହିଁଲେ ମୁଁ ମୁଖ ବଙ୍କାଇ ନେବାର ସପ୍ରଣୟ ଲଜ୍ଜା-ହାସେ । ୪ ।
କଳାରୁ ଇତର ବର୍ଣ୍ଣେ ଯା' ଚିତ୍ତର ବୋଧ ନୋହୁଥାଏ ଲବେ,
ଅରୁଚି କରୁଚି କସ୍ତୂରୀ କଜ୍ଜ୍ୱଳ ଇନ୍ଦୀବର ଯେବେ ଏବେ । ୫ ।
ହେଳି-କନ୍ୟା କୂଳ-କେଳି କଲା ଫଳ ତା' ଚିବୁକ ଚୁମ୍ବ ସିନା,
ଠଉରିବ କି ସେ କନକ-କେତକୀ ଗଉରୀ କରୁଣା ବିନା ? । ୬ ।
ଘନଶ୍ୟାମ ଦୁଃଖୀ ହେବା ଦେଖି ସଖୀ ଜଣାଇଁଲା "କ୍ଷମା ହେଉ",
ଏଣିକି ଅଭୀଷ୍ଟ ସିଦ୍ଧି ହେବ ଅଷ୍ଟଦୁର୍ଗ-ପ୍ରଭୁ ସାକ୍ଷୀ ଥାଉ । ୭ ।



(୨୪୦)

## ରାଗ—ବଙ୍ଗଳାଶ୍ରୀ—ଏକତାଳି

ଲାଗିବାର ବାର ମୁଁ ଗହଣେ ଚନ୍ଦ୍ରମୁଖ ହେ,
ମାଗିବାର ଏତେ ମାତ୍ର ଦିବ୍ୟଚିତ୍ତେ ରଖ ହେ ॥ ଘୋଷା ॥
ମୁଁ ତିନି ଥର ଜଣାଉଅଛି କାଳଗତି ହେ
ଦୂତୀ ଖୁସାମତୀ ନ ଜାଣେ ସେ ମାନବତୀ ହେ,
କାମର ଜୀବିକାଟି ସେ ପ୍ରବୀଣା
ତା ମରଜି ଏକା ତୁମ୍ଭଙ୍କୁ ଜଣା
ଆପଣ ତା' ପଣ ସିନା କଳିବ
ତା' ମନ ପୁଆଇ ପରିପାଳିବ । ୧ ।

---

ପାଇଁ ଏକପ୍ରକାର ଅଳଙ୍କାର, ଇନ୍ଦୀବର—ନୀଳ କଇଁ, ହେଳି କନ୍ୟା-କୂଳ—ସୂର୍ଯ୍ୟ କନ୍ୟା ଯମୁନା ନଦୀ ତଟ, ଗଉରୀ—ରାଧାଙ୍କ ଅର୍ଥରେ ।

ପେଟରେ ପୂରିଅଛି ଏ ପୁଟ ଭେଦନ ହେ
ବାରିଜାକ୍ଷ କେହି ଉପକାରୀ ନାହିଁ ଜନ ହେ,
ଖୁଣ ଖୋଜୁଥିବେ ରଜନୀ ଦିବା
ଗୁଣ ଗ୍ରହଣ କେ କରୁଛି ଅବା ?
କଳାଭଗତୀକି କଣ୍ଡ ଭାଗରେ
ଭଲ ଭଲ ବୋଲୁଥିବେ ଆଗରେ । ୨ ।
କିଶୋରୀ ସବୁରି ତୁଲେ ପ୍ରେମକୁ ମନାସେ ହେ
ଖଳ ଖେଳେ ତା'ଠାରୁ ତୁମ୍ଭର ପ୍ରେମ ନାଶେ ହେ
ବନ୍ଧୁ ହେ ତା' ଉଦୟ କେ ସହିବ
ଛାମୁରେ ତା' ଆଗେ କେ କିସ ହେବ
କସ୍ତୂରୀ ଆଗେ କି ମୁସ୍ତକ ବାସେ
ଦୀପ କି ଦିଶଇ ମଶାଲ ପାଶେ । ୩ ।
ଉଣା ହେଲେ ତାହାଠାରୁ ନାଥ ଗଉରବ ହେ
ଖଞ୍ଜନାକ୍ଷୀ ଯେବେ ନିକୁଞ୍ଜରୁ ଫେରି ଯିବ ହେ,
କୋଟିନିଧି ଗୋଟି ହୋଇଲା ପରି
ନିରସ ମନରେ ହରଷ ଭରି,
ବାଳୀକି ମୂରୁଖ ଆଳି ଗୁଆଳୀ
ଟାଳି ନ ଦିଅନ୍ତୁ ବଜାଇ ତାଳି । ୪ ।
ଯାହା ବାହା ଅମର ଭୂରୁହ ଅନାତପେ ହେ
ଅଛନ୍ତି ଅସଂଖ୍ୟ ଧେନୁ ବତ୍ସା ଗୋପୀ ଗୋପେ ହେ
ସେ ବାହୁତଳେ ଗୋଟିଏ କିଶୋରୀ
ସେବା ନ ପାଇ ଗଲା ଅପସରି
ଏପରି ପରିବାଦ ନ ପ୍ରସରୁ
ସରୁମଧ୍ୟାର ମନୁ ଚିନ୍ତା ସରୁ । ୫ ।
ଅହିନକୁ ନ ଯା ଲଜ୍ଜାନିଧି ଏ ସର୍ବଥା ହେ
କହି ଜଣାଇଲି ପ୍ରଭୁ ଆଗେ ନିଜ ବ୍ୟଥା ହେ
ଅହି ନକୁଳ ରୀତିରୁ ଡ଼ରଇ
ମହୀ ନଖରେ ନ ଚିରି ପାରଇ
ଇଷ୍ଟଙ୍କ ଅନୁମତି ଏକା ଜାଣେ
ଅଷ୍ଟଦୁର୍ଗ ମହୀମହେନ୍ଦ୍ର ଭଣେ । ୬ ।

●

## (୨୪୧)

## ରାଗ—କାମୋଦୀ

ଶିଖଣ୍ଡମଣ୍ଡନ କି ବିହିଲେ ଗୋ, ଅଖଣ୍ଡ ଦଣ୍ଡକୁ ଯେ ସହିଲେ ଗୋ ।
ଏ ଖଣ୍ଡ ଏଥେ ପୂରି ରହିଛି ବୋଲି କରି
ଜଣା ନ ଥିଲା ପରା ପହିଲେ ଗୋ । ଘୋଷା ।

ଛାମୁକୁ ନିତି ଯାଇ ତେତେ ଯେ ସମଜାଇ ଶୁଣି ସଂଯତ ଭବେ ନୋହିଲେ ଗୋ, ଜାଇଦଳକୁ ସହି ନ କରି ଏବେ କେହି ମହୀଧ୍ରବର ଭର ବହିଲେ ଗୋ । ୧ । ନବୀନ ସୁକୁମାର ସୁଖବଲ୍ଲୀ କି ଛାର ଖଳଖେଳନାନଳେ ଦହିଲେ ଗୋ, ଏତେ ସରି ବିପଦେ ପୁଣି ଘେନାଇ ପଦେ କହିବା ଯାଏ ନିକି ରହିଲେ ଗୋ । ୨ । ବରଜି ଆଖଣ୍ଡଳଧେନୁକୁ ଛାଗଗଳ ଚମକୁ ଚିର ବୋଲି ଦୁହିଁଲେ ଗୋ, ରଖିଛି-ବୀଣାବାଣୀ ମୋହନବିଦ୍ୟା ଜାଣି କାହାକୁ ସେ କିଶୋର ମୋହିଲେ ଗୋ । ୩ । ଶଙ୍କରଙ୍କର ଜାଇମାଳା ଧୂନୀରୁ ଯାଇ ପଙ୍କିଳପୁରେ ଅବଗାହିଲେ ଗୋ, ସିନ୍ଧୁରେ ଅନାଦର ରଚି ଶ୍ୟାମସୁନ୍ଦର ଅନ୍ଧୁରେ ପରା ତରୀ ବାହିଲେ ଗୋ । ୪ । ନନ୍ଦନନ୍ଦନ ଦେହ ଦେଉ ଯେ ଥିବ ଦାହ ଚନ୍ଦନ ପ୍ରଭଞ୍ଜନ ବହିଲେ ଗୋ, ଏ ରସେ ଅଷ୍ଟଦୁର୍ଗ ଧରାବଳୟସ୍ୱର୍ଗ-ମଣ୍ଡଳ ଆଖଣ୍ଡଳ କହିଲେ ଗୋ । ୫ ।



## (୨୪୨)

## ରାଗ—ଧନାଶ୍ରୀ

'ଶ୍ୟାମ'-ଅପବାଦ ଯେବେ ହେଲା ହେଉ ମା !
ଯେ ଯାହା ବୋଲିବ ପଛେ ବୋଲୁଥାଉ ମା । ୦ ।

---

(୨୪୧) ଶିଖଣ୍ଡମଣ୍ଡନ—ମୟୂରପୁଚ୍ଛ ଭୂଷଣଧାରୀ ଶ୍ରୀକୃଷ୍ଣ; ସହି ନ କରି—ନ ସହି (ପ୍ରାଚୀନ ପ୍ରୟୋଗ); ମହୀଧ୍ରବର—ବଡ଼ ପର୍ବତ; ସୁଖବଲ୍ଲୀ—ସୁଖରୂପ ଲତା; ଆଖଣ୍ଡଳଧେନୁ—କାମଧେନୁ; ଶଙ୍କରଙ୍କର ଜାଇମାଳା ଧୂନୀ—ମହାଦେବଙ୍କ ମସ୍ତକରେ ଜାଇମାଳ ପରି ହୋଇଥିବା ନଦୀ, ଗଙ୍ଗା; ପଙ୍କିଳପୁରେ—ପଙ୍କୁଆ ପାଣିରେ; ଅନ୍ଧୁ—କୂଅ ।

(୨୪୨) ମଜ୍ଜାରେ—ଅନ୍ତରତମ ସ୍ଥାନରେ, ଦେହଳୀ—ଏରୁଣ୍ଡି, ଭଟାଚାର—ଭାଟରଳି ଖରାପ ଆଚରଣ ।

ମଜାରେ ନାହିଁ ମୋ' ଭୀତି ବଜାର ବୁଲିବା ଜାତି
ହଜାର ଦୁଆରେ ଦୁଧ ବିକିଯାଉଁ ମା ।। ୧ ।
ପାଟକ ଜାତି ସହଜ, ହାଟକୁ ଗଲେ କି ଲାଜ ?
ବାଟରେ ଦେଖିଲେ କେତେ ଆଡ଼ ହେଉ ମା ? । ୨ ।
ଦେହଳୀ ମୁହଁରୁ ଡେଇଁ ବିହ୍ୱଳି ନ ଯାଏ କେହି
ପହିଲି ଶାଶୂ ନଣନ୍ଦ ଥାଉ ଥାଉ ମା ।। ୩ ।
ହଟା ବସାଇଣ ରାଣ୍ଡେ ଭଟାଚାର କରି ଦାଣ୍ଡେ
ବାଟ ତ ଚଲାଇ ନ ପାରିବେ ଆଉ ମା ।। ୪ ।
'ଛୋଟରାୟ' ଭାବି ବୋଲେ ଅପବାଦ ହେଉ ହେଲେ,
ସେହି କୃଷ୍ଣ ଚରଣେ ମୋ' ଚିତ୍ତ ଥାଉ ମା ।। ୫ ।



## (୨୪୩)

ଶ୍ୟାମ କେଡ଼େ ଅବୁଝାଣ, ତା ଲାଗି ଯିବ ଏ ପ୍ରାଣ ଗୋ । ପଦ ।

ଚୋରପଣେ ଆସି ମୋର ପାଶେ ବସି ଘୋର ଆଚରଇ ଟାଣ ଗୋ । ସ୍ମର ମରଦଇ ତା ବଚନ ପାଇ ବିଷମ ଶର ପଠାଣ ଗୋ । ୧ । ପଟାଇ ଦେବାକୁ ଅଭିଳାଷ ପଳ ନଚାଇ ଭୂରୁ କମାଣ ଗୋ; ଫଟାଇ ଦିଅଇ ଧୃତିକି ପ୍ରହାରି କଟାକ୍ଷ କପଟବାଣ ଗୋ । ୨ । ଗୋଟିଏ ଗୋଟିଏ ଅଳପ କଥାକୁ କୋଟିଏ ପକାଏ ରାଣ ଗୋ; ସରେ ସେହି ଅବସରେ ସବୁ ସହି କରେ ଯେଡ଼େ ହଇରାଣ ଗୋ । ୩ । ଜମି ରହେ ମନ ତା ଭଙ୍ଗୀରେ କାହିଁ ନ ମିଳଇ ପରିତ୍ରାଣ ଗୋ; ଲାଜବିହଙ୍ଗକୁ ଝାମ୍ପଇ ତା ଶୋଭାଦମ୍ଭଚପଳ ସଞ୍ଚାଣ ଗୋ । ୪ । ଜଣାଇଲେ ସଖୀ ଧୂର୍ତ୍ତ ସେ ଭୁଜଙ୍ଗଫଟାନାଟୁଆ ପ୍ରମାଣ ଗୋ; ଜଗଦ୍ଦେବ କହେ ତା ସ୍ନେହ ବିରହେ ପବିପାତ ଭଲ ଜାଣ ଗୋ । ୫ ।



(୨୪୩) ଭୂରୁକମାଣ—ଭ୍ରୂଲତାରୂପ ଧନୁ, ଭୁଜଙ୍ଗଫଟାନାଟୁଆ—କାଳିୟ ଫଣାଉପରେ ନୃତ୍ୟକାରୀ, ପବି—ବଜ୍ର ।

## (୨୪୪)

## ରାଗ—ସାରଙ୍ଗ, ଝୁଲା

ଶ୍ୟାମ ତୁ ଏଣିକି ଛାଉଲି ଛାଡ଼
ହୋଇବଟି ଆଜି ଆଖର ମାଡ଼ ॥
ଆଳି ମୋତେ ଗାଳିଦେବ କରମାଳି ପୂଜାକୁ
ମୁଁ ଧରିଯିବି ଯୋଗାଡ଼,
ଅଟଳୀ ବୋଲି ଯେ ଭିଡ଼ି ଦେଇ ଭୂବେ
ମୋ ତନୁ ଅତନୁ ଜାତ ଉଜାଡ଼ । ୧ ।
ନୂଆ ଦୁକୂଳ ମୁଁ ଉରେ ଧରିଅଛି
ଛୁଆଁଇ କରି ତୁ ନ ବିଗାଡ଼,
ଡ଼ର ଛାଡ଼ି ମନ ପର ଭୂଆସୁଣୀ
ଘରବୁଡ଼ା କଥା ଅନିଗାଡ଼ । ୨ ।
ଅନାଇଁ ରହିଲି ତତେ ଚାହିଁ ହାତେ
ପକାଇ ଦେଲି ଯେ ନାହିଁ କବାଡ଼
ଖଣ୍ଡିଦେଇ ମୃଦୁ ଗଣ୍ଡେ ଯେ ବସନ
ଛାଡ଼ିଯିବ ହୋଇ ଅବାଡ଼ । ୩ ।
କଅଁଳା ପୁଅ ତୁ ରାତିଯାକ ବୁଲୁ
ନ'ଥର ଡେଉଁ ତୁ ପଥରବାଡ଼,
ଚାରିପହର ଯେ ବେଶ୍ୟା ଘର ପରି
କଲୁ ମୋ ଶାଶୁଙ୍କ ଘର ଖୁଆଡ଼ । ୪ ।
ତୋର ବାପ ଗୋପ ନଗରର ଭୂପ
ହେରୁ ନ ଥିଲେ ହେଁ ହେଟ ତିଆଡ଼
ସେ ସହି ଧସିଲେ ସହି ହେବ କେତେ
ସେ ସହିବ ତ ଚାହାଣୀ ତିଆଡ଼ । ୫ ।
ନନ୍ଦଘରେ ଯେଉଁ ସୁନ୍ଦରୀ କେ ଥିବ
ତାର ପାଇଁ ଫୁଲଶେଯ ସଜାଡ଼
କବିରବି ବୋଲେ ଟାପରାଟାପରି
ଯେବେ ଥିବ ତା' ଉପରେ ଅଜାଡ଼ । ୬ ।



## (୨୪୫)

## ରାଗ—ଭୈରବୀ, ତାଳ—ଆଠତାଳି

ଶ୍ୟାମସମ କମନୀୟ ନାହିଁ ଆଉ,

ତା ବାହୁଭିଡ଼ାରେ ମୋର ଦିନ ଯାଉ । ଘୋଷା ।

କି ସୁନ୍ଦର ପୀତପଟ, ତ୍ରିଭଙ୍ଗ ମୁରଲୀନଟ, ତା ଶିର ମୁକୁଟ ଦିଶେ ଦାଉ ଦାଉ । ୧ । ଆଳି ମଙ୍ଗଳାଙ୍କୁ ଜଣା, ଥିଲେ ନ ଥିଲେ କରୁଣା, ନୟନସମ୍ମୁଖ ମୋର ଜୀଇଥାଉ । ୨ । ପଡ଼ିଗଲେ ତା ନଜରେ, ମଦନ ମାଦକ ଶରେ, ନାରୀ ହୃଦୟରୁ ଖସି ପଡେ ହାଉ । ୩ । ନିନ୍ଦିଲେ ନିନ୍ଦନ୍ତୁ ଜନେ, ତା ପଛେ ମୁଁ ବନେ ବନେ, ଶିରେ ଘେନି ବୁଲୁଥିବି ତା କଠାଉ । ୪ । କବିରବି ଭାଷେ ରସେ, ମନମଥ ରତିତ୍ରାସେ, ତା ପ୍ରେମସାଗରେ ଚିତ୍ତ ବୁଡ଼ିଯାଉ । ୫ ।



## (୨୪୬)

## ରାଗ—ଦେଶ—ରୂପକ ତାଳ

ଶ୍ୟାମ ସୁଆଗ ଲୋଡ଼ୁ କାହିଁକି । ଘୋଷା ।

ବଳି ପଡ଼ିବ ବ୍ୟଥା—ନିତି ନୁଆଁଇ ମଥା
ମୁକୁର କରିବୁଟି ମହୀକି । ୧ ।
ବୁଲି ଲଟାକୁଲଟା—ବୋଲାଇବୁ କୁଳଟା
ହଟହଟାକୁ ଡର ନାହିଁ କି । ୨ ।
ଭଲ ନାହିଁଟି ସହି—ଖିଆଲ ଭାବ ବହି
ଖେଳାଇବାର କଳା ଅହିକି । ୩ ।
ଗଲେ ଯିବ ଜୀବନ—ଲଭି ନବ ଯୌବନ
ଚନ୍ଦ୍ରକ ଚୂଳ ଛଟା ଚାହିଁକି । ୪ ।
ଜଳନ୍ତର ବାସବ—କହଇ ହେ କେଶବ
ଭଗାରି ହସା ମିଶା ଟାହିକି । ୫ ।



(୨୪୭)

## ରାଗ—କାମୋଦୀ—ଝୁଲା

ଶ୍ୟାମସୁନ୍ଦର ତୁ ଶୁଝିଲା ସୁଆଗ ଲଗାନା । ଘୋଷା ।

ଯା'ରସେ ହୋଇଛୁ ବଶ, ତୁ ଯାଇ ତା' ପାଶେ ବସ,
ଉତୁ ତା'ର ସୁନ୍ଦରୀବାନା । ୧ ।
ଯା' ପାଦ ରଙ୍ଗ ଅଳତା କପୋଳେ ଘେନିଛୁ ଚିତା
ସେ ଛବି ମୋ ଆଗେ ଦେଖାନା । ୨ ।
ଯା' ରତି ରସରେ ମାତି ଉନିଦ୍ରେ ବଞ୍ଚିଛୁ ରାତି
ତା' ଅଙ୍କେ ଶୁଅ ଯା' ଘୁମା ନା । ୩ ।
ସେ ବାଳା ନବ ପଦ୍ମିନୀ, ତୁ ତ ମଧୁବ୍ରତ ଜିଣି
ମୁଁ କେତକୀ କି ମୋ ପାଶେ ଆ'ନା । ୪ ।
ବୋଲେ ଜଗଦ୍ଦେବ ହରି— ଚନ୍ଦନ ଭାଷେ ଚତୁରୀ
ମୋତେ ତୁ ଭଗାରି ହସାନା । ୫ ।

●

(୨୪୮)

## ରାଗ—ମୁଖାବରୀ—ଆଠତାଳି

ଶ୍ୟାମ ହେ, ସଙ୍ଗେ କାହିଁକି ଲାଗ,
ମୁଁ ଜାଣି ନାହିଁ କେଉଁ ଅନୁରାଗ ।। ଘୋଷା ।।
କେ ବୋଲେ ତୁମ୍ଭ ମୁକୁଟେ ଅଳତା
ଗେରୁ ଗୁହାରେ ଖେଳିବା ଫଳ ତା । ୧ ।
ସାକ୍ଷୀ ଅଛି ରବିନନ୍ଦନା ବାଟ
ଫିଟି ତ ନାହିଁ କାହାରି କବାଟ । ୨ ।
ଗଣ୍ଡରେ ଲାଗିବା ବିଡ଼ିଆ ବୋଳ
ଦାଣ୍ଡରେ କେହି ନ ଦେଖୁ ସମ୍ଭାଳ । ୩ ।

ତୁମ୍ଭଠାରେ କି ଦୁଷ୍ଟ ଆଚରଣ
ଲୁଚିଯାଉ, ମୋତେ ହେଉ ମରଣ । ୪ ।
ଓଷ୍ଠ କଜ୍ଜଳ ନ ଦିଅ ଲିଭାଇ
ଅଶୋଭା ଦେଖିଚି ମୁଁ ହେଲି ବାଇ । ୫ ।
ପୁଣି ସଙ୍କୋଚେ କିଶୋର ହସିଲେ
ଅଷ୍ଟଦୁର୍ଗ ନାଥ ରସେ ଭାଷିଲେ । ୬ ।



(୨୪୯)

## ରାଗ—ମୁଖାରୀ—ଆଦିତାଳ

ଶ୍ରୀ ନୀଳଶିଖରୀ-କନ୍ଦର-ସଞ୍ଚାରୀ କଳା କେଶରୀ ହେ ! ଜୟ ଜୟ
ଯା' ନାମ ସୁମରଣ କୁଠାର ହାଣେ ଜନତାପ ସାକ୍ଷୀ ସମୁଦାୟ । ଘୋଷା ।
ସିନ୍ଧୁ ଜେମା ହାତୀ ନୟନ ସମ୍ପତ୍ତି,
ବରାଙ୍ଗନା ମନମୋହନ ମୂରତି
ଯା' ପଦାରବିନ୍ଦର ବରକନ୍ଦର ସୁତ୍ରାମାଦି ସୁମନସ ଚୟ । ୧ ।
ହେ ନିଖିଳ ଦୁଃଖୀ ନିବହ ସମ୍ପଦ
ଅଟକ ବିନା ମୋ ମନ ଷଟପଦ
ହାକିମ ହୁକୁମ କର କରୁତବ ଚରଣାରବିନ୍ଦ ମଧୁବ୍ୟୟ । ୨ ।
ପରଖି ଜାଣିଛ ଅରକ୍ଷିତ ବୋଲି,
ହରି ଖିଆଲକୁ ସମୟ ନ ସହେ
ତରତରେ ଥରେ ମୋ ଦୁଃଖ ଦୁଷ୍ଟକୁ ତରଜ କୃପା ଅପାଙ୍ଗ ଦ୍ୱୟ । ୩ ।
ଭରସି ଛାମୁରେ ଜଣାଉଛି ପ୍ରଭୋ,
ନଷ୍ଟ ଅକ୍ଷାକ୍ଷି ମୋ ଦୁଃଖ ପକ୍ଷପାତ
ଏଣୁ ଏ ହେମନ୍ତ ଯେମନ୍ତେ ରହିବ ବିଳସୁ ହୃଦୟ କିଶଳୟ । ୪ ।
ବିଳମ୍ବରେ ଆଉ କାରଣ ଏଣିକି
ଅରଜିବାକୁ ନାହିଁ ହେ ମହାବାହୁ
ସରିବ ସନ୍ତାପ ଭୁଜଙ୍ଗ ଦଂଶନେ ଛଟପଟେ ରାଜା ଛୋଟରାୟ । ୫ ।



## (୨୫୦)

## ରାଗ—କାମୋଦୀ, ଏକତାଳ

ସଖି, କେ ସେ ନୀପମୂଳେ ଗୋ । ପଦ ।

ଅସିତ ଆକାଶଖଣ୍ଡେ, ରବିପରି ତାର ଗଣ୍ଡେ, ମଣି ମକରକୁଣ୍ଡଳ ଲୋଳେ ଗୋ । ୧ । ମୁଁ ହାରେ ନାୟକ ଆଣି, କରନ୍ତି ସେ ନୀଳମଣି, କିଣା ହେବ ସଖି କେଉଁ ମୂଲେ ଗୋ । ୨ । ଚାହିଁ ତା ଚାରୁ ବଦନ, ମନ୍ଦିରେ ନ ରହେ ମନ, ଖେଳୁଛି ଅର୍ଯ୍ୟମାଜେମାକୂଳେ ଗୋ । ୩ । ସଖି ମୁଁ କହୁଛି ସତ, ଛାଡ଼ି ସବୁ କୁଳବ୍ରତ, ଖୁରିଏ ଖେଳନ୍ତି ତାର ତୁଲେ ଗୋ । ୪ । ଘୁମି ଆନନ୍ଦ ଅମଳେ, ତା ପଦପଙ୍କଜତଳେ, ଶ୍ରୀମୁକୁନ୍ଦଦେବ ଚିତ୍ତ ଭୁଲେ ଗୋ । ।



## (୨୫୧)

## ରାଗ—ପୂରବୀ

ସଖୀ ତୁ ତୁନି ହୁଅ ରେ ତୁ ତ ଅନୁଭବୀ ନୋହୁ
ସ୍ନେହ ସୁଖ ଜାତ, ତା ବିଚ୍ଛେଦ ଦୁଃଖ
ଯେ ଜାଣେ ସେ ଆସି କହୁ (ପଦ)
ଝଡ଼ି ପଡ଼ି ସଢ଼ି ଯାଉଛନ୍ତି ଯେବେ
କୁସୁମ ଚୟରେ ଚାହିଁ
ଫୁଲ ପାନରଙ୍ଗ ମନାସି ମୁଁ ତାଙ୍କ ଆଡ଼କୁ ଅନାଉ ନାହିଁ (୧)
ଟେକିଚି ମାନସ ଆଗସରିକି ମୁଁ
ଟେକି ପାରୁ ନାହିଁ ମଥା
ଟେକି ଦେଲେ ଫୁଲି ଫୁଲି ଯିବେ ବୋଲି
ଯେ କି ସଟା ବଟା କଥା (୨)

(୨୫୦) ଖୁରିଏ—ମୂହୂର୍ତ୍ତେ, ନାୟକ—ହାରମଧବର୍ତ୍ତୀ ମଣି ।

ଅନୁବରତେ ସେ ସ୍ମରଣ ହେଲାନି
ବନଜ ପଲ୍ଲବାବଳି
ଘନଶ୍ୟାମ ନାମ ଦୁଃଖାନଳେ ମୋର
ହୃଦୟ ଯାଉଛି ଜଳି (୩)
ନୀଳାଞ୍ଚଳ ଚୂଳେ ପ୍ରସାଦ ନ ହେଲେ
ଟେକି ଥିଲେ ତିନି ଥାଳି
କବି ରବି ରାୟଗୁରୁ ବୋଲେ ପ୍ରୀତି
କେହି ନ ପାରନ୍ତି ପାଳି (୪)



(୨୫୨)

## ରାଗ—କାଫି—ଆଦିତାଳ

ସଖି, ଦେଖିଯିବା ଚାଲ ଗୋ । ଘୋଷା ।
ପ୍ରସୂନ ପୁଞ୍ଜେ ନୀପନିକୁଞ୍ଜେ ଖେଳୁଅଛନ୍ତି ନନ୍ଦଲାଲ ଗୋ । ୧ ।
ଧୃତି ଲତାଳି ଦେଲାଟି ଟାଳି ସ୍ମର ତଟିନୀ ତଟୀ ଟାଳ ଗୋ । ୨ ।
ମାର ଖଡ଼ଗ ଧାରକୁ ବେଗ ବାରି ଦେବାକୁ ସେ ଢାଲ ଗୋ । ୩ ।
ନିଶ୍ୱାସୁ ବାସ ତା'ରଦବାସ ଚାରୁ ମାଣିକ୍ୟ ମଣି ଲାଲ ଗୋ । ୪ ।
ନାରୀ ସଂସାର ବୋଲାଉ ସାର ଚୁମ୍ବି ତା' ମନୋହର ଗାଲ ଗୋ । ୫ ।
ମହେନ୍ଦ୍ର ମଣିମୟ ସେ ପୁଣି ବାମା ହୃଦୟ-ମୀନ ଜାଲ ଗୋ । ୬ ।
ବସୁଦୁର୍ଗେଶ ରଚିଲେ ରସ ସ୍ନେହେ ନ ଘେନି ଦ୍ୱିପ ଖାଲ ଗୋ । ୭ ।



(୨୫୩)

ସଖି ! ସେ କି ପିନ୍ଧିଥିଲା ନୀଳ ପାଟକୁ ? । ୦ ।
ଅଏଁଲା - କୁଙ୍କୁମ ଘେନି ସଙ୍ଗତେ ଥିଲେ ସଜନୀ;
ଯାଉଥିଲେ ସେ ଯମୁନା ଘାଟକୁ । ୧ ।

(୨୫୩) ପୁରନ୍ଦର ପୁର-ଶିରୀ—ଇନ୍ଦ୍ରପୁରୀର ଲକ୍ଷ୍ମୀ ସ୍ୱରୂପା, ବସନ-ନାଟକୁ—ପିନ୍ଧିଥିବା ଶାଢ଼ୀର ଦୋଇନକୁ, ଅପବାଦହାଟ—ନିନ୍ଦାର ବ୍ୟାପକତା ।

ସେ ଛଇଲୀ ଛତ୍ରଧାରୀ ପୁରନ୍ଦର ପୁର-ଶିରୀ;
ନାହିଁ ଜଣେ ତା' ସମ ଥାଟକୁ । ୨ ।
ସତେ ନିକି ଏଡ଼େ ଭାଗ୍ୟ ଏ ପାପ ନେତ୍ରକୁ ଯୋଗ୍ୟ
ଦେଖାଇବ ତା' ବସନ - ନାଟକୁ ? । ୩ ।
ଅଷ୍ଟଦୁର୍ଗପତି ବୋଲେ "ଲେଖା ଗଲାଣି ତା' ଭାଲେ
ବସାଇବ ଅପବାଦ - ହାଟକୁ" ! । ୪ ।



(୨୫୪)

## ରାଗ—ତୋଡ଼ି ପରଜ—ଆଦିତାଳ

ସଙ୍ଗାତ, ରୁଷି ବସୁଥିଲ ପରା ?
କଷନ୍ତାଇଁ ଶ୍ୟାମସୁନ୍ଦରଙ୍କ ପ୍ରେମ ସତ କି ଅବା ଟାପରା ।। ଘୋଷା ।।
ଶୁଝନ୍ତାଇଁ କିତବରତିକି ବୁଝନ୍ତାଇଁ କେଡ଼େ ଧୃତି
ବସ ପାଣି ଗଣ୍ଡେ ସମରପି ଦଣ୍ଡେ ମାତ୍ରକ ଅନାଇଁ କ୍ଷିତି । ୧ ।
ସାକ୍ଷାତ ନେତ୍ରେ ଦେଖିଛ ଲାଗିବାର ଲାକ୍ଷା ତ ଚୂଳଶିଖଣ୍ଡେ
ନ ଧର ସରସ ସ୍ମିତ କୁତୁକକୁ ଅଧର ଦଳରେ ଦଣ୍ଡେ । ୨ ।
ସବିତା ନନ୍ଦନ ଗହନ ବାହୁଡ଼ା ଛବି ଏବେ ଭିନ୍ନେ ଭିନ୍ନେ
ଏଣୁ ଜଣାଉଛି ବେଣୁ ଗୀତ ଶୁଣି ନ ପୁଲକ ଏକାଦିନେ । ୩ ।
ହାଜର କରିବା ନଜର ମୁକୁରା ନ ଘେନି ସରୋଷେ ଗେଲେ
ଶରଣ ବୋଲି ତୋ ଚରଣେ ଚନ୍ଦ୍ରକ ଚୁମ୍ବାଇଲେ ଏକ ହେଲେ । ୪ ।
ବସନ୍ତି ବାସନ୍ତୀକ ବେଶ ରସିକା କରଙ୍କେ ଧରିତ୍ରୀ ଚିରି
ଛାଡ଼ି ସ୍ୱକଳମ୍ବ ଆସନ୍ତା କି ଶମ୍ବରାରି ଫରି ଖଣ୍ଡା ଧରି । ୫ ।
ଚରଣତଳ ପତନ ଦୁଃଖ ଘନଶ୍ୟାମ ଜାଣନ୍ତେ କି ନାହିଁ
ଅଷ୍ଟଦୁର୍ଗ ନରନାଥ ମନୋରଥ ଭରତି କରିବା ପାଇଁ । ୬ ।



(୨୫୫)

## ରାଗ—ଦେଶୀବରାଡ଼ୀ—ତ୍ରିପୁଟା

ସଙ୍ଗାତ ରେ, ସରି ତ ଗଲାନି ସବୁ ସୁଖ ।
ସଙ୍କୋଚ ବିନା ବିହରି ଚୁମ୍ବିବି କି ରୂପେ ହରି ସୁନ୍ଦର ଶ୍ୟାମଳ ଚନ୍ଦ୍ରମୁଖ ॥
ସଂସର୍ଗ କଲେ ଇତରେ, ସେ ଥାଏ ଚିତ୍ତ ଭିତରେ
ଅପ୍ରିୟେ ଜଣା ନ କରି ଦୁଃଖ,
ସରୋଜ ସଙ୍ଗ ନିପଟ ଛାଡ଼ି କି କାହିଁ ଲମ୍ପଟ
ହୁଅଇ ପ୍ରମତ୍ତ ଶିଳୀମୁଖ । ୧ ।
ସାକ୍ଷାତ ଦେଖିଲି ଭାଲ ଲାକ୍ଷାରେ ହେବାର ଲାଲ
ଧୂଳିଆ ଚନ୍ଦ୍ରକଚୂଡ଼ ଶିଖ,
ଶୁଣିବାକୁ ଲୋକେ ଲାଜ ବଢ଼ଇ ସପତ୍ନୀ ଓଜ
ଏ କଥା ତୋହରି ମନେ ରଖ । ୨ ।
ସମ୍ଭୋଗ ପ୍ରବଳ ବେଳେ ଯାହାର ଉରଜମୂଳେ
ହେଳେ ଗାଢ଼େ ବାଜିଗଲେ ନଖ,
ସୁକୁମାରୀ କ୍ଷମା କର ବୋଲି ଧରାଯାଏ କର
ଏବେ ତାକୁ ବିଷମ ବିଶିଖ । ୩ ।
ସନ୍ତତ ସରିତ ତଟୀ ସମୀପ କୁସୁମ ବାଟୀ
ବୁଲାଇ କରି ଯାହାକୁ କାଖ
ସେ ସ୍ନେହ ପାଶୋରି ମନୁ ତାହାକୁ ଖଚ ବଚନୁ
ସ୍ୱପନେ ନ କରି ଟିକି ପାଖ । ୪ ।
ସୁଧାରୁ ମଧୁର ସାର ରସରେ କିରାତ ଖାର
ମିଳାଇ ବୋଲି କି ଆଉ ଚାଖ,
ସୁମେରୁ ଚୂଳ ଦାରଣ ଦାରୁଣ ଦମ୍ଭୋଳି ବାଣ—
ଶ୍ରେଣୀକି ଶିରୀଷ ନିକି ଲାଖ । ୫ ।
ସରସ ବଚନ ରସେ ଅଷ୍ଟଦୁର୍ଗନାଥ ଭାଷେ
ସାଇତି ରଖିଛି ଦେଖ ଦେଖ,
ସର୍ବସ୍ୱ ତୁହିଟି ମୋର ଶରଣ ସୁବେଣୀ-ବର
ବୋଲି ପେଷିବାର ପ୍ରେମ ଲେଖ । ୬ ।



(୨୫୬)

## ରାଗ—କାମୋଦୀ, ତାଳ—ଝୁମ୍ପା

ସଞ୍ଚାରିଣୀ ପାଞ୍ଚାଳିକା କାଞ୍ଚନମୟୀ ରେ ପ୍ରଲମ୍ବ କୁଞ୍ଚିତକେଶା,
ଯୋଗି-ସମାଧିଖଣ୍ଡନବିଧିଚତୁରଚାରୁବେଶା;
ପଦପଙ୍କଜନ୍ୟାସପବିତ୍ରୀକୃତ ଧରିତ୍ରୀଦେଶା,
କେ ତୁ ମୋହନ-ହେତୁ ମନର, ସେତୁ ବିଳାସମିଷବନର
ନରଲୋକରେ କୃତବାଗୀଶଶିଳ୍ପବିଶେଷଶେଷା । ଘୋଷା ।

ପଦ୍ମରୁ ଊଣା ପରି ତ ଜଣା ପଡୁଛି କେହି ଏଡ଼େ ପ୍ରବୀଣା ହେଲୁ ରେ, ଛଣାପୀୟୂଷଜିଣା ବାଣୀ, ସୁଧାଗରଳମିଶା ତରଳ ବିଲକ୍ଷଣ ଚାହାଣୀ, ଜଗତୀଯୋଷାରତନଖୋସାଭୂଷା ଶ୍ରୀଅଙ୍ଗଠାଣି; ଜନନୟନ-ନୀଳେନ୍ଦୀବର-ଚନ୍ଦ୍ରିକା-ପରମ୍ପରା କି ବରବରନା ତୁହି ନିଶ୍ଚୟ ତୋର ବୁଦ୍ଧି ନ ପାରେ ଜାଣି ରେ । ୧ । କରିଛୁ ଖର୍ବ ସୁପର୍ବପର୍ବସୁଧାଂଶୁମୁଖୀଗଣଙ୍କ ଗର୍ବ ସର୍ବଂସହାରେ କେ ରହିବ ମାନି, ଲାଜର ବାସଗୃହ ତୁ ରସରାଜର ରାଜଧାନୀ, ଗତିଲାବଣ୍ୟ ମାତିଲା ବନ୍ୟହାତୀରୁ ବଳିଲାନି, ଧନ ଯାହାର ମୁକୁତାହାର ହେବୁ ତୁ ଶ୍ରୀଛାମୁକୁ ତାହାର ସୁକୃତ ତୁଲେ ମୋର ଜୁହାର ହେଉ ମହତ୍ତ୍ୱ ହାନି । ୨ । ଉଦ୍ଦଣ୍ଡରତି ପାଣ୍ଡିତ୍ୟବତୀ ବୋଲାଇ ଟେକାଇବୁ କି ଛତି ଏବେ ତ ଯତିମୋହନା କ୍ଷିତି ମଣ୍ଡୁ, ଖଣ୍ଡିବୁ ଚଣ୍ଡ ଫୁଲ କୋଦଣ୍ଡ ବୀରଦୋର୍ଦ୍ଦଣ୍ଡ କଣ୍ଡୁ, ତୁମ୍ଭେ ଯେ ଜୁରି ନେବ ମକରୀ ତୋର ସୁନ୍ଦର ଗଣ୍ଡୁ, ସେ ବଡ଼ ଗିରୀଶରୁ ଅମରନାଥରୁ ପାଶକରୁ କୁବେର ଠାରୁ ନଳିନନନ୍ଦନୁ ମୀନସ୍ୟନ୍ଦନୁ ମାରତଣ୍ଡୁ । ୩ । କହନ୍ତି ଅଷ୍ଟ-ଦୁର୍ଗସାମନ୍ତ ଶ୍ରୀକୃଷ୍ଣଚନ୍ଦ୍ର ମୁଖୁଁ ଏମନ୍ତ ସରସବାଣୀ ଶ୍ରୀ ଠାକୁରାଣୀ ଶୁଣି ଲଭିଲେ ଲାଜ,

(୨୫୬) ସଞ୍ଚାରିଣୀ ପାଞ୍ଚାଳିକା କାଞ୍ଚନମୟୀ—ଗମନ କରୁଥିବା ସୁବର୍ଣ୍ଣ ପ୍ରତିମା, ସେତୁ ବିଳାସମିଷବନର—ବିଳାସରୂପ ଜଳ ପାର ହେବାର ସେତୁ ଅର୍ଥାତ୍ ପୋଲ, ବାଗୀଶ—ବ୍ରହ୍ମା, ସୁପର୍ବ—ଦେବତା, ପର୍ବସୁଧାଂଶୁ—ପୂର୍ଣ୍ଣଚନ୍ଦ୍ର, ସର୍ବଂସହା—ପୃଥ୍ୱୀ, ରସରାଜ—ରସିକଶ୍ରେଷ୍ଠ (କନ୍ଦର୍ପ), ମାତିଲା ବନ୍ୟହାତୀ—ମତ୍ତ ବନ୍ୟ ହସ୍ତୀ, ଧନ—ସଂବୋଧନ ପଦ, ଫୁଲକୋଦଣ୍ଡ—କନ୍ଦର୍ପ, ଦୋର୍ଦ୍ଦଣ୍ଡ—ବାହୁବଳ, ଜୁରି ନେବ—ଜୁର କରି ନେବ,

ସ୍ଫୁରିଲା କୁନ୍ଦ ମଧୁନିଃସ୍ୟନ୍ଦ ମନ୍ଦ ହସିତ ବ୍ୟାଜ, ଚାଳି ଚରଣ କଲେ ଶରଣ ଆଳିଜନ ସମାଜ, ମିଳନ୍ତେ ଦିନେ ଏକାନ୍ତ-ସୀମା ଏପରି ପରିଣତ ଚନ୍ଦ୍ରମା-ବଦନା ଶ୍ୟାମ ଦୁହିଙ୍କ ପ୍ରେମ ହେଲା ନିବିଡ଼େ ନ୍ୟାଜ । ୪ ।

●

(୨୫୭)

## ରାଗ—ଚିନ୍ତାଭୈରବ

ସଜନୀ, ଆଜ ରଜନୀରେ ନଇଲେ ବ୍ରଜମୋହନ

ମନ କେହୁ ମୋହିଲା ରେ । ପଦ ।

ମୋ ଦେହେ ଦେଇ କର-କମଳ ବାରମ୍ବାର ନିୟମ କରି କେତେ କହିଲା ରେ; କପଟ ମତି କରି, ସାହସେ ସେ କିପରି ଧରମ ତାକୁ ସହି ସହିଲା ରେ । ୧ । ଲଗାଇ ପ୍ରେମରସ, ମଧୁ ଜନ୍ମାଇ ବିଷ, ନୟନୁ ଅଶ୍ରୁ ବରଷାଇଲା ରେ, ଭଜି ମୁଁ ନିଶି ଦିବା, କି ଅପରାଧୁ ଅବା ମୋଠାରେ ଅବଧାନ ନୋହିଲା ରେ । ୨ । ଭାଙ୍ଗି ରଖିଛି ପାନ, କର୍ପୂର ଶ୍ରୀ ଚନ୍ଦନ, ଏବେ ତ ବେଶ ବାସି ହୋଇଲା ରେ, କାହା ସୁରତେ ମାତି, ଆସି ହେଲା ପାହାନ୍ତି, କୁକ୍କୁଟ କୁକୁରାବେ ରଟିଲା ରେ । ୩ । ଏ ପାପ କାମ ମୋତେ, ଦଣ୍ଡ ଦେଲାଣି ଯେତେ, ପରାଣତୁଲେ ପିଣ୍ଡ ଦହିଲା ରେ; କବିମିହିର ଚିନ୍ତା, ଆହା ବ୍ରଜବନିତା, କପାଳେ ବିହି ଏହା ଲିହିଲା ରେ । ୪ ।

●

(୨୫୮)

ସଜ ହୋଇ ଥା ରେ, ଗଜରାଜଗତି ଆଜ

ରଜନୀ ଆସିବେ ସଜନୀଲୋପ୍ଳଶ୍ୟାମ ବ୍ରଜଯୁବରାଜ । ପଦ ।

ସୁନା ଲତିକାରେ ମୀନା ପରି କଳା ଝିନ ଶାଢ଼ୀ ଯତ୍ନେ ପିନ୍ଧି, ବଳାପହମଣି ନୀଳ କୁନ୍ତଳୟେ କଳାପ କମର ବାନ୍ଧି । ୧ । ପୁଣ୍ଡରୀକବରଯୁଗେ ଇନ୍ଦୀବର ଯୁଗଳୀ

---

ମକରୀ—ମକରୀ ଚିତ୍ର, ସେ ଗିରୀଶରୁ (ଶିବଙ୍କଠାରୁ), ଅମରନାଥରୁ (ଇନ୍ଦ୍ରଙ୍କଠାରୁ), ପାଶକରୁ—(ବରୁଣଙ୍କଠାରୁ); କୁବେରଙ୍କଠାରୁ, ନଳିନନନ୍ଦନୁ (ବ୍ରହ୍ମାଙ୍କଠାରୁ), ମୀନସ୍ୟନ୍ଦନୁ (କନ୍ଦର୍ପଠାରୁ) ଓ ମାର୍ତ୍ତଣ୍ଡୁ (ସୂର୍ଯ୍ୟଙ୍କଠାରୁ) ବଡ଼ । ନ୍ୟାଜ—ବିବେଚନା ।

(୨୫୮) ମୀନା—ସୁନା ଅଳଙ୍କାରରେ ସୂକ୍ଷ୍ମକାର୍ଯ୍ୟ, ଝିନ—ସୂକ୍ଷ୍ମ, ବଳାପହମଣି—

ଲଢ଼ାଇବାକୁ; ମର୍ଦ୍ଦିବା ଲାଞ୍ଛନ ତାପିଞ୍ଛେ କନକମଞ୍ଜରୀ ମିଳାଇବାକୁ । ୨ । ମସାରମଣି ହେମସାରସମୂହ ମିଶିବାର ବୁଝିବାକୁ; ବରତୁଳ ପୟୋଧରେ ରତିବର ତୁଲେ ଥରେ ଯୁଝିବାକୁ । ୩ । କୁଞ୍ଜାଳୟ ଝଷଧ୍ୱଜ କେଳିରସ ଭୁଞ୍ଜାଇ ଭୁଞ୍ଜିବୁ ପରା; କଞ୍ଜାୟତାକ୍ଷିରେ ଖଞ୍ଜାଇ ଲଲାମ ତା ପରେ ପୁନ୍ନାଗଝରା । ୪ । ଦେଖି ସେ ଉତ୍ସବ ନେତ୍ରେ ଆମ୍ଭେମାନେ ସୁଖୀ ହୋଇ ଜୀଇବାକୁ; ଦୁହେଁ ତ ଦୁହିଙ୍କ ଜୀବ, ଜୀବବନ୍ଧୁ ଯିବ ମଧୁ ପିଇବାକୁ । ୫ । ଶୁଣି ଲଳିତାଙ୍କୁ ଲୀଳା ତାମରସ ଉଞ୍ଚାଇଲେ ଦେବୀ ସ୍ନେହେ; ସେ ସମୟେ କରି ବନ୍ଦନକୁ ହରିଚନ୍ଦନ ଭୂନାଥ କହେ । ୬ ।

●

(୨୫୯)

ସତେ କି ବିଧି ଏହା କରିବ ଗୋ
ସଖି, ମୋ ଦୁଃଖ-ଦଶା ସରିବ ଗୋ । ୦ ।

ସଜଳ ଜଳଧର କଳେବର କିଶୋର-
ବରଙ୍କୁ ମୋର ନେତ୍ର ହେରିବ ଗୋ ।
ପରିଣତ ବିମ୍ବରୁ ଅଧିକ ଯେଚି ଚାରୁ
ଅଧର ମନ୍ଦହାସ ଧରିବ ଗୋ । ୧ ।

ବ୍ରଜ ନଗରୀ ଦମ୍ଭ ମହାସାଗର କୁମ୍ଭ—
ସମ୍ଭବ ନୟନାନ୍ତ ଫେରିବ ଗୋ !
ଶ୍ୟାମ ଶ୍ରୀମୁଖ ଚନ୍ଦ୍ର ମଣ୍ଡଳୁ ହୋଇ ସାନ୍ଦ୍ର
ବଚନ ସୁଧାରସ ଝରିବ ଗୋ । ୨ ।

'କରି ମୋ ଚିତ୍ତ ଚୋରି ଧରା ନ ଦେବା ହରି'
ବୁଝିବା ବୋଲି ବାଣୀ ସ୍ଫୁରିବ ଗୋ !

---

ଇନ୍ଦ୍ରମଣି, କଳାପ—କାଞ୍ଚୀଦାମ, ପୁଣ୍ଡରୀକ—ଶ୍ୱେତପଦ୍ମ, ଇନ୍ଦୀବର—ନୀଳକଇଁ, ତାପିଞ୍ଛ—ତମାଳ, ମସାର—ଇନ୍ଦ୍ରନୀଳମଣି, ବରତୁଳ (ବର୍ତ୍ତୁଳ)—ଗୋଲ, ରତିବର—କନ୍ଦର୍ପ, କୁଞ୍ଜାଳୟ—କୁଞ୍ଜଗୃହ, ଝଷଧ୍ୱଜ—କନ୍ଦର୍ପ, କଞ୍ଜାୟତାକ୍ଷୀ—ପଦ୍ମପରି ବିସ୍ତୃତ ଲୋଚନ ଯାହାର, ଲଲାମ—ଭୂଷଣ, ଝରା—ପୁଷ୍ପଗୁଚ୍ଛ ।

(୨୫୯) ଜଳଧର—ମେଘ, କୁମ୍ଭସମ୍ଭବ—ଅଗସ୍ତି ମୁନି, କଳ୍ପ—କୋଟି କୋଟି ବର୍ଷ (ବ୍ରହ୍ମାଙ୍କର ଗୋଟିଏ ଦିନ) ।

ବାନ୍ଧିବି ବାହୁ ପାଶେ          ଶଙ୍କା ନ ରଖି ଲେଶେ
ମନ୍ଦ କନ୍ଦର୍ପ ଦର୍ପ ସରିବ ଗୋ !

ଭାଷେ ଶ୍ରୀ ଜଗଦ୍ଦେବ          ଲଭି ସେ ଶ୍ୟାମ ଭାବ
କଣ୍ଟକ ଅଙ୍ଗ ପରି ସରିବ ଗୋ ।

ଶତ କଳ୍ପରେ ଅବା          ସଂକଳ୍ପ କରିଥିବା
କାମରୁ ଲେଶ ମାତ୍ର ପୂରିବ ଗୋ ।



(୨୬୦)

## ରାଗ—କେଦାର, ତାଳ—ଆଡ଼ତାଳି

ସରିଗଲା ଯେ ଲାଜେ,
ରହି ନ ପାରେ ସହୀସମାଜେ । ଘୋଷା ।

ନଗତିଳକ ଉରୋଜାଏ ଅଛନ୍ତି ଅଗଣିତେ ଅନୁସରି ହେ । ଜଗତୀଲଲାମ ଚମ୍ପାଝରା ନାମ ଯୋଗ୍ୟ କି ଏକା କିଶୋରୀ ହେ । ୧ । ଘେନାଇ କହିଲେ ହେଲେ ନେତ୍ରାଞ୍ଚଳେ ଅନାଇ ତ ସେ ନ ଜାଣେ ହେ । ତାକୁ ନଟ-ଖଞ୍ଜରୀଟ-ନେତ୍ରା ବୋଲି ଡାକୁଥାଅ ତୁମ୍ଭେ କେଣେ ହେ । ୨ । ତୁମ୍ଭ ଉରେ ସ୍ତନକୁମ୍ଭ ନତ-ତନୁଲତା ଯେ ମଣ୍ଡାଏ ନାହିଁ ହେ । ବହିଯିବ ବୋଲି ଶୋଭା ପୀୟୂଷ କି ରହିଥାଅ ଏକା ଚାହିଁ ହେ । ୩ । ତାରୁଣ୍ୟ ଗରବେ ବାଳା ସେ ତ କେବେ ଚାଲିକି ନ କରେ ଚାରୁ ହେ । ସତୁଅଛି କେଳି ଲାଳସୀ ମରାଳୀଗତି ବୋଲି ଡାକିବାରୁ ହେ । ୪ । ଅଧର ମାଧୁରୀ-ଅଭିମାନେ ପୂରି କେତେ ନାଗରୀ ନାହାନ୍ତି ହେ । ତା ଦଶନ ଅଙ୍କ ଥିବା ପାନରଙ୍କ ପରି ମାଗିବାର ନିତି ହେ । ୫ । ପ୍ରେମାଦରେ ଅବା ପ୍ରମାଦରେ ବାଣୀ ଶୁଣିବା ଚିତ୍ତ କାହିଁକି ହେ । ସରସ ଶ୍ଳେଷମଦ କଳକୋକିଳ ବଚନା ବୋଲ ନାହିଁକି ହେ । ୬ । ଜଗଦ୍ଦେବ ବନ୍ଦି ଜଣାଇଲେ ଇନ୍ଦୀବର ଶ୍ୟାମ ବଂଶୀପାଣି ହେ । ତୁମ୍ଭେ ସେ ତରୁଣୀ ଚାଲିବା ସରଣୀପରାଗେ ଗଡ଼ିବା ଜାଣି ହେ । ୭ ।



(୨୬୧)

ସହଚରୀ,

ଅଛି ଏତେ ମନୋରଥ କରି ରେ । ୦ ।

ତମାଳ ମହେନ୍ଦ୍ର-ମଣି ଅପଘନ
ପରିରମ୍ଭକୁ ମୁଁ ଅଟେ କି ଭାଜନ
କେବଳ ଡାକିବ ଥରେ ସେ ମୋହନ
ମୁରଲୀ ମୋ ନାମ ଧରିରେ । ୧ ।

ପଲ୍ଲବ ବିଦ୍ରୁମ ବନ୍ଧୁକ ସଂକାଶ
ଅଧର ମଧୁକୁ ନାହିଁ ମୋର ଆଶ,
ପିଉ ଥରେ ଶ୍ୟାମ ମୁଖ ଚନ୍ଦ୍ରହାସ
ଶୋଭା ମୋ ନେତ୍ର ଚକୋରୀରେ । ୨ ।

ସେ ଶ୍ୟାମ ସଙ୍ଗେ ଅନଙ୍ଗରାଜ କେଳି
ଲଭିବାକୁ ମୁହିଁ ଛାର କି ସେଭଳି
ଦେଖିବି ସେ ପଦ କୁଞ୍ଜ କୁଞ୍ଜାବଳୀ
ବିଜୟ ଶୋଭା ମାଧୁରୀ ରେ । ୩ ।

ଶ୍ୟାମ କର ଚିତ୍ର ପତ୍ରାବଳୀ ମନେ
ଭଜିବାକୁ ଲଜ୍ଜା ଲୋଡ଼ିବି କେସନେ ?
ତାଙ୍କ ସୁଧା ସ୍ୱାଦୁ ବଚନ ମୋ କର୍ଣ୍ଣେ
ହେଉ ଅବତଂସ ପରି ରେ । ୪ ।

ଜଗଦ୍ଦେବ ଯାଇ ଜଣାଏ ପାଶରେ
ଚାରୁ ଉରୁଭଙ୍ଗୀ ସଙ୍ଗ ବିଳାସରେ
ଅଳପ ମୋଠାରେ ପକାଇ ଦେବାରେ
କରୁଣା କଟାକ୍ଷ ଝରି ରେ । ୫ ।



(୨୬୧) ପରିରମ୍ଭ—ଆଲିଙ୍ଗନ, ବନ୍ଧୁକ ସଂକାଶ—ବଧୁଲି ଫୁଲ ସଦୃଶ, ଅବତଂସ—କାନର ଅଳଙ୍କାର ।

(୨୬୨)

## ରାଗ——କେଦାର——ଆଦିତାଳ

ସାଜ ରାଜହଂସ-ଗତି ରାତିକି ରେ ॥ ଘୋଷା ॥

ଚପଳା ବଲ୍ଲରୀ ମୁଦିରକୁ ପରି ରେ
ମଣ୍ଡିବୁ ଶ୍ୟାମଳ ଛାତିକି ରେ । ୧ ।

କିଶୋରୀ ରାଜୀବ ନେତ୍ରେ ନ ବାଜିବରେ
ଆଡ଼ିବୁଟି ସ୍ମରକର କାତିକି ରେ । ୨ ।

ଆମ୍ଭେ ଯେ ପ୍ରକାଶ କରୁଛୁଁ ତୋ ଯଶ ରେ
ପୁହାଇବୁ ନାହିଁ ତା କୀରତିକି ରେ । ୩ ।

ଆଚାରୁ ଭୂରୁରୁ ଆଳାନତ ଉରୁ ରେ
ରୁନ୍ଧି ବାନ୍ଧିବୁ ତ ନୀଳ ହାତୀକି ରେ । ୪ ।

ନାନା ମଦବାଜି ମାଗିବେ ଯେ ଆଜି ରେ
ରାଜି କରିବୁଟି କେତେ ଛାତିକି ରେ । ୫ ।

ଏ ବାଣୀ ବିଳାସେ ହସି ରାଧା ଭାଷେ ରେ
ମରୁଛୁ ଗଞ୍ଜାଇ ଖାଇ ମାତିକି ରେ । ୬ ।

ଜଗଦେବ ଚିତ୍ତେ ଏ ସମୟେ ଚିନ୍ତେ ରେ
କିଶୋରୀମଣିକି କଂସାରାତିକି ରେ । ୭ ।

●

(୨୬୩)

## ରାଗ——ମାଳବ

ସେ ମୋହନ ସ୍ନେହ ରେ, ସହଚରି କି ପଦାର୍ଥ କହ ରେ । ପଦ ।

ନୋହେ ଅଭୟ ନ ରଖଇ ଦକ, ଅମଳ ନୋହେ ଅତି ଉନ୍ମାଦକ, ହୋଇ ହୃଦୟ ଅଦୃଶ୍ୟପଦକ, ହଜାଇ ଦିଅଇ ବିବେକଯାକ । ୧ । ନୋହେ ଘୂକନେତ୍ର ଗୋଳକଜଳ,

(୨୬୩) ଟୀକା—ଘୂକ—ପେଚକ, ଜଙ୍ଘାବଳ—ବେଗଗାମୀ ଦୂତ, ନଭମାସ—ଶ୍ରାବଣ ମାସ ।

ଦୃଶ୍ୟ କରାଏ ଗାଢ଼ତମ ସ୍ଥଳ, ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ, ବୁଡ଼ାଇ ଦିଅଇ ନୁହଇ ଜଳ । ୨ । ନୁହଇ ପରାଣ ନୁହଇ ଛାଡ଼ି, ଅଟକଇ ପଦ ନୁହଇ ବେଡ଼ି, ବୃଷ୍ଟି ବାରଣ ଛତ୍ରକୁ ନ ଲୋଡ଼ି ନ ମାନେ ନଭମାସନିଶା ଝଡ଼ି । ୩ । ନୋହେ ସଂକଳପ ମାନସେ ରହେ, ହେଳା ନୋହେ ଯତ୍ନ ନ ରଖେ ଦେହେ, ଅନ୍ନ ନୋହି ଶୀର୍ଣ୍ଣ କରେ ବିରହେ, ସନ୍ଦେହେ ଶ୍ରୀମୁକୁନ୍ଦଦେବ କହେ । ୪ ।

•

(୨୬୪)

## ରାଗ—ଶାବେରୀ—ଆଡ଼ତାଳି

ସ୍ନେହେ କହ ରେ ଚନ୍ଦ୍ରବଦନା କା'ର ହାରମଣି ମଣି ତୁ । ଘୋଷା ।
ତୋର ଚରଣ ନଖରଗଣ ଶରଦୁଦିତ ତାରା କିରଣ
ପରମ୍ପରା ସୁଷମାରୁ କଣ, ବରବାମାବୃନ୍ଦେ ନାହିଁ ଏ ବ୍ରଜ ସହରେ । ୧ ।
ବଳାହକରୁ କବରୀ କଳା କଳାକର ବିମ୍ବେ ମୁଖ ତୁଳା
କଳାମାତ୍ର ନାହିଁ ରେ ଅବଳା, ବାଳାବଳୟର କି ତୁ ଭୂଷା ନିବହ ରେ । ୨ ।
ତନୁବର୍ଣ୍ଣ ବଳିଛି କୁନ୍ଦନୁ, ତନୁ କଟୀଟି କି ଯିବ ମନୁ
ଅନୁମିତ ହୁଏ ମଣିସାନୁ, ସ୍ତନୁ ଊଣା ହୋଇବ ଏ ତହୁଁ ଦୁର୍ବହ ରେ । ୩ ।
ଯଉବନ ମଦ ଚାଲି ଲବ କେଉଁ ବନ ମଦଗଜେ ଥିବ
କଉତୁକର ତୁ ତ ଅର୍ଣ୍ଣବ, ନଉବନ୍ଧ କି ତୁ ସ୍ମର ସିନ୍ଧୁ ପ୍ରବାହ ରେ । ୪ ।
ପଟାଟୋପ ଲୋକେ ନିରୂପମ, ଛଟା କଟାକ୍ଷର କି ବିଷମ
କଟା ଲୋଟାଟି କି ହେବ ସମ, ସଟାବଟା ନ କର ରୋଷେ ମୋ ଆଗ୍ରହରେ । ୫ ।
ଧନ ହୁଅ ଯାହାର ତାହାର ମୁଁ ତୋ ଚାକରୁଁ ନୁହେଁ ବାହାର
ମୁଖ ପଙ୍କଜୁଁ ମରନ୍ଦାହାର, ଦେବୁଟି କି ମୋତେ ନ ମଜ୍ଜାଅ ସନ୍ଦେହ ରେ । ୬ ।
ବସୁଦୁର୍ଗ ପୁରନ୍ଦର ଭାଷେ ଶ୍ୟାମସୁନ୍ଦର ବାଣୀ ବିଳାସେ
ଲାଜେ ମଜ୍ଜି ବର ମହିଳା ସେ, ହସି ପଳାଇଲେ ମହା ମଦନ ମୋହରେ । ୭ ।

•

(୨୬୫)

ସୁଖ ସଦନା, ମୋ ଏ ଦୋଷୁ ପରା
ମୁଖ ପୋତି ନଖେ ଚିରୁଚୁ ଧରା ? । ୦ ।

ଗୁରୁଜନ ମେଳେ ଥିଲୁ ତୁ ବସି
ଦୂରୁ ଡ଼ାକି ଦେଲା ତୋ ନାଁ ମୋ ବଂଶୀ । ୧ ।

ନିବାସେ ଡ଼କାଇ ସଖୀ-ସଂକେତେ
ବିବାସ କଲି ଯା ଦିବସେ ତତେ । ୨ ।

ଗଣ୍ଡମଣ୍ଡଳକୁ ଯା ନିଧୁବନେ
ଖଣ୍ଡଇ ବୋଲି ତ ମୋର ରଦନେ । ୩ ।

ପ୍ରାଣ ପଣେ ପାଳିଥିଲୁ ତୁ ବ୍ରତ
ରାଣ ପକାଇ କଲି ଯେ ସୁରତ । ୪ ।

ଦଣ୍ଡଧର ହରିଚନ୍ଦନ ଭାଷେ
ଦଣ୍ଡ ଦିଅ ଛାନ୍ଦି ତୋ ବାହୁ ପାଶେ । ୫ ।

●

(୨୬୬)

## ରାଗ—ଝୁଲା

ସୁନୟନା ତୁ ଅନା କୁଞ୍ଜପୁଞ୍ଜ ନିକଟକୁ ରେ (ପଦ)
ତହିଁ ଶାମଦେବତାର ଲୀଳା ଚାହିଁ ପଢ଼ିଯିବୁ ତୁ ସିନା କଳା
ଧନରୁ ଯେ ତନୁ ତେଜେ ସୁନା ସୁମନେ ଝଟକୁ ରେ (୧)
ଯେ ବ୍ରଜମଣ୍ଡଳେ ତୁ ପରାଚାର ସେ ଦେବତା ପୂଜା ଉପଚାର
ଦେବାର୍ଚ୍ଚିତ ଥିଲେ ମିତ ଯାଅ ଯମୁନା ତଟକୁ ରେ (୨)

(୨୬୫) ବିବାସ—ବସ୍ତ୍ରହୀନ, ନିଧୁବନେ—ରତିକ୍ରୀଡ଼ାରେ, ରଦନେ—ଦନ୍ତ ଦ୍ୱାରା ।

ଥରେ ଚାହିଁଣ ମୋହନ ଚାଟ ବରଜି ମଣିମଣ୍ଡିତ ଖଟ
ଭୂମଣ୍ଡଳା ତୁ ମଣ୍ଡନା ନବ ପଲ୍ଲବ କୁଟକୁ ରେ (୩)
କବିରବି ବୋଲେ ଅନୁରାଗେ ପଡ଼ିବୁ ଯେବେ ମୋ ମୋହନ ଆଗେ
ଜାତି ପତି ନୀତି ଗଲା ବୋଲି ବୋଲିବେ ହଟରେ (୪)

•

(୨୬୭)

## ରାଗ—ବେହାରଡ଼ା, ଝୁଲା

ସୁନାଗୋରି ତୁ ଏକା ସିନା,
ସୁନାଗରୀ ଶିର ଫୁଲବାସନା । ଘୋଷା ।

ଏ ଜଗତୀ ଭିତରେ କେହି, ଗଜଗତି ତୋ ସମ ନାହିଁ, ରାଜା ନାରୀମଣ୍ଡଳେ ତୁହି, ସୁନ୍ଦରକୁନ୍ଦରଦନହସନା । ୧ । ପଦନଖ କୋଣ କଣକୁ, ରସବତୀ ମଣି ପଣକୁ, ସାଧାରଣେତର ଗୁଣକୁ, ବରନି ପାରିବେ ନାହିଁ ଉଶନା । ୨ । ଗିରିବର ଶିଖରେ ତପ, କରିଥିଲି କେତେ କଳପ, ବାଳାବର ମୋତେ ଅଳପ ସୁଲଭ ହୋଇଛି ତୋ ଉପାସନା । ୩ । ପୟୋଧରେ ହାତ ନଚାଇ, ମୋ ସୁକୃତ ଫଳ ପଚାଇ, ମାରାଶୁଗ ଡର ଘୁଞ୍ଚାଇ, ବଜାଇ ଦେବୁ କି ଥରେ ରସନା । ୪ । ବାଲୁକେଶ ନୃପତିମଣି, ଭଣେ ଶ୍ୟାମ ଭାରତୀ ଶୁଣି, ଲାଜେ ହସି ବରତରୁଣୀ, ହେଲେ ମୁଖବିନିହିତବସନା । ୫ ।

•

(୨୬୮)

## ରାଗ—ବସନ୍ତ—ଝମ୍ପା

ସ୍ୱପ୍ନେ ଦେଖିଛି ପରା ସଖି ତୋତେ ଏ କି ପରଂପରା । ଘୋଷା ।
ଅଞ୍ଜନ ଅତସୀ ମୃଗମଦ ମସୀ ନୀଳଶାଟୀ ନୀଳୋତ୍ପଳ
ଏମାନ ନ ରୁଚିବାରୁ ତ ଧରିଚି ମୁଁ ଏବେ ପୀତଦୁକୂଳ । ୧ ।

---

(୨୬୭) ସୁନାଗୋରୀ—ସୁନା ପରି ଗୌର ଅଙ୍ଗ ଯାହାର; ସୁନାଗରୀ—ଶ୍ରେଷ୍ଠା ସ୍ତ୍ରୀ; ସାଧାରଣେତର—ଅସାଧାରଣ; ଉଶନା—ଶୁକ୍ରାଚାର୍ଯ୍ୟ; ମାରାଶୁଗ—କନ୍ଦର୍ପବାଣ; ରସନା—ଚନ୍ଦ୍ରହାର ।

ପହୁଡ଼ିବା ବେଳେ ଗଣ୍ଡ ପାଳି ତଳେ ଥିଲା ଦିଶୁଥିଲା ଲାଲ
ଉଭାରିଲେ କେଶ କାହା ଚୂର୍ଣ୍ଣକେଶ ଲୁଳି ନ ଆଚ୍ଛାଦେ ଭାଲ । ୨ ।
ଝାଙ୍କି ଦେଉଁ କାଲି ବିକଚ ବଧୂଲୀ ଭ୍ରମରୁ ଭ୍ରମର ଯୁବା
ଏଣୁ ମୋ ଅଧର ଅଳପ ବନ୍ଧୁର ଦିଶି ଯାଉଥିବ ଅବା । ୩ ।
ସୂନବଲ୍ଲୀକଣ୍ଟା ମୂନ ବକ୍ର ହୋଇ ବାଜି ଯାଇଥିବ ଦେହେ
ଘାତଜ ଚିହ୍ନ ଏ ବାଣିଜଳପୂଜା ଜାଣିବାପଣ ଏ ନୁହେଁ । ୪ ।
ଝଡ଼ିବାର ଫୁଲ ପରାଗ ନୟନେ ପଡ଼ିବାରୁ ଅବା କିଛି
କଷା ଦିଶୁଥିବ ଏ କଥାକୁ ଏଡ଼େ ହସା କାହିଁକି ହେଉଛି । ୫ ।
କଳି ତାମରସନେତ୍ରାଙ୍କର ରସ ଲଳିତା ରସେ ଭାସିଲେ
ଜଗଦ୍ଦେବ ହରିଚନ୍ଦନ ଭୂପତି ରସି ଏ ରସେ ଭାଷିଲେ । ୬ ।



## (୨୬୯)

ହଇରାଣ କାହିଁକି ଏତେ, ଆଉ ହଇରାଣ ନ କର ମୋତେ । ଘୋଷା ।

ମୋଦେ ମୋଦେ ହସି ତୁମ୍ଭେ ଯିବ ଖସି ମୋ ଦେହ ପୂରାଇ କରଜ କ୍ଷତେ । ବୁକୁର ଶାଢ଼ୀ ତ ରଖି ଦେବ ନାହିଁ ମୁଁ କରତଳେ ଆଚ୍ଛାଦିବି କେତେ । ୧ । ଚିକୁର ବେଶ ତ ରଖି ଦେଉ ନାହଁ ମୁକୁରରେ ଦିଶୁ ନାହିଁକି ମୋତେ । ବ୍ରୀଡ଼ା-ଜଳଧିରେ ବୁଡ଼ିବି ମୁଁ କେହି ଉଭା ହେବି ସଙ୍ଗିନୀଙ୍କ ପୁରତେ । ୨ । ସଖୀଏ ମକରୀ ଗଣ୍ଡେ ଥିଲେ ଲିହି ନ କରି ତା ଅନୁରୋଧ କିଞ୍ଚିତେ । ଖଣ୍ଡକୁ ତ କେହି ସେପରି ନ କରେ, ଗଣ୍ଡକୁ ମୋ ଯାହା କର ସୁରତେ । ୩ । ଆଜି ନ ପାରଇ ଭାଜିଛି ମୋ ବଳ ରାଜି କରାଉଛ କିଞ୍ଚିତେ ଚିତ୍ତେ । ବାମଦେବପରିପନ୍ଥୀ ରଣ ଜୟ କାମ ନୋହିଛି କି ଆହୁରି ପତେ । ୪ । ଠାକୁରାଣୀ ପ୍ରେମବାଣୀ ଶୁଣି ବଂଶୀପାଣି ପ୍ରେମମୟ ଅନ୍ତରଗତେ । ସବିନୟେ ପୁଣି କୋଳରେ ଆଣିଲେ କବି ଦିନମଣି ରଚିଲେ ଗୀତେ । ୫ ।



(୨୬୯) କରଜକ୍ଷତ—ନଘକ୍ଷତ, ବୁକୁ—ବକ୍ଷ, ଚିକୁର—କେଶ, ବ୍ରୀଡ଼ା—ଲଜ୍ଜା, ବାମଦେବପରିପନ୍ଥୀ—ଶିବଶତ୍ରୁ, କନ୍ଦର୍ପ; କାମ—କାମନା ।

(୨୭୦)

ହରିତୁଲେ କରିବୁ ଯେ ପ୍ରୀତି, ମୋ ଅଭିନ୍ନା ରେ
ଧରିଛୁ କିପରି କହ ଧୃତି । ପଦ ।

ଥୋଇ ଯତନେ ସେ ଶ୍ୟାମଳ ଗାତ୍ର, ମୋ ସଖିଟି ରେ । ସୀଇଁ ପାରିବୁ କି ଦୁଇ ନେତ୍ର; ନିତି ତ ସେ ବସ୍ତ ପଛେ ଚଳିବ, ନିମିଷ ତ ଶତଯୁଗୁଁ ବଳିବ, କାମାନଳ ତୋ ହୃଦେ ଜଳିବ, ମୋ ଦଅଣା ରେ, ନେତ୍ରୁ ନୀର ନିରତେ ଗଳିବ । ୧ । ପରପୁରୁଷର ସ୍ନେହଭୂତ, ମୋ ସଜନି ରେ, ହରବର କରଇ ବହୁତ; ଲାଗେ ପରେ ସ୍ନେହ ପରବଧୂର, ଚାରୁ ସୁଧାଧାରାଠାରୁ ମଧୁର, କ୍ଷିତରେ କରଇ ବିଧୁର, ମୋ ବଉଳ ରେ, ବିଷ ହୁଏ କିରଣ ବିଧୁର । ୨ । ବାରେ ଶ୍ୟାମଠାରେ ନେତ୍ରାଞ୍ଚଳ, ମୋ ଦ୍ୱିତୀୟା ରେ, ସଲୀଳେ କଲି ମୁଁ ଚଞ୍ଚଳ; ଥାଉ ଥାଉ ବଡ଼ ସୁଖ ବିଭବ, ଯାଉ ଯାଉ କଷ୍ଟେ ରହିଲା ଜୀବ, ତାହା ଜାଣେ ଏକା ମୋ ମନୋଭାବ, ମୋ ସଙ୍ଗାତ ରେ, ଯାହା ହୋଇଛି ମୋ ଅନୁଭବ । ୩ । ନୂଆ ଭୁଆସୁଣୀ ନିପଟ, ମୋ ମିତଣୀ ରେ, ଚାହିଁ ଚାହିଁ କେଳି ଚିତ୍ରପଟ; ଅରିଷ୍ଟେ ଯେ ହେତୁ ବକୀବଧର, ଅଙ୍ଗୁଳିଶିଖେ ଯେ ଧରିଲା ଧର, କି ସେ ରଖିବ ନବ ପୟୋଧର, ମୋ କେତକି ରେ, ଖଣ୍ଡପରି ଖଣ୍ଡିବ ଅଧର । ୪ । ନିଶି ନିଦ ନ ଜାଣିବ ଆଖି, ମୋ ମରୁଆ ରେ, ବିସିନୀଦଳରେ ଯିବୁ ଲାଖି; ନବନୀତରୁ ଯେହୁ ସୁକୁମାର, ବିନ୍ଧିବ କି ଦଶ ଇଷୁକୁ ମାର, ହସୁଥିବ ଯଶୋଦା ସୁକୁମାର, ମୋ ମୋହନା ରେ, ନାଚି ତଟେ ଅର୍ଯମାଜେମାର । ୫ । ଚିଉକୁ ଯେ ଆସିବ କର, ମୋ ନିଆଳି ରେ, ଆଳି ଆଳି ହେଲେ ମୁଁ ଚାକର; ଫଳିଗଲା ନିକି ବାଞ୍ଛା ସତେ, କଳିବାକୁ ଭାବ ପଚାରୁ ମତେ, ତୋ ତରସ ପୂରୁ ଶ୍ୟାମରତେ, ମୋ ସଙ୍ଗିନୀ ରେ, ଅଷ୍ଟଦୁର୍ଗପତି ବୋଲେ ଗୀତେ । ୬ ।

●

(୨୭୧)

## ରାଗ—ତୋଡ଼ି ମରୁଆ—ଆଡ଼ତାଳି

ହସି ଦ୍ୱେମୋତେ ଅନା ରେ,
ଅସୀମ ଲାବଣ୍ୟନିଧି ରସିକା ମୋହନା ରେ ॥ ଘୋଷା ॥

(୨୭୦) ବିଧୁର—ବିକଳ, ବିଧୁର—ଚନ୍ଦ୍ରର, ଅରିଷ୍ଟ—ଅନ୍ତୁଡ଼ିଶାଳ, ବକୀ—ପୂତନା, ଧର—ପର୍ବତ, ଦଶ ଇଷୁକୁ—ଦଶବାଣକୁ, ମାର—କନ୍ଦର୍ପ, ଅର୍ଯ୍ୟମାଜେମା—ଯମୁନା, ତରସ—ଅଭିଳାଷ ।

ଅପରାଧ ପରାଭୂତି ହେଲା ଯେ ରୁଷନା ରେ
ସପ୍ରରାଗ ବସୁନ୍ଧରା ପୃଷ୍ଠରେ ବସନା ରେ । ୧ ।
କାରଣ ନ ଥାଉ ବର-ବାରଣ ଗମନା ରେ
କେ ସକଳ ସୁଖ ତୁଲେ ବେଶ କଲା ମନା ରେ । ୨ ।
ବଲ୍ଲବ ବଲ୍ଲଭୀ ରାଜା ମୋ ଅଙ୍କ-ଆସନା ରେ
ନ ଲଭିଲି ଚାରୁମୁଖ ସରୋଜ ବାସନା ରେ । ୩ ।
ତରୁଣୀ ଅକରୁଣ ତା' ସରଣୀକି ଯା'ନା ରେ
ମୋ ସପତଟି ଉଡ଼ାଅ ରସବତୀ ବାନା ରେ । ୪ ।
ଅଷ୍ଟଦୁର୍ଗାଧୀଶ ଭାଣେ ଶୁଣି ସେ ନବୀନା ରେ
ବିହରିଲେ ଶ୍ରୀହରିଙ୍କ ଅଙ୍କେ ଶଙ୍କା ବିନା ରେ । ୫ ।



(୨୭୨)

## ରାଗ——ପୂରୀ କଲ୍ୟାଣ——ଏକତାଳି

ହା ନିତମ୍ବିନୀ ମୋ ବାରବାନି-ସୁନା ରେ ।। ଘୋଷା ।।
ତା' ଶୋଭା ପ୍ରତି ପ୍ରତିକେ ଘେନି ମୁଁ ମୂରତି ରତିକେ
କଷୁଥାଏ ରସୁଥାଏ ଏଣୁ ସିନା ରେ । ୧ ।
ମୋ ମନ ମହାଜନକୁ ତା'ଠାରୁ ମୋ ମଣ୍ଡନକୁ
ବିକୁଥାଏ କିଣୁଥାଏ ଚିନା ଚିନା ରେ । ୨ ।
ମକରଧ୍ୱଜ ପ୍ରଧାନେ ହଟରେ ମୁଁ ଦିନେ ଦିନେ
ସୁନାରୀ ହୁଏ ସେ କରୁ କରୁ ମନା ରେ । ୩ ।
ଶଙ୍କାକୁ ନ ରଖି ଚିତ୍ତେ ଝଙ୍କାଇ ଦେଲେ କିଞ୍ଚିତେ
ଫୁଙ୍କାଯାଏ ମୋ ଶ୍ୟାମଳ ଦେହ ସିନା ରେ । ୪ ।
ଅଷ୍ଟଦୁର୍ଗ ନାଥ ବୋଲେ ହରି ଏପରି ଚିନ୍ତିଲେ
ହରି ନେବାରୁ ହୃଦୟ ସେ ନବୀନା ରେ । ୫ ।



(୨୭୩)

## ରାଗ—ପୂରବୀ—ଆଦିତାଳ

ହେ ଧର ଧର ଏବେ କରୁଣା କରୁଣା-କର କର
ହୋଇଗଲାଣି ତ ବାଳା ଥରଥର ହେ ।। ଘୋଷା ।।
ଶାଣିବାରୁ ଫୂଲଶର ଶର ମୋ ସଖୀ ଲଭି ଆଦର ଦର
ନିଶୀ ନିଦ ନାହିଁ ବିଶିନୀ ପଲ୍ଲବ—
ତଳପେ ରହୁଛି ହରହର ହେ । ୧ ।
ଚିତ୍ତ କରି ସ୍ନେହେ ଜରଜର, ତାର ପୀନ ପୟୋଧର ଧର
ବିନା ଅପରାଧେ ନାଗରୀ ବରକୁ
ନ ଦିଅ ବରନାଗର ଗର ହେ । ୨ ।
ହୁଅ ପଛେ ସ୍ୱେଦ ସରସର, ବିଜେ କର ହୋଇ ଖରଖର
କିଶୋରୀମଣିର ପ୍ରାଣ ପରିତ୍ରାଣ—
ପତାକା ଉଡ଼ାଅ ଫରଫର ହେ । ୩ ।
ଚୋର ସଦୃଶ ତ ଡରଡର, ହୋଇ ପଶୁଥାଅ ଘରଘର
ଆଦରେ ଆଦର ନ କରେ ଯେ ନର
ବୋଲିବେ ବାଇନା ବରବର ହେ । ୪ ।
ଏ ତାପ ସିନ୍ଧୁକୁ ତର ତର, ହୋଇ ନ ଦେଇ ଆତର ତର
ଚୁମ୍ବିଣ ଶ୍ରୀମୁଖେ ଭୋଗକରି ସୁଖେ
ପଙ୍କଜ ସଉରଭର ଭର ହେ । ୫ ।
ତା' ଅଙ୍ଗ ରାଗରେ ଗରଗର, ହେଲେ ଝିଙ୍କିନେବ ଝରଝର
ବୋଲେ ଅଷ୍ଟଦୁର୍ଗ ଧରା ଦମ୍ଭ ସ୍ୱର୍ଗ—
ମହେନ୍ଦ୍ର ଦୁଃଖକୁ ମରମର ହେ । ୬ ।



(୨୭୪)

## ରାଗ—ତୋଡ଼ି, ଆଦିତାଳ

ହେ ନବ ଯୁବତୀ - ହୃଦୟ ବିହାରୀ
ମନମୋହନ ମୂରଲୀଧାରୀ । ଘୋଷା ।
କହ କେ ଆଉ କିଶୋରୀ ସତୀ ତତି ଧୃତି ଗିରି
ଗ୍ରାମଣି ଚଳନ କରିପାରେ ତୁମ୍ଭ ବିନା ହରି । ୧ ।
ବାଳ କାଳେ ଗୋବର୍ଦ୍ଧନ ଧରି ଯେସନ ସୁମନ
ତୋଳିଲ ତୁମ୍ଭ ସମାନ ଅଛି କେ ବ୍ରଜ ନଗରୀ । ୨ ।
ଏଣୁ ତୁମ୍ଭଙ୍କୁ ନିଶ୍ଚୟ କଲୁ ଆମ୍ଭେ ସଖୀଚୟ
ଭାଷେ ରାଜ ହରିହୟ ଚରଣ କଞ୍ଜେ ଜୁହାରି । ୩ ।

●

(୨୭୫)

ହେ ବଂଶୀପାଣି, ଏବେ ହେଉ ଶ୍ରୀଛାମୁରୁ ମେଲାଣି ହେ । ଘୋଷା ।
କୃପାସିନ୍ଧୁ କୃପାଚିତ୍ତ ମୋଠାରେ ଥାଉ ସତତ
ଯାଉ ଜୀବନ ନିୟତ ତୁମ୍ଭ ଗୁଣ ଗୁଣି ହେ । ୧ ।
ଜଟିଳା କୁଟିଳା ରୀତି ଜାଣିଛ ତ ଶିରୀପତି
ତୁମ୍ଭେ ଏକା ମୋର ଗତି ସୁପଥର ଶ୍ରେଣୀ ହେ । ୨ ।
ରାଧା ବାଧା ତ ତୁମ୍ଭର ଶ୍ରଦ୍ଧାରେ କର ଉଦ୍ଧାର
କା ଧବ ନୁହଁ ଶ୍ରୀଧର ଚିତ୍ତେ ମୋ ମାଗୁଣି ହେ । ୩ ।
କବିରବି ଭାଷେ ଗୀତେ ସଦ୍ମ ଉତ୍ତରରୁ ଚିତ୍ତେ
ଜାତ ହୁଏ ବାଧା ଯେତେ କି ବର୍ଣ୍ଣିବି ପୁଣି ହେ । ୪ ।

●

(୨୭୫) ସତତ—ସବୁବେଳେ, ଧବ—ସ୍ୱାମୀ ବା ପ୍ରଭୁ, ସଦ୍ମ—ବାସଗୃହ ।

(୨୭୬)

## ରାଗ—ତୋଡ଼ିପରଜ—ଏକତାଳି

ହେ ରସିକେ, କି ବର୍ଣ୍ଣିବ ତାହା କବି ?
ପଙ୍କଜନେତ୍ରା ମୋ ଅଙ୍କ ଜଗତୀକି ଆସିବା ସମୟ ଛବି । ଘୋଷା ।
ଝରି, ଚାଦର, ନାଗବଲ୍ଲୀ ତାବୁକୁ ହେମ ପିକଦାନୀ ଧରି
ପାଞ୍ଚଚାରି ପରିଚାରୀ ଘେରିଥାନ୍ତି ଯା ଚନ୍ଦ୍ରକୁ ତାରାପରି । ୧ ।
ଖସନ୍ତେ କିଞ୍ଚିତେ ଗାଢ଼ାଶ୍ଳେଷ ସୁଖ ଦୁଇ ଦେହ ସିଆଁ ତାଗ
କିବା ସେ ତଞ୍ଚ ତେଜିବା ସମୟେ ତା'ବିମର୍ଦ୍ଦିତ ଅଙ୍ଗରାଗ । ୨ ।
ଫଳି ସ୍ତନବ୍ୟାଜେ ଫୁଲ ଫୁଟି ଲାଜେ ମିଶି ଯା ମଧୁରହାସେ
ମୋ ପୂର୍ବ ପୁଣ୍ୟ କଳପ ବଲ୍ଲରୀକି ମୂର୍ତ୍ତିମତୀ ହୋଇ ରସେ । ୩ ।
ଜାଣି ମୋ ଆଗ୍ରହ ଦନ୍ତେ ତୃଣ ଗ୍ରହ ଠାରି ଆଚରି ଜୁହାର
ହସିହସି ତୋଳିବାର ବେଗବେଗ ହୋଇ କେଳି ଶେଯୁଁ ହାର । ୪ ।
ସମାନ ବୟସୀ କେହି କର୍ଣ୍ଣପାଶୀ ପାଶେ ହସି କିଛି କହେ
କି ସୁନ୍ଦର ତାକୁ ମାରିବାର ଶ୍ରବ ଅବତଂସ ଫୁଲେ ସ୍ନେହେ । ୫ ।
ନୀବିକି ନିବାଡ଼ି ଭିଡ଼ି ଖସିପଡ଼ି ଥିବାର କସିଦାଚୂଳି
ସଖୀଜନ ହସାଭୟରୁ ଲହସା ଖୋସା ଦେବାର ସାଉଁଳି । ୬ ।
ଉଠାଇ ଆଣେ କି କାମ ହେମଫୁଲ ଖୋପମଣ୍ଡା ପାଟଖଣ୍ଡା
ଅଥବା ରଥବାହିନୀ ହେଉଥାଏ ଶୃଙ୍ଗାର ମଙ୍ଗଳ ଝଣ୍ଡା । ୭ ।
ଚାହାଁ-ଦରପଣ ବାଢ଼େ ଦନ୍ତବ୍ରଣ ଅଧରେ ଗଣ୍ଡେ ଚିବୁକେ
ମୋର ସୁସ୍ନେହାଟି ଲୁକାଏ ଯାହାଟି ସେ କି କରକଞ୍ଜେ ଲୁକେ । ୮ ।
ରୁଚିର ଚରଣଯୁଗ ଯହୁଁ କେଳି-ନିଳୟ ଦେହଳୀ ଲଙ୍ଘେ
ମନପୁର ପୂରି ପ୍ରମୋଦ ଲହରୀ ହୋଇଯାଏ ମୋତେ ଜଙ୍ଘେ । ୯ ।
ଚେଳାଞ୍ଚଳ ଲୁଟୁଥାଏ ଯାହା ସେ କି ଛାଡ଼ ଛାଡ଼ ବୋଲି ବାଟ
ବଦାଉ ଛେଲ ଘୋଷାରି ଚାଲୁଥାଏ ମଦନ ମଦୁଆ ଭାଟ । ୧୦ ।

ପଞ୍ଚ ଶିଳୀମୁଖ ପଞ୍ଚମ ବିଶିଖ ଦୁଇ ଯୁଗ ଦୃଷ୍ଟି ତୁଲେ
ଧୂପୀ ପ୍ରଦୀପ ନିର୍ବାପ ଆରମ୍ଭଇ ପାଲୀଳାରବିନ୍ଦ ଫୁଲେ । ୧୧ ।
ଅମନ୍ଦ ମନ୍ଦାକ୍ଷ ପ୍ରମୋଦ ବଳକ୍ଷ ସ୍ମିତେ କି ସୁନ୍ଦର ମୁଖ
ତମିଯାକ ଦେହେ ଜମିଯାଏ ସ୍ନେହେ ଦିଅଇ ଯେମନ୍ତ ସୁଖ । ୧୨ ।
ସଞ୍ଜବେଳ କଞ୍ଜ ମଞ୍ଜୁ ହୋଇଥାଏ ଜାଗର କଷା ନୟନ
ଝୁମି ଝୁମି ଢଳୁଥାଏ କମଣ୍ଡଳୁ ପୀବରସ୍ତନା ମୋ ଧନ । ୧୩ ।
କତୁଳା ନୀଳ ଝାଲରୀଆ ଅଳକେ ଗୁନ୍ଥା ଘର୍ମବିନ୍ଦୁ ମୋତି
କି ମାନୁଥାଏ ସେ ମୋ ଅଧରେ ଅଧେ ଲାଗିବା ମକରୀ ଧୃତି । ୧୪ ।
ଯିବା ଆସିବା ସମୟେ କି ସୁବାସମୟ ହୁଏ ମହୀ ସତେ
ଏପରି ଶ୍ରୀହରି ଘେନିବାର ହରିଚନ୍ଦନ ରଚିଲେ ଗୀତେ । ୧୫ ।



## (୨୭୭)

ହେଲେ କି ହେବ ଗୋ ନୂଆ ପରା ସେ କିଶୋର
ପରଷିବ କହି ଭରଷି ଅଧରୁ ସୁଧାକୁ ରସିକାବର (ପଦ)

ରସିଳାନି ଚିତ୍ତ ଚକୋର ତ ମୁଖଚନ୍ଦ୍ର-ସୁଧା ପିଇବାକୁ
ହେଲାନି ମାନସ ଘନଶ୍ୟାମ ଅଙ୍କେ ସ୍ଥିର ଚପଳା ହେବାକୁ (୧)
ଝଳିଲାଣି ମନ ଶ୍ରୀଖଣ୍ଡମଣ୍ଡନ ରସରତ୍ନ ଲୁଟିବାକୁ
ଝାଂପିଲାନି ନେତ୍ର ଖଞ୍ଜରୀଟ ନଟ ଶୋଭାମୃତ ଚାଖିବାକୁ (୨)
ଶ୍ୟାମ ତମାଳେ ମାଜି ଭାଳିଲାଣି ତା ତନୁ ହେମ ମଞ୍ଜରୀ
ମନ ସାରି କାଢ଼ି ପଡ଼ିଲାଣି ବଳୀ ସେ ବିଟ ପ୍ରେମ ପଞ୍ଜୁରୀ (୩)
କମ୍ପିତ ହେଲାଣି ଭୁଜବଲ୍ଲୀ ଛନ୍ଦିବାକୁ ଶ୍ୟାମବକ୍ଷ ସ୍ଥଳେ
ପ୍ରଫୁଲ୍ଲ ହେଲାନି ନେତ୍ର ଇନ୍ଦୀବର ମୋହନ ଲାବଣ୍ୟ ଜଳେ (୪)

ହେଲାନି ସୁଧା ସୁମଧୁର ଅଧର ମଧୁ ପାନେ ଆସକତ
କଲାନି ବିହାର ସଖୀ ହୃଦ-ପଦ୍ମେ ଶ୍ୟାମ ମଧୁବ୍ରତ (୫)
ସାଜିଲାଣି ଡୋଳା ସମ୍ପାଦେ ନାରାଚ ଭ୍ରୂର ନୀଳ ଶୃଙ୍ଗ ଚାପେ
ମଜ୍ଜିଲାଣି ମୋଦେ ତା ମଧୁର ମନ୍ଦହାସ ମନ୍ଦାକିନୀ ଆପେ (୬)
କହଇ ଶ୍ରୀଜଗଦ୍ଦେବ ଦରହାସୀ ହୃଦୟ ନିଦରେ ପୂରି
ପୀରତି ପବନେ ପ୍ରସରିଲାନି ତା ପ୍ରସନ୍ନ ରସ ଲହରୀ (୭)



(୨୬୮)

## ରାଗ—ଭୈରବୀ, ତାଳ—ଝୁଲା

ହେଲା ତୋ ଅନୁରାଗ, ଏଥର ଯା' ମୋହନ ଯା'
ମୋହ ନ ଯା' । ୦ ।
ଯା ପାଦ ଆଲିଙ୍ଗିତ ଶିଖଣ୍ଡ ମଣ୍ଡିତ ଭୁଜର ମଣି ଦଣ୍ଡ
ଦେଇଚ୍ଛି ସେ ବିରସେ ତରଳା ଭରଳାକୁ ଭରଳା । ୧ ।
ଜାଗରେ ବସି ରଜନୀଯାକ, ସେ ରତିକୁଶଳାକୁ ଡାକ
ମୋହ ନାମ ଧରି ମୋହନ, ମାଧୁରୀ ବଇଁଶୀ ନ ବଜା । ୨ ।
କାଳି ନ ବୋଲ ବଦନେ ମୋର, ଗାଳି ନ ଶୁଣ ବିଟ କିଶୋର
ଚରଣ ନ ଧର ହେ ମଧୁନଗର-ରାଜା ଭଣଜା । ୩ ।
ଭାଷଇ ଜଳନ୍ତର ନରେନ୍ଦ୍ର ନନ୍ଦ-ନିଳୟ ଗଗନ-ଚନ୍ଦ୍ର
ମିନତି କରି କହୁଚ୍ଛି—ତା' ପାଶକୁ ଯା' । ୪ ।



(୨୬୮) ତରଳା—ଦୀପ୍ତିମୟୀ, ଭରଳା—ବୃଦ୍ଧା ବା ସମଳା, ମଧୁନଗର-ରାଜା ଭଣଜା—ମଥୁରାର ରଜା କଂସଙ୍କ ଭଣଜା କୃଷ୍ଣ ।

## (୨୭୯)

## ରାଗ—କାମୋଦୀ, ଆଦିତାଳ

 କ୍ଷମାନିଧି ନିରୂପମା, ଏପରି ଗୁରୁ ଗୁମାନ ସରଜି ନ ବସଟି ରେ
ଅରାତି ନୁହଇ ମୁଁ ତ ରାସଦୃଶହାସ ଧରା ଅମୁଖ ମିଶ ଶଶାଟି ରେ । ଘୋଷା ।

ଲଲାମଗିରି ମୋର ସଲାମତ ତୁ ଅଛୁ ଗଲା ମଦନୁ ଧୃତି ଖସିଟି ରେ ।
କି ଲାଜକୁ ଭରସିଲା ଚରଣେ ଅଛି ପିଲା ଦିନୁ ଶରଣ ପଶିଟି ରେ । ୧ ।

ପାଣି ଗଣ୍ଡେ ନ କର ଠାଣି ମଣ୍ଡନା ବର ମାଣିକ୍ୟ ମଣି ଦନ୍ତ ବାସିଟି ରେ
ଜାଣି ନିଗ୍ରହ ତୋର ହାଣିବାକୁ ମୋ ଶିର ଶାଣିଲାଣିଟି ସ୍ମର ଅସିଟି ରେ । ୨ ।

କୃଶାବନତ ତନୁ ରୁଷା ନ କରତନୁ ବିଶାଳ ସୁଖ ଭଳି ନିଶିଟି ରେ
ଆଶାର ଅକୁଶଳ କି ସାର ମୁଁ କୁଶଳ ବିଶାରଦ ପଣରେ କଷିଟି ରେ । ୩ ।

ହରିବଚନୁ ମଦ କରୀବର ଗତି ସେ ହରି ମନରୁ ମ୍ଳାନ ମଣିଟି ରେ
ହରିଚନ୍ଦନ ବୋଲେ ପରିଚୟ ରଚିଲେ ଧରିତ୍ରୀ-ଭୂଷା ରସେ ରସିଟି ରେ ।।



# ହାସ୍ୟକଲ୍ଲୋଳ

ଭୂୟୋ ନମଃ କୌତୁକଲମ୍ପଟାୟ ଭାନୂଭବାରମ୍ୟତଟୀନଟାୟ
ଘଟସ୍ତନୀନାଂ ପଟଲୀବିଟାୟ କୃଷ୍ଣାୟ ବିଦ୍ୟୁଦ୍‌ବିଲସତ୍‌ପଟାୟ ।।
ମନ୍ଦାର ବୃନ୍ଦାରକବନ୍ଦିତାଂଘ୍ରିଂ ନନ୍ଦାଳୟେନ୍ଦ୍ରୋତ୍ପଳନୀଳ ଲକ୍ଷ୍ମୀମ୍
ବୃନ୍ଦାବନବ୍ୟୋମବିହାରଚନ୍ଦ୍ରଂ କୁନ୍ଦାବଦାତାସିତମୀଶମୀଡ଼େ ।।

ଏ ହେଲା ହୋ, ସେ ହେଲା ହୋ, ଏକ ଯେ ମହାରାଜ୍ୟ ଥିଲା ।

ସେ ରାଜ୍ୟର ନାମ ରହସ୍ୟ ଘୋଷ । ଦେଶ ପାଞ୍ଚଶ ଊଣା ପଞ୍ଚାଶ କୋଶ ।। ଅତ୍ର ଗୁଣବନ୍ତ ସମସ୍ତ ଦୋଷ ।। ଗୁଣଜ୍ଞ ଦେଖିଲେ ହୁଅନ୍ତି ରୋଷ ।। ଗୋସାଇଁମାନଙ୍କ ରୋଷାୟା ଘୋଷ ।। ଚଣା ଚୋବାଇଲେ ନିବର୍ତ୍ତେ ଶୋଷ ।। ସାଧୁଙ୍କୁ ନିନ୍ଦିଲେ ମନରେ ତୋଷ ।।

ଘୁଷିରି ଦେଖିଲେ ବୋଲନ୍ତି ହାତୀ । ଜାଣି ନ ପାରନ୍ତି କେ କେଉଁ ଜାତି ।। ବ୍ରାହ୍ମଣମାନଙ୍କ ହାତରେ କାତି ।। ଭକ୍ତିରେ ଗୁରୁବୈଷ୍ଣବ-ଘାତି ।। କଉଡ଼ିମାଳିଆ ସବୁଙ୍କ ଛାତି ।। ହାଣ୍ଡି ନ କରନ୍ତି ମଲେ ହେଁ ଜ୍ଞାତି ।। ଦାଣ୍ଡେ ନ ଜାଣନ୍ତି ଖରାର ତାତି ।। ସମସ୍ତଙ୍କ ଇଷ୍ଟଦେବତା ଖ୍ୟାତି ।। କୋତରା ଅଖା ପଲଙ୍କସୁପାତି ।। ଏକାନ୍ତ କଥାକୁ ବଜାରେ ଖ୍ୟାତି ।। ଥୁଆଥୋଇ ହୋନ୍ତି ଆଇକି ନାତି ।। ମହାଶର ଯହିଁ ବାଉଁଶ ପାତି ।। ରଜନୀ ଦିବସ, ଦିବସ ରାତି ।। ସ୍ୱପତ୍ନୀ-ସ୍ନେହରେ ନ ଥାନ୍ତି ମାତି ।। କୁଳ କୁଟୁମ୍ବରେ ଲମ୍ପଟ ଥାନ୍ତି ।। କୋଟିଏ ଊଣା ଅୟୁତେ ପାଦାନ୍ତି ।।

---

ଟୀକା—୧. ଏ ହେଲା ହୋ, ସେ ହେଲା ହୋ—ଗଳ୍ପସାଗର ଗଳ୍ପ ଆରମ୍ଭ କରିବା ବେଳର ନିରର୍ଥକ ଭଥା । ୨. ଘୋଷ—ଗଉଡ଼ପଲ୍ଲୀ । ୩. ଦେଶ—ଭୂମିରେ ବିସ୍ତାର । ୪. ଅତ୍ର ... ଦୋଷ—ଏଠାରେ ସବୁ ଦୋଷଗୁଡ଼ିକୁ ଗୁଣ ବୋଲି ବିଚାର କରାଯାଏ । ୫. ଗୋସାଇ—ବ୍ରାହ୍ମଣ । ୬. ରୋଷାୟା ଘୋଷ—ରାନ୍ଧୁଣିଆ ଗଉଡ଼ ଅଟେ । ୭. ନିବର୍ତ୍ତେ—ନିବାରିତ ହୁଏ । ୮. କଉଡ଼ି ମାଳିଆ—ମୂଲ୍ୟବାନ ଅଳଂକାରର ଅଭାବ ସୂଚିତ ହୁଏ । ୯. ହାଣ୍ଡିକରିବା—ଜ୍ଞାତିବର୍ଗଙ୍କ ମୃତକ ଅଶୌଚରେ ପୁରୁଣାହାଣ୍ଡି ପଇମ ଆଦିକୁ ଅନ୍ତର କରି ନୂଆ ହାଣ୍ଡି କରିବା କ୍ରିୟା । ୧୦. ଇଷ୍ଟଦେବତା ଖ୍ୟାତି—ସ୍ୱୟଂ ଇଷ୍ଟଦେବତା ଏହି ଖ୍ୟାତି । ୧୧. ଏକାନ୍ତ—ରତିକ୍ରୀଡ଼ା । ୧୨. ଥୁଆଥୋଇ—ବିଧବା ସ୍ତ୍ରୀ ଅନ୍ୟକୁ ସ୍ୱାମୀ ରୂପେ ନେଇ ଚଳିବା । ୧୩. ରଜନୀ ଦିବସ—କେତେକ ଗଡ଼ଜାତର ରାଜା ଦିବସର କାର୍ଯ୍ୟ ରାତିରେ ଏବଂ ରାତିର କାର୍ଯ୍ୟ ଦିନରେ କରିବା ନିର୍ଦ୍ଦିଷ୍ଟ କରିଥାନ୍ତି, ତାଙ୍କଦେରରେ ଏପରି ଚଳୁଥିଲା । ୧୪. ପାଦାତି—ପଦାତିକ ସୈନ୍ୟ ।

ସେ ରାଜ୍ୟ ମହାଜନ ମହାସାମନ୍ତ । ଦୋକାନେ ବସି ଖାଇ ବିଶା ବିଶା ଅନ୍ତ ॥ ବଡ଼ଲୋକେ ସଂପାଦନ୍ତି ମେଣ୍ଢା ଛେଳି ଦନ୍ତ ॥ କୋଦୁଅ ପେଜ ହାଣ୍ଡିରେ । ହାପୁରୁଥାନ୍ତି ମାଣ୍ଡିରେ ॥ ମନ ଥାଇ ଭାଣ୍ଡରେ । ଅଠର ଗଣ୍ଡିଆ କମ୍ବଳ କନା ପିନ୍ଧି ବୁଲନ୍ତି ଦାଣ୍ଡରେ ॥ ହାଡ଼ି ବାଉରି ଗୋଳ୍ଦି ଠି । ଫାଳିଆ ସଢ଼ାଇ ଖୋଜି ଟି ॥ ଭେଣ୍ଡିଆମାନଙ୍କ ଭୋଜିଟି ॥ କରନ୍ତି କୋଳଥ ଗଜା । କରଞ୍ଜ ତେଲରେ ଭଜା ॥ ସେ ରାଜ୍ୟ ଠାକୁରଙ୍କ ପୂଜା ॥

ଗୁଡ଼ିଆଣୀଟି କୁଜୀ ଟି । ଗୋଟିଏ ନୟନ ବୁଜିଟି ॥ ସେହି ରୂପେ ଗୋଲା ଗୋଲୁଣୀ, ପାଲିଆ ପାଲିଆଣୀ, ସାଲିଆ ସାଲିଆଣୀ, କାମ୍ପ କାମ୍ପୁଣୀ, କୁଡୁମ କୁଡୁମୁଣୀ, ବଳାସୀ ବଳାସୁଣୀ, ଆଳିଆ ଆଳିଆଣୀ, ଆରୁଆ ଆରୁଆଣୀ, କାରୁଆ କାରୁଆଣୀ, କେଉଟ କେଉଟୁଣୀ, କୁମୁଟି କୁମୁଟିଆଣୀ ।

ସେ ଦେଶରେ ଅଛନ୍ତି ପୁଣି । ବହୁତ ରାଣୀ ଓ ବହୁତ କାଣୀ ॥ ରାଣୀ କେଉଁମାନେ ଏବଂ କାଣୀ କେଉଁମାନେ ? ପାଇକାଣୀ, ବାରିକାଣୀ, ନାୟକାଣୀ, ରେଡ଼ିକାଣୀ; କାଣୀ ଏମାନେ । ରାଣୀ କେଉଁମାନେ ତାହା କହିବା । ବେହେରାଣୀ, ମାଗୁରାଣୀ, କନ୍ଦରାଣୀ, କୁନ୍ଦୁରାଣୀ, ଖଡୁରାଣୀ, ବାଉରାଣୀ, ପାଟରାଣୀ; ଏମାନେ ରାଣୀ ଅଟନ୍ତି ।

ପୁନରପି ସେ ରାଜ୍ୟରେ ଚମତ୍କାର ଅଛି । କି କି ଅଛି କି ? ଗୁଣ୍ଡିଆ ଭିତରେ ମରମ ଅଛି । କପାଳ ଭିତରେ କରମ ଅଛି । ବାଟ ଚାଲିବାରେ ଶରମ ଅଛି । ଜୀବର ଭିତରେ ପରମ ଅଛି । ସୂର୍ଯ୍ୟମଣ୍ଡଳରେ ଧରମ ଅଛି । ଗ୍ରୀଷ୍ମ ସମୟରେ ଘରମ ଅଛି । ତପତ ପାଣିରେ ଗରମ ଅଛି । ଜନ୍ତୁଙ୍କ ଦେହରେ ଚରମ ଅଛି । ନାରୀ ସଙ୍ଗମରେ ନରମ ଅଛି । ମୁହଁ ବୁଲାଇଲେ ଭରମ ଅଛି ।

---

୧୫. ଦୋକାନେ—ହୋଟେଲ୍‌ରେ । ୧୬. ଅନ୍ତ—ଉଦରସ୍ଥ ନାଡ଼ି । ୧୭. ସଂପାଦିବା—ଯୋଗାଡ଼କରି ରଖିବା । ୧୮. କୋଦୁଅ—ତୃଣଧାନ୍ୟ ବିଶେଷ । ୧୯ ମାଣ୍ଡି—ବଡ଼ ତକିଆ ଦିଆ ଆସନ । ୨୦. ଭାଣ୍ଡ—ଭଣ୍ଡକଥା । ୨୧. କମ୍ବଳ—ରେଶମ । ୨୨. ଗୋଳ୍ଦି—ଗଳି, ଅଣଓସାରିଆ ବାଟ । ୨୩. ଗୋଲା, ପାଲିଆ ଆଦି—କୁମୁଟି ଛଡା ଅନ୍ୟଗୁଡ଼ିକ ଦକ୍ଷିଣ ଓଡ଼ିଶାର ଶୂଦ୍ର ଜାତି ବିଶେଷର ନାମ, କୁମୁଟି—ବୈଶ୍ୟ ଜାତି । ୨୪. ରେଡ଼ିକାଣୀ—ରେଡ଼ିକା ନାମକ ତେଲୁଗୁ ଜାତିର ସ୍ତ୍ରୀ । ୨୫. ତାହା କହିବା—ମାନ୍ୟାର୍ଥେ ବହୁବଚନ 'ଆମ୍ଭେ କହିବୁଁ'ର ବିକଳ୍ପ ରୂପ (ପ୍ରାଚୀନ) । ୨୬. ଚମତ୍କାର—ଆଶ୍ଚର୍ଯ୍ୟକର ବିଷୟ । ୨୭. କି କି—କଣ କଣ । ୨୮. ଗୁଣ୍ଡିଆ—ଛାତି, ହୃଦୟ । ୨୯. ଧରମ—ଧର୍ମଦେବତା । ୩୦. ଘରମ—ଘର୍ମ, ରୌଦ୍ର । ୩୧. ଚରମ—ଚର୍ମ । ୩୨. ନରମ—ନର୍ମ, କୌତୁକ । ୩୩. ଭରମ—ଭ୍ରମ, ଭରମିଯିବା । ୩୪. ସାଳ—ପଲା ।

ନ ଥିବାରେ କି କି ନାହିଁ, ତାହା କହିବା । ଯୋଗୀର ଥାଳ ନାହିଁ । ଶୋଇବାକୁ ସାଳ ନାହିଁ । ବସିବାକୁ ପାଳ ନାହିଁ । ଘରରେ ଚାଳ ନାହିଁ । ମୁଣ୍ଡରେ ବାଳ ନାହିଁ । ଧାତୁରେ ଝାଳ ନାହିଁ । ପୁଣ୍ୟକୁ କାଳ ନାହିଁ । ଦେହରେ ବଳ ନାହିଁ । ରଇତର ହଳ ନାହିଁ । ନିନ୍ଦିଲେ ଛଳ ନାହିଁ । ଚାଲିବାକୁ ଥଳ ନାହିଁ । ସମ୍ବନ୍ଧକୁ କୂଳ ନାହିଁ । ଫରିର ଠୂଳ ନାହିଁ । ନଡ଼ିଆର ଚୂଳ ନାହିଁ ।

ଏପରିରେ ସେ ରାଜ୍ୟରେ କୋଟିଏ ଊଣା ଦଶ ହଜାର ଫଉଜକୁ ମହାବାହାଦୁର ଦଶ ଦଶ ସରଦାର । କେଉଁ କେଉଁମାନେ ? କାଞ୍ଜି ବୈରିଗଞ୍ଜନ, ତୋଡି ଭାରୋଇମଲ୍ଲ, କୁଣ୍ଡା ଶତ୍ରୁଶଲ, ଗନ୍ଧସାର ରଣହାନ୍ଦୋଳା, ମଦରଙ୍ଗା ମେଦିନୀରାୟ, କଳମ୍ବ ବଳିଆର ସିଂହ, କଳିଆର ବଳିଆରାଜ, ନାଲିଆଟାକରେ ଭାଲିଆରାଜ । ଯୁଦ୍ଧ ଦେଖିଲେ ପଛଘୁଞ୍ଚା ଦିଅନ୍ତି । ଛୁରି ଦେଖିଲେ ହୁରି କରନ୍ତି । କାତି ଦେଖିଲେ ଛାତି କମ୍ପାନ୍ତି । ଖଣ୍ଡା ଦେଖିଲେ ଦଣ୍ଡା ହୋଇ ଶୁଅନ୍ତି । ଫରି ଦେଖିଲେ ସରି ଯାଆନ୍ତି । ଛାଟ ଦେଖିଲେ କୀଟରୁ ବଳନ୍ତି । ନଳି ଦେଖିଲେ ଗଳି ଯାଆନ୍ତି । ପଟା ଦେଖିଲେ ଛଟା ଗାଳନ୍ତି । ଗଦା ଦେଖିଲେ ପଦାରୁ ପଳାନ୍ତି । କୁନ୍ତ ଦେଖିଲେ ଅନ୍ତରେ ସଢ଼ନ୍ତି । ପ୍ରାସ ଦେଖିଲେ ତ୍ରାସରେ ଥରନ୍ତି । ସାପ ଦେଖିଲେ ବାପ ବୋଲନ୍ତି । ଏତେ କଥାରେ କି ଅଛି, ଲୁହାଧରାକୁ ଦେଖିଲେ ଜୁହାର ବୋଲି ପଳାନ୍ତି ।

ସେ ଦେଶର ବେଶ୍ୟା କିପରି କି ? ଲେଭିଡ଼ୀ ଲୀଳାବତୀ, ଥୋବଡ଼ୀ ଜଗାନ୍ମୋହିନୀ, ଲେସଡ଼ୀ କଳାବତୀ, ଭେଷଡ଼ୀ ଇନ୍ଦୁବଦନା, ଦାନ୍ତୁଡ଼ୀ କୁନ୍ଦରଦନା । ଏପରି ତାଙ୍କ ନାମ । ଅନୁକୂଳକୁ ସେ ବାମ ।। ଦେଖିଲେ ନିବର୍ତ୍ତଇ କାମ ।। ନେତ୍ରରେ ନରକ ୫୩ ଧାମ ।। କଣ୍ଠରେ କଉଡି-ଦାମ ।। ପହଣ୍ଡେ ଚାଲିକି ଝାମ ।। କେନ୍ଦୁକାଠ

୩୫. ଝାଳ—ଧାତୁକୁ ଯୋଡ଼ିବା ପ୍ରକ୍ରିୟା । ୩୬. ପୁଣ୍ୟକୁ କାଳ—ପୁଣ୍ୟ କର୍ମ ଲାଗି ଉପଯୁକ୍ତ ସମୟ । ୩୭. ରଇତ—କୃଷକ, ରୟତ । ୩୮. ଥଳ—ସ୍ଥଳ । ୩୯. ସମ୍ବନ୍ଧକୁ କୂଳ—ବୈବାହିକ ସମ୍ବନ୍ଧ ସ୍ଥାପନ ପାଇଁ କୁଳ-ମର୍ଯ୍ୟାଦାର ଆବଶ୍ୟକତା । ୪୦. ଫରି—ଚର୍ମ ଆଡ଼ଣି । ୪୧. ଠୂଳ—ଧରିବା ଲାଗି ମୁଠି । ୪୨. ଏପରିରେ—ଏପ୍ରକାର ହୋଇଥିବା । ୪୩. କଳିଆର—ଘୋଡା ମୁହଁରେ ଦେବା ଲୌହ ଉପକରଣ । ୪୪. ପଟା—କାଠର ବୃହଦାକାର ଆଡ଼ଣି । ୪୫. ଛଟା ଗାଳିବା—ମିଛରେ ଅଭିନୟ କରିବା । ୪୬. କୁନ୍ତ—ଭୁଷା । ୪୭. ପ୍ରାସ—କ୍ଷେପଣୀୟ ଅସ୍ତ୍ର ବିଶେଷ । ୪୮. ଲେଭିଡ଼ୀ—ଲମ୍ପଟୀ (ଓଡ଼ିଶାରେ ବେଶ୍ୟା ନ ଥିବାରୁ ଦକ୍ଷିଣ ଭାରତୀୟ ଢଙ୍ଗରେ ଇଙ୍ଗିତେରୁ ଭାବେ ବ୍ୟବହୃତ ହୋଇଛି) । ୪୯. ଥୋବଡ଼ୀ—ଅଲାଜୁକୀ । ୫୦. ଲେସଡ଼ୀ—ନିଷେଧିତ ହୋଇ ସୁଦ୍ଧା ପ୍ରାର୍ଥନାକାରିଣୀ ନାରୀ, ୫୧. ଭେଷଡ଼ୀ—ଅଶ୍ଳୀଳ ଚରିତ୍ରା । ୫୨. ବାମ—ଶୁଭନାଶକ । ୫୩. ନରକ ଧାମ—ଇଙ୍ଗିତ ଅର୍ଥ । ୫୪. ଦାମ—ହାର ।

ପରି ଶ୍ୟାମ ।। ଆକୁଆ ଟାକୁଆ ଗାଲ । ଭାତୁଡ଼ି ଭରତି ଭାଲ ।। ଭୂଲତା ମଧରେ ଖାଲ । ଆଖିରେ ପରଳ ଜାଲ ।। ଶ୍ରବଣ ଅଳପ କାଲ ।। କୋତରା ଅଖା ସାଲ ।। ଖଟ ଶେଯ ଛେଳିଛାଲ ।। ଏପରି ଅର୍ଜନ୍ତି ମାଲ :—କପା ହେଲେ ପଳେ । ମୁଡ଼ି ହେଲେ କଳେ ।। କଉଡ଼ି ହେଲେ କଡ଼ାଏ । କୋଳଥ ହେଲେ ଅଢ଼ାଏ ।। କୋତ ହେଲେ ଯୋଡ଼ାଏ । କୟାଁ ହେଲେ ଫଡ଼ାଏ ।। ନାଗରମାନେ ଦେବାର ଏହା ।

ସଂସାରୀମାନଙ୍କ ବଡ଼ ମରଜି । କେତେ କହିବା ଗରଜି ଗରଜି ।। ସ୍ତ୍ରୀ-ପୁରୁଷ ଯୋଡ଼ିଏ ଜାତି । ବାଟେ ଘାଟେ ଯେବେ ଭେଟାଭେଟି ହୋନ୍ତି ।। ପୂର୍ବ ପରିଚୟ ନୋହେ କାହାର କେହି । ମୁଲାକାତ ହେବା କ୍ଷଣେ ସମ୍ଭାଷଣା ଏହି :—ତୁମ୍ଭେ କିଏ ସେ ? ନା, ତୁମେ କିଏ ସେ ? ଆମ୍ଭେ ପୁରୁଷ । ନା, ଆମ୍ଭେ ସ୍ତ୍ରୀ; ତୁମ୍ଭେ ତ ପୁରୁଷ ଆମ୍ଭେ ତ ସ୍ତ୍ରୀ, ତୁମ୍ଭେ ଆମ୍ଭେ ସଙ୍ଗ ହେବା କି ? ଭଇଁଚ ଲଟାକୁ ଯିବା କି ? ରତିକି ସଭା, ସୌନ୍ଦର୍ଯ୍ୟକୁ ଗଭା ।

ଏ ରୂପେ ପ୍ରଭୁତାରୁ ସେ ରାଜ୍ୟ ରାଜାଙ୍କର ଶୌର୍ଯ୍ୟ, ସୌନ୍ଦର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ, ଚାତୁର୍ଯ୍ୟାଦି ଗୁଣମାନଙ୍କୁ କହିବା । ଭଲ୍ଲାତକର୍ଣ୍ଣ ବୋଲି ସେ ରାଜ୍ୟର ମହାରାଜା । ଯାହାର ସିଂହଦୁଆରେ ଘୁମୁରା ବୀରବାଜା ।। ସେ ମହାରାଜା ମହାଦୀପ୍ତିମାନ । ତାଙ୍କର ନୀତି କିପରି ? ଜନକ ରାଜାଙ୍କର ନ ଥିଲା । ଯୁଧିଷ୍ଠିରଙ୍କର ନ ଥିଲା । ଭୋଜ ରାଜାଙ୍କର ନ ଥିଲା । ମାନଧାତା ଚକ୍ରବର୍ତ୍ତୀଙ୍କର ନ ଥିଲା । ବୀର ବିକ୍ରମାଦିତ୍ୟ ମହାରାଜାଙ୍କର ନ ଥିଲା । ତେଣୁ କରି ମାଗଧମାନଙ୍କ ସଙ୍ଗେ ଧୂଳି ସୁପାତିରେ ପହୁଡ ହୁଏ । ସୂର୍ଯ୍ୟୋଦୟକୁ ଘେନି ବେଳ ଦୁଇ ଘଡ଼ି ପର୍ଯ୍ୟନ୍ତେ ଅନ୍ତଃପୁରେ ବିଜେ ହୁଅନ୍ତି । ଏହି ସମୟରେ ଖନ୍ଦା ଫରମାସି ହୁଅଇ :—ଚୁଚୁନ୍ଦ୍ରା ମାଂସ ପଲାଉକୁ ପେଚାପକ୍ଷୀ ଝୋଳ । ନ ଅଣ୍ଟିଲା ପରି ମହାସୁଆରକୁ ଖନ୍ଦାଫରମାସି ହୁଅଇ । କଳିକତୀ ଗଞ୍ଜାଇ ପତ୍ରର ସେରେ ଚୂର୍ଣ୍ଣ ପ୍ରସାଦ ସେବା ହୁଅଇ । ଲିଆ ପରାୟେ ଲଘୁ ଆହାର

୫୫. ଝାମ—ଶ୍ରାନ୍ତି । ସାଲ—ଘୋଡ଼ି ହେବା ବସ୍ତ୍ର, ଶାଲ । ୫୭. କୋତ—ବଡ଼ କଳସୀ । ୫୮. ନାଗର—ଲମ୍ପଟ । ୫୯. ସଂସାରୀ—ସମ୍ପତ୍ତିଶାଳୀ । ୬୦. ମୁଲାକାତ—ଦେଖା । ୬୧. ଭଇଁଚ—ବୃକ୍ଷ ବିଶେଷ । ୬୨. ଲଟା—ଘଞ୍ଚ ଲତାବୃକ୍ଷ ଥିବା ସ୍ଥାନ । ୬୨. ଗଭା—ମଥା (ରାଳୁଡ଼ା ଭାଷାରେ), ପୁରୁଷଟି କହିଲା ଯେ ଆମ୍ଭ ଦେଶୀୟ ଆଚାରରେ ରତିକ୍ରୀଡ଼ାର ଉପଯୁକ୍ତ ସ୍ଥାନ ଯେପରିକି ଅନ୍ୟତ୍ର ଓଢ଼ଣାରେ ଢାଙ୍କି ରହୁଥିବା ମସ୍ତକ-ଶୋଭା ପ୍ରଦର୍ଶନର ଉପଯୁକ୍ତ ଅଙ୍ଗ, ତେଣୁ ଭଇଁଚ ଲଟାକୁ ଯିବା ଅକାରଣ । ୬୩. ଭଲ୍ଲାତକର୍ଣ୍ଣ—ଯାହାର କାନ ଭାଲିଆ ପରି ଛୋଟ । ୬୪. ଘୁମୁରା—ବାଦ୍ୟ ବିଶେଷ । ୬୫. ମାଗଧ—ଭାଟ । ୬୬. ସୁପାତି—ଶେଯ । ୬୭. ପହୁଡ଼—ଶୟନ । ୬୮. ଖନ୍ଦା—ରୋଷେଇ । ୬୯. ଫରମାସି—ଆଦେଶ । ୭୦. ପରାୟେ—ପରି, ପ୍ରାୟ ଶବ୍ଦଜ ।

ହୁଅଇ । ସୁକୁମାର ମଣୋହି ବଢ଼ିଲା ଶେଷରେ ଅନାଚାର ଆଚମନ ବଢ଼ଇ । ଶୁଦ୍ଧ ଖଡକୁଡ଼ରୁ ଆସିଥିବା ଚଣ୍ଡାଳଚର୍ବିତ ଗୁଣ୍ଡି ଗୁଆ ବିଡ଼ିଆ ଲାଗି ସମୟରେ ପୁରୋହିତ ଅକଲ୍ୟାଣ ମହାପାତ୍ର ଗୋସାଇଁ ଆସି ଅମଙ୍ଗଳାରୋପଣ ସାରି ଏପରି ଆଶୀର୍ବାଦ ଦିଅନ୍ତି । କି ରୂପେ କି:—

ରାସଭସ୍କନ୍ଧମାରୂଢ଼ୌ ଗୃଧ୍ରଗୋମାୟୁ ଭକ୍ଷତାମ୍ ।
କୁଟୁମ୍ବଃ କ୍ଷୀଣତାଂ ଯାତୁ ଯୋଷିତ୍ ଭ୍ରଷ୍ଟା ଭବାସ୍ତୁ ହି ॥
ଆଶୀର୍ବାଦଃ ଶିରଶ୍ଛେଦଃ ପତ୍ନୀଭ୍ରଷ୍ଟଃ ତଥୈବ ଚ ।
ପୁତ୍ରପୌତ୍ରାଃ କ୍ଷୟଂ ଯାନ୍ତୁ ନିଷ୍ଟମ୍ଭ୍ୟାସୁଖୀ ଭବ ॥

ଏପରି ଦୀର୍ଘାୟୁ ପ୍ରତିପତ୍ତିକୁ ଆଶୀର୍ବାଦ ଗ୍ରହଣାନ୍ତରେ ରାଜାଙ୍କର ଥିବା ପ୍ରତିକୂଳ ଜ୍ୟୌତିଷରତ୍ନେ ଦିନାଦି ପାଞ୍ଜିପଞ୍ଚାଙ୍ଗ ଜଣାନ୍ତି । କିପରି କି :—

ତୈଲାଙ୍ଗୀ ଯବନୀ ପୁଳିନ୍ଦଗୃହିଣୀ ପୋଟା ବହିର୍ଦାସିକା
ଲାଜା ସର୍ପ ବିଲୋଚନା ଚ ଶବରୀ ହୀନମ୍ବର ଯୋଷିତା ।
ଏତେ ନାଶପ୍ରଦାସ୍ତତେ ନରପତେ ଦତ୍ୱାଶିଷଂ ସର୍ବଦା
ଗୋଧାଗୃଧ୍ରପକ୍ଷୀ ଚ ପେଚକପକ୍ଷୀ କୁର୍ବନ୍ତୁ ଚାମଙ୍ଗଳମ୍ ॥

ମହାରାଜ ! ମଙ୍ଗଳବାର ପନ୍ଦର ଦଣ୍ଡ ଥାଇଁ ଶୁକ୍ରବାର ପ୍ରବେଶ ହେବ । ତିଥି ପୂର୍ବାଷାଢ଼ା ଅଣଚାଶ ଦଣ୍ଡ । ଆୟୁଷ୍ମାନ୍ ନକ୍ଷତ୍ର ବୟାଳିଶ ଦଣ୍ଡ । ଦୁଇପାଦ ଚନ୍ଦ୍ର ପନ୍ଦର ଦଣ୍ଡ । ବୃଷ କରଣ ଷାଠିଏ ଦଣ୍ଡ । ରବି ଚଉଦ ଅଂଶ ପଞ୍ଚତ୍ରିଂଶ କଳାକୁ ମାସର ସାତଦିନ ଭୋଗ ହେଲା । ତାର ସପ୍ତମ, ଚନ୍ଦ୍ର ଅଷ୍ଟମ । ଦିନଯାକ ବିଷ୍ଟି କରଣ । ମହାରାଜ, ସମସ୍ତ ଶୁଭ ହୋଇ ଅଛନ୍ତି । ବାମ ପାଖ ଶ୍ରୀଅଙ୍ଗ ମଧ ସ୍ଫୁରୁଥିବ । ଦକ୍ଷିଣ ଦିଗକୁ ଯାତ୍ରା । ଆଜ ଅର୍ଦ୍ଧରାତ୍ର ସମୟରେ ପନିଅର ଲାଗିକି ଉତ୍ତମ ଯୋଗାଉଛି । ଯେ ଦିବ୍ୟ ଅବଧାନକୁ ଆସିବ ।

---

୭୧. ମଣୋହି—ଭୋଜନ। ୭୨. ବଢ଼ିବା—ସମ୍ପନ୍ନ ହେବା । ୭୩. ଶୁଦ୍ଧ—ଖାଣ୍ଟି । ୭୪. ବିଡ଼ିଆ ଲାଗି—ପାନଖିଆ । ୭୫. ମଙ୍ଗଳାରୋପଣ—[illegible]ହାଦି ଶୁଭକର୍ମର ପ୍ରଥମ କର୍ମ । ୭୬. ପଞ୍ଚାଙ୍ଗ—ପାଞ୍ଜିର ଏହି ପାଞ୍ଚୋଟି ବିଷୟ—ବାର, ତିଥି, ନକ୍ଷତ୍ର, ଯୋଗ, କରଣ । ୭୭. ପୂର୍ବାଷାଢ଼ା—ତିଥି ନୁହେଁ, ନକ୍ଷତ୍ର ବିଶେଷ । ୭୮. ଆୟୁଷ୍ମାନ୍—ନକ୍ଷତ୍ର ନୁହେଁ, ଯୋଗ ବିଶେଷ । ୭୯. ଦୁଇପାଦ—ଚତୁଷ୍ପଦ କରଣର ବ୍ୟଙ୍ଗ୍ୟ । ୮୦. ବୃଷ—କରଣ ନୁହେଁ, ରାଶି ବିଶେଷ (ଚତୁଷ୍ପଦ କରଣ ଓ ବୃଷଚନ୍ଦ୍ର ହେବା କଥା) । ୮୧. କରଣ—ତେତିଶ ଦଣ୍ଡରୁ ଅଧିକ ହେବା ଅସମ୍ଭବ । ୮୨. ସାତଦିନ—ମାସର ସପ୍ତମ ଦିନକୁ ରବ୍ୟଂଶ ୫ରୁ ୭ ମଧରେ ରହିବା କଥା । ୮୩. ତାର ସପ୍ତମ—ଏହା ଅତି ଅଶୁଭକର । ୮୪. ଚନ୍ଦ୍ର ଅଷ୍ଟମ—ଅଷ୍ଟମ ଚନ୍ଦ୍ର ଅଶୁଭକର । ୮୫. ବିଷ୍ଟି—ସର୍ବାପେକ୍ଷା ଅଶୁଭକର କରଣ (କରଣଟିଏ ଦିନସାରା ରହି ନ ପାରେ) । ୮୬. ପନିଅର ଲାଗି—କ୍ଷୌରକର୍ମ (ରାଜୁଡ଼ା ଭାଷା) । ୮୭. ଯେ ... ଆସିବ—ଆପଣ ଏହା ଜାଣନ୍ତୁ (ରାଜୁଡ଼ା ଭାଷା) । ୮୮. ସୁଜେଇ—ଝାଡାଯିବା (ରାଜୁଡ଼ା ଭାଷା) ।

ଏପରି ପଞ୍ଚାଙ୍ଗ ଶ୍ରବଣ ବଢ଼ିଲା ଉତ୍ତାରୁ ଦନ୍ତଧାବନ ସୁଲେଇ ଏକାବେଳେକେ ବଢ଼ିଲା । ଦ୍ୱାଦଶାଙ୍ଗୁଳ ସ୍ଥୂଳ ଅଷ୍ଟାଦଶାଙ୍ଗୁଳ ଦୀର୍ଘ ଚିତ୍ରକିଳାସନ ଉପରେ ଦେବାର୍ଚ୍ଚନ ବଢ଼ିଲା । ନିରକ୍ଷର ବାହିନୀପତି ପୁରାଣପଣ୍ଡା ଗୋସାଇଁ ଶୁଣାଇବାର ପୁରାଣ କିପରି ବୋଲନ୍ତେ :—

(ପୁରାଣ)

ଗୁଡସେଠୀ ପୁରୁଷାୟ ଛୋକରାଣି ଚ ଶେଖରମ୍ ।
ଖରଂ ଚ ମନସି ଧ୍ୟାତ୍ୱା ତତୋ ଜୟମୁଦୀରୟେତ୍ ॥
କୁଳଟାନାଂ ନିସର୍ଗାୟ ନମସ୍ତସ୍ମୈ ଦୟାଳବେ ।
ଯେନ ତାଃ ସ୍ୱପତିଂ ହତ୍ୱା ପାଳୟନ୍ତି ପରାପରମ୍ ॥

ଶ୍ରୀ କୁଳଟାୟୈ ନମଃ

କଦାଚ ବ୍ରହ୍ମହତ୍ୟାୟାଂ କଳିଂ ପପ୍ରଚ୍ଛ ଦୁର୍ଣ୍ଣୟଃ ।
କେନୋପାୟେନ ସଂସାରାତ୍ ତରିଷ୍ୟନ୍ତୀତି ଦେହିନଃ ॥
ସର୍ବୋଚ୍ଛାଦନ-ଚାତୁର୍ଯ୍ୟଂ ଧୂରୀଣାସି ମହାମତେ ।
ବପ୍ରବେଶା ମହାଶିକ୍ଷା ଯରୋକ୍ଷା ମଟିସ୍ୱତିଃ ॥

ଓଁ କଳିରୁବାଚ

କଥୟାମି ପରଂତତ୍ତ୍ୱଂ ଶୃଣୁ ବହେ ସମାହିତଃ ।
ଅନୁଗ୍ରହ ସମେ ପାତଂ ଯତୋଽସି ମୟି ଭକ୍ତିମାନ୍ ॥
ପାପାତ୍ସଂବର୍ଦ୍ଧତେ ଲକ୍ଷ୍ମୀଃ ପାପାତ୍ସଂବର୍ଦ୍ଧତେ ଯଶଃ ।
ପାପାଦ୍ଦୀର୍ଘଂ ଭବେ୍ ...ଃ ପାପାତ୍ ନାସ୍ତ୍ୟଧିକଂ ବ୍ରତମ୍ ॥
ସେବ୍ୟତାଂ ପାପକର୍ମାଣି ତ୍ୟଜ୍ୟତାଂ କୃତିନୋ ଜନାଃ ।
ସର୍ବପାତକ କର୍ତ୍ତୃଣାଂ ସ୍ଥାନକ୍ଷେତ୍ରମୁଦାହୃତମ୍ ॥
ଏକସ୍ତେ ବଧ ସଂବ୍ରାତ ବ୍ରାହ୍ମଣଂ ଚ ବିଶେଷତଃ ।
ତିରସ୍କାରଂ ଚ ସମ୍ବିଦଂ ନାନା ଜାତି ସମୁଦ୍ଭବମ୍ ॥

୮୯. ବଢ଼ିଲା—ସମ୍ପାଦିତ ହେଲା । ୯୦. ଚିତ୍ର କିଳାସନ—ଚିତ୍ରିତ କୀଳକ ରୂପୀ ଆସନ । ୯୧. ଦେବାର୍ଚ୍ଚନ—ରାଜାଙ୍କ ସନ୍ଧ୍ୟା, ପୂଜା କର୍ମ ।

ନ ପିବେସ୍ତ୍ୱପଚେବସ୍ୟ (?) ନାପିତାନ୍ ବ୍ରାହ୍ମଣାନ୍ ଭଜେତ୍ ।
ବିବିଧା ଚିନ୍ତୟା ଶାନ୍ତି ଯାବନ୍ନ ଚରଣ ଦ୍ୱୟମ୍ ।।
ଗଙ୍ଗାୟାଂ ଶ୍ଳାଘ୍ୟମାଲୋକ୍ୟ ବିନା ସ୍ନାନଂ ଗୃହଂ ବ୍ରଜେତ୍ ।
ଦୃଷ୍ଟ୍ୱା ଗୋବ୍ରହ୍ମହନ୍ତାରଂ କର୍ତ୍ତାନୃଣ୍ୟଂ ବିମୁଚ୍ୟତାମ୍ ।।
ଲବ୍ଧ ବିତ୍ତଂ ନ ଭୁଞ୍ଜିତୋ ବିତଯୁତଃ ଦିବୋତ୍ତମଃ ।
ଚୌର୍ଯ୍ୟୈଃ ସୌର୍ବର୍ଜ୍ଜିତୈର୍ବିତ୍ତୈଃ ଶରୀରଂ ପାଳୟ ସ୍ୱକମ୍ ।।
ସଂପର୍କଂ ପଣ୍ଡିତୈଃ କୃତ୍ୱା ତାତ କ୍ଷୋଭଃ ଭବିଷ୍ୟତି ।
ଅକ୍ଷରାଙ୍କେନ ସଂଗ୍ରନ୍ଥା ଶକାରୈଃ ତତ୍ର ଯୈଃ ନିତ୍ୟମ୍ ।।
ଇଦଂ ରହସ୍ୟମାୟୁଷଂ ମୁକ୍ତିସ୍ନେହାତ୍ତବାଗ୍ରତଃ ।
ଅନେକ କର୍ମଣାଂ ନାଶଃ ପରତ୍ରେହ ଚ ଯାସ୍ୟତି ।।

ଓଁ ହରି ତତ୍‌ସତ୍ । ଇତି ଶ୍ରୀ ବିଧୁତ ନାନା ପାପତନୋର୍ହିତଃ ମୂଳସ୍ୱତାମିପତ୍ରାବନ ତପ୍ତି କଂସାହାତି ନରକଚୟ ପରିଚୟୋ ଚାତୁର୍ଯ୍ୟ ପ୍ରତିପାଦକେ କୌତୁକାର୍ଣ୍ଣବେ ମହାପୁରାଣେ କଳି ଦୁର୍ଣ୍ଣୀତି ସମ୍ବାଦେ ତ୍ରୟୋଦଶୋଽଧ୍ୟାୟଃ ।

ଅମଙ୍ଗଳଂ ମହାପୂର୍ବଂ ଜଗତୁ ପ୍ରଳୟଂ ଯାତୁ ।
ଶିଶିରେ ବର୍ଷତୁ ମେଘୋଽଶୁଭ ବିପ୍ରା କୃଷିକ୍ଷୀଣା ।।

ପୁରାଣପଣ୍ଡା ଗୋସାଇଁ ଏପରି ପାରାୟଣ ସାରି, ପୋଥି ବାନ୍ଧି, ପୋଥି ଶ୍ରୀ ମହାରାଜାଙ୍କ ନାକରେ ଛୁଆଁଇ ପ୍ରସାଦ ବିଲ୍ୱଆତି-ଦଳ ଚକ୍ଷୁରେ ଘଷି ଦେଇ ଶ୍ରୀ ମହାରାଜାଙ୍କଠାରୁ ଆଶୀର୍ବାଦ ଘେନି ବିଦା ହୋଇଗଲା ଉତ୍ତାରୁ ଦିବାନ ଆଦିଦୁର୍ବୋଧ ଧୁରନ୍ଧର ବେହିଆ ମହାପାତ୍ରେ ଆସି ଶ୍ରୀଛା[illegible] ପଞ୍ଚାଶ ଜଣ ବାଉରି ଭଲଲୋକ ଥିବାରେ ଅତି ଏକାନ୍ତରେ ଅତି ଧୀର କରି ମେଘ ଗର୍ଜିତ ସାମାନ୍ୟ ସ୍ୱରରେ ପିଠିଆଡ଼ ଛାମୁରେ ଯାଇ ରହି କହନ୍ତି । କି ରୂପେ କି :—"ହେ ମହାରାଜ, ସଦାନନ୍ଦ ବ୍ରହ୍ମଚାରୀ ଗୋସାଇଁଙ୍କର ଝିଅ ଗୋଟିଏ, ସନ୍ନ୍ୟାସୀ ଅଶମ୍ଭୁ ତୀର୍ଥସ୍ୱାମୀଙ୍କର ଝିଅ ଗୋଟିଏ, ରାଜଗୁରୁ ଗୋସାଇଁଙ୍କର ଝିଅ ଗୋଟିଏ, ପୁରୋହିତ ଗୋସାଇଁଙ୍କର ଝିଅ ଗୋଟିଏ

---

୯୨. ଦଳ—ପତ୍ର । ୯୩. ବିଦା—ବିଦାୟ । ୯୪. ଶ୍ରୀଛାମୁ—ରାଜାଙ୍କ ସମ୍ମୁଖ । ୯୬. ନାକନାଉଛି—ଅଜବ ଶବ୍ଦ, କାନନାଉଛିରେ କାନଫୋଡ଼ା ହୁଏ । ୯୬. ଦୁର୍ବାକ୍ଷତ—ନିଷେକ (ରାଜୁତା ଶବ୍ଦ) ୯୭. ନଚିକ—ନିକଟ । ୯୮. ଦେଉ—ଦେବ, ମହାରାଜା ।

ଏପରି ଚାରି କନ୍ୟାଙ୍କର ନାକନାଉଳି ସମୟରେ ଉଚିତ ହେବାର ଦୁର୍ବାକ୍ଷତ ବିଧି ବିଚାରି ନ ପାରିବାରୁ ଏହି ନଜିକରେ ଚାରି କନ୍ୟାଯାକ ପିତୃତର୍ପଣ ତୀର୍ଥରେ ପୁଷ୍ପବତୀ ହେଲେ । ଦେଉ ତ ଗଧପତି, ସାକ୍ଷାତ୍ ଅଧର୍ମ ଅବତାର, ଭୂମି-ଶବର ପରି ମହାରାଜତ୍ୱ କରି ଆଜ୍ଞା ଦେଉ ଅଛନ୍ତି; ମହାପ୍ରଭୁ ପାରଂପର୍ଯ୍ୟ ପ୍ରକ୍ରମରେ ମହାରାଜାଙ୍କ ଦରବାରରେ ଚଳି ଆସୁଥିବା ନ୍ୟାୟକୁ ବିଚାରିଲେ ସେ ଚାରି କନ୍ୟାଙ୍କୁ ସରକାରକୁ ଆଣିବାକୁ ହେବ । ନୋହିଲେ, ରାତି ସହରରେ ରୋଜ ବୁଲିବାର କଟୁଆଳ ଅବା ପଠାଣ ପାଇକେ ନେବାର ମର୍ଯ୍ୟାଦା । ଭାଇ ନ ଥିବା ପକ୍ଷକୁ ମାମୁଁ ଭୋଗ କରିବାର ପସନ୍ଦ । ଏବେ ମହାରାଜାଙ୍କ ପରା ପରମାବିବେକ ଶ୍ରୀ ଖାମିନ୍ଦ ବିଜେ ଅବସ୍ଥାନ କରୁ କରୁ ରାଜ୍ୟ ଅରାଜକ ହେଲା ପରିରେ । ସେ କନ୍ୟାମାନଙ୍କୁ ପୂର୍ବରୁ ବିବାହ ହୋଇଥିବା ଅଣ୍ଡିରାମାନେ ଆସି ଘେନିଯିବାକୁ ନାନା ହେଙ୍ଗମା କରୁଅଛନ୍ତି । ଏଥକୁ ରାଜ ଆଜ୍ଞା ହେଲେ ସେ କନ୍ୟାମାନଙ୍କର ମାଆମାନଙ୍କୁ ବଦଳି ଦିଆଯାଇ ସମୁଜାଇ ଦେବାକୁ ପଡ଼ିବ । ମହାରାଜ ! ଲୋକେ କହିବାରେ ବିବାହ ପୁଣି ଠିକଣା ନାହିଁ । ଛାମୁଣ୍ଡିଆ ଉପରେ ବେଦୀ ତଳରେ, ପୁରୋହିତ ପୁଣି କର୍ମ କରି ହସ୍ତଗ୍ରନ୍ଥି ପକାଇ ଦେଇ ବାହାରିଗଲେ । ମହାରାଜ ! ଯଥାବିଧିରେ ଯେ ଟି । ନଦୀ ତଟରେ ହେଲେ ହୁଅଇ, ତୋଟା ମାଳରେ ହେଲେ ହୁଅଇ, ଭଗ୍ନ ଦେବାଳୟରେ ହେଲେ ହୁଅଇ, ଏପରି ସିନା ବଡ଼ଲୋକମାନଙ୍କର ମର୍ଯ୍ୟାଦା । ପୁରୋହିତ ବାକ୍ୟ ପଢ଼ି ପଢ଼ି ହସ୍ତଗ୍ରନ୍ଥି ପକାଇ ଦେଇଯିବାର କିପରିରେ ହେଲା ? ଏ ସକାଶରୁ ମୁଁ ପ୍ରାନ୍ତରୁ ଜଣାଇଲା ପରି ହୁକୁମ ହେବାର ଅଛି । ନୋହିଲେ ରାଜଧର୍ମକୁ ବହୁତ ଅସୁନ୍ଦର ଦିଶିବ । ଦିବ୍ୟ ଅବଧାନକୁ ଆସିବ । ମହାପ୍ରଭୁ ! ଏ ସଂଶୟ ତ ଏପରି, ଆଉ ଗୋଟିଏ ବିଷୟ ଏହିପରି :—ଗୋଟିଏ ଅବିଦ୍ୟା ଭଲଲୋକ ଜଣଙ୍କ ଘରେ ଜାତ ହେଲାବୋଲି ଶୁଣାଯାଉଅଛି । ଏମନ୍ତ ଅନ୍ୟାୟ [illegible]ଥିଲେ ମୂଲକକୁ ଅମଙ୍ଗଳ ହେବ । ଆଜ୍ଞା ! ପୁରୋହିତେ ଲକ୍ଷ ଲକ୍ଷ ଭରଣ ଲୁଟି, ଅନେକ ମାଛ, ସହସ୍ର ସହସ୍ର ବୋଝ ସାରୁ

---

୯୯. ଗଧପତି—ଗଜପତିର ବ୍ୟଙ୍ଗ୍ୟ ।

୧. ଭୂମି-ଶବର—ଭୂମିସୁର (ବ୍ରାହ୍ମଣ)ର ବ୍ୟଙ୍ଗ । ୨. ମହାପ୍ରଭୁ—ରାଜାଙ୍କୁ ସମ୍ବୋଧନ । ୩. ସରକାର—ରାଜାଙ୍କ ଖୋଦ୍ ଅଧୀନ (ଭୋଗିନୀରୂପେ) । ୪. ରୋଜ—ପ୍ରତ୍ୟହ । ୫. ଖାମିନ୍ଦ—ପ୍ରଭୁ । ୬. ପରିରେ—ପ୍ରାୟ ଅବସ୍ଥାରେ । ୭. ହେଙ୍ଗମା—ଗୋଳ । ୮. ସମୁଜାଇ—ବୁଝାଇ । ୯. କର୍ମ—ବିବାହର କର୍ମାଣି । ୧୦. ବାକ୍ୟ—ଶାସ୍ତ୍ରୀୟ ବଚନ । ୧୧. ଦିବ୍ୟ ଅବଧାନକୁ ଆସିବ—ରାଜା ଏହା ବୁଝନ୍ତୁ, ଏପରି ଅର୍ଥ । ୧୨. ଅବିଦ୍ୟା—ମନ୍ଦକାର୍ଯ୍ୟ । ୧୩. ମୁଲକ—ରାଜ୍ୟ, ୧୪. ଆଜ୍ଞା—ବଡ଼ଙ୍କୁ ସମ୍ମାନ ଜ୍ଞାପକ ସମ୍ବୋଧନ ।

ଅମଳ କରୁଥିବାରୁ ଉତ୍କୃଷ୍ଟ କୁଳରେ ସମ୍ଭୂତ ଅଟନ୍ତି । ବାପେ ଯେବେ ଦଶବିଂଶ ବର୍ଷ ଭେଣ୍ଡିଆ ଥାନ୍ତେ, ମାଏ ଗ୍ରନ୍ଥ ପର୍ଯ୍ୟନ୍ତ ବ୍ୟାପିବାର ଅଖଣ୍ଡ ପାଣ୍ଡିତ୍ୟ ସଂପାଦିଥାନ୍ତେ ତେବେ କହନ୍ତେ । ଏବେ ହେଲେ ପଦେ ପଦେ ମନୁଷ୍ୟ ଭାଷା ପରି ପ୍ରତୀତ ହୋଇ ଯାଉଥିବାର କଥା କହିବା ପରି ପରା ଶକ୍ତ ଅଛନ୍ତି । ଏପରି ଜ୍ଞାତସାରରେ ଅଛନ୍ତି, ବୃଦ୍ଧି ଅଛନ୍ତି । ଆପଣ ପୁଣି ଠିଆ ନୋହି ବସି ପ୍ରସା କରି ପାଣି ଘେନି ପକାଇଲେ ! ମହାରାଜା ତ ବ୍ରାହ୍ମଣ ଭକ୍ତ; ପ୍ରଭୁ, ସେ ତ ବ୍ରାହ୍ମଣ । ତାଙ୍କଠାରୁ କଉଡି ଜରିମାନା ଚାଙ୍ଗଡ଼ା ଘରକୁ ଆସିବ ନାହିଁ । ଆଜ୍ଞା ହେଲେ, ଶହେ ବିସା ସାବଳା ଶୁଖୁଆ ଜରିମାନା ଘେନାଇ ଠାକୁରଘରମାନଙ୍କୁ ଦିଆଇବାକୁ ପଡ଼ିବ । ଏଥି ଉତ୍ତାରୁ, ମହାରାଜ, ସମସ୍ତ ଗଡ଼ିଆ ଧାଙ୍ଗଡ଼ାମାନେ, ସମସ୍ତ ଚାଷର ରଇତମାନେ, ସିପାଇ ଭଲ ଭଲ ଲୋକେ, ଭାଇ ଦାଦିମାନେ ମଧ ଅନ୍ନବସ୍ତ୍ର ନ ମିଳିଲାରୁ ଏବେ ରହି ନ ପାରନ୍ତି । ପାପଡ଼ା, କରଡ଼ି, ଚାକୁଣ୍ଡା, ସଲପ ଏପରି ମିଳୁଥିବା ସୁଭିକ୍ଷ ଜାଗାମାନଙ୍କୁ ଯାଇ ଜୀଇ ଘେନିବୁ ବୋଲି ଦୁଃଖ ଗୋଚର କରିବାରୁ ସମସ୍ତଙ୍କୁ ବାହା ଟେକି ଆଜ୍ଞା ହେଲେ, ରାଜ୍ୟ ବାହାର କରାଇ ଦେଲେ । ପ୍ରଭାତରୁ ଦେଶନ୍ୟାୟ ନିମିତ୍ତରେ ଯିବାକୁ ତୁଚ୍ଛା ମାଠିଆ, ଭାଲିଆ ପଲମ, ତଷ୍ଟ ଛେଲୁଆ, ତୈଳ କଳସୀ, ବାଳବିଧବା ସ୍ତ୍ରୀ, ନାଗସାପ, କପାମଙ୍ଗି, କଳାବିରାଡ଼ି ଏପରି ସମସ୍ତ ଅନୁକୂଳ-ସମ୍ଭାର ରଖି ଓଟକୁ ଜିନିସ ଦିଆଇବା ସମୟରେ ଆମ୍ଭ ତାଲୁକା କଳମ୍ବମୁଠା ସମ୍ବନ୍ଧ ଜନଶୂନ୍ୟପଡ଼ା ଗ୍ରାମରେ ଧାନୁଟା ଭିତରେ ଚାଉଳଟାଏ ବାହାରିବାର ମହାଉତ୍ପାତ ଖବର ଶୁଣି ପ୍ରୟାଣୋଦ୍ୟମ ମକୁବ କରାଇ ଫେରି ଶ୍ରୀଛାମୁକୁ ବାହାରି ଆସିଲି ।

୧୫. ବାପେ ... କହନ୍ତେ—ପୁରୋହିତଙ୍କ ପିତା ୧୦ [illegible] ବର୍ଷ ବୟସ୍କ ହୋଇଥିଲେ ନତୁବା ମାତା ବହି ଧରିବା ଭଳି ପଣ୍ଡିତା ହୋଇଥିଲେ ତାହାଙ୍କୁ [illegible]ୟରେ ତିଆରି ଥାନ୍ତେ, ଏପରି ଅର୍ଥ । ୧୬. ଜ୍ଞାତସାର—ଜ୍ଞାନ । ୧୭. ଆପଣ—[illegible] ପୁରୋହିତ । ୧୮. କଉଡ଼ି ଜରିମାନା—ଅର୍ଥଦଣ୍ଡ । ୧୯. ଚାଙ୍ଗଡ଼ା ଘର—ରାଜକୋଷ । ୨୦. ସାବଳା—ଦୀର୍ଘାକୃତି ପତଳା ଲୁଣି ମାଛ । ୨୧. ଗଡ଼ିଆ—ରାଜଧାନୀବାସୀ । ୨୨. ଧାଙ୍ଗଡ଼ା—ବନ୍ୟ ଯୁବକ । ୨୩. ପାପଡ଼ା—ପର୍ପଟ ବୃକ୍ଷ । ୨୪. କରଡ଼ି—ବାଉଁଶ ଗଜା । ୨୫. ସଲପ—ଗୁଆ ଜାତୀୟ ବୃକ୍ଷ (ପାପଡ଼ା ଆଦିକୁ ଦୁର୍ଭିକ୍ଷ ବେଳେ ଲୋକେ ପେଟବିକଳରେ ଖାଆନ୍ତି) । ୨୬. ଜୀଇ ଘେନିବୁ—ବଞ୍ଚିବୁ । ୨୭. ଦେଶନ୍ୟାୟ—ରାଜ୍ୟଶାସନ । ୨୮. ପଲମ—ଚଟକା ମାଟି ପାତ୍ର । ୨୯. ଛେଲୁଆ—ମାଟିପାତ୍ରର ଖଣ୍ଡ । ୩୦. ତୈଳ କଳସୀ—ଏହି ପର୍ଯ୍ୟାୟର ବସ୍ତୁଗୁଡ଼ିକ ଯାତ୍ରା ବିଘ୍ନକାରକ । ୩୧. ଅନୁକୂଳ-ସମ୍ଭାର—ଯାତ୍ରାରମ୍ଭବେଳେ ଦେଖିଲେ ଶୁଭଙ୍କର ହେବା ବସ୍ତୁ ।

ଏପରି ନିତ୍ୟନିତ୍ୟ ହକିକତ ଗୋଚର କରି ଦିବାନାଦି ମେଲାଣି ହୋଇ ବଣକୁ ଯିବା ଉତ୍ତାରୁ ଚାରିପାଖରେ ଚାରିଜଣ ଲମତା ରହି ବିପରୀତ 'ରାମ' ନାମ ଶୁଣାଉଥିବା ସମୟରେ ବହିର୍ବାସୀ ହେବା ପୁଳିନ୍ଦୀ ଦାସୀମାନେ ଆଣି ହାଜର କରିବାର ଦିବ୍ୟ ଶୁଦ୍ଧୋଦକରେ ଦେହପାଣି ବଢ଼ାଯାଏ ।

ଏମନ୍ତ ସମୟରେ ପ୍ରାଣାନ୍ତକ ବୈଦ୍ୟଚନ୍ଦ୍ର ଆସି ଶ୍ରୀହସ୍ତ ଦେଖି ଜଣାଇବାର କିପରିରେ ବୋଲନ୍ତେ—ମହାପ୍ରଭୁ, ବାତ କଫ ବିକାର ହୋଇ ଆଜ ଶ୍ରୀଅଙ୍ଗ ଉତ୍ତମ ସୁଖ ଅଛି । ଲେମ୍ବୁରସ, କର୍ପୂର, ପଇଡ଼ପାଣି ମଣୋହି ହେବ । ସାୟଂକାଳ ସରିକି ମହାଦେଈଙ୍କ ଛାମୁରେ ଭେଟଆଜ୍ଞା ହେବ । ଏପରି ଜଣାଇ ପ୍ରାଣାନ୍ତକ ବୈଦ୍ୟଚନ୍ଦ୍ର ଭେଟି ଘେନି ମେଲାଣି ଦେଇକରି ଗଲା ଉତ୍ତାରୁ ଘୁମୁରା, ଚାଙ୍ଗୁ, ଢୋଲ, ତୁମ୍ବା, ଢାମ୍ପ ଇତ୍ୟାଦି ମହାରାଜସଭା ସଞ୍ଚିତ ହେବାର ବାଦ୍ୟମାନ ବାଜିଲା । ଗାନ୍ଧର୍ବ ରାଜସଭା ପରି ସଙ୍ଗୀତ ପ୍ରବର୍ତ୍ତିଲା । ସେ ମହାରାଜା ତ ସଙ୍ଗୀତ ବିଦ୍ୟାରେ ପ୍ରବୀଣ; ସିତାର ଧରି ରାଜ୍ୟାନ୍ତରରୁ ଆସି ଛାମୁରେ ମୁଲାକାତ ହେବା ଶୁଣି କି ଆଜ୍ଞା କଲେ—ସିତାର ତ ଆଣିଛୁ ଚାମର ଆଣିନାହୁଁ କି ? ବୋଲି ପଚାରି ଆଜ୍ଞା କଲେ । ଏପରିରେ ସେ ରାଜଧାନୀରେ ସମସ୍ତ ଗୁଣ ସମ୍ପତ୍ତି ପୂରି ଅଛନ୍ତି । ଆହୁରି ଗୋଟିଏ ଗୁଣ ମାତ୍ରକ ଅଛି ଅଛି; କେଉଁ ଗୁଣ କି ସେ—ରାଜା, ଦିବାନ, ରାଜଗୁରୁ, ପୁରୋହିତ, ଦଣ୍ଡ ସରଦାର, ପଟ୍ଟନାୟକମାନେ, ସହର କଟୁଆଳ, ଖନ୍ଦାବ୍ରାହ୍ମଣମାନେ, ଲମତାମାନେ, ଦଣ୍ଡପରୀଛା ଏମାନେ ଅଛ କାଲା ।

ଏକ ଦିନକରେ ଏକା ପୁରୋହିତଙ୍କୁ ଛାଡ଼ି ସମସ୍ତେ ଥିବାରେ ଶ୍ରୀ ମହାରାଜାଙ୍କ ଖରଶେଖର ବୋଲାଇବାର ଆଣ୍ଠୁଏ ଉଚ୍ଚ ଘୋଡ଼ା ଆଗପିଛା ଦଉଡ଼ି ଛିଣ୍ଡାଇ ବୋଡ଼ାସାପ ପରି ଜଲଦି ସେ [illegible] ପିଟି ପଶି ଖନ୍ଦା ମାରା କରିବାରୁ ଦଉଡ଼ି ପରୀଛା ପହଞ୍ଚି ପୁରୋହିତଙ୍କୁ [illegible]କାଇ ଖୁବ୍ କରି ଟାଙ୍କେ ଛେଚି ଦେଲା । ପୁରୋହିତେ ଆସି ମହାରାଜାଙ୍କୁ ଆଜ୍ଞା କଲେ । ''ମୋତେ ମନୁଷ୍ୟ ମାଇଲା'' ବୋଲି

୩୨. ତାଲୁକା—ଦେଶଖଣ୍ଡ । ୩୩. ମୁଠା—ଅନେକ ଗ୍ରାମକୁ ନେଇ ଗଠିତ ଅଞ୍ଚଳ ।
୩୪. ଉତ୍ପାତ—ଦେଶ ପ୍ରତି ଅମଙ୍ଗଳକର ଶକୁନ, ଯଥା—ରାତିରେ କାଉ ରାବିବା ।
୩୫. ମକୁବ—ରଦ୍ଦ । ୩୬. ନିତ୍ୟନିତ୍ୟ—ପ୍ରତିଦିନ । ୩୭. ହକିକତ—ନିବେଦନ ।
୩୮. ଦିବାନାଦି—ଦେଓ୍ୱାନ ପ୍ରମୁଖ । ୩୯. ଲମତା—ରାଜାଙ୍କ ପାଦସେବକ ।
୪୦. ବହିର୍ବାସୀ—ରାଜାଙ୍କ ବ୍ୟକ୍ତିଗତ ସେବାପାଇଁ ଅଯୋଗ୍ୟ ବାହାର ପୋଇଲୀ ।
୪୧. ପୁଳିନ୍ଦୀ—କନ୍ଧୁଣୀ । ୪୨. ଦେହପାଣି—ସ୍ନାନ । ୪୩. ପ୍ରାଣାନ୍ତକ—ବୈଦ୍ୟଚନ୍ଦ୍ରଙ୍କ ନାମ ।

ଫିରାଦ କରିବାରୁ, ରାଜଗୁରୁଙ୍କୁ ଚାହିଁ ପଚାରି ଆଜ୍ଞା କଲେ "ଗୋସାଇଁ ! ପୁରୋହିତେ କି କହୁ ଅଛନ୍ତି ?"

ରାଜଗୁରୁ ଜଣାଇଲେ, "ମହାରାଜ, ସ୍ମାର୍ତ୍ତ ବୈଷ୍ଣବ ଦୁଇ ପକ୍ଷରେ ନିଶାମଙ୍ଗଳବାର ରବିବାର ପରଦିନ ଶୁକ୍ରବାର ପୂର୍ବଦିନ ଦ୍ୱିବିଧ ହେଉଅଛି । ରବିବାର ବୈଷ୍ଣବମାନେ ପାଳିବେ, ଶୁକ୍ରବାର ସ୍ମାର୍ତ୍ତମାନେ ପାଳିବେ । ପୁରୋହିତେ ଜାଣନ୍ତି, ସ୍ମୃତି ଭଲ କରି ନ ବିଚାରି ଜଣାଇ ଅଛନ୍ତି । ମହାରାଜ ! ଅମୁକ ନାମା ସ୍ମୃତି ଉଚ୍ୟତେ—ମାରିଷ ବିଭିନ୍ନ ପାଳଙ୍ଗ ଭିନ୍ନତ୍ୱେ ସନ୍ତି କୋଶଳାର୍ଥା ନ ତିରନିର୍ଷା ତୋତଡ଼୍‌ତା ସମ୍ବନ୍ଧାବଚ୍ଛିନ୍ନ ଗନ୍ଧାବଚ୍ଛିନ୍ନ ଗନ୍ଧସା ଜନକତାଦଚ୍ଛେଦକତ୍ୱଂ ଶ୍ରୁତିତ୍ୱଂ । ଶ୍ରୁତିବଦର୍ଥ ସଜ୍ଞାନସ୍ୟ ଶ୍ରୁତିବତ୍ସଳ ଜ୍ଞାନସ୍ୟ ଚ । ଚମତ୍କୃତି ଜନକତୟା ଲେଉଟିଆ ବିଷ୍ଣୁ, ଚମତ୍କୃତି ଜନକତୟା କୋଶଳା ମାରିଷୟୋ ବିଷିୟିତା ସମ୍ବନ୍ଧେନାବଚ୍ଛେଦକତ୍ୱାତ୍ । ପାଳଙ୍ଗ ଗନ୍ଧଣା ଧାନ୍ୟଂ ତରକିଷାବଚ୍ଛେଦ ଜିତାୟୁ ସ୍ମୃତେ । ତପ୍ୟଦଳତ୍ୱା ଲକ୍ଷଣଂ ସମଂପନ୍ୟାୟଃ । ପାଳଙ୍ଗ ଭିନ୍ନତ୍ୱାନିବେଶଃ ପାଳଙ୍ଗବଦର୍ଥ । ଜ୍ଞାନସ୍ୟ ଚମତ୍କୃତି ଜନକ-ତାବଚ୍ଛେଦକତ୍ୱାଉସ୍ୟା । ସୃତତ୍ୱା ନ ଭୂପଗମେନ ତତ୍ରତ୍ୟ ବ୍ୟାପ୍ତିଃ କାରଣାୟା ପାଳଙ୍ଗ ଭିନ୍ନତ୍ୱାନିବେଶଃ ମାରିଷ ବସ୍ତୁତେରପି କୋଶଳା ପ୍ରଭେଦୟୋ କୋଶଳାବଲ୍ଲେଉଟିଆଃ । ଅବ୍ୟାପ୍ତି କାରଣାୟ ମାରିଷଃ ଭିନ୍ନତ୍ୱନିବେଶଃ ମାରିଷବସ୍ତୁତେରପି କୋଶଳା ପ୍ରଭେଦୟୋ କୋଶଳାବଲ୍ଲେଉଟିଆଃ ।"

ଏପରି ମୁଖହସ୍ତାଭିନୟରୁ ରାଜଗୁରୁ କି କହୁ ଅଛନ୍ତି ବୋଲି ମହାରାଜା ଦେବାନଙ୍କୁ ପଚାରିବାରୁ ସେ ଜଣାଇଲେ "ମଣିମା ! ରାଜଗୁରୁ ଗୋସାଇଁଙ୍କର ସାତଶ ଊଣା ଅଢ଼ାଇଶ ଭରଣ ପର୍ବତ ଶିଖରେ ଦିବ୍ୟ ନଦୀତଟ ଭୂମି ଅଛି । ସାହାଡ଼ା, ବାହାଡ଼ା, ଭଇଁଚ, ରାହାଡ଼ି କୁରାଡ଼ିଭଙ୍ଗା, ବା[illegible], କରଞ୍ଜ, କୋଚିଲା ଇତ୍ୟାଦି ନାନା

---

୪୪. କର୍ପୂର, ପଇଡ଼ପାଣି—ଉଭୟ ଯୋଗରେ [illegible] ହୁଏ । ୪୫. ସାୟଂକାଳ—ସନ୍ଧ୍ୟା । ୪୬. ମହାଦେଈ—ପାଟରାଣୀ । ୪୭. ଭେଟଥାଞ୍ଜା—ଆଜି[illegible] ଭେଟ । ୪୮. ଘୁମୁରା ଆଦି—ସ୍ଥୂଳ ବାଦ୍ୟଯନ୍ତ୍ରମାନ । ୪୯. ଚାମର—ପାଲାରେ ବ୍ୟବହୃତ । ୫୦. କାଲା—ବଧିର । ୫୧. ଜଲଦି—ଶୀଘ୍ର । ୫୨. ମାରା—ଦୂଷିତ । ୫୩. ଖୁବୁ—ଖୁବ୍ ଆଚ୍ଛା । ୫୪. ଟାଙ୍କେ ଛେଚି—ଛେଚିବା । ୫୫. ନିଶାମଙ୍ଗଳବାର—ଆଶ୍ୱିନର ଶେଷ ମଙ୍ଗଳବାର । ୫୬. ମାରିଷ—କୋଶଳାବଲ୍ଲେଉଟିଆ—ରଚୟିତା ଏଠାରେ ସ୍ମୃତିର ଉଦ୍ଧୃତି ନାମରେ କେତେକ ତୁଚ୍ଛ ଶାଗ ଶବ୍ଦ ଯୁକ୍ତ ଅଶୁଦ୍ଧ ସଂସ୍କୃତ ବାକ୍ୟ ଲେଖିଛନ୍ତି; ଅନୁଲେଖକ ଦୋଷରୁ ଅଶୁଦ୍ଧି ବଢ଼ି ଯାଇଥିବା ସମ୍ଭବ ।

ପ୍ରକାର ଖନ୍ଦ ହୋଇଅଛି । ଖୁଲାସ ପନ୍ଦର ବଖରା ତିହରୁ ପାଞ୍ଚ ବଖରା ଅଧକେ କୁଟୁମ୍ବ ରଖି ବାକି ତେର ବଖରା ଦୁଇପା'ରେ ଦିବ୍ୟ ଦୁଦୁରା, ଓଡ଼ଶମାରି ବୁଣାଇ ଅଛନ୍ତି । ଏପରି ପନ୍ଦର ବଖରାକୁ ଏଥି ଉତ୍ତାରୁ ଯେବେ କାର୍ଯ୍ୟ ନ ଚଳିଲା ବୋଲି ଜଣାଉ ଅଛନ୍ତି, ମହାରାଜା କଳ୍ପଦ୍ରୁମ ସାକ୍ଷାତ୍ ଆଖୁପର୍ବ ତ, ଆଉ ଦଶ ଗଛ ଦୁଦୁରାକୁ ମହାରାଜା ଆଜ୍ଞା କଲେ କିଏ ସେ ନାହିଁ କରିବ, ଏଥିକି ଯେ ରାଇ ।

ପ୍ରଧାନ ସରଦାର କାଞ୍ଜି ବୈରିଗଞ୍ଜନ । ସେ ଗୋଡ଼ ଯୋଡ଼ି ପିଠି ଆଡ଼ କରି ଜଣାଇଲେ । ''ଦେଉ ! ଗଧପତି ! ଶ୍ରୀଛାମୁରେ ଯେ ପୁରୋହିତ ଜଣାଇ ଅବଧାନ କଲେ । କଟୁଆଳର ଟିଣା କଥା ସରଦାରମାନଙ୍କର ନ ଗଲା ବୋଲି, ମହାପ୍ରଭୁ, ଆମେ ବୋଲିବାର କଥା ଏତିକି—ହଇହୋ କଟୁଆଳ ! ଚଟିଆଟିଏ ମାରି ସରକାରଙ୍କୁ ପଢ଼ିଆ ଦିଅ । ପାତ୍ରମାନଙ୍କର ପୁଡା ନ ପହୁଞ୍ଚିଲା । ଦଶ ଘରଯାକ ତିନିଦିନ ପର୍ଯ୍ୟନ୍ତ ମାଂସ ଖାଇ ପ୍ରିୟାପ୍ରୀତି ଘରମାନଙ୍କୁ ପଠିଆଇଲେ ବୋଲି ଧୋକା ହେବାକୁ ପାଇଲୁ । ଚାଳିଶ ତିରିଶ ବର୍ଷର ନିପଟ ପିଲାମାନେ ପ୍ରାଣ ମୂର୍ଚ୍ଛି କରି ବଡ଼ ଖରାରେ ତେଡ଼େ ଚଟିଆ ଲାଛି ଶଗଡ଼ରେ ପକାଇ ଆଣି ଛାମୁରେ ଦୃଶ୍ୟ କରାଇଲେ । କଟୁଆଳ ଖାମିନ୍ଦ ହୋଇ କରି ଯେ ଥିଲା, ଭଲା କିଛି ନୋହିଲେ ହେଲେ, ଲୁଗାପଟା ନ ମିଳିଲା ବୋଲି ଦିଗପଟା ଯେହେଲେ ଦିଆଇ ପାରିଲା ନାହିଁ ? ମହାପ୍ରଭୁ, ଏତିକି ବୋଲିବାରୁ ପାଏ ପଡ଼ି ଶୋଇ ଯେତେ ଫଜିତ କଲା ପୁରୋହିତ ଗୋସାଇଁ ଆସି ଆଦ୍ୟରୁ ଗୋଚର କରିଅଛନ୍ତି । ଆମେ ଆଉ ପାଦୁକାରେ କିସ ଗୋଚର କରିବୁ ?''

ତହିଁରୁ ଲମତାମାନେ କି [illegible]ଇଲେ କି, ଛାମୁ ଦିଗକୁ ଗୋଡ଼ ଯୋଡ଼ି ଓ ସାଷ୍ଟାଙ୍ଗ ହୋଇ ପାଏ ପଡ଼ି ଜଣ[illegible] ''ମହାପ୍ରଭୁ ! ଏ କଥା ଯେବେ ସତ ତେବେ

ଆଜ୍ଞା, ଚ

୫୭. ମଣିମା—ରାଜାଙ୍କୁ [illegible]ସମ୍ବୋଧନ । ୫୮. ଦିବ୍ୟ—ମନୋହର । ୫୯. ସାହାଡ଼ା ... କୋଚିଲା—ବୃକ୍ଷନ[illegible] ବୃକ୍ଷଗୁଡ଼ିକ ଜାଳେଣି ଛଡ଼ା ଆଉ କିଛି ହେବାକୁ ଅନୁପଯୁକ୍ତ । ୬୦. ଖନ୍ଦ—ଫସଲ । ୬୧. ଖୁଲାସ—ମେଲାମୁକୁଳା । ୬୨. ଦୁଦୁରା, ଓଡ଼ଶମାରି—ଦୁଇ ବିଷାକ୍ତ ଗୁଳ୍ମ । ୬୩. ଆଖୁପର୍ବ—ଆଖୁର ପବ (କଳ୍ପଦ୍ରୁମ ସହ ଏହାର ଅହେତୁକ ତୁଳନା) ୬୪. ରାଇ—ରାୟ, ଆଜ୍ଞା । ୬୫. ଦେଉ—ଦେବ, ରାଜା । ୬୬. ଶ୍ରୀଛାମୁ—ରାଜାଙ୍କ ସମ୍ମୁଖ । ୬୭. ଟିଣା—ଅଳ୍ପ କଥାରେ ରାଗିଯିବା । ୬୮. ସରକାରଙ୍କୁ—ରାଜାଙ୍କ ଅସୁଲକୁ । ୬୯. ପୁଡ଼ା—ପୁଡ଼ିଆ (ଏଠାରେ ମାଂସର ଭାଗ) ।

ନିୟମଟାଏ କରି ଆଜ୍ଞା ହୁଅନ୍ତୁ । ହାରି ହେବା ଦିନ ଆମ୍ଭଙ୍କୁ ସଭା ବେହରଣରେ ଏକା ଜଗାଇ ଆଜ୍ଞା ହୁଅନ୍ତୁ । ପୁରାଣପଣ୍ଡା ଗୋସାଇଁ ତ ନିତି ବସୁ ଅଛନ୍ତି, ଆମର ଦିନେ । ହେଲେ ହେଲା, ତହିଁକି କି ହେଲା ? ସରଦାରମାନେ ବଡ଼ଲୋକଗୁଡ଼ାକ ହୋଇ ସେବା କଲା ଚାକରଂ ଗୁଡ଼ାକ ନାମରେ ଉଡ଼ାଇ କରି ଏଡ଼େ କଥାଟାଏ କହିଲେ ! ଆଉ କାହିଁକି ପୃଥିବୀରେ ଅଗ୍ନି ବରଷିବ ? ମହାରାଜା ! ଲେଖାରେ ବଡ଼ ପରୀଛା ଆମ୍ଭର ଦାଦା ହେବେ ତାଙ୍କର ଆଈ ଆମ୍ଭର ଦଇବରେ ଶାଳୀ ହୁଅନ୍ତି । ତାଙ୍କୁ ଆମ୍ଭର ଟାପରା କି ରୂପରେ ହେଲେ । ମହାପ୍ରଭୁ ! ରତ୍ନକଠାଉ ତଳେ କହିଲେ କିପରି ? ଏକଦିନେ ଦଉଡ଼ି ପରୀଛାର ଝିଅଟା ପରା, ଆମ୍ଭର ବଡ଼ ବହୂ ହେବେ, ତାଙ୍କୁ ମାତ୍ର ଧରି ପାଞ୍ଚ କି ଏଗାର କ୍ଲୀବ ଢଳି ଆରପାଖକୁ ଚାକୁଣ୍ଡାବଣ ଭିତରକୁ ଯାଇଥିଲୁ ।''

ଏଥିରୁ କି ଜାଣି ଖନ୍ଦା - ବ୍ରାହ୍ମଣେ ଜଣାଇଲେ କି, ''ଆଜ୍ଞା ! ଏ କଥା ସତ । ମୁଠା - ଚାମର, ଝରୀଚାଦର, ପାନଭାଙ୍ଗି ତବକ ଇତ୍ୟାଦି ସେବା ତ ଆମ୍ଭର ନିଯୋଗ । ଶ୍ରୀଦଦା ଦେଉ ମହାରାଜା ତ ମହା ବ୍ରାହ୍ମଣ୍ୟ ସାକ୍ଷାତ ହତଶ୍ରୀ ଥିଲେ । ପଇତା ଦେଖି ବିସୁଖ ପାଇବାରୁ ଏ ସମସ୍ତ ସେବା ଖନ୍ଦାଳବିଶୋଇମାନଙ୍କ ମାରଫତ କରାଇଛନ୍ତି । ମାତ୍ର କେଶ ଧରିବାରୁ ଏ ପାଞ୍ଚ ସେବା ଆମ୍ଭଙ୍କୁ ଅନୁଗ୍ରହ କରି - ଆଜ୍ଞା ହେଲେ ।''

ଏଥିରୁ କି ଘେନି ଚିଆଉ-ପଟ୍ଟନାୟକ ଚଳି ଉଠି ଜଣାଇଲେ, ''ମହାପ୍ରଭୁ ! ଚାଙ୍ଗଡ଼ାଘରେ କେହି ନ ଥିବା ସମୟରେ ମୁଁ ରଖିଥିବା ଲେଭଡ଼ୀ ଲୀଳାବତୀ ନିମନ୍ତେ ମାଗି ନେବାର ସାତ ହଜାର ବାହାରେ ଯେବେ ଦାଢ଼େ କଉଡ଼ି ଖାଇଥିବୁ ତେବେ ପଚାଶ ଲୋକରେ ଏକା ମୁସୁଦି ବୋଲି ଫଜିତ କରି ଆଜ୍ଞା ହେବେ । ଚିତ୍ରଗୁପ୍ତ ପରି ସମର୍ଥ ଚାରୋଟି ପଟ୍ଟନାୟକ ଯାକ ରାତ୍ର[illegible]ରେ ମିଶାଇବାରେ ପାଞ୍ଚତିରିକି ପଞ୍ଚାଶୋଇ ହେଲା ଯେ, ମହାରାଜ, ଆଉ ହୁ[illegible]ରୂପେ ହେଲା ?''

୭୦. ଧୋକା—ଠକିହେବା । ୭୧. ଲାଞ୍ଛି—[illegible] ୭୨. ଦିଗପଟ—ଦିଗବାସ । ୭୩. ପାଏ—ପାଦରେ । ୭୪. ଫଜିତ—ଅପମାନ । [illegible]ମୁ—ରାଜା । ୭୬. କରି-ଆଜ୍ଞା ହୁଅନ୍ତୁ—ରାଜା କରନ୍ତୁ, ୭୭. ବେହରଣ—ମଣ୍ଡପ, ଘର । ୭୮. ଉଡ଼ାଇ କରି—ମିଥ୍ୟା ଅପବାଦ ଦେଇ, ୭୯. ଲେଖାରେ—ହିସାବରେ, ୮୦. ଦଇବରେ—ଦୈବାତ୍, ଯୋଗକୁ, ୮୧. ଟାପରା—ପରିହାସ, ୮୨. ଢଳି—ଗଡ଼ଖାଇ ୮୩. ଖନ୍ଦା-ବ୍ରାହ୍ମଣ—ରାନ୍ଧୁଣିଆ । ୮୪. ମୁଠାଚାମର—ରାଜାଙ୍କ ପାଖରେ ଚାମର ଚାଳନ । ୮୫. ଝରୀ-ଚାଦର—ରାଜାଙ୍କ ପାଖରେ ପାଣି ଓ ଗାମୁଛା ଧରି ରହି[illegible] କର୍ମ, ୮୬. ତବକ—ଥାଳିଆ । ୮୭. ନିଯୋଗ—ରାଜକାର୍ଯ୍ୟ ।

ଏମନ୍ତ ସମୟରେ ତଡାଉ ଦେଶରୁ ସାରଙ୍ଗ ଯନ୍ତ୍ରଟିଏ ଘେନି ଶ୍ରୀବୈଷ୍ଣବ ଷଣ୍ଢଦୈତ୍ୟ ଚ୍ୟାପଲ ଗନ୍ଧର୍ବରାରଲୁ ବୋଲି ଏକ ସଙ୍ଗୀତ ପ୍ରବୀଣ ଆସି ମାର୍ଗାଜ୍ଞାନ ଭାବରୁ ବଣା ହୋଇ ସେ ସ୍ଥଳେ ପ୍ରବେଶ ହୋଇ ରାଜାଙ୍କ ଛାମୁରେ ମୁଲାକାତ କରି ଯନ୍ତ୍ର ତାରରେ ଧନୁରାକାର କରଦଣ୍ଡ ଚଳାଇବାକୁ ଆରମ୍ଭିବାର ଦେଖି ରାଜା ହୁରିଆକୁ ଆଜ୍ଞା କଲେ,

''ପରିବା ବଡ଼ ପାକଲ ହୋଇଅଛି ଏଥିରେ କଟାଯିବ ନାହିଁ। ସରକାରରୁ ପନିକି ଆଣି ଦିଅ'' ବୋଲିବାରୁ, ଏହା କିପରି ସେ ଗୁଣୀ ଜାଣି ଜଣାଇଲା, ''ମହାପ୍ରଭୁ, ସଙ୍ଗୀତାନିକି ବହୁତ ପରିସ୍ତୁନ୍ଦି। ସାରଙ୍ଗ ଯନ୍ତ୍ର ଅନେକ ଲିବିକାୟା ଗାତୁଣ୍ଡ।'' ତହିଁକି ରାଜା ଆଜ୍ଞା କଲେ ''ଆମ୍ଭର ଖନ୍ଦାରେ ଆମ୍ବିଳ ପଡୁନାହିଁ। ଭଜା, ସନ୍ତୋଳା, ରାଇ, ମହୁର, ଏପରି ତିଅଣ। ଏ ପରିବା ହୋଇଥିଲେ ଆମ୍ଭର ଘୋଡ଼ାଦାନା ଖନ୍ଦା କରିବାର ସୁଆରଶେଖରକୁ ବଢ଼ାଇ ଦିଅ।''

ଏମନ୍ତ ସମୟରେ ବର୍ଣ୍ଣବୈରି କପିରାଜ ଗୋସାଇଁ ଆସି ଆଶୀର୍ବାଦ କରି ଶ୍ରୀ ମହାରାଜା କୀର୍ତ୍ତିପ୍ରତାପ ପ୍ରଶଂସାରେ କହନା କରିଥିବାର କବିତା ଶୁଣାଇଲେ। କିପରିରେ କି :—

କୀର୍ତ୍ତି ଧାନସିଝା-ହାଣ୍ଡି ମଣ୍ଡଳା ଭୂମି ମଣ୍ଡନ
ପ୍ରତାପ ଅସ୍ତଚନ୍ଦ୍ର ପରି ଚୋବାଉଛି ଚିମୁଟି ଚିମୁଟି
ଏପରି ଶ୍ରୀଛାମୁରେ ଅନ୍ନ ନିମନ୍ତେ ପେଟ ଦେଖାଇ କହି,
ଆହଂ ତାନେକୁ ଲେଦୁ

ଖରଚକୁ ନ ମିଳିଲେ ଓ୍ୱହି [illegible]କ୍ୟା କରୁଙ୍ଗା। ଏ ଶ୍ଳୋକାର୍ଥ କହିବା ସମୟରେ ସନ୍ତୋଷ ହୋଇ ପଚାରି-ଆଜ୍ଞା—ଅଜ୍ଞା,'' ''ଗୋସାଇଁ, ଆଉ ପ୍ରାକୃତରେ ଚଉପଦୀ ହେରିକା ବୋଲା ଯାଇଅଛି [illegible]

[illegible]ବିକ୍ଷନ୍[illegible]

୮୮. ଶ୍ରୀଦଦା ଦେଉ—ପିତୃ[illegible]। ୮୯. ବିସୁଖ ପାଇବା—ବିରକ୍ତ ହେବା। ୯୦. ଖନ୍ଦାଳବିଶୋଇ—ରୋଷେଇକୁ ଜିନ[illegible] ଯୋଗାଇବା ଯାହାଙ୍କର ସେବା। ୯୧. ଚିଆଉ-ପଟ୍ଟନାୟକ—କରଣ ଉପାଧି ବିଶେଷ। ୯୨. ଚଳିବା—ରାଗିବା। ୯୩. ଲେଭଡ଼ୀ ଲୀଳାବତୀ—ବେଶ୍ୟାବିଶେଷ। ୯୪. ଦା[illegible]—ଏକ କଡ଼ା କଉଡ଼ିର ୩୨ ଭାଗରୁ ଭାଗେ। ୯୫. ମୁସୁଦି—ମାମଲତକାର। ୯୬. [illegible]—ତିନିଗୁଣେ। ୯୭. ପଞ୍ଚାଣୋଇ—ପଞ୍ଚାନବେ।

କପିରାଜ ଜଣାଇଲେ, "ମଣିମା ! ଲଙ୍କାମରିଚ ରାଗ, କଳାହାଣ୍ଡିଆ ତାଳ, ପିଲାମାନଙ୍କର ମାଆ ନ ଥାଇ ଲୟେ, କଷ୍ଟ-ପ୍ରେମାଳଙ୍କାରରେ ଦତ୍ତ ସରସ ଚଉପଦୀ ବୋଲା ଯାଇଅଛି । ଦିବ୍ୟ ଚିତ୍ତକୁ ଆସୁ । ନାକରେ ସାବଧାନ ହୋଇ ଶୁଣିବାକୁ ଆଜ୍ଞା ହୁଅନ୍ତୁ ।"

ଗୀତ :—

ଚ ଚ ଚ ଉ ଉ ଉ ପ ପ ପ ଦୀ ଦୀ ଦୀ ଗୀ ଗୀ ଗୀ ତ ତ ତ
ହେଲାରେ, ଛ ଲାତ ଯୋଗ୍ୟ ହେଲା ରେ,
ନରପାଳ ଭଲ୍ଲାତକର୍ଣ୍ଣ ଭଣିଲେ ରେ ।।

ଏପରି ଗନ୍ଧର୍ବ ଯଶକାରୀ ପ୍ରତୀତ କରାଇବାର ସଙ୍ଗୀତ ସମାପ୍ତ ହେଲା । ତଡ଼ାଉ ଦେଶର ଗୁଣୀକି, କପିରାଜକୁ ମଧ, ମୂନ ଥିବାର ସହସ୍ରେ ଷୋଳ ଲେଖାରେ ସୁନିଆ ଲଛା; ମୂନ ଥିବାର ମୁକୁତା ବହୁମାନ ଦିଆଗଲା । ଚୁପ୍ ଚୁପ୍ କରି ଚୋପଦାର ଡାକିଲା, ଧାଙ୍ଗଡ଼ୀ ପଟୁଆର ହେଲା । ବେହରଣ ବରଖାସ୍ତ ହେଲା ମଥାରେ ମହାରାଜା ଉଭା ହେଲେ । ରାଜଗୁର୍ବାଦି ସମସ୍ତେ ମେଲାଣି ଦେଲେ । ମଥାରେ ତେଲ ଲଗାଇ ଶ୍ରୀ ମହାରାଜା ଅନ୍ତଃପୁରାଭିମୁଖ ହୋଇ ବିଜେ କଲା ସମୟରେ ପ୍ରଥମ ଦ୍ୱାରୁ ଦିବାନାଦି, ଦ୍ୱିତୀୟ ଦ୍ୱାରୁ ଭାଇଦାଦିମାନେ, ତୃତୀୟ ଦ୍ୱାରୁ ସିପାଇ ଭଲଲୋକେ ଚତୁର୍ଥ ଦ୍ୱାରୁ ନିଯୋଗ ଭଲଲୋକେ, ଭିତର ଦ୍ୱାରୁ ତୁଡୁକ ସିପାଇମାନେ ଜୁହାର ହୋଇଗଲେ । ଅନ୍ତଃପୁରରେ ବିଜେ ହେଲେ । ପୂର୍ବାହ୍ଣ ପ୍ରକାରରେ ମଣୋହି ବଢ଼ାଇ ପଟ୍ଟଦେବୀ ସାମନ୍ତାଣୀଙ୍କ ଅନ୍ତଃପୁରରେ ପହୁଡ଼ ହେଲା ।

ଶ୍ରୀ ଦ୍ୱୈତ ବିଦ୍ୟାବତାର ତୀର୍ଥଭୂତ ଧ୍ୱଜାଦ୍ୱପୂତ
କୃତ ଚାର୍ବାକ ଗର୍ବ-ପର୍ବତ ଧ୍ୱ[illegible]ଦମ୍ଭୋଳି
ପାଷାଣ୍ଡମଣ୍ଡଳ ମଣ୍ଡଳାନ୍ଧକାର [illegible]ର୍ବରୀଶ
ବୀର ଶ୍ରୀ କୃଷ୍ଣ ଚୈତନ୍ୟଚନ୍ଦ୍ର [illegible]ରଣାରବିନ୍ଦ
ନିଃସ୍ୟନ୍ଦମାନାମନ୍ଦ ମକରନ୍ଦ ବି[illegible]ହ
ଚତୁରଙ୍ଗେ ଚୂଡ଼ାଳିକାରଣଂ ବ[illegible]।

୯୮. ହୁଡ—ଭୁଲ । ୯୯. ହୁରିଆ—ବୋଲକରା[illegible] ୧. ତେଲୁଗୁ ବାକ୍ୟଟିରେ ଅଶୁଦ୍ଧି ରହିଛି । ୨. କପିରାଜ—କବିଶ୍ରେଷ୍ଠ ଅର୍ଥରେ '[illegible] ବ୍ୟଙ୍ଗ୍ୟ । ୩. ଲଛା—ଦେହରେ ତପ୍ତଧାତୁର ଦାଗ । ୪. ଚୋପଦାର—ରାଜାଙ୍କ ଅ[illegible]ଗେ ରାଜାଙ୍କ ଗମନ ଘୋଷଣା କରିବା ସେବକ । ୫. ବେହରଣ ବରଖାସ୍ତ—ସଭାଭଙ୍ଗ ୬[illegible]ଗୁର୍ବାଦି—ରାଜଗୁରୁ ଆଦି ।

ବହ୍ନିନାଶ ସୁଧା ଧବଳିତ ବର୍ଗ ପ୍ରସାଦ
ସଙ୍ଗୀତ-ସାହିତ୍ୟ-ରତ୍ନାକର କରୁଣାନିଧାନ
ଧାରଣବିହୀନ ବଦାନ୍ୟ ଗୁଣ ସମୃଦ୍ଧି ମୂର୍ଦ୍ଧନ୍ୟ ।
ଚଣ୍ଡୀମଣ୍ଡିତରାତି ରାଜବ୍ରଜାଷ୍ଟ ପୂର୍ବରାଷ୍ଟ୍ରାଧିନାଥ
ଶରଣପଞ୍ଜର ମାନଉଦ୍ଧାରଣ ରମଣୀ ରଣରଣରଣ ରଣରଙ୍କ
ପତ୍ରାମରମ ପୁରୁଷା ପୁରଃସର ଶ୍ରୀ ବାଲୁଙ୍କେଶ୍ୱର ଶରଣ
ହରିଚନ୍ଦନ ଶ୍ରୀ ଜଗଦ୍ଦେବ ମହୀମହେନ୍ଦ୍ର ଦେବକେଶ୍ୱରାବଶର
କଲ୍ୟତୋ ହାସ୍ୟକଲ୍ଲୋଳମ୍ ।। ୯





୭. ତୁରୁକ—ମୁସଲମାନ, ତୁର୍କ [illegible] ପଟ୍ଟଦେବୀ—ପାଟରାଣୀ । ୯. ଆଠଗଡ ରାଜା ବାଲୁଙ୍କେଶ୍ୱର ହରିଚନ୍ଦନ ଜଗଦ୍ଦେବଙ୍କ [illegible]ଣିତ ଏହି ବିରୁଦରେ ଅନେକ ଅଂଶର ପାଠ ଅଶୁଦ୍ଧ ରହିଛି ।

# (ପରିଶିଷ୍ଟ)

(ଗ୍ରନ୍ଥାବଳୀର ସମ୍ପୂର୍ଣ୍ଣ ମୁଦ୍ରଣ ପରେ ହସ୍ତଗତ ହୋଇଥିବାରୁ ଏ ୩ଟି ଚଉପଦୀ ପରଶିଷ୍ଟରେ ସ୍ଥାନିତ କରାଗଲା ।)

**ଲୌକିକ**

କଳି ନୁହଇ ଯେ, ନଳୀନବାସୀ ବିଳାସ
ଝଳି ମନେ ଧୃତି, ଟଳି ଗଲେ ହେଲେ ବଳି ପଡୁଥାଏ ରସ ।। ପଦ
ମଳି ମସ କାମ, କୁହୁ ନାଶିବାକୁ, ଝଳି ହେମାଙ୍ଗି ମୋ ବନ୍ଧୁ ।
ଲଳିତ କରି କି ରଙ୍ଗେ ଘେନିଥାଏ ଅଳପକେ ସିନ୍ଧୁ ବିନ୍ଦୁ ।। ୧ ।।
କଳି କଲା ପରି ପରତେ ହୁଅଇ, ଚଳି ଦମ୍ଭେ ଦୂରୁ ଆସେ
ଅଳି କଲା ହୋଇ, ଗେଲାଇ ମୋ ଉର ସ୍ଥଳିରେ ଯା ସ୍ତନ ଠେସେ ।। ୨ ।।
ଫଳିଗଲା ମୋର ଛାତି ଯେ ବୋଲନ୍ତେ, ଅଳିକେଶା ହସି ଭଣେ
ଦଳି ଦେବା ମହାଦାଉକୁ ସହିବା ଭଳି ସିନା ଏକା ଜଣେ ।। ୩ ।।
ଗଳିବାର ସ୍ୱେଦ, ଚାହିଁ ମୋ ତନୁରୁ, ଦଳିତ ପଙ୍କଜମୁଖୀ
ତଳିଥାଇ ମୋତେ ତଳପେ ମୋ ବ୍ୟଥା ମଳି କରେ ଯେଡ଼େ ସୁଖୀ ।। ୪ ।।
ପଳିତ ପାନ ସମାନୁ ଯେତେବେଳେ, ଚଳି ଯାଏ କଳାକର
ଜ୍ୱଳିତ ତେଜ ବିଜୁଳି ପରି କମ୍ପି, ଚଳି ନେତ୍ର ଖୋସିବାର ।। ୫ ।।
ଅଳି ଆଏ ଜଳନ୍ତର ଭୂପେ ପର ବଳିବା କାମୋପଦ୍ରବ ।
ବଳି ସଦ୍ମ ନର ନାକେ ନାହିଁ କୁନ୍ଦ, କଳିକା ଦଶନା ଭାବ ।। ୬ ।।

**ଲୌକିକ**

କାହିଁକି ରେ, ମନେ ନାହିଁ କି ରେ ।। [illegible] ।।
ଜାଣି କରୁଣା ତୋର । ଦେଇ ବିନ[illegible]
ପ୍ରେଷିଲି ଶିଶୁ ଚର । ନ ଲେଖିଲୁ ଉ[illegible] ୧ ।।
ଝୁଡ଼ି ଗଲେ ଛପଟ କ୍ଷମା କର ନିପଟ[illegible]
ଯେ ହେବ ଲାଗି ପଟ । ତହିଁ ଏଡ଼େ [illegible] ୨ ।।
ମୋ ଗୁଣ ଚିହ୍ନାଇଲୁ । ସଖିଙ୍କି ଘେନା[illegible]
ସବୁତ ବନାଇଲୁ । ହସି ନ ଅନାଇଲୁ[illegible]
ଏବେ ମୋ ଅଙ୍କେ ରାଜ । ହଂସ ଗ[illegible]
ସ୍ୱଜନେ ଗଣି ଆଜଠାରୁ ବରକ ରାଜ[illegible] ।।

ନ ଜାଣି ବିଷମକୁ । ମୋ ନଖ ବିକ୍ରମକୁ
କାମ ଖଣ୍ଡା ଝମକୁ । ଥିଲା ପରି ଚମକୁ ॥ ୫ ॥
ସୁଖ ମନୋରଥରେ ଗଲି ପ୍ରେମ ପଥରେ
ଅଷ୍ଟଦୁର୍ଗ ନାଥରେ । ଦୃଷ୍ଟି ନ ଦେଲୁ ଥରେ ॥ ୬ ॥

## ଧର୍ମୀୟ ଓ ରାଗାନୁଗା ଭକ୍ତିମୂଳକ

### ରାଗ - କାମୋଦୀ

ନିଦ ନାହିଁଟି ନଟବରକୁ ଗୋ, ନେତ୍ରୁ ନିରତେ ମୁଞ୍ଚେ ନୀରକୁ ଗୋ
ନ ଲଭିବାରୁ ନବନୀତାଙ୍ଗି ତୋ ପଲ୍ଲବ ଅଧର ମଧୁର ନିର୍ଝରକୁ ଗୋ ॥(ପଦ)
ନୂଆ ନାଗରୀ କେଣେ ନାହାନ୍ତି ଏ ଜଗତେ
ନଚାଇ ନୟନାନ୍ତେ ସ୍ମରକୁ ଗୋ ॥
ନିର୍ମଳ କେଡ଼େ ତୋର ପୂର୍ବ ପୁଣ୍ୟ ନାଗର
ନ ଚିନ୍ତେ ତୋ-ବିନା ଇତରକୁ ଗୋ ॥ ୧ ॥
ନିପଟ ତ କପଟୀ । ନୋହୁ ତୁ ଆମ୍ଭେ ହଟି
ହଟି ସିନା ତୋ ବିଦ୍ୟାତରକୁ ଗୋ
ନଉକରିକି ବାଇ । ହେବା ଯାଏ ଲଗାଇ ।
ଜାଣୁ ତୁ ମୋହନ ମନ୍ତରକୁ ଗୋ ॥ ୨ ॥
ନିୟମ କରୁ ପରା । ନାହିଁ ଶିଖଣ୍ଡ ଝରା
ଚାହିଁ ମୁଁ ବୋଲି ଥର ଥରକୁ ଗୋ
ନୟନ ବାଣ ତୋର । ନ ବାଜି ନିକି ସ୍ମର
ନୀଳ ଦେହରେ ହେଲା ଜ୍ୱରକୁ ଗୋ ॥ ୩ ॥
ନ ଜାଣି ଅବା ଜାଣି ବଡ଼ [illegible] ତ ପାଣି
ବ୍ୟୋମ ସଂଚାରି କଳାନ [illegible] ଗୋ
ନ ହସୁ ଜନେ ଯେବେ [illegible] ୟ ବଳେ ଏବେ
ଅଣାଅ ତାକୁ ନିଜ [illegible] । ॥ ୪ ॥
ନଳିନ ଦଳ ଶେଯ ଦେବୀ—ଖେଳି ଆଜ
ନୀରଦ ନିଭ କଳେବ ଏହି ବିରୁଦ
ନାସାଗ୍ରେ ଶ୍ୱାସ ବହେ [illegible] ମିହିର କହେ
ସମୁଦ୍ରଇ ଦୃଶ ନରକୁ [illegible] ୫ ॥

●

